# ରେଭେନ୍‌ଶା କଲେଜ

## ଏକ ଅନ୍ତରଙ୍ଗ ଇତିହାସ



ସଂପାଦନା: **ସଂଗ୍ରାମ ଜେନା**

# ରେଭେନ୍‌ଶା କଲେଜ

## ଏକ ଅନ୍ତରଙ୍ଗ ଇତିହାସ

ସଂପାଦନା :

ସଂଗ୍ରାମ ଜେନା

ପାଂଡୁଲିପି

*ସହଯୋଗ:* ସେଣ୍ଟର ଫର୍ ଏସିଆନ୍ ଷ୍ଟଡିଜ୍, ଓଡ଼ିଶା

ରେଭେନ୍ସା କଲେଜ
ଏକ ଅନ୍ତରଙ୍ଗ ଇତିହାସ
ସଂପାଦନା : ସଂଗ୍ରାମ ଜେନା
ପ୍ରକାଶକ : ପାଂଡୁଲିପି
ସହଯୋଗ: ସେଣ୍ଟର ଫର୍ ଏସିଆନ୍ ଷ୍ଟଡିଜ୍, ଓଡ଼ିଶା
ପ୍ରଚ୍ଛଦ ଚିତ୍ର : ସରୋଜ ବଳ
ମୁଦ୍ରଣ : ଶିକ୍ଷା ପ୍ରକାଶନୀ, ଭୁବନେଶ୍ୱର
ବିତରକ : ଶିକ୍ଷାସନ୍ଧାନ, ଭୁବନେଶ୍ୱର
ପ୍ରଥମ ସଂସ୍କରଣ : ୨୦୧୫
ମୂଲ୍ୟ: ୩୦୦.୦୦ ଟଙ୍କା

---

**Ravenshaw College**
Eka Antaranga Etihasa
Edited by **Sangram Jena**
Published by **Pandulipi**
In association with **Centre for Asian Studies, Odisha, Bhubaneswar**
First Edition **2015**
Cover Design : **Saroj Bal**
Printed at **Sikhya Prakashani**, Bhubaneswar
` **300.00**

ISBN: **987-81-925369-4-1**

# ସୂଚୀ

## ଭୂମିକା

ସାଂପ୍ରତିକ ୟୁରୋପୀୟ ଓ ଭାରତୀୟ ସମାଜ ବ୍ୟବସ୍ଥା ଭିତରେ ଏକ ମୌଳିକ ପ୍ରଭେଦ ରହିଛି । ସାଧାରଣତଃ ଦେଖାଯାଏ ଯେ ୟୁରୋପରେ ବ୍ୟକ୍ତିଗତ ସଂପର୍କ ଗୁଡ଼ିକ କ୍ଷଣସ୍ଥାୟୀ ମାତ୍ର ଅନୁଷ୍ଠାନ ଗୁଡ଼ିକ ଦୀର୍ଘସ୍ଥାୟୀ । ଭାରତରେ ବ୍ୟକ୍ତିଗତ ସଂପର୍କ ଗୁଡ଼ିକ ଖୁବ୍ ଦୀର୍ଘସ୍ଥାୟୀ ମାତ୍ର ଅନୁଷ୍ଠାନ ଗୁଡ଼ିକ ଅସ୍ଥାୟୀ । କାରଣ ଆମ ସମାଜରେ ସାଧାରଣ ଲୋକଙ୍କ ଦୃଷ୍ଟିରେ ବ୍ୟକ୍ତି ବଡ଼, ଅନୁଷ୍ଠାନ ଗୌଣ । ଏହା ସତ୍ୟ ଯେ ପ୍ରଥମେ ବ୍ୟକ୍ତି ହିଁ ଅନୁଷ୍ଠାନର କଳ୍ପନା କରିଥାଏ, ତାକୁ ଗଢ଼ିଥାଏ । ମାତ୍ର ଥରେ ତାହା ବିକଶିତ ହୋଇଯିବା ପରେ ଅନୁଷ୍ଠାନଟି ଅସଂଖ୍ୟ ବ୍ୟକ୍ତି ଓ ବ୍ୟକ୍ତିତ୍ୱକୁ ଜନ୍ମ ଦେଇଥାଏ । ଏହି ଦୃଷ୍ଟିଭଙ୍ଗୀଟି ନଥିବାରୁ ଆମେ ବ୍ୟକ୍ତିର ଜୀବନୀ ବା ଆତ୍ମଜୀବନୀ ପ୍ରକାଶ କରିଥାଉ । ମାତ୍ର ଅନୁଷ୍ଠାନର ଜୀବନୀ ବା ଇତିହାସ ଲେଖିବାରେ ବିଶେଷ ଆଗ୍ରହ ପ୍ରକାଶ କରୁନାହୁଁ ।

ୟୁରୋପରେ କିଂତୁ ଦୃଶ୍ୟପଟ ଅଲଗା । ସେଠି ଅକ୍ସଫୋର୍ଡ, କେମ୍ବ୍ରିଜ୍ ପରି ବହୁ (ବିଶ୍ୱବିଦ୍ୟାଳୟ) ଅନୁଷ୍ଠାନର ଇତିହାସ ଲେଖା ସରିଛି । ଏପରିକି ଅନେକ ପୁରୁଣା ସ୍କୁଲ, ସାହିତ୍ୟିକ ଓ ସାଂସ୍କୃତିକ ଅନୁଷ୍ଠାନର ଇତିହାସ ବି ଲେଖାହୋଇଛି । ଏଦିଗରେ ଭାରତରେ ଯେଉଁ ଅଳ୍ପ ଉଦ୍ୟମ ହୋଇଛି ତନ୍ମଧ୍ୟରେ ଆଇ.ଆଇ.ଟି. ମୁମ୍ବାଇ, ଲା' ମାର୍ଟିନିଅର ସ୍କୁଲ ଓ ପାଟନା କଲେଜର ଇତିହାସ ଉଲ୍ଲେଖଯୋଗ୍ୟ । ଅନେକ ଏହାକୁ ଇତିହାସ ନକହି Biography of Institutions (ଅନୁଷ୍ଠାନର ଜୀବନୀ) ବୋଲି କହିଥାନ୍ତି । କାରଣ ଅନୁଷ୍ଠାନ ଗୁଡ଼ିକର ସ୍ଥିତି ଓ ବିକାଶର ଧାରା ଖୁବ୍ ଘଟଣାବହୁଳ ଓ ଜୀବନ୍ତ ।

ଓଡ଼ିଶାରେ ଏମିତି ଏକ ମହାନ୍ ଓ ପୁରାତନ ଅନୁଷ୍ଠାନ ହେଉଛି ରେଭେନ୍ଶା କଲେଜ (ବର୍ତ୍ତମାନ ବିଶ୍ୱବିଦ୍ୟାଳୟ) । ଏହି କଲେଜର ଛାତ୍ରମାନେ ହିଁ ଔପନିବେଶିକ ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମ, ସ୍ୱତନ୍ତ୍ର ପ୍ରଦେଶ ଗଠନ ଆନ୍ଦୋଳନ, ସାମାଜିକ ସଂସ୍କାର, ସମାଜବାଦୀ-ବାମପନ୍ଥୀ ଆନ୍ଦୋଳନ, ସାହିତ୍ୟ, ସଂସ୍କୃତି, କଳା ସବୁକ୍ଷେତ୍ରରେ ସକ୍ରିୟ ଅଂଶଗ୍ରହଣ କରୁଥିଲେ ।

ଊନବିଂଶ ଶତାବ୍ଦୀର ଉତ୍ତରାର୍ଦ୍ଧ ଥିଲା ଓଡ଼ିଶା ପାଇଁ ଏକ ଗୁରୁତ୍ୱପୂର୍ଣ୍ଣ ସମୟ। ଏ ସମୟରେ ସଂଗଠିତ ଦୁଇଟି ଘଟଣା ଓଡ଼ିଆ ଜାତିର ଇତିହାସରେ ନିର୍ଣ୍ଣାୟକ ଭୂମିକା ଗ୍ରହଣ କରିଥିଲା। ପ୍ରଥମଟି ଥିଲା ୧୮୬୬ ମସିହାର ନ'ଅଙ୍କ ଦୁର୍ଭିକ୍ଷ। ଇଂରେଜ ସରକାରଙ୍କ ତ୍ରୁଟିପୂର୍ଣ୍ଣ ଆର୍ଥନୀତିକ ବ୍ୟବସ୍ଥା, ପ୍ରଶାସନିକ ଅପାରଗତା ଓ ଉଦାସୀନତା ଫଳରେ ପ୍ରାୟ ୧୦ ଲକ୍ଷ ଲୋକଙ୍କର ଅନାହାର ଜନିତ ମୃତ୍ୟୁ ଘଟିଥିଲା। ସେତେବେଳେ ବଡଲାଟ୍ ଥିଲେ ଲର୍ଡ ଲରେନ୍ସ, ବଙ୍ଗ ପ୍ରଦେଶର ଛୋଟଲାଟ୍ ଥିଲେ ସିସିଲ ବିଡନ୍ ଓ ୧୮୬୫ ମସିହାରେ କଟକ ଡିଭିଜନର କମିସନର ଭାବେ ଯୋଗ ଦେଇଥିଲେ ଟି. ଇ. ରେଭେନ୍‌ଶା। ଦ୍ୱିତୀୟ ଘଟଣାଟି ଥିଲା ବହୁ ପ୍ରଚେଷ୍ଟା ପରେ ୧୮୬୮ ମସିହା ଜାନୁୟାରୀ ୨୦ ତାରିଖରେ କଟକ ଜିଲ୍ଲା ସ୍କୁଲରେ ସେହି ସ୍କୁଲରୁ ପାସ୍ କରିଥିବା ୪ ଜଣ ଛାତ୍ରଙ୍କୁ ନେଇ ଆରମ୍ଭ ହୋଇଥିଲା ଓଡ଼ିଶାରେ କଲେଜ ଶିକ୍ଷାର ପ୍ରଥମ ବର୍ଷ। ଅବଶ୍ୟ ପରେ ଆଉ ଦୁଇଜଣ ଛାତ୍ର ସେହି କ୍ଲାସରେ ଯୋଗ ଦେଇଥିଲେ। ଆରମ୍ଭ ହୋଇଥିଲା ଓଡ଼ିଶାରେ ଉଚ୍ଚଶିକ୍ଷାର ଆଦ୍ୟ ଅଧ୍ୟାୟ। ସେଯାଏ ଓଡ଼ିଶାରେ ଉଚ୍ଚଶିକ୍ଷା ପାଇଁ କୌଣସି କଲେଜ ନଥିବାରୁ ଏହି ଅଭାବ ପୂରଣ ପାଇଁ ହୋଇଥିବା ପ୍ରଚେଷ୍ଟାର ପୃଷ୍ଠଭୂମିରେ ଥିଲା କମିସନର୍ ରେଭେନ୍‌ଶାଙ୍କ ତଥ୍ୟନିଷ୍ଠ ସରକାରୀ ସୁପାରିଶ। ଏକ ଡିଗ୍ରୀ କଲେଜ ପାଇଁ ଅନେକ ଦାବି ହେବାପରେ ଓଡ଼ିଶାରେ ପ୍ରଥମ କଲେଜ କଟକରେ ୧୮୭୬ ମସିହା ଫେବୃଆରୀ ୨୩ ତାରିଖରୁ ଆରମ୍ଭ ହୋଇଥିଲା ଓ ଏହାର ପ୍ରଥମ ଅଧ୍ୟକ୍ଷ ଥିଲେ ସାମୁଏଲ୍ ଏଜାର୍। ପ୍ରଥମ ଦୁଇବର୍ଷ (୧୮୭୮ ଓ ୧୮୭୯ ମସିହା) ଏହି କଲେଜରୁ ଯଥାକ୍ରମେ ୫ ଜଣ ଓ ୪ ଜଣ ବି.ଏ. ପରୀକ୍ଷା ଦେଇଥିଲେ ମଧ୍ୟ କେହି ହେଲେ ପାସ୍ କରିନଥିଲେ। ୧୮୮୦ ମସିହାରେ ପ୍ରଥମ ଥର ପାଇଁ ଜଣେ ଓଡ଼ିଆ ଛାତ୍ର ଦୁର୍ଗାଚରଣ ସାହୁ ବି.ଏ. ପରୀକ୍ଷାରେ ପାସ୍ କଲେ।

କଲେଜର ନୂତନ ଗୃହ ନିର୍ମାଣ ନିମନ୍ତେ ମୟୁରଭଞ୍ଜ ମହାରାଜା କୃଷ୍ଣଚନ୍ଦ୍ର ଭଞ୍ଜ ୨୦,୦୦୦ ଟଙ୍କା ଦାନ କରିଥିଲେ ଓ ତାଙ୍କ ଇଚ୍ଛା ଅନୁଯାୟୀ ୧୮୭୯ ମସିହାରେ ଏହି କଲେଜର ନାମ ରେଭେନ୍‌ଶା କଲେଜ ରଖାଯାଇଥିଲା। ସେତେବେଳକୁ କିନ୍ତୁ ରେଭେନ୍‌ଶା ୧୮୭୮ ମସିହା ଏପ୍ରିଲ୍ ମାସରୁ ଓଡ଼ିଶାରୁ ବିଦାୟ ନେଇ ବିଲାତ ଚାଲିଯାଇଥିଲେ।

ବଡ଼ଲାଟ ଲର୍ଡ ମେୟୋ ଆଣ୍ଡାମାନ ଗସ୍ତ ଶେଷ କରି ଓଡ଼ିଶା ଆସିବାର ଥିଲା। ମାତ୍ର ସେଠାରେ ଜଣେ ଆତତାୟୀ ଦ୍ୱାରା ନିହତ ହୋଇଥିଲେ। ଦୁର୍ଘଟଣା ଖବର ପାଇବା ପରେ ତାଙ୍କର ସ୍ମୃତିରକ୍ଷା ପାଇଁ ଓଡ଼ିଶାର ରାଜା ମହାରାଜାମାନେ ୧୪,୦୦୦ ଟଙ୍କା ଦାନ କରିଥିଲେ। ସେହି ଟଙ୍କାର ସୁଧରେ ତିନିଗୋଟି ଛାତ୍ରବୃତ୍ତି କଲେଜରେ ବି.ଏ. ଓ ଏମ୍.ଏ. ପଢ଼ିବା ପାଇଁ ଦିଆଗଲା।

୧୮୯୧ ମସିହାରେ ଇଂରାଜୀରେ ଏମ.ଏ. କ୍ଲାସ୍ ଖୋଲା ଯାଇଥିଲା। ମାତ୍ର ୧୮୯୪ରୁ ୧୯୦୦ ମସିହା ମଧ୍ୟରେ ଏହି ଶ୍ରେଣୀରେ ଛାତ୍ରମାନେ ନାମ ନଲେଖାଇବାରୁ ବହୁ ସିଟ୍ ଖାଲି ପଡ଼ିଲା। ଏଣୁ ୧୯୦୩ ମସିହାରେ ଏହାକୁ ବନ୍ଦ କରି ଦିଆଗଲା। ସେହିଭଳି ୧୯୦୫ ମସିହା ପର୍ଯ୍ୟନ୍ତ କଲେଜରେ ଛାତ୍ରସଂଖ୍ୟା ମଧ୍ୟ ଆଶାନୁରୂପ ବୃଦ୍ଧି ପାଇଲା ନାହିଁ। ୧୮୮୨ ମସିହାରେ କଲେଜର ଛାତ୍ରସଂଖ୍ୟା ୩୮ ଥିଲାବେଳେ ୧୯୦୦ ମସିହାରେ ଏହି ସଂଖ୍ୟା ବୃଦ୍ଧି ପାଇ ୯୭ ହୋଇଥିଲା। ମାତ୍ର ୧୯୦୫ ମସିହାରେ ଏହା ୭୫କୁ ଖସି ଆସିଥିଲା। ଏହାର ପ୍ରମୁଖ କାରଣ ଥିଲା ଯେ ୧୮୯୬ ମସିହାରେ ଓଡ଼ିଶା କଲିକତା ସହ ରେଳପଥରେ ସଂଯୁକ୍ତ ହୋଇଯିବା ପରେ ଗମନାଗମନ ସୁବିଧା ଯୋଗୁ ବହୁ ଛାତ୍ର କଲିକତାରେ ପଢ଼ିବାକୁ ଚାଲିଯାଉଥିଲେ। ଧୀରେ ଧୀରେ ଅବସ୍ଥା ସୁଧୁରିବାକୁ ଲାଗିଲା। ୧୯୦୭ ମସିହାରେ କଲେଜରେ ୧୫୮ ଜଣ ଛାତ୍ର ନାମ ଲେଖାଇଥିଲେ। ୧୯୧୨ ମସିହାରେ ଏହା ୨୮୦ ଓ ୧୯୧୫ ମସିହାରେ ଛାତ୍ରସଂଖ୍ୟା ୩୭୫ରେ ପହଞ୍ଚିଯାଇଥିଲା। ବିଜ୍ଞାନ ଓ କଳାରେ ସ୍ନାତକ ସ୍ତରରେ ନୂଆ ନୂଆ ବିଭାଗ ଖୋଲିବା ଫଳରେ ଛାତ୍ର ସଂଖ୍ୟା ବଢ଼ିବାକୁ ଲାଗିଲା। ଏହାଫଳରେ କଲେଜରେ ସ୍ଥାନାଭାବ ହେବାରୁ ୧୯୧୬ ମସିହାରେ ପ୍ରାୟ ୮୪ ଏକର ଜମି ଗ୍ରହଣ କରାଯାଇ ଚାଉଳିଆଗଞ୍ଜଠାରେ କଲେଜର ନିଜସ୍ୱ ଗୃହ ପ୍ରାୟ ୧୦ ଲକ୍ଷ ଟଙ୍କା ବ୍ୟୟରେ ନିର୍ମାଣ କରାଗଲା। ଏହି ନୂତନ କଲେଜ ଗୃହ ୧୯୨୧ ମସିହା ଏପ୍ରିଲ ୫ ତାରିଖ ଦିନ ତତ୍କାଳୀନ ଗଭର୍ଣ୍ଣରଙ୍କ ଦ୍ୱାରା ଉଦ୍‌ଘାଟିତ ହୋଇଥିଲା। ୧୯୨୧ ମସିହା ଜୁଲାଇ ମାସରେ ଏହା ନୂତନ ଗୃହକୁ ସ୍ଥାନାନ୍ତରିତ ହୋଇଥିଲା। ଏହି ବର୍ଷ ହିଁ ଅସହଯୋଗ ଆନ୍ଦୋଳନ ଆରମ୍ଭ ହୋଇଯାଇଥିବାରୁ ଓ କଲେଜର ବହୁ ଛାତ୍ର ଆନ୍ଦୋଳନରେ ସକ୍ରିୟ ଅଂଶଗ୍ରହଣ କରିଥିବାରୁ ସେମାନଙ୍କ ବିରୋଧରେ ଶୃଙ୍ଖଳାଗତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଇଥିଲା। ଏଣୁ ପୁଣିଥରେ ଛାତ୍ର ସଂଖ୍ୟା କମି ୧୯୨୧ ମସିହାରେ ୩୬୮କୁ ଖସି ଆସିଥିଲା।

ଏକ ଅର୍ଥରେ ରେଭେନ୍‌ଶା କଲେଜ ହିଁ ଥିଲା ଓଡ଼ିଶାରେ ରେନାସାଁ ବା ନବଜାଗରଣର ଆଦିଭୂମି। ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧରେ ଓଡ଼ିଆ ଜାତୀୟତାବାଦୀ ମାନଙ୍କ ଦ୍ୱାରା ସୃଷ୍ଟି ହୋଇଥିବା ଗଣକ୍ଷେତ୍ର (Public Space) ବିଂଶ ଶତାବ୍ଦୀର ଦ୍ୱିତୀୟ ଦଶକ ବେଳକୁ ଏକ ବିଶାଳ ଆକାର ଧାରଣ କରି ସାରିଥିଲା। ଏସବୁ ଆନ୍ଦୋଳନ, ବିଦ୍ରୋହ, ବିପ୍ଳବର ପୁରୋଭାଗରେ ଥିଲେ ଏକ ଇଂରାଜୀ ଶିକ୍ଷିତ ନବ୍ୟ ଓଡ଼ିଆ ମଧ୍ୟବର୍ଗ। ରେଭେନ୍‌ଶାରୁ ଉତ୍ତୀର୍ଣ୍ଣ ବହୁ ତରୁଣ ତରୁଣୀ ଏହି ସାମାଜିକ, ରାଜନୈତିକ ଆନ୍ଦୋଳନରେ

ସାମିଲ ହୋଇ ସାରିଥିଲେ। ୧୯୦୫ ମସିହାରେ ଓଡ଼ିଶା ସହ ସମ୍ବଲପୁରର ମିଶ୍ରଣ, ୧୯୨୧ରେ ଅସହଯୋଗ ଆନ୍ଦୋଳନ, ୧୯୩୪ରେ ଓଡ଼ିଶାରେ ଗାନ୍ଧିଜୀଙ୍କ ହରିଜନ ପଦଯାତ୍ରା, ୧୯୪୨ରେ ଭାରତଛାଡ଼ ଆନ୍ଦୋଳନ ସବୁର ପ୍ରତିଧ୍ୱନି ଶୁଭୁଥିଲା ଏହି କଲେଜର ପରିସରରେ। ଗୋପବଂଧୁ, ନୀଳକଂଠ, ଗୋଦାବରୀଶ, ସାରଙ୍ଗଧର, ହରେକୃଷ୍ଣ ମହତାବ, ନନ୍ଦିନୀ ଶତପଥୀ, ନୀଳମଣି ରାଉତରାୟ, ବୀରେନ୍ ମିତ୍ର, ଜାନକୀ ବଲ୍ଲଭ ପଟ୍ଟନାୟକ ଓ ବିଜୁ ପଟ୍ଟନାୟକ ସମସ୍ତେ ଏକଦା ଥିଲେ ଏଇ କଲେଜର ଛାତ୍ର। ଓଡ଼ିଶାର ଅନେକ ମୁଖ୍ୟମନ୍ତ୍ରୀଙ୍କର ରାଜନୈତିକ ଜୀବନର ମୂଳଭିତ୍ତି ପଡ଼ିଥିଲା ଛାତ୍ରାବସ୍ଥାରେ, ଏହି କଲେଜରେ।

ରାଜନୀତି ବ୍ୟତୀତ ଶିକ୍ଷା, ସାହିତ୍ୟ, ସଂସ୍କୃତି, କଳା ସବୁକୁ ଏଯାବତ୍ ପ୍ରଚଳିତ ଉପନିବେଶବାଦୀ ବ୍ୟାଖ୍ୟା ଠାରୁ ଅଲଗା କରି ଦେଖିଥିଲେ ଏଠି ପଢୁଥିବା ତରୁଣମାନେ। ସେମାନେ ପୁଣିଥରେ ସବୁ ପ୍ରଚଳିତ ମୂଲ୍ୟବୋଧର ପୁର୍ନମୂଲ୍ୟାୟନ କଲେ। ଆରମ୍ଭ ହୋଇଥିଲା ଗୋପବଂଧୁଙ୍କ 'ସତ୍ୟବାଦୀ'ର କଳ୍ପନା, କାଳିନ୍ଦୀଚରଣଙ୍କ 'ସବୁଜ'ର ସ୍ୱପ୍ନ। ପୁଣି ଏଇଠୁ ବାହାରିଥିଲା ବିଂଶ ଶତାବ୍ଦୀ ଓଡ଼ିଆ ଆଧୁନିକତାର ଆଦ୍ୟସ୍ରଷ୍ଟା ସଚ୍ଚିଦାନଂଦ ରାଉତରାୟଙ୍କ କବିତା ଯାତ୍ରା। ଏଇଥିପାଇଁ ତ ରେଭେନ୍ଶା କଲେଜ କେବଳ ଏକ ଔପନିବେଶିକ ଐତିହ୍ୟ ନୁହେଁ ବରଂ ଓଡ଼ିଆ ଜାତୀୟ ଜୀବନର ଏକ ଅନୁପମ ପରିଚିତି।

୧୮୮୩ ମସିହାରୁ ରେଭେନ୍ଶା କଲେଜରେ ଅଧ୍ୟାପନା କରିଥିବା ଯୋଗେଶଚନ୍ଦ୍ର ରାୟଙ୍କ ଠାରୁ ୧୯୪୭ ମସିହାରେ ଛାତ୍ର ଥିବା ସନାତନ ପତିଙ୍କ ଯାଏ ଛ' ଦଶକରୁ ଊର୍ଦ୍ଧ୍ୱକାଳ ଧରି ଲମ୍ବିଥିବା ଉପନିବେଶିକ କାଳଖଣ୍ଡର ଅବତାରଣା କରାଯାଇଛି ଏଠାରେ। ପ୍ରାକ୍ ସ୍ୱାଧୀନତା କାଳରେ ସଂଗଠିତ ନାନା ସାମାଜିକ, ରାଜନୀତିକ ଓ ସାଂସ୍କୃତିକ ଘଟଣାବଳୀର ବର୍ଣ୍ଣନା ରହିଛି ଏହି ବ୍ୟକ୍ତିଗତ ଅନୁଭୂତି ଗୁଡ଼ିକରେ। ଆତ୍ମକଥାର ଆଂଗିକରେ ରଚିତ ଏସବୁ ଅନୁଭୂତି ଆମ ପାଇଁ ଅନନ୍ୟ। ସମୟର ସବୁ ମୋଡ଼ରେ ସେମାନେ ଭେଟିଛନ୍ତି ଅନେକ ଅନେକ ଚରିତ୍ର, ଘଟଣା, ଦୃଶ୍ୟ ଓ ଉପଲବ୍ଧି। ଏସବୁ ଜାଣିବା ପାଇଁ ଆମେ ଇତିହାସ ଖୋଜିନାହୁଁ। କାରଣ ଇତିହାସ ଦଲିଲ, ନଥି, ପୋଥି, ସନନ୍ଦ, ଶିଳାଲେଖ ଉପରେ ନିର୍ଭରଶୀଳ। ଇତିହାସରେ ବ୍ୟକ୍ତି ଓ ଅନୁଷ୍ଠାନ ସବୁ ଅତୀତ, ମୃତ। ମାତ୍ର ଆମେ ଲେଖୁଥିବା ଇତିହାସର ଉପାଦାନ- ବ୍ୟକ୍ତି ଓ ତା'ର ଜୀବନ୍ତ ସ୍ମୃତି। ସମୟ ଓ ଘଟଣା ମାନଙ୍କୁ ନିଜ ଦୃଷ୍ଟିରେ ସେମାନେ ଦେଖିଛନ୍ତି ଓ ନିଜ ବାଗରେ ଲେଖିଛନ୍ତି। ଏଇଥିପାଇଁ ଏସବୁ କଥା ଏତେ ସତ ଲାଗେ, ଏତେ ଜୀବନ୍ତ ଜଣାପଡ଼େ। ଏଣୁ ସେମାନଙ୍କ

କଲେଜ ଜୀବନରେ ଘଟିଥିବା ନାନା ସର୍ବସାଧାରଣ ଘଟଣା ଗୁଡିକୁ ଆମେ ସଂଗ୍ରହ କରିଛୁ ଅଭିଲେଖାଗାରର ନଥିରୁ ନୁହେଁ, ବରଂ ସେମାନଙ୍କ ସାଇତା ସ୍ମୃତିରୁ । ଏଇଥିପାଇଁ ତ ଆମର ଇସ୍ତାହାର ହୋଇଯାଇଛି ଏକ ଅଂତରଂଗ ଇତିହାସ ।

ରେଭେନ୍‌ଶାର ଏ ହେଉଛି ଏକ ଅଂତରଂଗ ଇତିହାସ- ଯାହାର ଜନ୍ମ ଶିଳାଲେଖରୁ ନୁହେଁ, ସ୍ମୃତିଲେଖରୁ ।

ଆମର ଆଶା ଓଡ଼ିଶାରେ ଥିବା ପ୍ରାଚୀନ ଶିକ୍ଷା, ସଂସ୍କୃତି ଓ କଳା ଅନୁଷ୍ଠାନ ଗୁଡ଼ିକର ଇତିହାସ ଲେଖାଗଲେ ତାହା ସେହି ଅନୁଷ୍ଠାନ ଗୁଡ଼ିକର ଅତୀତର ଭୂମିକା ସଂପର୍କରେ ଆମର ସଚେତନତା ଓ ସେଗୁଡ଼ିକର ବର୍ତ୍ତମାନର ପ୍ରାସଂଗିକତା ବୃଦ୍ଧି କରିବ । ଆମର ଧାରଣା ଅନୁଷ୍ଠାନ ଗୁଡ଼ିକର ଅବକ୍ଷୟ କ୍ରମଶଃ ସମାଜ, ରାଷ୍ଟ୍ର ଓ ବ୍ୟକ୍ତିଗତ ଜୀବନର ଅବକ୍ଷୟ ପାଇଁ ଆମ ଅଲକ୍ଷ୍ୟରେ ଭିତ୍ତିଭୂମିଟିଏ ପ୍ରସ୍ତୁତ କରିଦିଏ । ଆମେ ଏସବୁ ବିଷୟରେ ଆଉ କେତେଦିନ ଉଦାସୀନ ରହିପାରିବା ?

ପୁସ୍ତକରେ ପ୍ରକାଶିତ କିଛି ଲେଖା ପ୍ରଥମେ ନିଶାନ୍ତ ପତ୍ରିକାର ୨୦୧୫ ଶରତ ସଂଖ୍ୟାରେ ପ୍ରକାଶିତ ହୋଇଥିଲା । ଏହାପରେ ଅନେକ ଲେଖା ସଂଯୋଗ କରାଯାଇ ଏହି ପୁସ୍ତକରେ ପ୍ରକାଶ କରାଯାଇଛି । ପୁସ୍ତକଟି ପ୍ରକାଶ କରିବା ସମୟରେ ମୁଁ ଶିକ୍ଷାସନ୍ଧାନ ଲାଇବ୍ରେରୀରୁ ବହୁ ଲେଖା ସଂଗ୍ରହ କରିଛି । ଏଣୁ ମୁଁ ଶିକ୍ଷାସନ୍ଧାନ କର୍ତ୍ତୃପକ୍ଷଙ୍କ ନିକଟରେ ଋଣୀ । ବନ୍ଧୁ ପ୍ରଫେସର ଯତୀନ୍ଦ୍ର ନାୟକ ବହୁ ଉପାଦେୟ ପରାମର୍ଶ ଦେଇଥିବାରୁ ମୁଁ ତାଙ୍କ ନିକଟରେ କୃତଜ୍ଞ । ଏ ବିଷୟରେ ଗବେଷଣା କରିବା ସମୟରେ ମୁଁ ରେଭେନ୍‌ଶା ବିଶ୍ୱବିଦ୍ୟାଳୟ ଅଭିଲେଖାଗାରରୁ ଅନେକ ତଥ୍ୟ ଓ ଦଲିଲ ସଂଗ୍ରହ କରିଛି । ଏଥିପାଇଁ ବିଶ୍ୱବିଦ୍ୟାଳୟର କୁଳପତି ଓ ସଂପୃକ୍ତ କର୍ତ୍ତୃପକ୍ଷଙ୍କ ନିକଟରେ ମୁଁ କୃତଜ୍ଞ । ବିଶେଷ ଭାବେ ଏସବୁ ତଥ୍ୟ ଯୋଗାଇ ଦେଇଥିବାରୁ ଓ ଆବଶ୍ୟକୀୟ ପରାମର୍ଶ ଦେଇଥିବାରୁ ମୁଁ ଇତିହାସ ବିଭାଗ ପ୍ରଫେସର ଡଃ ଉମାକାନ୍ତ ମିଶ୍ରଙ୍କ ନିକଟରେ ଗଭୀର ଭାବେ କୃତଜ୍ଞ ।

ଆଶା ପୁସ୍ତକଟି ଉପନିବେଶିକ ଓଡ଼ିଶାର ସମାଜ, ସାହିତ୍ୟ, ସଂସ୍କୃତି, ଧର୍ମ, ରାଜନୀତିକ ଆନ୍ଦୋଳନ ଓ ସ୍ୱାଧୀନତା ସଂଗ୍ରାମକୁ ବୁଝିବାରେ ସହାୟକ ହେବ ।

ସଂଗ୍ରାମ ଜେନା

ରେଭେନ୍ସା କଲେଜ (ପୁରୁଣା ସୌଧ)

ରେଭେନ୍ସା କଲେଜ ସ୍ମାରକୀ ଡାକ ଟିକଟ (୧୯୭୦)



# SUCCESSION LIST OF PRINCIPALS

| | |
|---|---|
| 1876 | S. Ager |
| 1897 | Nilakantha Mazumdar |
| 1897 | N. L. Hallward |
| 1900 | K. Raichowdri (Offg.) |
| 1901 | Rai Bahadur B.V. Gupta |
| 1909 | Upendranath Maitra (Offg.) |
| | Rai Bahadur J.C. Roy (Offg.) |
| | R. W. F. Shaw |
| 1915 | H. Lambert |
| 1920 | Jadunath Sarkar (Offg.) |
| | P.O. Whitlock (Offg.) |
| 1921 | H. Lambert |
| 1923 | P.O. Whitlock (Offg.) |
| | W. Owston Smith (Offg.) |
| 1924 | H. Lambert |
| 1926 | P.O. Whitlock (Offg.) |
| | H. Lambert |
| 1928 | P.O. Whitlock (Offg.) |
| | T. C. Orgill |
| 1931 | W. V. Duke |
| 1934 | H. R. Batheja |
| | B.K. Singh |
| 1936 | S. C. Tripathi |
| | P. Parija (Offg.) |
| | K. P. Sinha (Offg.) |
| | S. C. Tripathi |
| 1938 | P. Parija |
| 1941 | B. Prasad, (Offg.) |
| | P. Parija |
| 1945 | S. Roy |
| 1948 | M. C. Pradhan |
| 1949 | G B. Banerjea |
| 1953 | B. C. Das |
| 1957 | S. Misra |
| 1958 | B. Samantarai (Offg.) |
| 1959 | S. Misra |
| 1961 | B. Samantarai |
| 1966 | R. Mohanty |
| 1968 | D. C. Misra (Offg.) |
| | Bidhubhusan Das |
| | D. C. Misra |



## ଉତ୍କଳ ଦୀପିକାରେ କଟକ କଲେଜ ପ୍ରତିଷ୍ଠା ସମ୍ବାଦ (୧୮୭୬)

# ଉତ୍କଳ ଦୀପିକା

ସାପ୍ତାହିକ ସମ୍ବାଦପତ୍ରିକା

### ସାପ୍ତାହିକ ସଂବାଦ ।

"ଗତ ମାସରେ ଶିକ୍ଷା ବିଭାଗର ଡାଇରେକ୍ଟର ଏଠାକୁ ଆସି କଟକ କଲେଜ ଫିଟାଇ ଗଲେ । ଶ୍ରୀଯୁକ୍ତ ଏଜର ସାହେବ ବର୍ତ୍ତମାନ ପ୍ରିନ୍‌ସିପାଲ ଉପାଧି ଧାରଣ କରିଅଛନ୍ତି ।"

*ଉତ୍କଳ ଦୀପିକା-୦୪ ମାର୍ଚ୍ଚ ୧୮୭୬ ରେ ପ୍ରକାଶିତ*

ସୁନକରରେ ପଢ଼ି ହେଇଚନ୍ତି କଟକ କଲେଜର ପ୍ରିନ୍‌ସିପାଲ । ବସାକୁ ଫେରିବା ବାଟରେ ଦୁର୍ଗାଦାସ ବାବୁଙ୍କ ମୁହଁରୁ ଶୁଣିଲି, ଶ୍ରୀରାମପୁର କମିଦାର ହେମେନ୍ଦ୍ର ଗୋସ୍ୱାମୀଙ୍କ ବଡ଼ ଜାମାତା ଏଇ ଉପେନ୍ଦ୍ର ମୈତ୍ର । ଶ୍ୱଶୁରଙ୍କର ତିନି କନ୍ୟା, ପୁତ୍ରସନ୍ତାନ ନାହିଁ । ଶ୍ୱଶୁର ଚାହିଁଥିଲେ ଉପେନ୍ଦ୍ରବାବୁ ଘରଜୋଇଁ ହୋଇ ରହିବେ, କିନ୍ତୁ ଜ୍ୟେଷ୍ଠଜାମାତା କର୍ଣ୍ଣପାତ ନ କରି ଶହେ ଟଙ୍କା ଦରମାରେ ପଡ଼ିରହିଚନ୍ତି ଏଇ ଦୂରଦେଶରେ ।

ତହିଁ ଆରଦିନ ଏପ୍ରିଲ୍ ୧୭, ମଙ୍ଗଳବାର; କାଳୀପଦବାବୁଙ୍କ ବସାରେ ଯାଇ ଉଠିଲି, କଲେଜକୁ ମୋଟେ ଦଶମିନିଟ୍ ବାଟ । ଚୁଁଚୁଡ଼ାରୁ ଚିଠି ଲେଖିଥିଲି, ଉତ୍ତରରେ କାଳୀପଦବାବୁ ବର୍ଣ୍ଣନା କରିଥିଲେ ତାଙ୍କ ବସା ନିକଟରେ ବହିଯାଉଥିବା କାଠଯୋଡ଼ି ନଈ ଆଉ ପଶ୍ଚିମଦିଗରେ ଦିଶୁଥିବା ପର୍ବତଶ୍ରେଣୀ ଉପରେ ସୂର୍ଯ୍ୟାସ୍ତର ସୌନ୍ଦର୍ଯ୍ୟ । କାଳୀପଦ ବାବୁ ଓରଫ କେ.ପି.ବସୁ ହେଲେ ସେଇ ବ୍ୟକ୍ତି ଯାହାଙ୍କ କଲ୍ୟାଣରୁ ଅସଂଖ୍ୟ ଛାତ୍ରଙ୍କ ହାତକୁ ଆସିଚି ଅଧମତାରଣ Algebra made easy । ଗଣିତରେ ଏମ୍.ଏ. ପାସ୍‌କରି ଏକାଉଣ୍ଟାଣ୍ଟ୍ ଜେନେରାଲ୍ ଅଫିସରେ ପଶିଥିଲେ, ବର୍ଷକଯାଏଁ ଚାକିରି ବି କରିଥିଲେ; କିନ୍ତୁ ଦେଖିଲେ କେବଳ ମିଶାଣ-ଫେଡ଼ାଣ-ହରଣ-ଗୁଣନ ରାଜତ୍ୱ । ସେଇ ଦୁଃଖରେ ଚାକିରି ଛାଡ଼ିଦେଇ ଗଣିତର ଲେକ୍‌ଚରର୍ ହୋଇ କଟକ ଆସିଚନ୍ତି ମୋ ଆସିବା ଦୁଇମାସ ଆଗରୁ । ଅଧ୍ୟବସାୟ କରି ଶିଖିଥିବା ଗଣିତବିଦ୍ୟା ଅନ୍ତତଃ କିଛି କାମରେ ଲାଗିବ । ବସାଟା ନିର୍ଜନ ଜାଗାରେ ଗୋଟାଏ କୋଠାଘର, ବାଂଲୋ ଧରଣର, ସମ୍ମୁଖରେ କାଠଯୋଡ଼ି; ସାଙ୍ଗରେ ସାନଭାଇ ପ୍ରସନ୍ନକୁ ରଖିଚନ୍ତି, କଲେଜିଏଟ୍ ଇସ୍କୁଲରେ ପଢ଼େ । ଏବେ ଯୁକ୍ତ ହେଲୁଁ ମୁଁ ଓ ମୋ ଭୃତ୍ୟ ଅକ୍ଷୟ ।

ଦଶଟା ନବାଜୁଣୁ କୋଟ୍-ପ୍ୟାଣ୍ଟଲୁନ୍-ଟୋପି ନାଇ ଚାଲିଲି କଲେଜକୁ; ମାତ୍ର ଏ ଫେର୍ କି ରକମ କଲେଜ ! ସାମ୍ନାରେ ବେକାଏ ପଡ଼ିଆ, ତା ଭିତରେ ଏଠି-ସେଠି ଉଇ-ହୁଙ୍କା, ସପ୍ତଫେଣି ନାଗଫେଣି କଣ୍ଟା, ଘରଟା ବି ବେଢ଼ଙ୍ଗା । ତାକୁ କଲେଜ କହିବା ପରିହାସ ମାତ୍ର । ଘର ଆଗରେ ଦେଖିଲି ଗାଡ଼ି-ବାରନ୍ଦା ପାଇଁ ଗାଛେଣି ଉଠୁଚି, ତା ଉପରକୁ ଅସଲ ବାରନ୍ଦା, ଏତକ ଉତ୍ତରପଟ । ତା ବାଦେ ପୂର୍ବରୁ ପଶ୍ଚିମକୁ ଲମ୍ବିଯାଇଚି ଧାଡ଼ିଏ ଘର, ସେଥିରେ ଚାରିଟି ବଖରା । ୯' x ୨୦', ୨୨' x ୨୦', ୨୨' x ୨୦'. ୯'x୨୦' । ସେ ଧାଡ଼ି ପଛକୁ ଏକାମାପର ଆଉ ଚାରିଟି କୋଠରି । ତା ପଛକୁ ହଲ୍, ହଲ୍ ପାରିହେଲେ କଲେଜିଏଟ୍ ଇସ୍କୁଲ୍, ଚାଳଛପର । ଧନ୍ୟ ସେଇ ଇଞ୍ଜିନିୟର ଯିଏ କଲେଜ ନାଁରେ ତିଆରିକରିଚି ଉତ୍ତରରୁ ଦକ୍ଷିଣକୁ ଲମ୍ବା ଗୋଟାଏ ହାତୀଶାଳ । ସଂସ୍କୃତରେ ଇଞ୍ଜିନିୟର ହେଲେ ସୂତ୍ରଧର; ସୂତାଧରି ଗାଛେଣି ବସାନ୍ତି, ଏଠି ବସାଇଚନ୍ତି ପଶାପାଲି ଛକ । ନିଃଶ୍ୱାସ-ପ୍ରଶ୍ୱାସର ପ୍ରୟୋଜନ ମଧ୍ୟ ସ୍ୱୀକାର କରିନାହାନ୍ତି । କାଳୀପଦ ବାବୁ ଆ୍ୟାଗର୍ ସାହେବଙ୍କ କୋଠରିକୁ ଡାକି ନେଇଗଲେ, କୋଠରିଟି ସଙ୍କୀର୍ଣ୍ଣ ଓ ସରୁ; ସାହେବ ବେଶ୍ ବୁଢ଼ା, ଗାଲ ଦିପଟରୁ ଝୋଟ ଭଳି କେରାକେରା ଦାଡ଼ି ଝୁଲୁଚି, ଚିବୁକ କିନ୍ତୁ

ଖିଅରହୋଇ ପରିଷ୍କାର। ଏଭଳି ହକାମତହେବା ଦାଢ଼ି, ଚିତ୍ରରେ ଦେଖିଚି, ରଖିଥିଲେ ମାଇକେଲ୍ ମଧୁସୂଦନ ଦତ୍ତ। ହେଇପାରେ, ଏ ଗୋଟାଏ ମାନ୍ଦ୍ରାଜୀ ଫେସନ୍। ମାଇକେଲ୍ ତ ବହୁବର୍ଷ କଟାଇଥିଲେ ମାନ୍ଦ୍ରାଜରେ। ଗୁଡ୍‌ମର୍ଣ୍ଣିଙ୍ଗ୍ କହିବା ମାତ୍ରେ ମୁଣ୍ଡଟାକୁ ବହୁତ ତଳକୁ ଝୁଙ୍କାଇ ଗୁଣୁଗୁଣୁହୋଇ କଣ କହିଲେ ଶୁଣି ବି ପାରିଲିନାହିଁ। କିନ୍ତୁ ବସିବାକୁ କହିଲେ ନାହିଁ; ବୋଧହୁଏ ଏ ଶିଷ୍ଟାଚାର ତାଙ୍କୁ ଅଜ୍ଞାତ। ଘରଭିତରୁ ବାହାରିଆସି ଉତ୍ତରଦିଗ ବାରନ୍ଦାକୁ ଚାଲିଗଲେ, ସେଠି ଛିଡ଼ାହୋଇ ତାଙ୍କ ଦୁଃଖକଥା ସବୁ କହିଗଲେ, ଫେବୃୟାରୀ ମାସରୁ ସାଏନ୍‌ସ ଲେକ୍‌ଚରର୍ ପାଇଁ ଲେଖିଲେଣି, ଅଢ଼େଇମାସ ଡେରିକରି ଡିରେକ୍‌ଟର ଲୋକ ପଠାଇଚନ୍ତି, ଅଢ଼େଇମାସ ହେଲା ସାଏନ୍‌ସରେ କିଛିହେଲେ ପଢ଼ାଶୁଣା ହେଇପାରିନାହିଁ। ମୋତେ ତେଣୁ ବହକା ଖଟଣି ଖଟି ବାକି ପଡ଼ିଥିବା କାମଧନ୍ଦା ସାରିଦେବାକୁ ପଡ଼ିବ। ଏ ବର୍ଷ ପୁଣି ପଞ୍ଚମବର୍ଷ ଖୋଲିଚି, ଛାତ୍ର ଆସିଗଲେଣି, କିନ୍ତୁ ଅଳସୁଆହୋଇ ବସିରହିଚନ୍ତି। ହେଲେ, ପଞ୍ଚମବର୍ଷ ନାଁ ସେ ମୁହଁରେ ଧରିବେନାହିଁ, ଏମ୍.ଏ.ବି କହିବେ ନାହିଁ, ସବୁଗୁଡ଼ାକ ତାଙ୍କପାଇଁ 'ଅନର୍ସ'। ସେଥିପାଇଁ ଧରିବସିଥିଲେ, ଅନର୍ସ କ୍ଲାସରେ ପଢ଼ାଇବାକୁ ହେଲେ ଏକମାତ୍ର ଅନର୍ସ ହିଁ ପାରିବ, ଏମ୍.ଏ. ପାରିବନାହିଁ ଏବଂ, ସେଥିପାଇଁ ଲୋକ ପାଇବାକୁ ଡେରି ହେଇଚି ଏବଂ ସେଇ ଗୋଟିଏ କାରଣରୁ ବୋଧହୁଏ ଡି ପି ଆଇ ମୋତେ ପଠାଇଚନ୍ତି କଟକ। ନିଜ କୋଠରିକୁ ଫେରିଆସି ଏଥର 'ରୁଟିନ୍' ବାହାରକରି ଦେଖାଇଲେ, ସପ୍ତାହରେ ଛ' ଦିନ ମୋଟ ୨୭ ଘଣ୍ଟା ପଢ଼ାଇବାକୁ ପଡ଼ିବ, ରବିବାର ଛୁଟି। ଫେର୍ ବାହାରିପଡ଼ିଲେ ଘରଦ୍ୱାର ଦେଖାଇବେ। ସବୁଠୁଁ ବଡ଼ ଘର ୨୨'x୪୨' ଯୋଉ ହଲ୍, ସେ ହେଲା ଲାଇବ୍ରେରୀ; ତା ଉତ୍ତରକୁ ଯୋଉ ଦି ବଖରା, ସେଠିକି ଯିବାକୁ ବାଟ କିନ୍ତୁ ହଲ୍ ଭିତରୁ। ଗୋଟାଏ ତୃତୀୟବର୍ଷର ଶ୍ରେଣୀଗୃହ, ଆରଟା କେମିଷ୍ଟ୍ରି କର୍ମଶାଳା ତଥା ଶ୍ରେଣୀଗୃହ। ତା ମାପ ୨୨' x ୨୨', କିନ୍ତୁ ତିନିଆଡ଼ୁ ଅବରୁଦ୍ଧ, କାହିଁକି, ଅପର ଦିଗରେ ଅନ୍ୟ ଶ୍ରେଣୀଗୃହ, ହଲ୍ ଭିତରୁ ଖାଲି ଯାଇହେବ। କାନ୍ଥକୁ ଲାଗିଚି ଆଲମାରି, ତା ଭିତରେ ବିଜ୍ଞାନ କର୍ମଶାଳାର ବିବାଜ ଯନ୍ତ୍ରପାତି। ଘରର ଗୋଟେ ମୁଣ୍ଡରେ ପଡ଼ିଚି ଖଣ୍ଡେ ଅନୁଚ୍ଚ ଟେବୁଲ୍, ଟେବୁଲ୍ ପଛକୁ ଚେୟାର୍, ଟେବୁଲ୍ ଆଗକୁ ଅଳ୍ପ ଦୂରତ୍ୱ ରଖି ଛାତ୍ରଙ୍କ ପାଇଁ ବେଞ୍ଚ ଆଉ ଡେସ୍କ। ଏଭଳି ଗୋଦାମଘରେ ଗିରୀଶବାବୁ ଓ ଅତୁଲବାବୁ କେମିତି କଣ କରୁଥିଲେ ଭାବିଭାବି ଥଳକୂଳ ପାଇନାହିଁ। ତେବେ, ଲ୍ୟାବରେଟରୀ ଆସିଷ୍ଟାଣ୍ଟ୍ ଜଣେ ରହିଚି, ଓଡ଼ିଆ ଖ୍ରୀଷ୍ଟାନ୍। ବିନୀତଭାବେ ଆସି ଠିଆହେଲା; ତା ବେତନ ୧୦ଟଙ୍କା; ଅନୁପାତ ୧୦%, ଅର୍ଥାତ୍ ଶହେଟଙ୍କା ଲେକ୍‌ଚରର୍ ପାଇଁ ଦଶଟଙ୍କା ଆସିଷ୍ଟାଣ୍ଟ। ହୁଗୁଳୀ କଲେଜର ବି ଏକାଦଶା। ଆସିଷ୍ଟାଣ୍ଟ୍ କିନ୍ତୁ କାଚନଳ ବି ବଙ୍କାଇ ପାରେନା; ମୁଁ ମଧ୍ୟ ପାରୁନଥିଲି, ତେବେ ବୁଝୁଥିଲି ଏ ଅବସ୍ଥା କାମ୍ୟ ନୁହେଁ।

ହଲ୍‌ରୁ ବାହାରିଆସିଲେ ଉତ୍ତରପଟ ବାରନ୍ଦା ପୂର୍ବକୁ ଯୋଉ ବଖରା, ନ ଫୁଟରେ ଦଶଫୁଟ, ତା ପୁଣି ଅନର୍ସ ଶ୍ରେଣୀଗୃହ, ସାନି ଖୋଲିଚି, ବସିଚନ୍ତି ମାତ୍ର ତିନିଜଣ ଛାତ୍ର। ତା

ବାଦେ ଯୋଉ ଘର ୨୦' x ୧୨', କରାଯାଇଚି ପ୍ରଥମବର୍ଷର ଶ୍ରେଣୀଗୃହ; ତାକୁ ଲାଗିଚି ଦ୍ୱିତୀୟବର୍ଷର ୨୨' x ୨୨', ଛାତ୍ରସଂଖ୍ୟା ୩୦ କି ୩୨। ତା ପଛକୁ ଗୋଦାମ, ତୃତୀୟବର୍ଷ, ଛାତ୍ର ୧୦ କି ୧୨। ପଶ୍ଚିମକୁ ୯' x ୨୦' ଆଉ ଏକ ଘର, ଚତୁର୍ଥବର୍ଷ ଶ୍ରେଣୀଗୃହ, ଛାତ୍ର ଆଠ କି ଦଶ। ଘରସବୁ ଦେଖା ହୋଇଗଲା; ଏଥର ଉଦ୍ୟାନ ପରିଦର୍ଶନ। ଉଦ୍ୟାନ ତ ଆଉ ମାମୁଲି କୋଉ ବଗିଚା ନୁହେଁ, ରୀତିମତ ବଟାନିକାଲ୍ ଗାର୍ଡନ୍। କଲେଜଗୃହ ପୂର୍ବକୁ ପ୍ରାୟ ପନ୍ଦରଗୁଣ୍ଠ ଖୋଲାଜାଗା, ଉଦ୍ୟାନର ଲକ୍ଷଣ ସୁଦ୍ଧା ଦେଖିଲି ନାହିଁ, ଉଦ୍ଭିଦ କହିଲେ ଧାଡ଼ିକରି ଲଗାଯାଇଚି କେତେଗୁଡ଼ା ଚାରାଗଛ, ସତେଅବା ବିଲରେ ଧାନ ରୁଆହୋଇଚି। ସାତଜଣ ମାଳୀ ଗଳବସ୍ତ୍ର ଓ ଯୋଡ଼ହସ୍ତ ହୋଇ ଦଣ୍ଡାୟମାନ। ଏଇ ହେଲା କଲେଜ, ବି.ଏ. ପିଢ଼ିବା/ଅନର୍ସ ପଢ଼ିବା କଲେଜ; ପ୍ରାୟ ପିଲାଖେଳ। କଲେଜ ବସିଲାଣି ଚାରିବର୍ଷ ହେଲା, ଛାତ୍ରସଂଖ୍ୟା ସର୍ବମୋଟ ତଥାପି ମାତ୍ର ୮୦। ଛାତ୍ରଙ୍କ ମୁଣ୍ଡଗଣି କଲେଜର ଧରଣ ବୁଝିବା ଅବଶ୍ୟ ମୂର୍ଖତା, ମାତ୍ର କଟକ ଗୋଟାଏ ନଗର, ସେ ନଗର ନାଁରେ ହେଇଚି କିଲ୍ଲାର ନାଁ। ସେଠି ପୂର୍ବରୁ ଥିଲା ହାଇସ୍କୁଲ୍; ଏନ୍‌ଟ୍ରାନ୍‌ସ ପାସ୍ କରି ଏଫ୍.ଏ. ପଢ଼ିବାକୁ ପିଲା ଯାଉଥିଲେ କଲିକତା। ଜାହାଜରେ ଯାତାୟତ, କଲିକତାରେ ରହିବାକଷ୍ଟ ସାଙ୍ଗକୁ ଖର୍ଚ୍ଚ ଥିଲା ସାଧ୍ୟାତୀତ। ଇସ୍କୁଲ୍ ହଲ୍‌ରୁ ଉତ୍ତରକୁ ତେଣୁ ଦି' ବଖରା ପକାଘର ତିଆରିକରି ଆରମ୍ଭ କରିଥିଲେ ଏଫ୍.ଏ. କ୍ଲାସ୍। କିନ୍ତୁ ଏଫ୍.ଏ. ପାସ୍‌କରିପାରିଲେ ବି.ଏ. ପଢ଼ିବା ପକାଣେ ଫେର୍ କଲିକତା ନଗଲେ ନୁହେଁ। ଫେର୍ ସେଇ କଷ୍ଟ, ସେଇ ଖର୍ଚ୍ଚାଧିକ୍ୟ। ଆଉ ଦି'ବଖରା ଯୋଡ଼ିଦେଇ ତେଣୁ ବି.ଏ କ୍ଲାସ୍‌ର ସୂତ୍ରପାତ ୧୮୭୮ରେ। ଚାରିକ୍ଲାସ୍ ପାଇଁ ହେଇଗଲା ଚାରିବଖରା ଘର, ବାହୁଲ୍ୟ ତେଣୁ ବର୍ଜନୀୟ ? ବିଜ୍ଞାନ କ୍ଲାସ୍ ଚାହିଁ, କିନ୍ତୁ ଲାବରେଟରୀ କାହିଁ ? ସେଠୁ ବାଗେଇଲେ ଆଉ ଚାରି ବଖରା, ସେଥିରୁ ଗୋଟିଏ ନେଲେ ନିଜେ ପ୍ରିନ୍‌ସିପାଲ୍, ଗୋଟିଏ ହେଲା ଅଧ୍ୟାପକଙ୍କ କମନ୍‌ରୁମ୍, ଗୋଟିଏ ଅଫିସ୍; ଆଉ ଗୋଟିକ କେହି ନେଲେନାହିଁ। ସେଇଟା ତେଣୁ ବିଜ୍ଞାନର-କର୍ମଶାଳା। ଆଦ୍ୟ ଅବସ୍ଥାରେ ଏଫ୍.ଏ. ପଢ଼ିବାକୁ ପିଲା ମିଳିନାହାନ୍ତି ଯଥେଷ୍ଟ, ପାସ୍ ବି କରିଚନ୍ତି ଆହୁରି କମ୍, ବି.ଏ. ପରୀକ୍ଷାରେ ପାସ୍ କରିଚନ୍ତି ତଦପେକ୍ଷା ଅଳ୍ପ। ସରକାର ତେଣୁ ଟଙ୍କା ଖଟାଇବାକୁ ନାରାଜ; କଲେଜପାଇଁ ଉଦ୍‌ଯୋଗ କରିଚନ୍ତି ଯିଏ, ତାଙ୍କର ବି ସାହସ କୁଳେଇନାହିଁ ଏ ପରିସ୍ଥିତିରେ ଦାବି ଜଣାଇବାକୁ। ଗଭର୍ଣ୍ଣମେଣ୍ଟ୍ ତ କଲିକତାରେ, ଡି.ପି.ଆଇ.ବି କଲିକତାରେ। ସେ ନ ହେଲେ ଅବସ୍ଥାର ଗୁରୁତ୍ୱ ବୁଝିପାରିନାହାନ୍ତି, ମାତ୍ର ସ୍ଥାନୀୟ ଉଦ୍‌ଯୋଗୀ ସୁଦ୍ଧା ଭବିଷ୍ୟତ ସମ୍ଭାବନାକୁ ଉପେକ୍ଷା କରି, 'ଏବେ ତ ଚଳିଯାଉଚି' ବୋଲି ହାତଗୋଡ଼ ଜାକି ବସିରହିଚନ୍ତି ନିଷ୍କ୍ରିୟ। କଲେଜ କଲେ ଓକିଲ ବାହାରିବେ, ହାକିମ ବାହାରିବେ, ଚାକିରିବାକିରି ମିଳିବ ପିଲାଙ୍କୁ-ଏ ଖବର ଗାଁଗହଳିରେ ପହଞ୍ଚିବାକୁ ଡେରିହେବ ହୁଏତ, କିନ୍ତୁ ଖବରକୁ ଓଗାଳିବ ଜିଏ ? ସେତେବେଳେ ଏଇ କେତେଟା ଘର ଅଣ୍ଟିବ କାହାକୁ ? ଏ ଦୂରଦୃଷ୍ଟି, ଆଶ୍ଚର୍ଯ୍ୟ କଥା, ଜଣେ

କାହାରି ବି ନ'ଥିଲା; ଏପରିକି, ଯୋଉ ତିନିକଣ ପ୍ରିନ୍‌ସିପାଲଙ୍କୁ ଦେଖିଚି, କଣକ ଭିତରେ ବି ଦୂରଦୃଷ୍ଟିର ଆଭାସ ସୁଦ୍ଧା ଦେଖିନାହିଁ; ଢେର୍ ଝଗଡ଼ାକରିଚି, ଝଗଡ଼ାକରି ଅପ୍ରିୟ ହୋଇଚି; ତଥାପି ସେମାନେ ଶଙ୍କିତ, ଗଭର୍ଣ୍ଣମେଣ୍ଟ୍ ଏତେ ଟଙ୍କା ଦେବେନାହିଁ। ଅନେକ ପରେ ଘଟିଚି ଏସବୁ; କିନ୍ତୁ କଲେଜ ଖୋଲିଲା ଯେତେବେଳେ, ଓଡ଼ିଶା ଡିଭିସନ୍ କମିଶନର୍ କୁଆଡ଼େ ଲଢ଼ିଥିଲେ; ତାଙ୍କର ବି କଣ ଖିଆଲ ହୋଇନାହିଁ ଯେ କଲେଜ କ୍ରମଶଃ ବଢ଼ିବ ? ତାଙ୍କ ନାଁ ର୍‌ୟାଭେନ୍‌ଶ, ସେଇ ନାଁରୁ କଲେଜର ନାଁ ହୋଇଚି ରେଭେନ୍‌ସା କଲେଜ। ଲାଗୁଚି, ସାହେବ ଭାରି ଶସ୍ତାରେ ଖ୍ୟାତି ଆଦାୟ କରିନେଇଚନ୍ତି !

ପାଠ୍ୟବିଷୟ, ଦେଖିଲି, ହୁଗୁଳୀ କଲେଜ ସାଙ୍ଗରେ ସମାନ; କିନ୍ତୁ ଶିକ୍ଷକ କଣେ ଊଣା ବିଜ୍ଞାନ ବିଭାଗରେ। ହୁଗୁଳୀ କଲେଜରେ ପ୍ରିନ୍‌ସିପାଲ୍‌ଙ୍କ ସମେତ ସଂସ୍କୃତ ଓ ଫାର୍ସୀ ବିଭାଗ ଶିକ୍ଷକଙ୍କୁ ଧରାଯାଇଚି କଣେ ପ୍ରଫେସର୍; ଏଠି ଉପେନ୍ଦ୍ରବାବୁ ଇଂରେଜୀରେ ଲେକ୍‌ଚରର୍; ଦ୍ୱିତୀୟବର୍ଷ ତର୍କବିଦ୍ୟା ମଧ୍ୟ ପଢ଼ାନ୍ତି। ଅବିନାଶବାବୁ ଗଣତର ଆସିଷ୍ଟାଣ୍ଟ୍ ପ୍ରଫେସର୍; ତାଙ୍କୁ ସୁଦ୍ଧା ପ୍ରଥମ ଓ ଦ୍ୱିତୀୟବର୍ଷକୁ ଇତିହାସ ପଢ଼ାଇବାକୁ ପଡ଼େ। କାଳୀପଦବାବୁ ଗଣିତର ଲେକ୍‌ଚରର୍, ରାମପ୍ରସନ୍ନ ମୁଖୋପାଧ୍ୟାୟ ସଂସ୍କୃତର, କଣେ ମୌଲବୀ ଖାଲି ଫାର୍ସୀ ପଢ଼ାନ୍ତି। ମୁଁ ହେଲି ବିଜ୍ଞାନର ଲେକ୍‌ଚରର୍, ମୋ କାନ୍ଧରେ ପଡ଼ିଲା ଏଫ୍.ଏ.ର କେମିଷ୍ଟ୍ରି ଆଉ ବି.ଏ. ପରୀକ୍ଷାର ଚାରିଦିନରୁ ଦୁଇଦିନର ବିଷୟ; ସର୍ବୋପରି ରହିଚି ଅନର୍ସ କ୍ଲାସ୍। ଅର୍ଥାତ୍ ଦୁଇକଣଙ୍କ କାମ ମୋତେ ଚଳାଇବାକୁ ହେବ ଏକା ଏକା, ୨୭ ଘଣ୍ଟା ଲେକ୍‌ଚର; କିନ୍ତୁ ଲ୍ୟାବରେଟରୀରେ ଛ'ଦିନରେ ଅନ୍ତତଃ ନ'ଘଣ୍ଟା ପରିଶ୍ରମ ଦରକାର, ସେ ନ'ଘଣ୍ଟା କିନ୍ତୁ ହିସାବ ବହିର୍ଭୂତ। ମୋତେ ଚଳାଇ ଯାଇ ନ'ଥାନ୍ତା ତଥାପି, ନୂତନ ବ୍ରତୀ ଯଦି ହୋଇନଥାନ୍ତି। ପୁରୁଖା ହେଲି ଯେତେବେଳେ, ନ' କାଗାରେ ଲାଗିଲା ଛ'ଘଣ୍ଟା। କର୍ତ୍ତୃପକ୍ଷ କିନ୍ତୁ ବିଜ୍ଞାନର ଧାର ଧାରନ୍ତିନାହିଁ, ଲେକ୍‌ଚରର୍‌ଙ୍କ ମୁଣ୍ଡ ଗଣନ୍ତି। ପ୍ରାୟ ପେଷିହୋଇଯାଇଚି କଟକରେ, ଏତେରକମ ପାଠ ଆୟତ୍ତ କରିବି ବା କେତେବେଳେ ? କିନ୍ତୁ କଲେଜର ଦୀନଦଶା ଦେଖି ଡର କୁଆଡ଼େ ଉଡ଼ିଗଲା; ଅନାଗତ ଭୟ ବେଳେବେଳେ ଅତିକାୟ ଦିଶେ। ପରଦିନ ଚତୁର୍ଥବର୍ଷ ଛାତ୍ରଙ୍କୁ କହିଲି, 'ମୋର କିନ୍ତୁ ନିକର ବୋଲି ବେଶି ବିଦ୍ୟା ନାହିଁ, ଯା ପଢ଼ିଚି ସେତିକି ଉଗାରିଦେବି ମାତ୍ର।' ସ୍ପଷ୍ଟ କଥାରେ ଦେଖିଲି ପ୍ରୀତହେଲେ, ମୋ ପ୍ରତି ଶ୍ରଦ୍ଧା ବି କନ୍ମିଚି। ପଞ୍ଚମବର୍ଷର ମାତ୍ର ତିନିଟି ଛାତ୍ରଙ୍କୁ ସେମିତି କହିଲି, 'କାଣିଚ ତ, ଏଇ କେତେଦିନ ହେଲା ପାସ୍‌କରି ବାହାରିଚି, ତେବେବି ମୋ କଥା ମାନି ଚଳିବ ଯଦି ପାସ୍‌କରିଯିବ ଅଲ୍‌ବତ୍।' ସପ୍ତାହେ ଖଣ୍ଡେ ନଯାଉଣୁ, ଦି'କଣ (ଗୋକୁଳାନନ୍ଦ ଚୌଧୁରୀ ଓ ବ୍ରହ୍ମାନନ୍ଦ ଦାସ) କିନ୍ତୁ ଛତ୍ରଭଙ୍ଗ ଦେଲେ; ବାକି ରହିଲା ଏକମାତ୍ର ଗୋପାଳବଲ୍ଲଭ ଦାସ।

କଲେଜରୁ ଫେରେଁ କ୍ଳାନ୍ତହୋଇ, ଅନ୍ଧାର ହେଉହେଉ ଶୋଇପଡ଼େଁ । ପୁରୁଣା ଅଭ୍ୟାସ । କିନ୍ତୁ ଆହାର ମଧ୍ୟ ରୁଚିକର ହୁଏନା । ପାଚକର ଓଡ଼ିଆ ସଂଜ୍ଞା ପୂଜାରୀ, ଦେବତାଙ୍କ ପୂଜାଭୋଗ ରାନ୍ଧେ, ପୂଜାହାରୀ; ମାତ୍ର ନରଭୋଗ ରନ୍ଧାଜାଣେନା । ଭାବେ, ପୋରିଷବଟା କି ଗୋଲମରିଚବଟା ଅଧିକ ହେଲେ ବ୍ୟଞ୍ଜନ ହେବ ସୁସ୍ୱାଦୁ । ଏଣେ ଲଙ୍କା ଆଉ ମାଛଝୋଳର ତ୍ରିକଟୁ ପାଚନ ମୋ ଦେହରେ ଯାଏନା; କାଳୀପଦବାବୁଙ୍କ ଜିଭକୁ କିନ୍ତୁ ଲଙ୍କାମରିଚ କାବୁ କରି ପାରେନା, ନିବାସ ଯଶୋର । ମସଲା-ତେଲ ନପଡ଼ିଲେ ଖାଇପାରିବେ ନାହିଁ । ମାଛ ବି କଲିକତା-ମାଛ ପରି ସ୍ୱାଦହୀନ; ଏଣେ ଝୋଳରେ ଆଳୁ ପକାଇବାକୁ ଦେବେନାହିଁ କାଳୀପଦବାବୁ; ଯୁକ୍ତି ହେଲା, ମାଛଝୋଳରେ ଫେର୍ ଆଳୁ କାହିଁକି ? ଆଳୁ ଖାଇବାକୁ ମନହେଲେ ଖାଲି ଆଳୁର ଝୋଳ ରନ୍ଧାଯିବ । ଭୃତ୍ୟକୁ ମୁଁ ଡାକେଁ ଅ-କ୍ଷୟ; କାଳୀପଦବାବୁ କହିବେ ଉଚ୍ଚାରଣ ଭୁଲ୍, ଠିକ୍ ଉଚ୍ଚାରଣ ଓକ୍ଷୟ । ପରେ ଯେତେବେଳେ ବଙ୍ଗଳାଭାଷା ଚର୍ଚ୍ଚା କଲି, ଦେଖିଲି, ଗଙ୍ଗାର ପୂର୍ବତଟ, ଖାଲି ପୂର୍ବତଟ କାହିଁକି, କଲିକତାରୁ ପୂର୍ବକୁ ଯୋଉ ଭୂଭାଗ, 'ରଜନୀ' ସେଠି ହୋଇଯାଏ ରୋଜନୀ, ଅଷ୍ଟମୀ ଓଷ୍ଟମୀ । ତାଙ୍କ ଚାକର ଥିଲା ଓଡ଼ିଆ, ନାଁ ପାସରିଯାଇଚି, ତାକୁ ଡାକନ୍ତି ଯଶୋରୀ ରୀତିରେ, ମୁଁ ଡାକେଁ ରାଢ଼ୀ ରୀତିରେ । କାଳୀପଦବାବୁଙ୍କୁ 'ବୋସ୍' କହିଲେ ବିରକ୍ତ ହେବେ; କହିବେ, ବୋସ୍ ନୁହେଁ ବସୁ । ପୂର୍ବବଙ୍ଗରେ ଗୋଟେ ଜାତି ଅଛି 'ବଇସ୍'; କାୟସ୍ଥ ନୁହେଁ । ଚୁଁଚୂଡ଼ାରେ ଥିବାବେଳେ ପୂର୍ବବଙ୍ଗ-ଆଗତ ସହପାଠୀ ପାଖରୁ ଶୁଣିଥିଲି; ତାକୁ ବୋସ୍ କହିଲେ ରାଗିଯିବ, କହିବାକୁ ହେବ ବସୁ ।

ଆମ ସେ ବସା ଆଗରେ ଥିଲା ଇଉନିୟନ୍ କ୍ଲବର ପକ୍କା ଟେନିସ୍‌କୋର୍ଟ । କ୍ଲବଘର କାଠଯୋଡ଼ି ନଈକୂଳରେ ଛୋଟ ଏକ ବାଂଲୋ, ସଞ୍ଜ ବେଳେ ହୁଏ ବିଲିଆଡ଼ ଖେଳ । ସାହେବଙ୍କ ସକାଶେ ଥିଲା କଟକ କ୍ଲବ୍; ଦେଶୀୟ ଲୋକଙ୍କପାଇଁ ଇଉନିୟନ୍ କ୍ଲବ୍, ମାସିକ ଚାନ୍ଦା ଟଙ୍କାଟିଏ । କାଳୀପଦବାବୁ ନେଇ ଭିଡ଼ିଦେଲେ ସେଇଠି । ଉପେନ୍ଦ୍ରବାବୁ ପ୍ରାୟ ପ୍ରତ୍ୟହ ଆସନ୍ତି, ଟେନିସ୍ ଆଉ ବିଲିଆଡ଼ ଖେଳନ୍ତି; ଆଉ ଆସନ୍ତି ବିହାରୀଲାଲ ପଣ୍ଡିତ । କାଶ୍ମୀରୀ ବ୍ରାହ୍ମଣ, ବହୁଧନଶାଳୀ, ଶିଷ୍ଟତାରେ ଚୂଡ଼ାନ୍ତ । କାଳୀପଦବାବୁ ପରିଚୟ କରାଇଦେଲେ, ପଣ୍ଡିତ ତତ୍‌କ୍ଷଣାତ୍ କଲେ କରମର୍ଦ୍ଦନ; ପ୍ରତ୍ୟହ ସମସ୍ତଙ୍କ ସାଙ୍ଗରେ କରମର୍ଦ୍ଦନ କରିବେ ଦି' ଦଫା । କ୍ଲବ୍-ର ଜମି ଆଉ ଘର ଚୁଁଚୂଡ଼ା ମଣ୍ଡଳ ପରିବାରର, ଓଡ଼ିଶାରେ ତାଙ୍କ ଜମିଦାରି ଥିଲା । ପାଞ୍ଚଦିନ ଯାଇଚି, ତା ପରେ ନିଜକୁ ନେଇ ବ୍ୟସ୍ତ ହୋଇପଡ଼ିଚି । ରବିବାରଦିନ ସକାଳେ ଉପେନ୍ଦ୍ରବାବୁ ଆସି ନେଇଗଲେ ଅବିନାଶବାବୁଙ୍କ ଘରକୁ; ଆଗେ ଦରକାର ବାପୁଆବଳନ୍ଦ ଦର୍ଶନ । କଲେଜହତା ପଛପଟକୁ ନିଜ ଦୋତାଲା କୋଠାରେ ରହୁଥାନ୍ତି ସପରିବାର, ବୟସ ତାଙ୍କୁ ସେତେବେଳକୁ ପ୍ରାୟ ଚାଳିଶ, ଆଖିରେ ନୀଳଚଷମା । କନିକାରାଜାଙ୍କ ଦେବୋତ୍ତର ସମ୍ପତ୍ତିର ସେ ମ୍ୟାନେଜର୍, ଆଉ ପ୍ରାୟ ସବୁବେଳେ ନିଜ ପଦଗୌରବ ସମ୍ବନ୍ଧରେ ସଚେତନ : ବାକି ସଭିଏଁ ଲେକ୍‌ଚରର୍ ଆଉ ସେ

ଏକେଲା ଆସିଷ୍ଟାଣ୍ଟ୍ ପ୍ରଫେସର୍ ! ସେଇ ହେଲେ ପଣ୍ଡିତ ମହାଶୟ୍। ମୋତେ କହିଥିବା ଭୂଦେବ ମୁଖୁଜ୍ୟେଙ୍କ ଜାମାତା । ତେବେ, ଭଦ୍ରତା ବେଳକୁ ଗୋଟାପଣେ ଦୋସ୍ତ୍ । ଦି'ଦିନ ଉତାରୁ ନିକେ ଆସିଲେ ଆମ ବସାକୁ, ଉଦ୍ଦେଶ୍ୟ : ପ୍ରତିଦର୍ଶନ । ରାମପ୍ରସନ୍ନ ପଣ୍ଡିତ ମହାଶୟ୍ ମଧ୍ୟ ନିଜ ଘରେ ରହୁଥିଲେ; ତାଙ୍କ ଘର ଦାଣ୍ଡପଟରେ ଥିଲା ଦୋକାନ, ଇସ୍କୁଲ-ବହି କାଗଜ-ପେନ୍‌ସିଲ୍ ବିକନ୍ତି ପିଲାଙ୍କୁ । ସଂସ୍କୃତପଣ୍ଡିତ ସାଧାରଣତଃ ହୁଅନ୍ତି ମାଟିର ମଣିଷ; ବୟସ ପ୍ରାୟ୍ ପଚାଶ । ସେମିତି, ଉପେନ୍ଦ୍ରବାବୁଙ୍କ ବସା ନିକଟରେ କଲେଜିଏଟ୍ ସ୍କୁଲ୍‌ର ହେଡ୍‌ମାଷ୍ଟର ରାମଦାସ ଚକ୍ରବର୍ତ୍ତୀ ରହୁଥିଲେ ସପରିବାର; ପ୍ରୌଢ଼ ଭଦ୍ରଲୋକ, ହସିହସି କଥା କହନ୍ତି; କିନ୍ତୁ ଭାରି ବ୍ୟକ୍ତିତ୍ୱସମ୍ପନ୍ନ ଶିକ୍ଷକ, ସାରା କଟକ ସହର ତାଙ୍କୁ ଖାତିର୍ କରେ । ମୁଁ କିନ୍ତୁ ଜାଣି ନଥିଲି ମୋ ବାପାଙ୍କ ସାଙ୍ଗରେ ତାଙ୍କ ଜଣାଶୁଣା ଥିଲା ଅଥବା ବାଲ୍ୟକାଳରେ ମୋତେ ଦେଖିଚନ୍ତି; ବାଙ୍କୁଡ଼ା ଜିଲ୍ଲା ସ୍କୁଲରେ ଭର୍ତ୍ତି ହେଲି ଯେତେବେଳେ, ସେ ଥିଲେ ତୃତୀୟ୍ ଶିକ୍ଷକ । ଏ ପରିଚୟ୍ ବାହାରିପଡ଼ିବା ପରେ ମୋତେ ସ୍ନେହ କରୁଥିଲେ ପୁତ୍ରବତ୍; ପୃଥକ୍ ବସାକୁ ମୁଁ ଉଠିଗଲା ପରେ ମଧ୍ୟ ପ୍ରତି ସପ୍ତାହରେ ଆସୁଥିଲେ ଆମ ଘରକୁ । ଆଉ, ଉଠିବାବେଳକୁ କହିବେ, ତମାଖୁ ସରିଗଲାଣି, ବସିଚି ଆଉ କେତେ ? ମୁଁ କହେଁ, ବାଲ୍ୟଗୁରୁଙ୍କୁ ପୁଣି ତମାଖୁ ଯାଚିବି କି ଅକଲରେ ?

ବେଳଓଳି ଦୁର୍ଗାଦାସ ବାବୁ ଆସି ନେଇଗଲେ ପ୍ରିୟ୍ନାଥ ଚଟ୍ଟୋପାଧ୍ୟାୟ୍‌ଙ୍କ ବସାକୁ । ସେତେବେଳକୁ ୩-୪ ବର୍ଷ ଓକିଲାତି କରିସାରିଲେଣି, ବାଙ୍କାବଜାରରେ ଘର ଭଡ଼ାନେଇ ରହୁଥାନ୍ତି । ବାପା ଥିଲେ କଟକରେ ଡେପୁଟି ଇନ୍‌ସପେକ୍‌ଟର ଅବ୍ ସ୍କୁଲ୍‌ସ୍; ପ୍ରିୟ୍ନାଥବାବୁଙ୍କୁ ନେଇଆସିଥିଲେ କଟକ । ପରେ କଲିକତା ଯାଇ ଏମ୍.ଏମ., ବି.ଏଲ୍. ହୋଇଚନ୍ତି । ସେଇ ମୋ ମା'ଙ୍କ ସଇଙ୍କ ପୁଅ । ଜାଣିପାରି ନିଜ ଅନୁଜବତ୍ ଦେଖିବାକୁ ଲାଗିଲେ ମୋତେ ।

କଟକସହର ଅଧିବାସୀ ସଂଖ୍ୟାନୁପାତରେ ଯଥାକ୍ରମେ ଓଡ଼ିଆ, ଓଡ଼ିଶାନିବାସୀ ବଙ୍ଗାଳୀ, ଆଉ ପ୍ରବାସୀ ବଙ୍ଗାଳୀ; ମାତ୍ର ବ୍ୟବହାର ଆଉ ମୁହଁ କଥାରୁ ଜଣାପଡ଼େନା କିଏ କଣ । ଓଡ଼ିଆ ଆଉ ବଙ୍ଗାଳୀଙ୍କ ଭିତରେ ସଦ୍‌ଭାବ ଏପରି ଥିଲା ଯେ ଜଣକୁ ଅନ୍ୟଠୁ ଅଲଗା କରିବା ଦୁଷ୍କର । ରାମଦାସବାବୁ ଦିନେ ନେଇଗଲେ ନନ୍ଦକିଶୋର ଦାସ ମହାଶୟ୍‌ଙ୍କ ଘରକୁ; ସେ ଥିଲେ ଓଡ଼ିଆ ଡେପୁଟି ଆଉ ସେତେବେଳକୁ ଓଡ଼ିଶା ଡିଭିସନ୍ କମିଶନର୍‌ଙ୍କ ଏକାନ୍ତ ସଚିବ । ବିଷୟ୍‌ସମ୍ପତ୍ତି ମଧ୍ୟ ବେଜାଏ, ସହରରେ ଅସାଧାରଣ ପ୍ରତିପତ୍ତି, ମାତ୍ର ରାମଦାସ ବାବୁଙ୍କ ସାଙ୍ଗରେ କ୍ଷୀରନୀର ସମ୍ପର୍କ । କଟକ ରହଣି ମୋର ଦି'ବର୍ଷ ପୂରିବାବେଳକୁ ତାଙ୍କ କୋଉ ଝିଅ କି ପୁଅର କଠିନ ରୋଗ ହୁଏ, ନନ୍ଦକିଶୋରବାବୁ ଚିନ୍ତାରେ କାତର; ତାଙ୍କ ବୈଠକଖାନାରେ କିନ୍ତୁ ଅନ୍ତତଃ ପନ୍ଦରଜଣ ଭଦ୍ରଲୋକ, ଅଧିକାଂଶ ବଙ୍ଗାଳୀ, ଅହୋରାତ୍ର ଆଡ୍ଡା ଦେଉଥିବେ, ନନ୍ଦକିଶୋରବାବୁଙ୍କ ଅନ୍ଦରମହଲକୁ ଛାଡ଼ିବେ ନାହିଁ । ମୁଁ ବି ଯାଇଚି ପ୍ରତ୍ୟହ । ଶିଶୁଟି କିନ୍ତୁ ବଞ୍ଚିଲାନାହିଁ । ସେତେବେଳେ ଓଡ଼ିଆ କିଏ ବଙ୍ଗାଳୀ କିଏ, ତିଳେମାତ୍ର ଭେଦ ଦୃଷ୍ଟିରେ ପଡ଼ିନାହିଁ ।

ଯାବତୀୟ ଓଡ଼ିଆ ଭଦ୍ରଲୋକ ପରିଷ୍କାର ବଙ୍ଗଳାକଥା ସହଜରେ ବୁଝିପାରନ୍ତି, ପଢ଼ିପାରନ୍ତି, କହିପାରନ୍ତି । ଅର୍ଥାତ୍ ମନଦେଇ ଶିଖିଚନ୍ତି । ର୍‌ୟାଭେନ୍‌ଶ' କମିଶନର୍ ହୋଇ ଆସିବା ଆଗରୁ ବିଦ୍ୟାଳୟରେ ବଙ୍ଗଳାଭାଷା ଶିଖାଯାଉଥିଲା, କାହିଁକିନା, ଓଡ଼ିଆରେ ପାଠ୍ୟପୁସ୍ତକ ସେଭଳି କିଛି ବାହାରି ନାହିଁ ।

କାଳୀପଦବାବୁଙ୍କ ବସାକୁ ଲାଗିଚି କାଠଯୋଡ଼ି । ବୈଶାଖ ମାସ, ନଈରେ ସୁଅ ନାହିଁ; ମାତ୍ର ପାଣି ଅଳ୍ପ ହେଲେ ବି ନିର୍ମଳ, ସୁସ୍ୱାଦୁ ଯେମିତି ଦ୍ୱାରକେଶ୍ୱର ପାଣି; ନିର୍ଦ୍ୱିଧାରେ ପିଇହେବ । ପାଣି ପରିସର ଯେହେତୁ ସଙ୍କୀର୍ଣ୍ଣ, ଚାରିପଟରେ ଧୂ-ଧୂ ବାଲି, ମାଇଲ୍ ମାଇଲ୍ ବାଲି; ଅଥଚ ବର୍ଷାଦିନେ ଦୁଇକୂଳ ଉଛୁଳିପଡ଼େ । କଟକ ସହରକୁ ବଞ୍ଚାଇବାକୁ ନଦୀଗର୍ଭରୁ ଉପରକୁ ତଟରେଖା ପର୍ଯ୍ୟନ୍ତ ଉଠିଚି ପାଷାଣଛାଉଣି । ଏ କୀର୍ତ୍ତି କୋଉ ହିନ୍ଦୁରାଜା ରଖିଯାଇଚନ୍ତି କେଜାଣି, ପଥରବନ୍ଧ ଏବେସୁଦ୍ଧା ରହିଚି ଅଟୁଟ । କାଠଯୋଡ଼ି କିନ୍ତୁ ମହାନଦୀର ଶାଖା ବିଶେଷ, ଏବଂ ମହାନଦୀର ନାଁ ଯେମିତି ରୂପ ବି ତଦ୍ରୂପ । କେତେ ରାଜ୍ୟର କେତେ ପାଣି, କେତେ ମାଟି, କେତେ ବାଲି, କେତେ ପଥର ବର୍ଷାଋତୁରେ ଯେ ବହିଆଣେ, ଇୟତ୍ତା ନାହିଁ । କଟକଠୁଁ ସାତ-ଆଠ ମାଇଲ୍ ଦକ୍ଷିଣ-ପଶ୍ଚିମକୁ ଏକ ଗିରିଦେହ ବିଦୀର୍ଣ୍ଣକରି ମହାନଦୀ ବାଟ କାଟିଚି; ସେଇଠି ତିଆରିହୋଇଚି ଚରଭୂମି, ତା ଉପରେ ଧବଳେଶ୍ୱର ମହାଦେବଙ୍କ ଦେଉଳ ନଦୀସ୍ରୋତକୁ ଦ୍ୱିଧା କରିଦେଇଚି । କଟକ ଉତ୍ତରରେ ମହାନଦୀ, ଦକ୍ଷିଣରେ କାଠଯୋଡ଼ି । ଦୁଇ ନଦୀର ତ୍ରିକୋଣଭୂମିରେ କଟକସହର । କଟକ ଶବ୍ଦର ଅର୍ଥ ନଗର । କଲେଜ କାଠଯୋଡ଼ିକୁ ନିକଟ, ସାହେବଙ୍କ ପଡ଼ା ମହାନଦୀକୁ ନିକଟ । ଏ ଏକ ପୁରାତନ ନଗର, ପାହାଡ଼ ଅଛି ପାଖରେ, ପଥର ପ୍ରଚୁର, ମାଙ୍କଡ଼ାପଥର, ବାଲି ଭାଗ ବେଶି । ପଥରଖମ୍ବ ଗୋଟାଏ ସୁଦ୍ଧା ନାହିଁ, କାଁଭାଁ ଯା ପଥର ଅଛି, ଦେହରେ କାରୁକାର୍ଯ୍ୟ ନାହିଁ କମାରୁ । ଦେଖେଁ ଆଉ ଭାବେଁ, ନୂଆ କୋଉ ଦେଶ ହୁଏତ, ଅଥବା ଦେଶ ସବୁବେଳେ ଥିଲା ଏମିତି ସୁନ୍ଦର, ଆମେ ହୁଏତ ନିକେ ହୋଇଯାଇଛୁଁ ନୂଆ ମଣିଷ । ୧୮୦୩ ସାଲରେ କଟକ, ପୁରୀ, ବାଲେଶ୍ୱର, ତିନିଜିଲ୍ଲା ବ୍ରିଟିଶ୍ ରାଜ୍ୟର ଅନ୍ତର୍ଗତ ହୋଇଚି; ମୁଁ ଯାଇଚି ୧୮୮୩ରେ, ମଝିରେ ବିତିଯାଇଚି ଅଶୀବର୍ଷ । ସେତେବେଳକୁ କଲିକତାକୁ ଆସିନାହିଁ ରୋଡ୍, ଷ୍ଟ୍ରିଟ୍ କି ଲେନ୍; କିନ୍ତୁ କଟକରେ ରହିଚି ବାଲୁବଜାର, ଚୌଧୁରୀବଜାର, ବକ୍ସିବଜାର, ବାଙ୍କାବଜାର, ଖଟବିନ୍‌ସାହି, ଧୂଆଁପତ୍ରସାହି । ବଜାର ଆଉ ସାହିରୁ ରାସ୍ତା ପାଇଚି ନିଜ ପରିଚୟ । ବୁଲିବୁଲି ଘରଦ୍ୱାର ଦେଖିଚି, ଦେଖିଚି ଓଡ଼ିଆ ନାରୀର ବସନଭୂଷଣ ଆଉ ଶୁଣିଚି ନାଗରିକ ଜୀବନଯାତ୍ରାର ଭାଷା । ଆଉ ଭାବିଚି, ଦିନକେତେଟା ପାଇଁ ବୁଲିବାକୁ ଆସିଚି, ମିଆଦ ପୂରିଲେ ଚାଲିଯିବି । ଭାବୁଭାବୁ ଏପ୍ରିଲ୍ ମାସ ସମାଗତ । ମେ' ମାସ ପ୍ରଥମ ସପ୍ତାହରୁ ଗ୍ରୀଷ୍ମଛୁଟି ଆରମ୍ଭ; ମୁଁ ଆଉ ଉପେନ୍ଦ୍ରବାବୁ ଘରକୁ ଯିବୁ, କାଳୀପଦବାବୁ ଯିବେନାହିଁ । କିନ୍ତୁ ଦୁର୍ଗାଦାସ ବାବୁଙ୍କ ଦାଦା ଶଶିବାବୁ ମଧ୍ୟ ଫେରିଯିବେ । ଅଥଚ ଏମିତି ଦୁର୍ଦ୍ଦୈବ ଯେ କେନାଲରେ ଷ୍ଟିମର୍ ଯିବନାହିଁ,

ପ୍ରତିବର୍ଷ ଲକ୍ ମରାମତି ହୁଏ ଏତିକିବେଳେ। କେନାଲ୍ ଖୋଳାହେବା ବେଶିଦିନର ଘଟଣା ନୁହେଁ। ଜାହାଜ ବି ସେବେଠୁଁ ଆସୁଚି ଚାନ୍ଦବାଲି। ମାତ୍ର ଜଗନ୍ନାଥ ଦର୍ଶନ ଚାଲିଚି କୋଉକାଳରୁ କିଏ ଜାଣେ ! ବଙ୍ଗ ଓ ବିହାରରୁ ଯାତ୍ରୀ ତ ସ୍ଥଳପଥରେ ଆସିଚନ୍ତି ସବୁବେଳେ। ସେ ରାସ୍ତାରେ ବଳଦଗାଡ଼ି ଯାଏ, କଟକରୁ ଚାନ୍ଦବାଲି ଲାଗେ ତିନିଦିନ। ଆମେ ଦୁଇଯାତ୍ରୀଙ୍କ ପଣ୍ଡା ହେଲେ ଶଶିବାବୁ। ବାଟରେ ରାନ୍ଧିବାପାଇଁ ଚାଉଳଡାଲି ଆଳୁପିଆଜ କିଣିବାକୁ ହେବ, ରାନ୍ଧିବାଲାଗି ସାଙ୍ଗରେ ଯିବ ଉପେନ୍ଦ୍ରବାବୁଙ୍କ ଶ୍ୱଶୁରଘରୁ ଆସିଥିବା ଭୃତ୍ୟ, ସବୁକାମକୁ ପାରଙ୍ଗମ। ତିନିଟା ଶଗଡ଼ରେ ତିନିଜଣ ବସିଗଲୁଁ, ଶଗଡ଼ ରାତି ଦଶଟାଯାଏଁ ଚାଲେ; ଚୂଡ଼ାମଣି ପୂଜାରୀ ଆଉ ଅକ୍ଷୟ ଆଗୁଆଣି ଯାଇ ଆମ୍ବଗଛ ଛାଇ କି ସଫାସୁତୁରା ଜାଗା ପାଇଲେ ରୋଷେଇବାସ ସାରି ଜଗିଥାଆନ୍ତି। ସତେଅବା ତୀର୍ଥଯାତ୍ରା; ଚୋରଡକାୟତ ଠେଙ୍ଗାବାଜ୍ ଯଦିଓ ବାଟରେ ନାହାନ୍ତି। ଚାନ୍ଦବାଲିରେ ବଡ଼ ଗୋଟାଏ ବାଂଲୋ ଦଖଲକରି ରହୁଥିଲେ ବେଚାରାମ ଲାହିଡ଼ୀ, ଯୋଉ ବଙ୍ଗାଳୀ କେବେ ତାଙ୍କ ଅତିଥି ହେଇଚି, ସେ ସଦାବ୍ରତ କଥା ପାସରିଯିବା ତା ପାଇଁ କେବେ ସମ୍ଭବ ହୋଇନାହିଁ। ସଞ୍ଜବେଳକୁ ଜାହାଜକୁ ଉଠିଲୁଁ। ନାଁ ଭୁଲିଯାଇଚି, କିନ୍ତୁ ଜାହାଜଟା ବଡ଼; ତା ତଳେ ଲାଗିଚି ଇସକ୍ରୁ ରୂପର ପଙ୍ଖା, ପଙ୍ଖା ପାଣିକୁ ଚିରି ଦିଫାଳ କଲେ ଜାହାଜ ଆଗେଇବ; କିନ୍ତୁ ସମୁଦ୍ର ଏକ୍ଷଣି ଶାନ୍ତ ନୁହେଁ, ଜାହାଜକୁ ରୀତିମତ ଲଢ଼ାଇ କରିବାକୁ ପଡ଼ୁଚି, ମୋତେ ବି ବାନ୍ତି-ବାନ୍ତି ଲାଗୁଚି, ଉପାସ ରହିଲି; ବେଳ ବୁଡ଼ିବା ଆଗରୁ କଲିକତାରେ ପହଞ୍ଚିଲୁ। ରାତିରେ ଉମାପଦ ଘରେ ରହି, ସକାଳେ ଟ୍ରେନ୍ ଧରି ତାରକେଶ୍ୱର, ସେଠୁ ଆମଗାଁ ଆଠକୋଶ। ପାଲିଙ୍କି-ବେହେରା ଆସିଥିଲେ, ରାତି ଆଠଟାବେଳକୁ ବର୍ଷକ ପରେ ଆସି ଘରମୁହଁ ଦେଖିଲି। କି କଷ୍ଟକର ଯାତ୍ରାରେ ବାବା ! ମାତ୍ର ମା'ଙ୍କ ଆନନ୍ଦ କହିଲେ ନସରେ; ପୁଅ ଯୋଗ୍ୟ ହୋଇଚି, ଚାକିରିକରେ, ବିଦେଶରୁ ଫେରିଚି; ଠାକୁରଙ୍କୁ ପୂଜାଦେଇ ଆଶୀର୍ବାଦ ଭିକ୍ଷା କରିଚନ୍ତି ଇତିପୂର୍ବରୁ। ପିଲାଟିବେଳେ ମୁଁ କୁଆଡ଼େ ପିଠା ଖାଇବାକୁ ଅଝଟ କରୁଥିଲି, କୋଉଦିନ କି ପିଠା କରିବେ ଠିକ୍ କରି ରଖିଚନ୍ତି। କଟକ ଯାଏଁ କି କଲିକତା ଯାଏଁ, ଖାଇବାଜିନିଷ ମିଳିଯାଏ ସବୁ, ପିଠା ଖାଲି ମିଳେନା। ପୂର୍ବକାଳରେ ପିଷ୍ଟକ ଓ ପାୟେସ୍ ଭୋଗପାଇଁ ଦେବତା ତୃପ୍ତ ହେଉଥିଲେ, ପୁରୀର ଜଗନ୍ନାଥ ସୁଦ୍ଧା ପିଷ୍ଟକ ଓ ପାୟେସ୍ ସେବାକରନ୍ତି; ସେଠି କିନ୍ତୁ ଗୁଡ଼ିଆ ନାହିଁ। ତିନିଶ' ବର୍ଷ ପୂର୍ବେ ଆମ ଦେଶରେ ଗୁଡ଼ିଆ-ତିଆରି ମିଷ୍ଟାନ୍ନ ଅଜ୍ଞାତ ଥିଲା।

ଉପେନ୍ଦ୍ରବାବୁଙ୍କ ବାକ୍‌ସଂଯମ ବାକ୍‌ଶୂନ୍ୟତାର ସମତୁଲ୍ୟ। ପାଖକୁ ପାଖ ଦି' ବଖରାରେ ରହୁଛୁଁ ଦିଜଣ, ମଝିଦରଜାଟା ଖୋଲା ରହିଚି, କଥାବାର୍ତ୍ତାର କିନ୍ତୁ ନାମଗନ୍ଧ ନାହିଁ ଯଦିଓ ପରସ୍ପରକୁ ଦେଖୁଚୁଁ ସବୁବେଳେ; ଖାଇବସିବାବେଳେ ବି କଥାକହୁଁନା; ଖାଲି ବେଳଓଳି ଏକାସାଙ୍ଗରେ ବୁଲିଗଲାବେଳେ ଉପେନ୍ଦ୍ରବାବୁ କ୍ୱଚିତ୍ କଦାଚିତ୍ ମୁହଁ ଖୋଲିବେ। କ୍ରମେ ମୋର ଅଭ୍ୟାସ ହୋଇଯାଇଚି, ତାଙ୍କ ଠାର ବୁଝିବା ଆଉ ସମସ୍ୟା ନୁହେଁ। କଣ୍ଠସ୍ୱର କେବେହେଲେ

ଉଚ୍ଚଗ୍ରାମକୁ ଉଠେନା, ପାଣ୍ଡିତ୍ୟ କିନ୍ତୁ ଅଗାଧ, ଲୌକିକ ଜ୍ଞାନ ମଧ୍ୟ ପରିପକ୍ୱ। ତାଙ୍କ ସଂସର୍ଗରେ କେତେକଥା ମୁଁ ନ ଶିଖିଚି ! ଶୁଣିଚି, ବିଜ୍ଞାନ ବିଭାଗରେ ପ୍ରେସିଡେନ୍‌ସି କଲେଜରୁ ବି.ଏ. ପାସ୍‌କରି ଦିନାକେତେ ଘରେ ବସିଥିଲେ, ତା ପରେ ଗଲେ ଗଣିତରେ ଏମ୍.ଏ ପରୀକ୍ଷା ଦେବାକୁ, ସେନେଟ୍‌ହୌଜ୍ ଶିଢ଼ିରେ ଗୋଡ଼ଖସି ପଡ଼ିଯାଇ ପରୀକ୍ଷାରେ ବସିପାରିଲେ ନାହିଁ। ତହିଁଆରବର୍ଷ ୧୮୮୦ରେ ଇଂରେଜୀରେ ଏମ୍.ଏ. ପାସ୍‌କରି ବିଦ୍ୟାସାଗରଙ୍କ ମେଟ୍ରପଲିଟାନ୍ କଲେଜରେ ହେଇଥିଲେ ଇଂରାଜୀ ସାହିତ୍ୟର ଅଧ୍ୟାପକ। ପ୍ରଚୁର ଛାତ୍ର, ପଛଧାଡ଼ି ପିଲା ଉପେନ୍ଦ୍ରବାବୁଙ୍କ କଥା ଶୁଣିପାରନ୍ତି ନାହିଁ, ବିଦ୍ୟାସାଗର ଆଉ ରଖନ୍ତେ ବା କେମିତି ? ୧୮୮୨ରେ ତେଣୁ ଆସିଚନ୍ତି କଟକ। ଏମିତି କୋଉ ବିଷୟ ନଥିଲା ଯୋଉଥିରେ ତାଙ୍କ ପ୍ରବେଶ ନାହିଁ; ଯେମିତି ମେଧା, ସେମିତି ସ୍ମୃତି, ସେମିତି ଅଧ୍ୟବସାୟ। ତାଙ୍କୁ ଲକ୍ଷ୍ୟକରି ସବୁବେଳେ ମନେହେଇଚି ଜ୍ଞାନର ଏତେ ସ୍ୱଳ୍ପ ପରିସର ଘେନି କଲେଜରେ ପଢ଼ାଇବାକୁ ଆସିବା ମୋର ଧୃଷ୍ଟତା ମାତ୍ର, ଅତୁଲବାବୁ ବିଲାତରୁ ଫେରିଆସିଲେ ବଞ୍ଚିଯିବି। ଜୁଲାଇମାସ କଟକରେ ପଚା ଗରମ, ଏକମୁହାଁ ଗୋଦାମ ଭିତରେ ବସିରହିବା ଦୁଃସାଧ୍ୟ; ପଙ୍ଖା ବନ୍ଦ କରିବାକୁ ହୁଏ, ନ ହେଲେ କର୍ମଶାଳାରେ ଦୀପ ଲିଭିଯିବ, ପଙ୍ଖା ଚାଲିଲେ ବି ପବନ ବାହାରିବାକୁ ବାଟନାହିଁ। ପ୍ରିନ୍‌ସିପାଲ୍‌ଙ୍କୁ ଯାଇ କହିଲି, ଅଲଗା କୋଉ ଘର ଦିଅନ୍ତୁ; ପରଦିନ ଦୁଇନମ୍ବର ଘର ମିଳିଲା। ଚେୟାର୍-ଟେବୁଲ୍ ପାଲଟାଇଦେଲି, ଅଧିକ କିଛି ଖର୍ଚ୍ଚ ହେଲା ଅବଶ୍ୟ। କଟକରେ କାଠ ଶସ୍ତା, ପ୍ରିନ୍‌ସିପାଲ୍ ତଥାପି ବିରକ୍ତ। ଏତେଦିନ ଗଲାଣି, କେହି କିଛି ଆପତ୍ତି କରିନାହିଁ; ଡିରେକ୍‌ଟର କୋଉଠୁ ଗୋଟାଏ ଅନାଡ଼ି ଟୋକା ପଠାଇଚନ୍ତି, ସବୁଥିରେ ତାର ଆପତ୍ତି ! ଆଉ ଗୋଟାଏ କାମରେ ବୁଡ଼ା ପ୍ରାୟ ବାୟା ହୋଇଯାଇଥିଲା। ଏପ୍ରିଲ୍ ମାସରେ ଡିରେକ୍‌ଟର୍ ଚିଠି ଲେଖିଲେ, ବିଜ୍ଞାନଶାଳା ପାଇଁ କି କି ଯନ୍ତ୍ରପାତି ଦରକାର ଅବିଳମ୍ବେ ଜଣାଅ। ଅ୍ୟାଗର୍ ସାହେବ ଚିଠିର ନକଲ ମୋ ପାଖକୁ ପଠାଇଦେଇ ଆଜ୍ଞା ପାଳନ କରିବାକୁ କହିଦେଲେ। ଯନ୍ତ୍ରପାତି ଯା ଦରକାର କହିପାରିବି ଅବଶ୍ୟ, କିନ୍ତୁ ଦରଦାମ ତ ମୁଁ ଜାଣେନା। କଲେଜରେ ବି ମୂଲ୍ୟ-ତାଲିକା ରଖାଯାଇନାହିଁ। ଅଣୁବୀକ୍ଷଣ ଅଛି ଯୋଡ଼ାଏ, ଗୋଟାକରେ ଇସ୍କୁଲ ପିଲା ମଶାର ଡେଣା, ମାଛିର ଆଖି ଦେଖନ୍ତି; ବାକି ଗୋଟାକ, ଅନର୍ଥ ପଛକୁ ଥାଉ, ବି.ଏ କ୍ଲାସ୍ ପାଇଁ ସୁଦ୍ଧା ବ୍ୟବହାରଯୋଗ୍ୟ ନୁହେଁ। ଅନୁମାନ କରି Ross ନିର୍ମିତ ଅଣୁବୀକ୍ଷଣ, ତାର ଆବଶ୍ୟକ ଅଙ୍ଗ, ଜୈବ-କିମିତିପାଇଁ ଗୋଟେ-ଦୁଇଟା ଯନ୍ତ୍ରର ନାଁ ଲେଖିଦେଲି। ଲେଖିଦେଇ ଭୁଲିଗଲି, କାହିଁକିନା, କେବେ ଆସିବ କି ମୂଳରୁ ଆସିବ କି ନାହିଁ କେଜାଣି। ସେବର୍ଷ ପୂଜାଛୁଟିରେ କଟକରେ ରହିଗଲି; ଦିନେ ଅ୍ୟାଗର୍ ସାହେବଙ୍କ ପାଖରୁ ପାଇଲି କଡ଼ା ଗୋଟାଏ ତଲବ : ତାକୁ ନ ପଚାରି କାହିଁକି ଯନ୍ତ୍ର ପଠାଇବାକୁ କହିଚି, କଲିକତାରୁ କେମ୍‌ପ ମରେ କମ୍ପାନୀ ୧୨୫୦ ଟଙ୍କାର ବିଲ୍ ପଠାଇଚି, ସେ ଟଙ୍କା ଏକ୍ଷଣି ମୋତେ ହିଁ ଦେବାକୁ ହେବ। ବିଲ୍‌ରୁ ଯନ୍ତ୍ରର ନାଁ ଓ ବର୍ଣ୍ଣନା ଦେଖି ବୁଝିଗଲି, ଏ ସେଇ

'ଇନ୍‌ଡେଣ୍ଟ୍‌' । ନିକେ ସେ ପଠାଇଥିଲେ । ଲେଖିଦେଲି, ମୁଁ ତ କୋଉ ଇନ୍‌ଡେଣ୍ଟ୍‌ ପଠାଇନାହିଁ, ମୁଁ କିଛି ଜାଣେନା । ଦି'ଘଣ୍ଟା ଭିତରେ ଜବାବ ଆସିଗଲା, ସାପ-ବେଙ୍ଗ କଣ ଚାହିଁଥିଲି, ତା ପାଇଁ ମୁଁ ଏକେଲା ଦାୟୀ । ଶଙ୍କିତ ଏଇ ପ୍ରିନ୍‌ସିପାଲ୍‌ଙ୍କୁ ପ୍ରବୋଧଦେଇ ଲେଖିଲି, ଆପଣ ବୃଥାରେ ଧନ୍ଦିହେଉଛନ୍ତି, ଇନ୍‌ଡେଣ୍ଟ୍‌ ଆପଣ ଦେଇନାହାନ୍ତି କି ମୁଁ ଦେଇନାହିଁ । ଟଙ୍କା କାହାରିକୁ ଦେବାକୁ ପଡ଼ିବନାହିଁ, ଯିଏ କର୍ତ୍ତା ସେ ଦେବେ । ସଦାଶଙ୍କିତ ବୃଦ୍ଧର ପ୍ରତ୍ୟୟ ହେଲାନାହିଁ, ଯନ୍ତ୍ରପାତି ଆସି ପହଞ୍ଚିସାରିଚି, ମାସେ ଗଲା, ଦି' ମାସ ଗଲା, ମରେ କମ୍ପାନୀ ଜିନିଷର ମୂଲ୍ୟ ଚାହୁଁନାହିଁ । ଏଥର ନିଃଶ୍ୱାସ ମାରିଲେ; ବେତନ ତାଙ୍କର ୭୦୦ ଟଙ୍କା; ଟଙ୍କା ଶୁଝିବାକୁ ଦି'ମାସ ଉପାସରେ କଟାଇବାକୁ ପଡ଼ିଥାନ୍ତା; ମୋ ଚାକିରି ତ ଅସ୍ଥାୟୀ, ଆଦାୟକରିବା ଆଶା ଦୁରାଶା ମାତ୍ର । ପ୍ରତିଫଳ କିନ୍ତୁ ଶୁଭ ହୋଇଥିଲା ମୋ ପାଇଁ; ସେହିଦିନଠୁଁ ସାବେହ ଭାବିଲେ, ଲେକ୍‌ଚରର୍‌ ନୂଆ ହେଲେ କଣ ହେଲା, ସାମାନ୍ୟ ଲୋକ ନୁହେଁ । ମୁଣ୍ଡ ପିଟିଦେଲେ ବି ଦଶଟା ଟଙ୍କା ନିକେ ପାଇନଥାନ୍ତେ ! ମୋ ନାଁ ରଖିଲେ the most expensive man, ଦୂରରୁ ଦେଖିଲେ ଧୀରେ ଧୀରେ ମୁଣ୍ଡ ନୁଆଁନ୍ତି । ଛୁଟିରେ ଘରକୁ ଯାଇନାହିଁ, କାହିଁକିନା, ଲେଖାପଢ଼ା କରିବା ଦରକାର । ପ୍ରତ୍ୟହ ନିୟମିତ ଦଶଘଣ୍ଟା ପଢ଼ିବାକୁ ଲାଗିଲି । ଏଥର ବିଶ୍ୱବିଦ୍ୟାଳୟ ପରୀକ୍ଷାରେ କଲେଜର ଫଳ ଭଲ ହୋଇଚି; ଯୋଉ ଚାରିଜଣ ବି.ଏ. ପରୀକ୍ଷା ଦେଇଥିଲେ, ସମସ୍ତେ ପାସ୍‌ କରିଚନ୍ତି । ଏ ବର୍ଷ (୧୮୮୩) ଦ୍ୱିତୀୟବାର ପରୀକ୍ଷା ହୋଇଥିଲା, ଜଣେ ଦେଇଥିଲା, ସେ ବି ପାସ୍‌ କରିଚି । ପୂର୍ବବର୍ଷ ସାତଜଣରୁ ପାସ୍‌ କରିଥିଲେ ପାଞ୍ଚଜଣ, ତା ପୂର୍ବରୁ ଜଣେ ମାତ୍ର । ୧୮୮୪ ସାଲ ଗ୍ରାଜୁଏଟ୍‌ଙ୍କ ଭିତରେ ଥିଲା ବୈକୁଣ୍ଠନାଥ ଦତ୍ତ, ପର ଓକିଲ ହୋଇଚି । ଏମ୍‌.ଏ. ଛାତ୍ରଟି ବି ଅନର୍ସ ପାଇଚି; କଟକ କଲେଜରୁ ସେ ସର୍ବପ୍ରଥମ ଏମ୍‌.ଏ. ଏବଂ ଓଡ଼ିଶାରେ ଦ୍ୱିତୀୟ, ଗୋପାଳବଲ୍ଲଭ ଦାସ, ପରେ ଡେପୁଟି ହୋଇଚି । ମଧୁସୂଦନ ଦାସଙ୍କ ସାନଭାଇ । ମଧୁସୂଦନ ଦାସ କଲିକତା ଯାଇ ଖ୍ରୀଷ୍ଟାନ୍‌ ହେଇଥିଲେ, ସେଠୁ ଏମ୍‌.ଏ., ବି.ଏଲ୍‌. ହୋଇ କଟକ ଫେରି ଓକିଲାତି କରୁଥିଲେ । ଓଡ଼ିଶାର ସେ ପ୍ରଥମ ଏମ୍‌.ଏ. ।

ଆ୍ୟାଗର୍‌ ସାହେବ ଇଂରେଜୀ ସାହିତ୍ୟ ବିଷୟରେ ଯତ୍‌ସାମାନ୍ୟ ଜାଣିଥିଲେ ମାତ୍ର; ବଛା ବଛ ବହି ଉପେନ୍ଦ୍ରବାବୁଙ୍କୁ ଛାଡ଼ିଦେଇ ଦେଇଥିଲେ ବୁଦ୍ଧିମତ୍ତାର ପରିଚୟ । ସେମିତି, ବି.ଏ.କ୍ଲାସ୍‌ର ଖଣ୍ଡିଏମାତ୍ର ବହି ନିଜେ ରଖି, ଅବିନାଶବାବୁ କାଳୀପଦ ବସୁଙ୍କୁ ଗଣିତର ବିବାକ ବିଷୟ ଛାଡ଼ିଦେଇଥିଲେ । ମୋ ସାଙ୍ଗରେ ଭାଗବସାଇବାକୁ କେହିହେଲେ ଥିଲେନାହିଁ । କଲେଜର ଖ୍ୟାତିର ବେଶି ଭାଗ ତେଣୁ ଆମେ ତିନିଜଣ ପାଇଥିଲୁଁ । କିନ୍ତୁ ୧୮୮୫ରେ କଲିକତା ବିଶ୍ୱବିଦ୍ୟାଳୟ ଏଫ୍‌.ଏ. ଆଉ ବି.ଏ.ରେ ବିଜ୍ଞାନ ପରୀକ୍ଷା ପାଇଁ ପ୍ରଚଳନ କଲେ ନୂଆ ବିଧାନ; ଏଫ୍‌.ଏ.ରୁ କେମିଷ୍ଟ୍ରି ଉଠାଇଦେଇ ଚାଲୁକଲେ ଫିଜିକ୍ସ; ବି.ଏ.କୁ ବାଣ୍ଟିଦେଲେ ଦୁଇଭାଗରେ, A ଓ B । B Course ହେଲା ବିଶୁଦ୍ଧ ବିଜ୍ଞାନ । ୧୯୦୩ରେ ଯୋଉ ବି.ଏ. ଓ ବି.ଏସ୍‌ସି. ଚାଲୁହେଲା,

୧୮୮୫ର ପରିବର୍ତ୍ତନ ତାର ପୂର୍ବାଭାସ । ବି କୋର୍ସ ପୁଣି ଦୁଇଭାଗରେ ବିଭକ୍ତ : ଭୂତ ଓ ଜୀବ । ଭୂତର ସୁଦ୍ଧା ଦୁଇଭାଗ, ଅଳ୍ପ କେମିଷ୍ଟ୍ରି, ଅଧିକ ଫିଜିକ୍ସ ଅଥବା ଅଧିକ କେମିଷ୍ଟ୍ରି, ଅଳ୍ପ ଫିଜିକ୍ସ । ଜୀବର ସେମିତି ଦୁଇଭାଗ : ଜୀବନବିଦ୍ୟା ଓ ଉଦ୍‌ଭିଦବିଦ୍ୟା, ଅଥବା ଜୀବନବିଦ୍ୟା ଓ ପ୍ରାଣୀବିଦ୍ୟା । ଫିଜିୟଲଜି ବା ଜୀବନବିଦ୍ୟା ସେତେବେଳେ ବୁଝାଉଥାଏ ନବଜୀବନ । ହୁଗୁଳୀ କଲେଜ ଏତେ କାଳ ଥିଲା ଉଦ୍‌ଭିଦବିଦ୍ୟାର କେନ୍ଦ୍ର । ସେମାନେ ଅଗତ୍ୟା ଜୀବବିଦ୍ୟା ଉଠାଇଦେଲେ; ମାତ୍ର ତେଜସ୍ୱୀ ପ୍ରିନ୍‌ସିପାଲ୍ ଅଭାବରେ କଟକ କଲେଜ ଛାଡ଼ିପାରିଲା ନାହିଁ । ଏଫ୍.ଏ.ରୁ କେମିଷ୍ଟ୍ରି ଉଠାଇଦେଇ ବିଶ୍ୱବିଦ୍ୟାଳୟ ଠିକ୍ କରିନାହିଁ; ସେ ଦୋଷ ମୋତେହିଁ ଦେଖାଇବାକୁ ପଡ଼ିଥିଲା, କେମିଷ୍ଟ୍ରି ଓ ଫିଜିକ୍ସ ଉଭୟ ରଖିବାକୁ ପଡ଼ିଚି । ବି.ଏ. ପଢ଼ିବାବେଳେ ଭୂତବିଦ୍ୟା ଶିଖିଥିଲି ଢେର୍, ଏଠି ପୁଣି ପାଇଯାଇଥିଲି ଯନ୍ତ୍ରପାତି । କିନ୍ତୁ ଜୀବନବିଦ୍ୟା ଜାଣିନଥିଲି କିଛି ହେଲେ । ୧୮୮୪ରେ ଅ୍ୟାଗର୍ ସାହେବଙ୍କୁ କହିଲି, ଅନ୍ୟଲୋକ ଦେଖନ୍ତୁ ମୋଦେହି ଜୀବନବିଦ୍ୟା ହେବନାହିଁ । ବୁଢ଼ାର ପଲକ ପଡ଼େନା; ନୂଆଲୋକ ମାନେ ତ ବେଜାଏ ଖରଚ ! ତରିତରି ଡିରେକ୍‌ଟରଙ୍କୁ ଲେଖିଲେ; କ୍ରଫ୍‌ଟ୍ ସାହେବ ଥାଆନ୍ତି ଡି.ପି.ଆଇ । ତାଙ୍କ ଅକଲ ବି ଗୁଡ୍‌ମ୍; କହିଲି, ଅନ୍ତତଃ ଛ'ମାସ ପାଇଁ ମେଡ଼ିକାଲ୍ କଲେଜରୁ ଜଣେ ଡାକ୍ତରଙ୍କୁ ଆଣନ୍ତୁ । ମାନିଗଲେ, କଟକ ମେଡ଼ିକାଲ୍ ସ୍କୁଲରୁ ଆସିଲେ ଚୂନିଲାଲ ଦାସ, ଡାକ୍ତରଙ୍କ ଭିତରେ ସର୍ବଜ୍ୟେଷ୍ଠ । ଡିରେକ୍‌ଟରଙ୍କ ଆଦେଶ, ସେଇ ଛ'ମାସ ଭିତରେ ଜୀବନବିଦ୍ୟା ପାଠଟା ମୋତେ ଶିଖିନେବାକୁ ପଡ଼ିବ, ଆସନ୍ତାବର୍ଷଠୁଁ ଯେମିତି ନିଜେ ପଢ଼ାଇପାରିବି । ଅର୍ଥାତ୍, ଫିଜିୟଲଜି ସାଙ୍ଗକୁ ନିମ୍ନଶ୍ରେଣୀ ପ୍ରାଣୀଙ୍କ ପ୍ରତିନିଧି ସ୍ୱରୂପ ବେଙ୍ଗରୁ ଏମିବା-ସଭିଙ୍କ ଦେହାଭ୍ୟନ୍ତର ଓ ଅଙ୍ଗପ୍ରତ୍ୟଙ୍ଗର କ୍ରିୟାକଳାପ ସାକ୍ଷାତ୍ ଦେଖାଇବାକୁ ପଡ଼ିବ ଛାତ୍ରମାନଙ୍କୁ । ବିଶ୍ୱବିଦ୍ୟାଳୟ ଯୋଉ ବହିଖଣ୍ଡିକ ନିର୍ଦ୍ଦିଷ୍ଟ କରିଥିଲେ, *Huxley and Martin's Practical Biology*, ଚଟିବହି ସୁଦ୍ଧା ନୁହେଁ । ଚୂନୀବାବୁ ସ୍ପଷ୍ଟ କହିଦେଲେ, ଜୀବବିଦ୍ୟା ସେ ପଢ଼ିନାହାନ୍ତି କି ପଢ଼ାଇନାହାନ୍ତି, ନିଜେ କିଛିହେଲେ ଶିଖାଇ ପାରିବେ ନାହିଁ । ସେକାଳରେ ସମ୍ଭବତଃ ମେଡ଼ିକାଲ କଲେଜରେ ପ୍ରାଣୀବିଦ୍ୟାକୁ ଧରାହୋଇନାହିଁ ଜ୍ଞାତବ୍ୟ ବିଷୟ କିମ୍ବା ଏଲ୍-ଏମ୍-ଏସ୍ ପାଠ୍ୟକ୍ରମରେ ଅନ୍ତର୍ଭୁକ୍ତ ହୋଇନାହିଁ ଅନ୍ତତଃ । ଡାକ୍ତର ଦାସ ତ ଏଲ୍-ଏମ୍-ଏସ୍ ମାତ୍ର । କଟକ କଲେଜରେ ସେ ପୁଣି ଠିକା ଶିକ୍ଷକ । ମୁଁ ବି ଥିଲି ଠିକା, କିନ୍ତୁ ମୋ ବିଷୟ ତ 'ସାୟେନ୍‌ସ' । ଅ୍ୟାଗର୍ ସାହେବ କହିଲେ, ଚଳେଇ ଦିଅ । ଭାବିଲି, ବିଜ୍ଞାନ ରୂପକ ବୃକ୍ଷ ତ ଅଭିନ୍ନ ସତ୍ତା, ସମୁଦାୟ ଶାଖାପ୍ରଶାଖାକୁ ନ ଚିହ୍ନିଲେ ଗଛଟାକୁ ଜାଣି ହେବନାହିଁ । ଚୂନୀବାବୁ ହକ୍ସଲିଙ୍କ ଫିଜିଅଲଜି ବହିଖଣ୍ଡିଜ ପଢ଼ାଇଦେଇ ଖଲାସ; ଏଣେ ଜିଆ, କୃମି, ଚିଙ୍ଗୁଡ଼ି, ବେଙ୍ଗ ଘାଣ୍ଟିଘାଣ୍ଟି ମୋ ଅବସ୍ଥା ଶୋଚନୀୟ । ଖର୍ଚ୍ଚଣିର ସୀମା ନାହିଁ । ତାଆରି ଭିତରେ ଡିରେକ୍‌ଟର ଦେଲେ ଫେର୍ ପାଞ୍ଚଶ'ଟଙ୍କା; ଗୋଟାଏ ନରକଙ୍କାଳ, ଯୋଡ଼ାଏ ଅଣୁବୀକ୍ଷଣ ଆଉ ବ୍ୟବଚ୍ଛେଦଶାସ୍ତ୍ର ଇତ୍ୟାଦି ଅଣାଇଥିଲି । ହକ୍ସଲିଙ୍କ ବହି ପଢ଼ି କିନ୍ତୁ

ମୁଗ୍ଧ ହୋଇଯାଇଥିଲି, କି ପ୍ରାଣୋଜ୍ଜ୍ୱଳ ଭାଷା ପୁଣି କେତେ ପ୍ରାଞ୍ଜଳ ! ବିଷୟତ ବିଜ୍ଞାନ, ଗୋଟିଏ ହେଲେ ଅନାବଶ୍ୟକ ଶବ୍ଦ ପ୍ରୟୋଗ କରିହେବନାହିଁ, ଯୁକ୍ତି ପରମ୍ପରାରୁ ସାମାନ୍ୟତମ ନିଷ୍କୃତି ନାହିଁ ଲେଖକର, ତଥାପି ଉପସ୍ଥାପନାର ଲାଳିତ୍ୟ ବାଧାପାଇନାହିଁ ଅଣୁମାତ୍ର। ବି.ଏ. ପଢ଼ିବାବେଳେ ହକ୍ସଲି ରଚିତ *ହିଉମ୍-ଚରିତ* ପଢ଼ିଥିଲି, ମାତ୍ର ଦାର୍ଶନିକ ପ୍ରସଙ୍ଗର ବାହୁଲ୍ୟ ହେତୁ ରଚନାଚାତୁର୍ଯ୍ୟ ଉପଲବ୍ଧି କରିପାରିନାହିଁ। ଏକ୍ଷଣି ଏମିତି ଭକ୍ତ ହୋଇପଡ଼ିଲି ଯେ ତାଙ୍କ ରଚିତ ଯେକୌଣସି ବହି ପାଇଲେ ଏକାଥରକେ ପଢ଼ିପକାଏଁ; ଏପରିକି, *Comparative Anatomy of Invertabreta* ରୁ ବି ରସ ପାଇଚି। ସେତିକିବେଳେ *Nineteenth Century* ନାମକ ମାସିକପତ୍ରରେ ଯିଶୁଖ୍ରୀଷ୍ଟଙ୍କ ଅଲୌକିକତା ସମ୍ବନ୍ଧରେ ଗ୍ଲାଡ୍‌ଷ୍ଟୋନ୍‌ଙ୍କ ସାଙ୍ଗରେ ହକ୍ସଲିଙ୍କ ବିତର୍କ ଚାଲୁଥିଲା; ଗ୍ଲାଡ଼୍‌ଷ୍ଟୋନ୍ ହୁଏତ ନୀତିବାଗୀଶ, କିନ୍ତୁ ଯୁକ୍ତିରେ ହକ୍ସଲିଙ୍କ ଛାୟା ପର୍ଯ୍ୟନ୍ତ ମାଡ଼ିପାରିନାହାନ୍ତି। ସେ ଭକ୍ତିର ପରିଣାମ ବୋଧହୁଏ ମୋର ଏ ରଚନାରୀତି। ଲୋକାନ୍ତର ପରେ *ସାହିତ୍ୟ* ମାସିକପତ୍ରରେ ତାଙ୍କ ସଂକ୍ଷିପ୍ତ ପରିଚୟ ଦେଇଥିଲି।

ଭୂତବିଦ୍ୟା ଶିଖାଇବା ସକାଶେ ଯନ୍ତ୍ରପାତି ଆସିଯାଇଚି ଇତିମଧ୍ୟରେ, ଗଭର୍ଣ୍ମେଣ୍ଟ୍ ନିଜେ ଅର୍ଡର ଦେଇଥିଲେ; ମୂଲ୍ୟ ପ୍ରାୟ ତିନିହଜାର ଟଙ୍କା; କିନ୍ତୁ ରଖିବି କୋଉଠି ? ଆ୍ୟାଗର୍ ସାହେବ ମାନେ ଛାଡ଼ିଦେଲେ ଆଉଗୋଟେ ବଖରା, ଗୋଦାମ-ଘରଟିକୁ ବି ଛାଡ଼ିଦେଲେ; ଜାଗା ତେବେବି ନିଅଣ୍ଟ। ଗୋଦାମଘର ପୂର୍ବଦିଗକୁ ଛୋଟ ଯୋଉ କୋଠରିଟି, ସେଠି ସୁଦ୍ଧା ଯାଇ ଛିଡ଼ାହେଲା ଆଲମାରି, ତା କଡ଼ରେ ବସି ମୌଲବୀସାହେବ ଫାର୍ସୀ ପଢ଼ାନ୍ତି। ଅର୍ଥାତ୍ କଲେଜର ଅଧାଅଧି, ଚାରିବଖରାଘର, ଏକେଲା ମୋ ଦଖଲକୁ ଆସିଚି; ଲାଇବ୍ରେରୀ ଉଠିଗଲା ଇସ୍କୁଲ୍ ଘରକୁ, ହଲ୍‌କୁ ବିଭାଗ କରି କରାଗଲା ଦୁଇବର୍ଷର ଶ୍ରେଣୀଗୃହ। ସେତିକିବେଳକୁ ଶୀତଛୁଟିକୁ କମାଇଦେଇ ଗ୍ରୀଷ୍ମଛୁଟିକୁ କରାଗଲା ଦୀର୍ଘତର, ବିଶ୍ୱବିଦ୍ୟାଳୟ ପରୀକ୍ଷା ଘୁଞ୍ଚିଗଲା ଏପ୍ରିଲ ମାସକୁ। ମୁଁ ତ ୧୮୮୩ ପୂଜାଛୁଟିରେ ଗାଁକୁ ଯାଇନାହିଁ; ମା ଲେଖିଲେ ଶୀତଛୁଟିରେ ଯିବାକୁ; ଡିସେମ୍ବରରେ ଗାଁକୁ ଗଲି, ଛୁଟି ମିଆଦ ବାରଦିନ। ଆମେ ସେଠି ବର୍ଷା ପଡ଼ିଲେ, ଆସିଯିବ ମ୍ୟାଲେରିଆ ଆଉ ଲାଗିରହିବ ମାର୍ଗଶୀର-ପୌଷ ଯାଏଁ। ଛୋଟବହୂ (ମୋ ସ୍ତ୍ରୀ) ବାପଘରେ, ମ୍ୟାଲେରିଆରେ ଆକ୍ରାନ୍ତ। ମା କହିଲେ, କଟକ ନେଇଯା। ତିରିଶି ଗ୍ରେନ୍ କୁଇନାଇନ୍ ଖୁଆଇ ନେଇଆସିଲି।



---

*ଯା ମନେପଡେ*, ଅନୁବାଦ: ରବୀନ୍ଦ୍ର ପ୍ରସାଦ ପଣ୍ଡା, ଲାର୍କ ବୁକ୍‌ସ, ୨୦୦୬

# କଲେଜ ଛାତ୍ର ହେଲି

## ଗୋପାଳ ଚନ୍ଦ୍ର ପ୍ରହରାଜ

୧୮୯୧ରେ ମୁଁ ଏଣ୍ଟ୍ରାନ୍ସ ପାସ୍ କଲି । ମୁଁ ସେଥିରେ ଓଡ଼ିଶାର ୩ୟ ସ୍ଥାନ ଅଧିକାର କରିଥିଲି । ସେତେବେଳେ ଓଡ଼ିଶାରେ ଏଣ୍ଟ୍ରାନ୍ସ ପାସ କଲାବାଲାଙ୍କ ସଂଖ୍ୟା ଅତି କମ ଥିଲା । ପାସ କରିବାକୁ ଗୋଟାଏ ଗଡ଼ଜୟ କରିବା ବୋଲି ଲୋକେ ଭାବୁଥିଲେ । ତାପରେ ମୁଁ ରେଭେନ୍ସା କଲେଜରେ ନାମ ଲେଖାଇଲି । ଫାଷ୍ଟଇଅରରେ ଛାତ୍ର ସଂଖ୍ୟା ୧୫/୨୦ ଥିଲା । କଲେଜରେ ଇଂରାଜୀ, ଇତିହାସ, ଗଣିତ, ଲଜିକ୍, ସଂସ୍କୃତ, ବିଜ୍ଞାନ ପଢ଼ାଇବା ପାଇଁ ୩/୫ଜଣ ପ୍ରଫେସର ଥିଲେ । ଫାଷ୍ଟଇଅର କ୍ଲାସରେ ଗୋଟିଏ ମାତ୍ର ସେକ୍ସନ ଥିଲା । ସେକେଣ୍ଡଇଅର ତଦ୍ରୂପ । ଥାର୍ଡ ଓ ଫୋର୍ଥଇଅରରେ ଛାତ୍ରସଂଖ୍ୟା ଅତି ଅଳ୍ପ ଥିଲା । ବି.ଏ. କ୍ଲାସ୍ ଦ୍ୱୟରେ ୨ ବା ୩ଟି ସେକ୍ସନ୍ ଥିଲା । ଏଫ.ଏ. କ୍ଲାସରେ Children's Treasury of Golden lyrics, Help's Essays, Blackies Self Culture, 'Goldsmith's Deserted' Village, Milton's Paradise lost ରଘୁବଂଶ, କୁମାର ସଂଭବ, ଭଟ୍ଟୀକାବ୍ୟ Physics, Chemistry, Conic Section, Algebra ଆଦି ପଢ଼ା ହେଉଥିଲା । ସେତେବେଳକୁ Arts ଓ Science ବିଭାଗ ସ୍ୱତନ୍ତ୍ର ହୋଇ ନଥିଲା । ମୁଁ ମାସକୁ ୧୫ ଟଙ୍କା ଲେଖାଏଁ ସରକାରୀ ବୃତ୍ତି ପାଉଥାଏଁ । ସ୍କୁଲରେ ପଢ଼ିବା ସମୟରୁ ସ୍ୱର୍ଗତ କେଦାରନାଥ ମିତ୍ର (ସେ କଲେକ୍ଟରୀରେ ଜଣେ କ୍ଲର୍କ ଥିଲେ) ମୋର ଅଭିଭାବକ ଥିଲେ ଓ ପ୍ରତିଦିନ ଆମ ବସାକୁ ଆସି ସେଠାରେ ୨/୩ ଘଣ୍ଟା ସମୟ ରହୁଥିଲେ । ତାଙ୍କ ଭଣଜା ରାଧାବିନୋଦ ବୋଷ ଜଣେ ଜମିଦାର ଥିଲେ । କେଦାରବାବୁ ତାଙ୍କ ଘରେ ରହୁଥିଲେ ।

**ସପ୍ତମକାର ସେବା-**

ଫାଷ୍ଟଇୟରରେ ପଢ଼ିଲାବେଳେ ଗୁଡ଼ିଏ ସଙ୍ଗୀ ଜୁଟିଲେ । ସେମାନଙ୍କ ସଙ୍ଗେ ରାତିରେ ଲୁଚିକରି ଗଣେଶ ଯାତ୍ରା, ଝୁଲଣ ଦେଖିବାକୁ ମୁଁ ଯାଇଥିଲି । ସେ ସମୟରେ କଟକରେ ଅନେକ ଭଦ୍ରଲୋକ ଗଣେଶ ପ୍ରତିମା ତିଆରି କରାଇ ବହୁ ଭଦ୍ର ଲୋକଙ୍କୁ ନିମନ୍ତ୍ରଣ କରି ଖୁଆଉଥିଲେ । ଗଣେଶ ମୂର୍ତ୍ତିଙ୍କ ଆଗରେ 'ବାଇ ନାଚ' ହେଉଥିଲା । ଜଣ କେତେ ସଙ୍ଗୀଙ୍କ ସଙ୍ଗେ ଜଣେ

ଭଦ୍ରଲୋକଙ୍କ ଘରେ ଗଣେଶ ପୂଜା ସଂପୃକ୍ତ ପଞ୍ଚମକାର ଉପାସନାରେ ଯୋଗଦେଇ ତେଣୁ ଫେରି ବେଶ୍ୟା ଗୃହରେ ମଧ୍ୟ ସଙ୍ଗୀଙ୍କ ସଙ୍ଗରେ ଅତିଥି ହେଲି । ଏ ସମ୍ପର୍କରେ ପ୍ରଶ୍ନ-

"ଭିକ୍ଷୋ ! ମାଂସ ନିଷେବଣଂ ପ୍ରକୁରୁଷେ ?"

ଉତ୍ତର- "କିଂ ତତ୍ର ମଦ୍ୟଂ ବିନା"

ପ୍ରଶ୍ନ- "ମଦ୍ୟ ଚାପି ତବ ପ୍ରିୟଂ"

ଉତ୍ତର- "କିମହୋ ବାରଙ୍ଗନାଭିଃ ସହ"

ପ୍ରଶ୍ନ- "ବେଶ୍ୟା ଦ୍ରବ୍ୟ ରୁଚିଃ, କୁତସ୍ତବ ଧନଂ ?"

ଉତ୍ତର- "ଦ୍ୟୁତେନ ଚୌର୍ଯ୍ୟେଣ ବା"

ପ୍ରଶ୍ନ- "ଦ୍ୟୁତଶ୍ଚୌର୍ଯ୍ୟ ପରିଗ୍ରହୋସ୍ତି ଭବତଃ ?"

ଉତ୍ତର- "ନଷ୍ଟସ୍ୟ କାନ୍ୟାଗତିଃ"

ଏହି ସଂସ୍କୃତ ବଚନିକା ମୋଠାରେ ଫଳିଲା । ବେଶ୍ୟାସକ୍ତ ଲୋକର ଧନ ଲୋଡ଼ା, ଧନ କେଉଁଠାରୁ ଆସିବ ? ସଙ୍ଗୀମାନଙ୍କ ପରାମର୍ଶରେ ଅର୍ଥାଗମର ଉପାୟ ମଧ୍ୟ ହାବୁଡ଼େ ପଡ଼ିଲା । ମୁଁ ଯେଉଁ ମାସିକ ଟ.୧୫ ବୃତ୍ତି ପାଉଥିଲି, କେଦାରବାବୁଙ୍କ ବରାଦ ଅନୁସାରେ ସେଭିଙ୍ଗସ୍ ବ୍ୟାଙ୍କରେ ତାହା ଜମା ରଖିବାକୁ ନନା ରାଜି ହେଲେ । ବସା ଖରଚ ଓ ପଢ଼ା ଖରଚ ତ ନନା ଚଳାଉ ଥାଆନ୍ତି । ମୋର ବୃତ୍ତି ଟଙ୍କାତକ ମାସକୁ ମଧ୍ୟ ମୋ ନାମରେ ସେଭିଙ୍ଗସ୍ ବ୍ୟାଙ୍କରେ ଜମା ହେଉଥାଏ ଓ ପାସ୍‌ବୁକ୍ କେଦାରବାବୁଙ୍କ ପାଖରେ ଦେଉଥାଏ । ମଝିରେ ମଝିରେ ଗ୍ରାମକୁ ଯାଇ ବୋଉକୁ ଫୁସୁଲାଇ କିଛି ଟଙ୍କା ଆଣି ମାତୃଦତ୍ତ ଧନର ଶ୍ରାଦ୍ଧ ବେଶ୍ୟା ଦ୍ୱାରରେ ହେଉଥାଏ । ସେଥିରେ ଆଉ କାମ ଚଳିଲା ନାହିଁ । ସଙ୍ଗୀମାନଙ୍କ ପରାମର୍ଶରେ ପୋଷ୍ଟ ଅଫିସରେ ଦରଖାସ୍ତ ଦେଲି ଯେ ପାସ୍ ବହି ଖଣ୍ଡି ହଜିଛି । ଅତଏବ ଉପଯୁକ୍ତ ଫିସ୍ ଦାଖଲ କରି ଡାକଘରୁ ନୂଆ ପାସ୍ ବହି ଆଣି ସେଭିଙ୍ଗସ୍ ବ୍ୟାଙ୍କରୁ ଟଙ୍କା ଆଣି ଆମର ପଞ୍ଚମକାର ଉପାସନାର ବ୍ୟୟ ଚଳୁଥାଏ । ସେ ସମୟରେ ଆଉ ଦୁଇ ତିନୋଟି ବଡ଼ଲୋକଙ୍କ ପିଲା ମଧ୍ୟ ମୋ ସହପାଠୀ ଥିଲେ । ପାଳିକରି ସେମାନେ ଦିନ ଦିନକର ମଜଲିସର ବ୍ୟୟ ଚଳାଉ ଥାନ୍ତି ଓ ମୁଁ ମଧ୍ୟ ପାଳି ଦିନର ଖର୍ଚ୍ଚ ଚଳାଉଥାଏ । ଏଠାରେ କହିବା ଉଚିତ ଯେ ସେ ସମୟରେ କଲେଜ ଛାତ୍ରମାନଙ୍କ ମଧ୍ୟରେ ବେଶ୍ୟା ସଙ୍ଗ ଓ ମଦ୍ୟ ସେବା ଫେସନ ହୋଇଥାଏ । ଆମେ ସ୍କୁଲରେ ଓ ଏଫ୍.ଏ. କ୍ଲାସରେ ପଢୁଥିବା ବେଳେ ବି.ଏ.କ୍ଲାସରେ ପଢୁଥିବା କେତେଜଣ ବଡ଼ଲୋକ ପିଲାଙ୍କ ମଧ୍ୟରେ ଏ ଫେସନ ଚଳୁଥାଏ । ଏମନ୍ତ କି କଟକର ଏକାଧିକ ଶିକ୍ଷିତ ଓ ପଦସ୍ଥ ବ୍ୟକ୍ତି ପ୍ରକାଶ୍ୟ ଭାବରେ ବେଶ୍ୟା ଓ ମଦ୍ୟ ଭକ୍ତ ଥିଲେ । ଥରେ ବାରାଙ୍ଗନା ପ୍ରିୟାଙ୍କ ପାଇଁ ଦଶହରା (ଦୁର୍ଗାପୂଜା) ପୂର୍ବରୁ ବଜାରରୁ ମୁଁ ଖଣ୍ଡେ ଡାକାଇ ଶାଢ଼ି କିଣି ଆଣି ମୋ ପେଟରାରେ ରଖିଥିଲି । ଏକଥା ମୋ ସଙ୍ଗେ କଟକରେ ରହୁଥିବା ପିତୃନିଯୁକ୍ତ ଭୃତ୍ୟ ଜାଣିପାରିଲା ଓ ଏହା ତାକୁ ଅସହ୍ୟ ହେଲା । ସେ କଥା

ଗୁପ୍ତଭାବରେ ପିତୃଦେବଙ୍କ କର୍ଣ୍ଣଗୋଚର କଲା । ଦିନେ ଭୋର ବେଳେ ଆମେମାନେ ଶଯ୍ୟା ତ୍ୟାଗକରି ଦେଖିଲୁ ଯେ ପିତୃଦେବ ଆସି ଅପ୍ରତ୍ୟାଶିତ ଭାବରେ ବସାରେ ଉପସ୍ଥିତ । ତାଙ୍କ ଆଦେଶ ଅନୁସାରେ ମୋ ପେଟରା ତାଙ୍କ ଆଗକୁ ଅଣାହେଲା ଓ ମୋଠାରୁ ପେଟରାର ଚାବି ତଲବ ହେଲା । ପେଟରା ଫିଟାଇ ଦେବାରୁ "ଡାକାଇ ଶାଢ଼ି" ବାହାରିଲା । ପିତୃଦେବଙ୍କ ପ୍ରଶ୍ନରେ ମୁଁ ଉତ୍ତର ଦେଲି ଯେ ସେ ଶାଢ଼ି ମୁଁ ବୋଉଙ୍କ ପାଇଁ କିଣିଥିଲି । ଆମ ସମାଜରେ ସ୍ତ୍ରୀଲୋକମାନେ ସେତେବେଳେ "ଡାକାଇ ଶାଢ଼ି" ପିନ୍ଧୁ ନଥିଲେ । ପିତୃଦେବ ମୋ ଉପରେ ଅତ୍ୟନ୍ତ ବିରକ୍ତ ହେଲେ ଓ ମୋ ଆଗରେ ସେ ଶାଢ଼ିରେ ଅଗ୍ନି ସଂଯୋଗ କରାହେଲା ।

**ଆସକ୍ତି ଓ ଅବମାନନା-**

ମୁଁ କଲେଜରେ ପଢ଼ିବା ସମୟରେ ମୋ କନିଷ୍ଠ ଉଦୟନାଥ ସିଦ୍ଧେଶ୍ୱରପୁର ସ୍କୁଲରୁ ପାସକରି ଆସି କଲେଜିଏଟ୍ ସ୍କୁଲରେ ପଢୁଥାଏ । ତାକୁ ମୋ ଜ୍ୟେଷ୍ଠ ପିତୃବ୍ୟ କୁଳମଣି ଆଚାର୍ଯ୍ୟ ପୋଷ୍ୟପୁତ୍ର କରିନେଇ ଥିଲେ । ଉଦୟ କଟକକୁ ଆସି ମୋ ସଙ୍ଗେ ରହିଲା । ରାତିରେ ତାକୁ କହି ମୁଁ ବସାରୁ ବାହାରି ବେଶ୍ୟାଶ୍ରମକୁ ଯାଉଥିଲି । ମୋ ବିଛଣାରେ ତକିଆମାନଙ୍କୁ ଲମ୍ବ କରି ଶୁଆଇ ଦେଇ ତା' ଉପରେ ଚାଦରଟିଏ ଘୋଡ଼ାଇଦେଇ ଯାଉଥିଲି । ରାତି ଘଡ଼ିଏ ଦୁଇଘଡ଼ି ଥାଏ-ରାତିରୁ ଆଉଜା ହୋଇଥିବା ପାଚେରି କବାଟ ବାଟେ ଆସି ପଞ୍ଜରରେ ମୁଁ ହାତ ମାରେ ଓ ଭାଇନା-ଗତ-ପ୍ରାଣ ଉଦି ଉଠିକରି ଘରର କବାଟ ଖୋଲିଦିଏ ଓ ମୁଁ ଘର ଭିତରକୁ ଆସି ବିଛଣାରେ ଶୋଇପଡ଼େ । ବସାର ଲୋକମାନେ ମୋତେ ମୋ ଶେଯରେ ଶୋଇଥିବା ଦେଖନ୍ତି । ଏହିପରି ଦିନାକେତେ ଗଲା । ପ୍ରବଚନ ଅଛି 'Frequent Commission of sins hardens the heart' କ୍ରମଶଃ ଏତେଦୂର ଦାମ୍ଭିକ ହେଲି ଯେ କେଦାରବାବୁଙ୍କ ସୁଦ୍ଧା ମାନିଲି ନାହିଁ ଓ ପ୍ରକାଶ୍ୟରେ ତାଙ୍କର ବିଦ୍ରୋହୀ ହେଲି । ସେତେବେଳେ ରାତ୍ରି ଅଭିଯାନ ସଙ୍ଗେ ଦିବାଭିଯାନ ସଂଯୋଜିତ ହେଲା । କ୍ଲାସରେ ହାଜିରା ପକାଇଦେଇ କଳେ କୌଶଳେ କ୍ଲାସରୁ ଖସିଆସି ମୁଁ ଉକ୍ତ ତୀର୍ଥଯାତ୍ରୀ ହେଲି । କଲେଜକୁ ଯିବା ପାଇଁ ବସାରୁ ବାହାରି ସେଠାରୁ ଖସିଆସି ଦିବାତୀର୍ଥ, ପୁଣି କଲେଜ ଛୁଟି ହେବାପରେ ବସାକୁ ଆସି ବସାରେ ଜଳଖିଆ ସାରି ପୁଣି ସାଙ୍ଗମାନଙ୍କ ସଙ୍ଗେ ସାନ୍ଧ୍ୟତୀର୍ଥ ଦର୍ଶନ ଓ ରାତି ୧୦ଟା ବେଳେ ବସାକୁ ଆସି ରାତ୍ରିଭୋଜନ ପରେ ଉଦିର ସହାୟରେ ପୁଣି ରାତ୍ରି-ତୀର୍ଥ ଦର୍ଶନ । ଏ ଅବସ୍ଥାରେ ପଢ଼ା-ପଢ଼ିର ଅବସ୍ଥା ସହଜରେ ଅନୁମାନ କରାଯାଇ ପାରେ । ପ୍ରଥମବର୍ଷ ଏପ୍.ଏ. ଫେଲ ହେଲି ଓ ଦ୍ୱିତୀୟବର୍ଷ ମଧ୍ୟ ଏଫ୍.ଏ. ଫେଲ ହେଲି । ଏହି ସମୟ ମଧ୍ୟରେ ପୂର୍ବୋକ୍ତ ତୀର୍ଥ ଯାତ୍ରାର ଅବଶ୍ୟମ୍ଭାବୀ ପୁରସ୍କାର (ଉପଦଂଶ, ମେହ) ମଧ୍ୟ ମିଳିଲା । ନନା ମୋ କୀର୍ତ୍ତିକଳାପ ଶୁଣି ଏପରି ମର୍ମପୀଡ଼ିତ ହେଲେ ଯେ ବୋଧହୁଏ ଦୁଇବର୍ଷ ସେ ମୋ ମୁଖାବଲୋକନ କରି ନଥିଲେ । ଏ ଦଶା ମୋତେ ଏକା ହେଲା ନାହିଁ । ମୋ ସାଙ୍ଗୀଙ୍କର ମଧ୍ୟ ସେହି ଦଶା ହେଲା । ଦ୍ୱିତୀୟଥର ଏଫ୍.ଏ. ଫେଲ୍ ହେଲାପରେ

ମୁଁ ବିଚାରିଲି ଯେ ଏଠାରେ କୁସଙ୍ଗୀମାନଙ୍କ ପ୍ରରୋଚନାରେ ମୁଁ ବିପଥଗାମୀ ହୋଇଛି, କଲିକତା ଯାଇ ପଢ଼ିଲେ ସଙ୍ଗୀମାନଙ୍କ influence ରୁ ଦୂରରେ ରହିବି । ମୋର ଏ କଳ୍ପନା ପଟିଆ ନିବାସୀ ମୋ ମାମୁ ଅଜା ଶ୍ରୀ କୁଳମଣି ପ୍ରହରାଜଙ୍କ ଦ୍ୱାରା ନନାଙ୍କୁ ଜଣାଇଲି । ସେ ନନାଙ୍କୁ କହୁଥାଆନ୍ତି ଓ ମୁଁ ଉକ୍ତ କୋଠରିର ଦୁଆର ମୁହଁରେ ଲୁଚିକରି ଉକ୍ତ କଥୋପକଥନ ଶୁଣୁଥାଏ । ମାମୁ ଅଜା କହିଲେ ଗୋପାଳର କଟକରେ ପଢ଼ାପଢ଼ିରେ ସାଙ୍ଗମାନଙ୍କ ଯୋଗୁଁ ବ୍ୟାଘାତ ଘଟୁଛି । ସେ କହୁଛି ଯେ କଲିକତାକୁ ଯାଇ ସେଠାରେ ଏଫ୍.ଏ. ପଢ଼ି ପରୀକ୍ଷା ଦେବ । ପିତୃଦେବ ମାମୁ ଅଜାଙ୍କୁ ଜଣେ ଭଣ୍ଡାରି ଦମ୍ପତିଙ୍କ କାହାଣୀ କହିଲେ-

ଜଣେ ଭଣ୍ଡାରିର ସ୍ତ୍ରୀ ଦୁଷ୍ଟଚରିତ୍ରା ହେବାରୁ ଏକଥା ଭଣ୍ଡାରିର କର୍ଣ୍ଣଗୋଚର ହେଲା । ଦିନାକେତେବାଦ୍ ଭଣ୍ଡାରିକୁ ଲୋକେ ପ୍ରକାଶ୍ୟ ଭାବରେ ତା ସ୍ତ୍ରୀର ଦୁଷ୍ଟଚରିତ୍ର କଥା କହିଲେ । ଭଣ୍ଡାରି ଏହା ଶୁଣି ସେ ଗ୍ରାମରୁ ଉଠିଯାଇ ଅନ୍ୟ ଗ୍ରାମରେ ଘର କରି ରହିବ ବୋଲି ସ୍ଥିର କଲା ଓ ଭଣ୍ଡାରୁଣୀକୁ ଏକଥା କହିଲା । ଦିନେ ସେ ଖଣ୍ଡିଏ ଶଗଡ଼ ଭଡ଼ା କରି ସେଥିରେ ଘରର ଆସବାବପତ୍ର ବୋଝେଇ କରି ଶଗଡ଼ ପଛରେ ଆପେ ଚାଲିଲା । ତା' ପଛରେ ଭଣ୍ଡାରୁଣୀ ଯାଉଥାଏ । ଭଣ୍ଡାରୁଣୀ ବରାବର ପୂର୍ବନିବାସ ଗ୍ରାମ ଆଡ଼କୁ ଫେରି କରି ଅନାଉଥାଏ । ଏପରି ବାରମ୍ବାର କରିବାରୁ ଭଣ୍ଡାରି ବିରକ୍ତ ହୋଇ ଭଣ୍ଡାରୁଣୀକୁ ପଚାରିଲା- କିଲୋ ! ଆମେତ ସେ ଗାଆଁ ଛାଡ଼ି ଚାଲି ଆସିଲେଇଁ, ତୁ କିଆଁ ଥରକୁ ଥର ସେ ଗାଆଁକୁ ଫେରି ଅନାଉଚୁ ?'' ଭଣ୍ଡାରୁଣୀ ଏହା ଶୁଣି ଭଣ୍ଡାରିକୁ କହିଲା- ମୁଁ ପୁରୁଣା ଘରେ ଯେଉଁ ଚୁଲ୍ଲୀଟି ପାରିଥିଲି ସେ ଚୁଲ୍ଲୀଟିତ ଉଠି ଆସି ପାରିଲା ନାହିଁ । ସେଇ ଚୁଲ୍ଲୀ କଥା ମୋର ମନେ ପଡ଼ିବାରୁ ସେ ଚୁଲ୍ଲୀକୁ ସୁମରଣା କରି ମୁଁ ସେ ଗାଆଁ ଆଡ଼କୁ ଚାହୁଚି । ଭଣ୍ଡାରି ଏହା ଶୁଣି କହିଲା ''ମଲା ! ଏହି ଅପସନ୍ଦ କଥାଟା ତୁ ଝୁରି ହେଉଛୁ । ଆମେ ଯେଉଁ ଗାଆଁରେ ଘର କରିବାକୁ ଯାଉଛେ ସେ ଗାଆଁରେ ନୂଆ ଘରେ କଣ ଆଉ ନୂଆ ଚୁଲ୍ଲୀ କରିପାରିବୁ ନାହିଁକି ? ଭଣ୍ଡାରୁଣୀ ଏହା ଶୁଣି କହିଲା, ସେ ଗାଆଁରେ ଯଦି ନୂଆ ଚୁଲ୍ଲୀ କରିପାରିବି ତେବେ ଆଉ କେଉଁ ନୂଆ କଥା ନ କରିପାରିବିକି ? ଭଣ୍ଡାରି ଏହା ଶୁଣି ଆଉ ନୂଆ ଗାଁକୁ ଗଲା ନାହିଁ । ବାଟରୁ ଶଗଡ଼ ଫେରାଇ ପୁରୁଣା ଗାଆଁକୁ ବାହୁଡ଼ି ଅଇଲା । ସେ ଭଣ୍ଡାରୁଣୀର ବଚନିକା ଶୁଣି ମନେ ମନେ ହେଜିଲା- ସତେ ତ ! ନୂଆ ଗାଁରେ କଣ ଭଣ୍ଡାରୁଣୀକୁ ଦୁଷ୍ଟଚରିତ୍ର ଲୋକ ମିଳିବେ ନାହିଁ ଯେ ମୁଁ ବୃଥାରେ ପୁରୁଣା ଗାଆଁକୁ ଛାଡ଼ି ନୂଆ ଗାଆଁକୁ ଯାଉଛି । ସେଠାକୁ ଯାଇ ମୋ ଭାରିଯା ପୁରୁଣା ଗାଆଁର ନାଟ ଲଗାଇବ ସିନା । ଏତକ ପାଞ୍ଚି ଭଣ୍ଡାରି ଆପଣା କର୍ମକୁ ଆଦରି ପୁରୁଣା ଗାଆଁକୁ ଫେରି ଆସି ତା ପୁରୁଣା ଘରେ ବାସ କରି ରହିଲା ।

ମୋ ପିତୃଦେବ ମାମୁ ଅଜାଙ୍କୁ କହିଲେ- ମାମୁ, ଆମେ ତ କୁଳଚନ୍ଦ୍ରମାକୁ ଜନ୍ମ କରିଛୁ । ପାଠ ନ ପଢ଼ାଇଲେ ଲୋକେ ଆମକୁ ନିନ୍ଦା କରିବେ । ଅତଏବ କୁଳଚନ୍ଦ୍ରମା ଯାହା କରିଥାନ୍ତୁ ପଛେ ଆମେ ତାକୁ ଝଙ୍କମାରି ପାଠ ପଢ଼ାଇବା । କିନ୍ତୁ ସେ କଲିକତାକୁ ଗଲେ ସେଠାରେ କଣ ତାକୁ ନୂଆ

ସାଙ୍ଗ ମିଳିବେ ନାହିଁକି ? ନା ସେଠାରେ ଦୁଷ୍ଟଚରିତ୍ରର ଉପକରଣମାନ ନ ମିଳିବ ? ବାବୁ କଟକରେ ପଢନ୍ତୁ, ପଢ଼ିଲେ ପଢନ୍ତୁ, ଯାହା ମନ ହଉଚି କରନ୍ତୁ, କିନ୍ତୁ ଯେବେ କିଦି ଧରି ବସିବେ, ତେବେ ବର୍ତ୍ତମାନ ଆମେ ତ ତାଙ୍କ ହୁକୁମଦାର ହୋଇଛୁ, ତେବେ ବାପଙ୍କ ସୁପୁତ୍ର ହୋଇ ତାଙ୍କୁ କଲିକତାକୁ ଏଫ.ଏ. ପଢ଼ିବା ପାଇଁ ଅବଶ୍ୟ ଅବଶ୍ୟ ପଠାଇବୁ।

**ଅନୁତାପ ଓ ପରିବର୍ତ୍ତନ-**

ମୁଁ ଦୁଆରମୁହଁର ଆଡୁଆଳରେ ଥାଇ ଏକଥା ଶୁଣୁଥାଏ। ଈଶ୍ୱରଙ୍କର ଭଙ୍ଗୀ ବଡ଼ ବିଚିତ୍ର। ଏଥି ପୂର୍ବରୁ ମୋର କଟକରେ ଅସଦାଚରଣ ଯୋଗୁଁ ପିତୃଦେବଙ୍କ ମନୋଦୁଃଖ କଥା ଲୋକ ମୁଖରୁ ଶୁଣିଥିଲି। କିନ୍ତୁ ତାଙ୍କ ଶ୍ରୀମୁଖରୁ ଏ ବେଦନାଭରା ବାକ୍ୟ ଶୁଣି ନଥିଲି। ସେହିକ୍ଷଣି ଶୁଣିଲି ଓ ମୋର ଅଦ୍ଭୁତ ମାନସିକ ପରିବର୍ତ୍ତନ ଘଟିଲା। ମାମୁ ଅଜାଙ୍କ ଦ୍ୱାରା ମୋର କଲିକତାକୁ ଯିବା ଇଚ୍ଛା ଜଣାଇବା ପୂର୍ବରୁ ଆଶଙ୍କା କରଥିଲି ଯେ ପିତୃଦେବ ଏ ପ୍ରସ୍ତାବ ଶୁଣି ଗର୍ଜନ ତର୍ଜନ କରିବେ। କାରଣ ମୋ ଅସଚ୍ଚରିତ୍ର ଯୋଗୁଁ ତତ୍ ପୂର୍ବରୁ ପ୍ରାୟ ଛଅମାସ ପିତୃଦେବ ମୋ ମୁଖାବଲୋକନ କରି ନଥିଲେ। କିନ୍ତୁ ପିତୃଦେବଙ୍କ ବେଦନାପୂର୍ଣ୍ଣ ଶ୍ରୀମୁଖ ବଚନ ଶୁଣି ମୋ ହୃଦୟ ଅନୁତାପ ଜର୍ଜର ହୋଇଗଲା। ସେତେବେଳେ ରାତି ୧୦ଟା ବେଳ। ମୁଁ ତତ୍କ୍ଷଣାତ୍ ଯାଇ ମୋର ବାଲ୍ୟ ସହଚର ଭିକାନ୍ନାଙ୍କୁ ତାଙ୍କ ଘରୁ ଡାକିଲି ଓ ତାଙ୍କୁ ସଙ୍ଗେ ଘେନି ପିନ୍ଧିଥିବା ଲୁଗା ଓ ଗାମୁଛାକୁ ସମ୍ବଳ କରି କଟକ ଚାଲି କରି ଆସିଲି। ଆସିଲାବେଳେ ଏହି ସଂକଳ୍ପ କଲି ଯେ ଯେବେ ଏଫ୍.ଏ. ପାସ୍ କରିବି ତେବେ ଘରକୁ ଆସିବି ଓ ନନାଙ୍କୁ ମୁହଁ ଦେଖାଇବି। ନଚେତ୍ ଗୃହତ୍ୟାଗ କରି ଦେଶତ୍ୟାଗୀ ହେବି। (ଏଠାରେ କହିବା ଉଚିତ ଯେ ମୁଁ ଏଣ୍ଟ୍ରାନ୍‌ସ ପାସ କରିବାର ଦ୍ୱିତୀୟ ବର୍ଷ ଅର୍ଥାତ୍ ମୁଁ ଯେତେବେଳେ ସେକେଣ୍ଡଇଅର କ୍ଲାସରେ ପଢୁଥିଲି ପ୍ରଥମଥର ଏଫ୍.ଏ. ପରୀକ୍ଷା ଦେଇ ନଥିଲି। ସେ ସମୟରେ ମତେ ୧୮ ବର୍ଷ ହେଉଥାଏ ଓ ପୁରୀ ରାହାଙ୍ଗ ପ୍ରଗନ୍ନାର ରାୟ ଚକ୍ରଧରପୁର ନିବାସୀ ଶ୍ରୀ ଦୟାନିଧି ମିଶ୍ରଙ୍କ ଅଷ୍ଟମ ବର୍ଷୀୟା ଜ୍ୟେଷ୍ଠା କନ୍ୟାଙ୍କ ସଙ୍ଗେ ମୋର ବିବାହ ହୋଇଥିଲା ଓ ବିବାହ ହେବା ପରେ ସଙ୍ଗ ଦୋଷରୁ ମୋର ଚରିତ୍ରର ସ୍ଖଳନ ଘଟିଥିଲା। ସେ ସମୟରେ ମୋର ବାଳିକା ସ୍ତ୍ରୀ ଆମ ଘରେ ରହୁଥିଲେ, କିନ୍ତୁ ଗୃହଯୋଗ୍ୟା ହୋଇନଥିବାରୁ ତାଙ୍କ ସଙ୍ଗେ ମୋର ଭେଟ ହେଉ ନଥିଲା। ଭିକାନ୍ନା ମୋଠାରୁ ବୟସରେ ୨ ବର୍ଷ ବଡ଼ ଥିଲେ। ସେ ଓ ମୁଁ ସଙ୍ଗୀ ରୂପେ ସିଦ୍ଧେଶ୍ୱରପୁରରେ ମାଇନର ଶ୍ରେଣୀଯାଏ ପଢ଼ିଥିଲୁ ଓ ଦୁହେଁ ଏକ ସମୟରେ ପରୀକ୍ଷା ଦେଇ ଦୁହେଁ ମାଇନର ଫେଲ୍ ହୋଇ ଭର୍ଣ୍ଣାକୁଲାର ପାସ୍ କରିଥିଲୁ। ତତ୍ପରେ ମୁଁ କଟକ ଆସି କଲେଜିଏଟ୍ ସ୍କୁଲରେ ପଢ଼ିଲି ଓ ଭିକାନ୍ନା ପାଠ ପଢ଼ିଲେ ନାହିଁ। କିନ୍ତୁ ଗାଆଁକୁ ଗଲେ ଆମେ ଦୁହେଁ ସାଙ୍ଗ ହୋଇ ଖେଳାବୁଲା, ଯାତ୍ରା ଦେଖିବାରୁ ଅଥଙ୍ଗା ଓ ବସୁଗୀକୁ ଯିବାଆସିବା ଓ ରାତିରେ ଅନ୍ୟ ଗ୍ରାମମାନଙ୍କୁ ଯାଇ ନାଟ ଓ ମେଲଣ ଆଦି ଦେଖା, କେଳା କେଲୁଣୀଙ୍କ ନାଚ ଦେଖା ଆଦି କରୁଥିଲୁ। ମୋର କଟକରେ ଅସଚ୍ଚରିତ୍ର ଆଡ୍ଡାରେ ଭିକାନ୍ନା ଆସି ବେଳେବେଳେ

ଯୋଗ ଦେଉଥିଲେ ।) ଭିକାନ୍ନା ଓ ମୁଁ ଦୁହେଁ ଚାଲିଚାଲି କଟକରେ ଭୋର ବେଳେ ପହଞ୍ଚିଲୁ । ଗ୍ରାମରୁ ମୁଁ ମୋ ଲୁଗାପଟା ଓ ପଢ଼ା ବହି ଆଦି ମଗାଇ ପଠାଇଲି । ଭିକା'ନ୍ନାଙ୍କୁ କହିଲି- "ଭିକା'ନ୍ନା ଏଫ୍. ଏ. ପାସ୍ କଲେ ତୁମର ମୋର ଦେଖା ହେବ । ଇତି ମଧ୍ୟରେ ତୁମେ ମୋତେ ଦେଖା କରିବାକୁ କଟକ ଆସିବ ନାହିଁ ।" ଏହା କହି ତାଙ୍କୁ ମୁଁ ଗ୍ରାମରୁ ବିଦାୟ କଲି ଓ ସେହି ଦିନଠାରୁ ମୋ ପଢ଼ାଘରେ ଥିବା ଖଞ୍ଜାରେ ମୁଁ ଆବଦ୍ଧ ହୋଇ ପଢ଼ାରେ ମନ ଦେଲି । ମୁଁ ଦୁଇବର୍ଷ ଫେଲ୍ ହୋଇଥିବାରୁ କଲେଜ 'ଲେକଚର ଆଟେଣ୍ଡ' ମୋ ପକ୍ଷରେ ଆବଶ୍ୟକ ନଥିଲା । ବେଳେବେଳେ ଅକସ୍ମାତ୍ କଲେଜକୁ ଯାଉଥାଏ । ପଢ଼ାଘର ଖଞ୍ଜାରେ ସବୁବେଳେ ରହୁଥାଏ । କୂଅମୂଳେ ଗାଧୁଆ ପାଧୁଆ କରୁଥାଏ । ସନ୍ଧ୍ୟାବେଳେ ସଙ୍ଗୀମାନଙ୍କଠାରୁ କିମ୍ବା ବଜାରକୁ ବୁଲିବା ଏକଦମ ବନ୍ଦ କଲି । ସଙ୍ଗୀମାନେ ଆସି ଦାଣ୍ଡ ଦୁଆରେ ମୋତେ ଡାକିଲେ ଚାକରମାନେ ମୋର ଉପଦେଶ ଅନୁସାରେ କହୁଥାଆନ୍ତି ଯେ ବାବୁ ଘରେ ନାହାନ୍ତି । ସଙ୍ଗିନୀମାନେ ମଧ୍ୟ ପତ୍ରଦ୍ୱାରା, ପତ୍ରବାହକ ଦ୍ୱାରା ସାକ୍ଷାତ୍କାର ପ୍ରାର୍ଥିନୀ ହେଲେ । ସମସ୍ତଙ୍କୁ ଚାକରମାନଙ୍କର ଏକମାତ୍ର ଉତ୍ତର "ବାବୁ ଘରେ ନାହାନ୍ତି ।" ମୁଁ ଅକ୍ଳାନ୍ତ ପରିଶ୍ରମ ପୂର୍ବକ ପାଠ୍ୟ ପୁସ୍ତକମାନଙ୍କୁ ଅନ୍ତତଃ ୧୦ଥର ଆବୃତ୍ତି କଲି । ଯେଉଁଠାରେ ସନ୍ଦେହ ହୁଏ, ରାତିରେ ପ୍ରଫେସରମାନଙ୍କ ଘରେ ସେ ବିଷୟ ବୁଝି ଆସୁଥାଏ । ପଢୁ ପଢୁ ନିଦ ମାଡ଼ିବ ବୋଲି ଚାହା ଖାଉଥାଏ ଓ ନାସ ଶୁଙ୍ଘୁଥାଏ । ମୋର ପାଠ ପଢ଼ାରେ ଏପରି ମନୋଯୋଗ ଓ 'ସଙ୍ଗ ଦୋଷ', 'ବଜାରବୁଲା' ତ୍ୟାଗ ବିଷୟ ଲୋକ ମୁଖରେ ପିତୃଦେବଙ୍କ କର୍ଣ୍ଣଗୋଚର ହେଲା । ପରୀକ୍ଷା ମାସେ ଖଣ୍ଡେ ଅଛି ପିତୃଦେବ କଟକ ଆସି ବସାରେ ଦୁଇଦିନ ରହିଥିଲେ-ମୁଁ ତାଙ୍କୁ ମାତ୍ର ଆସିଲାବେଳେ ଓ ଘରକୁ ଫେରିଲାବେଳେ ଦୁଇଥର ଗୋଡ଼ତଳେ ପଡ଼ିଥିଲି । ପିତୃଦେବ ଘରକୁ ଫେରି ଯାଇ ଖଣ୍ଡେ ପତ୍ର ଦେଲେ, "ବାବୁ ଗୋପାଳଚନ୍ଦ୍ର, ଶରୀରକୁ ଜଗି ପରିଶ୍ରମ କରିବା ଉଚିତ । ଅତିରିକ୍ତ ପରିଶ୍ରମ କଲେ ଶରୀର ରୁଗ୍ଣ ହେବ, ଅତଏବ ସ୍ୱାସ୍ଥ୍ୟ ପ୍ରତି ଦୃଷ୍ଟି ରଖିବ ।" ଏଥିପୂର୍ବରୁ ମୋ ଉପରେ ବିରକ୍ତ ଥିବାରୁ ପିତୃଦେବ ପ୍ରାୟ ଦେଢ଼ବର୍ଷ ପତ୍ର ଲେଖି ନଥିଲେ । ଯେଉଁ କେଦାରବାବୁ ମୋର ଦୁଷ୍ଚରିତ୍ର ଯୋଗୁଁ ଆମ ବସାକୁ ଆସିବା ବନ୍ଦ କରି ଦେଇଥିଲେ । ସେ ମଧ୍ୟ ପ୍ରତିଦିନ ମୋ ପାଖକୁ ଆସି, ପାଠପଢ଼ାର ତତ୍ତ୍ୱ ନେବା ଆରମ୍ଭ କଲେ । ସେବର୍ଷ ମୁଁ ଏଫ୍.ଏ. ପରୀକ୍ଷା ଦେଲି ଓ ଫାଷ୍ଟ ଡିଭିଜନରେ ପ୍ରଥମ ସ୍ଥାନ ଅଧିକାର କରି ପାସ୍ କଲି । ପାସ୍ ଖବର ଶୁଣି ଗ୍ରାମକୁ ଗଲି । ମୋର ସେ ସମୟରେ ଏକ ଝୁଙ୍କ୍ ଲାଗିଥାଏ ଯେ ମୁଁ ଏଫ୍.ଏ. ପାସ୍ କରିବା ପରେ ମୋର ଆଶୀର୍ବାଦ ଘର (ନିଷେକ) ସମ୍ପାଦିତ ହେଲା । ଏଫ୍.ଏ. ପାସ୍ କରିବା ପରଠାରୁ ମୋର ନିୟମିତ ଡାଏରୀ ଅଛି । ସେଥିରୁ ବହୁତ ସାହାଯ୍ୟ ମିଳିବ ।

•

***ଆତ୍ମଜୀବନୀ*** (ଅସମାପ୍ତ) ପ୍ରହରାଜ ପରିକ୍ରମା, କଟକ

# ରେଭେନ୍‌ସା କଲେଜ

## ମୋହିନୀ ମୋହନ ସେନାପତି

ମୁଁ ଏଣ୍ଟ୍ରାନ୍‌ସ ପାସ୍ କରି ରେଭେନ୍‌ସା କଲେଜରେ ଏଫ୍.ଏ ଓ ବି.ଏ ପଢ଼ିବାକୁ ଲାଗିଲି । ସେତେବେଳେ ପାଠ୍ୟ ପୁସ୍ତକ ଛଡ଼ା ଏବଟ୍‌-ଲିଖିତ ନେପୋଲିୟନ ବୋନାପାର୍ଟଙ୍କ ଜୀବନୀ ମୋର ପ୍ରିୟ ସଙ୍ଗୀ ଥିଲା । ସେ ବହି ପଢ଼ିଲେ ମୁଁ ରୋଗ-ଶୋକ ସମସ୍ତ ଭୁଲି ଯାଉଥିଲି । ମୋର ସତୀର୍ଥ କବି ନନ୍ଦକିଶୋର ବଳ ସେତେବେଳେ ତାଙ୍କର ଅପୂର୍ବ ସୁନ୍ଦର କରିବାତବଳୀ ଦ୍ୱାରା ଉତ୍କଳକୁ ମୋହିତ କରାଉଥିଲେ । ତାଙ୍କର ଲେଖାର ଅନେକ ଅଂଶ ମୋର ମୁଖସ୍ଥ ହୋଇ ଯାଇଥିଲା । ମୁଁ ସେ ସବୁ ତାଙ୍କଠାରେ ଆବୃତ୍ତି କଲେ ସେ ଆନନ୍ଦିତ ହେଉଥିଲେ । ସେ ସମୟରେ ରାଧାନାଥଙ୍କ ମହା-ଯାତ୍ରା, ମଧୁସୂଦନଙ୍କ ବସନ୍ତଗାଥା ଏବଂ ଫକୀରମୋହନଙ୍କ ଛମାଣ ଆଠଗୁଣ୍ଠ ପ୍ରଥମ ପ୍ରକାଶିତ ହେଲା । ଏହି ସମୟକୁ ଉତ୍କଳ-ସାହିତ୍ୟର ସୁବର୍ଣ୍ଣ ଯୁଗ କହିଲେ ଅତ୍ୟୁକ୍ତି ହେବ ନାହିଁ । କଲେଜରେ ପଢ଼ିବା ସମୟରେ ମୁଁ ଓଡ଼ିଆ କାହାଣୀ ବିଷୟରେ ପ୍ରବନ୍ଧ ଲେଖି ତାଳଚେର ପଦକ ପୁରସ୍କାର ପାଇଥିଲି । ଜିଲ୍ଲାର କଲେକ୍‌ଟର ପ୍ରବନ୍ଧଗୁଡ଼ିକ ପରୀକ୍ଷା କରିଥିଲେ ଏବଂ ମୋ ପ୍ରବନ୍ଧର ବିଶେଷ ପ୍ରଶଂସା କରିଥିଲେ ।

ଭକ୍ତକବି ମଧୁସୂଦନଙ୍କ ସମ୍ପର୍କରେ ଆସି ମୁଁ ବ୍ରାହ୍ମଧର୍ମ ପ୍ରତି ଆକୃଷ୍ଟ ହେଲି । ଉପାସନା ସମୟରେ ତାଙ୍କର ଭାଷାର ଗାମ୍ଭୀର୍ଯ୍ୟ ଓ ମାଧୁରୀ କଟକ ସହରର ଶିକ୍ଷିତ ମଣ୍ଡଳୀଙ୍କୁ ଆକର୍ଷଣ କରୁଥିଲା । ସେ ଓଡ଼ିଶ୍ୟାର କେଶବଚନ୍ଦ୍ର ଥିଲେ । ଈଶ୍ୱର ଓ ପରକାଳ ବିଶ୍ୱାସର ଦାର୍ଶନିକ ଭିତ୍ତି ଜାଣିବା ସକାଶେ ମୁଁ ବି.ଏ. ପରୀକ୍ଷା ପାଇଁ ଦର୍ଶନ ପଢ଼ିବାକୁ ଲାଗିଲି । ଦର୍ଶନରେ ଯେଉଁ ଯୁକ୍ତି ଦେଖିଲି ସେଥିରେ ମୁଁ ସନ୍ତୁଷ୍ଟ ହୋଇପାରିଲି ନାହିଁ । ସେ ସମୟରେ ବଙ୍ଗସାହିତ୍ୟରେ ସାକାର ଓ ନିରାକାର ଉପାସନା ଘେନି ତର୍କ ବିତର୍କ ଚଳୁଥିଲା । ମୋର ଯେତେଦୂର ମନେ ପଡ଼େ ନଗେନ୍ଦ୍ରନାଥ ଚଟ୍ଟୋପାଧ୍ୟାୟ ଧର୍ମ-ଜିଜ୍ଞାସା ପ୍ରଭୃତି ପୁସ୍ତକ ରଚନା କରି ବ୍ରାହ୍ମ ଧର୍ମ ଓ ନିରାକାର-ଉପାସନାର ସାରବତ୍ତା ପ୍ରମାଣ କରୁଥିଲେ । ହିନ୍ଦୁଧର୍ମର ଜଣେ ପ୍ରଧାନ ପୃଷ୍ଠପୋଷକ ରାୟବାହାଦୁର ଯତୀନ୍ଦ୍ରମୋହନ ସିଂହ ସାକାର ଓ ନିରାକାର ତତ୍ତ୍ୱ-ବିଚାର ନାମକ ପୁସ୍ତକ

ରଚନାକରି ସାକାର ଉପାସନାର ଯୁକ୍ତିଯୁକ୍ତତା ଏବଂ ନିରାକାର ଉପାସନାର ଓ ଭ୍ରାନ୍ତି ପ୍ରତିପାଦନ କରିବାକୁ ପ୍ରବୃତ୍ତ ହେଲେ । ଏ ସବୁ ତର୍କବିତର୍କର ଫଳରେ ମୋର ଧର୍ମ-ବିଶ୍ୱାସ ଆହୁରି ଶିଥିଳ ହୋଇ ପଡ଼ିଲା । ସେତେବେଳେ ସମାଜରେ ଗୋଟାଏ ବିଶ୍ୱାସ ଥିଲା ଯେ ବ୍ରାହ୍ମମାନେ ମିଛ କୁହନ୍ତି ନାହିଁ । ମୋର ମଧ୍ୟ ବିଶ୍ୱାସ ଥିଲା , ଯେତେବେଳେ ସେମାନେ ଈଶ୍ୱର ଦର୍ଶନ କରିଅଛନ୍ତି ସେମାନେ ନିଜେ ଜଣେ ଜଣେ କ୍ଷୁଦ୍ର ଈଶ୍ୱର ହେବେ । ପରେ ସେମାନଙ୍କ ଆଚରଣ ଦେଖି ମୋର ବିଶ୍ୱାସ ଭାଙ୍ଗିଗଲା । ଏହି ସବୁ ନାନା କାରଣରୁ ମୁଁ ଧର୍ମର ଆବରଣ ଭେଦ କରି ନାସ୍ତିକତାରେ ଉପନୀତ ହେଲି । ୧୯୦୪ ଖ୍ରୀଷ୍ଟାବ୍ଦରେ ମୁଁ ନାସ୍ତିକତା ସମର୍ଥନ କରି ଉତ୍କଳ-ସାହିତ୍ୟରେ ପ୍ରଥମ ପ୍ରବନ୍ଧ ଲେଖିବାକୁ ଆରମ୍ଭ କଲି । ମୋର ମନେ ହୁଏ ଉତ୍କଳ-ସାହିତ୍ୟ କ୍ଷେତ୍ରରେ ମୋ ପୂର୍ବେ ଏପରି ସାହସର କର୍ମ କେହି କରିନଥିଲା । ମୁଁ ଉତ୍କଳକୁ ପ୍ରଥମେ ବିପ୍ଳବର ବାଣୀ ଶୁଣାଇଅଛି । କବି ମଧୁସୂଦନ ପ୍ରଭୃତି ମୋ ପ୍ରତି ବିରକ୍ତ ହୋଇଥିଲେ କିନ୍ତୁ କବି ରାଧାନାଥ ମୋର ପ୍ରଶଂସା କରିଥିଲେ । ରାଧାନାଥ କହିଲେ , ସେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଧର୍ମବିଜ୍ଞାନମାନ ପାଠ କରିଅଛନ୍ତି ଏବଂ ଦେଖିଛନ୍ତି ଯେ ଈଶ୍ୱର ଓ ପରକାଳ ସମ୍ବନ୍ଧୀୟ ତର୍କମାନ ଭ୍ରାନ୍ତ । ରାଧାନାଥ ତାଙ୍କର କାବ୍ୟରେ ଧର୍ମର ମହତ୍ତ୍ୱ କୀର୍ତ୍ତନ କରି ଥାଇପାରନ୍ତି , କିନ୍ତୁ ତାଙ୍କର ବିଶ୍ୱାସ ଅନ୍ୟରୂପ ଥିଲା । ସେତେବେଳେ ଲୋକଙ୍କର ବିଶ୍ୱାସ ଥିଲା ଯେ ନାସ୍ତିକମାନେ ଚରିତ୍ରହୀନ ହୁଅନ୍ତି । ସେ ସମୟରେ ମୋର ଜଣେ ବାରିଷ୍ଟାର ବନ୍ଧୁ ତାଙ୍କର ବିଦୂଷୀ ସ୍ତ୍ରୀ ସହିତ ମୋତେ ଯେତେବେଳେ ପରିଚିତ କରାଇଦେଲେ ସେ ଭଦ୍ରମହିଳା କହିଲେ , ମୁଁ ଏତେକାଳ ଶୁଣିଥିଲି ଯେ ମୋହିନୀବାବୁ ଜଣେ ନାସ୍ତିକ , କିନ୍ତୁ ବର୍ତ୍ତମାନ ଦେଖୁଛି ସେ ଜଣେ ଭଦ୍ରଲୋକ ।

୧୯୦୨ ସାଲ୍‌ରେ ମୁଁ ରେଭେନ୍‌ସା କଲେଜରୁ ବି.ଏ. ପାସ୍ କଲି । ଉକ୍ତ ବର୍ଷ ଏହି କଲେଜରୁ ୫ଜଣ ବି.ଏ. ପାସ୍ କରିଥିଲେ । ସଚରାଚର ସେ ସମୟରେ ଉଡ଼ିଶ୍ୟାରୁ ପ୍ରତିବର୍ଷ ଜଣେ ଦୁଇଜଣ ବି.ଏ. ପାସ୍ କରୁଥିଲେ । ସେମାନେ ସମସ୍ତେ ଉଚ୍ଚ ସରକାରୀ ଚାକିରି ପାଇ ପାରୁଥିଲେ । ସେମାନଙ୍କ ମଧ୍ୟରୁ ଅନେକେ ଡେପୁଟି ସବ୍‌ଡେପୁଟି ଅଥବା ମୁନସଫ କର୍ମ ପାଉଥିଲେ । ବର୍ତ୍ତମାନ ଉଚ୍ଚ ଶିକ୍ଷା ବିସ୍ତାର ସଙ୍ଗେ ସଙ୍ଗେ ଉଡ଼ିଶ୍ୟାରୁ ପ୍ରତିବର୍ଷ ୫-୬ଜଣ ବି.ଏ. ପାସ୍ କରୁଅଛନ୍ତି । ଏଥିମଧ୍ୟରୁ ଅନେକେ କିରାଣି କାମ ମଧ୍ୟ ପାଇପାରୁ ନାହାନ୍ତି । କେହି କେହି ପ୍ରଥମ ଶ୍ରେଣୀରେ ଏମ୍.ଏ. ପାସ୍ କରି ମଧ୍ୟ ଗୋଟାଏ ଭଲ ଚାକିରି ପାଇପାରୁ ନାହାନ୍ତି । ତଥାପି ବିଶ୍ୱବିଦ୍ୟାଳୟର ଉପାଧିର ମୋହ ଶିକ୍ଷିତ ଯୁବକମାନଙ୍କୁ କେଉଁ ଅତଳ ଗହ୍ୱର ଆଡ଼କୁ ଟାଣି ନେଇ ଯାଉଅଛି । । ଦେଶରେ ଅର୍ଥୋପାର୍ଜନର ଅସଂଖ୍ୟ ପନ୍ଥା ରହିଛି । ଅନନ୍ତ-ରତ୍ନ-ପ୍ରସବିନୀ ' ଇଂରାଜୀ ଶିକ୍ଷା ଲାଭ ନ କଲେ କି ଯୁବକମାନଙ୍କର ମୁକ୍ତିର ଅନ୍ୟ ଉପାୟ ନାହିଁ ? ମୋର ଜନ୍ମ ବର୍ଷରେ ମୋର ପିତା ମହାଭାରତ ଓଡ଼ିଆ ପଦ୍ୟାନୁବାଦ ଆରମ୍ଭ କରିଥିଲେ । ଏହି ୧୯୦୨

ସାଲ୍‌ରେ ସେ ତାହା ସମ୍ପୂର୍ଣ୍ଣ କଲେ। ସାହିତ୍ୟ ଜଗତରେ ଏପରି ଅଧ୍ୟବସାୟର ଉଦାହରଣ କମ୍ ଦେଖିବାକୁ ମିଳେ।

୧୯୦୫ ସାଲ୍‌ରେ ମୁଁ ୧୦୦ ଟଙ୍କା ବେତନରେ ସବ୍‌ଡେପୁଟି କାର୍ଯ୍ୟ ଗ୍ରହଣ କଲି। ସାର୍ କୃଷ୍ଣଗୋବିନ୍ଦ ଗୁପ୍ତ ଏଥିରେ ମୋର ସହାୟ ହୋଇଥିଲେ। ୧୯୧୧ ସାଲ୍‌ରେ ମୁଁ ରେଭେନ୍‌ସା କଲେଜରେ ୨୦୦ ଟଙ୍କା ବେତନରେ ଅସ୍ଥାୟୀ ଦର୍ଶନର ଅଧ୍ୟାପକ ନିଯୁକ୍ତ ହେଲି। ଉଡ଼ିଶ୍ୟାର ବର୍ତ୍ତମାନ ଶାସନକର୍ତ୍ତା ସାର୍ ଜନ୍ ହବାକ୍ ଏଥିରେ ମୋର ସହାୟ ହୋଇଥିଲେ। ୧୯୦୮ ସାଲରେ ମୁଁ ସବ୍ ଡେପୁଟି କାର୍ଯ୍ୟ କରୁଥିବା ସମୟରେ ଦର୍ଶନରେ ଏମ୍.ଏ. ପାସ୍ କଲି। ମୁଁ ରେଭେନ୍‌ସା କଲେଜରେ ୨୫ ବର୍ଷ କର୍ମ କରି ୧୯୩୬ ସାଲରେ ସରକାରୀ କର୍ମରୁ ଅବସରଣ ଗ୍ରହଣ କଲି।

ମୁଁ ଯେତେବେଳେ ରେଭେନ୍‌ସା କଲେଜରେ ପଢୁଥିଲି ସେତେବେଳେ ନୀଳକଣ୍ଠ ମଜୁମଦାର ଓ ବିପିନବିହାରୀ ଗୁପ୍ତଙ୍କ ପରି ଯୋଗ୍ୟ ବଙ୍ଗାଳୀ ପଣ୍ଡିତମାନେ ଉକ୍ତ କଲେଜର ଅଧ୍ୟକ୍ଷ କାର୍ଯ୍ୟ କରୁଥିଲେ। ଓଡ଼ିଆମାନଙ୍କ ମଧ୍ୟରେ ଅଧ୍ୟକ୍ଷ ହେବା ଭଳି ଲୋକ ସେତେବେଳେ କେହି ନଥିଲେ। ବଙ୍ଗାଳୀମାନଙ୍କୁ ଅଧ୍ୟକ୍ଷ କର୍ମରୁ ତଡ଼ିବା ପାଇଁ ସେତେବେଳେ ଆନ୍ଦୋଳନ ଉପସ୍ଥିତ ହେଲା। ସରକାର ଏହି ସୁଯୋଗରେ ଉକ୍ତ ପଦରେ ଅଯୋଗ୍ୟ ଇଂରେଜ କର୍ମଚାରୀମାନଙ୍କୁ ନିଯୁକ୍ତ କରିବାକୁ ଲାଗିଲେ। ଏହି କର୍ମଚାରୀମାନଙ୍କ ଅଧୀନରେ ଥାଇ ରେଭେନ୍‌ସା କଲେଜର ଶିକ୍ଷା ବାଧାପ୍ରାପ୍ତ ହୋଇଅଛି। ବର୍ତ୍ତମାନ ଯୋଗ୍ୟ ଏବଂ ଶିକ୍ଷିତ ଓଡ଼ିଆମାନେ ଉଡ଼ିଶ୍ୟାର ଶିକ୍ଷା ବିଭାଗର ସମସ୍ତ ଉଚ୍ଚପଦ ଅଧିକାର କରଅଛନ୍ତି। ଏହା ଅତ୍ୟନ୍ତ ଆନନ୍ଦର ବିଷୟ। ମୋତେ କିନ୍ତୁ ଚିରକାଳ ଇଂରେଜ ଅଧ୍ୟକ୍ଷ ଅଧୀନରେ କାର୍ଯ୍ୟ କରିବାକୁ ହୋଇଥିଲା। ମୁଁ ଯେତେକାଳ ଶିକ୍ଷା ବିଭାଗରେ କର୍ମ କରିଥିଲି ବିଶ୍ୱବିଦ୍ୟାଳୟ ନିର୍ଦ୍ଧାରିତ ପାଠ୍ୟର ସୀମା ଅତିକ୍ରମ କରି ଛାତ୍ରମାନଙ୍କୁ ସାମ୍ୟ, ମୈତ୍ରୀ ଓ ସ୍ୱାଧୀନତାର ମନ୍ତ୍ର ଶିଖାଉଥିଲି। ଛାତ୍ରମାନଙ୍କ ମନରେ ସ୍ୱାଧୀନ ଚିନ୍ତା ଫୁଟାଇବାକୁ ମୁଁ ସର୍ବଦା ଚେଷ୍ଟା କରିଅଛି। ଅନ୍ୟ ଅଧ୍ୟାପକମାନେ ଏକାର୍ଯ୍ୟ ସେମାନଙ୍କର କର୍ତ୍ତବ୍ୟର ଅନ୍ତର୍ଗତ ବୋଲି ମନେ କରୁନଥିଲେ।

କଲେଜରେ ଶିକ୍ଷକତା କରିବା ସମୟରେ ମୁଁ ଗୋଟାଏ ନୂତନ ବସ୍ତୁ ଆବିଷ୍କାର କଲି। ଆବିଷ୍କାର କଲି କହିବାଟା ଠିକ୍ ନୁହେଁ, କାରଣ ମୋ ପୂର୍ବେ ଯାହା ଆବିଷ୍କୃତ ହୋଇଥିଲା ତାହାହିଁ ମୁଁ ଦେଶବାସୀଙ୍କୁ ଶୁଣାଇଅଛି। ଦିନେ କଲିକତାରେ ଗୋଟାଏ ପୁସ୍ତକ ଦୋକାନରେ ଖଣ୍ଡିଏ ବହି ଦେଖିଲି- V.F. Calverton ଲିଖିତ The Bankruptcy of Marriage. ଉକ୍ତ ପଣ୍ଡିତ ନାନା ତଥ୍ୟ ସଂଗ୍ରହ କରି ଦେଖାଇ ଅଛନ୍ତି ଯେ ବିବାହ ପ୍ରଥ ସମାଜ ପକ୍ଷରେ ଅକଲ୍ୟାଣକର, ତାହା ବିତାଡ଼ିତ ହେବା ଉଚିତ। ମୁଁ ସେତେବେଳେ ବିବାହ ବିଷୟରେ ଅନ୍ୟାନ୍ୟ ପୁସ୍ତକ ଆଲୋଚନା

କଲି। ବିବାହ ବିନା ଯେ ସମାଜ ରହିପାରେ ଏ ବିଷୟରେ ସ୍ଥିର-ନିଶ୍ଚୟ ହେବା ପାଇଁ ମୁଁ ଆସାମର ରାଜଧାନୀ ସିଲଂ ଯାତ୍ରା କଲି। ସେଠାରେ ଦେଖିଲି ଖାସୀ ଓ ସିଣ୍ଟେଙ୍ଗମାନଙ୍କ ମଧ୍ୟରେ ବିବାହ ପ୍ରଥା ନାହିଁ କହିଲେ ଚଳେ। ସେଠାରେ ପିତା ନିର୍ଦ୍ଦେଶ କରିବା କଠିନ ବୋଲି ମାତା ସମସ୍ତ ସମ୍ପତ୍ତି ପାଏ ଏବଂ ମାତା ଅନ୍ତେ କନ୍ୟାମାନେ ତାହାର ସମ୍ପତ୍ତି ପାଆନ୍ତି। ଏହି ବିଚିତ୍ର ଉତ୍ତରାଧିକାର ନିୟମ ବିଷୟରେ ସେଠାକାର କଲେକ୍ଟର ଖଣ୍ଡିଏ ପୁସ୍ତକ ରଚନା କରିଥିଲେ। ମୁଁ ସେହି କଲେକ୍ଟର Keith Cantlie ଙ୍କ ସହିତ ଦେଖା କଲି। ସେ ତାଙ୍କର "Notes on Khasi Law" ନାମକ ପୁସ୍ତକ ମୋତେ ଉପହାର ଦେଲେ। ମୁଁ ଏତେଗୁଡ଼ିଏ ଅସ୍ତ୍ର ହସ୍ତଗତ କରି ମୋର ମତ ପ୍ରଚାର କରିବାକୁ ଲାଗିଲି। ନବଭାରତ ସହକାର ପ୍ରଭୃତି ଉଡ଼ିଶ୍ୟାର କେତେଗୁଡ଼ିଏ ମାସିକ ପତ୍ରିକାରେ ମୋର ବିବାହ ବିଷୟକ ପ୍ରବନ୍ଧମାନ ପ୍ରକାଶିତ ହେଲା। ସମସ୍ତ ଭାରତବାସୀମାନେ ଯେ ମୋର ମତ ଜାଣିବେ ସେ ବିଷୟ ମୁଁ ସ୍ୱପ୍ନରେ ସୁଦ୍ଧା ଭାବି ନଥିଲି। ଦିନେ କଲେଜରେ ପଢ଼ାଉଥିବା ସମୟରେ ଛାତ୍ରମାନେ ମୋତେ ଗୋଟାଏ ବକ୍ତୃତା ଦେବାକୁ ଅନୁରୋଧ କଲେ। Atrocities of the Marriage Law (ବିବାହବିଧିର ନୃଶଂସତା) ମୋର ବକ୍ତୃତାର ବିଷୟ ସ୍ଥିର ହେଲା। ବକ୍ତୃତା ଦେବାର ଅଳ୍ପ ଦିନ ପରେ ଦେଖିଲି 'Statesman' ନାମକ ଦୈନିକ ପତ୍ରିକାରେ ମୋର ବକ୍ତୃତାର ବିଷୟ ପ୍ରକାଶିତ ହୋଇଅଛି। ତାର ପରେ ଦେଖିଲି, ଭାରତବର୍ଷର ଅନ୍ୟାନ୍ୟ ପତ୍ରିକାରେ ମୋର ବକ୍ତୃତାର ବିଷୟ ଆଲୋଚିତ ହେଉଅଛି। ମୋର ବକ୍ତୃତା ବିରୁଦ୍ଧରେ ଯେତେ ସବୁ ପ୍ରତିବାଦ ବାହାରି ଥିଲା ସେ ସବୁର ଉତ୍ତରରେ ମୁଁ "ଅମୃତ ବଜାର ପତ୍ରିକା"ର ସମ୍ପାଦକଙ୍କୁ ଖଣ୍ଡିଏ ପତ୍ର ଲେଖିଲି। ସେ ସେପତ୍ର ତାଙ୍କର ପତ୍ରିକାର ୧୦ ଏପ୍ରିଲ, ୧୯୩୬ ସଂଖ୍ୟାରେ ପ୍ରକାଶ କଲେ। ଏହି ପତ୍ରର ଅନେକ ପ୍ରତିବାଦ ବାହାରିଅଛି। କେତେକ ବିବାହିତା ଓ ଅବିବାହିତା ରମଣୀମାନେ ମଧ୍ୟ ଏ ବିତର୍କରେ ଯୋଗ ଦେଇଥିଲେ।

•

---

***ବିବିଧ ପ୍ରସଙ୍ଗ*** (ଅବତରଣିକା), ପ୍ରଥମ ପ୍ରକାଶ-୧୯୩୯

# ରେଭେନ୍ସା କଲେଜ

## ଗୋଦାବରୀଶ ମିଶ୍ର

କଟକରେ ବର୍ତ୍ତମାନ ଲୋକସଂଖ୍ୟା ବଢ଼ିଛି, ହାକିମହୁକୁମା ବହୁତ ରହିଛନ୍ତି; ଯାନବାହନ ଅଧିକ ଚାଲୁଛି, ନୂଆ ନୂଆ ଘର ତିଆରି ହେଉଛି, କିଣାବିକା ବୃଦ୍ଧି ପାଇଛି । ଦୋକାନବଜାର କ୍ରମଶଃ ସ୍ଥାନ ମାଡ଼ି ବ୍ୟାପୁଛି; କିନ୍ତୁ ଲୋକେ ଯେ ବେଶି ଉପଯୁକ୍ତ ହୋଇଛନ୍ତି, ତା' ନୁହେଁ । ଭାତହାଣ୍ଡିରୁ ଗୋଟିଏ ଚିପିଲେ ତା'ର ପ୍ରମାଣ ମିଳିବ । ପୂର୍ବେ କଟକ ମ୍ୟୁନିସିପାଲିଟିର ପରିଚାଳନା ନିର୍ବାଚିତ ସଦସ୍ୟ ଓ ସଭାପତିଙ୍କଦ୍ୱାରା ହେଉଥିଲା । ଏବେ ସ୍ୱାଧୀନ ଭାରତରେ ଆକାରରେ ବଢ଼ିଥିବା ଓଡ଼ିଶା ପ୍ରଦେଶରେ ଶାସନ ବ୍ୟବସ୍ଥା ଚଳାଇବା ନିମନ୍ତେ ଉପଯୁକ୍ତ ଲୋକ ଅଭାବରୁ ରାଜଧାନୀ କଟକର ମ୍ୟୁନିସିପାଲିଟି କାର୍ଯ୍ୟ ସରକାର ନିଜେ ଚଳାଉଛନ୍ତି । ପ୍ରାଦେଶିକ ସରକାର ଓ ପ୍ରଦେଶରୁ ଉଠି ଭାରତ ସରକାର ଭାର ମୁଣ୍ଡାଇବାକୁ ସିନା ସମର୍ଥ ଲୋକ ବାହାରୁଛନ୍ତି, ମ୍ୟୁନିସିପାଲିଟି ବେଳକୁ ସେପରି ସମର୍ଥ ଲୋକ ସରକାରଙ୍କୁ ମିଳୁନାହାନ୍ତି । ତେବେ କଟକର ଏତେ ଉନ୍ନତିରୁ କ'ଣ ଲାଭ ମିଳିଛି ? ଘର, ବଜାର, ଯାନବାହନ ତୁଳନାରେ ଲୋକ ତ ବାହାରୁନାହାନ୍ତି !

୧୯୦୭ ମସିହାରେ କଟକ ସହରର ଲୋକସଂଖ୍ୟା ବର୍ତ୍ତମାନ ଲୋକସଂଖ୍ୟାର ଅଧିକରୁ ମଧ୍ୟ ଊଣା ଥିବ । ମୋଟର ଗାଡ଼ି ଖଣ୍ଡିଏ ମାତ୍ର ଥିଲା, ବାଇସାଇକଲ ଏତେ ଦିଶୁନଥିଲା, ରିକ୍ସା ଆସିନଥିଲା ଓ ବର୍ତ୍ତମାନ ଯେଉଁ ଘର ଖଣ୍ଡିକର ଭଡ଼ା ପଞ୍ଚାଅଶୀ ଟଙ୍କା ହୋଇଛି, ତା'ର ଭଡ଼ା ଥିଲା ବାରଟଙ୍କା । ମୁଁ ସେ ଘରେ ଚନ୍ଦ୍ରମୋହନବାବୁଙ୍କ ସଙ୍ଗେ ରହୁଥିଲି । ଛତ୍ରବଜାର ନିକଟ ପଡ଼ିଆରେ ରାତିରେ ବିଧିମତେ ଡକାଇତି ଚାଲିଥିଲା । ଆଜି ସେହି ପଡ଼ିଆର ଭାଗ୍ୟ ଲେଉଟିଯାଇଛି । ତା' ଉପରେ ଲକ୍ଷ ଲକ୍ଷ ଟଙ୍କାର ବିଶାଳ କୋଠାଘରମାନ ଠିଆହୋଇଛି । ଓଡ଼ିଶାର ଭାବୀ ଭାଗ୍ୟବିଧାତାମାନଙ୍କ ଜୀବନ ଗଢ଼ାଯାଉଛି ସେହିଠାରେ । ଆଜି ତାହା ଦେଶର ଫୁଲବଗିଚା ପାଲଟିଛି କହିଲେ ଚଳିବ । ସେ ସ୍ଥାନ ହସିଉଠିଛି; ତାକୁ ଦେଖିଲେ ସହସ୍ର ସହସ୍ର ଲୋକଙ୍କ ପେଟ ପୂରିଯାଉଛି । କେବଳ ବିଶ୍ୱବିଦ୍ୟାଳୟ ପରୀକ୍ଷାଫଳ ବାହାରିବା ପରେ ଦୁଃଖ ଶୋକ ଦୁଇଚାରିଦିନ ପାଇଁ ଯାହା ମୁହଁ ଲୁଚାଇ ଅନ୍ଧାର କଣମାନଙ୍କରେ ଯାଇ ପଶୁଥିବ ।

କିନ୍ତୁ ଗୋଟାଏ ବିଷୟରେ ଏବର କଟକ ସେବର କଟକ ସଙ୍ଗେ ସମାନ ରହିଛି। କାଠଯୋଡ଼ିରେ ବଡ଼ିପାଣି ପଚିଶ ଫୁଟ ଉଠିଲେ ଏବପରି ସେ କାଳରେ ମଧ୍ୟ ଶହ ଶହ ଲୋକ ଯାଇ ବନ୍ଧ ଉପରେ ଗୁଣ୍ଡ ହେଉଥିଲେ। ୧୯୦୬ ମସିହା ବର୍ଷା ଋତୁରେ ଦିନେ ଅସଂଖ୍ୟ ଲୋକ ଯାଇ ବନ୍ଧସାରା ଜମିଗଲେ। କଲେଜ ଛାତ୍ରାବାସର ପିଲାମାନେ ଜଗିଲେ କିଲଟଗ୍ରୀ କଚେରି ପାଖ। ପାଣି ପଚିଶ ଫୁଟରୁ ଛବିଶକୁ ଉଠିଲା; ମାତ୍ର ଚବିଶ ଘଣ୍ଟା ଭିତରେ ହଠାତ୍ ପୁଣି ଖସିଗଲା। ଖବର ଆସିଲା ଯେ, ତଳେ ଦୁଇଟା ଘାଇ ଭାଙ୍ଗିଯାଇଛି। ଲୋକଙ୍କର ଧାରଣା ସେବେ ରହିଥିଲା, ଏବେ ମଧ୍ୟ ରହିଥିବ ଯେ, ବଡ଼ିପାଣିରେ କଟକ ସହର ଉବେଇଟୁବେଇ ହୋଇଗଲେ ତାକୁ ରକ୍ଷା କରିବା ନିମନ୍ତେ ତଳେ ଘାଇ ନିଶ୍ଚୟ ଭାଙ୍ଗିବ। ସହର ନିମନ୍ତେ ପଲ୍ଲୀକୁ ନାନାପ୍ରକାର ସ୍ୱାର୍ଥ ତ୍ୟାଗ କରିବାକୁ ପଡ଼େ। ଏ ତ୍ୟାଗ କ'ଣ ବଡ଼ କଥା ? ଧୋୟା ଅଞ୍ଚଳ ବିପତ୍ତିରେ ସହରରେ କ'ଣ ସଭା ସମିତି ହୁଏ ନାହିଁ ? ସେଠାରୁ କ'ଣ ଚୁଡ଼ା ଚାଉଳ ଧରି ସ୍ୱେଚ୍ଛାସେବକମାନେ ବନ୍ୟାପୀଡ଼ିତ ଅଞ୍ଚଳକୁ ନଯାଆନ୍ତି ?

୧୯୦୭ ମସିହା ବନ୍ୟା ମହାନଦୀ, ବ୍ରାହ୍ମଣୀ, ବୈତରଣୀ, ସୁବର୍ଣ୍ଣରେଖା-ସବୁ ନଦୀରେ ଏକା ସମୟରେ ହୋଇଗଲା। ସେ ସମୟରେ ବିଲାତର ଜଣେ ସାମ୍ବାଦିକ ନେଭିନସନ୍ ଭାରତ ପରିଦର୍ଶନରେ ଆସିଥିଲେ। ସେ ଆମ ବନ୍ୟାପୀଡ଼ିତ ଅଞ୍ଚଳ ଦେଖିବା ପର୍ଯ୍ୟନ୍ତେ କଟକରେ ଆସି ପହଞ୍ଚିଲେ। ସେ ଉପଲକ୍ଷରେ ଏକ ସଭାର ଆୟୋଜନ କରାଗଲା। ଆୟୋଜନର କେନ୍ଦ୍ର ହେଲା ମାଣିକଘୋଷ ବଜାରରେ ଥିବା ବ୍ରଜସୁନ୍ଦର ଦାସଙ୍କ ରହିବା ଘର। ବ୍ରଜସୁନ୍ଦର ଦାସ ବି.ଏ. ପାସ୍ କଲା ପରେ ଚାକିରିବାକିରିକୁ ନଚାହିଁ ଲୋକସେବା କରିବାକୁ ବସିଥାନ୍ତି। ତାଙ୍କର ସେ ଘରଖଣ୍ଡକରୁ ଲୋକସେବା ଦିଗରେ ପ୍ରେରଣା ବହୁକାଳରୁ ବାହାରିଛି। ସ୍ୱନାମଧନ୍ୟ ମଧୁସୂଦନ ଦାସ ଓ ଗୋପବନ୍ଧୁ ବାବୁ ସେହି ଘରେ ଆସି ଜୁଟନ୍ତି। ଆମେ କଲେଜ ଛାତ୍ରମାନେ ଗୁଣ୍ଡ ହେଉ। ନେଭିନ୍‌ସନ୍‌ଙ୍କ ସଭାରେ ବନ୍ୟା ବିଷୟରେ କେହି କେହି ବକ୍ତୃତା ଦେଲେ; କିନ୍ତୁ ଗୋପବନ୍ଧୁବାବୁ କିଛି କହିପାରିଲେ ନାହିଁ, କେବଳ ତୁହାକୁ ତୁହା କାନ୍ଦି ଉଠିଲେ। ଦୁଃଖୀର ଦୁଃଖରେ ତାଙ୍କର ପ୍ରଥମ ପ୍ରତିକ୍ରିୟା ହେଉଛି କାନ୍ଦ।

ନେଭିନ୍‌ସନ୍ ସାହେବ ଓଡ଼ିଶାରୁ ବନ୍ୟା-ବୃତ୍ତାନ୍ତ ସଂଗ୍ରହ କରିନେଇ ଚାଲିଗଲେ। ସେ ବିଲାତ ଫେରି ଭାରତ ବିଷୟରେ ଖଣ୍ଡିଏ ବଡ଼ ଗ୍ରନ୍ଥ ଲେଖିଲେ। ସେଥିରେ ମଧୁସୂଦନଙ୍କର ଭୂୟସୀ ପ୍ରଶଂସା ସ୍ଥାନ ପାଇଲା। ଆମେ କଲେଜ ଛାତ୍ରମାନେ ସେଥିରେ ଗର୍ବ ଅନୁଭବ କଲୁ। ଏଣେ ବନ୍ୟାଗ୍ରସ୍ତ ଲୋକଙ୍କ ସାହାଯ୍ୟ ସକାଶେ ଚାନ୍ଦା ଉଠିଲା। ଛାତ୍ରମାନେ ଦଳକୁ ଦଳ ଧୋୟା ଅଞ୍ଚଳରେ ଯାଇ ଲୋକସେବାରେ ଲାଗିଲେ। ଗୋପବନ୍ଧୁବାବୁ ଅନ୍ୟାନ୍ୟ କାମ ପଛକୁ ପକାଇ ସେହିଠାରେ ଯାଇ ରହିଲେ। ମୁଁ ଶଶୀଦାସଙ୍କ ନେତୃତ୍ୱରେ ଦୁଇଜଣ ବଙ୍ଗାଳୀ ପିଲାଙ୍କ ସହିତ

ଆଜି ଗଲି । ସେଠାରେ ସରକାରଙ୍କ ତରଫରୁ ଜଣେ ସବ୍‌ଡେପୁଟି ବନ୍ୟା-ସାହାଯ୍ୟ କାର୍ଯ୍ୟରେ ନିଯୁକ୍ତ ଥିଲେ । ସେ ଆଜି ଡାକବଙ୍ଗଳାରେ ଗୋଟିଏ କୋଠରି ଆମକୁ ଛାଡ଼ିଦେଲେ । ଆମେ ମଧ୍ୟ ତାଙ୍କର କେତେକ ବନ୍ୟା-ସାହାଯ୍ୟ ବରାଦ ତୁଲାଇଲୁ । ଜମିଦାରଙ୍କ ବଗି ଗ୍ରାମଦାଣ୍ଡରେ ଗଲାବେଳେ ଲୋକଙ୍କର ବସିବା ସ୍ଥାନରୁ ଉଠି ହାତଯୋଡ଼ି ଠିଆ ହେବା ମୁଁ ସେହିଠାରେ ପ୍ରଥମେ ଦେଖିଲି । ପରେ ତା'ର ଅଭିନୟ ବହୁ ସ୍ଥଳରେ ଦେଖିଛି ।

x x x x

ମୁଁ ଯଥାସମୟରେ ଏଫ୍.ଏ. ପାସ୍ କରି ପୁଣି ମାସିକ ଦଶଟଙ୍କା ବୃତ୍ତି ପାଇ କଲେଜରେ ବି.ଏ. ଶ୍ରେଣୀରେ ନାମ ଲେଖାଇଲି ଓ ଛାତ୍ରାବାସରେ ରହିଲି । କଲେଜ ଓ ଛାତ୍ରାବାସ ଉଭୟ କିଲଟରୀ କଚେରି ପାଖରେ ଥାଏ, ଚାଉଳିଆଗଞ୍ଜକୁ ଘୁଞ୍ଚିନଥାଏ । ଛାତ୍ରାବସ୍ଥାରେ ଓ ତା'ପରେ କେତେ ବର୍ଷ ମୁଁ ଲୋକଙ୍କ କଥାବାର୍ତ୍ତା, ମୁଦ୍ରା ଆଦି ଅନୁକରଣ କରି ଅଭିନୟରେ ଦେଖାଇପାରୁଥିଲି । ସାଙ୍ଗସାଥୀମାନେ ଯେ ତାହା ଶୁଣିବାକୁ ବରାଦ କରୁଥିଲେ ତାହା ନୁହେଁ, ଗୋପବନ୍ଧୁ ବାବୁଙ୍କ ଭଳି ଗୁରୁଜନ ସୁଦ୍ଧା ଅଭିନୟ ବେଳେ ଆସି ବସିଯାଉଥିଲେ । ଦିନେ ମୁଁ ଛାତ୍ରାବାସରେ ପିଲାଙ୍କ ମେଳରେ ବସି ଚନ୍ଦ୍ରମୋହନବାବୁଙ୍କ କଥାବାର୍ତ୍ତା, ଭଙ୍ଗୀ ଓ ମୁଦ୍ରା ଅଭିନୟ କରୁଛି, ଦ୍ୱାର ପାଖେ ସ୍ୱୟଂ ଚନ୍ଦ୍ରମୋହନବାବୁ ଆସି ଠିଆ ହୋଇଗଲେ । ମୋ ଛାତିରେ ଗୋଟାଏ ପଥର ପଡ଼ିଗଲା, ଅନ୍ୟାନ୍ୟ ଛାତ୍ର ଯେ ଯାହା ଦାଟରେ ଖସି ପଳାଇଲେ । ଚନ୍ଦ୍ରମୋହନବାବୁ ସର୍ବଦା ସାଧୁ ଭାଷାରେ କଥା କହନ୍ତି, କହିଲେ, "ଅପ୍ରତିଭ ହୁଅ ନାହିଁ । ବେଶ୍ ଅନୁକରଣ କରି ତ ପାରୁଛ ! ଏଠାରେ ଆସି ରହିଲ ? ଚାଲ, ପୂର୍ବ ସ୍ଥାନକୁ ଯିବ ।" ତାଙ୍କ ଚାକର ମୋ ଜିନିଷପତ୍ର ଧରିଲା; ମୁଁ ଦ୍ୱିରୁକ୍ତି ନକରି ତାଙ୍କ ପଛେ ପଛେ ଗଲି ।

ଛାତ୍ରାବାସରେ ରହିଲେ ଯେ ମୋର ଅର୍ଥାଭାବ ଘଟିବ, ସେ ଚିନ୍ତା ମୋତେ ଘାରିପକାଉଥିଲା । ସେଥିରୁ ଆପାତତଃ ନିଷ୍କୃତି ପାଇଲି; କିନ୍ତୁ ଦଶହରା ଛୁଟିରେ ଗ୍ରାମକୁ ଯାଇ ଚନ୍ଦ୍ରମୋହନବାବୁଙ୍କୁ ଚିଠିରେ ପୂର୍ବରୁ ଜଣାଇ ମୁଁ ପୁନରାୟ ଛାତ୍ରାବାସକୁ ଗଲି । ସଙ୍ଗେ ସଙ୍ଗେ ମୋର ଘୋର ଜଞ୍ଜାଳ ଆରମ୍ଭ ହୋଇଗଲା । ମୋ ନିଜ ଖର୍ଚ୍ଚକୁ ମାସିକ ଦଶଟଙ୍କା ବୃତ୍ତି ନିଅଣ୍ଟ ହେଲା । ମୁଁ ଘରକୁ ନିୟମିତରୂପେ କିଛି ପଠାଇପାରିଲି ନାହିଁ । କ୍ରମେ ଧାରଉଧାରରେ ବୁଡ଼ିଗଲି । ପୃଥିବୀର ରୀତି ହେଉଛି, 'ତେଲିଆ ମୁଣ୍ଡରେ ତେଲ ।' ମୋତେ ଧାର ମଧ୍ୟ ସେତେ ମିଳିଲା ନାହିଁ । ମୁଁ ଯେ ବୁଡ଼ିଗଲି, ଗଭୀର ପାଣିରେ ନୁହେଁ, ଗୋଡ଼ ନ ବୁଡ଼ିବା ସ୍ଥାନରେ । ଥରେ ଘରେ ବୁଢ଼ୀମା ଓ ଯୁବତୀ ପତ୍ନୀ ପଇସା ଅଭାବରେ, ନିଜ ମାନ ଜଗି ପୂରା ଦିନେ ଖାଡ଼ା ଉପାସରେ ରହିଲା ପରେ, ପରଦିନ ମଧ୍ୟାହ୍ନଭୋଜନ ଲାଗି ଚାଉଳ ଉଧାର ଖୋଜାହେଲା; ମାତ୍ର ମିଳିଲା ନାହିଁ । ଗୋସାଇଁଶାଶୂ ଓ ନାତୁଣୀବୋହୂ ଦ୍ୱିତୀୟ ଦିନର ସାଧନା ନିମନ୍ତେ ପ୍ରସ୍ତୁତ ହୋଇଗଲେ ।

କେତେକ ସମୟ ପରେ ଦାଣ୍ଡ କବାଟରେ ଧକ୍କା ବାଜିଲା, ସ୍ୱର ଶୁଣାଗଲା- ମନିଅର୍ଡର ଆସିଛି, ନିଅ।

ଏହିପରି କେତେକ ଆକସ୍ମିକ ଘଟଣା ଦେଖି ବହୁ ଲୋକ ବିଶ୍ୱାସ କରନ୍ତି ଯେ, ପୃଥିବୀରେ ଈଶ୍ୱର ଅଛନ୍ତି, ଦୀନ-ଦୁଃଖୀଙ୍କ ହାଲ ବୁଝୁଛନ୍ତି, ଭଲ ମନ୍ଦ ଭିତରେ ତୁଳନା କରୁଛନ୍ତି, ଲାଞ୍ଛିତ ଓ କ୍ଷତିଗ୍ରସ୍ତଙ୍କୁ ନ୍ୟାୟ ବିଚାର ଦେଉଛନ୍ତି। ବିଶାଳ ମାନବସମାଜ ଏହି ବିଶ୍ୱାସରେହିଁ ଆତଯାତ ହେଉଛି। ପ୍ରକୃତି ସକଳ ବିଷୟରେ ଗୋଟାଏ କଣ୍ଟ ନିର୍ଦ୍ଦିଷ୍ଟ କରିଛି। ବିଷ୍ଟି, ବିପଦ, ବିପ୍ରାତ, ବିସମ୍ବାଦ, ବୈଲକ୍ଷଣ ଯେତେ ଉଗ୍ର ଉତ୍କଟ ହେଉ, ସେହି କଣ୍ଟ ପର୍ଯ୍ୟନ୍ତ ଉଠେ, ତାକୁ ପ୍ରାୟ ଟପେ ନାହିଁ। ଗ୍ରୀଷ୍ମ ଋତୁରେ ତାପ ସ୍ଥାନବିଶେଷରେ ୧୧୦, ୧୧୫. ବା ୧୨୦ ଡିଗ୍ରୀ ଯାଏ ବଢୁଛି; କିନ୍ତୁ ସଙ୍ଗେ ସଙ୍ଗେ ଅପ୍ରାଏ ବର୍ଷା କାହୁଁ ଆସିଯାଉଛି ଓ ବାୟୁର ତାପ ଦଣ୍ଡକ ମଧ୍ୟରେ ୮୦ ଡିଗ୍ରୀକୁ ଖସିପଡୁଛି। ବନ୍ୟା ପ୍ରବଳ ହୋଇଉଠିଲା ମାତ୍ରେ ଗୋଟାଏ ଘାଇ ଭାଙ୍ଗି ପାଣି କୂଳ ତଳକୁ ଓହ୍ଲାଇଯାଉଛି। ପାଣି ଅଭାବରେ ପୃଥିବୀ ଆଟୁପାଟୁ ହୋଇଗଲେ ଇନ୍ଦ୍ରଦେବତା ସ୍ୱର୍ଗରୁ ବୃଷ୍ଟି ଢାଳି ଦେଉଛନ୍ତି। ଏହାହିଁ ହେଉଛି ସୃଷ୍ଟିର ସତ୍ୟ। ସୁତରାଂ ସର୍ବଦ୍ରଷ୍ଟା ଶାସ୍ତ୍ରକାର କହିପାରିଛନ୍ତି, "ସତ୍ୟେନ ଧ୍ରିୟତେ ଜଗତ୍।" ସେ ସତ୍ୟକୁ ଯୁଗେ ଯୁଗେ ବିଷମ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାକୁ ପଡୁଛି। ତାର ପରୀକ୍ଷା ରାଷ୍ଟ୍ରବିପ୍ଳବ ଓ ପ୍ରଳୟ ଆଦି ବଡ଼ ବଡ଼ ବିଷୟରେ ଯେପରି, ଦରିଦ୍ର କୁଟୀରର ସାମାନ୍ୟ ଦୈନନ୍ଦିନ ଘଟଣାରେ ସୁଦ୍ଧା ସେହିପରି ହୋଇଯାଉଛି।

**ଛାତ୍ରାବାସ ଜୀବନ**

ମୁଁ ଛାତ୍ରାବାସରେ ନୀଳକଣ୍ଠବାବୁଙ୍କ ପାଖେ ତାଙ୍କ କୋଠରିରେ ରହିଲି। ପ୍ରତ୍ୟେକ କୋଠରିରେ ତିନିଜଣ ରହୁଥିଲେ। ମୋତେ ତୃତୀୟ ଧରିଲେ ଦ୍ୱିତୀୟ ଜଣକ କୃପାସିନ୍ଧୁ ମିଶ୍ର ବା ସାରଙ୍ଗଧର ଦାସ ହେବେ-ମୋର ଠିକ୍ ମନେପଡୁନାହିଁ। ନୀଳକଣ୍ଠବାବୁ ପ୍ରଥମ ଦିନରୁ ମୋତେ ଖୁବ୍ ସାହାଯ୍ୟ କଲେ। କଟକକୁ ଆସିବାଠାରୁ ମୋର ପୃଥକ୍ ବାସନ ଦରକାର ହୋଇନଥିଲା। ମୁଁ ଛଅଣାରେ ଖଣ୍ଡିଏ ପିତ୍ତଳ ଥାଳି କିଣିଲି। ଅନ୍ୟ ଛାତ୍ରମାନେ ଓ ବିଶେଷ ଭାବରେ ପାଚକ ପିତ୍ତଳ ଥାଳି ଦେଖି ନାକ ଟେକିଲେ। ନୀଳକଣ୍ଠବାବୁ ତାକୁ ମୋ ଜୀବନର ଏକ ରୀତିରେ ପକାଇ କହିଲେ, "କଂସା ବାସନରେ ସେ ଖାଆନ୍ତି ନାହିଁ।" ଘରେ ପଣ୍ଡୁ ପଣ୍ଡୁ ମୋ ମୁଣ୍ଡରେ ଯେ ଚାଳ ବାଜି ଯାଉଥିଲା, ଆପାତତଃ ସେଥିରୁ ବର୍ତ୍ତିଗଲି ଅବଶ୍ୟ; ମାତ୍ର କତରା ଯୋଡ଼େଇ ହେଲେ କଣ ଯମ ଛାଡ଼େ ? ମୋ ଅର୍ଥାଭାବ ଦିନ କେତେଟାରେ ବାହାରକୁ ଫିଟି ବାହାରିଲା।

ଛାତ୍ରାବାସର କୋଠ ରୋଷାଇ ପାଣ୍ଡିକୁ ମାସିକ ପାଞ୍ଚ ଟଙ୍କା ଦଶ ଅଣା ଦିଆଯାଉଥିଲା। ସେ ଟଙ୍କା ପାଚକ ନିଏ ଓ ସକାଳ ସନ୍ଧ୍ୟା ଭାତଖିଆ ଚଳାଏ। ଭାତ ସଙ୍ଗେ ଡାଲି, ନିରାମିଷ ତରକାରି, ମାଛଝୋଳ ଓ ଭଜା କିମ୍ବା ଖଟା ଥାଏ। ସପ୍ତାହକେ ଥରେ; ରବିବାର ଦିନ ମାଂସ

ତରକାରି ଯେ ହୁଏ, ତାହା ତାରି ଭିତରୁ । ମାସକୁ ମାସ ଥରେ ଭୋଜି ମଧ୍ୟ ହୁଏ । କିନ୍ତୁ ସକାଳ ଓ ଉପରଓଳିର ଜଳଖିଆ ବ୍ୟବସ୍ଥା ସ୍ୱତନ୍ତ୍ର । ତାହା ମଧ୍ୟ ସେହି ପାଚକ ଯୋଗାଏ । ସେଥିପାଇଁ ସ୍ୱତନ୍ତ୍ର ଖର୍ଚ୍ଚ ଦେବାକୁ ପଡ଼େ । ମୁଁ ଅଗାଧୁଆ ନଖାଉଥିବା ବାହାନାରେ ସକାଳ ଜଳଖିଆଟା କୌଣସି ପ୍ରକାରେ ଏଡ଼ିଲି, ଉପରଓଳିକୁ ପାଚକ ଏକାବେଳକେ ନଛୋଡ଼ବନ୍ଧା । ଦୁଇ-ତିନି ଦିନ ପରେ ମୁଁ ପ୍ରତିକାରର ବାଟ ବାହାର କରିନେଲି, କଲେଜରୁ ଆସି ସଙ୍ଗେ ସଙ୍ଗେ ହାଉଆ ଖାଇବାକୁ ବୁଲି ଚାଲିଯାଇ ସନ୍ଧ୍ୟା ଉତ୍ତାରେ ଫେରିବାକୁ ଆରମ୍ଭ କଲି ।

କିନ୍ତୁ ଗୋଟାଏ ଆପଦରୁ ରକ୍ଷା ପାଇବା ସଙ୍ଗେ ସଙ୍ଗେ ମୋତେ ଆଉ ଗୋଟାଏ ଆପଦର ସମ୍ମୁଖୀନ ହେବାକୁ ପଡ଼ିଲା । 'ଭୋକେ ଓଡ଼ିଆ ନିଦ ଯାଏ' କଥାର ଯଥାର୍ଥତା ମୋଠାରେ ପ୍ରମାଣିତ ହେବାକୁ ବସିଲା । ସନ୍ଧ୍ୟା ପରେ ମୋତେ ଏତେ ନିଦ ଘାରିପକାଇଲା ଯେ, ବହି ଧରି ବସି ପଢ଼ିବା ମୋ ପକ୍ଷେ ଅସମ୍ଭବ ହୋଇପଡ଼ିଲା । ସେ ବାଟ ସୁଦ୍ଧା ମୁଁ ରୁନ୍ଧିଦେବାକୁ ବସିଲି । ସକାଳ ଭାତଖିଆବେଳେ ଗ୍ରାସେ ଆକଣ୍ଠ ଚୁଟି ପର୍ଯ୍ୟନ୍ତ ଠେସି କୋଠ ରୋଷେଇକୁ ଦିଆଯାଉଥିବା ଟଙ୍କାର ଦେଡ଼ଗୁଣ ପର୍ଯ୍ୟନ୍ତ ଖାଇବାକୁ ଆରମ୍ଭ କଲି । ସେତେବେଳେ ମୁଁ ପ୍ରାୟ କଟକୀ ଦେଡ଼ପା ଚାଉଳର ଭାତ ଖାଉଥିଲି । ଆଜି ଚାଳିଶ ବର୍ଷ ପରେ ସେ ସ୍ମୃତିଟିକ ବିସ୍ମୃତି ଗର୍ଭରୁ ଟାଣିଆଣି ଦେଖିଲେ ମୋ ନିଜର ମଧ୍ୟ ପ୍ରତ୍ୟୟ ହେଉନାହିଁ । ସେତେବେଳେ ପୂରା ଗ୍ରାସେ ଖାଇଦେଲାପରେ ଘଣ୍ଟାଏ ଦୁଇଘଣ୍ଟା କାଳ ମୁଁ ସ୍ୱଚ୍ଛନ୍ଦରେ ଚାଲିପାରେ ନାହିଁ କି ବସିପାରେ ନାହିଁ ।

ଯେଉଁ ଘରେ ମୂଷା ଗାଡ଼ କରେ, ସେଠାରେ ଗୋଟିଏ ଜଳା ବୁଜିଲେ ପୁଣି ଆଉ ଗୋଟାଏ ଫିଟେ । ଭୋକ ଯୋଗେ ସନ୍ଧ୍ୟାରେ ଢୋଳାଇବା ପ୍ରାଣୀକୁ ଅତିଭୋଜନ ଫଳରେ କଲେଜ ଶ୍ରେଣୀରେ ବସି ଢୋଳାଇବାକୁ ହେଲା । ପ୍ରଥମ ଦୁଇଘଣ୍ଟା ଇଂରେଜୀ ସାହିତ୍ୟ ଓ ଦର୍ଶନ ଥାଏ । ଦର୍ଶନରେ ମୁଁ ପୁଣି 'ଅନର୍ସ' ନେଇଥିଲି । ଇଂରେଜୀ ଶ୍ରେଣୀରେ ତେର ଜଣ ଛାତ୍ର । ସେଠାରେ ପଛରେ ବସି ଢୋଳାଇବାରେ ସୁବିଧା ଥାଏ; କିନ୍ତୁ ଦର୍ଶନ ଶ୍ରେଣୀରେ ମୋଟ ଛାତ୍ରସଂଖ୍ୟା ପାଞ୍ଚ । ତାର ଆଉ ପଛ ନଥାଏ, ସବୁ ଆଗ, ସୁତରାଂ ମୁଁ ସେ ଶ୍ରେଣୀରେ ପ୍ରତିଦିନ ଅପଦସ୍ଥ ହୁଏ । ଇଂରେଜୀ ଶ୍ରେଣୀରେ ଦ୍ୱିତୀୟ ଧାଡ଼ିରେ କୃତ୍ତିବାସ ସାମନ୍ତରାୟ ମୋ ପାଖେ ବସନ୍ତି । ସେ ମୋତେ ଢୋଳାଇବା ଦେଖିଲେ କହୁଣି ମାରି ତାଜା କରିଦିଅନ୍ତି । ଇଂରେଜୀ ପଢ଼ାନ୍ତି ଉପେନ୍ଦ୍ର ମୈତ୍ର । ସେ ଛାତ୍ରମାନଙ୍କୁ ନଚାହିଁ ତନ୍ମୟ ହୋଇ ପଢ଼ାଇବାରେ ଲାଗିଥାଆନ୍ତି; କିନ୍ତୁ ପଢ଼ାଭିତରେ ହସ କଥାରେ ସେ ଯେତେବେଳେ ହସନ୍ତି, ପିଲାଙ୍କ ଉପରେ ଥରେ ଆଖି ବୁଲାଇ ଦେଇଯାନ୍ତି । ସେଥିପାଇଁ ପିଲାମାନେ ହସିଉଠନ୍ତି । ସାମନ୍ତରାୟ ସେତେବେଳେ ମୋତେ କହୁଣିରେ ମାରିଦେଇ କହନ୍ତି, "ଅଧ୍ୟାପକ ହସୁଛନ୍ତି,ହସ ।" ଆଖି ଫିଟାଇ ହସିଉଠେ । ମୋ ସୌଭାଗ୍ୟକୁ ଅଧ୍ୟାପକ କେବେ ପଚାରିନାହାନ୍ତି, "କାହିଁକି ହସୁଛ କହ ତ ?"

ନିତି ଅପଦସ୍ଥ ହେବା ଛଡ଼ା ମୋର ବାସ୍ତବିକ୍ କ୍ଷତି ମଧ୍ୟ ଘଟିଲା । ଶିକ୍ଷକଙ୍କ ମୁହଁରୁ କଥା ଶୁଣି ଜ୍ଞାନଲାଭ କରିବା ବାଟ ମୋ ପକ୍ଷେ ସୁଗମ । ନିଜେ ବହି ଧରି ବସି ପଢ଼ିଲେ ବିଷୟ ମୋତେ ସ୍ପଷ୍ଟ ବୁଝାପଡ଼େ ନାହିଁ । କିଛି ଉପାର୍ଜନ କରି ଆର୍ଥିକ ଅଭାବ ମେଣ୍ଟାଇବା ନିମନ୍ତେ ମୁଁ ଗୋଟିଏ ଗୃହଶିକ୍ଷକ କାମ ଖୋଜିଲି; ମାତ୍ର କୃତକାର୍ଯ୍ୟ ହେଲି ନାହିଁ । ପଢ଼ା ଛାଡ଼ି ଚାକିରି ଖୋଜିବା ପ୍ରସ୍ତାବ ମୋ ମନକୁ ଅନେକ ଥର ଗଲା । କେବଳ ପଢ଼ିବା କାମ ମୋ ହାତରେ ଥିଲେ ମୁଁ ହୁଏତ ପଢ଼ା ଛାଡ଼ିଦେଇଥାନ୍ତି; କିନ୍ତୁ ସେ ଛାତ୍ରାବାସକୁ ଆସି କେତେକ ମାସ ପରେ ସମୁଦ୍ରର ଅଷ୍ଟପଦୀ ପରି ମୁଁ ନାନା ଆଡ଼କୁ ଗୋଡ଼ ମେଲାଇ ଦେଇଥିଲି । ଫଳରେ ବହୁ ଆଡ଼େ ଚେର ଲାଗିଯାଇଥିଲା । ସେସବୁ ଚେର ଛିଣ୍ଡାଇବା ବେଳକୁ ମମତା ଯେପରି ଗ୍ରାସିଲା, ସମୟ ମଧ୍ୟ ସେହିପରି ଲାଗିଲା । ମାନବଜୀବନରେ ସମୟର ପ୍ରଭାବ ଅତି ପ୍ରବଳ । ମୁହୂର୍ତ୍ତ ଗଡ଼ିଗଲେ ପ୍ରତିଜ୍ଞା ତ ଶିଥିଳ ହୋଇଆସେ, ପରିସ୍ଥିତି ମଧ୍ୟ ବଦଳିଯାଏ ।

'ୟଙ୍ଗ ଉତ୍କଳ ଆସୋସିଏସନ୍' ଇଂରେଜୀ ନାମ, ଓଡ଼ିଆରେ ହେବ 'ତରୁଣ ଉତ୍କଳ ସଂଘ ।' ସେତେବେଳେ କଟକ କଲେଜ ଛାତ୍ରମାନଙ୍କର ତାହା ଗୋଟିଏ ନୂଆ ଅନୁଷ୍ଠାନ । ତାର ନୂଆ ସମ୍ପାଦକ ମୁଁ । ତାହା ସହିତ ଘନିଷ୍ଠ ସମ୍ପର୍କ ଥାଏ ଗୋପବନ୍ଧୁବାବୁ, ବ୍ରଜସୁନ୍ଦରବାବୁ ଓ ବିଶ୍ୱନାଥ କରଙ୍କର । ରାଜନୀତିକ ଭାଷାରେ ବିଶ୍ୱନାଥ କରଙ୍କୁ ଅନେକ ଚରମପନ୍ଥୀ ମଣୁଥାନ୍ତି । ସରକାରଙ୍କ ସନ୍ଦେହ-ଦୃଷ୍ଟି ତାଙ୍କ ଉପରେ ରହିଥାଏ । ସେ ଛାତ୍ରସମାଜରୁ କେତେକଙ୍କୁ ସାହିତ୍ୟଚର୍ଚ୍ଚା ଓ ଅନ୍ୟାନ୍ୟ କେତେକଙ୍କୁ କଳଡ଼ୋରିରେ ବାନ୍ଧିଥାନ୍ତି । ତରୁଣ ଉତ୍କଳ ସଂଘର ଗୁପ୍ତ ବୈଠକ ବସେ ବ୍ରଜସୁନ୍ଦରବାବୁଙ୍କ ବାସଭବନ ପଛପଟ ଅଗଣାରେ । ସେଠାରେ ଓଡ଼ିଆ ଓ ବଙ୍ଗଳାରେ ରାଜଦ୍ରୋହମୂଳକ ଦୁହିତାମାନଙ୍କର ଆବୃତ୍ତି ହୁଏ । ଆବୃତ୍ତିର ଭାର ସୁବୋଧ ହାଜରା ଓ ମୋ ଉପରେ ପଡ଼େ । ଆଲୋଚନା ଓ ଖେଳ କସରତ ଗୋପବନ୍ଧୁବାବୁଙ୍କର ନର୍ମାଲ ସ୍କୁଲ ଗଳି ଘରେ ହୋଇଥାଏ । ସେ ଗଳିର ନାମ ବର୍ତ୍ତମାନ ବଦଳିଯାଇଛି, ହୋଇଛି 'ଭାଷାକୋଷ ଲେନ୍' । ଗୋପବନ୍ଧୁବାବୁ ନିଜେ ବାଡ଼ିଖେଳ ଓ ଜାପାନୀ ଜିଉଜିତ୍ସୁ ଆଦିକୁ ଅଣ୍ଟାଭିଡ଼ି ବାହାରିପଡ଼ନ୍ତି ।

୧୯୦୯ ମସିହା ବସନ୍ତ ଋତୁରେ ପ୍ରବେଶିକା ପରୀକ୍ଷା ହେଲା । ସମଗ୍ର ଓଡ଼ିଶାର ପ୍ରାୟ ଦୁଇଶହ ଛାତ୍ର ଆସି କଟକରେ ରୁଣ୍ଡ ହେଲେ । ତରୁଣ ଉତ୍କଳ ସଂଘ ପକ୍ଷରୁ ତାଙ୍କୁ ଏକ ଅଭ୍ୟର୍ଥନାକୁ ନିମନ୍ତ୍ରଣ କରାଗଲା । ତାହା ବୋଧହୁଏ କଟକ ପକ୍ଷେ ପ୍ରଥମ । ପରୀକ୍ଷାର୍ଥୀ ଓ କଲେଜ ଛାତ୍ରଙ୍କ ବ୍ୟତୀତ ସହରର ବହୁ ବିଶିଷ୍ଟ ବ୍ୟକ୍ତି ସେଥିରେ ଯୋଗ ଦେଲେ । ବକ୍ତୃତାମାନ ପରେ ମିଷ୍ଟାନ୍ନ ଭୋଜନ ଦିଆଗଲା । ନାଟକରୁ ଆବୃତ୍ତି ମଧ୍ୟ ହେଲା । ମୁଁ ଇଂରେଜ କବି ସେକ୍ସପିୟରଙ୍କ 'ଜୁଲିଅସ ସିଜର୍' ରୁ ଗୋଟିଏ ଦୃଶ୍ୟ ଅଭିନୟ କଲି । ତା ପରଦିନ କଲେଜରେ ଇଂରେଜୀ ଅଧ୍ୟାପକ ଗୋପାଳଚନ୍ଦ୍ର ଗାଙ୍ଗୁଲି ମୋତେ ତାଙ୍କ ପୁଅ ଚାରୁର ଗୃହଶିକ୍ଷକ ନିଯୁକ୍ତ

କଲେ। ମୋର ଶତ ଚେଷ୍ଟା ଯାହା ଚାରିମାସରେ କରିପାରିନଥିଲା, ମୋର ସେହି ଅଧଘଣ୍ଟାର ଆବୃତ୍ତି ରାତିର ଚାରିପହର ପରେ ଅତି ଅକ୍ଳେଶରେ ସମ୍ଭବପର କରି ଥୋଇଦେଲା।

ଚାରୁ ପଢୁଥିଲା ନବମ ଶ୍ରେଣୀରେ। ପରୀକ୍ଷାମାନଙ୍କରେ ସେ ପ୍ରାୟ ଦ୍ୱିତୀୟ ସ୍ଥାନ ପାଉଥିଲା; ପ୍ରଥମ ହେଉଥିଲା ଆଉ ଜଣେ ବଙ୍ଗାଳୀ ପିଲା ସୁଭାଷ। ସୁଭାଷକୁ ଟପି ସେ ନିଜେ କିପରି ପ୍ରଥମ ହେବ, ସେତିକିଦୂର ତାକୁ ତାଲିମ କରିଦେବା ପାଇଁ ମୋତେ ଧଇଲା। ମୁଁ ତାକୁ ପ୍ରବନ୍ଧ ଆଦି ଲେଖିବାକୁ ବରାଦ ଦେଲେ ସେ ନିଜେ ତ ଲେଖେ, ସୁଭାଷଠାରୁ ମଧ୍ୟ ସେହି ବିଷୟରେ ଲେଖା ଆଣି ମୋତେ ତୁଳନା କରିବାକୁ ଦିଏ। ସେହି ତୁଳନାରେ ଚାରୁଠାରୁ ସୁଭାଷ ଦୁଇ-ଚାରି ନମ୍ବର ଅଧିକା ପାଏ। ଚାରୁ ମନରେ ଦୁଃଖ ଉପୁଜେ, ମୁଁ ତା ଶିକ୍ଷକ ହୋଇ ପରପିଲାକୁ ତାଠାରୁ ବେଶି ନମ୍ବର ଦେଉଛି। ଚାରୁ ଜୀବନରେ ଉତ୍ତରୋତ୍ତର ଉନ୍ନତି କରି ଏବେ ଜିଲ୍ଲା ଜଜ୍ ହୋଇଛି। ତାର ସରକାରୀ ସାହାଯ୍ୟରୁ ସେ ତାର ସେହି ସହପାଠୀକୁ ଦିନେ ହୁଏତ ଆଇନ ଅଦାଲତରେ ବିଚାର ଫାଶୀ ହୁକୁମ ଦେଇପାରିଥାନ୍ତା; କିନ୍ତୁ ସେ ତ ଯଥାକାଳରେ ନେତାଜୀ ସୁଭାଷଚନ୍ଦ୍ର ବୋଷ ହୋଇ ଜନନେତ୍ରରେ ବହୁତ ଉଚ୍ଚକୁ ଉଠିଗଲା ଏବଂ ବୋଧହୁଏ ମନୁଷ୍ୟଙ୍କର ସ୍ପର୍ଶ-ସୀମାରୁ ଦୂରକୁ ଚାଲିଯାଇଛି। ସେତେବେଳେ ସେ ମୋତେ ନମସ୍କାର କରୁଥିଲା; ଏବେ ମୋ ନମସ୍ୟ ସେ।

ତରୁଣ ଉତ୍କଳ ସଂଘ ସବୁ ଛାତ୍ରଙ୍କର ମିଳନପୀଠ। ତା'ଛଡ଼ା ଆଉ ଗୋଟିଏ ସଂଘ ମଧ୍ୟ ଥିଲା। ସେଥିରେ ସଦସ୍ୟସଂଖ୍ୟା ମୁଷ୍ଟିମେୟ। ଗୋପବନ୍ଧୁ ବାବୁ ଥିଲେ ତାର ମୁଖ୍ୟ। ଶଶୀଦା କଟକ ଆସିଲେ ସେଥିରେ ଯୋଗ ଦିଅନ୍ତି। ବ୍ରଜସୁନ୍ଦରବାବୁ ତାର ସାକ୍ଷାତ୍ ସମ୍ପର୍କରେ ନଥିଲେ ସୁଦ୍ଧା ସବୁ ଜାଣୁଥିଲେ। ମୁଁ କ୍ରମେ ତା ଭିତରକୁ ଟାଣିହୋଇଗଲି। ତାର ବୈଠକ ଦିବସରେ ବସେ ନାହିଁ, ବସେ ରାତିରେ, ଛାତ୍ରାବାସରେ ଛାତ୍ରମାନେ ଖାଇସାରି ଶୋଇ ଘୁଙ୍ଗୁଡ଼ି ମାରିବା ପରେ, କେବେ ନିର୍ଜନ କିଲାପଡ଼ିଆରେ, କେବେ ମହାନଦୀ କୂଳେ କେବେ ବା କାଠଯୋଡ଼ି ବାଲି ଉପରେ। ସେସବୁ ନୈଶ ବୈଠକରେ ଅଗ୍ରଣୀ ନୀଳକଣ୍ଠବାବୁ। ଆମ କଥାବାର୍ତ୍ତା ବେଳେ ଜଣେ କେହି ଆସି ଶୁଣିବାକୁ ଚେଷ୍ଟା କରୁଛନ୍ତି, କ୍ରମେ ଆମେ ଭାବିବାକୁ ଲାଗିଲୁ। ଅନ୍ଧାର ରାତିରେ କେବେ କେବଳ ଗୋଟିଏ କ୍ଷୀଣ ପାଦଶବ୍ଦ ଶୁଭେ। ଜହ୍ନଆଲୁଅ ଥିଲେ ମୂର୍ତ୍ତିଟାଏ ମଧ୍ୟ ଦିଶିଯାଏ। ମୁଁ ଏକା ଥିଲେ ତାକୁ ଭୂତ ବିଚାରି ଭୟରେ ଥରନ୍ତି। ଥରେ ସେକଥା ଆମେ ଗୋପବନ୍ଧୁବାବୁଙ୍କୁ କହିଲୁ। ସେ ଶୁଣି ଉତ୍ତର ଦେଲେ, "ହଁ ହୋ, ସେ ବି ଏକ ଭୂତ। ବାଳକୃଷ୍ଣଟା ହୋଇଥିବ ତ !" ଗୋଇନ୍ଦା ପୋଲିସ ବିଭାଗର ଇନ୍‌ସପେକ୍ଟର ବାଳକୃଷ୍ଣ ମହାନ୍ତି ତାଙ୍କର ଜଣେ ସହପାଠୀ।

ଆମେ ଯେ ଆଖି ବୁଜି ବୁଜି ପାଣି ପିଉ, ଥରେ ଥରେ ଧରା ନପଡ଼ି ରହୁନାହିଁ, ଫଳରେ 'ଖୋଳ ପର୍ବତ ମାର ମୂଷା' ଚାଲେ। ଆମକୁ କୈଫିୟତ୍ ଦେବାକୁ ପଡ଼େ। ରାତିରେ ଛାତ୍ରାବାସ

ଛାଡ଼ି ବାହାରକୁ ଯିବା ମନା । କୈଫିୟତ୍ ଦେବାବେଳକୁ ଅଗ୍ରଣୀ ହୁଅନ୍ତି ନୀଳକଣ୍ଠବାବୁ । ତାଙ୍କର ରାତିରେ ବାହାରକୁ ଯିବାଟା କର୍ତ୍ତୃପକ୍ଷ ସେତେ ଧରନ୍ତି ନାହିଁ । ସଚ୍ଚରିତ୍ର ଯୁବକ ବୋଲି ତାଙ୍କର ସୁନାମ ଥାଏ । କଥା ତାଙ୍କୁ ବଳାଇଗଲେ ଗୋପବନ୍ଧୁବାବୁ ବା ବ୍ରଜସୁନ୍ଦରବାବୁଙ୍କ ସାହାଯ୍ୟ ଦରକାର ପଡ଼େ । ଥରେ ଥରେ ଆମକୁ ଅସତ୍ୟର ଆଶ୍ରୟ ନେବାକୁ ହୋଇଥାଏ । ଆମେ ତାକୁ ମିଥ୍ୟା ନାମ ନଦେଇ 'ଚାଣକ୍ୟନୀତି' କହୁ । ରାଜନୀତିରେ ମିଥ୍ୟାର ସ୍ଥାନ ନାହିଁ । ଏକ ରାଷ୍ଟ୍ର ଅନ୍ୟ ରାଷ୍ଟ୍ର ଉପରେ ଗୋପନରେ ବୋମା ପକାଇଦେଇ ଧରାଧରି ବେଳକୁ ମାନୁନାହିଁ । ରାଷ୍ଟ୍ରନାୟକ ଗୋଟାଏ କଥା କହିପକାଇ ତାକୁ ପ୍ରତ୍ୟାହାର କରିବା ପରିବର୍ତ୍ତେ ସେପରି କହିନାହାନ୍ତି ବୋଲି ମୁହଁପୋଛି କଣାଉଛନ୍ତି । ଏସବୁ ଚାଣକ୍ୟନୀତିରେ ଚଳେ ଓ ବୁଦ୍ଧିମାନ ଲୋକେ ଏ ଭିତରୁ ଯାହା ବୁଝିବାର ବୁଝିନିଅନ୍ତି, ଭୁଲନ୍ତି କେବଳ ସରଳବିଶ୍ୱାସୀ ଜନସାଧାରଣ ।

କିନ୍ତୁ ଚାଣକ୍ୟନୀତିର ସ୍ଥାନ ବିଦ୍ୟାଳୟରେ ନଥିଲା । ଆଗେ ବିଦ୍ୟାଳୟରେ ମାତୃଭାଷା ଓଡ଼ିଆ, ଦେବଭାଷା ସଂସ୍କୃତ ଓ ରାଜଭାଷା ଇଂରେଜୀ, ଅନ୍ୟାନ୍ୟ ବିଷୟ ଛଡ଼ା ଏପରି ତିନି ଭାଷା ପଢ଼ାଯାଉଥିଲା । ଏବେ ସ୍ୱାଧୀନ ଭାରତରେ ରାଷ୍ଟ୍ରଭାଷା ହିନ୍ଦୀ ଯୋଗ କରାଯାଇଛି । ଇଂରେଜ ରାଜତ୍ୱ ଲୋପ ପାଇବାପରେ ଇଂରେଜୀ ଭାଷା ଯେ ରହିଛି, ଅଛି 'ରାଷ୍ଟ୍ରବନ୍ଧୁ' ଭାଷାରୂପେ । ବିଚରା ପିଲାମାନେ ବିଦ୍ୟାଳୟରେ କେବଳ ଭାଷା ଘୋଷି ଘୋଷି ନୟାନ୍ତ ହେଉଛନ୍ତି । ତାଙ୍କ ଅବସ୍ଥା ଦେଖିଲେ ପୁରୀର ପଶ୍ଚିମା ଯାତ୍ରୀମାନେ ଗାଉଥିବା ହିନ୍ଦୀ ଗୀତର ଧାଡ଼ିଏ 'ଭାବ ଭକ୍ତିକା ମରମ ନକାନେ' ମୋର ମନେପଡ଼େ । କେବଳ ଭାଷାରେ ପିଲାମାନେ ଉପରେ ଉପରେ ଭାସୁଛନ୍ତି, ଭିତରେ ପଶି ଭାବ ଗ୍ରହଣ କରିବା ପ୍ରୟାସ କମିଯାଉଛି । କିନ୍ତୁ ଗଣତନ୍ତ୍ର ବର୍ତ୍ତମାନ ଯେପରି ରୂପ ଧାରଣ କରିଛି, ଭିତରେ ପଶିବା ବୋଧହୁଏ ଶିକ୍ଷାର ଲକ୍ଷ୍ୟ ଭିତରେ ଆଉ ଧରାଯାଉ ନାହିଁ ।

ଚାଣକ୍ୟନୀତି ଆମ ତରୁଣ ପ୍ରାଣକୁ ବେଶି ଦିନ ଉନ୍ମାଦନା ଯୋଗାଇଲା ନାହିଁ । ସୁତରାଂ ଆମ ଗୁପ୍ତ ବୈଠକ ସଂଖ୍ୟା କମିଯାଇ ମିଳନଟା ଗୋପବନ୍ଧୁବାବୁଙ୍କ ବସାରେହିଁ ହେଲା । ମୋର ମନେହୁଏ, ଆମ ଜୀବନର ଗତି ନିର୍ଣ୍ଣୀତ ହେଲା ସେହିଠାରେ । ଗୋପବନ୍ଧୁବାବୁ ନାମକୁମାତ୍ର ଓକିଲାତି କରୁଥାନ୍ତି । ସେ ଆମମାନଙ୍କୁ ଫରାସୀ ରାଷ୍ଟ୍ରବିପ୍ଳବ ଓ ଇଟାଲୀ ସ୍ୱାଧୀନତାର କାହାଣୀମାନ କହୁଥାନ୍ତି । ତାଙ୍କ କଥାରେ ଆମେ କେତେ ଯେ ଉଦ୍‌ବୁଦ୍ଧ ହେଉ, ତାହା ମୁଁ ଦିନେ ଦିନେ ରାତିରେ ଅନୁଭବ କରେ । ରାତିସାରା ପ୍ରାଣ ଛଟପଟ ହୁଏ, ହୃଦୟ ମଚ୍ଛି ହୋଇଯାଏ । ଗୋପବନ୍ଧୁବାବୁଙ୍କ ମୁହଁର ଲାବଣ୍ୟ, କଥାର ମାଧୁରୀ, ହସର ସାରଲ୍ୟ, ଆଖିର ଜ୍ୟୋତି, କପାଳର ତେଜ ଓ ଯୁକ୍ତିର ଗାରିମା ସରଳ ତେଜୀୟାନ୍ ତରୁଣ ପ୍ରାଣକୁ ଚୁମ୍ବକ ପରି ଟାଣିନିଏ ।

ସେ ଚୁମ୍ବକ ଆକର୍ଷଣ ଏଡ଼ିବା ଓ କଟକରେ ଅନ୍ୟାନ୍ୟ ବନ୍ଧନ କାଟିଦେବା ମୋ ପକ୍ଷେ ସହଜ ହେଲା ନାହିଁ । ମୋତେ ଦେଖିଲେ କାହାରି ମୋ ଅଭାବ ଆଡ଼କୁ ଦୃଷ୍ଟି ଯାଏନାହିଁ; ସୁତରାଂ ଗୋପବନ୍ଧୁବାବୁଙ୍କର ଗଲା ନାହିଁ । ପରେ ମୁଁ ଯେତେବେଳେ ବିହାର-ଓଡ଼ିଶା ବ୍ୟବସ୍ଥା ପରିଷଦର ସଦସ୍ୟ ନିର୍ବାଚିତ ହେଲି, ବିହାରୀ ସହକର୍ମୀଙ୍କ ମନରେ ଧାରଣା ହେଲା ଯେ, ମୁଁ ଜଣେ ବଡ଼ ଜମିଦାର । ଆମ ଓଡ଼ିଶାରେ ସୁଦ୍ଧା କେହି କେହି ମୋତେ ଜଣେ ବିଷୟବାନ୍ ଲୋକ ବୋଲି ଭାବନ୍ତି । ପଣ୍ଡିତ ନୀଳକଣ୍ଠ ଏବେ ଯାହା କହନ୍ତି, ୧୯୩୯ ମସିହାରେ ସୁଭାଷଚନ୍ଦ୍ର ବୋଷଙ୍କୁ କହିଲେ, "ଗୋଦାବରୀଶର ଚୋରିହାରି ଭୟ ନାହିଁ । ସେ ତାର ସବୁ ସମ୍ପତ୍ତି ସଙ୍ଗରେ ଧରି ଯିବାଆସିବା କରେ ।" ସେତେବେଳେ ସୁଭାଷ ବୋଷ, ସେ ନିଜେ ଓ ମୁଁ ଏକତ୍ର ମୋଟରଗାଡ଼ିରେ ଯାଉଥିଲୁ । ସୁଭାଷଚନ୍ଦ୍ର ପଚାରିଲେ, କିମିତି ? "ପଣ୍ଡିତ ନୀଳକଣ୍ଠ ଉତ୍ତର ଦେଲେ, ଏଇ ମୋଟର ଖଣ୍ଡି ଛଡ଼ା ତାର ଆଉ କଣ ଅଛି କି ?"

ଖୁଦିରାମ ବୋଷଙ୍କର ଫାଶୀ ହୋଇଗଲା । ସେଦିନ ଆମେ ଉପବାସ କଲୁ; ଅନେକେ କଲେଜକୁ ଗଲେ ନାହିଁ । ଗୋପବନ୍ଧୁବାବୁ ଓ ବିଶ୍ୱନାଥ କରଙ୍କ କୁଶିକ୍ଷାରେ ଛାତ୍ରସମାଜ ବିପଥଗାମୀ ହୋଇଯାଉଛି, ଏ ଧାରଣା ସରକାରୀ ହାକିମହୁକୁମାଙ୍କ ମନକୁ ଗଲା । କୁଳବୃଦ୍ଧ ମଧୁସୂଦନ ଏଥିରେ ବିବ୍ରତ ହୋଇଉଠିବା ସ୍ୱାଭାବିକ । ତାଙ୍କୁ ଓଡ଼ିଆ ଜାତିର ଏକମାତ୍ର ଅଭିଭାବକ ମନେକରାଯାଉଥିଲା । ସେ ଛାତ୍ରମାନଙ୍କୁ ତାଙ୍କ କୋଠରିକୁ ଡକାଇନେଇ ସତ୍ୟାସତ୍ୟ ବୁଝିବାକୁ ଚେଷ୍ଟା କଲେ । ଲସରପସର ବହୁତ ହେଉଥିଲେ ସିନା, ଭିତରେ ପଶିପାରୁ ନଥିଲେ । ପିଲାମାନେ ମଧୁବାବୁଙ୍କୁ କିଛି ନ ଲୁଚାଇ ସବୁ କଥା ସତ ସତ କହିଗଲେ । ପରେ ପ୍ରକାଶ ପାଇଲା ଯେ ପୋଲିସ ସୁପରିଣ୍ଟେଣ୍ଡେଣ୍ଟ ତାଙ୍କ କୋଠି ଭିତର ପାଖ କୋଠରିରେ ଲୁଚି ବସି ସବୁ କୁଆଡ଼େ ଅନ୍ତରାଳରୁ ଶୁଣିଥିଲେ । କଲେଜ କର୍ତ୍ତୃପକ୍ଷ ପିଲାଙ୍କ ଦୋଷ ଘୋଡ଼ାଇବାକୁ ବସିଥିଲେ, ମାତ୍ର ତା ଫଳରେ ପାରିଲେ ନାହିଁ । ଅନେକ ପିଲାଙ୍କର ଦଣ୍ଡ ହେଲା । ନିଆଁ ଉପରେ ପାଉଁଶ ଜମିଗଲେ, ନ ଉଖାରିଲେ ତାହା କ୍ରମେ ଲିଭିଆସେ; ମାତ୍ର ଉଖାରିଲେ ଜଳେ । ଦଣ୍ଡ ଫଳରେ ପିଲାମାନେ ନ ଦବି ଆହୁରି ତେଜୀୟାନ୍ ହୋଇଉଠିଲେ । ଜାତୀୟ ଜାଗରଣ ଘଟେ ସେହି ମାର୍ଗରେ ।

ମୋର ଅନୁଭୂତି ଜନ୍ମିଲା ଯେ, ବିଦ୍ୟାଳୟ-ଛାତ୍ରାବାସ ଓ କଲେଜ-ଛାତ୍ରାବାସ ମଧ୍ୟରେ ପରିସ୍ଥିତିଗତ ପାର୍ଥକ୍ୟ ଖୁବ୍ ବେଶି । ବିଦ୍ୟାଳୟ ବାଳକମାନଙ୍କ ଦୃଷ୍ଟି ତଳକୁ, କଲେଜ ଯୁବକପ୍ରାଣ ଆକାଶରେ ଉଡ଼ିବାକୁ ଉଦ୍‌ବିଗ୍ନ । ବିଦ୍ୟାଳୟ ଛାତ୍ରାବାସରେ ଭାବର ଆଦାନପ୍ରଦାନ ନିମନ୍ତେ କ୍ଷେତ୍ର ପ୍ରଶସ୍ତ ନୁହେଁ । କଲେଜ ଛାତ୍ରାବାସ ହେଉଛି ଭାବର ବିନିମୟରେ ଭାବୀ ଜୀବନ ଗଢ଼ିବାର ବିଶାଳ କ୍ଷେତ୍ର । ସେଠାରେ ବଡ଼ ବଡ଼ ସମସ୍ୟାମାନଙ୍କର ଆଲୋଚନା ହୁଏ, ନାନା ବିଷୟ ଉପରେ

ଉଦୀୟମାନ ଯୌବନସୁଲଭ ମତାମତ ପ୍ରକାଶ ପାଏ, ବେଳେବେଳେ ଦେଶ ଓ ଜାତିର ବୀରପୁରୁଷମାନଙ୍କ ମୁଣ୍ଡ ସୁଦ୍ଧା ସମାଲୋଚନା ପ୍ରହାରରେ ଛଡୁ ହୋଇଯାଏ। ଯେସବୁର ପ୍ରଭାବ କାହା ଜୀବନ ଉପରେ ବେଶି ଓ କାହା ଜୀବନ ଉପରେ କମ୍ ପଡ଼ିପାରେ; ମାତ୍ର ପ୍ରଭାବର ଅସ୍ତିତ୍ୱ ଅସ୍ୱୀକାର କରିହେବ ନାହିଁ।

ଗୋଟିଏ ସାମାନ୍ୟ ଉଦାହରଣରୁ କଥାଟା ଭଲ ବୁଝାଯାଇପାରେ। ଆମ ସମୟରେ ଜଣେ ପ୍ରଭାବିତ ଛାତ୍ର ଥିଲେ ମଧୁସୂଦନ ମିଶ୍ର। ତାଙ୍କ ଡାକନାମ 'ମଙ୍ଗୁ ମିଶ୍ରେ'। ସେ କାଳକ୍ରମେ ଏକ ଗଡ଼ଜାତ ରାଜ୍ୟରେ ଯାଇ ପେଟ ପାଇଁ ଚାକିରି କଲେ; ମାତ୍ର ମୁଣ୍ଡଟା ବିକିଦେଲେ ନାହିଁ। ଥରେ ସେ ରାଜ୍ୟର ରାଜା ଦାଣ୍ଡରେ ଗାଡ଼ି ଚଢ଼ି ଗଲାବେଳେ ମଙ୍ଗୁ ମିଶ୍ରେ ପାଟି କରି ଡାକିଲେ, 'ପୃଥ୍ୱୀରାଜ'। ରାଜା ଗାଡ଼ି ଅଟକାଇ ପଚାରିଲେ, "କଣ ମୋତେ ଡାକୁଛ ?" ମଙ୍ଗୁ ମିଶ୍ରେ ଉତ୍ତରରେ କହିଲେ, "ନା, କୁକୁରକୁ।" ରାଜାଙ୍କର କେତେକ କାର୍ଯ୍ୟକଳାପ ନାପସନ୍ଦ କରି ସେ ତାଙ୍କର ନାମ ଦେଇ ଗୋଟାଏ କୁକୁର ପୋଷିଥିଲେ। ସେଥିରେ ତାଙ୍କର ଉଦ୍ଧତ ପ୍ରକୃତି ଯେ ପ୍ରକାଶ ପାଇଥିଲା, ତାହା ଅସ୍ୱୀକାର କରିହେବ ନାହିଁ। ତା ଫଳ ମଧ୍ୟ ତାଙ୍କୁ ସଙ୍ଗେ ସଙ୍ଗେ ଭୋଗିବାକୁ ପଡ଼ିଲା; କିନ୍ତୁ କଲେଜ ଛାତ୍ରାବାସରେ ତରୁଣ ଜୀବନ ଯେ କିପରି ସ୍ୱାଧୀନ ଅନାବିଳ ଭାବରେ ଗଢ଼ାଯାଉଥିଲା, ତାହା ଏହି ଚରମ ଆଚରଣସୂଚକ ଘଟଣାରୁ ବୁଝାଯିବ। ସେହି ଘଟଣାଟିରେ ଶିକ୍ଷାଲବ୍ଧ ସୌଜନ୍ୟ ମିଶିପାରିଥିଲେ ତରୁଣ ଚିନ୍ତାଧାରା ତହିଁରେ ଯଥାର୍ଥ ଭାବରେ ପ୍ରତିଫଳିତ ହୋଇଥାନ୍ତା, ସ୍ୱୀକାର କରିବାକୁ ହେବ।



---

*ଅର୍ଦ୍ଧ ଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋ ସ୍ଥାନ*, ଗ୍ରନ୍ଥ ମନ୍ଦିର, ୧୯୫୮

# କଲେଜ ଜୀବନ

## ଲକ୍ଷ୍ମୀନାରାୟଣ ସାହୁ

୧୯୦୮ ଖ୍ରୀଷ୍ଟାବ୍ଦରେ କଟକକୁ ଆସି ରେଭେନ୍‌ସା କଲେଜରେ ନାମ ଲେଖାଇଲି । କଲେଜରେ ପଢ଼ିବା ବାସନା ମୋର ଥିଲା । ଏନ୍‌ଟ୍ରାନ୍‌ସ ପାସ୍ କରିସାରିବା ପରେ ମୋର ବାପା ବାଲେଶ୍ୱର କଚେରିରେ କୌଣସି କାମ କରିବା ପାଇଁ କହୁଥିଲେ । ମୋର ବଡ଼ ଭିଣୋଇ କହୁଥିଲେ ପୋଲିସ୍ ବିଭାଗରେ ପଶିବା ପାଇଁ । କିନ୍ତୁ ଛାତ୍ର ଜୀବନରେ ସ୍ୱଦେଶୀ ଆନ୍ଦୋଳନରେ ଭାଗ ନେଇଥିବା ଯୋଗୁଁ ପୋଲିସ୍ ହୋଇଥିଲା ମୋର ଶତ୍ରୁ । ସୁତରାଂ ସେଥିରେ ପଶିଲି ନାହିଁ । କିନ୍ତୁ କି ଉପାୟରେ କଲେକରେ ପାଠ ପଢ଼ିବି ମୋତେ ବୁଦ୍ଧି ଦିଶିଲା ନାହିଁ । ତଥାପି ଟିଣର ଖଣ୍ଡିଏ ଭଙ୍ଗା ଟ୍ରଙ୍କ୍, ଆଉ ଖଣ୍ଡେ ଦୁଇଖଣ୍ଡ ଲୁଗା ଏବଂ ମୋର ଭିଣୋଇ ଦେଇଥିବା କୋଡ଼ିଏ ଟଙ୍କା ନେଇ କଟକ ଆସିବାକୁ ଇଚ୍ଛା କଲି । ଦୈବାତ୍ ବାଲେଶ୍ୱର ରେଳଷ୍ଟେସନରେ ମଧୁସୂଦନ ରାଓଙ୍କ ସହିତ ଦେଖାହେଲା । ସେ ସେତେବେଳେ ଓଡ଼ିଶାର ସ୍କୁଲ୍ ଇନ୍‌ସପେକ୍‌ଟର ଥା'ନ୍ତି । ଗୌରକାନ୍ତି, ଋଷି ପରି ଲୋକ, ତାଙ୍କୁ ମୁଁ ଆଗରୁ ଜାଣି ନଥିଲି । ସେ ଅନୁମାନରେ ମୋତେ ପଚାରିଲେ, 'ତୁମେ କ'ଣ ଛାତ୍ର ? କଟକ ଯାଉଚ ?' ମୁଁ କହିଲି 'ହଁ' । ସେ ପୁଣି ପଚାରିଲେ, "ତୁମେ କଟକ ଆଗରୁ ଦେଖିଚ ?" ମୁଁ କହିଲି 'ନା ।' ସେତେବେଳେ ସେ କହିଲେ, "କଟକ ବଡ଼ ଜାଗା । ତୁମେ ଆଉ କୁଆଡ଼େ ଯିବନି- ମୁଁ ମଧ୍ୟ କଟକ ଯାଉଛି । ମୋ ସାଙ୍ଗରେ କାଳିଗଳିକୁ ମୋ ଘରକୁ ଯିବ ।" କଟକ ଷ୍ଟେସନରେ ଓହ୍ଲାଇଲି । ମଧୁବାବୁ ତାଙ୍କ ସଙ୍ଗରେ ମୋତେ ତାଙ୍କ ଘରକୁ ତାଙ୍କ ଗାଡ଼ିରେ ନେଲେ । ମୋତେ ବଡ଼ ଲଜ୍ଜା ବୋଧ ହେଉଥାଏ । କାରଣ ମଧୁବାବୁଙ୍କ ଦେହର ଲୁଗାପଟା ଖୁବ୍ ସଫାସୁତୁରା । ମୋର ଲୁଗାଜାମା ଅତି ଦରିଦ୍ର ଓ ମଇଳା । ଯାହା ହେଉ ତାଙ୍କ ସହିତ ତାଙ୍କ ଘରକୁ କାଳିଗଳିକୁ ଗଲି । ରାତି ଏଗାରଟା ବାରଟାବେଳେ ପହଞ୍ଚିଲି । ସେ ମୋତେ ଖାଇବାକୁ କହୁଥିଲେ । ମୁଁ କହିଲି, ନା କିଛି ଖାଇବିନି । ତା'ପରେ ବିଛଣା କରିଦେଇଥାନ୍ତି ଧୋବ ଫର ଫର । ମୋତେ ସେଥିରେ ଶୋଇବାକୁ କହିଲେ । ମୁଁ ରାତିରେ ଶୋଇପଡ଼ିଲି । କିନ୍ତୁ ବଡ଼ ଚିନ୍ତିତ ହୋଇ । କାରଣ ସକାଳେ ହୁଏତ ତାଙ୍କ ବିଛଣା ମଇଳା ହୋଇଯାଇଥିବ । ମୁଁ ନିଦରେ ଶୋଇ

ଯାଇଛି । କେତେବେଳେ ସକାଳ ହେଲା ଜାଣିନି । ଯେତେବେଳେ ନିଦ ଭାଙ୍ଗିଲା, ଦେଖେଁ ତ ଦାନ୍ତ ଘଷିବା ପାଇଁ ପାଣି, କୋଇଲାଗୁଣ୍ଡ ଓ ଦାନ୍ତକାଠି ଇତ୍ୟାଦି ଦିଆ ହୋଇଛି । ମୁଁ ତରତରରେ ମୁହଁହାତ ଧୋଇପକାଇଲି । ବସିଛି ଏହି ସମୟରେ ଜଳଖିଆ ଆସିଲା । ଜଳଖିଆ ଖାଇସାରିଲା ପରେ ମଧୁବାବୁ ନିଜେ ଆସି ଉପସ୍ଥିତ ହେଲେ । କିନ୍ତୁ ଏହାପୂର୍ବରୁ ଭାବୁଥାଏଁ, କିପରି ଏ ସ୍ଥାନରୁ ଶୀଘ୍ର ପଳାଇବି । କାରଣ ମୋର ଲୁଗାପଟା ମଇଳା, ଆଉ ଅଧିକା ଲୁଗାପଟା ମୋର ନାହିଁ । ମାତ୍ର ମଧୁବାବୁ ଆସି କହିଲେ- ଦେଖ୍, ଏଠାରେ ଅନେକ ମେସ୍ ଅଛି । ଛାତ୍ରମାନେ ଏକାଠି ହୋଇ ରହନ୍ତି । ତୁମେ ତିନିଚାରି ଦିନ ମୋ ଘରେ ରହି ସବୁ ବୁଲିବାଲି ଦେଖ ଏବଂ ତା'ପରେ ଯେଉଁଟା ସୁବିଧା ହେବ ସେ ମେସ୍‌କୁ ଯିବ । ମୁଁ ସକାଳୁ ବାହାରି ଚାନ୍ଦିନୀଚୌକରୁ ଡଗରପଡ଼ା ଆଡ଼କୁ ଆସିଲି ଏବଂ ସେଠାରେ କେତେଗୁଡ଼ିଏ ଛାତ୍ର ଗୋଟିଏ ମେସ୍‌ରେ ଥିବାର ଦେଖିଲି । ସେ ମେସ୍‌ଟି ଅତି ସାଧାରଣ । ମାଟିଘର ଓ ପାଇଖାନା ଅତ୍ୟନ୍ତ କଦର୍ଯ୍ୟ । ତଥାପି ଆଉ କୌଣସି ଆଡ଼େ ନ ଯାଇ ସେଠିକି ପଳେଇ ଆସିବାକୁ ଠିକ୍ କଲି । ଫେରିଯାଇ ମଧୁବାବୁଙ୍କୁ କହିଲି, "ମୁଁ ମେସ୍ ପାଇଛି ଡଗରପଡ଼ାରେ ।" ମଧୁବାବୁ କହିଲେ, ବ୍ୟସ୍ତ ହୁଅନି । ଆହୁରି ଅନେକ ମେସ୍ ଅଛି, ଦେଖ । ତା'ପରେ ଠିକ୍ କର । ମୁଁ କିନ୍ତୁ ପଳାଇ ଆସିବାକୁ ଚାହୁଁଥାଏ- ସୁତରାଂ ଦିନ ଦଶଟାବେଳେ ମଧୁବାବୁଙ୍କ ଘରୁ ବିଦାୟ ନେଇ ଆସିଲି । ତାଙ୍କର ବ୍ୟବହାରରେ ମୁଁ ଅତ୍ୟନ୍ତ ପରିତୃପ୍ତି ଲାଭ କରିଥିଲି । କଟକରେ ସେ ମେସ୍‌ରେ କିଛି ଦିନ ରହିବା ପରେ ମୋ ମାଉସୀପୁଅ ଭାଇ ନିତ୍ୟାନନ୍ଦ ଚୌଧୁରୀ ମୋ ପାଖକୁ ଆସିଲା କଟକରେ ପାଠ ପଢ଼ିବା ପାଇଁ । ଡଗରପଡ଼ାର ମେସ୍ ମାଟିଘର, କଦର୍ଯ୍ୟ ପାଇଖାନାରେ ତା'ର ଅରୁଚି ହେଲା । ସେ କିଛି ଖାଇପାରିଲା ନାହିଁ । ସୁତରାଂ ମୁଁ ଚେଷ୍ଟା କରି ଆଉ ଗୋଟିଏ ମେସ୍ ଖୋଜିବାକୁ ଲାଗିଲି । କିନ୍ତୁ କୌଣସି ଜାଗାରେ ସୁବିଧା ନ ପାଇ ନିଜେ ଗୋଟିଏ ମେସ୍ ଆରମ୍ଭ କଲି । ଜାଗାଟା ହେଉଛି ଗଙ୍ଗାମନ୍ଦିର, ଯେଉଁଠାରେ ବର୍ତ୍ତମାନ Socialist Party ର "କୃଷକ ଅଫିସ" ହୋଇଛି । ଆଉ କେତେକ ଜୁଟିଲେ । ସେଇଠି ମେସ୍ ଆରମ୍ଭ କଲି । କିନ୍ତୁ ଗୋଟାଏ କଥା, କଟକକୁ ପ୍ରଥମେ ଆସି ଅନେକ ଦିନ ପର୍ଯ୍ୟନ୍ତ ଅରୁଚି ଘୃଣା ଜାତ ହୋଇଥିଲା । ଦିନ ଏଗାରଟା ବେଳେ ଭାତ ଖାଇ ସାରି କଲେଜକୁ ଯିବା ବାଟରେ ଯେତେବେଳେ ଦେଖେ ଯେ ମେହେନ୍ତରାଣୀମାନେ ପାଛିଆ ପାଛିଆ ମଇଳା କାଖରେ ଜାକି ଯାଉଛନ୍ତି । ମୋର ବାନ୍ତି ଆସିଯାଏ । ଦ୍ୱିତୀୟ କଥା, କଟକର ପାଣିପଶା ଚାଉଳ ଖାଇବାରେ ବଡ଼ ଅତୃପ୍ତି ଓ ଅରୁଚି ହେଉଥିଲା । ଏପରିକି ଅନେକ ସମୟରେ ଭାତ ଖିଆ ଛାଡ଼ିବାକୁ ହେଉଥିଲା । ୧୯୦୮ ସାଲରେ ଏଇ ଦୁଇଟି ବିଷୟରେ କଟକର ଯେଉଁ ଅବସ୍ଥା ଥିଲା ଆଜି ସେଇ ଅବସ୍ଥା ବିଦ୍ୟମାନ । ତୃତୀୟ କଥା କଟକର ଧୂଳି । ଖ୍ରୀ: ୧୯୦୮ରେ କଟକ ସହର ଯେପରି ଧୂଳିରେ ପରିପୂର୍ଣ୍ଣ ଥିଲା ବର୍ତ୍ତମାନ ଦୁଇ-ଚାରିଟା ରାସ୍ତା ଛାଡ଼ି ଦେଲେ ବାକି ସବୁ ପୂର୍ବପରି ରହିଛି । ଏହା ଘୋର କଳଙ୍କର କଥା ।

କିନ୍ତୁ ଜାତୀୟ ଚରିତ୍ର ଏବଂ ଜାତୀୟ ରୁଚି ଉପରେ ଏଇସବୁ ନିର୍ଭର କରେ । ସୁତରାଂ ଜାତୀୟ ଚରିତ୍ର ଓ ଜାତୀୟ ରୁଚି ପରିବର୍ତ୍ତିତ ନ ହେବା ଯାଏ ଆମକୁ ଏପରି ଦୁଃଖଭୋଗ କରିବାକୁ ପଡ଼ୁଥିବ ।

କଟକକୁ ଆସି ଯେତେବେଳେ କଲେଜରେ ଭର୍ତ୍ତି ହେଲି ସେତେବେଳେ ଶ'-ସାହେବ ଆମର ପ୍ରିନ୍‌ସିପାଲ୍ । ବିପିନବିହାରୀ ରାଏ ସେତେବେଳକୁ ଚାଲି ଯାଇଥାନ୍ତି । ସେ ଆଗରେ ପ୍ରିନ୍‌ସିପାଲ ଥିଲେ । ଉପେନ୍ଦ୍ର ମୈତ୍ର ମଧ୍ୟ ଚାଲିଗଲେ । ସେ ଇଂରାଜୀରେ ଧୁରନ୍ଧର ଥିଲେ । ଶ'-ସାହେବ ଆମକୁ ଗଣିତ ପଢ଼ାଉଥିଲେ । ସେ ଖଗା ମୂର୍ଖ । କୌଣସି ଅଙ୍କ ବୁଝାଇବାକୁ ହେଲେ ସେ ତାଙ୍କ ନୋଟ ବହିରୁ ଅଙ୍କଟି ବୋର୍ଡରେ ଲେଖି ଦେଉଥିଲେ । ଆଉ କେହି କିଛି ପଚାରିଲେ ସେ ଖାଲି କହନ୍ତି Tut, tut. କିନ୍ତୁ ତାଙ୍କ ପରେ ଗଣିତର ଯେଉଁ ପ୍ରଫେସର ଆସିଥିଲେ ସେ ଥିଲେ ବାଘ । ତାଙ୍କ ଚେହେରା ମଧ୍ୟ ବାଘ ପରି ଥିଲା । ଖୁବ୍ ଗମ୍ଭୀର, ଆଉ କୌଣସି ଅଙ୍କ ପଚାରିଲେ ସାଙ୍ଗେ ସାଙ୍ଗେ ସୁନ୍ଦର ଅକ୍ଷରରେ ଟକ୍ ଟକ୍ କରି ବୋର୍ଡରେ ଲେଖି ଦେଉଥିଲେ । ସେହି ବଙ୍କିମ ବାବୁ ଆଜି ଦାଢ଼ି ପକେଇ ଦେଇଛନ୍ତି ଏବଂ ବୈଷ୍ଣବ ହୋଇଛନ୍ତି । ଦୁଇ-ଚାରିବର୍ଷ ତଳେ ମୁଁ ତାଙ୍କୁ ମେଦିନୀପୂର କଲେଜରେ ପ୍ରିନ୍‌ସିପାଲ୍ ହେବାର ଦେଖିଥିଲି । ମେଦିନୀପୁରରେ ତାଙ୍କ ସହିତ ମୋର ଦେଖା ହୋଇଥିଲା । ଏହି ସମୟରେ ଆମର ଜଣେ ଇଂରାଜୀ ଅଧ୍ୟାପକ ଆସିଥିଲେ । ତାଙ୍କର ନାମ ଶ୍ରୀ ହେମଚନ୍ଦ୍ର ସରକାର । ଆଜି ସେ ଜୀବିତ ନାହାନ୍ତି । କିନ୍ତୁ ସେ ଅଦ୍ଭୁତ ମଣିଷ । ଜ୍ଞାନର ପିପାସା ତାଙ୍କର ଅତ୍ୟଧିକ । ସେ ଦିନେ ଦିନେ ସଞ୍ଜବେଳୁ ବହି ପଢ଼ା ଆରମ୍ଭ କଲେ ତହିଁ ଆର ଦିନ ନଅଟା ଦଶଟା ହୋଇଯାଏ । କିନ୍ତୁ ତାଙ୍କର ଏଇ ପାଣ୍ଡିତ୍ୟ ଅପେକ୍ଷା ତାଙ୍କର ଅଧିକତର ମହତ୍ତ୍ୱ ଥିଲା ମଣିଷର ସେବା କରିବାରେ; ସେ ଫିନାଇଲ ବୋତଲ ଧରି ସକାଳେ ଗରିବମାନଙ୍କର ପାଇଖାନାରେ ନିଜେ ଫିନାଇଲ୍ ପକାଇ ଆସନ୍ତି । ଆଉ କଲେରା ସମୟରେ ଗରିବ ଲୋକଙ୍କ ସେବା ପାଇଁ ସମସ୍ତଙ୍କ ପାଖରୁ ସଫା ଛିଣ୍ଡା ଲୁଗା ମାଗନ୍ତି । ସେହି ସବୁକୁ ସେ ହାଡ଼ିସାହିରେ ଏବଂ ଅନ୍ୟାନ୍ୟ ଯେଉଁ ଗରିବ ଘରେ କଲେରା ଇତ୍ୟାଦି ହୋଇଥାଏ, ଦାନ କରନ୍ତି । ଏପରି ହେଲା ଯେ, ଛାତ୍ରମାନେ ଶହ ଶହ ସଂଖ୍ୟାରେ ତାଙ୍କର ଅନୁବର୍ତ୍ତୀ ହେଲେ । ଆଉ ରୋଗୀ କମ୍ ଏବଂ ଭଲେଣ୍ଟିଅର ବେଶି ହେବା ଫଳରେ ତାଙ୍କ ଘରେ ଯେଉଁ ପିଲାମାନେ ରୁଣ୍ଡ ହୋଇଥାନ୍ତି, ସେମାନଙ୍କ ମଧ୍ୟରେ ଜଜିଆ ହୁଏ । ହେମବାବୁ ପଚାରନ୍ତି- କାହିଁକି ଏପରି କରୁଛ ? ପିଲାମାନେ କହନ୍ତି- ସାର୍, ସେ ରୋଗୀକୁ ମୁଁ ଦେଖିବାକୁ ଯିବି, ଏ ମୋତେ ଯିବାକୁ ଦଉନି ଇତ୍ୟାଦି । ଥରେ କଲେରା ଲାଗିଛି । ହେମବାବୁ କାହା ଘରେ ଯାଇ କଲେରା ରୋଗୀର ସେବା କରୁଛନ୍ତି । ଏହି ସମୟରେ ଖବର ଗଲା ତାଙ୍କର ଝିଅ କଲ୍ୟାଣୀ ଓ ଶାନ୍ତିକୁ କଲେରା ହୋଇଛି । ହେମବାବୁ ସେ ପିଲାଙ୍କୁ କହିଲେ "ଆମି ଏଖାନେ ସେବା କରିଛି, ତୁମ୍‌ରା ଓଖାନେ

ସେବା କରୋ । ଭଗବାନ୍ ସବ୍ କାଗାଏ ଆଛେନ୍ ।" ଏପରି ଉଦାରତା କେତେ ଜଣଙ୍କର ଥାଇପାରେ ? ଏହି ସମୟରେ ସେ କଲେଜକୁ ଆସି କେବଳ କାନ୍ଦନ୍ତି ଏବଂ କହନ୍ତି- One soul passed away, two souls passed away. These were the dying words. ଏହିପରି କହି ସେ ଖୁବ୍ କାନ୍ଦନ୍ତି । କୌଣସି ମେସ୍‌ରେ କଲେରା ଲାଗିଥିଲେ ସେ ମେସ୍‌ର ପିଲା ଛାଡ଼ି ପଳାଇ ଗଲେ ସେ ବଡ଼ ଦୁଃଖ କରନ୍ତି । ଏହିପରି କେତେଦିନ ଗଲା । ଦିନେ ଗୋଟିଏ ପିଲା କ୍ଲାସରୁ ବାହାରି ଆସିବାବେଳେ ବଡ଼ ପାଟିରେ କହିଲା- ଏ ପ୍ରଫେସର ତ ଆମକୁ କିଛି ପଢ଼ାଉ ନାହିଁ, ଖାଲି One soul passed away, tow souls passed away କରୁଛି । ଆମେ ପାସ୍ କରିବା କିମିତି ? ହେମବାବୁ ହଠାତ୍ ଏହା ଶୁଣି ପକାଇଲେ । ଆଉ କହିଲେ- ଆଚ୍ଛା, ହେମବାବୁ କାଲ୍ ପଢ଼ାବେ । ସେ ଦିନ ହେମବାବୁ ଘରକୁ ଯାଇ ଆମର ଗୋଟାଏ Text ବହି ଦିନ ଚାରିଟା ବେଳୁ ପଢ଼ିବାକୁ ଆରମ୍ଭ କଲେ । ସଞ୍ଜ ହେଲା । କଳଖିଆ ଆସିଲା, ପିଲା ଆସି କହିଲା, ବାବା ଖାବାର୍ ଖାଏନିନ୍ । କିନ୍ତୁ ହେମବାବୁ ପଢ଼ିବାରେ ତନ୍ମୟ । ଅନେକ କ୍ଷଣ ଗଲା । ତା ପରେ ଝିଅ ତାଙ୍କୁ ଯେତେବେଳେ ପୁଣି କହିଲା ଖାଇବାକୁ, ସେତେବେଳେ ସେ କହିଲେ, ନା, ଖାଇବିନି । ରାତି ଦଶଟାକୁ ମୋତେ ଭାତ ଦେବ । ରାତି ଦଶଟା ହେଲା । ଭାତ ବଢ଼ା ହେଲା । ପିଲା ଆସି କହିଲେ, ବାବା ଭାତ ବଢ଼ା ହୋଇଛ । କିନ୍ତୁ ହେମବାବୁ ପଢ଼ାରେ ଅଭିନିବିଷ୍ଟ । ପିଲାମାନେ ଅତି ଜିଦ୍ କରିବାରୁ ସେ କହିଲେ ଆଉ ଭାତ ଖାଇବିନି । ଦିଟା ଖଇ ଆଣ । ଖଇ ଆସିଲା, କିନ୍ତୁ ହେମବାବୁଙ୍କର ଖଇ ଖାଇବାର ଅବସର ନାହିଁ । ପଢୁ ପଢୁ ରାତି ପାହିଗଲା, ସକାଳ ଆଠଟା ହେଲା, ନ'ଟା ହେଲା । ପିଲାମାନେ ପଚାରିଲେ- ବାବା କଲେଜ ଯିବେନି ? ନ'ଟା ବାଜିଲାଣି ଯେ । ସେତେବେଳେ ସେ କହିଲେ, ଭାତ ବାଢ଼ । ତରତରରେ ଠକା ଠକି କରି ମୁହଁ ହାତ ଧୋଇ ଗାଧୁଆପାଧୁଆ କରି ହେମବାବୁ ଖାଇବାକୁ ବସିଲେ । ଖାଇସାରି ତରତରରେ ମୋଜା ପିନ୍ଧୁ ପିନ୍ଧୁ ଗୋଟିଏ ଗୋଡ଼ରେ ଦୁଇଟି ମୋଜା ପିନ୍ଧି ପକାଇଲେ । ତାପରେ କଲେଜକୁ ଆସିଲେ । କଲେଜରେ ରୋଲ୍ କଲ୍ ବେଳେ ମୁଁ ଲକ୍ଷ୍ୟ କଲି ଯେ, ଗୋଟାଏ ଗୋଡ଼ରେ ମୋଜା ନାହିଁ । ପାଖରେ ବନ୍ଧୁମାନଙ୍କୁ ଦେଖାଇଲି । ଇଆଡ଼େ ହେମବାବୁ ପଢ଼ାଇବାକୁ ଆରମ୍ଭ କରିଥାନ୍ତି । ପିଲାଙ୍କ ଭିତରେ ଟିକେ ଚାଞ୍ଚଲ୍ୟ ହୋଇଥାଏ । ହେମବାବୁ ଏହା ଲକ୍ଷ୍ୟ କରି ପଚାରିଲେ- What makes you inattentive ? ମୁଁ କହିଲି, ସାର୍, ଆପଣଙ୍କର ଗୋଟିଏ ଗୋଡ଼ରେ ମୋଜା ନାହିଁ । ହେମବାବୁ କ୍ରୋଧ ହୋଇ ଉଠି କହିଲେ- ମହା ପାପ କରିଛି ନା ? ହେମଚନ୍ଦ୍ର ସରକାର ଜୀବନରେ କେଡ଼େ ମହା ପାପ କଲା, ତାହାର ତ ସନ୍ଧାନ ରଖି ନାହିଁ । ବାକି ଏଇଟା ଧରିଛ । ପଢ଼େଇବାକୁ ଆରମ୍ଭ କଲେ । ଦଶଟା ଠାରୁ ୧୧ଟା ଗୋଟାଏ ଘଣ୍ଟା ହୋଇଗଲା । ଦ୍ୱିତୀୟ ଘଣ୍ଟା ଗଣିତ । ଆମେ ଭାବୁଛୁ ଏଥର ହେମବାବୁଙ୍କ ପାଖରୁ ଉଦ୍ଧାର ପାଇଲୁ । କିନ୍ତୁ ହେମବାବୁ

ଅଭିନିବିଷ୍ଟ ଭାବରେ ପଢ଼ାଉଥାନ୍ତି । ବଙ୍କିମବାବୁ ଆସିଲା ବେଳେ ଆଉ ଟିକେ ଚଞ୍ଚଳ ହୋଇ ଉଠିଲେ । ତାହା ଲକ୍ଷ୍ୟ କରି ସେ ପଚାରିଲେ-ଅମନୋଯୋଗୀ କାହିଁକି ହେଉଛ ? ଆମେ କହିଲୁ, ସାର୍, ବଙ୍କିମବାବୁ ଆସିଲେଣି । ବଙ୍କିମ ବାବୁଙ୍କୁ ଦେଖି ସେ କହିଲେ- ତୁମେ ଆଉ ଦିନେ କ୍ଲାସ ନେବ । ତୁମର ଏ ଘଣ୍ଟାଟି ମୁଁ ନେଉଛି । ବଙ୍କିମ ବାବୁ ଚାଲିଗଲେ । ହେମବାବୁ ପଢ଼େଇବାକୁ ଲାଗିଲେ । ତୃତୀୟ ପିରିୟଡ଼ କାଶୀନାଥ ଦାସ ପ୍ରଫେସରଙ୍କର । ତାଙ୍କୁ ମଧ୍ୟ ସେ ସେହିପରି ବିଦାୟ କରିଦେଲେ । ଏହିପରି ଘଣ୍ଟା ପରେ ଘଣ୍ଟା ପଢ଼େଇବାକୁ ଲାଗିଲେ । ଏଣେ ଚାରି ବାଜିଗଲା । ସମସ୍ତେ ଚାଲିଗଲେ, ଆମର ଅବ୍ୟାହତି ନାହିଁ । Science class ର ପିଲାମାନେ laboratory ରୁ ପାଞ୍ଚଟା ବେଳକୁ ଘରକୁ ଫେରିଲେ । ଚପରାସୀମାନେ କବାଟ ଦରଜା ସବୁ ଧଡ୍ ଧାଡ୍ କରି ବନ୍ଦ କରୁଛନ୍ତି । କିନ୍ତୁ ଉପର ଘରେ ହେମବାବୁଙ୍କର ପଢ଼ା ସେ ପର୍ଯ୍ୟନ୍ତ ଚାଲିଛି । ସବୁ ଚପରାସୀ ଖିଡ଼କି ଦ୍ୱାର ବନ୍ଦ କରି ଆସି ଆମ ଦ୍ୱାର ପାଖରେ ଉପସ୍ଥିତ ହେଲେ । ଠନ୍ ଠନ୍ କରି ଛଅଟା ବାଜିଲା । ହେମବାବୁଙ୍କର ପଢ଼େଇବାଟା ଶେଷ ହେଲା । ସେ ଦିନ ସେ ଗୋଟାଏ ବହି ପୂରା ପଢ଼ାଇଦେଲେ ଏବଂ ଛଟା ପ୍ରଶ୍ନ ଲେଖିଦେଲେ । ସେହି ବର୍ଷ ପରୀକ୍ଷାରେ ଏଇ ଛଅଟାରୁ ତିନିଟି ପ୍ରଶ୍ନ ପ୍ରାୟ ଅବିକଳ ତାଙ୍କରି ଭାଷାରେ ପଡ଼ିଥିଲା । ପଢ଼ା ଶେଷରେ ହେମବାବୁ କହିଲେ- ଯାଅ, ହେମଚନ୍ଦ୍ର ସରକାର ପଢ଼ାଏନା ପରା ? ଆଜି ପଢ଼ାଇଛି । ହେମବାବୁ ଥିଲେ ଇଂରାଜୀ ଓ ଫିଲୋସଫିରେ ବିଶ୍ୱବିଦ୍ୟାଳୟରେ ପ୍ରଥମ । ତାଙ୍କ ସମ୍ବନ୍ଧରେ କହିବାକୁ ଗଲେ ରାତି ରାତି ପାହିଯିବ । ତାଙ୍କର ଧର୍ମପରାୟଣତା-କୀର୍ତ୍ତନ କରୁ କରୁ ଅଚେତନ ହେବା, ଏ ସବୁ ଆମେ ସେ ସମୟରେ ଅନେକ ଦେଖିଛୁ ।

ଏହି ସମୟରେ ରେଭେନ୍ସା କଲେଜରେ ଆମର ଜଣେ ଫିଜିକ୍ସ ପ୍ରଫେସର ଥିଲେ । ତାଙ୍କର ନାମ ରମେନ୍ଦ୍ର ନାଥ ଘୋଷ । ସେ ଏତେ ବିନୟୀ ଯେ, ତାଙ୍କୁ କୌଣସି ପିଲା ଆଗରୁ ନମସ୍କାର କରି ପାରିବ ନାହିଁ । ତା ଆଗରୁ ସେ ନମସ୍କାର କରିଦେଇ ସାରିଥିବେ । ତା'ପରେ ଆସିଲେ ଫିଜିକ୍ସ ଅଧ୍ୟାପକ ସତୀଶବାବୁ । ସେ ଯେତେ ଗଧ ପିଲା ହେଉ ପଛକେ, ତାକୁ ଏତେ ଶ୍ରଦ୍ଧାର ସହିତ ପଢ଼ାଉଥିଲେ ଯେ, ତାହା ଦେଖିବାର ବସ୍ତୁ । ସତୀଶ ବାବୁ ଓ ହେମବାବୁଙ୍କ ଭିତରେ ଖୁବ୍ ସୌହାର୍ଦ୍ଦ୍ୟ ଥିଲା । ଆଉ ମୁଁ ଯେତେବେଳେ ୧୯୦୮ ରେ ରେଭେନ୍ସା କଲେଜରେ ପ୍ରଥମେ ଭର୍ତ୍ତି ହେଲି, ସେତେବେଳେ ବଟାନି ପଢ଼ାଉଥିଲେ ଶ୍ରୀ ଯୋଗେଶ ଚନ୍ଦ୍ର ରାୟ । କିନ୍ତୁ ସେ ପ୍ରାୟ ସବୁ ବିଦ୍ୟାରେ ଧୁରନ୍ଧର ଥିଲେ । ଗଣିତ, ସାହିତ୍ୟ, ତର୍କଶାସ୍ତ୍ର, ରସାୟନ ବିଦ୍ୟା ଏବଂ ଫିଜିକ୍ସ ଇତ୍ୟାଦି ପ୍ରାୟ ସବୁ ବିଦ୍ୟାରେ ସେ ପାରଙ୍ଗମ ଥିଲେ । ଆଉ ତାଙ୍କର ପଢ଼େଇବାର ପ୍ରଣାଳୀ ଥିଲା ସକ୍ରେଟିକ୍ ପ୍ରଣାଳୀ । ତୁମେ ଗୋଟାଏ ପ୍ରଶ୍ନ କଲେ ସେ ତୁମକୁ ଉତ୍ତର ନ ଦେଇ ଆଉ ଗୋଟାଏ ପ୍ରଶ୍ନ ପଚାରନ୍ତି । ଏହିପରି ପ୍ରଶ୍ନ କରୁ କରୁ ସେ ତୁମକୁ ଜ୍ଞାନମାର୍ଗ ସବୁ

ଖୋଲିଦିଅନ୍ତି । ରାୟବାହାଦୁର ଯୋଗେଶ ଚନ୍ଦ୍ର ଅଦ୍ୟାପି ଜୀବିତ । ତାଙ୍କୁ ନବେ ବର୍ଷରୁ ଅଧିକ ହେଲାଣି, ତଥାପି ସେ ଦିନକୁ ସାତଘଣ୍ଟା କରି ପଢୁଛନ୍ତି । ଏହିସବୁ ଧରଣର ଉଚ୍ଚ ଶିକ୍ଷିତ ଅଧ୍ୟାପକ ଆଜିକାଲି ବିରଳ ହୋଇଗଲେଣି । ହେମଚନ୍ଦ୍ର ସରକାରଙ୍କୁ ମୁଁ ମୋର ପ୍ରଥମ ଲିଖିତ ପୁସ୍ତକ ଉତ୍ସର୍ଗ କରିଥିଲି । ସେଥିରେ ଗୋଟିଏ ପ୍ରବନ୍ଧ "ମନୁଷ୍ୟ ନିଜର ଭାଗ୍ୟବିଧାତା" ବୋଲି ଅଛି । ହେମବାବୁ ତାକୁ ଶୁଣି ମୋତେ କହିଥିଲେ- ହଉ, ତୁମର ଅଧିକ ବୟସ ହେଉ; ସେତେବେଳେ ବୁଝିବ ମନୁଷ୍ୟ ନିଜକୁ କେତେ ଗଢ଼େ ଆଉ ମନୁଷ୍ୟ ଅନ୍ୟ ଦ୍ୱାରା କେତେ ଗଠିତ ହୁଏ । ଭଗବାନ୍‌ଙ୍କର ଆଶୀର୍ବାଦ ନ ମିଳିଲେ ମନୁଷ୍ୟର ଶକ୍ତି ତୁଚ୍ଛ ହୋଇପଡ଼େ । ହେମଚନ୍ଦ୍ର ସରକାର ରାଧାନାଥ ବାବୁଙ୍କର 'ଚିଲିକା'କୁ ଖୁବ୍ ପସନ୍ଦ କରୁଥିଲେ । ମୋତେ କହିଥିଲେ ବଙ୍ଗଳାରେ ଅନୁବାଦ କରିବାକୁ । ମୁଁ ତାହା ତାଙ୍କୁ ଦେଇଥିଲି । ହେମଚନ୍ଦ୍ର ସରକାରଙ୍କ ହାତରେ ପରୀକ୍ଷାରେ ସେପରି କେହି ଫେଲ୍ ହୁଏନି । ଅନେକ ସମୟରେ ସେ ନମ୍ବର ଦେଉ ଦେଉ ଶହେ କାଗାରେ ଶହେ ଦଶ, ଶହେ କୋଡ଼ିଏ ଏପରି ଦେଇପକାନ୍ତି । ତାଙ୍କୁ ପଚାରିଲେ, ସେ କହନ୍ତି ଆଶାତୀତ ଭାବରେ ସୁନ୍ଦର ଲେଖିଛି । ସେଥିପାଇଁ ଏ ନମ୍ବର ।

କଲେଜରେ ପଢୁଥିଲାବେଳେ ମୁଁ ମୁସଲମାନ ଧର୍ମ, ଖ୍ରୀଷ୍ଟିୟାନ୍ ଧର୍ମ ଓ ବ୍ରାହ୍ମ ଧର୍ମ ଇତ୍ୟାଦି ଖୁବ୍ ଆଲୋଚନା କରୁଥିଲି । ସେହି ସମୟରେ ମୋ ସମ୍ବନ୍ଧରେ ଅନେକ ଅନେକ କଥା କହିଲେ । କିଏ କହୁଥିଲା ମୁଁ ବ୍ରାହ୍ମ ହୋଇଯାଇଛି । କିଏ ବା କହୁଥିଲା ମୁଁ ଖ୍ରୀଷ୍ଟିୟାନ୍ ହୋଇଯାଇଛି । କିଏ ବା କହୁଥିଲା ମୁଁ ମୁସଲମାନ ହୋଇ ଯାଇଛି । ଏହି ସମୟରେ ମୁଁ ମୁସଲମାନମାନଙ୍କ ଘରେ ଅନେକ ସମୟ ରହୁଥିଲି । କିନ୍ତୁ କାଳେ ମୋର ମୁସଲମାନ ବନ୍ଧୁମାନେ ମୋତେ ଗୋରୁମାଉଁସ ଖୁଆଇ ଦେବେ ସେହି ଆଶଙ୍କାରେ ମୁଁ ନିରାମିଷାଶୀ ହୋଇଥିଲି । କଲେଜରେ ପାଠ ପଢୁଥିଲା ବେଳେ ନଅ-ଦଶଜଣ ଉପରିଆ ପିଲା ଭିତରେ ମୁଁ ଜଣେ ଥିଲି । ବଙ୍କିମ ବାବୁ (ଗଣିତ ଅଧ୍ୟାପକ) କିନ୍ତୁ ମୋ ଉପରେ ଅନେକ ସମୟରେ ଚିଡ଼ୁଥିଲେ । ତା'ର କାରଣ ଥିଲା ମୁଁ ତେଲଙ୍ଗୀଙ୍କ ପରି ଫାଲଟା ମାରି ଲୁଗା ପିନ୍ଧୁଥିଲି । କଛାଟା ପଛରେ ଓହଳିଥାଏ । ଦେହରେ ଜାମା ନ ଥିବାରୁ ଆଉ ଖଣ୍ଡେ ଚାଦର ଚାବାରୁ ଅସୁନ୍ଦର ଦେଖା ଯାଉଥାଏ । ବଙ୍କିମବାବୁ ଏ ବିଷୟରେ କିଛି ନ କହି ଯେଉଁଦିନ ଟିକିଏ ପଢ଼ାପଢ଼ି କରି ନ ଥାଏ ସେଦିନ ଧମକାନ୍ତି ମୋର ବୃତ୍ତି କାଟିଦେବାକୁ । ସଂକ୍ଷେପତଃ ମୋର କଲେଜ ଜୀବନରେ ମୁଁ ଠିକ୍ ଛାତ୍ର ନଥିଲି, ନାନା ଧର୍ମରେ ପଶି ଏକପ୍ରକାର ଉଦାସୀ ହୋଇଯାଇଥିଲି । ଏହାପରେ ଇଞ୍ଜିନିୟରିଂ କଲେଜରେ ମୋର ଜୀବନକଥା ।

•

---

*ମୋ ବାରବୁଲା ଜୀବନ,* ଓଡ଼ିଶା ବୁକ୍ ଷ୍ଟୋର, କଟକ, ୧୯୬୮

# ରେଭେନ୍ସା କଲେଜରେ

## ଭାରତ ଚନ୍ଦ୍ର ନାୟକ

ରେଭେନ୍ସାର କଲେଜରେ ଆମ୍ଭମାନଙ୍କର ସଂସ୍କୃତ ଅଧ୍ୟାପକ ଥିଲେ ବଙ୍ଗାଳୀ ପଣ୍ଡିତ କୃଷ୍ଣପଦ ବିଦ୍ୟାରତ୍ନ (ଭଟ୍ଟାଚାର୍ଯ୍ୟ) । ବଙ୍ଗ ପ୍ରଦେଶସ୍ଥ ସଂସ୍କୃତ ଶିକ୍ଷାର କେନ୍ଦ୍ର ଭାଟପଡ଼ାବାସୀ ବୋଲି କହନ୍ତି । ସେ ଥିଲେ ଟୋଲ ପଣ୍ଡିତ । ଇଂରାଜୀ ଜାଣୁ ନଥିଲେ, ସଂସ୍କୃତରେ ସୁପଣ୍ଡିତ, ହେଲେ କ'ଣ ହେବ ପିଲାଙ୍କୁ ପଢ଼ାଇବାରେ ଆଦୌ ମନୋଯୋଗୀ ନଥିଲେ । କିନ୍ତୁ ଯେଉଁ ଦିନ ପଢ଼ାଇବାକୁ ମନ ହୋଇଥାଏ ସେହି ଦିନ ତାଙ୍କ ଅଧ୍ୟାପନା ଅତ୍ୟନ୍ତ ଚିତ୍ତାକର୍ଷକ ହୋଇଥାଏ । ଆମ୍ଭେମାନେ ଏହିପରି ପଢ଼ାଇବାକୁ ଧରି ବସିଲେ କହନ୍ତି, "ମୁଁ କଣ ଏମ୍.ଏ. ପାସ୍ କରି ପ୍ରଫେସର ଦରମା ପାଉଛି ଯେ ପଢ଼ାଇବି ? ସ୍କୁଲ ପଣ୍ଡିତର ଦରମାରେ ଯାହା ପଢ଼ାଉଛି ତାହା ତେର !" ଏହା ଶୁଣି ମୋର ମନେ ପଡ଼ି ଯାଉଥାଏ, ଆମ ଗାଁର ଜମିଦାରଙ୍କ ଘରର ଚପରାସୀ କାଲେ ଖାଁର କଥା । ଦିନେ ଅଧରାତିରେ କାଲେ ଖାଁ ସିଂହ ଦ୍ୱାରରେ ଝୁଲା ହୋଇଥିବା ଘଣ୍ଟା ବଜାଉ ବଜାଉ କୋଡ଼ିଏ କି ପଚିଶ ବଜାଇ ଦେଲା । ଜମିଦାରଙ୍କ ପହଡ଼ ହୋଇ ନଥିଲା । ପାର୍ଶ୍ୱଚରକୁ ପଠାଇ କାଲେ ଖାଁ ପହରାବାଲାକୁ ଧରି ଆଣା ହେଲା ଓ ଏତେ କ'ଣ ବଜାଇଲୁ ବୋଲି ପଚରାହେଲା । ସେ ଅହିଫେନ-ସେବନାକ୍ରାନ୍ତ ଅର୍ଦ୍ଧମୁଦ୍ରିତ ନୟନଦ୍ୱୟ ବିସ୍ଫାରିତ କରି କହିଲା, "ଦେଢ଼ ଟଙ୍କା ଦରମାରେ ତେର ବାଜିଛି ।" ପଣ୍ଡିତ ମହାଶୟ କ୍ଲାସରେ ପ୍ରାୟ ପ୍ରତିଦିନ ଶୁଅନ୍ତି ଓ ପଙ୍ଖାବାଲାକୁ ଗୋଡ଼ ମୋଡ଼ିବାକୁ କହନ୍ତି । ଆମ୍ଭେମାନେ କ୍ଲାସରୁ ବାହାରି ଏଣେତେଣେ ବୁଲି ଓ ଦୋତାଲା ଉପରକୁ ଉଠିଥିବା ଆମଡ଼ା ଗଛରୁ ପେଛା ପେଛା ଆମଡ଼ା ତୋଡ଼ା ତୋଳି ଲେବୋରେଟରି ଏସିଷ୍ଟେଣ୍ଟ କେବେଠାରୁ ସୋଡ଼ିଅମ୍ କ୍ଲୋରାଇଡ଼ (sodium chloride) ଲୁଣ ଆଣି ଖାଇ ଖାଇ ସଂସ୍କୃତ ଘଣ୍ଟାତକ କଟାଇଦେଉ । ଦିନେ ଦିନେ ଆମ୍ଭମାନଙ୍କ ସହାଧ୍ୟାୟୀ ଶ୍ୱେତବସନ୍ତ ମହାନ୍ତି ପିନ୍ କଣ୍ଟା ମାରି ତାଙ୍କ ନିଦ୍ରା ଭଙ୍ଗ କରିଦିଏ । ତଥାପି କେହି ତାଙ୍କ ନାମରେ କେବେ ପ୍ରିନ୍ସିପାଲଙ୍କଠାରେ ଅଭିଯୋଗ କରିଥିବା ଶୁଣାଯାଇନାହିଁ ।

ଯେଉଁ ଘରେ ବର୍ତ୍ତମାନ କଟକର ଜଜ୍ କୋର୍ଟ (ବଡ଼ ଅଦାଲତ), ସେହି ଘର ଥିଲା ସେହି ସମୟରେ ଆମ୍ଭମାନଙ୍କର କଲେଜ ଓ ବର୍ତ୍ତମାନ କଲେଜିଏଟ୍ ସ୍କୁଲର ଛାତ୍ରାବାସ କଲେଜର

ଛାତ୍ରାବାସ ଥିଲା । କାଠଯୋଡ଼ି ନଦୀକୁ ଯାଇଁ ଆମ୍ଭେମାନେ ସ୍ନାନ କରୁ । ଯେଉଁ ଘାଟରେ ଆମ୍ଭେମାନେ ସ୍ନାନ କରୁ, ତାହାର ନାମ ଥିଲା କଲେଜ ଘାଟ । ସେତେବେଳେ ଖରାଦିନେ ସୁଦ୍ଧା କାଠଯୋଡ଼ିରେ ଗଭୀର ହାତୀବୁଡ଼ା ପାଣି ରହୁଥାଏ । ଗଭୀର ପାଣିରେ ଆମ୍ଭେମାନେ ପହଁରୁ । ୧୯୦୮ ମସିହା ଗ୍ରୀଷ୍ମାବକାଶ ପର୍ଯ୍ୟନ୍ତ ଏହିପରି ନଦୀର ଗଭୀର ସ୍ରୋତ ଥାଏ । ପ୍ରାୟ ପ୍ରତିବର୍ଷ ବର୍ଷା ଦିନର ବଢ଼ିରେ ଜଣେ ନା ଜଣେ କଲେଜ ଛାତ ବୁଡ଼ି ମରନ୍ତି । ବଡ଼ ବୁରୁଜ ତଳେ ପଡ଼ିଲେ ଆଉ ଜୀବନ ରକ୍ଷା ଅସମ୍ଭବ ହୋଇପଡ଼େ । ୧୯୦୯ ମସିହାରେ ଆସି ଦେଖେଁ, ନଦୀ ବକ୍ଷ ପ୍ରାୟ ଶୁଷ୍କ । ବାଲି ପୋତି ହୋଇଛି । ସେହି ଦିନରୁ କାଠଯୋଡ଼ି ନଦୀରେ କଟକବାସୀଙ୍କର ଜଳାଭାବ ହୋଇଅଛି । ପ୍ରାୟ ପ୍ରତିବର୍ଷ ବର୍ଷା ଋତୁର ଆରମ୍ଭରେ କଟକରେ କଲେରା ହୁଏ ଓ ତହିଁରେ ଛାତ୍ରାବାସର ଜଣେ ଦୁଇଜଣ ଛାତ୍ରଙ୍କ ମୃତ୍ୟୁ ହୁଏ । ଏହାର ପ୍ରକୋପରେ ବର୍ଷେ ବର୍ଷେ କଲେଜ ଦୀର୍ଘ କାଳ ପର୍ଯ୍ୟନ୍ତ ବନ୍ଦ ହୋଇଯାଏ ।

ସେହି ସମୟରେ ଜିନିଷ ପତ୍ର ଏତେ ଶସ୍ତା ଥିଲା ଯେ ସାଧାରଣ କଲେଜ ଛାତ୍ରର ଟ ୧୫ରୁ ଅଧିକ ଖର୍ଚ୍ଚ ହେଉ ନଥିଲା । ଅବଶ୍ୟ ଆଜିକାଲି ପିଲାଙ୍କ ପରି ଆମ୍ଭେମାନେ ବିଳାସୀ ନଥିଲୁ । ସେତେବେଳେ ଏତେଗୁଡ଼ିଏ ବିଳାସର ସାମଗ୍ରୀ ମଧ୍ୟ ବଜାରକୁ ଆସୁନଥିଲା । ଥିଏଟର ସିନେମା ନଥିଲା, ଦେଶରେ ଚିତ୍ତବିନୋଦନର ସାମଗ୍ରୀ ଥିଲା ପାଲା, ସୁଆଙ୍ଗ, ଯାତ୍ରା ପ୍ରଭୃତି । ହରହରି ଘାଟରେ ବାଦୀ ପାଲାରେ ବସିଲେ ଛାଡ଼ି ଆସିବାକୁ ମନ ହୁଏ ନାହିଁ । ବାସ୍ତବରେ ଉତ୍କଳର ପାଲାବାଲାମାନେ ପୁରାତନ ଓଡ଼ିଆ ସାହିତ୍ୟକୁ ସଜୀବ କରି ରଖିଅଛନ୍ତି । କେତେକ ପାଲାବାଲାଙ୍କ ତତ୍କାଳୀନ କବିତା ରଚନାରେ ମୁଗ୍ଧ ହେବାକୁ ହୁଏ । ଏହି ଅମୂଲ୍ୟ ଅନୁଷ୍ଠାନକୁ ସମୁତ୍ସାହିତ କରି ରଖିବା ଦେଶବାସୀଙ୍କ କର୍ତ୍ତବ୍ୟ ।

ଆମ୍ଭମାନଙ୍କ ସଙ୍ଗେ କେତେକ ଧନୀ ଛାତ୍ର ମଧ୍ୟ ଛାତ୍ରାବାସରେ ରହୁଥିଲେ । ସେମାନଙ୍କର ଅଭ୍ୟାସ ସୁଦ୍ଧା ସାଧାରଣ ଛାତ୍ରଙ୍କ ତୁଲ୍ୟ ଥିଲା । ମେସ୍ ଛାତ୍ରମାନଙ୍କଦ୍ୱାରା ପରିଚାଳିତ ହେଉଥିଲା । ମେସ୍ ଖର୍ଚ୍ଚ ମାସକୁ ଛଅ ଟଙ୍କାରୁ ଅଧିକ ହେଉ ନଥିଲା । ଏହି ଖର୍ଚ୍ଚ ବାହାରେ କଲେଜ ଫି ମାସକୁ ଚାରି ଟଙ୍କା, ଛାତ୍ରାବାସର ଭଡ଼ା ଟଙ୍କାଏ । ଏପରି ମୋଟ ଏଗାର ଟଙ୍କା । ଏହା ଛଡ଼ା କଲେଜରେ ଆଉ କୌଣସି ଖର୍ଚ୍ଚ ନ ଥାଏ । ଅବଶିଷ୍ଟ ଚାରିଟଙ୍କା ଜଳଖିଆ ଆଦି ସକାଶେ ଯଥେଷ୍ଟ ହେଉଥିଲା । ପୂଝାରୀ ଚାକରଙ୍କ ଦରମା ଦୁଇ ଟଙ୍କା ଲେଖାଏଁ । ଉତ୍କୃଷ୍ଟ ପାଚକ ନାରାୟଣ ପୂଝାରୀର ଦରମା ତିନିଟଙ୍କା । ଚାନ୍ଦନୀଚୌକର ହରିଆ ଧୋବା ନିଏ କୋଡ଼ିକୁ ଦୁଇ ଅଣା । ପୋଷ୍ଟକାର୍ଡ ଗୋଟିକୁ ପଇସାଏ ଓ ଲଫାପା ଗୋଟିକ ଦୁଇ ପଇସା । ଧୋତି ଖଣ୍ଡକୁ ବାର ଚଉଦଅଣା, କମିଜ ଖଣ୍ଡକୁ ଟଙ୍କାଏ ।

୧୯୦୫ ମସିହା ଅକ୍ଟୋବର ମାସ ୧୬ ତାରିଖ ଓଡ଼ିଶାର ଇତିହାସରେ ଏକ ସ୍ମରଣୀୟ ଦିବସ । ବହୁ କାଳରୁ ମାତୃ ଅଙ୍ଗରୁ ବିଚ୍ଛିନ୍ନ ସମ୍ବଲପୁର ଜିଲ୍ଲା ଏହି ଦିନ ଓଡ଼ିଶା ସହିତ ମିଳିତ

ହୋଇଥିଲା । ଏହି ଦିନ ବଙ୍ଗ ପ୍ରଦେଶର ଅଙ୍ଗଚ୍ଛେଦ ମଧ୍ୟ ହୋଇ ଥିଲା । ଅତି ପ୍ରତ୍ୟୁଷରେ ଦଳେ ବଙ୍ଗାଳୀ ଯୁବକ ଆମ୍ଭମାନଙ୍କର ଛାତ୍ରାବାସକୁ ଆସି ଆମ୍ଭମାନଙ୍କର ହାତରେ ଗୋଟିଏ ଲେଖାଏଁ ରାକ୍ଷି ବାନ୍ଧି ଦେଇଗଲେ ଓ କହିଲେ, ସେମାନଙ୍କ ସହିତ ନଗ୍ନପଦରେ ସ୍ନାନ କରିବାକୁ ଯିବାକୁ ହେବ ଓ ଦିନ ଯାକ ଉପବାସରେ ରହିବାକୁ ହେବ । ସେମାନଙ୍କର ଆଗରେ ନୀଳକଣ୍ଠ ଦାସେ ଥିଲେ ଓ ବଙ୍ଗୀୟ ଭ୍ରାତାମାନଙ୍କ ପ୍ରତି ସହାନୁଭୂତି ପ୍ରକାଶ କରି ସେମାନଙ୍କ ସହିତ ତନ୍ମୁହୂର୍ତ୍ତରେ ମହାନଦୀକୁ ସ୍ନାନାର୍ଥେ ଅନୁସରଣ କରିବା ସକାଶେ କହିଲେ । ମୁଁ କହିଲି, "ବଙ୍ଗୀୟ ଭ୍ରାତାମାନଙ୍କ ଦୁଃଖରେ ଆମ୍ଭେମାନେ ମଧ୍ୟ ଦୁଃଖୀ । କିନ୍ତୁ ସେହି ଦିନ ସମ୍ବଲପୁର ଓଡ଼ିଶା ସହିତ ମିଳିତ ହୋଇଥିବାରୁ ଆମ୍ଭେମାନେ ଉକ୍ତ ମିଳନୋତ୍ସବ ପାଳନ କରିବୁଁ ।" ନୀଳକଣ୍ଠ ଦାସେ ଆମ୍ଭମାନଙ୍କ ପ୍ରତି ବିରକ୍ତି ପ୍ରକାଶ କଲେ ଓ କଟୂକ୍ତିମାନ ପ୍ରୟୋଗ କରି ଆମ୍ଭମାନଙ୍କ ପାଳିତ ଉତ୍ସବରେ ଯୋଗ ଦେଲେନାହିଁ । ସକାଳେ ଆମ୍ଭେମାନେ ମହାନଦୀରେ ସ୍ନାନ କରି ଗଡ଼ଗଡ଼ିଆ ମହାଦେବ ଓ କଟକ ଚଣ୍ଡୀକୁ ଭୋଗ ଦେଇ ଦର୍ଶନ କଲୁ ଏବଂ ଭୋଜି ଓ ସଙ୍ଗୀତରେ ରାତ୍ରିଯାପନ କଲୁଁ । ପରଦିନ ସକାଳେ ଶୁଣିଲୁ, ବଙ୍ଗାଳୀ ହଷ୍ଟେଲ୍ ସୁପରିଣ୍ଟେଣ୍ଡେଣ୍ଟଙ୍କ ବିରୁଦ୍ଧରେ ରାତ୍ରିର ହଷ୍ଟେଲରେ ଗୋଳମାଳ କରିଥିବା ଅଭିଯୋଗରେ ସମ୍ବଲପୁର ଛାତ୍ରମାନଙ୍କୁ ଟଙ୍କାଏ ଲେଖାଏଁ ଜୋରିମାନା ହୋଇଛି । ଅବଶ୍ୟ ଆମ୍ଭମାନଙ୍କ ପ୍ରତିବାଦରେ ପରେ ତାହା କଟିଗଲା ।

ବଙ୍ଗର ଅଙ୍ଗ ବ୍ୟବଚ୍ଛେଦଯୋଗୁଁ ସେହି ପ୍ରଦେଶର ପ୍ରବଳ ଜନ ଆନ୍ଦୋଳନର ହାୱା ଓଡ଼ିଶାକୁ ମଧ୍ୟ ନଆସି ରହିପାରିନଥିଲା । ଦଳ ଦଳ ବଙ୍ଗାଳୀ ଆସି ଓଡ଼ିଶାବାସୀଙ୍କ ସହାନୁଭୂତି ଆକର୍ଷଣ କରିବାକୁ ଲାଗିଲେ । ଏମାନଙ୍କ ମଧ୍ୟରେ ଛାତ୍ର ସଂଖ୍ୟା ଅଧିକ । ବଙ୍ଗ ଦେଶର ଛାତ୍ରମାନଙ୍କୁ ଅନୁକରଣ କରି ଓଡ଼ିଆ ଛାତ୍ରମାନେ ମଧ୍ୟ ଏହି ଆନ୍ଦୋଳନଜନିତ ସ୍ୱଦେଶପ୍ରେମିକତାରେ ପ୍ରଣୋଦିତ ହେବାକୁ ଲାଗିଲେ ।

ବିଲାତି ଦ୍ରବ୍ୟ ବର୍ଜନ ଭାରତବର୍ଷରେ ଇଂରେଜମାନଙ୍କ ବିରୁଦ୍ଧରେ ପ୍ରଯୁକ୍ତ ମୁଖ୍ୟ ନୀତି ରୂପେ ଗୃହୀତ ହେଲା । ଦଳ ଦଳ ବଙ୍ଗାଳୀ ଯୁବକ ଆସି ଏହି ନୀତି ଓଡ଼ିଶାରେ ପ୍ରଚାର କରିବାକୁ ଲାଗିଲେ । ଏହି ଦିନରୁ ଏହା ସ୍ୱଦେଶୀ ଆନ୍ଦୋଳନ ନାମରେ ଖ୍ୟାତ ହେଲା । ଯେଉଁ ତନ୍ତୀମାନେ ନିଜ ନିଜ ବ୍ୟବସାୟ ପରିତ୍ୟାଗ କରି ଅନ୍ୟ ବ୍ୟବସାୟ ଗ୍ରହଣ ପୂର୍ବକ ଗୃହତ୍ୟାଗ କରିଥିଲେ ସେମାନେ ଘରକୁ ଫେରି ଆସି ବର୍ତ୍ତମାନ ଲୁଗା ବୁଣିବାକୁ ଲାଗିଲେ । କଟକର ଲୁଗା ଦୋକାନମାନେ ସ୍ୱଦେଶୀ ବସ୍ତ୍ରରେ ପୂର୍ଣ୍ଣ ହୋଇଗଲା । ଛାତ୍ର ମଣ୍ଡଳୀ ସ୍ୱଦେଶୀ ବସ୍ତ୍ର ବ୍ୟବହାର କରିବାରେ ଅଗ୍ରଣୀ ହେଲେ । ଆମ୍ଭମାନଙ୍କ ଛାତ୍ରାବାସସ୍ଥ ଜଣେ ଦୁଇଜଣ ଏ ସମ୍ପର୍କରେ ନେତୃତ୍ୱ ଗ୍ରହଣ କଲେ । ଛାତ୍ରାବାସସ୍ଥ ପ୍ରତ୍ୟେକ ଛାତ୍ରଠାରୁ ଯାଇ କେହି ବିଲାତି ବସ୍ତ୍ର ବ୍ୟବହାର କରୁଛି କି ନାହିଁ, ପରୀକ୍ଷା କରୁଥିଲେ ଓ କାହାରିଠାରେ ବିଲାତି ବସ୍ତ୍ର ଦେଖିଲେ ତୀବ୍ର ଭାଷାରେ ତାହାକୁ ତିରସ୍କାର କରୁଥିଲେ । ସ୍ୱଦେଶୀ ବସ୍ତ୍ର ସହିତ ଅନ୍ୟାନ୍ୟ ସ୍ୱଦେଶୀ ଦ୍ରବ୍ୟର ବ୍ୟବହାର ମଧ୍ୟ ବୃଦ୍ଧି

ହେବାକୁ ଲାଗିଲା । ତଦାନୀନ୍ତନ ଭାରତର ବଡ଼ଲାଟ ଲର୍ଡ କର୍ଜନ ବଙ୍ଗର ଅଙ୍ଗଚ୍ଛେଦ ବ୍ୟବସ୍ଥା କରି ବଙ୍ଗ ଦେଶ ତଥା ଭାରତବର୍ଷରେ ଯେଉଁ ସ୍ୱଦେଶୀପ୍ରେମିକତା ବୀଜ ବପନ କରିଦେଲେ ସେହି ସକାଶେ ଭାରତବାସୀ ତାଙ୍କ ପ୍ରତି ଚିରକୃତଜ୍ଞ । ବଙ୍ଗର ଅଙ୍ଗଚ୍ଛେଦ ଭାରତବର୍ଷ ପକ୍ଷରେ ପ୍ରକାରାନ୍ତରେ ମଙ୍ଗଳକାର ହୋଇଥିଲା । ତାହା ବୋଧହୁଏ ଈଶ୍ୱରପ୍ରେରିତ । ତାହା ହୋଇ ନଥିଲେ ଇଂରେଜ-ସଭ୍ୟତାନୁରକ୍ତ ବଙ୍ଗାଳୀଙ୍କ ମତିଗତି ସ୍ୱଦେଶ ପ୍ରତି ଫେରି ନଥାନ୍ତା । ସେହି ସମୟର ବଙ୍ଗ ଦେଶସ୍ଥ ଶିକ୍ଷିତ ସମ୍ପ୍ରଦାୟର ମତିଗତି ପ୍ରତି ସୂକ୍ଷ୍ମ ଭାବରେ ନିରୀକ୍ଷଣ କଲେ ଅନୁଭବ କରିବାକୁ ହେଉଥିଲା ଯେ ପଲାସି ଯୁଦ୍ଧ ପରେ ପରେ ଇଂରେଜମାନେ କଲିକତା ସହରରେ ରାଜଧାନୀ ସ୍ଥାପନ କରି ଯେପରି ଭାବରେ ନିଜ ଆସ୍ଥାନ ଦୃଢ଼ୀଭୂତ କଲେ ଶିକ୍ଷିତ ବଙ୍ଗାଳୀ ସେମାନଙ୍କ ହାବ ଭାବ, ଆଦବ କାଇଦା ଅନୁକରଣ କରି ଏକାବେଳକେ ସାହେବ ପାଲଟିଗଲେ । ଅନେକ ବିଶିଷ୍ଟ ଶିକ୍ଷିତ ବ୍ୟକ୍ତି ମଧ୍ୟ ଖ୍ରୀଷ୍ଟଧର୍ମ ଗ୍ରହଣ କଲେ । ଶୁଭ ଯୋଗରେ ବଙ୍ଗର ଅଙ୍ଗଚ୍ଛେଦ ସେମାନଙ୍କ ମୋହ ଦୂର କରିବାରେ ସହାୟ ହୋଇଥିଲା । କ୍ରମେ ସେମାନେ ଜାଗ୍ରତ ହେଲେ ଓ ଭାରତରେ ସ୍ୱାଧୀନତାର ମୂଳ ପତ୍ତନ ସ୍ଥାପନ କରି ଭୀଷଣ ସଂଗ୍ରାମରେ ଝାମ୍ପ ପ୍ରଦାନକଲେ ।

ଦିନେ ଓଡ଼ିଶାର ତଦାନୀନ୍ତନ କମିସନର Greer ସାହେବ (R.T.Greer I.C.S) ଆମ୍ଭମାନଙ୍କର ଛାତ୍ରାବାସରେ ହଠାତ୍ ଆସି ଉପସ୍ଥିତ ହେଲେ ଓ ତାଙ୍କ ସଙ୍ଗେ ଆସିଥିବା କଟକର ଜଣକେତେ ହାକିମ ପ୍ରତ୍ୟେକ ଛାତ୍ରଙ୍କ ଜିନିଷପତ୍ର ତଲାସ କଲେ । କିନ୍ତୁ ଆପତ୍ତିଜନକ କୌଣସି ଦ୍ରବ୍ୟ ପାଇଲେ ନାହିଁ । ପରେ ଶୁଣାଗଲା ଜଣେ ବଙ୍ଗାଳୀ ଅଧ୍ୟାପକଙ୍କ ପ୍ରରୋଚନା ଏହି ତଲାସର କାରଣ । ସ୍ୱଦେଶୀ ଆନ୍ଦୋଳନର ସୁବିଧା ନେଇ ଆଧ୍ୟାପକ ମହାଶୟ କଟକର ଇଂରେଜୀ ଜିଲ୍ଲା ମାଜିଷ୍ଟ୍ରେଟ ଓ କମିସନରଙ୍କ ସହିତ ଘନ ଘନ ସାକ୍ଷାତ୍ କରି କଲେଜ ଛାତ୍ରଙ୍କ ନାମରେ ଚୁଗୁଲି କରନ୍ତି । ତାଙ୍କୁ ଏହି ଅବିମୃଶ୍ୟକାରିତାର ସଦ୍ୟ ଫଳଭୋଗ କରିବାକୁ ହୋଇଥିଲା । ବଦଳି ହୋଇ ଅବିଳମ୍ବେ ତାଙ୍କୁ କଟକ ତ୍ୟାଗ କରିବାକୁ ହୋଇଥିଲା ।

Greer ସାହେବଙ୍କ ପୂର୍ବେ ଓଡ଼ିଶାର କମିସନର ଥିଲେ କେ.ଜି.ଗୁପ୍ତ ଓ ତାହାଙ୍କ ପୂର୍ବେ ଥିଲେ ସୁନାମଧନ୍ୟ ଇଂରେଜ ଓ ବଙ୍ଗ ସାହିତ୍ୟବିତ୍ ଓ ଐତିହାସିକ ରମେଶଚନ୍ଦ୍ର ଦତ୍ତ । କଟକ ଲାଲବାଗସ୍ଥ କମିସନର କୋଠି ୧୯୩୬ ମସିହାରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶରେ ପରିଣତ ହେବା ଦିନଠାରୁ ଓଡ଼ିଶା ରାଜ୍ୟପାଳଙ୍କ ରାଜଭବନ ହେଲା । ସେହି ସମୟରେ ଓଡ଼ିଶା ବଙ୍ଗ ପ୍ରଦେଶ ସହିତ ସମ୍ମିଳିତ ଥିଲା । ବଙ୍ଗ, ବିହାର ଓ ଓଡ଼ିଶା ମିଶି ଏକ ପ୍ରଦେଶ ଥିଲା । ୧୯୧୧ ମସିହାରେ ବଙ୍ଗ ପ୍ରଦେଶରୁ ବିହାର ଓ ଓଡ଼ିଶା ବିଚ୍ଛିନ୍ନ ହୋଇ ଏକ ସ୍ୱତନ୍ତ୍ର ପ୍ରଦେଶ ହେଲା । ବଙ୍ଗ ପ୍ରଦେଶ ସହିତ ଓଡ଼ିଶା ସମ୍ମିଳିତ ଥିବା ସମୟରେ ୧୯୦୬ ମସିହା ପର୍ଯ୍ୟନ୍ତ କମିସନର ଓଡ଼ିଶା ଗଡ଼ଜାତ ମାହାଲର ସୁପରିଣ୍ଟେଣ୍ଡେଣ୍ଟ୍ ଥିଲେ । ବର୍ଷରେ ଥରେ ଯାଇ କେତେକ ଗଡ଼ଜାତ ରାଜ୍ୟ ବୁଲି

ଆସନ୍ତି । ପ୍ରତ୍ୟକ୍ଷ ଶାସନ ପରିଦର୍ଶନ ସକାଶେ ଜଣେ ଡେପୁଟି କଲେକ୍‌ଟର ଆସିଷ୍ଟାଣ୍ଟ ସୁପରିଣ୍ଟେଣ୍ଡେଣ୍ଟ ପଦରେ ରହିଥାନ୍ତି । ମୁଁ କଟକରେ କଲେଜରେ ପଢୁଥିବା ସମୟରେ ଏହି ପଦରେ ଥିଲେ ଡେପୁଟି କଲେକ୍‌ଟର ସୁଦାମଚରଣ ନାୟକ । ଗଡ଼ଜାତ ରାଜାମାନେ ତାଙ୍କ ଦର୍ଶନ ଲାଳସାରେ ଉପସ୍ଥିତ ହୋଇଥାନ୍ତି । କେତେକ ବଡ଼ ବଡ଼ ରାଜ୍ୟର ରାଜାମାନଙ୍କୁ ସୁଦ୍ଧା ମୁଁ ତାଙ୍କ ଘରେ ବସିଥିବା ଦେଖିଛି ।

କମିସନର ରମେଶଚନ୍ଦ୍ର ଦତ୍ତ ଯେଉଁ ଗଡ଼ଜାତକୁ ଯାଇ ବୁଲି ଆସନ୍ତି, ଫେରିଲା ପରେ ସେହି ସ୍ଥାନର ଇତିହାସ ସମାଜ ପ୍ରଭୃତି ବିଷୟରେ ଇଂରେଜୀରେ ପ୍ରବନ୍ଧମାନ ସମ୍ବାଦପତ୍ରରେ ପ୍ରକାଶ କରନ୍ତି । ଏହିପରି ଗୋଟିଏ ବିଷୟ ମୋର ମନେହେଉଛି । ସେ ଲେଖିଥିଲେ, ଦଶପଲ୍ଲା ଭ୍ରମଣରେ ଯାଇଥିବା ସମୟରେ କଣକେତେ ପଇତା ପକାଇଥିବା ଗଣ୍ଡ ଜାତୀୟ ଲୋକଙ୍କୁ ବ୍ରାହ୍ମଣ ମନେକରି ନମସ୍କାର କରିଥିଲେ ଓ ପରେ ନିଜ ଭ୍ରମ ବୁଝିପାରିଥିଲେ । ୧୯୦୫ ମସିହାରେ ସମ୍ବଲପୁର ସହିତ ମଧ୍ୟ ପ୍ରଦେଶରେ ଥିବା ପାଟଣା ସୋନପୁର, କଳାହାଣ୍ଡି, ବାମଣ୍ଡା ଓ ରେଢ଼ାଖୋଲ ରାଜ୍ୟମାନ ଓଡ଼ିଶା ସହିତ ମିଳିତ ହେବାରୁ ଏ ସମସ୍ତ ଗଡ଼ଜାତ ସହ ଓଡ଼ିଶାର କମିସନରଙ୍କ ଅଧୀନରେ ଥିବା ରାଜ୍ୟମାନ ଜଣେ ସ୍ୱତନ୍ତ୍ର ପଲିଟିକାଲ ଏଜେଣ୍ଟଙ୍କ ତତ୍ତ୍ୱାବଧାନରେ ରହିଲା ।

ଏହି ସମୟରେ ଓଡ଼ିଶାର ସମ୍ବାଦପତ୍ର ମଧ୍ୟରେ କଟକରୁ ଗୌରୀଶଙ୍କର ରାୟଙ୍କ ସମ୍ପାଦିତ 'ଉତ୍କଳ ଦୀପିକା', ବାଲେଶ୍ୱରରୁ 'ଓଡ଼ିଆ ଓ ନବ ସମ୍ବାଦ' ଓ 'ସମ୍ବାଦ ବାହିକା', ବାମଣ୍ଡା ରାଜ୍ୟସ୍ଥ ଦେବଗଡ଼ରୁ ନୀଳମଣି ବିଦ୍ୟାରତ୍ନଙ୍କ ସମ୍ପାଦିତ 'ସମ୍ବଲପୁର ହିତୈଷିଣୀ', ଗଞ୍ଜାମରୁ 'ପ୍ରଜାବନ୍ଧୁ', ସମ୍ବଲପୁରରୁ ଶ୍ରୀପତି ମିଶ୍ରଙ୍କ ସମ୍ପାଦିତ 'ଉତ୍କଳ ଦର୍ପଣ', ବାରିପଦାରୁ ବୈଦନାଥ ଦାସଙ୍କ ସମ୍ପାଦିତ 'ମନୋରମା' ପ୍ରକାଶିତ ହେଉଥିଲା । ସାହିତ୍ୟ କ୍ଷେତ୍ରରେ ଇନ୍ଦ୍ରଧନୁ ଓ ବିଜୁଳିର ସଂଘର୍ଷ ସେହି ମାତ୍ର ତିରୋହିତ ହୋଇ ବିଶ୍ୱନାଥ କରଙ୍କ ସମ୍ପାଦକତ୍ୱରେ 'ଉତ୍କଳସାହିତ୍ୟ' ଅପ୍ରତିଦ୍ୱନ୍ଦ୍ୱୀ ସ୍ଥାନ ଅଧିକାର କରିଥିଲା । କେତେକ ଦିନ ବ୍ରଜସୁନ୍ଦର ଦାସଙ୍କ ସମ୍ପାଦିତ 'ମୁକୁର' ଓ ଆଉ କେତେକ ମାସିକ ସାହିତ୍ୟ ପତ୍ରିକା ପ୍ରକାଶିତ ହୋଇ ଲୟପ୍ରାପ୍ତ ହେଲା । ସର୍ବତ୍ର, ବିଶେଷତଃ କଲେଜ ଛାତ୍ରମାନଙ୍କ ମଧ୍ୟରେ ସାହିତ୍ୟଚର୍ଚ୍ଚା ହେଉଥିଲା । କବିବର ରାଧାନାଥଙ୍କ ପ୍ରତିଭାର ସର୍ବତ୍ର ବ୍ୟାପ୍ତ ହୋଇଥଲା । ତାଙ୍କ ସଙ୍ଗେ ଭକ୍ତକବି ମଧୁସୂଦନ ରାଓଙ୍କ ଭକ୍ତିପୂର୍ଣ୍ଣ କବିତାବଳୀ, ରାମଶଙ୍କର ରାୟଙ୍କ 'ବିବାସିନୀ' ଉପନ୍ୟାସ ଓ 'କାଞ୍ଚିକାବେରୀ' ପ୍ରଭୃତି ନାଟକମାନ, ନନ୍ଦକିଶୋର ବଳଙ୍କ 'ପଲ୍ଲୀଚିତ୍ର', 'ନିର୍ଝରିଣୀ', 'ବସନ୍ତ କୋକିଳ', 'କୃଷ୍ଣକୁମାରୀ', 'ସୀତାବନବାସ' କାବ୍ୟମାନ ଓ ଗଙ୍ଗାଧର ମେହେରଙ୍କ 'ଇନ୍ଦୁମତୀ', 'କୀଚକ ବଧ' ଓ କ୍ଷୁଦ୍ର କ୍ଷୁଦ୍ର କବିତାମାନ, ବିଶେଷତଃ ଯୁବକ ପାଠକମାନଙ୍କ ମଧ୍ୟରେ ପ୍ରବଳ ଉନ୍ମାଦନା ସୃଷ୍ଟି କରିଥିଲା । କାମପାଳ ମିଶ୍ରଙ୍କ ସୀତା ବିବାହ ନାଟକ ତୀବ୍ର କଟୁଭାଷାରେ ଉତ୍କଳ ସାହିତ୍ୟ

ମାଧ୍ୟମରେ ସମ୍ପାଦକ ବିଶ୍ୱନାଥ କରଙ୍କଦ୍ୱାରା ପ୍ରତିକୂଳ ଭାବରେ ସମାଲୋଚିତ ହୋଇଥିଲେ ମଧ୍ୟ ତାହାର ଅଭିନୟ ସ୍ଥାନେ ସ୍ଥାନେ ହେଉଥିଲା ଓ ଦର୍ଶକମାନେ ଆଗ୍ରହ ସହକାରେ ତାହା ଉପଭୋଗ କରୁଥିଲେ। ଗଞ୍ଜାମର ପଣ୍ଡିତ ଗୋପୀନାଥ ନନ୍ଦଙ୍କ 'ଶବ୍ଦବୋଧ ଅଭିଧାନ' ଓ 'ଓଡ଼ିଆ ଭାଷାତତ୍ତ୍ୱ' ଏହି ସମୟର ରଚନା। ନନ୍ଦଙ୍କ ନବଆବିଷ୍କୃତ ସଂସ୍କୃତ ଶ୍ଳୋକ ଛନ୍ଦରେ ଓଡ଼ିଆ କବିତା ରଚନା କୌତୁକ ଉତ୍ପାଦନ କରୁଥିଲା। ପଣ୍ଡିତଙ୍କ ରଚିତ 'ମେଘଦୂତ'ର 'ଧୂମଜ୍ୟୋତିଃ ସଲିଳ ମରୁତଃ ସନ୍ନିପାତଃ କ୍ୱମେଘଃ'ରୁ ଓଡ଼ିଆ ଅନୁବାଦ 'ଧୂମଜ୍ୟୋତି ସଲିଳ ମରୁତ ମିଶ୍ରଣ ମେଘ କୋଠେ' ସହିତ ଗୋପାଳ ପ୍ରହରାଜଙ୍କ 'ଭାଗବତ ଟୁଙ୍ଗୀରେ ସନ୍ଧ୍ୟା'ରେ ବର୍ଣ୍ଣିତ, 'ପଣ୍ଡା ପିଣ୍ଡାତଳକୁ ଗଡ଼ିଲେ ମଣ୍ଡପେ ଶାସନୀୟେ' ଓ ମସ୍ତରାମ ପାଗଳର ମୁଖରେ 'ଠେଙ୍ଗା ବାହୁଛଟା ସମର୍ଥ ଗୋଇଠା ଚେଙ୍ଗା ମୁଖୀ ଚେଙ୍ଗିବା' ତାଳ ଦେଉଥିଲା। ଆଉ କେତେ ସାନବଡ଼ କବି ସାହିତ୍ୟ କ୍ଷେତ୍ରରେ ଅବତୀର୍ଣ୍ଣ ହୋଇଥିଲେ। ବାହୁଲ୍ୟ ଭୟରେ ଏମାନଙ୍କ ଆଲୋଚନା ପରିତ୍ୟକ୍ତ ହେଲା।

ଅତିଥିପରାୟଣ ସ୍ୱର୍ଗୀୟ ବ୍ରଜସୁନ୍ଦର ଦାସଂକ ମାହିଦାସ ବଜାରସ୍ଥ ବାସଭବନ ଏକ ଅତିଥିଶାଳାରେ ପରିଣତ ହୋଇଥିଲା। ଏହିଠାରେ ପ୍ରତ୍ୟହ ସନ୍ଧ୍ୟା ସମୟରେ ଗୋପବନ୍ଧୁ ଦାସ ପ୍ରଭୃତି ଦେଶଭକ୍ତଗଣ ମିଳିତ ହୁଅନ୍ତି ଓ ଦେଶୋନ୍ନତି ସମ୍ବନ୍ଧରେ ଚର୍ଚ୍ଚା କରନ୍ତି। ଆମ୍ଭମାନଙ୍କ ମଧ୍ୟରୁ କେତେକ କଲେଜ ଛାତ୍ର ମଧ୍ୟ ସେମାନଙ୍କ କଥା ଶୁଣିବାକୁ ଯାଉଁ। ଦିନେ ଅନେକ ଭଦ୍ରବ୍ୟକ୍ତି ତାଙ୍କ ଗୃହରେ ସମବେତ ହୋଇଥିଲେ। ସେଦିନ ନାନା ବିଷୟ ମଧ୍ୟରେ ବିଶେଷ ଭାବରେ ଆଲୋଚିତ ହେଲା, 'ଶିକ୍ଷିତ ଓଡ଼ିଆମାନେ ଇଂରେଜୀ ମିଶା ଓଡ଼ିଆ ବ୍ୟବହାର କରୁଥିବାରୁ କ୍ଷୋଭ ପ୍ରକାଶ'। ଆମ୍ଭେମାନେ ସ୍କୁଲ କଲେଜରେ ଇଂରେଜୀ ଭାଷା ଶିକ୍ଷାରେ ଯେତେ ମନୋଯୋଗ ଦେଉଁ ନିଜ ମାତୃଭାଷା ପ୍ରତି ତାହିଁର କିୟଦଂଶ ମାତ୍ର ମନୋଯୋଗ ଦେଉଥିଲେ ମାତୃଭାଷାର ଆଶାତୀତ ଉନ୍ନତି ହେଉଥାନ୍ତା। ଉପସ୍ଥିତ ଭଦ୍ରବ୍ୟକ୍ତିମାନଙ୍କ ମଧ୍ୟରେ ଏହି ବିଷୟରେ ଆଲୋଚନା ଏତେ ଉତ୍ତେଜନା ସୃଷ୍ଟି କଲା ଯେ କଟକ ପ୍ୟାରୀମୋହନ ଏକାଡ଼େମୀର ହେଡ୍‌ମାଷ୍ଟର ଶ୍ରୀ ନିମାଇଁଚରଣ ଚ୍ୟାଉପଟ୍ଟନାୟକ ଛିଡ଼ା ହୋଇ ପଡ଼ିଲେ ଓ ହାତ ହଲେଇ ଉଚ୍ଚ ସ୍ୱରରେ କହିଲେ, ଭାଇମାନେ ! ପ୍ରତିଜ୍ଞାକର ଯେ ଆଜିଠାରୁ ସମସ୍ତେ pure ଓଡ଼ିଆ କହିବା। ଗୋପବନ୍ଧୁ ଦାସ ସ୍ୱୀୟ ସ୍ୱଭାବ-ସୁଲଭ ବ୍ୟଙ୍ଗ-ମିଶ୍ର ଭାଷାରେ କହିଲେ- "ପଟ୍ଟନାୟକ ! ସଙ୍ଗେ ସଙ୍ଗେ ପ୍ରତିଜ୍ଞା ଭଙ୍ଗ। ଓଡ଼ିଆଙ୍କ ଦେଇ କିଛି ହେବ ନାହିଁ।"

୧୯୦୩ ମସିହାରେ ସ୍ୱର୍ଗୀୟ ମଧୁସୂଦନ ଦାସଙ୍କ ନେତୃତ୍ୱରେ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ ହୋଇଥିଲା। ତହିଁରେ ମୟୂରଭଞ୍ଜର ସ୍ୱର୍ଗୀୟ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜ ଦେଓ ସଭାପତି ହୋଇଥିଲେ।

୧୯୦୪ ମସିହା ଡିସେମ୍ବର ମାସରେ ଦ୍ୱିତୀୟ ଅଧିବେଶନରେ ଧରାକୋଟ ରାଜା ମଦନମୋହନ ସିଂହ ସଭାପତିତ୍ୱ କରିଥିଲେ । ଅନେକ କଲେଜ ଛାତ୍ର ତହିଁରେ ସ୍ୱେଚ୍ଛାସେବକ କାର୍ଯ୍ୟ କରିଥିଲେ । ମୁଁ ମଧ୍ୟ ସେମାନଙ୍କ ସହିତ ଯୋଗଦାନ କରିଥିଲି । ଯୁବକ ଛାତ୍ରମାନଙ୍କ ମନରେ ସେହି ସମୟରେ ସ୍ୱଦେଶୀ ପ୍ରତି ଯେଉଁ ଉନ୍ମାଦନା ସୃଷ୍ଟି ହୋଇଥିଲା, ତାହା ମୁଁ ସ୍ପଷ୍ଟ ଭାବରେ ଅନୁଭବ କରୁଥିଲି । ଏହି ଅଧିବେଶନରେ ସ୍ୱେଚ୍ଛାସେବକମାନଙ୍କ ନେତ୍ରୀ ହୋଇଥିଲେ ମଧୁସୂଦନ ଦାସଙ୍କ ପାଳିତା କନ୍ୟା ଶ୍ରୀମତୀ ଶୈଳବାଳା । ସେହି ସମୟରେ ଆମ୍ଭେମାନେ ଜାଣିଥିଲୁ ଯେ, ଶ୍ରୀମତୀ ଶୈଳବାଳା ଶିକ୍ଷିତା । କଟକରେ ବି.ଏ. ପର୍ଯ୍ୟନ୍ତ ପଢ଼ିଥିଲେ ଓ ମଧୁବାବୁଙ୍କ କନ୍ୟା ବୋଲି ସମସ୍ତେ ତାଙ୍କୁ ସ୍ନେହ ଓ ସମ୍ମାନ ଚକ୍ଷୁରେ ଦର୍ଶନ କରୁଥିଲେ । ସେ କିନ୍ତୁ ଓଡ଼ିଆ ଭାଷାରେ କଥାବାର୍ତ୍ତା ନକରି ଓଡ଼ିଆଙ୍କ ସହିତ ଶୁଦ୍ଧ ବଙ୍ଗଳା ବ୍ୟବହାର କରନ୍ତି । ମଧୁବାବୁ ମଧ୍ୟ ଓଡ଼ିଆଙ୍କ ସହିତ ମାତୃଭାଷାରେ କଥାବାର୍ତ୍ତା କରୁଥିବା ଅବସରରେ ଶୈଳବାଳାଙ୍କ ସହିତ କଥା କହିବା ଆବଶ୍ୟକ ହେଲେ ବଙ୍ଗଳା ଭାଷା ବ୍ୟବହାର କରନ୍ତି । ସମ୍ମିଳନୀର ଅଧିବେଶନରେ ଶୈଳବାଳାଙ୍କୁ ଭାଷଣ ଦେବାକୁ ହୋଇଥିଲା । ତାହା ମଧ୍ୟ ବଙ୍ଗଳା ଭାଷାରେ ଦେଇଥିଲେ । ଏଥିରେ ଆମ୍ଭେମାନେ ବ୍ୟଥିତ ହେଉଥିଲୁ ଓ ଯେତେବେଳେ ଆମ୍ଭେମାନେ ଦିନେ ମଧୁବାବୁଙ୍କଠାରେ ଏହି ବିଷୟରେ ଆମ୍ଭମାନଙ୍କ କ୍ଷୋଭସୂଚକ ମତ ବ୍ୟକ୍ତ କଲୁଁ, ସେ ଲଜ୍ଜା ପ୍ରକାଶ କରିଥିଲେ ।

୧୯୦୭ ମସିହାରେ ପ୍ରବଳ ବନ୍ୟାରେ କେନ୍ଦ୍ରାପଡ଼ା ଅଞ୍ଚଳ ଅତ୍ୟନ୍ତ କ୍ଷତିଗ୍ରସ୍ତ ହୋଇଥିଲା । ଗୋପବନ୍ଧୁ ଦାସଙ୍କ ନେତୃତ୍ୱରେ ଆମ୍ଭେମାନେ ବନ୍ୟାକ୍ଲିଷ୍ଟ ଅଞ୍ଚଳର ସାହାଯ୍ୟ ସକାଶେ କଟକରେ ଚାନ୍ଦା ସଂଗ୍ରହ କରିବାକୁ ଲାଗିଲୁ । ଅନେକ ଟଙ୍କା ସଂଗୃହୀତ ହୋଇଥିଲା ଓ କେନ୍ଦ୍ରାପଡ଼ାକୁ ଗୋପବନ୍ଧୁ ବାବୁଙ୍କ ସଙ୍ଗେ ଯାଇ ସେହି ଅଞ୍ଚଳର ବନ୍ୟା ପ୍ରପୀଡ଼ିତ ଲୋକଙ୍କୁ ଯଥେଷ୍ଟ ସାହାଯ୍ୟ କରିଥିଲୁ । ଏହି ସୁଯୋଗରେ ମୁଁ ଗୋପବନ୍ଧୁ ବାବୁଙ୍କ ପ୍ରତ୍ୟକ୍ଷ ସଂସ୍ପର୍ଶରେ ଆସିବା ମୋ ଭାଗ୍ୟରେ ଘଟିଥିଲା । ସେହି ଅଞ୍ଚଳର ଲୋକେ ବନ୍ୟା ଯୋଗୁଁ ଅତ୍ୟନ୍ତ କ୍ଷତିଗ୍ରସ୍ତ ହୋଇଥିଲେ । ମଧୁବାବୁ ଗୋପବନ୍ଧୁ ବାବୁଙ୍କ ଆହ୍ୱାନରେ ଏହି ଅଞ୍ଚଳକୁ ଯାଇ ଲୋକଙ୍କ ସାହାଯ୍ୟ ସକାଶେ ସରକାରଙ୍କଠାରେ ଦାବି ଜଣାଇଥିଲେ । କିନ୍ତୁ ତତ୍କାଳୀନ ବଙ୍ଗଳାର ଛୋଟଲାଟ ସର୍ ଏଣ୍ଡ୍ରୁଫ୍ରେଜର ତାଙ୍କ କଥାରେ ବିଶ୍ୱାସ ସ୍ଥାପନ ନକରି କୌଣସି ପ୍ରତିକାର କଲେନାହିଁ ।

କଟକ ମ୍ୟୁନିସିପାଲିଟି ପଡ଼ିଆରେ ସରକାରଙ୍କ ଏହି ବ୍ୟବହାରର ପ୍ରତିବାଦ ସକାଶେ ଗୋଟିଏ ସଭା ହୋଇଥିଲା । ତହିଁରେ ବିଲାତ ପାର୍ଲିଆମେଣ୍ଟର ସଭ୍ୟ ମି. ନେଭିନ୍‌ସନ୍ ସ୍ୱୟଂ ଉପସ୍ଥିତ ଥିଲେ । ଉକ୍ତ ସଭାରେ କ୍ଷୁତ୍‌ପୀଡ଼ିତ ଅସ୍ଥିଚର୍ମସାର ଜଣକେତେ ଲୋକଙ୍କୁ ଉପସ୍ଥିତ କରା ହୋଇଥିଲା । ଗୋପବନ୍ଧୁ ବାବୁ ସେମାନଙ୍କୁ ଦେଖି ଏତେ କରୁଣ ଭାବରେ ଦୀର୍ଘ ଦୁଇ ଘଣ୍ଟାକାଳ କାନ୍ଦିଥିଲେ ଯେ, ନେଭିନ୍‌ସନ୍ ସାହେବଙ୍କ ସହିତ ସଭାସ୍ଥ ପ୍ରାୟ ସମସ୍ତ ଲୋକ ଅଶ୍ରୁ ସମ୍ବରଣ କରି ପାରିନଥିଲେ । ତଥାପି ସାର୍ ଏଣ୍ଡ୍ରୁଫ୍ରେଜରଙ୍କ ପାଷାଣ ହୃଦୟ କଠିନ ହୋଇ ରହିଲା ଓ ସରକାରଙ୍କ ପକ୍ଷରୁ କୌଣସି ପ୍ରକାର ପ୍ରତିକାର ହେଲାନାହିଁ । ସର୍ବସାଧାରଣଙ୍କ ସାହାଯ୍ୟ ଏହି ସମୟରେ ବିପିନ୍ନ ଲୋକଙ୍କୁ ଯଥେଷ୍ଟ ଉପକାର ସାଧନ କରିଥିଲା ।

କଟକିଆ ପିଲାଙ୍କ ସହିତ ଆମ୍ଭ ସମ୍ବଲପୁର ପିଲାଙ୍କର କଥିତ ଭାଷା ସମ୍ପର୍କରେ ନାନା ବାଦାନୁବାଦ ହୁଏ । ସମ୍ବଲପୁରର କଥିତ ଭାଷା ହିନ୍ଦୀମିଶା ଓଡ଼ିଆ । ପୁଣି କେତେକ ଶବ୍ଦ ଖାଣ୍ଟି ସମ୍ବଲପୁରୀ । ତନ୍ମଧ୍ୟରେ ଖୋଜିଲେ ଅନେକ ଶବ୍ଦ ମିଳିବ, ସଂସ୍କୃତର ଅପଭ୍ରଂଶ । କଟକିଆ ପିଲାମାନେ ଏ ସବୁ ବୁଝିନପାରି ସମ୍ବଲପୁର ପିଲାଙ୍କୁ ନାନା ପ୍ରକାର ବିଦ୍ରୂପାତ୍ମକ ମନ୍ତବ୍ୟଦ୍ୱାରା ବିବ୍ରତ କରିପକାନ୍ତି । ସେହି ସମୟରେ ସମ୍ବଲପୁର ହିନ୍ଦୀ-ଭାଷୀ ମଧ୍ୟପ୍ରଦେଶାନ୍ତର୍ଗତ ଥିବାରୁ ଆମ୍ଭେମାନେ ଓଡ଼ିଆ ନୋହୁଁ, ଆମ୍ଭମାନଙ୍କ ମାତୃଭାଷା ଓଡ଼ିଆ ନୁହେଁ ବୋଲି ସନ୍ଦେହ କରନ୍ତି । ୧୯୦୪ ମସିହାରେ ସମ୍ବଲପୁରରୁ ରେଭେନ୍‌ସା କଲେଜକୁ ଏକମାତ୍ର ଛାତ୍ର ମୁଁ ଆସିଥିଲି । ୧୯୦୫ ମସିହାରେ ଏଣ୍ଟ୍ରାନ୍‌ସ ପରୀକ୍ଷା ଉତ୍ତାରେ ନାରାୟଣ ନନ୍ଦ, ପରଶୁରାମ ମିଶ୍ର, ବାଳମୁକୁନ୍ଦ ଦୋରା, ପୁରୁଷୋତ୍ତମ ମହାପାତ୍ର, ପ୍ରସନ୍ନ କୁମାର ପୂଜାରୀ, ଭାନୁ ପ୍ରଧାନ ଆସି ଯୋଗ ଦେଲେ । ୧୯୦୬ ସାଲ୍‌ରେ ଆହୁରି କଣକେତେ ଆସିଲେ । ୧୯୦୫ ସାଲ୍‌ରେ ଜୁଲାଇ ମାସରେ ନୀଳକଣ୍ଠ ଦାସ ଆସି କଲେଜରେ ପ୍ରବେଶ କଲେ । ସମ୍ବଲପୁର ଅଞ୍ଚଳରେ କଟକିଆ ବୋଇଲେ ବୁଝାଯାଏ, କଟକ, ବାଲେଶ୍ୱର ଓ ପୁରୀ ଜିଲ୍ଲାବାସୀ ଯେଉଁମାନେ ସମ୍ବଲପୁରର ଓଡ଼ିଆ ନ କହି ସେହି ଅଞ୍ଚଳର ଭଲ ଓଡ଼ିଆ କହନ୍ତି । ଅନ୍ୟାନ୍ୟ କଟକିଆ ବନ୍ଧୁଙ୍କ ମଧ୍ୟରେ ନୀଳକଣ୍ଠ ଦାସ ସମ୍ବଲପୁର ଛାତ୍ରଙ୍କ ବ୍ୟବହୃତ ହିନ୍ଦୀମିଶା ସମ୍ବଲପୁର ଭାଷାର ତୀବ୍ର ସମାଲୋଚନା କରନ୍ତି ।

ଏପରି କି ସମୟ ସମୟରେ ଭାଷାର ପରିସର ଲଙ୍ଘନ କରି ଅନ୍ୟ ଆଡ଼କୁ ମଧ୍ୟ ଚାଲିଯାନ୍ତି । ଏହା ଯେ କାହାରି ପ୍ରତି ବ୍ୟକ୍ତିଗତ ଆକ୍ରୋଶ ଯୋଗୁଁ କରନ୍ତି ତାହା ମୁଁ କେବେ ଅନୁଭବ କରିନାହିଁ । ତାହାଙ୍କ ଉଦ୍ଦେଶ୍ୟ, ଏହାଦ୍ୱାରା ସମ୍ବଲପୁର ପିଲାମାନେ ଭଲ ଓଡ଼ିଆ ଶିକ୍ଷା କରିବାକୁ ଚେଷ୍ଟା କରିବେ । କ୍ରମେ କ୍ରମେ ମୁଁ ଭଲ ଓଡ଼ିଆ ଶିକ୍ଷା କରିବାକୁ ଚେଷ୍ଟା କରୁଥାଏଁ । ପିଲାଦିନରୁ ଓଡ଼ିଆ ସାହିତ୍ୟ ପ୍ରତି ମୋର ଅନୁରାଗ ଥାଏ । ସ୍କୁଲରେ ସାହିତ୍ୟ ଶିକ୍ଷା ଉଚ୍ଚ ପ୍ରାଥମିକ ଶ୍ରେଣୀ ପର୍ଯ୍ୟନ୍ତ ଯାହା ହୁଏ, ତା ପରେ ଆଉ ଓଡ଼ିଆ ସାହିତ୍ୟର କୌଣସି ସ୍ତରରେ ସ୍ଥାନ ନାହିଁ । କଲେଜରେ ପ୍ରବେଶ କଲା ଉତ୍ତାରେ ମୁଁ ଓଡ଼ିଆ ସାହିତ୍ୟର ବିଶେଷ ଚର୍ଚ୍ଚା କଲି ଓ ରାଧାନାଥ ରାୟଙ୍କ କାବ୍ୟପାଠ ଆରମ୍ଭ କରି ପୁରାତନ କବିମାନଙ୍କ ଗ୍ରନ୍ଥମାନ ଅଧ୍ୟୟନ କରିବାରେ ମନୋନିବେଶ କରି, କ୍ରମେ କ୍ରମେ ଓଡ଼ିଆ ସାହିତ୍ୟ ପ୍ରତି ଅନୁରାଗ ବୃଦ୍ଧି କରିବାକୁ ଲାଗିଲି । କିନ୍ତୁ ମୋର ସମ୍ବଲପୁରର ଅନ୍ୟ ଛାତ୍ର ବନ୍ଧୁମାନେ ନିଜ ଭାଷା ଛଡ଼ା ଅନ୍ୟ ପ୍ରକାର ଓଡ଼ିଆ ଭାଷା ବ୍ୟବହାର କରିବାକୁ ଚେଷ୍ଟା କରନ୍ତି ନାହିଁ । ସେମାନେ କହନ୍ତି, ମାତୃଭାଷା ତ୍ୟାଗ କରିବେ କାହିଁକି ? ମୁଁ ସେମାନଙ୍କୁ କହେଁ, ସମ୍ବଲପୁରୀ ଭାଷାରେ ତ ସାହିତ୍ୟ ନାହିଁ । ସାହିତ୍ୟ ଶିକ୍ଷା କରିବାକୁ ହେଲେ କଟକିଆ ବିଶୁଦ୍ଧ ଓଡ଼ିଆ ଶିକ୍ଷା କରିବାକୁ ହେବ ।

●

---

*ମୋର ପୂର୍ବସ୍ମୃତି କଥା*, ସ୍ୱପ୍ରକାଶନ, ସମ୍ବଲପୁର, ୧୯୬୦

# କଲେଜ ଜୀବନ

## ହରେକୃଷ୍ଣ ମହତାବ

ମୁଁ ଆଇ.ଏସ୍‌ସି. ନେଇଥିଲି । ଫିଜିକ୍ସ, କେମିଷ୍ଟ୍ରୀ, ମାଥେମେଟିକ୍ସ ଏବଂ ବଟାନୀ ମୋର ଅତିରିକ୍ତ ବିଷୟ ଥିଲା । କଟକରେ ମୋର ଭଦ୍ରକ ସ୍କୁଲର କେତେକ ସହପାଠୀଙ୍କ ସହ ଗୋଟିଏ ଛୋଟ ମେସ୍‌ରେ ରହିଲି । ବର୍ତ୍ତମାନ ମୋର ବୟସ ୧୬ ବର୍ଷ । ଏକ ନୂତନ ପ୍ରକାରର ଜୀବନ ଆରମ୍ଭ ହେଲା । ପଢ଼ିବାଟା ମୋର ମୁଖ୍ୟ ଉଦ୍ଦେଶ୍ୟ ନ ଥିବାରୁ କଲେଜରେ ଲାଗିପଡ଼ି ଖୁବ୍ ଭଲ ପଢ଼ିବାର ପ୍ରୟାସ ମଧ୍ୟ ନଥିଲା । କୌଣସି ପ୍ରକାରେ ପାସ୍ କରିବାର ବ୍ୟବସ୍ଥା କରି ଅନ୍ୟାନ୍ୟ ସମୟ ପ୍ରାୟ ସାଧାରଣ କାର୍ଯ୍ୟରେ ନିୟୋଜିତ ହେଉଥିଲା । କଲେଜରେ ସରକାରୀ ହଷ୍ଟେଲରେ ଯେଉଁ ଛାତ୍ରମାନେ ଥିଲେ, ସେମାନଙ୍କ ଚାଲିଚଲଣ ସୁଖ ଲାଗୁ ନଥିଲା । ସେମାନେ ଯେପରି ଏକ ବିଳାସର ଜୀବନଯାପନ କରୁଛନ୍ତି, ଏହିପରି ମନେ ହେଉଥିଲା । ସେତେବେଳେ କଲେଜରେ ଯେଉଁ ଛାତ୍ର ନେତା ଥିଲେ, ସେମାନେ ଖୁବ୍ ଭଲ ବକ୍ତୃତା କରିପାରୁଥିଲେ; ମାତ୍ର ସେମାନଙ୍କ ଗତିବିଧି ଆଦୌ ସୁଖ ଲାଗୁ ନଥିଲା । କଲେଜରେ ନାମ ଲେଖାଇ ଛାତ୍ର-ଆନ୍ଦୋଳନ ବା ତତ୍‌ସମ୍ପର୍କୀୟ କୌଣସି କାମରେ ମୁଁ କେବେ ଯୋଗ ଦେଇ ନଥିଲି । କଲେଜରେ ଛାତ୍ର-ଜୀବନଟା ମୋତେ ଯେପରି ମୋ ଉଦ୍ଦେଶ୍ୟପାଇଁ ଫମ୍ପା ଜଣା ପଡ଼ୁଥିଲା ।

କଲେଜରେ ସେକେଣ୍ଡ ଇୟରରେ ପଢ଼ିବାବେଳେ ନବକୃଷ୍ଣ ଚୌଧୁରୀ, ପ୍ରହ୍ଲାଦ ସାହୁ ଏମାନଙ୍କ ସହିତ ଆଳାପ ପରିଚୟ ହୁଏ । ପ୍ରହ୍ଲାଦ ସାହୁ ଆମ ମେସ୍‌ରେ ରହି କଲେଜରେ ପଢ଼ୁଥିଲେ । ନବକୃଷ୍ଣ ଚୌଧୁରୀ ଆମ ମେସ୍‌ରେ ଅଧିକାଂଶ ସମୟ କଟାଉଥିଲେ । ସାଧାରଣ ଜୀବନର ବାହାରେ କିଛି କରିବାକୁ ହେବ, ଏହା ହିଁ ଆମର ଧ୍ୟେୟ ଥିଲା । କଲେଜରେ ଆମେ ପଢ଼ୁଥିଲେ ମଧ୍ୟ କଲେଜ ଜୀବନ ସହିତ ଆମର ସମ୍ପର୍କ ନଥିଲା କହିଲେ ଚଳେ । ଆମ ନିଜ ନିଜ ଭିତରେ ଆମେ ନାନାପ୍ରକାର ରାଜନୀତିକ ଓ ଅନ୍ୟ ଉଚ୍ଚ ଆଲୋଚନା କରୁଥିଲୁ । ସେତେବେଳେ ଏନି ବେସାନ୍ତଙ୍କଦ୍ୱାରା ସମ୍ପାଦିତ "ନିଉ ଇଣ୍ଡିଆ" ନାମ ଦୈନିକ କାଗଜର ଗ୍ରାହକ ହୋଇ ତାକୁ ନିୟମିତ ଭାବରେ ପଢ଼ୁଥିଲୁ । ମୋର ଯେତେଦୂର ଧାରଣା, କଲେଜରେ ଏ କାଗଜ କେହି ତ ପଢ଼ୁ ନଥିଲେ, ବାହାରେ ମଧ୍ୟ ଏହାର ଆଲୋଚନା ଖୁବ୍ କମ୍ ଥିଲା । କଲେଜ ଲାଇବ୍ରେରୀରୁ

ନାନାପ୍ରକାର ବହି ଆଣି ପଢୁଥିଲୁ । ଆମ୍ଭେମାନେ ନିଜକୁ ନିଜେ ଫ୍ରି ଥିଙ୍କରସ୍ ବା ସ୍ୱାଧୀନ ଚିନ୍ତା କରୁଥିବା ବ୍ୟକ୍ତି ବୋଲି ଭାବୁଥିଲୁ ଓ କହୁଥିଲୁ । ସାଧାରଣଙ୍କର ମତ ଅନୁସାରେ ଚଳିବା ଏକ ପ୍ରକାର ଦୁର୍ବଳତା , ନିଜେ ଯାହା ଠିକ୍ ଭାବିବ ତଦନୁସାରେ ସାଧାରଣଙ୍କ ମତ ଗଠନ କରିବା ହିଁ ହେଉଛି ସାମର୍ଥ୍ୟ- ଏହା ଆମର ସିଦ୍ଧାନ୍ତ ଥିଲା ଓ ଏହି ଅନୁସାରେ ଆମେ ମଧ୍ୟ ଚଳୁଥିଲୁଁ । ନିଜକୁ 'ବୀର' କରିବାପାଇଁ; ଅର୍ଥାତ୍ ସାଧାରଣଙ୍କ ମତକୁ ଭୟ ନ କରି ନିଜ ମତରେ ସାହସ ସହକାରେ ଚଳିବାର ଅଭ୍ୟାସ କରିବାପାଇଁ ନାନାପ୍ରକାର ପନ୍ଥା ଆମେ ଅବଲମ୍ବନ କରିଥିଲୁ । ଦିନାକେତେ ନବକୃଷ୍ଣ ଚୌଧୁରୀ ଏକ ବରଡ଼ା ଛତା ନେଇ କଲେଜକୁ ଯାଉଥିଲେ । ଅନ୍ୟ ପିଲାମାନେ ହସନ୍ତି , ଥଟ୍ଟା କରନ୍ତି । ଏଇଥିରେ ଆମେ ଖୁସି ହେଉ ଯେ , ଆମେ ସେମାନଙ୍କ ମତକୁ ଭ୍ରୂକ୍ଷେପ କରୁ ନା । ସେତେବେଳେ ଅଧ୍ୟାପକ ଯୋଗେଶଚନ୍ଦ୍ର ଘୋଷ, ଯେ କି ବଟାନୀ ପଢ଼ାଉଥିଲେ ମଧ୍ୟ ନାନାପ୍ରକାର ଗବେଷଣା ନିଜେ କରି କଲେଜରେ ଏକ ବୈଜ୍ଞାନିକ ବାୟୁମଣ୍ଡଳ ବଜାୟ ରଖିଥିଲେ , ଥରେ ସେ କହିଲେ ଯେ , ଟସର ଲୁଗା ପିନ୍ଧିବାର ଅନେକ ଭଲ ଗୁଣ ଅଛି । ତା'ପରେ ମୁଁ ମଠା ଲୁଗା ପିନ୍ଧି କଲେଜକୁ ଯିବାରେ ଲାଗିଲି, ସମସ୍ତେ ଦେଖି ହସନ୍ତି । ସେଇଥିରେ ଆମର ଆନନ୍ଦ । ଅନ୍ୟର ମତକୁ କେତେଦୂର ଖାତିର୍ ନ କରି ପାରୁଛି , ଏହା ପରୀକ୍ଷା କରିବାପାଇଁ ଅନେକଥର ରାମାନନ୍ଦି ତିଳକ କାଟି ମୁଁ କଲେଜକୁ ଯାଇଛି ଓ ସାହସ ସହକାରେ ନାନାପ୍ରକାର ବିଦ୍ରୂପ ସହ୍ୟ କରିଛି । ଥରେ ଆମେ ତିନିଜଣ ଚୌଧୁରୀ ବଜାର ଭିତରେ ଗଲାବେଳେ ଆମର ସ୍ୱାଧୀନ ଚିନ୍ତା ବିଷୟରେ କଥାବାର୍ତ୍ତା ହେଉଥାଏ । ଅନ୍ୟର ତିରସ୍କାର , ବିଦ୍ରୂପ ଓ ତା'ର ମତ ପ୍ରତି କେତେଦୂର ଆମେ ବେପରବାୟ , ତାହା ପରୀକ୍ଷା କରିବାର କଥା ଉଠିଲା । ନାନାପ୍ରକାର ପ୍ରସ୍ତାବ ଭିତରେ ଗୋଟିଏ ପ୍ରସ୍ତାବ ହେଲା ଯେ , ପାନଦୋକାନରେ ଖଟା ମିଳିବ କି ନା ପଚରାଯାଉ ଓ ପାନଦୋକାନୀ ଯାହା କହୁ ପଛକେ ତାକୁ ବାରମ୍ବାର ଖଟା ମଗାଯାଉ । ମୋର ମନେ ଅଛି , ମୁଁ ଯାଇ ଏକ ପାନଦୋକାନୀକୁ ଖଟା ବାରମ୍ବାର ଜିଦ୍ କରି ମାଗିବାରେ ସେ ବିରକ୍ତ ହୋଇ ଗାଳି ଦେଇଥିଲା । ସେଇଥିରେ ଆମେ ଖୁସି ହୋଇ ଚାଲିଗଲୁ । ଫାଷ୍ଟ ଇୟରରେ ପଢୁଥିବା ସମୟରେ ମୋର ମନ ହେଲା କୁସ୍ତି ଶିଖିବା ପାଇଁ । ସେତେବେଳେ କଟକରେ ବନା ପହିଲୁଆନ୍ ପ୍ରସିଦ୍ଧ । ତାଙ୍କର ଆଖଡ଼ା ଥାଏ ଟାଉନ୍‌ହଲରେ । ରାତି ଚାରିଟାରୁ ଉଠି କୁସ୍ତି କସରତ ଶିଖିବାପାଇଁ ମୁଁ ସେଠାକୁ ଯାଉଥିଲି । ଥରେ ଗୋଟିଏ ପେଞ୍ଚ ଶିଖୁ ଶିଖୁ ଏପରି ଭାବରେ ପଡ଼ିଗଲି ଯେ , କିଛି ସମୟ ପାଇଁ ଅଚେତନ ହୋଇଗଲି । ତା'ପରେ କୁସ୍ତି ଶିକ୍ଷା ଛାଡ଼ିଦେଲି ।

ବୋଧହୁଏ ସେତେବେଳେ ସେକେଣ୍ଡ ଇୟରରେ ପଢୁଥିଲି, ସେତେବେଳେ ମୋହନ ସି.ଆର୍.ଡ଼ି. ନାଇଡ଼ୁ ନାମକ ଜଣେ ସାଧକ ଆମ କଲେଜରେ ଏକ ବକ୍ତୃତା ଦେଇଥିଲେ । ନିଜର ଶକ୍ତି କିପରି ବଢ଼ାଇବାକୁ ହେବ , ନିଜର ଗୁପ୍ତ ଶକ୍ତିକୁ କିପରି ଜାଗ୍ରତ କରିବାକୁ ହେବ , ଏଥିପାଇଁ ପ୍ରାଣାୟାମ କିପରି ସାହାଯ୍ୟ କରେ ଇତ୍ୟାଦି ବିଷୟରେ ସେ ଏକ ସୁନ୍ଦର ଭାଷଣ ଦେଇ ଘୋଷଣା

କରିଥିଲେ ଯେ, ଯେଉଁମାନେ ଏସବୁ ବିଷୟ ତାଙ୍କଠାରୁ ଶିକ୍ଷା କରିବା ପାଇଁ ଇଚ୍ଛା କରନ୍ତି, ସେମାନଙ୍କୁ ସେ ଶିଖାଇବା ପାଇଁ ପ୍ରସ୍ତୁତ । ଖୁବ୍ କମ୍ ଛାତ୍ର ଶିଖିବାପାଇଁ ବାହାରିଥିଲେ । ତା' ଭିତରେ ନବକୃଷ୍ଣ ଚୌଧୁରୀ ଓ ମୁଁ ଥିଲୁଁ । କିଛିଦିନ ପରେ ଆମେ ଦୁଇଜଣ ହିଁ ତାଙ୍କଠାରୁ ଶିକ୍ଷା କରିବା ପାଇଁ ରହିଗଲୁ । ଆଉ ସମସ୍ତେ ଛାଡ଼ି ପଡ଼ିଲେ । ସେ ସମୟରେ ପ୍ରାଣାୟାମ ଶିଖିବାର ସୁଯୋଗ ମିଳିଥିଲା, ଆଉ ମଧ୍ୟ ନିଜ ଭିତରେ ଅନ୍ତର୍ନିହିତ ଶକ୍ତି ବଢ଼ାଇବାପାଇଁ ଏକ ପ୍ରବଳ ଅଭିଳାଷ ଜାଗ୍ରତ ହୋଇଥିଲା । "ମୁଁ ସାହସୀ", "ମୁଁ ସୁନ୍ଦର", "ମୁଁ ଜଣେ ବଡ଼ ମଣିଷ", "ମୋଦ୍ୱାରା ଜଗତର ବହୁ ମହତ୍ କାର୍ଯ୍ୟ ସାଧିତ ହେବ" ଇତ୍ୟାଦି ପ୍ରକାର ଚିନ୍ତାର ଧାରା ସେ ବତାଇଥିଲେ ।

ମୋର ମନ ଯେଉଁଆଡ଼କୁ ଢଳିଥାଏ, ସେ ଦିଗରେ ଏ ସବୁ ଶିକ୍ଷା ସାହାଯ୍ୟ କରିଥିଲା । ଏହି ନାଇଡୁଙ୍କ ସାଙ୍ଗରେ ୧୯୧୦ ମସିହାର ସେପ୍ଟେମ୍ବର ମାସରେ ମହାତ୍ମା ଗାନ୍ଧିଙ୍କ ଅସହଯୋଗ ଆନ୍ଦୋଳନ ପ୍ରସ୍ତାବ ଆଲୋଚନା କରିବାପାଇଁ କଲିକତାରେ କଂଗ୍ରେସର ଯେଉଁ ବିଶେଷ ଅଧିବେଶନ ହୋଇଥିଲା, ସେଥିରେ ଦର୍ଶକ ଭାବରେ ଯୋଗ ଦେବାପାଇଁ ମୁଁ ଯାଇଥିଲି । ଏ ବିଷୟ ପରେ କହିବି ।

ବର୍ତ୍ତମାନ ଆମ ମେସ୍ ଜୀବନ । ମେସ୍‌ରେ 'ମଳୟ' ନାମକ ଏକ ହାତଲେଖା ମାସିକ ପତ୍ରିକା ଆମେ ବାହାର କରୁଥିଲୁ । ଏଥିରେ ଭଦ୍ରକ ସ୍କୁଲରୁ ସହପାଠୀ ଉଦୟନାରାୟଣ ମହାନ୍ତି ଓ ଉପେନ୍ଦ୍ରପ୍ରସାଦ ମହାନ୍ତି ଖୁବ୍ ପରିଶ୍ରମ କରୁଥିଲେ । 'ଡଷ୍ଟବିନ୍' ନାମକ ଏକ ସାପ୍ତାହିକ ହାତଲେଖା ଇଂରେଜୀ ପତ୍ରିକା ମଧ୍ୟ ବାହାର କରୁଥିଲୁଁ । ତା'ର ଭାର ମୋ ଉପରେ ଥିଲା । କଲେଜର ମୁଖ୍ୟ ସ୍ରୋତଠାରୁ ଆମେ ଏତେ ଦୂରରେ ଥିଲୁ ଯେ, ଆମର ଏସବୁ କାର୍ଯ୍ୟ ଅଧିକାଂଶ ଛାତ୍ରଙ୍କୁ ଜଣା ନଥିଲା । ଆମେ ଯେପରି ଅନ୍ୟମାନଙ୍କୁ ହେୟଜ୍ଞାନ କରୁଥିଲୁ, ସମାଲୋଚନା କରୁଥିଲୁ, ସେମାନେ ମଧ୍ୟ ଆମକୁ ସେହିପରି ତୁଚ୍ଛ ମନେ କରୁଥିଲେ । ସାଧାରଣ କାର୍ଯ୍ୟ ଦିଗରେ ଉତ୍ସାହ ଓ ଅଧ୍ୟବସାୟ ଯେପରି ଥିଲା, କଲେଜ ପାଠ୍ୟ-ଦିଗରେ ସେପରି ନଥିଲା । ତେଣୁ ପରୀକ୍ଷା ସମୟରେ ରାତି-ଦିନ ଲାଗି ଖୁବ୍ ପଢ଼ିବାକୁ ହେଉଥିଲା । ରାତି ରାତି ଉଜାଗର ହୋଇ ଯଥା କଥା କଲେଜ ପାଠ ପଢ଼ି ପରୀକ୍ଷାରେ ପାସ୍ କରିଯାଇଛି । ମୋ ଅଭିଜ୍ଞତାରୁ ମୁଁ ଜାଣେ, ପରୀକ୍ଷାରେ ପାସ୍ କରିବାପାଇଁ ଅନ୍ତତଃ ୧୫ଦିନ ରାତିଦିନ ପଢ଼ା ଆବଶ୍ୟକ । ଆଇ.ଏସ୍‌ସି. ପରୀକ୍ଷା ବେଳରୁ ମୂଳରୁ ନ ପଢ଼ି ଶେଷରେ ପରୀକ୍ଷାର ପନ୍ଦର କୋଡ଼ିଏ ଦିନ ଆଗରୁ ଯେତେବେଳେ ଲାଗିପଡ଼ି କାମ ଆରମ୍ଭ କରେ, ତେତେବେଳେ ଅନେକ ସହପାଠୀ ଘୋଷଣା କରିଥିଲେ ଯେ, ମୁଁ ନିଶ୍ଚୟ ଫେଲ୍ ହେବି । ମୋର ନିଜର ମଧ୍ୟ ଶଙ୍କା ହୋଇଥିଲା; ମାତ୍ର ଦୈବାତ୍ ଦ୍ୱିତୀୟ ଶ୍ରେଣୀରେ ପାସ୍ କରିଯାଇ ନିଶ୍ୱାସ ମାରିଥିଲି ।

ମୁଁ ଦେଖିଲି ଯେ, ବିଜ୍ଞାନ ନେଇ ରୀତିମତ ନ ପଢ଼ିଲେ ପାସ୍ କରିବା ସୁବିଧାଜନକ ନୁହେଁ। ତେଣୁ ଆଇ.ଏସ୍‌ସି. ପାସ୍ କରି ସାରିଲା ପରେ ପୁଣି ସଂସ୍କୃତ ପରୀକ୍ଷା ଦେଇ ବି.ଏ. ପଢ଼ିଲି। ସଂସ୍କୃତ ଓ ଅର୍ଥନୀତି ମୋର ଅଧ୍ୟୟନର ବିଷୟ ଥିଲା। ଏ ଦୁଇଥିରେ ମୁଁ ଭଲ କରୁଥିଲି। ସାମାନ୍ୟ ପଢ଼ାପଢ଼ିରେ ଶତକଡ଼ା ପଚାଶରୁ ଅଧିକ ନମ୍ବର ରଖିପାରୁଥିଲି। ସେତେବେଳେ ଅଧ୍ୟାପକଙ୍କ ଭିତରୁ ଗୋପାଳଚନ୍ଦ୍ର ଗାଙ୍ଗୁଲି, ବରଦାକାନ୍ତ ଗାଙ୍ଗୁଲି, ଆର୍ତ୍ତବଲ୍ଲଭ ମହାନ୍ତି ଏମାନେ ମୋତେ ବେଶ୍ ସୁଖ ପାଉଥିଲେ। ପଢ଼ାପଢ଼ିରେ ବେଶି ସମୟ ଦେବାପାଇଁ ପରାମର୍ଶ ଦେଉଥିଲେ। କଟକ ସହରରେ ପୋଲିସ ବା ଅନ୍ୟ କୌଣସି ସରକାରୀ କର୍ମଚାରୀ ଜୁଲମ କରୁଥିଲେ, ତାକୁ ସେତେବେଳେ 'ଉତ୍କଳ ଦୀପିକା'ରେ ଇଂରେଜୀରେ ଲେଖି ପ୍ରକାଶ କରୁଥିଲି। ସେତେବେଳକାର ଉତ୍କଳ ଦୀପିକା ଲେଖାସବୁ ଅଧେ ଇଂରେଜୀ ଓ ଅଧେ ଓଡ଼ିଆ ଥିଲା। ଏହି ସବୁ ଲେଖା ଯୋଗୁଁ ଛାତ୍ରମହଲରେ ଯେପରି ପରିହାସ ଶୁଣିବାକୁ ମିଳୁଥିଲା, ଅନ୍ୟ କେତେକଙ୍କ ମହଲରେ ପ୍ରଶଂସା ମଧ୍ୟ ମିଳୁଥିଲା।

ଭାରତସେବକ-ସମିତିର ସଭ୍ୟ ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ ଏହି ସମୟରେ କଟକରେ ଏକ ସେବାସମିତି ସ୍ଥାପନ କରିଥିଲେ। ସେଥିରେ ମୁଁ ଓ ମୋର ସଙ୍ଗୀମାନେ ଯୋଗ ଦେଇଥିଲୁଁ। ସେବା-ସମିତିରେ ବହୁ ବିଭାଗ ଥିଲା। ସମବାୟ ବିଭାଗର ଭାରରେ ମୁଁ ଥିଲି। ସମବାୟ-ନୀତିରେ ଗୋଟିଏ କାଗଜ ପେନ୍‌ସିଲ୍ ଦୋକାନ ମୁଁ ଖୋଲିଥିଲି। ଏହା ସୁନ୍ଦର ଚାଲିଥିଲା ଓ କୋଅପରେଟିଭ୍ ବିଭାଗର ଡେପୁଟି ଡାଇରେକ୍‌ଟର ଏ ଦୋକାନ ଦେଖିବାକୁ ଆସିଥିଲେ। ସେତେବେଳେ ଲକ୍ଷ୍ମୀନାରାୟଣ ବାବୁ ଆମକୁ କିପରି ଅଫିସ ରଖିବାକୁ ହୁଏ, କିପରି ରିପୋର୍ଟ ଲେଖିବାକୁ ହୁଏ, କିପରି ତଥ୍ୟ ସଂଗ୍ରହ କରିବାକୁ ହୁଏ ଇତ୍ୟାଦି ବହୁ ବିଷୟ ଶିଖାଇଥିଲେ। ଲକ୍ଷ୍ମୀନାରାୟଣ ବାବୁ ନିଜେ ବିସ୍ତୃତ ପରିଧି ମଧ୍ୟରେ ବିଚରଣ କରିବାର ସୁବିଧା ପାଇଥିବାରୁ ସେ ଆମକୁ ବିସ୍ତୃତ ପରିଧିର କଳ୍ପନାରେ ଖୁବ୍ ସାହାଯ୍ୟ କରିଥିଲେ। ସାଧାରଣ ଜୀବନ ବୋଲନ୍ତେ ଯାହା ବୁଝାଏ, ତାହା ଧାରଣା କରିବାର ସୁବିଧା ମୁଁ ତାଙ୍କଠାରୁ ପାଇଥିଲି।

ବୋଧହୁଏ ଥାର୍ଡ ଇୟରରେ ପଢ଼ିବାବେଳେ ମୋର ଚାକରଟିକୁ କଲେରା ହେଲା। ତା'ର ବହୁତ ସେବା ମୁଁ କରିଛି-ମାତ୍ର ସେ ମରିଗଲା। ତା ନାମ ମୋହନ ଥିଲା। ତା'ର ମୃତ୍ୟୁ ପରେ ଆମ ମେସ୍‌ର ନାମ 'ମୋହନ ମେସ୍' ହୋଇଥିଲା ଓ ତାହା ଶେଷ ପର୍ଯ୍ୟନ୍ତ ରହିଥିଲା।

୧୯୧୮ ମସିହାରେ କଟକର ଉତ୍କଳ ସମ୍ମିଳନୀର ଏକ ଅଧିବେଶନ ହୋଇଥିଲା। ସେଥିରେ ମୁଁ ସ୍ୱେଚ୍ଛାସେବକ ହୋଇଥିଲି। ସେହି ସମୟରେ ସେତେବେଳକାର ଓଡ଼ିଶାର ନେତା ମଧୁବାବୁ, ଯେ କି ସମ୍ମିଳନୀର ସର୍ବେସର୍ବା ଥିଲେ, ତାଙ୍କଠାରୁ ବରାବର ଯିବା ଆସିବା କରୁଥିଲି। ତାଙ୍କର ଚିନ୍ତାର ଧାରା, ସାହସ ଓ ଉତ୍ସାହବାଣୀରେ ମୁଁ ଖୁବ୍ ଅନୁପ୍ରାଣିତ ହେଉଥିଲି। ଏପରିକି ସେତେବେଳେ 'ଦି ଓରିୟା' ବୋଲି ଯେଉଁ ଇଂରେଜୀ ସାପ୍ତାହିକ ପତ୍ରିକା ସେ ବାହାର କରୁଥିଲେ,

ତା'ର ଅନେକ ଲେଖା ମୁଁ ମୁଖସ୍ଥ କରି କେତେକକୁ ଲେଖି ଆମ ମେସ୍‌ରେ ଚାରିଆଡ଼େ ଟଙ୍ଗାଇଥିଲି । ଗୋଟିଏ ବାକ୍ୟ ଯାହା ବର୍ତ୍ତମାନ ସୁଦ୍ଧା ମୋ କାନରେ ଝଙ୍କାରୁଛି, ସେ ହେଉଛି- "Life blood of a people is not too dear a price to secure justice for their progeny." ବଂଶଧରମାନଙ୍କ ପାଇଁ ନ୍ୟାୟ ହାସଲ କରିବାକୁ ହେଲେ ନିଜର ରକ୍ତ ଦାନ ସେଥିପାଇଁ ବେଶି କିଛି ବଡ଼ କଥା ନୁହେଁ । ଓଡ଼ିଶା ଦେଶ-ମିଶ୍ରଣ ଦାବି ସମ୍ପର୍କରେ ମଧୁବାବୁ ଏ କଥା କହିଥିଲେ । ସେ ସମ୍ପର୍କରେ ସେ ମଧ୍ୟ କହିଥିଲେ "History of Bengal should not be lost upon us." ଅର୍ଥାତ୍ ବଙ୍ଗଦେଶର ଇତିହାସରୁ ଆମର ଶିଖିବାର ଅଛି । ବଙ୍ଗଦେଶର 'ବନ୍ଦେମାତରମ୍' ଆନ୍ଦୋଳନରୁ ଓଡ଼ିଶାର ବହୁତ କିଛି ଶିଖିବାର ଅଛି, ଏ କଥା ମଧୁବାବୁ ବରାବର ଆମକୁ କହୁଥିଲେ । ଏ ସବୁ ଓଡ଼ିଶା ଦେଶମିଶ୍ରଣ ସମ୍ବନ୍ଧରେ କୁହାଯାଉଥିଲା । ମଧୁବାବୁଙ୍କ ସହିତ ଖୁବ୍ ନିକଟ ସମ୍ପର୍କରେ ଆସି ଦିନେ ହେଲେ ଦେଶର ସ୍ୱାଧୀନତା ଓ ସେଥିପାଇଁ ଜୀବନ ଦାନ, ଏ ସମ୍ବନ୍ଧରେ କିଛି ଶୁଣି ନାହିଁ । ସେତେବେଳେ ଓଡ଼ିଶାରେ ଏକମାତ୍ର ରାଜନୀତିକ ଚିନ୍ତା ଥାଏ, ଓଡ଼ିଆଭାଷୀ ପ୍ରଦେଶମାନଙ୍କ ଏକତ୍ରୀକରଣ ଓ ପଡ଼ୋଶୀ ବଙ୍ଗାଳୀମାନଙ୍କର ଔଦ୍ଧତ୍ୟରୁ ଆତ୍ମରକ୍ଷା ।

ଆମ କଲେଜର ଯେଉଁମାନେ ବକ୍ତା, ସେମାନେ ମଧ୍ୟ ଏହି ଧାରାରେ ବକ୍ତୃତା ଦେଉଥିଲେ, ମାତ୍ର ଏ ସବୁ ଆମ ଦଳକୁ ସୁଖ ଲାଗୁନଥାଏ । ରାଉଲଟ୍ ଆଇନ୍, ତା'ର ପ୍ରତିବାଦସ୍ୱରୂପ ସତ୍ୟାଗ୍ରହ, ପଞ୍ଜାବ ଅତ୍ୟାଚାର, ସ୍ୱାଧୀନତା-ପାଇଁ ପ୍ରାଣଦାନ, ତିଳକ, ଗାନ୍ଧି ପ୍ରଭୃତିଙ୍କର ଜୀବନ୍ତ ପ୍ରେରଣାମୟ ଉଦ୍‌ବୋଧନ, ଏ ସବୁ ଆମକୁ ଏତେ ଜୋରରେ ଆଘାତ କରୁଥାଏ ଯେ, ଆମେ ଓଡ଼ିଶାର ତତ୍କାଳୀନ ଚିନ୍ତାଧାରା ଭିତରେ ଶ୍ୱାସରୁଦ୍ଧ ହୋଇ ଯାଉଥାଉଁ ବୋଲି ମନେ ହେଉଥାଏ ।

ସେତେବେଳେ ଆମ ଭିତରେ ସେହି କଥାବାର୍ତ୍ତା ହେଉଥିଲା ଏବଂ ବର୍ତ୍ତମାନ ମଧ୍ୟ ପଛକୁ ଅନାଇ ସେହିପରି ଅନୁଭବ କରୁଛି ଯେ, ଏକଲବ୍ୟ ଯେପରି ଏକ କାଳ୍ପନିକ ଗୁରୁଠାରୁ ଯୁଦ୍ଧବିଦ୍ୟା ଶିଖିଥିଲେ, ଆମେ ମଧ୍ୟ ସେହିରପି ବିନା ଗୁରୁରେ ରାଜନୀତି ଶିକ୍ଷା କରିଛୁ ।

ସେତେବେଳେ ଆମେ ଶୁଣିଥିଲୁଁ ଯେ, ପଣ୍ଡିତ ଗୋପବନ୍ଧୁ ଦାସ କଂଗ୍ରେସ ଅଧିବେଶନରେ ଯୋଗ ଦେବାପାଇଁ ଯାଇଛନ୍ତି ଓ ପୁରୀରେ ତତ୍କାଳୀନ ବିହାର ପ୍ରାଦେଶିକ କଂଗ୍ରେସ କମିଟି ଅଧୀନରେ ଗୋଟିଏ ଜିଲ୍ଲା କଂଗ୍ରେସ କମିଟି ସ୍ଥାପିତ ହୋଇଛି । ପଣ୍ଡିତ ଗୋପବନ୍ଧୁ ଦାସ ସତ୍ୟବାଦୀରେ ଯେଉଁ ବିଦ୍ୟାଳୟ ସ୍ଥାପନ କରିଥିଲେ, ସେ ସମ୍ବନ୍ଧରେ ବହୁ କଥା ଆମ କାନକୁ ଆସୁଥାଏ । ସେହି ସ୍କୁଲର ବହୁ ଛାତ୍ର କଲେଜରେ ପଢୁଥାନ୍ତି । ଆମ ମେସ୍‌ରେ ସେହି ସ୍କୁଲର ଗୁଣନିଧି ସାହୁ ନାମକ ଜଣେ ଛାତ୍ର ଆମର ଭାରି ଅନ୍ତରଙ୍ଗ ବନ୍ଧୁ ଥାଆନ୍ତି । ଆଚାର୍ଯ୍ୟ ହରିହର ଓ ପଣ୍ଡିତ କୃପାସିନ୍ଧୁ ମିଶ୍ରଙ୍କ ଭୂୟସୀ ପ୍ରଶଂସା ଶୁଣୁଥାଉଁ । ସେତେବେଳେ ଗୋପବନ୍ଧୁଙ୍କ ଦ୍ୱାରା

ସଂପାଦିତ ସାପ୍ତାହିକ 'ସମାଜ' କାଗଜ ଆମେ ପଢୁଥାଉଁ । ତା'ର ଭାଷା ଓ ଭାବ ଆମ ମନକୁ ଖୁବ୍ ଘେନୁଥାଏ । ପୁରୀର ଦୁର୍ଭିକ୍ଷ ବ୍ୟାପାରରେ ତତ୍କାଳୀନ ସ୍ଥାନୀୟ ସରକାରୀ କର୍ମଚାରୀମାନଙ୍କ ନିନ୍ଦନୀୟ ଅବହେଳା ସମ୍ବନ୍ଧରେ ଯେଉଁ ଆନ୍ଦୋଳନ ଗୋପବନ୍ଧୁ ଚଳାଇଥିଲେ, ତାହା ଆମ ଉପରେ ଖୁବ୍ ପ୍ରଭାବ ପକାଇଥିଲା । ମୋର ମନେହୁଏ, ଓଡ଼ିଶାରେ ସେବା-ଭାବର ପ୍ରଥମ ପ୍ରବର୍ତ୍ତକ ପଣ୍ଡିତ ଗୋପବନ୍ଧୁ ।

ସେତେବେଳେ ମୁଁ ବା ମୋର ସଙ୍ଗୀ କେହି ଗୋପବନ୍ଧୁଙ୍କ ପ୍ରତ୍ୟକ୍ଷ ସମ୍ପର୍କରେ ଆସିନଥିଲୁ । ଦୂରରେ ରହି ସବୁକଥା ଜାଣିବା, ଶୁଣିବା, ଦେଖିବା ଓ ଭବିଷ୍ୟତ୍ ପାଇଁ ନିଜକୁ ତିଆରି କରିବା ଏହାହିଁ ଆମ କର୍ମନୀତି ଥାଏ । ଏହା ମଧ୍ୟ ଭାବୁଥାଉ ଯେ, ଯେତେବେଳେ ରାଜନୀତିରେ ଯୋଗ ଦେବାକୁ ହେବ, ତେତେବେଳେ ପୂର୍ଣ୍ଣ ବେଗରେ ଓ ସମସ୍ତ ପ୍ରାଣ ଦେଇ ଯୋଗ ଦେବାକୁ ହେବ । ବର୍ତ୍ତମାନ ମୁଁ ବୁଝୁଛି, ଆମର ସେ ନୀତି ଠିକ୍ ଥିଲା । ଆମ ସମୟରେ ଯେଉଁମାନେ ଛାତ୍ର-ନେତା ଥିଲେ, ସେମାନେ ପରେ ଦେଶ-ସେବା କରି ପାରିଲେ ନାହିଁ । ସେହିଦିନୁ ଆଜି ପର୍ଯ୍ୟନ୍ତ ଦେଖୁଛି, ଯେଉଁ ଛାତ୍ରମାନେ ଜୀବନରେ ସମସାମୟିକ ରାଜନୀତିକ କାର୍ଯ୍ୟରେ ମୁଖ୍ୟଭାବରେ ଭାଗ ନେଇଛନ୍ତି, ସେମାନେ ପରେ ସାଧାରଣ ସେବକ ହୋଇ ରହି ପାରିନାହାନ୍ତି । ଏହାର କାରଣ ମୁଁ ଅନୁମାନ କରୁଛି, ବୋଧହୁଏ ନାନାପ୍ରକାର ପାରିବାରିକ ଅବସ୍ଥା ଭିତରେ ବିଭିନ୍ନ ପ୍ରକାର ଉଦ୍ଦେଶ୍ୟ ରଖି ପାଠ ପଢ଼ା ଆରମ୍ଭ ହୁଏ ଓ ଚାଲେ । ଛାତ୍ରାବସ୍ଥାରେ ସେ ଅବସ୍ଥା ଓ ଉଦ୍ଦେଶ୍ୟ ଲୁପ୍ତଭାବରେ ଥାଏ । ତେଣୁ ଛାତ୍ର ନିଜକୁ ନିଜେ ମୁକ୍ତ ଓ ସ୍ୱାଧୀନ ନ ଭାବି ସେହି ଅବସରରେ ସେ ନିଜର ଉଦ୍ଦେଶ୍ୟ ଓ ଅବସ୍ଥାକୁ ଭବିଷ୍ୟତ୍ ପ୍ରତି ଦୃଷ୍ଟି ରଖି ନିଜକୁ ତିଆରି କରୁଥିଲେ ହେଉଥାନ୍ତା; ମାତ୍ର ତାହା ନ ହୋଇ ସେହି ସମୟର କ୍ଷଣିକ ବାୟୁମଣ୍ଡଳରେ ସମସାମୟିକ ବ୍ୟାପାରରେ ଉତ୍ସାହ ସହକାରେ ଲିପ୍ତ ହୋଇ ଛାତ୍ରଜୀବନ ଶେଷରେ ଯେତେବେଳେ ସ୍ୱାଭାବିକ ଅବସ୍ଥା ଓ ଉଦ୍ଦେଶ୍ୟର ସମ୍ମୁଖୀନ ହୁଅନ୍ତି, ତେତେବେଳେ ଅତି ଉଗ୍ର ରାଜନୀତିକ ମତବାଦୀ ଛାତ୍ର ମଧ୍ୟ ଅତ୍ୟାଚାରୀ ସରକାରୀ କର୍ମଚାରୀ ହେବାକୁ ବାଧ୍ୟ ହୁଏ । ଏସବୁ ଦେଖି ମୋର ଦୃଢ଼ ମତ ଯେ, ଛାତ୍ରଜୀବନରେ ସମସାମୟିକ ରାଜନୀତିକ ବ୍ୟାପାରରେ ଯୋଗ ଦେବା ଠିକ୍ ନୁହେଁ । ଯଦି ଯୋଗ ଦେବା ବାଞ୍ଛନୀୟ ବୋଲି ମନେ ହୁଏ, ତେବେ ଛାତ୍ରଜୀବନ ସମାପନ କରି ସ୍କୁଲ କଲେଜରୁ ବାହାରି ଆସି ଯୋଗଦେବା ଉଚିତ । ତାହାହେଲେ ଛାତ୍ରାବସ୍ଥାରେ କୃତ୍ରିମ ମୁକ୍ତାବସ୍ଥା ଆଉ ନଥିବ । ଯାହା କରିବାକୁ ହେବ, ନିଜର ସ୍ୱାଭାବିକ ଅବସ୍ଥାର ସମ୍ମୁଖୀନ ହୋଇ କରିବାକୁ ହେବ ।

ଯାହାହେଉ ମୋର କଲେଜ ଜୀବନ ଯେପରି ଭାବରେ କଟିଥିଲା, ସେଥିରେ ମୁଁ ଖୁସି ଓ ତଦ୍ୱାରା ମୋର ନିଜର ଅନେକ ଲାଭ ହୋଇଛି ।



***ସାଧନାର ପଥେ,*** ହରେକୃଷ୍ଣ ମହତାବ ଫାଉଣ୍ଡେସନ, କଟକ, ୧୯୮୭

# ମୋ ଛାତ୍ର ଜୀବନ

## ପ୍ରାଣକୃଷ୍ଣ ପରିଜା

### ୨୦ ଟଙ୍କା ଛାତ୍ରବୃତ୍ତି

କଲିକତା ବିଶ୍ୱବିଦ୍ୟାଳୟରେ ମୁଁ ପ୍ରଥମ ସ୍ଥାନ ଅଧିକାର କରିଥିବା କନରବ ସମ୍ପର୍କରେ ପୂର୍ବରୁ ଉଲ୍ଲେଖ କରିଚି । ଏହା ଶୁଣିବା ପରେ ଉତ୍କଳଗୌରବ ମଧୁସୂଦନ ଦାସ ମୋତେ ଡକାଇ ପଠାଇଥିଲେ । ପ୍ରକୃତରେ ମୁଁ ସଂସ୍କୃତରେ ପ୍ରଥମ ସ୍ଥାନ ଅଧିକାର କରି ଜୟନାରାୟଣ ପୁରସ୍କାର ଲାଭ କଲି । ମୋଟରେ ବିଶ୍ୱବିଦ୍ୟାଳୟରେ ମୋର ସ୍ଥାନ ଥିଲା ନବମ । ସେତେବେଳେ ପ୍ରଥମ ଦଶ କଣ କୃତୀଛାତ୍ରଙ୍କୁ ୨୦ଟଙ୍କା ବୃତ୍ତି ମିଳୁଥିଲା ଓ ମୁଁ ତାହା ପାଇଲି । ମୋର କେତେ କଣ ସହାଧ୍ୟାୟୀ କଲେଜରେ ପଢ଼ିବାପାଇଁ କଲିକତା ଗଲେ । ସେମାନଙ୍କ ମଧ୍ୟରେ ନେତାଜୀ ସୁଭାଷଚନ୍ଦ୍ର ବୋଷଙ୍କ ଭାଇ ସୁଧୀରଚନ୍ଦ୍ର ବୋଷ ଓ ସୁନୀଲଚନ୍ଦ୍ର ବୋଷ, କଟକର ତତ୍କାଳୀନ ମୁନ୍‌ସଫ୍‌ଙ୍କ ପୁତ୍ର ପ୍ରମୋଦ କୁମାର ଦେଙ୍କ ନାମ ଉଲ୍ଲେଖଯୋଗ୍ୟ । ସୁନୀଲ ପରେ କଣେ ବିଖ୍ୟାତ ହୃଦ୍‌ରୋଗ ଚିକିତ୍ସକ ହେଲେ ଓ ସୁଧୀର ଏକ ଖଣିଜ ସଂସ୍ଥାରେ ଯୋଗଦେଲେ । ପ୍ରମୋଦ ଏଡ଼ିନ୍‌ବରାରୁ ଫେରି ଭାରତୀୟ କୃଷି ସର୍ଭିସରେ ଯୋଗଦେଇ କାନପୁର କୃଷି କଲେଜର ପ୍ରିନ୍‌ସିପାଲ ଭାବରେ ଅବସର ଗ୍ରହଣ କଲେ ।

ମୁଁ କଟକ ରେଭେନ୍‌ସା କଲେଜରେ ଆଇ.ଏସ୍‌ସି. ପଢ଼ିଲି । ସେତେବେଳକୁ ଶ୍ରୀଯୁକ୍ତ ଆର୍.ସି ପ୍ରିନ୍‌ସିପାଲ ହୋଇ ଆସିଥାନ୍ତି । ସେ କେତେକ ଗଣିତ କ୍ଲାସ୍ ନେଉଥିଲେ । ଅନ୍ୟ ଗଣିତ ଅଧ୍ୟାପକ ଥିଲେ ଶ୍ରୀ ବଙ୍କିମ ଦାସ ବାନାର୍ଜୀ । କୌଣସି ଛାତ୍ରଙ୍କ ସହିତ ତାଙ୍କର ଥରେ ଦେଖାହେଲେ, ସବୁଦିନ ପାଇଁ ତାଙ୍କର ନାମ ମନେ ରଖି ପାରୁଥିଲେ । ସେ ଖୁବ୍ ଭଲ ଶିକ୍ଷକ ଥିଲେ । ଆମର ଇଂରାଜୀ ଅଧ୍ୟାପକ ଥିଲେ ଶ୍ରୀଗୋପାଳଚନ୍ଦ୍ର ଗାଙ୍ଗୁଲି ଓ ପଦାର୍ଥ ବିଜ୍ଞାନ ବିଭାଗ ଅଧ୍ୟାପକ ଥିଲେ ଶ୍ରୀ ରମେନ୍ଦ୍ର ନାଥ ଘୋଷ । ସେ ଅତି ଶାନ୍ତ-ଶିଷ୍ଟ, ସାଧା-ସିଧା ଲୋକ ଥିଲେ ଓ ଶିକ୍ଷକ ଭାବରେ ତାଙ୍କର ସୁନାମ ଥିଲା । ଛାତ୍ରମାନଙ୍କ ଆଗ୍ରହ ଜାତ କରାଇବାର କୌଶଳ ତାଙ୍କୁ ଜଣାଥିଲା । ଥରେ କଣେ ଛାତ୍ର ପଛ ବେଞ୍ଚରେ ବସି ଘୁମାଉଥିଲେ । ରମେନ୍ଦ୍ର ବାବୁ ଏହା ଦେଖିପାରି ଖୁବ୍ ବଡ଼ ପାଟିରେ କହିଲେ, 'ଯଦି 'କ' ପାଖରୁ ଶୋଇଥିବା ପିଲାପର୍ଯ୍ୟନ୍ତ ଏକ ରେଖା

ଟଣାଯାଏ... '। ଅନ୍ୟ ପିଲାମାନେ ଠୋ ଠୋ ହୋଇ ହସିଉଠିଲେ ଓ ସୁପ୍ତ ଛାତ୍ରଙ୍କର ନିଦ ଭାଙ୍ଗିଗଲା । ବର୍ଷକ ମଧ୍ୟରେ ରମେନ୍ଦ୍ର ବାବୁ ବଦଳି ହୋଇଗଲେ । ତାଙ୍କ ସ୍ଥାନରେ ଆସିଲେ ଶ୍ରୀ ସତୀଶଚନ୍ଦ୍ର ରାୟ, ଜଣେ ଭଲ ବକ୍ତା ଓ ଶିକ୍ଷକ ।

## ଯୋଗେଶଚନ୍ଦ୍ର ବିଦ୍ୟାନିଧି

ଉଦ୍ଭିଦ ବିଜ୍ଞାନରେ ଆମର ଅଧ୍ୟାପକ ଥିଲେ ରାୟବାହାଦୁର ଯୋଗେଶଚନ୍ଦ୍ର ରାୟ ବିଦ୍ୟାନିଧି । ନୂଆ ଇଣ୍ଟରମିଡ଼ିଏଟ୍ ପାଠ୍ୟକ୍ରମ ପ୍ରଚଳିତ ହେବା ପୂର୍ବରୁ ଯୋଗେଶ ବାବୁ ପଦାର୍ଥ ବିଜ୍ଞାନ, ରସାୟନ ଶାସ୍ତ୍ର, ଉଦ୍ଭିଦ ବିଜ୍ଞାନ ଆଦି ବିଜ୍ଞାନର ସବୁ ବିଭାଗ ପଢ଼ାଉଥିଲେ । କିନ୍ତୁ ନୂଆ ପାଠ୍ୟକ୍ରମରେ ସେ କେବଳ ଉଦ୍ଭିଦ ବିଜ୍ଞାନ ପଢ଼ାଇଲେ । ତାଙ୍କର ଅଧ୍ୟାପନା ପ୍ରଣାଳୀ ସମ୍ପୂର୍ଣ୍ଣ ନୂତନ ଧରଣର ଥିଲା । ଉଦ୍ଭିଦ ବିଜ୍ଞାନ କ୍ଲାସ୍ ଅନ୍ୟ ପାଠ୍ୟକ୍ରମ ତୁଳନାରେ ଛୋଟ ଥିଲା, ତେଣୁ ତାଙ୍କର ପ୍ରଣାଳୀ ଖୁବ୍ ଫଳପ୍ରଦ ହେଉଥିଲା । ସେ ପ୍ରତ୍ୟେକ ଦୁଇଜଣ ଛାତ୍ରଙ୍କୁ ଖଣ୍ଡେ ଖଣ୍ଡେ ଛୋଟ କିଆରିରେ ମଞ୍ଜି ଲଗାଇବାପାଇଁ ଦେଇ ଦେଉଥିଲେ । ମଞ୍ଜିରୁ କିପରି ଗଛ ହେଉଛି ଓ ଗଛ କିପରି ବଢ଼ିଚି ତାହା ଅନୁଧ୍ୟାନ କରିବାପାଇଁ ସେ ଛାତ୍ରମାନଙ୍କୁ କହୁଥିଲେ । କାହାରି କିଛି ସନ୍ଦେହ ବା ଅସୁବିଧା ଥିଲେ, ସେ ନିଜେ କ୍ଷେତ୍ରକୁ ଆସି ବୁଝାଇ ଦେଉଥିଲେ । ଏହି ପ୍ରଣାଳୀ ଖୁବ୍ ଫଳପ୍ରଦ ଥିଲା । କିନ୍ତୁ ଏବେ ଗୋଟିଏ ଗୋଟିଏ ଶ୍ରେଣୀରେ ସେ ତୁଳନାରେ ବହୁସଂଖ୍ୟକ ଛାତ୍ରଙ୍କୁ ପଢ଼ାଇବାକୁ ହେଉଚି । ତେଣୁ ଏବେ ପ୍ରଣାଳୀ କାର୍ଯ୍ୟକାରୀ ହେବା ସନ୍ଦେହଜନକ । ଯୋଗେଶବାବୁଙ୍କର ବହୁ କ୍ଷେତ୍ରରେ ଅଧ୍ୟୟନ ଓ ଚର୍ଚ୍ଚା ଥିଲା । ଚନ୍ଦ୍ରଶେଖର ସିଂହସାମନ୍ତଙ୍କୁ ଓ ତାଙ୍କର କୃତୀ ସିଦ୍ଧାନ୍ତ ଦର୍ପଣକୁ ଦେଶ ଆଗରେ ସେ ଯେ ପରିଚିତ କରାଇଥିଲେ, ଏହା କାହାରିକୁ ଅବିଦିତ ନାହିଁ । ପରେ ଏଥିପାଇଁ ସାମନ୍ତଚନ୍ଦ୍ରଶେଖରଙ୍କୁ ତତ୍କାଳୀନ ସରକାରଙ୍କଠାରୁ ମହାମହୋପାଧ୍ୟାୟ ଉପାଧି ମିଳିଥିଲା ।

ଏହା ବ୍ୟତୀତ ଜ୍ଞାନ-ବିଜ୍ଞାନର ବିଭିନ୍ନ କ୍ଷେତ୍ରରେ ଏହି ଆଗ୍ରହୀ ଅଧ୍ୟାପକଙ୍କର ଚର୍ଚ୍ଚା ଥିଲା । କାଠଯୋଡ଼ି କୂଳରେ ଏକ ଉଇଣ୍ଡ୍ ମିଲର ମଡ଼େଲ ବସାଇ ସେ ପରୀକ୍ଷା କରୁଥିବା ଆମେ ଦେଖିଚୁ । ସେ ବଙ୍ଗଳାରେ ଏକ ଅଭିଧାନ ମଧ୍ୟ ସଙ୍କଳନ କରୁଥିଲେ । ଥରେ ଛୁଟି ପୂର୍ବରୁ ମୁଁ ତାଙ୍କୁ ଦେଖା କରିବାକୁ ଯାଇଥିଲି । ଓଡ଼ିଶାରେ କେତେ ପ୍ରକାର ପିଠାପଣା ହୁଏ, ତାହା ତାଙ୍କୁ ଲେଖି କରି ଦେବାପାଇଁ ସେ ମୋତେ କହିଥିଲେ ଓ ମୁଁ ଦେଇଥିଲି । ମୋର ସ୍କୁଲ ସହାଧ୍ୟାୟୀ ଓ କଲେଜରେ ସମସାମୟିକ ଛାତ୍ର ଶ୍ରୀ ଉଦୟ ନାଥ ଗଡ଼ନାୟକଙ୍କ ନିମନ୍ତ୍ରଣକ୍ରମେ ମୁଁ ଢେଙ୍କାନାଳ କପିଳାସ ପାହାଡ଼ରେ ଏକ ଗ୍ରୀଷ୍ମାବକାଶ କଟାଇଥିଲି । କପିଳାସ ଯିବା ପୂର୍ବରୁ ଯୋଗେଶବାବୁଙ୍କ ସହିତ ସାକ୍ଷାତ୍ କଲି । କପିଳାସ ଭ୍ରମଣ ଅଭିଜ୍ଞତା ସମ୍ପର୍କରେ ଲେଖିକରି ଦେବାପାଇଁ ସେ ମୋତେ କହିଥିଲେ । ଫେରିବା ପରେ କପିଳାସ ଯାତ୍ରା, କପିଳାସ ପାହାଡ଼ର ପ୍ରାକୃତିକ

ସୌନ୍ଦର୍ଯ୍ୟ ଓ ସେଠାରେ ଯେଉଁ ସବୁ ବୃକ୍ଷଲତା ଓ ପ୍ରାଣୀଙ୍କୁ ଦେଖିଲୁ ତା'ର ଏକ ବୃତ୍ତାନ୍ତ ମୁଁ ତାଙ୍କୁ ଲେଖିକରି ଦେଇଥିଲି ।

**କପିଳାସ, ରେଭେନ୍‌ସା କଲେଜ**

ଏଠାରେ କପିଳାସ ପଦ୍ଧତି ବିଷୟ୍ ମୋର ଯାହା ମନେ ଅଛି ତାହା କହେ । ଢେଙ୍କାନାଳ ଜିଲ୍ଲାରେ କପିଳାସ ପାହାଡ଼ । ସେତେବେଳେ ଢେଙ୍କାନାଳ ଏକ ଗଡ଼ଜାତ ରାଜ୍ୟ ଥିଲା ଓ କଟକଠାରୁ ଢେଙ୍କାନାଳ ବାଟରେ କପିଳାସ ଯିବାକୁ ହେଲେ ୭୫ ମାଇଲ ଦୂର ପଡୁଥିଲା । କପିଳାସ ପାହାଡ଼ ତଳେ ଦେଓଗାଁ ନାମରେ ଏକ ଗ୍ରାମ ଅବସ୍ଥିତ । ସେତେବେଳେ ଲୋକ ହୁଏତ ଚାଲି କରି କିମ୍ବା ବଳଦ ଗାଡ଼ିରେ ଦେଓଗାଁ ପର୍ଯ୍ୟନ୍ତ ଯାଉଥିଲେ । ସେଠାରେ ଏକ ମଣିଷଚଲା ରାସ୍ତାରେ ପାହାଡ଼ ଉପରକୁ ଯିବାକୁ ହେଉଥିଲା । ଦେଓଗାଁ ଓ ପାହାଡ଼ ଶିଖର ମଧ୍ୟରେ ଏକ ଶିବମନ୍ଦିର ଓ ପ୍ରାକୃତିକ ଝରଣା ଅଛି । ସେଠାରେ ରାଜାଙ୍କର ଗୋଟିଏ ବଙ୍ଗଳା ଓ ଯାତ୍ରୀମାନେ ରହିବାପାଇଁ କେତେଗୁଡ଼ିଏ କୋଠରି ଅଛି । ଆମେ ଏହିପରି ଗୋଟିଏ କୋଠରିରେ ରହିଲୁ । ଝରଣାର ପାଣିକୁ ଆବଦ୍ଧ କରିବାପାଇଁ ବଡ଼ ବଡ଼ ପଥର କୁଣ୍ଡମାନ ନିର୍ମିତ ହୋଇଥିଲା । ଏହି ସବୁ କୁଣ୍ଡ ଭରିଯିବା ପରେ ଉଦ୍‌ବୃତ୍ତ ଜଳ ଆହୁରି ଏକ ପକ୍କା ଚବକାରେ ପଡୁଥିଲା । ସେଠାରେ ଉପରୁ ପଡୁଥିବା ପାଣିରେ ଗାଧୋଇବାର ସୁବିଧା ଥିଲା ।

ଆହୁରି ଉପରକୁ ଗଲେ ଗୁମ୍ଫା ପଡ଼େ, ଯାହାର ନାମ ହେଉଚି ସୀତା ଅନ୍ତୁଡ଼ିଶାଳ । ଜନଶ୍ରୁତି ଅଛି ଯେ ଏହି ଗୁମ୍ଫା ଥିଲା ସୀତାଙ୍କର ପ୍ରସୂତି ଗୃହ । ଏଠାରେ ସେ ଲବ-କୁଶଙ୍କୁ ଜନ୍ମ ଦେଇଥିଲେ । ଯାତ୍ରୀଙ୍କୁ ଆକୃଷ୍ଟ କରିବାପାଇଁ ଏ ପ୍ରବାଦ କୌଣସି ପଣ୍ଡାଙ୍କର ମସ୍ତିଷ୍କ-ପ୍ରସୂତ ହୋଇପାରେ । ପାହାଡ଼ର ଉପର ହେଉଚି ସମତଳ ଏବଂ ଏହାକୁ ଦେବସଭା କୁହାଯାଏ । ଏଠାରେ କେତେକ ମନ୍ଦିର ଆକାରର ପଥର ଅଛି । ପାହାଡ଼ ଉପରୁ କଟକ ସହରର ସୌଧମାଳା ଦେଖାଯାଏ ।

ଶିବରାତ୍ରି ଦିନ ଏଠାରେ ଏକ ବଡ଼ ଧରଣର ଯାତ୍ରା ହୁଏ ଓ ଓଡ଼ିଶାର ଚାରିଆଡୁ ଲୋକ ଆସନ୍ତି । ଏଠାରେ ଉଲ୍ଲେଖ କରାଯାଇପାରେ ଯେ ମୁଁ କଟକ ଆସିବା ପୂର୍ବରୁ ଆମ ଗ୍ରାମର ବହୁଲୋକ ସାଙ୍ଗ ହୋଇ କପିଳାସ ଯାଇଥିଲୁ । ଆମ ଗ୍ରାମରୁ କଟକ ୩୬ ମାଇଲ ଓ କଟକରୁ କପିଳାସ ୭୫ ମାଇଲ । କିନ୍ତୁ ଆମେ ଆଉ ଏକ ଜଙ୍ଗଲ ବାଟରେ ସିଧା ଯିବାଦ୍ୱାରା ଆମକୁ ୨୦ ମାଇଲ କମ୍ ପଡ଼ିଥିଲା । କପିଳାସରେ ପହଞ୍ଚିବାକୁ ଆମକୁ ତିନି ଦିନ ଲାଗିଲା । ସେତେବେଳକୁ ଦର୍ଶକଙ୍କର ଭିଡ଼ ଜମିଯାଇଥିଲା ଓ ମନ୍ଦିର ଚୂଡ଼ାରେ ମହାଦୀପ କେତେବେଳେ ଜଳିବ ତାହା ଦେଖିବାପାଇଁ ସମସ୍ତଙ୍କୁ ଉଜାଗର ରହିବାକୁ ପଡ଼ିଥିଲା । ଏଠାରେ ଉଲ୍ଲେଖ କରାଯାଇପାରେ ଯେ, ଏ ମନ୍ଦିରର ପୂଜକମାନେ ବ୍ରାହ୍ମଣ ନ ଥିଲେ । ସେମାନେ ଦେଓଗାଁର ଲୋକ ଓ ସବୁଦିନ ଯିବା ଆସିବା କରୁଥିଲେ । ଅଧିକାଂଶ ଲୋକ ମଣିଷ ଚଲାବାଟରେ ପାହାଡ଼ ଚଢୁଥିଲେ । କିନ୍ତୁ

ଦେଓଗାଁରୁ କପିଳାସ ମନ୍ଦିର ନିକଟ ବଙ୍ଗଳାକୁ ହାତୀରେ ଯିବାପାଇଁ ରାଜା ଏକ ବୁଲାଣି ରାସ୍ତା ତିଆରି କରିଥିଲେ । ବୋଧହୁଏ ବର୍ତ୍ତମାନ ଏ ରାସ୍ତାରେ ଜିପ୍ ଓ କାର୍ ଗଲାଣି ।

ପାହାଡ଼ର ଜଳବାୟୁ ଅତ୍ୟନ୍ତ ମନୋରମ । କେବଳ ଜୁନ୍ ମାସରେ କେତେକ ଦିନ ଛାଡ଼ିଦେଲେ ଗ୍ରୀଷ୍ମର ତାପ ସାଧାରଣତଃ ଏଠାରେ ଅନୁଭୂତ ହୁଏ ନାହିଁ । ଲୋକଙ୍କ ରହିବାର ସୁବ୍ୟବସ୍ଥା ହୋଇପାରିଲେ ଏହା ଏକ ସୁନ୍ଦର ଗ୍ରୀଷ୍ମନିବାସ ହୋଇପାରିବ । ପ୍ରଥମ ବର୍ଷା ପରେ ଅବଶ୍ୟ ଏଠାରେ ତେଲୁଣି ପୋକ ଓ ବିଛାଙ୍କର ସଂଖ୍ୟା ବଢ଼ିଯାଏ । ତେଲୁଣି ପୋକଗୁଡ଼ିକ ୬ ଇଞ୍ଚ ବା ତା'ଠୁ ବେଶି ଲମ୍ବ ।

**ବିଦ୍ୟାନିଧି**

ପୂର୍ବରୁ କୁହାଯାଇଅଛି ଯେ, ଆମ ଅଧ୍ୟାପକ ଯୋଗେଶଚନ୍ଦ୍ର ରାୟ ମୋତେ କହିଥିଲେ କପିଳାସ ବିଷୟରେ ଗୋଟିଏ ପ୍ରବନ୍ଧ ଲେଖିବାକୁ । ମୁଁ କପିଳାସ ସମ୍ପର୍କରେ ଯେଉଁ ପ୍ରବନ୍ଧ ଲେଖିଥିଲି, ଯୋଗେଶ ବାବୁ ସେଥିରେ ଭାରି ଖୁସି ହୋଇଗଲେ ଓ ପିଲାମାନଙ୍କର ଏକ ସଭା ଡାକି ମୋତେ ସେଠାରେ ତାହା ପଢ଼ିବାକୁ କହିଥିଲେ । ଏଥିରୁ ଜଣାଯିବ ଯୋଗେଶ ବାବୁ କିପରି ଛାତ୍ରମାନଙ୍କୁ ଉତ୍ସାହିତ କରୁଥିଲେ । ସେ ନିଜେ ଏକ ବହୁମୁଖୀ ପ୍ରତିଭାସମ୍ପନ୍ନ ପଣ୍ଡିତ ଥିଲେ ଏବଂ ଛାତ୍ରମାନଙ୍କ ଉନ୍ନତିପାଇଁ ଯତ୍ନଶୀଳ ହେଉଥିଲେ । ତାଙ୍କର ପାଣ୍ଡିତ୍ୟକୁ ସମ୍ମାନ ଦେଖାଇବାର ନିଦର୍ଶନସ୍ୱରୂପ ମୁକ୍ତିମଣ୍ଡପ ତାଙ୍କୁ ବିଦ୍ୟାନିଧି ଉପାଧି ଦେଇଥିଲେ ।

ମୁଁ ଇଂଲଣ୍ଡରୁ ଫେରିବା ପରେ ଯେତେବେଳେ ବଟାନି ବିଭାଗରେ ଯୋଗ ଦେଲି, ଥରେ ତାଙ୍କୁ ପରୀକ୍ଷକ ଭାବରେ ତାଙ୍କ ପୁରୁଣା କଲେଜକୁ ନିମନ୍ତ୍ରଣ କରିଥିଲି । ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହେବା ପରେ ତାଙ୍କୁ ଡକ୍ଟର ଅଫ୍ ସାଇନ୍ସ ଉପାଧିରେ ଭୂଷିତ କରାଯାଇଥିଲା ।

ଶିକ୍ଷକତ୍ୱ ଓ ବ୍ୟକ୍ତିତ୍ୱ ଉଭୟ ଦୃଷ୍ଟିରୁ ସେ ଅସାଧାରଣ ଥିଲେ । ସେ ତାଙ୍କର ଛାତ୍ରମାନଙ୍କ ଅସୁବିଧା ପ୍ରତି ବ୍ୟକ୍ତିଗତ ଭାବରେ ଦୃଷ୍ଟି ଦେଉଥିଲେ ।

ଆମ କଲେଜରେ ପଢୁଥିବାବେଳେ ବିଖ୍ୟାତ ଦେଶପ୍ରେମୀ ଖୁଦିରାମ ବୋଷ କଟକ ଆସି ମ୍ୟୁନିସିପାଲଟି ପଡ଼ିଆରେ ଏକ ସାଧାରଣ ସଭାରେ ଭାଷଣ ଦେଇଥିଲେ । ମୁଁ ତାଙ୍କର ଭାଷଣ ଶୁଣିଥିଲି । ପରେ ପରେ 'ଉତ୍କଳ ସାହିତ୍ୟ'ର ଖ୍ୟାତନାମା ସମ୍ପାଦକ ଶ୍ରୀ ବିଶ୍ୱନାଥ କର ତାଙ୍କ ବାଲୁବଜାର ଘରକୁ ଶ୍ରୀ ବୋଷଙ୍କୁ ନିମନ୍ତ୍ରଣ କରିଥିଲେ ଓ ଆମେ କେତେକ ଛାତ୍ର ତାଙ୍କ ସହିତ ଆଲୋଚନା କରିବାପାଇଁ ଯାଇଥିଲୁ । ତାଙ୍କର ଭାଷଣ ଓ ଆଲୋଚନା ଆମ ଉପରେ ଗଭୀର ପ୍ରଭାବ ପକାଇଥିଲା ଓ ଆମର ଭବିଷ୍ୟତ ଜୀବନ ଗଠନରେ ସାହାଯ୍ୟ କରିଥିଲା ।

ଅନ୍ୟ ନେତାମାନଙ୍କ ମଧ୍ୟରେ ଶ୍ରୀ ବିପିନଚନ୍ଦ୍ର ପାଲ କଟକ ଆସି ମ୍ୟୁନିସିପାଲିଟି ପଡ଼ିଆରେ ଏକ ଭାଷଣ ଦେଇଥିଲେ । ସେ କାଳରେ ମାଇକ୍ରୋଫୋନ୍ ଜଣାଶୁଣା ନ ଥିଲା । ଥିଲେ

ମଧ୍ୟ ବିପିନଚନ୍ଦ୍ରଙ୍କର ତାହା ଦରକାର ପଡ଼ି ନ ଥାନ୍ତା । କାରଣ ସେ ଏପରି ବଡ଼ପାଟିରେ କହିପାରୁଥିଲେ ଯେ ପାଏ ବାଟରୁ ତାହା ଶୁଣାଯାଉଥିଲା ।

ଏକ ସମୟରେ ବିପିନଚନ୍ଦ୍ର ପାଲ ପ୍ୟାରୀମୋହନ ଏକାଡେମୀର ହେଡ୍‌ମାଷ୍ଟର ଥିଲେ । ବହୁଦିନ ପରେ ଅନ୍ୟ ଏକ ସମ୍ପର୍କରେ ସେ ତାଙ୍କର ପୁରାତନ ସ୍କୁଲ ଦେଖିବାକୁ ଆସିଥିଲେ । ସେତେବେଳକୁ ମୁଁ ବିଲାତରୁ ଫେରି ଆସିଥାଏ । ସେ କଲିକତା ଫେରିଲାବେଳେ ଆମେ ଦୁଇଜଣ ଗୋଟିଏ ଡବାରେ ଥିଲୁ । ସେ ତାଙ୍କର କେତେକ ଅଭିଜ୍ଞତା ମୋତେ କହିଥିଲେ । ସେଥିରୁ ଗୋଟିଏ କଥା ମୋର ମନେଅଛି । ଥରେ ଜଣେ ଇଂରେଜ ଭଦ୍ରବ୍ୟକ୍ତିଙ୍କ ସହିତ ସେ ଏକତ୍ର ଯାଉଥିବାବେଳେ ଭଦ୍ରବ୍ୟକ୍ତି ଜଣକ ସେ ଜେଲ ଯାଇଛନ୍ତି କି ବୋଲି ପଚାରିଲେ । ପାଲ୍ ଉତ୍ତର ଦେଇଥିଲେ, ହଁ ସେ ଜେଲ୍ ଯାଇଛନ୍ତି -ସେତେବେଳେ ଜେଲ ଶ୍ୱଶୁରାଳୟ ପରି ନ ହୋଇ ପ୍ରକୃତ ଜେଲଖାନା ଥିଲା ।

**ସମସାମୟିକ ଛାତ୍ରବନ୍ଧୁ**

ରେଭେନ୍‌ସା କଲେଜରେ ଥିବାବେଳେ ମୁଁ ପୁରୁଣା ଛାତ୍ରାବାସରେ ଥିଲି । ଓଡ଼ିଶାର ସବୁ ଅଞ୍ଚଳରୁ ଛାତ୍ର ଏଠାରେ ରହୁଥିଲେ । ସେତେବେଳେ ଯେଉଁମାନେ ଛାତ୍ରାବାସରେ ଥିଲେ, ସେମାନଙ୍କ ମଧ୍ୟରୁ କେତେକ ପରବର୍ତ୍ତୀ ଜୀବନରେ ଯଥେଷ୍ଟ ଖ୍ୟାତି ଅର୍ଜନ କରିଥିଲେ । କେତେକ ବିଖ୍ୟାତ ଲୋକଙ୍କର ନାମ ଏଠାରେ ଉଲ୍ଲେଖ କରାଯାଇପାରେ- ପଣ୍ଡିତ ନୀଳକଣ୍ଠ ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର, ଶ୍ରୀ କୃପାସିନ୍ଧୁ ମିଶ୍ର (ବିଖ୍ୟାତ ଲେଖକଗଣ), ଶ୍ରୀ ଗୋକୁଳାନନ୍ଦ ନାୟକ, ଶ୍ରୀ ବାଙ୍କନିଧି ପଟ୍ଟନାୟକ (କଣାଶୁଣା ହେଡ୍‌ମାଷ୍ଟର) ଓ ଶ୍ରୀ ହେମଚନ୍ଦ୍ର ଚାନ୍ଦ । ମୟୂରଭଞ୍ଜରୁ ଜଣେ ଆଦିବାସୀ ଛାତ୍ର ଥିଲେ; ତାଙ୍କର ନାମ ଶ୍ରୀ ଚୈତନ୍ୟ ମାଝି । ମେସ୍ ଚାକର ତାଙ୍କର ବାସନ ଧୋଇବାକୁ ଅନିଚ୍ଛୁକ ହେବାରୁ ସେ ତାଙ୍କ ରହିବା କୋଠରିରେ ଖାଉଥିଲେ । ଏହା ୧୯୧୦-୧୯୧୧ ସାଲର କଥା । କିନ୍ତୁ ୧୯୨୧ ମସିହାରେ ମୁଁ ବିଲାତରୁ ଫେରିବା ବେଳକୁ ମଧ୍ୟ ଏହି ଅବସ୍ଥା ଥିଲା । ଥରେ ଜଣେ ମୁସଲମାନ ବନ୍ଧୁ ମୋ ସହିତ ଆସି ଖାଇଲେ । ସେ ଯିବା ପରେ ଚାକର (ଜାତିରେ ଭଣ୍ଡାରି) ବାସନ ଧୋଇବା ପାଇଁ ମନାକଲା । ମୁଁ ଯେତେବେଳେ ନିଜେ ଧୋଇବାପାଇଁ ବାସନ ଗୋଟାଇଲି, ଚାକର ଅନୁତାପ କରି କହିଲା ଯେ, ଆପଣ ବାସନ ଧୋଇବାପାଇଁ ଯେତେବେଳେ ପ୍ରସ୍ତୁତ ଅଛନ୍ତି, ମୋର ସେଥିରେ ଆଉ ଆପତ୍ତି କରିବାର କୌଣସି କାରଣ ନାହିଁ । ସେହିଦିନଠାରୁ ଆମ ଘରେ ଆଉ ସେପରି ଆପତ୍ତି କେବେ ଉଠି ନାହିଁ ।

କଲେଜରେ ମୋର ସମସାମୟିକ ଛାତ୍ରଙ୍କ ମଧ୍ୟରେ କେତେକଙ୍କ ନାମ ଉଲ୍ଲେଖ କରାଯାଇପାରେ- ଅଧ୍ୟାପକ ନାରାୟଣ ମିଶ୍ର ମୋ 'ଠାରୁ ବର୍ଷେ ଉପରେ ପଢୁଥିଲେ, ଉତ୍ତର ପ୍ରଦେଶର ପୂର୍ବତନ ରାଜ୍ୟପାଳ ଶ୍ରୀ ବିଶ୍ୱନାଥ ଦାସ, ନେତାଜୀ ସୁଭାଷଚନ୍ଦ୍ର ବୋଷଙ୍କ ବଡ଼ ଭାଇ

ଶ୍ରୀ ସୁରେଶଚନ୍ଦ୍ର ବୋଷ, ସ୍ୱାଧୀନତା ସଂଗ୍ରାମର ଜଣେ ବିଖ୍ୟାତ ଯୋଦ୍ଧା ଶ୍ରୀ ଶୈଳେନ୍ଦ୍ର ନାଥ ବୋଷ, ହିନ୍ଦ୍ ସେବକ ସମାଜର ସଭ୍ୟ ଓ ସୁପରିଚିତ ସମାଜସେବୀ ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ। ଏମାନଙ୍କ ମଧ୍ୟରୁ ସର୍ବଶ୍ରୀ ସୁରେଶଚନ୍ଦ୍ର ବୋଷ, ଶୈଳେନ୍ଦ୍ର ନାଥ ବୋଷ ଓ ଲକ୍ଷ୍ମୀନାରାୟଣ ସାହୁ ମୋର ସହପାଠୀ ଥିଲେ।

**ଉତ୍କଳ ସମ୍ମିଳନୀ**

ବଙ୍ଗଭଙ୍ଗ ଓ ସ୍ୱଦେଶୀ ଆନ୍ଦୋଳନ ଯୋଗୁଁ ସେତେବେଳେ ରାଜନୈତିକ ବାତାବରଣ ଉତ୍ତେଜିତ ଥିଲା। କୋର୍ଟ କଚେରିର ଭାଷା ଓଡ଼ିଆ ଉଠାଇ ଦେଇ ବଙ୍ଗଳା କରିବାପାଇଁ ଯେଉଁ ଉଦ୍ୟମ ହୋଇଥିଲା, ତାହା ବ୍ୟର୍ଥ ହୋଇଯିବାରୁ ପୂର୍ବ ଆନ୍ଦୋଳନର ଉପଶମ ହୋଇଯାଇଥିଲା। ଆମେ ସେତେବେଳେ ଶୁଣିଛୁ ଯେ, ବାଲେଶ୍ୱରରେ ରାଜା ବୈକୁଣ୍ଠନାଥ ଦେଙ୍କ ସମେତ ଓଡ଼ିଶାର ବହୁ ବିଶିଷ୍ଟ ବଙ୍ଗାଳୀ ଅଧିବାସୀ ଏହି ଉଦ୍ୟମର ତୀବ୍ର ବିରୋଧ କରିଥିଲେ।

ଉତ୍କଳ ସମ୍ମିଳନୀ ଗଠନ ପାଇଁ ସେତେବେଳେ ଉଦ୍ୟମ ଆରମ୍ଭ ହେଲା। ସେଥିପାଇଁ ଉତ୍କଳ ଗୌରବ ମଧୁସୂଦନ ଦାସ ମ୍ୟୁନିସିପାଲିଟି ପଡ଼ିଆରେ ଏ ସମ୍ପର୍କରେ ଆଲୋଚିତ ଏକ ସଭାରେ ଭାଷଣ ଦେଇଥିବା ମୋର ମନେଅଛି। ମଧୁବାବୁ ଓ ସୁରେନ୍ଦ୍ରନାଥ ବାନାର୍ଜୀଙ୍କର ଓଡ଼ିଶାର ସ୍ୱାର୍ଥ ଘେନି ସେତେବେଳେ ମତଭେଦ ଦେଖାଯାଇଥିଲା ଓ ମଧୁବାବୁ ଓଡ଼ିଶାର ସ୍ୱାର୍ଥରକ୍ଷାପାଇଁ ଏକ ସଂଗଠନର ଆବଶ୍ୟକତା ଅନୁଭବ କରୁଥିଲେ। ସେଥିରେ ସେ ସଫଳ ହୋଇ ଉତ୍କଳ ସମ୍ମିଳନୀର ପ୍ରତିଷ୍ଠା କରିଥିଲେ।

୧୯୧୧ ମସିହାରେ କଲିକତା ବିଶ୍ୱବିଦ୍ୟାଳୟରେ ଚତୁର୍ଥ ସ୍ଥାନ ଅଧିକାର କରି ମୁଁ ଆଇ.ଏସ୍‌ସି. ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲି। ପ୍ରଥମ ଶ୍ରେଣୀର ବୃତ୍ତି ମୋତେ ମିଳିଲା ନାହିଁ। କାରଣ ଆଇ.ଏସ୍‌ସି.ରେ ପ୍ରଥମ ତିନିଜଣ ଓ ଆଇ.ଏ.ରେ ପ୍ରଥମ ଚାରିଜଣ ଛାତ୍ରଙ୍କୁ ଏହି ବୃତ୍ତି ମିଳୁଥିଲା। ମୁଁ ମାସକୁ କେବଳ ୨୦ ଟଙ୍କାର ବୃତ୍ତି ପାଇଲି। ଅଧିକ ପଢ଼ିବା ଏକ ପ୍ରଧାନ ସମସ୍ୟା ହେଲା। ରେଭେନ୍‌ସା କଲେଜରେ ବି.ଏସ୍.ସି. ଶ୍ରେଣୀ ନ ଥିଲା। ବି.ଏସ୍‌ସି. ପଢ଼ିବାକୁ ହେଲେ କଲିକତା ଯିବାକୁ ପଡ଼ୁଥିଲା। ସେତେବେଳେ କେନ୍ଦୁଝରର ସରକାରୀ ଦେଓ୍ୱାନ ଶ୍ରୀ ବାସୁଦେବ କାନୁନ୍‌ଗୋ (ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋଙ୍କର ଦାଦା) ମୋତେ ସାହାଯ୍ୟ କଲେ। ମୁଁ ପୂର୍ବରୁ ଉଲ୍ଲେଖ କରିଛି ଯେ କଲିଜିଏଟ୍ ସ୍କୁଲରେ ନାମ ଲେଖାଇବା ପରେ ମୁଁ କଟକରେ ଥିବା ତାଙ୍କ ବାସଗୃହର ବାହାର ଘରେ ରହି ପଢ଼ୁଥିଲି। ସେତେବେଳୁ ସେ ମୋତେ ଜାଣିଥିଲେ। ଏବେ ସେ ମୋତେ ୨୦ଟଙ୍କା ସାହାଯ୍ୟ କରିବାର ପ୍ରତିଶ୍ରୁତି ଦେଲେ। ଏହିପରି ମୋର ମାସକୁ ୪୦ଟଙ୍କା ହେଲା।



***ଅକିଞ୍ଚନର ଜୀବନ-ସ୍ମୃତି***, ପୌରୁଷ ପ୍ରକାଶନ, କଟକ, ୧୯୮୪

# ଉଚ୍ଚ ଶିକ୍ଷା

## ଅଧିରାଜ ମୋହନ ସେନାପତି

୧୯୧୦ ମସିହାରେ ମାଟ୍ରିକ୍ୟୁଲେଶନ ପାସ୍ କରି ସେହି ବର୍ଷ କଟକ ରେଭେନ୍ସା କଲେଜର ଆଇ.ଏ. ଶ୍ରେଣୀରେ ପ୍ରବିଷ୍ଟ ହେଲି। ମୋ ଜୀବନରେ ଏହାହିଁ ପ୍ରଥମ ବିଦେଶ ଯାତ୍ରା। ସ୍ୱର୍ଗତ ଲକ୍ଷ୍ମୀନାରାୟଣ ସାହୁ ସେତେବେଳେ କଟକ ମିଶନ୍ ହାଇସ୍କୁଲରେ ଶିକ୍ଷକ କାର୍ଯ୍ୟ କରୁଥାନ୍ତି। ଗ୍ରୀଷ୍ମ ଛୁଟିରେ ସେ ବାରବାଟୀରେ ଥିବା ତାଙ୍କ ନିଜ ଘରକୁ ଯାଇଥାନ୍ତି। ସ୍କୁଲ ଖୋଲିବାର ଦିନକ ଆଗରୁ ସେ ଆସିଲେ। ତାଙ୍କ ସଙ୍ଗେରେ ମୁଁ କଟକ ଆସିଲି।

ଆଜିକାଲି ଯେଉଁଠି ଜଜ୍‌କୋର୍ଟ ହୋଇଛି, ସେହିଠାରେ ରେଭେନ୍ସା କଲେଜ ଥିଲା। ରେଭେନ୍ସା କଲେଜିଏଟ୍‌ରେ ଯେଉଁ ହଷ୍ଟେଲ ତାହାହିଁ କଲେଜ ହଷ୍ଟେଲ ଥିଲା। ସେହି ହଷ୍ଟେଲରେ ମୁଁ ରହିଲି। ନୂତନ ବନ୍ଧୁମାନଙ୍କ ସହିତ ସୁପରିଚିତ ହେବାପାଇଁ ବେଶି ଦିନ ଲାଗିଲା ନାହିଁ। ସ୍ୱର୍ଗତ ଚିନ୍ତାମଣି ଆଚାର୍ଯ୍ୟ, ଦୟାନିଧି ମିଶ୍ର, ଲିଙ୍ଗରାଜ ମିଶ୍ର, ଯଦୁମଣି ମଙ୍ଗରାଜ, ଡାକ୍ତର ପ୍ରଫୁଲ୍ଲଚନ୍ଦ୍ର ରାୟ ଏବଂ ସର୍ବଶ୍ରୀ ବାଞ୍ଛାନିଧି ମହାପାତ୍ର, ସତୀଶଚନ୍ଦ୍ର ରାୟ, ଦୁଃଖୀଶ୍ୟାମ ମିତ୍ର, ଲେମୁଏଲ ମହାପାତ୍ର-ଏମାନେ କଲେଜରେ ମୋର ସହପାଠୀ ଥିଲେ।

**ଅଧ୍ୟାପକମାନଙ୍କ ବ୍ୟକ୍ତିତ୍ୱ**- କଲେଜର ଅଧିକାଂଶ ଅଧ୍ୟାପକ ବଙ୍ଗାଳୀ। ଶ୍ରୀ କାଶୀନାଥ ଦାଶ ଏକମାତ୍ର ଓଡ଼ିଆ ଅଧ୍ୟାପକ ଥିଲେ। ସେ ସଂସ୍କୃତ ଓ ଓଡ଼ିଆ ସାହିତ୍ୟ ପଢ଼ାଉଥିଲେ। ଦୁଇ ତିନି ବର୍ଷ ପରେ ଓଡ଼ିଆ ଅଧ୍ୟାପକଙ୍କ ସଂଖ୍ୟାବୃଦ୍ଧି ହୋଇଥିଲା। ଅଧ୍ୟାପକମାନେ କର୍ତ୍ତବ୍ୟନିଷ୍ଠ, ଚରିତ୍ରବାନ ଓ ବିଦ୍ୱାନ ଥିଲେ। ସେମାନେ ଛାତ୍ରମାନଙ୍କ ଉପରେ ଯଥେଷ୍ଟ ପ୍ରଭାବ ପକାଇ ପାରୁଥିଲେ। ପ୍ରତ୍ୟେକ କାର୍ଯ୍ୟରେ ସେମାନଙ୍କ ବ୍ୟକ୍ତିତ୍ୱ ଫୁଟି ଉଠୁଥିଲା।

ସବୁଠାରୁ ବୟୋବୃଦ୍ଧ ଅଧ୍ୟାପକ ଥିଲେ ସ୍ୱର୍ଗତ ଯୋଗେଶଚନ୍ଦ୍ର ରାୟ। ସେ ଉଦ୍ଭିଦ ବିଜ୍ଞାନର ଅଧ୍ୟାପକ ଥିଲେ। ଆଜିକାଲି ଯେଉଁ ଗୃହ ସ୍ୱରାଜାଶ୍ରମ ହୋଇଛି ତାହାହିଁ ଯୋଗେଶ ବାବୁଙ୍କ ବାସଗୃହ ଥିଲା। ତାଙ୍କ ପରିଧେୟ ଥିଲା ଢିଲା ପାଇଜାମା ଓ ହଳଦିଆ ବର୍ଣ୍ଣର ଗଳାବନ୍ଧ କୋଟ୍। ଗୋଟିଏ ହାତରେ ହଳଦିଆ କନାର ଛତା, ଅନ୍ୟ ହାତରେ ଏକ ବୋତଲ ପାଣି

ଧରିଥାନ୍ତି। ଏହି ବେଶରେ ଯୋଗେଶ ବାବୁ ପ୍ରତିଦିନ ୧୦ ଘଣ୍ଟା ସମୟରେ କଲେଜକୁ ଆସୁଥିଲେ ଓ ପାଞ୍ଚ ଘଣ୍ଟା ସମୟରେ ଘରକୁ ଫେରୁଥିଲେ। ନିର୍ଦ୍ଧାରିତ ସମୟରେ କେବେହେଁ ବ୍ୟତିକ୍ରମ ଘଟୁନଥିଲା।

ଯୋଗେଶ ବାବୁ ସ୍ୱଳ୍ପ ହାରୀ ଥିଲେ। ତାଙ୍କ ଖାଦ୍ୟସାମଗ୍ରୀ ନିକିତିରେ ଓଜନ ହୋଇ ରନ୍ଧା ହେଉଥିଲା। ତାଙ୍କ ଖାଦ୍ୟ ପ୍ରସ୍ତୁତ କରିବା ପାଇଁ ଜଣେ ସ୍ୱତନ୍ତ୍ର ପାଚକ ନିଯୁକ୍ତ ହେଉଥିଲା। ସେ ଅନ୍ୟ କାହାରି ଘରୁ ଖାଉ ନଥିଲେ, ଜଳପାନ ମଧ୍ୟ କରୁନଥିଲେ। ସେ ଘରୁ ଯେଉଁ ସିଝାପାଣି ବୋତଲରେ ପୂରାଇ ନେଇ ଯାଉଥିଲେ କଲେଜରେ ସେହି ପାଣି ପିଉଥିଲେ। ଗ୍ଲାସରେ ଢାଳି ପାଣି ପିଇଲେ ତାହା ଦୂଷିତ ହୋଇଯିବାର ଆଶଙ୍କା କରି ସେ ବୋତଲ ମୁହଁ ନିଜ ମୁହଁକୁ ଦେଖାଇ ସେଥିରୁ ପାଣି ଢାଳି ପିଉଥିଲେ। ତାଙ୍କର ଏପରି ଖାଦ୍ୟପେୟର ବ୍ୟବସ୍ଥା ଦେଖି ଆମ୍ଭେମାନେ ମନେ ମନେ ହସୁଥିଲୁଁ।

ଯୋଗେଶ ବାବୁ ଯେ କେବଳ ବହୁଦର୍ଶୀ ବୈଜ୍ଞାନିକ ଥିଲେ ତାହା ନୁହେଁ। ଜ୍ୟୋତିଷଶାସ୍ତ୍ରରେ ତାଙ୍କର ଯଥେଷ୍ଟ ପାରଦର୍ଶିତା ଥିଲା। ସେ ସୁସାହିତ୍ୟିକ ମଧ୍ୟ ଥିଲେ। ଓଡ଼ିଶାର ସୁପ୍ରସିଦ୍ଧ ଜ୍ୟୋତିର୍ବିତ୍ ଚନ୍ଦ୍ରଶେଖର ସାମାନ୍ତଙ୍କ ଗ୍ରହନକ୍ଷତ୍ରାଦିର ଅଭିନବ ପର୍ଯ୍ୟବେକ୍ଷଣ ପ୍ରଣାଳୀ ବିଷୟରେ ସୁବିଦିତ ହେବା ନିମନ୍ତେ ସେ ତାହାଙ୍କ ଖଣ୍ଡପଡ଼ାରୁ କଟକସ୍ଥ ତାଙ୍କ ବାସଭବନକୁ ନିମନ୍ତ୍ରଣ କରି ଆଣିଥିଲେ। ଚନ୍ଦ୍ରଶେଖର ସାମାନ୍ୟ ବାଉଁଶ ନଳୀ ସାହାଯ୍ୟରେ ଆକାଶର ବହୁ ଦୂରବର୍ତ୍ତୀ ଗ୍ରହନକ୍ଷତ୍ରଙ୍କ ଗତିବିଧି କିପରି ନିର୍ଣ୍ଣୟ କରୁଥିଲେ ତାହା ଦେଖି ଯୋଗେଶବାବୁ ତାଙ୍କ ଅଦ୍ୱିତୀୟ ପ୍ରତିଭାର ପରିଚୟ ପାଇଥିଲେ। ଚନ୍ଦ୍ରଶେଖର ପଠାଣି ସାମନ୍ତ ନାମରେ ପରିଚିତ ଥିଲେ। ତାଙ୍କ ଅଦ୍ଭୁତ କୃତିତ୍ୱ ଲୋକ ଲୋଚନର ଅନ୍ତରାଳରେ ରହିଥିଲା। ଯୋଗେଶ ବାବୁ ତାଙ୍କ ସମ୍ବନ୍ଧରେ ଇଂରାଜୀରେ ଓ ବଙ୍ଗଳାରେ ଦୁଇଟି ସନ୍ଦର୍ଭ ପ୍ରକାଶ କରି ତାଙ୍କୁ ଦେଶବିଦେଶରେ ସୁପରିଚିତ କରାଇଥିଲେ।

ବଙ୍ଗଳା ସାହିତ୍ୟକୁ ଯୋଗେଶ ବାବୁଙ୍କ ଦାନ କିଛି କମ୍ ନୁହେଁ। ତାଙ୍କ ରଚିତ ସଂସ୍କାରମୂଳକ ପ୍ରବନ୍ଧମାନ "ପ୍ରବାସୀ" ପ୍ରଭୃତି ବଙ୍ଗଳା ମାସିକ ପତ୍ରିକାରେ ପ୍ରକାଶିତ ହେଉଥିଲା। ତା'ଛଡ଼ା ସେ କେତେକ ଉପାଦେୟ ପୁସ୍ତକର ପ୍ରଣେତା ଥିଲେ। ଯୋଗେଶବାବୁଙ୍କ ବହୁମୁଖୀ ପ୍ରତିଭାର ପୁରସ୍କାର ସ୍ୱରୂପ ଇଂରେଜ ସରକାର ତାଙ୍କୁ "ରାୟ ବାହାଦୁର" ଉପାଧି ଅର୍ପଣ କରିଥିଲେ। ପୁରୀ ମୁକ୍ତିମଣ୍ଡପ ସଭା ତାଙ୍କୁ "ବିଦ୍ୟାନିଧି" ପଦବୀରେ ଭୂଷିତ କରିଥିଲେ। ତାଙ୍କ ମୃତ୍ୟୁର ପ୍ରାକ୍‌କାଳରେ ଉତ୍କଳ ବିଶ୍ୱବିଦ୍ୟାଳୟ ତାଙ୍କୁ ସମ୍ମାନସୂଚକ "ଡକ୍‌ଟର" ଉପାଧି ପ୍ରଦାନ କରିଥିଲେ।

ବିଜ୍ଞାନକୁ ଜନପ୍ରିୟ କରିବା ଉଦ୍ଦେଶ୍ୟରେ ଯୋଗେଶ ବାବୁ କଟକ ଟାଉନ୍ ହଲରେ ସର୍ବସାଧାରଣଙ୍କ ବୋଧଗମ୍ୟ ହେଲା ଭଳି ଭାଷାରେ ଭାଷଣମାନ ଦେଉଥିଲେ। ଓଡ଼ିଶାର ପ୍ରିୟ

ଖାଦ୍ୟ ପଖାଳ ବିଷୟରେ ବିଜ୍ଞାନାଗାରରେ ଗବେଷଣା କରି ପଖାଳ ବିଷୟରେ ଦୁଇଥର ବକ୍ତୃତା ଦେଇଥିଲେ । ଏହା ଅତ୍ୟନ୍ତ ଶିକ୍ଷାପ୍ରଦ ଓ ଉପଭୋଗ୍ୟ ହୋଇଥିଲା । ଭାତ ଠାରୁ ପଖାଳର ଖାଦ୍ୟମୂଲ୍ୟ ଯେ କିଛି ଊଣା ନୁହେଁ ଏହା ସେ ତାଙ୍କ ବକ୍ତୃତାରେ ପ୍ରତିପାଦନ କରିଥିଲେ । ବରଂ ଖଟା ପଖାଳରେ ମଦ୍ୟାଣୁ (yeast) ଥିବାରୁ ତାହା ପରିପାକ କ୍ରିୟାର ସହାୟକ ହୁଏ । ତା'ଛଡ଼ା ପଖାଳ ଅଧିକ ରୁଚିକର ଓ ତୃପ୍ତିକର ହୁଏ । ପଖାଳ ଖାଇବା ପାଇଁ ତରକାରିର ବିଶେଷ ପ୍ରୟୋଜନ ହୁଏ ନାହିଁ । ଏଥିରୁ ଅଳ୍ପ ଖରଚ ହୁଏ । ସେଥିପାଇଁ ଦରିଦ୍ର ଲୋକେ ପଖାଳର ଏକାନ୍ତ ପକ୍ଷପାତୀ ।

କଲେଜର ଇଂରାଜୀ ଅଧ୍ୟାପକଙ୍କ ମଧ୍ୟରେ ସ୍ୱର୍ଗତ ଗୋପାଳ ଚନ୍ଦ୍ର ଗାଙ୍ଗୁଲି ବୟୋଜ୍ୟେଷ୍ଠ ଥିଲେ । ସେ ଇଂରାଜୀ କବିତା ପଢ଼ାଉଥିଲେ । ପଢ଼ାଇଲାବେଳେ ସେ ଭାବାବେଶ ଯୋଗୁଁ ତନ୍ମୟ ହୋଇ ହସ୍ତପ୍ରସାରଣପୂର୍ବକ ନାଟକୀୟ ରୀତିରେ ଅଭିନୟ କରୁଥିଲେ । ପିଲାମାନେ ମନ୍ତ୍ରମୁଗ୍ଧ ହେଲାଭଳି ତାଙ୍କ ବକ୍ତୃତା ନିବିଷ୍ଟ ଚିତ୍ତରେ ଶୁଣୁଥିଲେ । ପାଠ୍ୟ ବିଷୟକୁ ସରସ ଓ ହୃଦୟଗ୍ରାହୀ କରିବା ପାଇଁ ସେ ମଝିରେ ମଝିରେ ହାସ୍ୟରସ ପରିବେଷଣ କରୁଥିଲେ ।

ଗୋପାଳ ବାବୁଙ୍କ ବେଶଭୂଷା ଅତି ସାଧାରଣ ଥିଲା । ଗଳାବନ୍ଧ ଢିଲା କୋଟ ଓ ଢିଲା ପାଇଜାମା ପିନ୍ଧି ସେ କଲେଜକୁ ଆସୁଥିଲେ । କଲେଜରୁ ଫେରିବାବେଳେ ସେ ପ୍ରତିଦିନ ବଜାରରୁ ପନିପରିବା କିଣି କୋଟ୍‌ର ଦୁଇ ପକେଟରେ ପୂରାଇ ଓ ହାତରେ ଧରି ଘରକୁ ନେଇ ଯାଉଥିଲେ । ନିଜ କାମ ନିଜ ହାତରେ କରିବା ଦୋଷାବହ ବା ଅସମ୍ମାନଜନକ ନୁହେଁ । କିନ୍ତୁ ଆଜିକାଲି ନବ୍ୟ ଶିକ୍ଷିତ ବାବୁମାନେ ବଜାର୍ ସଉଦା କରିବା ଲଜ୍ଜା ଓ ନିନ୍ଦାର କଥା ବୋଲି ମନେ କରନ୍ତି । ଆତ୍ମନିର୍ଭରଶୀଳ ହେବା ଦୂଷଣୀୟ ନୁହେଁ, ବରଂ ସ୍ପୃହଣୀୟ ।

ସ୍ୱର୍ଗତ ଅମ୍ବିକାଚରଣ ମିତ୍ର ତର୍କଶାସ୍ତ୍ର (Logic) ଓ ଦର୍ଶନ ଶାସ୍ତ୍ରର ଅଧ୍ୟାପକ ଥିଲେ । ତାଙ୍କର ନିରାଡ଼ମ୍ବର ବେଶଭୂଷା ଓ ଋଷିପ୍ରତିମ ମୁଖାକୃତି ଦେଖିଲେ ମନରେ ସ୍ୱତଃ ଭକ୍ତିଭାବ ଜାଗ୍ରତ ହୁଏ । ବିଦ୍ୱାନ୍ ଲୋକମାନେ ଯେ ବିନୟୀ ହୁଅନ୍ତି, ଏହାର ଚାକ୍ଷୁଷ ଉଦାହରଣ ଥିଲେ ଅମ୍ବିକା ବାବୁ । ତାଙ୍କ ଶିକ୍ଷାଦାନ ପ୍ରଣାଳୀ ଅତି ଉଚ୍ଚ କୋଟୀର ଥିଲା । ତାଙ୍କ ବ୍ୟକ୍ତିତ୍ୱର ପ୍ରଭାବ ଏପରି ଥିଲା ଯେ, ଶିକ୍ଷାଦାନ ସମୟରେ ସେ ସମସ୍ତ ଛାତ୍ରଙ୍କ ହୃଦୟ ଓ ମନ କିଣିନେଇ ପାରୁଥିଲେ । ତାଙ୍କ ଶ୍ରେଣୀରେ କୌଣସି ଛାତ୍ର କେବେହେଁ ଅମନୋଯୋଗୀ ହେଉନଥିଲେ । ତର୍କଶାସ୍ତ୍ର ପରି ଜଟିଳ ବିଷୟକୁ ସେ ସହଜବୋଧ୍ୟ ଭାଷାରେ ଏପରି ବୁଝାଇ ଦେଉଥିଲେ ଯେ, ସବୁ ଛାତ୍ର ତାହା ଅନାୟାସେ ବୁଝି ପାରୁଥିଲେ । ସେ ଶ୍ରେଣୀରେ ଯେଉଁ ନୋଟ ଡାକୁଥିଲେ, ତାହାହିଁ ସେ ପୁସ୍ତକାକାରରେ ପ୍ରକାଶିତ କରିଥିଲେ ।

ଦର୍ଶନଶାସ୍ତ୍ରରେ ଅମ୍ବିକା ବାବୁଙ୍କର ଅଗାଧ ପାଣ୍ଡିତ୍ୟ ଥିଲା । ଦର୍ଶନଶାସ୍ତ୍ରରେ ତିନିଗୋଟି ବିଭାଗ ଅଛି- ମନୋବିଜ୍ଞାନ (Psychology), ନୀତିଶାସ୍ତ୍ର (Ethics) ଓ ଅଧ୍ୟାତ୍ମିକବାଦ

(Metaphysics) ଅମ୍ବିକାବାବୁ ଆମ୍ଭମାନଙ୍କୁ ନୀତିଶାସ୍ତ୍ର ପଢ଼ାଉଥିଲେ। ମନୋବିଜ୍ଞାନ ପଢ଼ାଉଥିଲେ-ଶ୍ରୀ ବିପିନବିହାରୀ ରାୟ୍। ମୋର ଖୁଲ୍ଲତାତ ସ୍ୱର୍ଗତ ମୋହିନୀମୋହନ ସେନାପତି ଅଧ୍ୟାତ୍ମବାଦ ପଢ଼ାଉଥିଲେ। ମୋହିନୀ ବାବୁ ନାସ୍ତିକ ଥିଲେ। ଈଶ୍ୱର ଅଛନ୍ତି ବୋଲି ସେ ବିଶ୍ୱାସ କରୁ ନଥିଲେ। କିନ୍ତୁ ଅମ୍ବିକା ବାବୁ ପୂରା ଈଶ୍ୱର ବିଶ୍ୱାସୀ ଥିଲେ। ଦୁଇ ଜଣ ଅଧ୍ୟାପକ ଏହିପରି ବିରୁଦ୍ଧ ମତ ପୋଷଣ କରୁଥିଲେ। ଥରେ ଦୁଇ ଅଧ୍ୟାପକଙ୍କ ମଧ୍ୟରେ ତୀବ୍ର ବାଦାନୁବାଦ ଚାଲିଥିଲା। ଉଭୟେ ନିଜ ନିଜ ମତର ପୋଷକତା ନିମନ୍ତେ ବହୁ ଯୁକ୍ତିତର୍କ ଉପସ୍ଥାପିତ କରିଥିଲେ। କିନ୍ତୁ କୌଣସି ସିଦ୍ଧାନ୍ତରେ ଉପନୀତ ହୋଇ ନଥିଲେ। ଆପ୍ତବଚନ ଅଛି- "ଧର୍ମସ୍ୟ ତତ୍ତ୍ୱଂ ନିହିତଂ ଗୁହାୟାଂ"। ଧର୍ମର ତତ୍ତ୍ୱ ନିଗୂଢ଼ ଅଟେ। ଗୋଟାଏ କଥା ମୋର ବେଶ୍ ମନେ ଅଛି। ତାହା ହେଉଛି-ମୋହିନୀବାବୁ ଯେତେବେଳେ କୌଣସି ଦୁଃଖ ବା ଯନ୍ତ୍ରଣା ଅନୁଭବ କରନ୍ତି, ତାଙ୍କ ମୁହଁରୁ ହେ ଭଗବାନ ବୋଲି ଉଚ୍ଚାରଣ ସ୍ୱତଃସ୍ଫୂର୍ତ୍ତ ଭାବରେ ବାହାରି ପଡ଼େ। ଏହାହିଁ ଆସ୍ତିକତାର ଯଥେଷ୍ଟ ପ୍ରମାଣ।

**ଆଲୋଚନା ସଭା**- କଲେଜର ଆଲୋଚନା ସଭା (Debating society)ରେ ସବୁ ଛାତ୍ର ଆଗ୍ରହର ସହିତ ଯୋଗ ଦେଉଥିଲେ। ସେତେବେଳେ ଶ' ସାହେବ କଲେଜର ଅଧ୍ୟକ୍ଷ ଥିଲେ। ତାଙ୍କ ସଭାପତିତ୍ୱରେ ପ୍ରତି ଶନିବାର ଦିନ ଆଲୋଚନାସଭା ବସୁଥିଲା। ଅଧିକାଂଶ ଅଧ୍ୟାପକ ଏହି ସଭାରେ ଯୋଗ ଦେଉଥିଲେ। ଛାତ୍ର ବକ୍ତାମାନଙ୍କ କହିବାର ସମୟ ସୀମିତ କରି ଦିଆ ହେଉଥିଲା। ଆଲୋଚ୍ୟ ବିଷୟର ସପକ୍ଷରେ ଓ ବିପକ୍ଷରେ କହିବା ପାଇଁ ଛାତ୍ରମାନେ ଦୁଇ ଦଳରେ ବିଭକ୍ତ ହେଉଥିଲେ। ସଭା ଶେଷରେ ଭୋଟ ନେଇ ଜୟ ପରାଜୟ ଘୋଷଣା କରା ହେଉଥିଲା। ସ୍ୱର୍ଗତ ଯଦୁମଣି ମଙ୍ଗରାଜ ସୁବକ୍ତା ଥିଲେ। ତାଙ୍କ ବଜ୍ରଗମ୍ଭୀର ନିର୍ଘୋଷରେ ସଭାଗୃହ କମ୍ପିତ ହେଉଥିଲା। ତାଙ୍କ ବକ୍ତବ୍ୟ ଶେଷରେ ଘନ ଘନ କରତାଳି ଧ୍ୱନିରେ ସଭାସ୍ଥଳ ମୁଖରିତ ହେଉଥିଲା। ଭବିଷ୍ୟତରେ ସେ ଯେ ଜଣେ ସୁଦକ୍ଷ ବକ୍ତା ହେବେ ଏହାର ସୂଚନା ସେହି ସମୟରୁ ମିଳିଥିଲା।

**ଫୁଟବଲ ଖେଳ**-ଫୁଟବଲ୍ ଖେଳରେ ରେଭେନ୍‌ସା କଲେଜ ବେଶ୍ ସୁନାମ ଅର୍ଜନ କରିଥିଲା। ପ୍ରତିଯୋଗିତାମୂଳକ ଖେଳରେ ରେଭେନ୍‌ସା କଲେଜ ଓ ମେଡ଼ିକାଲ ସ୍କୁଲର ଖେଳାଳିମାନେ ବିଶେଷ ଦକ୍ଷତା ଓ ଚତୁରତା ଦେଖାଉଥିଲେ। ଖେଳଗୁଡ଼ିକ ଜିଲ୍ଲା ମଇଦାନରେ ହେଉଥିଲା। ସେତେବେଳେ ସେଠାରେ ଆଦୌ କୋଠାବାଡ଼ି ନଥିଲା। ଖୋଲା ପଡ଼ିଆରେ ଶ୍ୟାମଳ ଦୂର୍ବାଦଳ ମନୋରମ ଦିଶୁଥିଲା। ଏହି ପଡ଼ିଆ ସେ ସମୟରେ ଗୋଚର ଭୂମିରୂପେ ବ୍ୟବହୃତ ହେଉଥିଲା। ରେଭେନ୍‌ସା କଲେଜର ସୁଦକ୍ଷ ଖେଳାଳିମାନଙ୍କ ମଧ୍ୟରେ ନିମ୍ନଲିଖିତ କେତେଜଣଙ୍କ ନାମ ଉଲ୍ଲେଖଯୋଗ୍ୟ-ସ୍ୱର୍ଗତ କିଶୋରଚନ୍ଦ୍ର ନାଏକ (ଡାକନାମ ଯୋଗୀ), ଡାକ୍ତର ପ୍ରଫୁଲ୍ଲଚନ୍ଦ୍ର ରାୟ (ଡାକନାମ ନାଡି), ଅମ୍ଭ ଓ ଖୋଦେନ୍। ଉଇଙ୍ଗ୍ ଖେଳାଳିରୂପେ ଅମ୍ଭ

ବହୁ ପ୍ରଶଂସିତ ହୋଇଥିଲେ । ସେ ବଲ୍ ପାଇଲେ ଗୋଲଦେବା ନିଶ୍ଚିତ । ଖୋଦେନ୍ ଅତ୍ୟନ୍ତ ସ୍ଥୂଳକାୟ ଥିଲେ । ସେ ଗୋଲ ରକ୍ଷକ ହେଉଥିଲେ । ବଲ ଗୋଲ ପୋଷ୍ଟ ପାଖକୁ ଆସିଲେ ଖୋଦେନ୍ ଖୁବ୍ ସତର୍କ ରହୁଥିଲେ । ତାଙ୍କୁ ଚାର୍ଜ କରି କେହି କୁଆଡ଼େ ତଳେ ପକାଇ ଦେବ ଏହି ଭୟ । ସେ ବିଶେଷ ଶଙ୍କିତ ହେଉଥିଲେ । ଏ କେତେଜଣ ଖେଳାଳିଙ୍କ ଛଡ଼ା ସ୍ୱର୍ଗତ ସତ୍ୟବ୍ରତ ପଟ୍ଟନାୟକ ଉତ୍କୃଷ୍ଟ ବ୍ୟାକ୍ ଖେଳାଳିରୂପେ ସୁଖ୍ୟାତି ଲାଭ କରିଥିଲେ । ସ୍ୱର୍ଗତ ଆର୍ତ୍ତବଲ୍ଲଭ ମହାନ୍ତି ମଧ୍ୟ ବ୍ୟାକ୍ ଖେଳାଳିରୂପେ ସୁନାମ ଅର୍ଜନ କରିଥିଲେ ।

**ଅର୍ଥାଭାବ**- ୧୯୧୩ ମସିହାରେ ଆଇ.ଏ. ପାସ୍ କରି ମୁଁ ତୃତୀୟ ବାର୍ଷିକ ବି.ଏ. ଶ୍ରେଣୀରେ ନାମ ଲେଖାଇଲି । ଏହି ସମୟରେ ଅର୍ଥାଭାବ ମୋ ଅଧ୍ୟୟନରେ ବିଶେଷ ଅନ୍ତରାୟ ହୋଇଥିଲା । ମୋର କକା ସ୍ୱର୍ଗତ ମୋହିନୀମୋହନ ସେନାପତି ସେତେବେଳେ ରେଭେନ୍ସା କଲେଜରେ ଅଧ୍ୟାପକ ପଦରେ ନିଯୁକ୍ତ ହୋଇ ଥାଆନ୍ତି । ସେ ମୋତେ ମାସିକ ବାରଟଙ୍କା ସାହାଯ୍ୟ ଦେବାପାଇଁ ସ୍ୱୀକୃତ ହୋଇଥିଲେ । ସେତେବେଳେ କଲେଜ ଦରମା ମାସିକ ୪ ଟଙ୍କା ଓ ହଷ୍ଟେଲ ସିଟ୍‌ରେଣ୍ଟ ଟ.୨ ଥିଲା । ମେସ ଖରଚ ମାସକୁ ଟ୬ ପଡୁଥିଲା । ମେସରେ ଉପରଓଳି ଜଳଖିଆ ଖାଇଲେ ଆଉ ଦୁଇ ଟଙ୍କା ଦେବାକୁ ହେଉଥିଲା । ଅଭାବଗ୍ରସ୍ତ ଛାତ୍ରମାନେ ମେସରୁ ଜଳଖିଆ ଖାଉନଥିଲେ । ପଇସାକର ଚୂଡ଼ାଭଜା ଓ ଉଖୁଡ଼ା କିଣିଲେ ସେମାନଙ୍କର ବେଶ୍ ଜଳଖିଆ ହେଉଥିଲା । ଧୋବା, ଭଣ୍ଡାରି ଓ ଅନ୍ୟାନ ଖରଚ ପାଇଁ ମାସକୁ ଏକ ଟଙ୍କା ଦରକାର ହେଉଥିଲା । ଏହିପରି ମାସରେ ମୋଟ ପନ୍ଦର ଟଙ୍କା ନହେଲେ ନ ଚଳେ । କକାଙ୍କ ସାହାଯ୍ୟ ଛଡ଼ା ବାକି ଟଙ୍କା ପାଇବା ପାଇଁ ମୋତେ ପ୍ରାଇଭେଟ୍ ଟ୍ୟୁସନ କରିବାକୁ ହେଉଥିଲା । ବହିପତ୍ର କିଣିବା ପାଇଁ ମୋର ପିଉସା ସ୍ୱର୍ଗତ ଗଗନବିହାରୀ ଚୌଧୁରୀ ମୋତେ ସାମୟିକ ଅର୍ଥ ସାହାଯ୍ୟ ଦେଉଥିଲେ ।

**ସାମୟିକ ଚାକିରି**- ୧୯୧୩ ମସିହା ଗ୍ରୀଷ୍ମାବକାଶରେ ମୁଁ ଗୋଟିଏ ଚାକିରିର ଆହ୍ୱାନ ପାଇଲି । କୁଆଁପାଳ ମୌକାର ମଉଦା ମାଇନର ସ୍କୁଲରେ ଜଣେ ଆଇ.ଏ. ପାସ୍ ହେଡ଼ମାଷ୍ଟର ନିଯୁକ୍ତ ନ ହେଲେ ସ୍କୁଲକୁ ବିଭାଗୀୟ ମଞ୍ଜୁରି ମିଳିବ ନାହିଁ ବୋଲି ଶିକ୍ଷା ବିଭାଗର କର୍ତ୍ତୃପକ୍ଷଙ୍କଠାରୁ ଆଦେଶ ଆସିଥାଏ । ସ୍କୁଲର ସେକ୍ରେଟେରୀ ସ୍ୱର୍ଗତ ଆର୍ତ୍ତତ୍ରାଣ ମିଶ୍ର ତାଙ୍କ ପୁତୁରା ସତ୍ୟନାରାୟଣଙ୍କୁ ମୋଠାକୁ ପଠାଇଥିଲେ । ସତ୍ୟନାରାୟଣ ଆଇ.ଏ. ଶ୍ରେଣୀରେ ମୋର ସହପାଠୀ ଥିଲେ । ସେ ମଉଦା ମାଇନର ସ୍କୁଲର ହେଡ଼ମାଷ୍ଟର ପଦ ତିନି ମାସ ପାଇଁ ଗ୍ରହଣ କରିବାକୁ ମୋତେ ପ୍ରବର୍ତ୍ତାଇଲେ । ମୋର ଆର୍ଥିକ ଅନଟନ କିଞ୍ଚିତ୍ ଦୂର ହେବ-ଏହି ଆଶାରେ ସାମୟିକ ଭାବରେ ଚାକିରି ଗ୍ରହଣ କଲି । ମାସିକ ବେତନ ଟ.୪୫ । ଛାତ୍ର ଥାଉଁ ଥାଉଁ ଶିକ୍ଷକ ହେବାର ସୌଭାଗ୍ୟ ଲାଭ କରି ମୁଁ ମନେ ମନେ ପ୍ରୀତ ହେଲି । ମଉଦା ମାଇନର ସ୍କୁଲରେ ସେତେବେଳେ ହେଡ୍‌ମାଷ୍ଟର ଥିଲେ ସ୍ୱର୍ଗତ କାମିନୀମୋହନ ଚକ୍ରବର୍ତ୍ତୀ । ସେ ଏଣ୍ଟ୍ରାନ୍ସ ପାସ୍

କରିଥିଲେ । ବହୁକାଳ ଶିକ୍ଷକତା କରି ସେ ଯଥେଷ୍ଟ ଅଭିଜ୍ଞତା ଲାଭ କରିଥିଲେ । ମୁଁ ହେଡ୍‌ମାଷ୍ଟର ନିଯୁକ୍ତ ହେବାରୁ ସେ ସେକେଣ୍ଡ୍ ମାଷ୍ଟର ହୋଇ ରହିଲେ ।

ସ୍କୁଲର ସେକ୍ରେଟେରୀ ଆର୍ତ୍ତତ୍ରାଣ ମିଶ୍ର ଜଣେ ପ୍ରସିଦ୍ଧ ଜମିଦାର ଥିଲେ । ସଂସ୍କୃତ ଭାଷାରେ ତାଙ୍କର ବିଶେଷ ପାଣ୍ଡିତ୍ୟ ଥିଲା । ତାଙ୍କର ଗୋଟିଏ ସୁନ୍ଦର ଉଦ୍ୟାନ ଥିଲା । ସେ ପ୍ରତିଦିନ ଅପରାହ୍ଣରେ ସେହି ଉଦ୍ୟାନକୁ ବୁଲିବାକୁ ଯାଉଥିଲେ । ସ୍କୁଲ ଛୁଟି ହେବା ପରେ ମୁଁ ତାଙ୍କ ସହିତ ବଗିଚାକୁ ଯାଉଥିଲି । ଆମ ଦୁହିଁଙ୍କ ମଧ୍ୟରେ ବହୁ ବିଷୟରେ ଆଲୋଚନା ହେଉଥିଲା । ସେ ଆୟୁର୍ବେଦରୁ ଅନେକ ଶ୍ଳୋକ ଉଦ୍ଧାର କରି ଅର୍ଥ ବୁଝାଇ ଦେଉଥିଲେ । ତାଙ୍କ ପୁତ୍ର ଶ୍ରୀ ଉପେନ୍ଦ୍ରଚନ୍ଦ୍ର ମିଶ୍ର କଟକର ସୁପରିଚିତ ଆଇନଜୀବୀ ।

ମଉଦାକୁ ତିନି ମାସ ପାଇଁ ଯାଇଥିଲି । କିନ୍ତୁ ଏହି ସମୟ ମଧ୍ୟରେ ସରକାରୀ ମଞ୍ଜୁର ନ ମିଳିବାରୁ ମୋତେ ଆଉ ତିନି ମାସ ସେଠାରେ ରହିବାକୁ ହେଲା । ଫଳତଃ ରେଭେନ୍‌ସା କଲେଜରେ ମୋତେ ଗୋଟିଏ ବର୍ଷର ପାଠ୍ୟ ପରିତ୍ୟାଗ କରିବାକୁ ହେଲା । ଆର୍ଥିକ ଲାଭ ହେଲା ସତ, କିନ୍ତୁ ପାଠପଢ଼ାରେ କ୍ଷତି ହେଲା ।

**ଅସୁସ୍ଥତା**- ୧୯୧୬ ମସିହାରେ ମୁଁ ବି.ଏ. ପାସ୍ କଲି । ତାହାର ବର୍ଷକ ପୂର୍ବରୁ ମୁଁ ଅଗ୍ନିମାନ୍ଦ୍ୟରୋଗ (Dyspepsia) ରେ ବାରମ୍ବାର ପୀଡ଼ିତ ହେଲି । ଦେହ ଦୁର୍ବଳ ହୋଇପଡ଼ିଲା । ଲେଖାପଢ଼ା କଲାବେଳେ ଆଖି ଲାଲ ହୋଇଯାଇ ସେଥିରୁ ଲୁହ ଗଡ଼ିଲା । ହଷ୍ଟେଲ ଡାକ୍ତର ଦେବେନ୍ଦ୍ରନାଥ ମୁଖାର୍ଜୀ ମୋ ପାଇଁ ସ୍ୱତନ୍ତ୍ର ପଥ୍ୟର ବ୍ୟବସ୍ଥା କଲେ । ପଢ଼ାପଢ଼ି ବନ୍ଦ କରିବା ପାଇଁ ସେ ମୋତେ ପରାମର୍ଶ ଦେଲେ । ବାର ବର୍ଷର ତପସ୍ୟା ଶୁଖୁଆ ପୋଡ଼ାରେ ଯିବ ଭାବି ମୁଁ ତାଙ୍କ କଥା ଅନୁସାରେ ପାଠପଢ଼ା ପୂରାପୂରି ଛାଡ଼ି ନଥିଲି । ଯେ କୌଣସି ପ୍ରକାରେ ଶେଷ ପରୀକ୍ଷାଟା ଦେବାପାଇଁ ସ୍ଥିର କଲି । ମୁଁ ଇଂରାଜୀରେ ଅନର୍ସ ନେଇଥିଲି । କିନ୍ତୁ ପରୀକ୍ଷା ଦେଲି ନାହିଁ । ଭଗବାନଙ୍କ କୃପାରୁ କେବଳ ପାସ୍ ପାଠ୍ୟରେ ପାସ୍ ହୋଇଗଲା । ଶରୀରର ଅସୁସ୍ଥତା ଓ ଅର୍ଥାଭାବ-ଏହି ଉଭୟ କାରଣରୁ ମୋର ଏମ.ଏ. ପଢ଼ିବା ବନ୍ଦ ହେଲା । ସେତେବେଳେ କଟକ ରେଭେନ୍‌ସା କଲେଜରେ ଏମ୍.ଏ. ପଢ଼ିବାର ବ୍ୟବସ୍ଥା ନଥିଲା । ଓଡ଼ିଶାର ଏମ୍.ଏ. ପାଠ୍ୟାର୍ଥୀମାନେ କଲିକତାକୁ ଯାଇ ସେଠାରେ ଏମ୍.ଏ ଓ ବି.ଏଲ୍. ଉଭୟ ପାଠ୍ୟ ଏକାଠି ପଢୁଥିଲେ । ଏହି ଉଦ୍ଦେଶ୍ୟରେ ଓଡ଼ିଶା ସରକାର ମାସିକ ଟ ୩୦ ବୃତ୍ତି ଦେଉଥିଲେ । ଏହି ସୁବିଧା ଯୋଗୁଁ ଅନେକ ଓଡ଼ିଆ ଛାତ୍ର ଏମ୍.ଏ. ଓ ବି.ଏଲ୍ ପାସ୍ କରିବାକୁ ସମର୍ଥ ହୋଇଥିଲେ ।

•

---

*ଦୃଷ୍ଟିପାତ*, ସ୍ୱ-ପ୍ରକାଶନୀ, ୧୯୬୫

# ରେଭେନ୍‌ସା କଲେଜ

## କାଳିନ୍ଦୀଚରଣ ପାଣିଗ୍ରାହୀ

ରେଭେନ୍‌ସା କଲେଜ ପୂର୍ବ ଛାତ୍ରାବାସ ବହୁ ବିଚିତ୍ର ସ୍ମୃତିରେ ଭରା । ସ୍ୱଦେଶ ବିଦେଶରେ ସମୁଦାୟ ସାହିତ୍ୟ ସଂସ୍କୃତି ଅବା ଝଲସି ଉଠେ ପ୍ରାଚୀଦିଗନ୍ତର ଅରୁଣ ଆଭା ଲଭି ଏହି ଛାତ୍ରାବାସରେ ।

ମହାତ୍ମାଗାନ୍ଧୀ, ଶ୍ରୀ ଅରବିନ୍ଦ, ପୁଣି ରବୀନ୍ଦ୍ର ନାଥଙ୍କ ପରି ଜୀବିତ ମଣିଷମାନଙ୍କ ଜୀବନୀ ବିଶ୍ଳେଷଣ ସହିତ ବିଶ୍ୱ ସାହିତ୍ୟର ମୃତ ଓ ମନୀଷୀ ଟଲ୍‌ଷ୍ଟୟ, ଇବସେନ୍, ରୋମାଁରୋଲାଁ, ବର୍ଣ୍ଣେଡ଼ଶ ପ୍ରମୁଖ ମନୀଷୀ ତଥା ଲେଖକମାନଙ୍କ ସଂପର୍କରେ କେତେ ଆଲୋଚନା, ତର୍କ ବିତର୍କ ।

ପୂର୍ବ ପଶ୍ଚିମ ଉଭୟ ପାର୍ଶ୍ୱରେ ଦୁଇ ବିରାଟ ଛାତ୍ରାବାସ ମଝିରେ ପ୍ରଶସ୍ତ ପ୍ରାଙ୍ଗଣ- ଗୋଟିଏ ଛାତ୍ରାବାସର ପିଲାମାନଙ୍କୁ ଅନ୍ୟ ଛାତ୍ରାବାସ ପିଣ୍ଡାରେ ଠିଆହୋଇ ଚିହ୍ନିବା ଇଚ୍ଛା ହେଲେ ବି ଉପାୟ ନାହିଁ । ମଧ୍ୟସ୍ଥଳରେ କନିକା ଲାଇବ୍ରେରୀର ଗୋଲ୍ କୋଠା । କୋଠାଟି ଥାଏ ଜାତୀୟ, ଆନ୍ତର୍ଜାତୀୟ ସବୁ ଶ୍ରେଷ୍ଠ ସାହିତ୍ୟର ଗନ୍ତାଘର, ବିଶ୍ରାମ ଘଣ୍ଟାରେ ସେଇଠି କଟେ ସମୟ ଆମର; ଲାଇବ୍ରେରୀରୁ ଅତି ପ୍ରାଚୀନ ପୁଣି ଅତି ଆଧୁନିକ ବହି ଆଣିବା, ପଢ଼ିସାରି ପରସ୍ପର ମଧ୍ୟରେ ଲେଖା ଓ ଚରିତ୍ର ଚିତ୍ରଣ ସଂପର୍କରେ ଆଲୋଚନା କରିବା ଥିଲା ସେତେବେଳେ ଏକ ଶ୍ରେଷ୍ଠ ବିଳାସ ।

ସହପାଠୀମାନଙ୍କ ଭିତରୁ ଅନ୍ନଦାଶଙ୍କର, ଶରତଚନ୍ଦ୍ର ଓ ବୈକୁଣ୍ଠନାଥ ରହୁଥାନ୍ତି ସହର ଭିତରେ, ଅଥଚ କଲେଜ ଛୁଟି ପରେ ସୁଦ୍ଧା ଏଠାକୁ ଯା ଆସ କରନ୍ତି ସେମାନେ ହଷ୍ଟେଲକୁ, ସେଇଠୁଁ ସମସ୍ତେ ସାଥୀ ହୋଇ ଯାଉଁ ଜୋବ୍ରା ଆନିକଟ୍ କିମ୍ବା ମହାନଦୀ ରେଳପୋଲ ପର୍ଯ୍ୟନ୍ତ- ଆଉ ସେଠୁ ଏକାବେଳେ କେନାଲ୍ ପାରହୋଇ କାଠଯୋଡ଼ି ପୋଲ ପର୍ଯ୍ୟନ୍ତ । ମଝିରେ ମଝିରେ ସାଥୀ ହୁଅନ୍ତି ଆମର ଶିକ୍ଷାବିଭାଗର ବର୍ତ୍ତମାନ ଅବସରପ୍ରାପ୍ତ ଜଏଣ୍ଟ-ଡାଇରେକ୍‌ଟର ଶ୍ରୀ ହରିହର ମିଶ୍ର; ଆଉ କେବେ ସ୍ୱର୍ଗତ ପ୍ରାଣକୃଷ୍ଣ ନନ୍ଦ କିମ୍ବା ଶିଳ୍ପୀ ସାହିତ୍ୟିକ ଗୋପାଳଚନ୍ଦ୍ର କାନୁନ୍‌ଗୋ ।

ପୂର୍ବ ଛାତ୍ରାବାସର ଅନ୍ୟତମ ବନ୍ଧୁ ଶ୍ରୀ ହରିଶ ଚନ୍ଦ୍ର ବଡ଼ାଳ ଓ ଶ୍ରୀ ଅନନ୍ତ ପ୍ରସାଦ ପଣ୍ଡାଙ୍କ ସହିତ ମଧ୍ୟ ପରିଚୟ ହୁଏ । ସୁପରିଣ୍ଟେଣ୍ଡେଣ୍ଟ ସ୍ୱର୍ଗତ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ପ୍ରାଚୀନ ସାହିତ୍ୟର ଗବେଷଣା ଆରମ୍ଭ କରିଥାନ୍ତି ।

ସୁପରିଣ୍ଟେଣ୍ଡେଣ୍ଟ କ୍ୱାର୍ଟର ପ୍ରଶସ୍ତ ବାରଣ୍ଡା ଉପରେ ବିଛା ହୋଇଥାଏ, କେତେ ଖଣ୍ଡ ସପମସିଣା ଆଉ ଗଦା ହୋଇଥାଏ ତାହାରି ଉପରେ ବଡ଼ ବଡ଼ ତାଳପତ୍ର ଖେଦାମାଳ ଡୋରି ଫିଟାହୋଇ ଚାରିପଟେ ।

ତାହାରି ଭିତରେ ଯେପରି ଅବା ଆର୍ତ୍ତବଲ୍ଲଭ ନିଜକୁ ହଜାଇ ଦେଇଥାନ୍ତି । ପିଲାଦିନୁଁ ଆମ ଘରେ ଜମା ହୋଇଥିବା ପୋଥିଖଟୁଳିକୁ ଦେଖି ଏଇ ସବୁ ପୋଥି ପ୍ରତି ମୋର ଅବଶ୍ୟ ବିଶେଷ କୌତୂହଳ ଜନ୍ମେନାହିଁ । କୌତୂହଳ ଜନ୍ମେ କେବଳ ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କର ଏଇ ପୋଥିଗଦାଟି ଭିତରେ ନିବିଷ୍ଟ ହୋଇ ନିଜକୁ ହଜାଇ ଦେବାର ଲକ୍ଷ୍ୟ କରି ।

ଉତ୍କଳ-ସାହିତ୍ୟ-ସମାଜ ପକ୍ଷରୁ ପ୍ରତି ବର୍ଷ ଘୋଷିତ ହୁଏ ସାହିତ୍ୟ ପୁରସ୍କାରମାନ ତାଳଚେର, ଆଠମଲ୍ଲିକ ପ୍ରମୁଖ ରାଜା ମହାରାଜାମାନଙ୍କର ବାଦାନ୍ୟତା ଫଳରେ; ବର୍ଷରେ ଥରେ ଏହି ପୁରସ୍କାରଗୁଡ଼ିକ ଦିଆଯାଏ ଗୋଟିଏ ସୀମିତ ସାହିତ୍ୟିକ ପରିବେଶ ଭିତରେ ।

ସେ ବର୍ଷ ଉତ୍କଳ ସାହିତ୍ୟ ସମାଜପକ୍ଷରୁ ପୁରସ୍କାର ପାଇଁ ଘୋଷିତ ହୁଏ, ମଥୁରା ମଙ୍ଗଳର ସମାଲୋଚନା, ପୁରସ୍କାର ମୂଲ୍ୟ ଚାଳିଶ ଟଙ୍କା । ଅଧ୍ୟାପକ ଆର୍ତ୍ତବାବୁଙ୍କ ନିର୍ଦ୍ଦେଶରେ ମୁଁ ସେଇ ପ୍ରବନ୍ଧ ଲେଖେଁ ଓ ତାଙ୍କଠାରୁ ପ୍ରଶଂସା ଲାଭକରେଁ । ସେଇ ଚାଳିଶଟି ଟଙ୍କା ହେଲା ସେତେବେଳେ ମୋର ସାହିତ୍ୟ ସାଧନା ଭିତରେ ସର୍ବପ୍ରଥମ ଆର୍ଥିକ ପୁରସ୍କାର ।

ପୁରସ୍କାର ଅପେକ୍ଷା ଅବଶ୍ୟ ଅଧିକ ମୂଲ୍ୟବାନ୍ ହୁଏ ମୋହପକ୍ଷରେ ଅଧ୍ୟାପକ ଆର୍ତ୍ତବଲ୍ଲଙ୍କ ଉତ୍ସାହବାଣୀ ଓ ପ୍ରଶଂସା । ତାଙ୍କ ଭଳି କଠୋର ସମାଲୋଚକଙ୍କଠାରୁ ପ୍ରଶଂସା ଶୁଣିବା ଅଳ୍ପ ସୌଭାଗ୍ୟର ତ ବିଷୟ ନୁହେଁ । ଶ୍ରୀ ଜଗଦାନନ୍ଦ ମହାନ୍ତି ସେତେବେଳେ ଆର୍ତ୍ତବାବୁଙ୍କର ପ୍ରିୟ ଛାତ୍ରରୂପେ ତାଙ୍କ ଗବେଷଣା କ୍ଷେତ୍ରରେ ସାହାଯ୍ୟ କରୁଥାନ୍ତି ଓ ସ୍ୱର୍ଗତ ବିଚ୍ଛନ୍ଦଚରଣ ପଟ୍ଟନାୟକ ମଧ୍ୟ ତାଙ୍କର ଅନ୍ୟତମ ପ୍ରିୟ ଶିଷ୍ୟ ଭାବରେ ଚିହ୍ନିତ ହୋଇଥାନ୍ତି । ସାହିତ୍ୟ ସମାଜରୁ ପୁରସ୍କାର ଲାଭ ସହିତ ସହାଧ୍ୟାୟୀ ବନ୍ଧୁମାନଙ୍କ ଦୃଷ୍ଟି ମଧ୍ୟ ମୁଁ ଆକର୍ଷଣ କରିଥିବା ସ୍ୱାଭାବିକ । ଆଧୁନିକ ସାହିତ୍ୟର ଜଣେ ସେବକ ହୋଇ ପ୍ରାଚୀନ ସାହିତ୍ୟ ଉପରେ ମୋର ନିବନ୍ଧ ଯେ ସମାଦୃତ ହୁଏ-ତାହା ବନ୍ଧୁମାନଙ୍କ ମଧ୍ୟରେ ପୁଣି ମୋ ନିଜ ଭିତରେ ସୃଷ୍ଟିକରେ ଏକ ପ୍ରତ୍ୟୟ-ଯାହା ଫଳରେ ସାହିତ୍ୟର ପ୍ରାଚୀନ ଓ ଆଧୁନିକ ଭାବଧାରା ଭିତରେ ଏକ ନିରବଚ୍ଛିନ୍ନ ଯୋଗସୂତ୍ର ପ୍ରତିଷ୍ଠିତ ବୋଲି ମୁଁ ଅନୁଭବ କରେଁ ।

ଆଧୁନିକ ସାହିତ୍ୟର ଶ୍ରେଷ୍ଠ ମୁଖପତ୍ର "ଉତ୍କଳ-ସାହିତ୍ୟ" ପତ୍ରିକା ତ ସବୁବେଳେ ଥାଏ ମୋର ଅନ୍ୟତମ ଲକ୍ଷ୍ୟସ୍ଥଳ। ପୁରୀଜିଲ୍ଲା ସ୍କୁଲର ଛାତ୍ରାବାସ ସମୟରେ ଗୋଟିଏ ମାତ୍ର କ୍ଷୁଦ୍ରଗଳ୍ପ ଏହି ପତ୍ରିକାରେ ପ୍ରକାଶ ପାଇ ଯେପରି ମୋର ଲେଖକ ମହଲରେ ପ୍ରାରମ୍ଭିକ ପରିଚୟ ଆଣିଦିଏ, ତାହା ପରଠାରୁ କିନ୍ତୁ ଏକାଧିକ ଉଦ୍ୟମର ପରିଣତି ଘଟେ ବ୍ୟର୍ଥତା ଭିତରେ।

ପ୍ରତି ମାସରେ "ଉତ୍କଳ ସାହିତ୍ୟ" ପ୍ରକାଶିତ ହେବା ସଙ୍ଗେ ସଙ୍ଗେ ରେଭେନ୍‌ସା କଲେଜ ଇଷ୍ଟ ହଷ୍ଟେଲକୁ ଆସେ ଉତ୍କଳ ସାହିତ୍ୟ ପ୍ରେସ୍‌ର ସୁପରିଚିତ ଚପରାସୀ ଲଛମନ୍ ସିଂ ତାହାର ପାତଳାମୁହଁରେ ବହଳିଆ ମୋଟା ନିଶ ଭିତରୁ ପାନଖିଆ କସରାଦାନ୍ତ ଦେଖାଇ ସେ ଭାରି ମଜାରେ ହସେ।

"ଉତ୍କଳ ସାହିତ୍ୟ"ର ବିଡ଼ା ଫିଟାଇଲାବେଳେ ଲଛମନ୍ ସିଂ କେତେ ଯେ କୌତୂହଳ ପୁଣି କେତେ ଯେ ଉଦ୍ଦୀପନା ସୃଷ୍ଟି କରେ ସେହି ପୂର୍ବ ଛାତ୍ରାବାସର ସୁପ୍ରଶସ୍ତ ବାରଣ୍ଡାରେ ! ପ୍ରତି ମାସରେ ତା'ରି ହାତରୁ "ଉତ୍କଳ ସାହିତ୍ୟ" ର ଗ୍ରାହକ ରୂପେ ନିଜ କାଗଜ ଖଣ୍ଡି ନିଏ। ପ୍ରତି ମାସରେ ଲେଖା ପଠାଏଁ- କବିତା, ଗଳ୍ପ ଇତ୍ୟାଦି; ମାତ୍ର ହତାଶ ହୁଏଁ ଶେଷରେ। ସେହି ଗୋଟିଏ ମାତ୍ର ଗଳ୍ପ ସ୍କୁଲରେ ପଢୁଥିଲା ବେଳର ରହିଯାଏ ମୋର କାଣୀ ଆଖିରେ କଜଳଗାର ହୋଇ।

ସ୍କୁଲରୁ ଆସି କଲେଜପର୍ଯ୍ୟନ୍ତ, ତା'ପରେ ଯେତେ ଲେଖା ପଠାଏଁ-ପ୍ରାୟ ପ୍ରତି ମାସରେ- ତାହା ଫେରିଆସିବା ତ ଦୂରର କଥା; ସମ୍ପାଦକ ମହାଶୟଙ୍କ ହସ୍ତଗତ ହେଲା କି ନାହିଁ, ଜାଣିବାକୁ ମଧ୍ୟ ଉପାୟ ନଥାଏ।

•

---

*ଅଙ୍କେ ଯାହା ନିଭାଇଛି,*

କଟକ, ୧୯୭୧

# ରେଭେନ୍‌ସା କଲେଜ

## ହରିହର ମହାପାତ୍ର

ମୋର କଲେଜ ଜୀବନ ଆରମ୍ଭ ହେଲା ୧୯୨୩ ମସିହାରେ । ରେଭେନ୍‌ସା କଲେଜିଏଟ୍ ସ୍କୁଲରୁ ପ୍ରବେଶିକା ପାସ୍ କରି ରେଭେନ୍‌ସା କଲେଜରେ ନାଁ' ଲେଖାଇଲି । ରେଭେନ୍‌ସା କଲେଜ ନାମ ଉଚ୍ଚାରଣ କଲାମାତ୍ରେ ଦେହରେ ଅପୂର୍ବ ଶିହରଣ ସୃଷ୍ଟି ହୁଏ । ଆମ କଲେଜ ଛଡ଼ା ଆଉ କିଛି କହିବାକୁ ଇଚ୍ଛା ହୁଏ ନାହିଁ । ତାର ଧୂଳିମାଟି ପବିତ୍ର । ତା ଭିତରେ ଲୁଚିରହିଛି ବହୁ ଗୌରବାବହ ଅତୀତ । ତାର ପରମ୍ପରା ମହାନ୍ । ଓଡ଼ିଶାର ଏହି ସର୍ବବୃହତ୍ ଜ୍ଞାନମନ୍ଦିର, ଆଜି ମଧ୍ୟ ତାର ଉନ୍ନତ ପରମ୍ପରାକୁ ଅକ୍ଷୁଣ୍ଣ ରଖିପାରିଛି । ଅଗଣିତ ଜ୍ଞାନପିପାସୁ ବିଦ୍ୟାର୍ଥୀଙ୍କ ପଦଧୂଳିରେ ଆମ କଲେଜ ପୂତ ପବିତ୍ର । ପ୍ରଜ୍ଞାର ଅଖଣ୍ଡ ଜ୍ୟୋତି ଧାରଣ କରି ସେ ଅଗଣିତ ବିଦ୍ୟାର୍ଥୀଙ୍କୁ ଜ୍ଞାନାଲୋକରେ ଉଦ୍ଭାସିତ କରୁଛି ।

ଆମ କଲେଜ ଭାରତବର୍ଷର ଗୋଟିଏ ପୁରୁଣା କଲେଜ । ସମଗ୍ର ଭାରତରେ ତାର ବହୁତ ସୁନାମ ଅଛି । ଏକ ପ୍ରଖ୍ୟାତ ମହାବିଦ୍ୟାଳୟ ରୂପେ, ସାରା ଭାରତବର୍ଷରେ ତାର ଏକ ସ୍ୱତନ୍ତ୍ର ମର୍ଯ୍ୟାଦାବନ୍ତ ସ୍ଥାନ ରହିଛି । କଟକ ରେଳଷ୍ଟେସନ ନିକଟରେ ଏହା ଅବସ୍ଥିତ । ଯେଉଁ ବିରାଟ ପଡ଼ିଆ ଉପରେ କଲେଜ ନିର୍ମିତ ହୋଇଛି, ସେହି ପଡ଼ିଆକୁ 'ଚକର ପଡ଼ିଆ' ବୋଲି କୁହାଯାଉଥିଲା । ଶୁଣାଯାଏ, ଅନେକଦି ତଳେ ଏହି ପଡ଼ିଆରେ ଘୋଡ଼ାଦୌଡ଼ ହେଉଥିଲା । ଅଶ୍ୱାରୋହୀମାନେ ଏଠାରେ ଘୋଡ଼ାରେ ଚଢ଼ି ଚକ୍କର୍ କାଟୁଥିଲେ । ସେଥିପାଇଁ ଏହାକୁ ଚକର ପଡ଼ିଆ କୁହାଯାଉଥିଲା ।

ବିଖ୍ୟାତ ମାର୍ଟିନ୍ ଏଣ୍ଡ କୋଃ ରେଭେନ୍‌ସା କଲେଜର ଏହି ବିଶାଳ ଅଟ୍ଟାଳିକା ନିର୍ମାଣ କରିଥିଲେ । ଆଗରୁ କହିଛି, ଏହାର ତଳେଇଛାତ (ଶୂନଛାତ) ନୂଆକରି ହୋଇଥିବାରୁ ବହୁଲୋକ ଏହାକୁ ଦେଖିବାକୁ ଆସୁଥିଲେ । କଟକର ଏହା ଏକ ଦର୍ଶନୀୟ ଅଟ୍ଟାଳିକା । କଲେଜର ଛାତ୍ରାବାସ ଦୁଇଟି ମଧ୍ୟ ବିଶାଳକାୟ । ପୂର୍ବପଟ ଛାତ୍ରାବାସକୁ ଇଷ୍ଟ ହଷ୍ଟେଲ ଓ ପଶ୍ଚିମ ପଟ ଛାତ୍ରାବାସକୁ west hostel ବୋଲି ନାମିତ କରାଯାଇଛି । ମୁଁ କଲେଜରେ ପଢ଼ିବା ବେଳକୁ

କଟକ ସହରକୁ ବିଜୁଳିବତୀ ଓ ପଙ୍ଖା ଆସିଯାଇଥାଏ । Octavious Steel Company ପ୍ରଥମେ କଟକକୁ ବିଦ୍ୟୁତ୍ ଯୋଗାଉଥିଲେ । କଲେଜରେ ଆଧୁନିକ ଧରଣର ପାଇଖାନା, ପାଣିଟ୍ୟାପ୍, ବିଜୁଳିବତୀ ଓ ପଙ୍ଖାର ସୁବ୍ୟବସ୍ଥା ହୋଇଥିଲା ।

ଆଜିକାଲି ଆଧୁନିକ ଧରଣର ପାଇଖାନା ଅତି ମାମୁଲି କଥା । ମାତ୍ର ସେତେବେଳେ ତାହା ବେଶ୍ କୌତୂହଳପ୍ରଦ ମନେ ହେଉଥିଲା ।

**ଅଧ୍ୟାପକ ବୃନ୍ଦ**

ଆମ ସମୟରେ ବହୁ ଖ୍ୟାତନାମା ବିଦ୍ୱାନ ପ୍ରଫେସର ଥିଲେ । ଅନେକ ଗୋରା ସାହେବ ମଧ୍ୟ ଥିଲେ । କେତେକ ବିଲାତ ଫେରନ୍ତା ପ୍ରଫେସର ଥିଲେ । ସେମାନଙ୍କୁ ସାହେବ କୁହାଯାଉଥିଲା । ଡକ୍ଟର ପ୍ରାଣକୃଷ୍ଣ ପରିଜାଙ୍କୁ ପରିଜା ସାହେବ ଓ ଶ୍ୟାମଚନ୍ଦ୍ର ତ୍ରିପାଠୀଙ୍କୁ ତ୍ରିପାଠୀ ସାହେବ କୁହାଯାଉଥିଲା । ଏପରି ଅନେକ ପ୍ରଫେସରଙ୍କୁ ଆମେ ସାହେବ ଲଗାଇ କହୁଥିଲୁ । ମୁଁ ଆଇ.ଏ.(I.A) ପଢ଼ିଲାବେଳେ ମୋର ବିଷୟବସ୍ତୁ ଥିଲା, ଇତିହାସ, ତର୍କଶାସ୍ତ୍ର ଓ ଉଦ୍ଭିଦ ବିଜ୍ଞାନ । (History, Logic & Botany) ଉଦ୍ଭିଦ ବିଜ୍ଞାନକୁ ସେତେବେଳେ କଳା ବିଭାଗ ଅନ୍ତର୍ଭୁକ୍ତ କରାଯାଇଥିଲା । ଯେଉଁ ବିଜ୍ଞାନ ଛାତ୍ରଛାତ୍ରୀମାନେ ଆଇ.ଏସ୍‌ସି.(I.Sc.)ରେ ଉଦ୍ଭିଦ ବିଜ୍ଞାନ ନେଇଥିଲେ, ସେମାନେ ଆସି ଆମ ସାଙ୍ଗରେ ଉଦ୍ଭିଦବିଜ୍ଞାନ କ୍ଲାସ କରୁଥିଲେ । ପ୍ରାକ୍‌ଟିକାଲ୍ କ୍ଲାସରେ ଅଣୁବୀକ୍ଷଣ ଯନ୍ତ୍ର (Microscope) ସାହାଯ୍ୟରେ ସମସ୍ତ ପରୀକ୍ଷା ନିରୀକ୍ଷା ହେଉଥିଲା ।

ଡକ୍ଟର ପ୍ରାଣକୃଷ୍ଣ ପରିଜା ଆଇ.ଇ.ଏସ୍. (I.E.S) ନୂଆ ହୋଇ ବିଲାତରୁ ଆସି ଆମ ଉଦ୍ଭିଦବିଜ୍ଞାନ ବିଭାଗର ପ୍ରଫେସର ଓ ବିଭାଗୀୟ ମୁଖ୍ୟ ହୋଇଥିଲେ । ପ୍ରଶାସନିକ କ୍ଷେତ୍ରରେ ସେ ସମୟରେ ଆଇ.ସି.ଏସ୍. (I.C.S) (Indian Civil Service) ଭଳି ଶିକ୍ଷା କ୍ଷେତ୍ରରେ ଆଇ.ଇ.ଏସ୍. (I.E.S) (Indian Education Service) ମଧ୍ୟ ସର୍ବାପେକ୍ଷା ଉଚ୍ଚପଦବୀ ଥିଲା । ଉଦ୍ଭିଦ ବିଜ୍ଞାନ ବିଭାଗରେ ପରିଜା ସାହେବଙ୍କ ଆଗରୁ ଖ୍ୟାତମାନା ଉଦ୍ଭିଦ-ବୈଜ୍ଞାନିକ ରାୟବାହାଦୁର ଯୋଗେଶ ଚନ୍ଦ୍ର ରାୟ ପ୍ରଫେସର ଥିଲେ । ସର୍ବଶ୍ରୀ ଦେବବ୍ରତ ମୁଖାର୍ଜୀ, ପର୍ଶୁରାମ ମିଶ୍ର (ପରେ ସମ୍ବଲପୁର ବିଶ୍ୱବିଦ୍ୟାଳୟ କୁଳପତି ହେଲେ) ଓ ଅଧିରାଜ ମୋହନ ସେନାପତି ପ୍ରମୁଖ ଏହି ବିଭାଗ ସହିତ ସଂପୃକ୍ତ ଥିଲେ । କଲେଜର ତତ୍କାଳୀନ ଅଧ୍ୟକ୍ଷ ଲାମ୍ବର୍ଟସାହେବ (H. Lambert, I.E.S.) ମଧ୍ୟ ଜଣେ ଉଦ୍ଭିଦ ବିଜ୍ଞାନୀ । ବିଶ୍ୱବିଦ୍ୟାଳୟ ସ୍ତରରେ ସେ ଆମ ପ୍ରାକ୍ଟିକାଲ୍ ପରୀକ୍ଷାର ପରୀକ୍ଷକ ହେଉଥିଲେ । ଥରେ ଅଧ୍ୟକ୍ଷ Lambert ସାହେବ କ୍ଲାସରେ ରୋଲକଲ ସମୟରେ ମୋ ରୋଲ ନମ୍ବରକୁ ମଝିରେ ଛାଡ଼ିଦେଇ ପାଞ୍ଚ ପରେ ସାତ ଡାକିଥିଲେ । ରୋଲକଲ ପରେ ମୁଁ ଛିଡ଼ାହୋଇ ମୋ ଆଟେଣ୍ଡାନ୍‌ସ (attendance) ନେବାପାଇଁ ଅନୁରୋଧ

କରିବାକୁ ସେ କହିଲେ, ମୁଁ କ୍ଲାସରେ ପ୍ରବେଶ କଲାବେଳେ ତୁମେ କାହିଁକି ଛିଡ଼ା ହେଲନି ? (What prevented you from standing when the Professor entered the class room ?) ପ୍ରକୃତରେ ଅନ୍ୟମନସ୍କ ଥିବାରୁ ମୁଁ ଛିଡ଼ା ହୋଇ ନଥିଲି । ଲଜ୍ଜିତ ହେଲି । ଗ୍ଲାନିବୋଧରେ ମୋ ମୁଣ୍ଡ ନଇଁଗଲା । କହିଲି, କ୍ଷମା, କରିବେ (Please excuse me) । ଏଥିରୁ କଣାଯାଏ ଯେ ସେ ସମୟର ଅଧ୍ୟାପକମାନେ ପ୍ରତ୍ୟେକ ଛାତ୍ର ସହିତ ପରିଚିତ ଥିଲେ ଓ ପ୍ରତ୍ୟେକ କାର୍ଯ୍ୟକଳାପ ପ୍ରତି ସତର୍କ ଦୃଷ୍ଟି ରଖୁଥିଲେ । ଛାତ୍ରର ଚରିତ୍ର ଗଠନ ଓ ଶିକ୍ଷାଦାନ, ଉଭୟବିଧ କାର୍ଯ୍ୟ ପ୍ରତି ସେମାନେ ନିଷ୍ଠାବାନ ଥିଲେ । ଛାତ୍ରମାନଙ୍କୁ ବ୍ୟକ୍ତିଗତ ଭାବରେ ଜାଣୁଥିଲେ । ମାତ୍ର ଏବେ ଏ କ୍ଷେତ୍ରରେ ସେପରି ଦେଖାଯାଏ ନାହିଁ ।

ଆମ ଇତିହାସ ବିଭାଗର ମୁଖ୍ୟ ପ୍ରଫେସର ଥିଲେ ସାର୍ ଯଦୁନାଥ ସରକାର । ଜଣେ ଉଚ୍ଚକୋଟୀର ଐତିହାସିକ ଭାବରେ ତାଙ୍କର ଆନ୍ତର୍ଜାତିକ ଖ୍ୟାତି ଥିଲା । ଭାରତରେ ମୋଗଲ ଶାସନ ବିଷୟରେ ଜଣେ ବିଶେଷଜ୍ଞ ଭାବରେ ସେ ଖ୍ୟାତି ଅର୍ଜନ କରିଥିଲେ । ବ୍ରିଟିଶ ସରକାର ତାଙ୍କୁ ସାର୍ (knight) ଉପାଧିରେ ଭୂଷିତ କରିଥିଲେ । ସେତେବେଳେ ଭାରତର ଖୁବ୍ କମ୍ ଲୋକଙ୍କୁ ଏହିଭଳି ଉପାଧି ଦିଆଯାଇଥିଲା । ସେ ମଧ୍ୟ କିଛିଦିନ ପାଇଁ କଲେଜର କାର୍ଯ୍ୟକାରୀ ଅଧ୍ୟକ୍ଷ ଥିଲେ । ଏଠାରୁ ଅବସର ଗ୍ରହଣ କଲାପରେ ସେ କଲିକତା ବିଶ୍ୱବିଦ୍ୟାଳୟର କୁଳପତି ହୋଇଥିଲେ । ସେ ଥିଲେ ଜଣେ ଦୀର୍ଘକାୟ ବ୍ୟକ୍ତି । କ୍ଲାସକୁ ଫେଲ୍‌ଟହ୍ୟାଟ୍ ଦେଇ, ହାତରେ ଖଣ୍ଡିଏ ବାଡ଼ି ଧରି ସେ ଆସୁଥିଲେ । ପଢ଼ା ଆରମ୍ଭ କରିବା ଆଗରୁ ଗୋଟିଏ କୋଣରେ ବାଡ଼ି ଓ ଟେବୁଲ ଉପରେ ଟୋପି ରଖୁଥିଲେ । ତାଙ୍କ କହିବାର ଭଙ୍ଗୀ ଚମତ୍କାର ଥିଲା । କ୍ଲାସରେ ଆମେ ଛାତ୍ରମାନେ ମନ୍ତ୍ରମୁଗ୍ଧ ପରି ତାଙ୍କର ବକ୍ତୃତା ଶୁଣୁଥିଲୁ । ପିରିୟଡ଼ ଶେଷ ଭାଗରେ ଅନେକ ସମୟରେ ସେ ପ୍ରଶ୍ନୋତ୍ତର କରାଉଥିଲେ । ଅନ୍ୟାନ୍ୟ ଇତିହାସ ଅଧ୍ୟାପକମାନଙ୍କ ମଧ୍ୟରେ ନିର୍ମଳ ଚନ୍ଦ୍ର ବାନାର୍ଜୀ ଓ ନିଶିକାନ୍ତ ସାନ୍ୟାଲଙ୍କ ନାମ ଉଲ୍ଲେଖ କରାଯାଇପାରେ ।

ତର୍କଶାସ୍ତ୍ର ବା ଲଜିକ୍ (logic)ର ବିଭାଗୀୟ ମୁଖ୍ୟ ଥିଲେ ବ୍ୟାସକବି ଫକୀରମୋହନ ସେନାପତିଙ୍କ ପୁଅ ମୋହିନୀମୋହନ ସେନାପତି । ସେ କେବଳ ସ୍ନାତକ (B.A) ଶ୍ରେଣୀରେ ପଢ଼ାଉଥିଲେ । ଆଇ.ଏ. ଶ୍ରେଣୀରେ ଆମକୁ ରତ୍ନେଶ୍ୱର ଚାଟାର୍ଜୀ ତର୍କଶାସ୍ତ୍ର ପଢ଼ାଉଥିଲେ । କାଶୀନାଥ ଦାସ ଓ ଆର୍ତ୍ତବଲ୍ଲଭ ମହାନ୍ତି ଥିଲେ ଆମର ଓଡ଼ିଆ ଅଧ୍ୟାପକ । ଗିରିଜା ଶଙ୍କର ରାୟ ଓ ଜନାର୍ଦ୍ଦନ ମହାନ୍ତି ଆମକୁ ଇଂରାଜୀ ପଢ଼ାଉଥିଲେ ।

କଳା ଓ ବିଜ୍ଞାନ ମିଶି ସେତେବେଳେ ଆମ କଲେଜର ଛାତ୍ର ସଂଖ୍ୟା ଥିଲା ପାଞ୍ଚଶହ (ବର୍ତ୍ତମାନ ପାଞ୍ଚହଜାରରୁ ଅଧିକ ହେବ) । ଏଣୁ ଆଜିକାଲି ପରି କଲେଜରେ ନାଁ ଲେଖାଇବାକୁ ଏତେ ଭିଡ଼ ନଥିଲା ।

ଆମ କଲେଜ ସମ୍ପର୍କରେ ମୋର ଗୋଟିଏ କଥା ମନେ ପଡ଼ୁଛି । କଲିକତାରେ ମୋର କେତେକ ବଙ୍ଗୀୟ ବନ୍ଧୁ ଥରେ ମୋ ସହିତ ଆଲୋଚନା କଲାବେଳେ, ଜଣେ ପଚାରିଥିଲେ- ରେଭେନ୍‌ସା କଲେକ କଣ ଗୋଟିଏ ବଡ଼ କଲେଜ ? ଉତ୍ତରରେ ମୁଁ କହିଥିଲି- ଆମ ରେଭେନ୍‌ସା କଲେଜର ଜଣେ ପ୍ରଫେସର ସାର୍ ଯଦୁନାଥ ସରକାର ତୁମ କଲିକତା ବିଶ୍ୱବିଦ୍ୟାଳୟର କୁଳପତି । ଏଇଥିରୁ ରେଭେନ୍‌ସା କଲେଜର ସ୍ଥାନ କେତେ ଉଚ୍ଚରେ ବୁଝିପାରୁଥିବ ( You can imagine how big our Ravenshaw College is !) ଅବଶ୍ୟ ଏକଥା ମୁଁ କୌତୁକ ଛଳରେ କହିଥିଲି । କିନ୍ତୁ ଏକଥା ଅକ୍ଷରେ ଅକ୍ଷରେ ସତ୍ୟ ।

ରେଭେନ୍‌ସା କଲେଜରେ ଆମର ଉଦ୍ଭିଦ ବିଜ୍ଞାନର ପ୍ରଫେସର ଥିଲେ ପର୍ଶୁରାମ ମିଶ୍ର । ଜଣେ ସରଳ, ମିଷ୍ଟଭାଷୀ ଓ ଛାତ୍ରବତ୍ସଳ ଅଧ୍ୟାପକ ଭାବରେ ତାଙ୍କର ସୁନାମ ଥିଲା । ସେ ପରବର୍ତ୍ତୀ ଜୀବନରେ ସମ୍ବଲପୁର ବିଶ୍ୱବିଦ୍ୟାଳୟର କୁଳପତି ହୋଇଥିଲେ ।

## ଡକ୍‌ଟର ପ୍ରାଣକୃଷ୍ଣ ପରିଜା

ଆମ ପ୍ରଫେସରମାନଙ୍କ ମଧ୍ୟରେ ପ୍ରଫେସର ପ୍ରାଣକୃଷ୍ଣ ପରିଜା ଥିଲେ ଅନ୍ୟତମ । ସେ ଥିଲେ ଉତ୍କଳର ଜଣେ ଯୋଗଜନ୍ମା ପୁରୁଷ । ଭାରତର ଶ୍ରେଷ୍ଠ ବୈଜ୍ଞାନିକ ଏବଂ ଉଚ୍ଚକୋଟୀର ଶିକ୍ଷାବିତ୍ ଭାବରେ ଖ୍ୟାତି ଅର୍ଜନ କରି ସେ ସମଗ୍ର ଦେଶ ଓ ଜାତିର ଶ୍ରଦ୍ଧାଭାଜନ ହୋଇ ପାରିଥିଲେ । ଗୋଟିଏ ସାଧାରଣ ମଧ୍ୟବିତ୍ତ ପରିବାରରେ ଜନ୍ମଗ୍ରହଣ କରି ସେ ନିଜ କର୍ମପଟୁତା ଓ ଅଧ୍ୟବସାୟ ବଳରେ ଜୀବନର ଶୀର୍ଷତମ ସୋପାନରେ ପହଞ୍ଚି ପାରିଥିଲେ ।

ତାଙ୍କ ସହିତ ମୋର ସମ୍ପର୍କ ନିବିଡ଼ ଥିଲା । ସେ ଥିଲେ ମୋର ସମ୍ମାନାସ୍ପଦ ଗୁରୁ । ମୁଁ ଥିଲି ଏକାନ୍ତ ଅନୁରକ୍ତ ଛାତ୍ର । ଆଇ.ଏ. ପଢ଼ିବା ସମୟରେ ମୋର ପାଠ୍ୟ ବିଷୟ ଥିଲା ଇତିହାସ, ଲଜିକ ଓ ବଟାନି । ସେତେବେଳେ ଦୁଇଜଣ ବିଶିଷ୍ଟ ବିଲାତ ଫେରନ୍ତା ଓଡ଼ିଆ ଅଧ୍ୟାପକ ଥାନ୍ତି । ଡକ୍‌ଟର ପରିଜାଙ୍କ ବ୍ୟତୀତ ଆଉ ଜଣେ ହେଉଛନ୍ତି ଶ୍ୟାମଚନ୍ଦ୍ର ତ୍ରିପାଠୀ ।

ଦିନକର କଥା । ଉଦ୍ଭିଦ ବିଜ୍ଞାନର ଗୋଟିଏ ବିଷୟକୁ ମୁଁ ଅଣୁବୀକ୍ଷଣ ଯନ୍ତ୍ର (ମାଇକ୍ରୋସ୍କୋପ)ରେ ଦେଖିବାକୁ ଚେଷ୍ଟା କରୁଥିଲି । ଏହି ସମୟରେ ମୋ ପଛରେ ଆସି ଛିଡ଼ାହେଲେ ଡକ୍‌ଟର ପରିଜା । ତାଙ୍କୁ ଦେଖି ମୁଁ ସମ୍ଭ୍ରମରେ ଶଙ୍କିଗଲି । ପରିସ୍ଥିତିକୁ ହାଲୁକା କରିଦେଇ ସେ ପଚାରିଲେ, କଣ କରୁଛ ?

ସାର୍, ମାଇକ୍ରୋସ୍କୋପରେ ଗୋଟିଏ ସ୍ଲାଇଡ୍ ଦେଖୁଛି ।

କିନ୍ତୁ ମାଇକ୍ରୋସ୍କୋପ ତ ଠିକ୍ ଭାବରେ ସେଟ୍ ହୋଇନାହିଁ । ଠିକ୍ ଭାବେ ଦେଖିବ କେମିତି ? ଏହା କହି ପରିଜା ସାହେବ ନିଜେ ଯନ୍ତ୍ରଟିକୁ ଠିକ୍ ଭାବେ ସଜେଇ ଦେଇ କହିଲେ, ଏଥର ଦେଖ ।

ଏହାହିଁ ଥିଲା ଅଧ୍ୟାପକ ପ୍ରାଣକୃଷ୍ଣ ପରିଜାଙ୍କ ସହିତ ମୋର ପ୍ରଥମ ବ୍ୟକ୍ତିଗତ ସାକ୍ଷାତ୍। ପ୍ରତ୍ୟେକ ବିଷୟକୁ ଟିକିନିଖି କରି ଦେଖିବା ତାଙ୍କର ସହଜାତ ଅଭ୍ୟାସ । ଏଇ ଅଭ୍ୟାସକୁ ସେ ତାଙ୍କ ଶେଷ ଜୀବନ ପର୍ଯ୍ୟନ୍ତ ବଜାୟ ରଖିଥିଲେ । ଏହା ବ୍ୟତୀତ ତାଙ୍କର ଅନ୍ୟ ଏକ ବିଶେଷ ଗୁଣ ଥିଲା ସମୟାନୁବର୍ତ୍ତିତା । ସେ ଅପୂର୍ବ ଶୃଙ୍ଖଳାର ପ୍ରତୀକ ଥିଲେ । ସେହିପରି ତାଙ୍କ ପୋଷାକ ପରିଚ୍ଛଦରେ ମଧ୍ୟ ଅଦ୍ଭୁତ ଚାରିତ୍ରିକ ମୂଲ୍ୟବୋଧର ପରିଚୟ ମିଳୁଥିଲା । ବିଲାତୀ ବେଶ ପୋଷାକରେ ସେ ଥିଲେ ଖାଣ୍ଟି ସାହେବ । ସୁଟ୍ ପିନ୍ଧିବା ଓ ଇଂରାଜୀ କହିବାବେଳେ ତାଙ୍କୁ ଯେପରି କେମ୍ବ୍ରିଜର ସାହେବ ଅଧ୍ୟାପକ ଛଡ଼ା ଅନ୍ୟ କିଛି କହିହେବ ନାହିଁ; ସେହିପରି ସାମାଜିକ ମିଳନରେ ଧୋତି, ପଞ୍ଜାବି ଓ ଚଦର ପିନ୍ଧି ଓଡ଼ିଆ କହିଲାବେଳେ ସେ ଜଣେ ଖାଣ୍ଟି ଓଡ଼ିଆ ।

ଜଣେ ବିଶିଷ୍ଟ ବୈଜ୍ଞାନିକ ଭାବେ କେବଳ ଭରତରେ ନୁହେଁ, ଆନ୍ତର୍ଜାତିକ କ୍ଷେତ୍ରରେ ମଧ୍ୟ ତାଙ୍କ ପ୍ରତିଷ୍ଠା ବିଶେଷ ଉଲ୍ଲେଖଯୋଗ୍ୟ । କେମ୍ବ୍ରିଜ ବିଶ୍ୱବିଦ୍ୟାଳୟର ଉଦ୍ଭିଦ ବିଜ୍ଞାନ ବିଭାଗର ପ୍ରବୀଣ ଅଧ୍ୟାପକ ପ୍ରଫେସର ଏଫ୍.ଏଫ୍. ବ୍ଲାକମ୍ୟାନ୍‌ଙ୍କ ଅଧୀନରେ ଗବେଷଣା କରି ପ୍ରଫେସର ପରିଜା ଆତର ଶ୍ୱାସକ୍ରିୟା (respiration of apples) ସମ୍ବନ୍ଧରେ ଯେଉଁ ପ୍ରବନ୍ଧ ରଚନା କରିଥିଲେ ତାହା "Parija and blackman theory" ନାମରେ ବିଶ୍ୱ ବିଖ୍ୟାତ । କେମ୍ବ୍ରିଜ ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ଆନାଲିଟିକ୍ ଷ୍ଟଡ଼ିଜ୍ ଅନ୍ ପ୍ଲାଣ୍ଟ ରେସ୍‌ପିରେସନ୍ (Analytic studies on plant respiration) ପ୍ରକାଶିତ ହେଲା ପରେ ଉଦ୍ଭିଦର ଶ୍ୱାସକ୍ରିୟା ବିଷୟରେ ପ୍ରଫେସର ପରିଜାଙ୍କର ଏହି ବୈଜ୍ଞାନିକ ଅବଦାନ ସାରା ପୃଥିବୀରେ ସମ୍ମାନିତ ହୋଇଥିଲା ।

ଏହିଠାରେ ଆମେ ଶୁଣିଥିବା ଗୋଟିଏ ଘଟଣା ମୋର ମନେ ପଡ଼ୁଛି । ଥରେ ଜଣେ ବିଶିଷ୍ଟ ବୈଜ୍ଞାନିକ ଏକ ଉତ୍ସବରେ ପରିଜାଙ୍କୁ ସାକ୍ଷାତ୍ କରିବାକୁ ଆସିଥିଲେ । ସେ ଆଗରୁ ପରିଜାଙ୍କ କୃତିତ୍ୱ ସହ ପରିଚିତ ଥିଲେ ସୁଦ୍ଧା, ତାଙ୍କୁ ବ୍ୟକ୍ତିଗତ ଭାବେ ଦେଖି ନଥିଲେ । ସେ ପରିଜାଙ୍କୁ ଲକ୍ଷ୍ୟ କରି ପଚାରିଲେ, "I want to meet Dr. P. Parija" । ଉତ୍ତରରେ ପରିଜା କହିଲେ, "I am the same Parija, fossilized"। ଏହି ଘଟଣାରୁ ଜଣେ ସ୍ୱନାମଧନ୍ୟ ଉଦ୍ଭିଦ ବିଜ୍ଞାନୀ ଭାବରେ ସେ କିପରି ଉଚ୍ଚସ୍ଥାନ ଅଧିକାର କରିଥିଲେ, ତାହା ଅନୁମାନ କରିହୁଏ ।

ପ୍ରାଚୀନ ଓଡ଼ିଆ ସାହିତ୍ୟରେ ତାଙ୍କର ଗଭୀର ଅଧ୍ୟୟନ ଥିଲା । କଥା ପ୍ରସଙ୍ଗରେ ସେ ଅତିବଡ଼ି ଜଗନ୍ନାଥ ଦାସଙ୍କ ଭାଗବତ ପଦ ସବୁ ଆବୃତ୍ତି କରୁଥିଲେ । ପ୍ରାଚୀନ କାବ୍ୟ କବିତା ଓ ଓଡ଼ିଆରେ ତଗଡ଼ମାଳିର ଉଦାହରଣ ଦେଇ ସେ ଆମ୍ଭମାନଙ୍କୁ ଚମତ୍କୃତ କରିଦେଉଥିଲେ । ଉଦ୍ଭିଦ ବିଜ୍ଞାନର ଜଣେ ବିଖ୍ୟାତ ଅଧ୍ୟାପକଙ୍କର ଓଡ଼ିଆ ଭାଷା ସାହିତ୍ୟରେ ଏପରି ଗଭୀର ଜ୍ଞାନ ଛାତ୍ର ସମାଜକୁ ଅଭିଭୂତ କରୁଥିଲା ।

କଟକ ଜିଲ୍ଲାର ବାଲିକୁଦା ଥାନା ଅନ୍ତର୍ଗତ ଇଚ୍ଛାପୁର ଗ୍ରାମରେ ୧୮୯୧ ମସିହା ଅପ୍ରେଲ ୧ ତାରିଖରେ ପ୍ରଫେସର ପରିଜା ଜନ୍ମଗ୍ରହଣ କରିଥିଲେ। ନିଜର ଐକାନ୍ତିକ ନିଷ୍ଠା ଓ ଅଧ୍ୟବସାୟ ଯୋଗୁଁ ସେ ଉନ୍ନତିର ଶିଖରରେ ପହଞ୍ଚି ପାରିଥିଲେ। ସେ ୧୯୩୮ ମସିହାରୁ ୧୯୪୫ ମସିହା ପର୍ଯ୍ୟନ୍ତ ରେଭେନ୍‌ସା କଲେଜର ଅଧ୍ୟକ୍ଷ, ୧୯୪୩ରୁ ୧୯୪୮ ପର୍ଯ୍ୟନ୍ତ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରଥମ କୁଳପତି, ୧୯୫୫ରେ ପୁନର୍ବାର କୁଳପତି, ୧୯୫୨ରେ ବାଲିକୁଦା ନିର୍ବାଚନମଣ୍ଡଳୀରୁ ଓଡ଼ିଶା ବିଧାନସଭାର ନିର୍ବାଚିତ ନିର୍ଦ୍ଦଳୀୟ ବିଧାୟକ, ଓଡ଼ିଶାର ପ୍ରଥମ କୃଷି-ନିର୍ଦ୍ଦେଶକ, ଭାରତୀୟ ବିଜ୍ଞାନ-କଂଗ୍ରେସର ସଭାପତି, ଜାତୀୟ ଭାଷା-କମିଶନର ସଭ୍ୟ, ବିଶ୍ୱବିଦ୍ୟାଳୟ ମଞ୍ଜୁରୀ କମିଶନର ସାଧାରଣ ଶିକ୍ଷା କମିଟିର ଚେୟାରମ୍ୟାନ୍ ଓ ବହୁ ଜାତୀୟ ତଥା ଆନ୍ତର୍ଜାତୀୟ ଅନୁଷ୍ଠାନର ଉଚ୍ଚପଦବୀରେ ଅଧିଷ୍ଠିତ ହୋଇ ନିଷ୍ଠା ଓ ଦକ୍ଷତାର ସହ ଦାୟିତ୍ୱ ତୁଲାଇଥିଲେ। ବିଗତ ୧୯୭୮ ମସିହା ଜୁନ୍ ୨ ତାରିଖରେ ଏହି ମହାପୁରୁଷ ଆମ ସମସ୍ତଙ୍କଠାରୁ ବିଦାୟ ନେଇ ଚାଲିଯାଇଛନ୍ତି। ତାଙ୍କ ବିୟୋଗ ଦେଶର ଶିକ୍ଷା କ୍ଷେତ୍ରରେ ଏପରି ଏକ ଶୂନ୍ୟସ୍ଥାନ ସୃଷ୍ଟି କରିଛି, ଯାହାକି ପୂରଣ ହେବା ଅସମ୍ଭବ।

ଡକ୍‌ଟର ପରିଜାଙ୍କ ପବିତ୍ର ସ୍ମୃତିରକ୍ଷା ନିମିତ୍ତ ରାଜ୍ୟ ସ୍ତରରେ ପ୍ରଫେସର ପରିଜା ସ୍ମୃତି ପରିଷଦ ଗଠିତ ହୋଇ ୧୯୭୯ ମସିହାଠାରୁ ଆଜି ସୁଦ୍ଧା କାର୍ଯ୍ୟ କରିଆସୁଛି। ମୁଁ ଉକ୍ତ ସଂଗଠନ ସହିତ ଆରମ୍ଭରୁ ସଂପୃକ୍ତ ଏବଂ ଏବେ ଉକ୍ତ ପରିଷଦର ସଭାପତି ଅଛି। ତାଙ୍କ ସ୍ମୃତି ଉଦେଶ୍ୟରେ ଉତ୍କଳ ବିଶ୍ୱବିଦ୍ୟାଳୟରେ ପରିଜା ପ୍ରଫେସର ନିଯୁକ୍ତି ଓ ପରିଜା ସ୍ମାରକୀ ବକ୍ତୃତାମାଳାର ଆୟୋଜନ ସହିତ ଅନ୍ୟାନ୍ୟ ପଦକ୍ଷେପମାନ ନିଆଯାଉଛି।

ସେତେବେଳେ ଗାଡ଼ିମଟରର ଏତେ ଭିଡ଼ ନଥିଲା। ଆଜିକାଲି ସ୍କୁଟର, ମଟର ସାଇକେଲ୍, ଜିପ୍, କାର୍ ପ୍ରଭୃତି ଯୋଗୁଁ ଗମନାଗମନର ବହୁ ଉନ୍ନତି ଘଟିଛି। ଆମ ପଢ଼ିବା ସମୟରେ କଟକରେ କେବଳ ହାତଟଣା ରିକ୍ସା ଓ କେତୋଟି ଘୋଡ଼ାଗାଡ଼ି ଥିଲା। ମୋଟରକାର ମୁଷ୍ଟିମେୟ ଧନୀଲୋକଙ୍କର ଥାଏ। ତେଣୁ ଛାତ୍ରମାନଙ୍କ ପକ୍ଷରେ କଲେଜକୁ ଯିବାଆସିବା କରିବା ଏକ କଷ୍ଟକର ବ୍ୟାପାର ଥିଲା। ଛାତ୍ରାବାସର ପିଲାମାନଙ୍କୁ ଛାଡ଼ିଦେଲେ ସହରରୁ ଆସୁଥିବା ଅନ୍ୟ ପିଲାମାନଙ୍କୁ ଦିବ୍ୟାଧ୍ୟାୟୀ ଛାତ୍ର (day scholars) ବୋଲି କୁହାଯାଉଥିଲା। ସେମାନେ ଚାଲି ଚାଲି କଲେଜକୁ ଆସୁଥିଲେ। ଜଣେ ଜଣେ ସାଇକେଲରେ ଆସୁଥିଲେ। ଧନୀଲୋକର ପିଲାମାନେ ଘୋଡ଼ାଗାଡ଼ିରେ ଯାଉଥିଲେ। ମାସକୁ ତିରିଶ ଚାଳିଶ ଟଙ୍କା ଭଡ଼ାରେ ଘୋଡ଼ାଗାଡ଼ି ମିଳୁଥିଲା। ପରେ ପରେ ହାତଟଣା ରିକ୍ସା ସାଙ୍ଗକୁ ସାଇକେଲ ରିକ୍ସାର ପ୍ରଚଳନ ହେଲା। କଲେଜ ଛାତ୍ରାବାସରେ ରହିବା ଅପେକ୍ଷାକୃତ ଅଧିକ ବ୍ୟୟସାପେକ୍ଷ ଥିଲା। ଯିବା ଆସିବାର ଅସୁବିଧା ସତ୍ତ୍ୱେ, ଛାତ୍ରମାନେ ଆଖପାଖ ଅଞ୍ଚଳରେ ମେସ୍ କରି ରହୁଥିଲେ।

ସେତେବେଳେ ହଷ୍ଟେଲ ଖର୍ଚ୍ଚ ମାସକୁ ପ୍ରାୟ ପନ୍ଦରରୁ କୋଡ଼ିଏ ଟଙ୍କା ପର୍ଯ୍ୟନ୍ତ ଥିଲା । ଖାଇବା ପିଇବାର ସୁବିଧା ଲାଗି ସାଧାରଣ ମେସ କରାଯାଇଥିଲା । ଘଣ୍ଟା ବାଜିଲେ ହଷ୍ଟେଲର ଛାତ୍ରମାନେ ଖାଇବାକୁ ମେସକୁ ଯାଆନ୍ତି । ନିୟମିତ ଆମିଷ ଓ ନିରାମିଷ ଆହାରର ବ୍ୟବସ୍ଥା ଥାଏ । ମୁଁ ଓ ମୋର ସମଭାବାପନ୍ନ କେତେକ ବନ୍ଧୁ ରେଭେନ୍‌ସା କଲେଜ ନିକଟସ୍ଥ ଚାଉଳ କଳ ପାଖରେ, ଗୋଟିଏ ପକ୍କା ଘର ଭଡ଼ା ନେଇ ଗୋଟିଏ ମେସ୍ ଆରମ୍ଭ କରିଥିଲୁ । ତାର ନାମ ଥିଲା ବିଶ୍ୱଭୁବନ ମେସ୍ । ମୁଁ ସେଇ ମେସରେ ସ୍ଥାୟୀ ଭାବରେ ନ ରହୁଥିଲେ ମଧ୍ୟ ସେଠାରେ ଥିବା ମୋ ବନ୍ଧୁମାନଙ୍କ ସହିତ ବିଭିନ୍ନ ଆଲୋଚନା ଓ ଆମୋଦ ପ୍ରମୋଦରେ ବରାବର ଯୋଗ ଦେଉଥିଲି ।

ମଦନା କଳଖିଆ ଦୋକାନୀ ଓ କୁଞ୍ଜିଆ ପାନ ଦୋକାନୀ ଉଭୟେ ଛାତ୍ରମାନଙ୍କୁ ଆବଶ୍ୟକସ୍ଥଳେ ବାକିଆ ଦେଣନେଣ କରୁଥିଲେ । ପିଲାମାନେ କଲେଜ ଛାଡ଼ି ଚାକିରି କଲାପରେ ମଦନା ଓ କୁଞ୍ଜିଆର ବାକିଆ ଟଙ୍କା ଶୁଝି ଦେଉଥିଲେ । କଲେଜଛକରେ ଥିବା ଏହି କଳଖିଆ ଓ ପାନ ଦୋକାନ ଦୁଇଟି, ଛାତ୍ର ଓ ରାଜନୈତିକ ଦଳର ସଭ୍ୟମାନଙ୍କର ଆଡ୍ଡାସ୍ଥଳୀ ଥିଲା । ବେଳେ ବେଳେ ଅଣଛାତ୍ରମାନେ ମଧ୍ୟ ଏଠାରେ ଏକତ୍ରିତ ହେଉଥିଲେ । ମଦନା ଓ କୁଞ୍ଜିଆ ଦୁହେଁ ଭଲଲୋକ ଥିଲେ । କେବଳ ବ୍ୟବସାୟୀ ଭାବରେ ସେମାନେ ପିଲାମାନଙ୍କୁ ଉତ୍ତମ ବ୍ୟବହାର ଦେଖାଉ ନଥିଲେ, ପିଲାମାନଙ୍କ ପ୍ରତି ଏ ଦୁହିଁଙ୍କର ଅକୁଣ୍ଠ ସ୍ନେହ ଓ ଉଦାରତା ଥିଲା । ବହୁ ଗରିବ ଛାତ୍ର ଏମାନଙ୍କ ଦ୍ୱାରା ଉପକୃତ ହେଉଥିଲେ । ଆମ କଲେଜ ଜୀବନର ଏମାନେ ଏକ ଅଂଶ ଭାବରେ ଥିଲେ କହିଲେ ଭୁଲ ହେବ ନାହିଁ ।

ପଶ୍ଚିମ ଛାତ୍ରାବାସରେ ଥିବା ବାଞ୍ଛା କଳଖିଆ ଦୋକାନ ମଧ୍ୟ ଛାତ୍ରମାନଙ୍କର ଅତି ପ୍ରିୟ ଥିଲା । କଲେଜ ଛାଡ଼ିବା ପରେ ମଧ୍ୟ ପିଲାମାନେ କେବେ କେବେ କଲେଜ ଆସିଲେ ବାଞ୍ଛାକୁ ଖୋଜନ୍ତି ।

**କନିକା ଲାଇବ୍ରେରୀ**

ଆମ କଲେଜ ଲଇବ୍ରେରୀ ନାଁ କନିକା ଲାଇବ୍ରେରୀ । କନିକାର ତତ୍କାଳୀନ ରାଜା ଏହି ପାଠାଗାର ନିମନ୍ତେ ବହୁ ଅର୍ଥ ପ୍ରଦାନ କରିଥିବାରୁ କନିକା ନାମ ଅନୁସାରେ ଏହାର ନାମ କନିକା ଲାଇବ୍ରେରୀ ହୋଇଛି । ବିରାଟ ଏକ ଘରେ ଲାଇବ୍ରେରୀର ସମସ୍ତ ପୁସ୍ତକ ଓ ପତ୍ରପତ୍ରିକା ସୁରକ୍ଷିତ ରହିଥାଏ । ରେଭେନ୍‌ସା କଲେଜର କେନ୍ଦ୍ରସ୍ଥଳରେ ଏହା ପ୍ରତିଷ୍ଠିତ ଓ ଦୂରରୁ ଖୁବ୍ ସୁନ୍ଦର ଦିଶେ । ପୋର୍ଟିକୋ ପାଖରୁ ଏକ ସିଧାସଳଖ ରାସ୍ତା ଲାଇବ୍ରେରୀକୁ ପଡ଼ିଛି । ମୋ ପଢ଼ିବା ସମୟରେ ଲାଇବ୍ରେରୀ ପାଖକୁ ଲାଗି ଯେଉଁ ଛୋଟ କୋଠରିଟି ଥିଲା, ସେଠାରେ ଇଂରାଜୀ ଏମ୍.ଏ. କ୍ଲାସ୍ ହେଉଥିଲା । ମାତ୍ର ଦଶ ପନ୍ଦର ଜଣ ଛାତ୍ର ଏମ୍.ଏ. ପଢୁଥିଲେ । କେବଳ ଇଂରାଜୀରେ ସ୍ନାତକୋତ୍ତର ବିଭାଗ ଖୋଲିଥିଲା ।

ରେଭେନ୍‌ସା କଲେଜକୁ ଯିବାଆସିବା କରିବା ସମୟରେ ମୁଁ ଦୋଳମୁଣ୍ଡାଇ-ବକ୍ସିବଜାର ରାସ୍ତା କିମ୍ବା ଦୋଳମୁଣ୍ଡାଇ-ଛତ୍ରବଜାର ବାଟ ଦେଇ ଯାଉଥିଲି । ସେସବୁ ରାସ୍ତାରେ ଆଦୌ ଜନଗହଳି ନଥିଲା । ଆଜିକାଲି ସେସବୁ ରାସ୍ତା ଏତେ ଭିଡ଼ ରହୁଛି ଯେ, ଅନେକ ସମୟରେ ଦୁର୍ଘଟଣା ହେବାର ଆଶଙ୍କା ରହୁଛି । କିନ୍ତୁ ସେତେବେଳେ ଏପରି ନିର୍ଜନ ରହୁଥିଲା ଯେ, ଦିନବେଳେ ଗଲେ ବି ଡର ମାଡ଼େ । ବକ୍ସିବଜାର ଛକରେ ଥାଏ ଗୋଟାଏ ମଦଭାଟି । ସେଠି ମଦୁଆ ଲୋକଙ୍କର ଆଡ୍ଡା । ଛତ୍ରବଜାରରେ ମଧ୍ୟ ଗୋଟିଏ ଛୋଟ ମଦଭାଟି ଥାଏ ।

ଦିନକର କଥା । ମୁଁ କଲେଜରୁ ଫେରୁଥାଏ । ଏକୁଟିଆ । ବକ୍ସିବଜାର ଭାଟିରେ ଦଳେ ମଦୁଆଙ୍କ ଭିତରେ ଲାଗିଥାଏ କଳିକଜିଆ । ଜଣେ କହୁଥାଏ ଆରେ କାନିସ୍, ଭଗବାନ ବୋଲେଚେନ, ଆମି ମାତାଲଦେର୍ ଆଷ୍ଟ୍ରାୟ ଥାକି । ମଦ ଖାଇଲୁ ବୋଲି କଣ ଆମେ ଅମଣିଷ ହୋଇଗଲୁ ? ଭଗବାନ ବି ଆମକୁ ଶ୍ରଦ୍ଧା କରନ୍ତି । ଅନ୍ୟ ଜଣେ ମଦୁଆ ପାଣି ପିଉ ପିଉ ଟୋପାଏ ପାଣି ହାତରେ ରଖି କହୁଥାଏ- ଜଲ୍ ! ଏଇ ଜନ୍ୟେଇ ତୋମାର ନାମ ଜୀବନ । ତାଠୁଁ ଏଭଳି କଥା ଶୁଣି ମୋର ଧାରଣା ହେଲା, ମଦୁଆ ହେଲେ ବି ଇଏ ପାଠପଢୁଆ ଲୋକ ! ଆଶ୍ଚର୍ଯ୍ୟ ଲାଗେ, ମଦନିଶାର କି ଠାଣି !

**କଲେଜ ଡ୍ରାମା**

ପାଠ୍ୟକ୍ରମ ସହିତ ନାଟକ ଓ ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମ ଅଙ୍ଗୀଭୂତ ଥିଲା । ଛାତ୍ରର ମାନସିକ ବିକାଶ, ଶାରୀରିକ ବିକାଶ ଓ ଛାତ୍ରକୁ ସଂସ୍କୃତି ସଚେତନ କରିବା ନିମନ୍ତେ ଏସବୁର ଆବଶ୍ୟକତା ରହିଥିଲା । ବାର୍ଷିକୋତ୍ସବ, କ୍ରୀଡ଼ାଉତ୍ସବ ପ୍ରଭୃତି କଲେଜର ଆକର୍ଷଣୀୟ ଉତ୍ସବ ଥିଲା । ମୁଁ ଓ ମୋର କେତେକ ସହପାଠୀ ଏସବୁ କାର୍ଯ୍ୟକଳାପରେ ଅତ୍ୟନ୍ତ ଆଗ୍ରହର ସହିତ ଯୋଗ ଦେଉଥିଲୁ । ବିଶେଷକରି ଡ୍ରାମାରେ ମୋର ଅଧିକ ଉତ୍ସାହ ଓ ଆଗ୍ରହ ରହିଥିଲା । ସେଇ ସମୟର ଗୋଟିଏ ଘଟଣା ମୋର ଏବେ ବି ମନେଅଛି ।

ପରମାନନ୍ଦ ପଟ୍ଟନାୟକ ନାମକ ଜଣେ ସୁନ୍ଦର ସୁଦର୍ଶନ ଯୁବକ ବେଶ୍ ବେଶପୋଷାକ ପିନ୍ଧି କଲେଜ ଆସନ୍ତି । ପରିଧାନରେ ତାଙ୍କର ପେଣ୍ଟ, କୋଟ୍, ଟାଇ । ଆମ ଭିତରୁ ଖୁବ୍ କମ୍ ପିଲା ପେଣ୍ଟ ପିନ୍ଧୁଥିଲେ । ପରମାନନ୍ଦ ବାବୁଙ୍କର ଧାରଣା ଥିଲା ତାଙ୍କ ଚେହେରା ଠିକ୍ ରାଜା ଚେହେରା ଭଳି । ଥରେ ସେ କଲେଜ ଡ୍ରାମାରେ ରାଜା ପାର୍ଟ ନେବାକୁ ମନ କଲେ । ଥିଏଟର ଦାୟିତ୍ୱରେ ଥିଲେ ପ୍ରଫେସର ନାରାୟଣ ମିଶ୍ର । ସେ ପରମାନନ୍ଦଙ୍କୁ କହିଲେ, ରାଜା ଚେହେରା ଥିଲେ କଣ ହେଲା, ତୋର ତ ଗୁଣ ନାହିଁ । ତାଙ୍କୁ ଅନ୍ୟ ଗୋଟିଏ ଭୂମିକା ଦିଆଗଲା । ମାତ୍ର ନାଟକ ଆରମ୍ଭ ହେବା ସଙ୍ଗେ ସଙ୍ଗେ ପରମାନନ୍ଦ ହଠାତ୍ ରାଜାପୋଷାକ ପିନ୍ଧି ମଞ୍ଚ ଉପରେ ଆସି ପହଞ୍ଚିଗଲେ ଓ ଦର୍ଶକମାନଙ୍କୁ ଲକ୍ଷ୍ୟକରି କହିଲେ, ଆପଣମାନେ ମୋ ରୂପକୁ ଦେଖନ୍ତୁ । ମୁଁ ରାଜା ରୋଲ୍ କରିବି

ନା ଯାହାକୁ ଦିଆଯାଇଛି ସେ କରିବ ? କାହା ଚେହେରା ରାକାପରି ଦିଶୁଛି କହିଲେ ? ଏପରି ଅଭାବିତ ପରିସ୍ଥିତି ପାଇଁ କେହି ପ୍ରସ୍ତୁତ ନ ଥିଲେ । ଚାରିଆଡ଼ୁ ଡ୍ରପ୍ ଡ୍ରପ୍ ବୋଲି ଚିତ୍କାର ଶୁଭିଲା । ସଙ୍ଗେ ସଙ୍ଗେ ଡ୍ରପ୍ ସିନ୍ ପକାଇ ଦିଆଗଲା । ଗୋଳମାଳର ଆଶଙ୍କା କରି ଡ୍ରାମାର ଉଦ୍ୟୋକ୍ତାମାନେ ପରମାନନ୍ଦଙ୍କୁ ବୁଝାଇଦେଇ ଷ୍ଟେଜରୁ ତଳକୁ ଓହ୍ଲାଇ ଆଣିଲେ । ହାସ୍ୟରୋଳରେ ସାରା ଅଡ଼ିଟୋରିୟମ ଉଚ୍ଛୁଳି ଉଠିଲା ।

ଏହି ଘଟଣାର ଦୁଇ ତିନି ଦିନ ପରେ ପରମାନନ୍ଦ ଟିକିଏ ବିଳମ୍ବରେ ଶ୍ରେଣୀରେ ପହଞ୍ଚିଲେ । ସେତେବେଳେ ଆମ ଓଡ଼ିଆ କ୍ଲାସ ନେଉଥାନ୍ତି ପ୍ରଫେସର ଆର୍ତ୍ତବଲ୍ଲଭ ମହାନ୍ତି । ସେ ତାଙ୍କୁ ପଚାରିଲେ, ପରମାନନ୍ଦ, କାହିଁକି ଏତେ ଡେରିରେ କ୍ଲାସକୁ ଆସିଲ ? ବେଶ୍ ନାଟକୀୟ ଭଙ୍ଗୀରେ ଉତ୍ତର ଦେଲେ ପରମାନନ୍ଦ, ସାର୍ ହୋଇଗଲା ଟିକିଏ ବିଳମ୍ବ ! ତେବେ କି ମୁଁ କରିବି ପ୍ରସ୍ଥାନ ? ପ୍ରଫେସର କହିଲେ, ଅବିଳମ୍ବେ ପ୍ରସ୍ଥାନ କର । ପରମାନନ୍ଦ ନମସ୍କାର କଲେ ଓ ପ୍ରସ୍ଥାନ କଲେ । କ୍ଲାସରେ ପ୍ରବଳ ହାସ୍ୟରୋଳର ଉଚ୍ଛ୍ୱାସ ଖେଳିଗଲା ।

ଆଇ.ଏ. ଓ ବି.ଏ. ଛଡ଼ା ଏମ୍.ଏ. କେବଳ ଇଂରାଜୀରେ ଥିଲା । ଆମ କଲେଜରେ ଇଂରାଜୀ ଏମ୍.ଏ.ରେ ସେତେବେଳେ ମାତ୍ର ଦଶ ବାରକଣ ଛାତ୍ର ଥିଲେ । ଅନ୍ୟାନ୍ୟ ବିଷୟରେ ଏମ୍.ଏ. ପଢ଼ିବାକୁ ହେଲେ ପାଟନା ବା ଅନ୍ୟତ୍ର ଯିବାକୁ ପଡ଼ୁଥିଲା । ସେତେବେଳେ ମାଟ୍ରିକ୍ ଠାରୁ ଏମ୍.ଏ. ପର୍ଯ୍ୟନ୍ତ ସବୁ ପରୀକ୍ଷା ପାଟନା ବିଶ୍ୱବିଦ୍ୟାଳୟ ପରିଚାଳନା କରୁଥିଲେ । ୧୯୪୩ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହେଲା । ୧୯୪୪ ମସିହା ପରଠାରୁ ଆଉ ଛାତ୍ରମାନଙ୍କୁ ପାଟନା ଯାଇ ପରୀକ୍ଷା ଦେବାକୁ ପଡ଼ୁନଥିଲା ।



***ଅନେକ ଦିନର ଅନେକ କଥା,*** ନାଳନ୍ଦା, କଟକ, ୧୯୮୬

# କଲେଜ ଜୀବନର କଥା

## ବୀଣା ଦେଇ

ଏଥରକ ପୁଣି ପୂର୍ବ ପ୍ରସଙ୍ଗକୁ ଫେରିବା । ମୁଁ ଭାବିଥିଲି ଆମମାନଙ୍କର ପାଠ ପଢ଼ିବା ବନ୍ଦ କରିବା ପାଇଁ ଯେଉଁ ଚେଷ୍ଟା ଚାଲିଥିଲା, ତାହା ବୋଧହୁଏ ଏଣିକି ବନ୍ଦ ହୋଇଯିବ । କିନ୍ତୁ ଦେଖାଗଲା ତାହା ପୂର୍ବବତ୍ ଚାଲୁ ରହିଲା । କେବଳ ଆମର ପୂଜ୍ୟ ଶିକ୍ଷକ ଜୟକୃଷ୍ଣ ଦାସ, ଗୋପାଳ ମାମୁ ଏବଂ ସ୍ୱାଧୀନତା ସଂଗ୍ରାମୀ ଲକ୍ଷ୍ମୀନାରାୟଣ ସାହୁଙ୍କ ବ୍ୟତୀତ ବାକି ଅନ୍ୟ ସମସ୍ତଙ୍କର ଆମ ପାଠପଢ଼ା ବିରୁଦ୍ଧରେ ମତ ରହିଥାଏ । ଆମର ପରୀକ୍ଷା ଦିନ ଯେତିକି ନିକଟ ହୋଇ ଆସୁଥାଏ, ଆମ ପାଠପଢ଼ା ବିରୁଦ୍ଧରେ ସେମାନଙ୍କର ବିଦ୍ରୋହ ଓ ଆପତ୍ତି ତୀବ୍ରତର ହେଉଥାଏ । ଯାହାହେଉ ଆମେ ଦୁଇ ଭଉଣୀ, ମୁଁ ଓ କ୍ୟୋତ୍ସ୍ନା ଘରୋଇ ଛାତ୍ରୀ ଭାବରେ ମାଟ୍ରିକ୍ୟୁଲେସନ୍ ପରୀକ୍ଷା ଦେଇ ପାଟଣା ୟୁନିଭର୍ସିଟିରୁ ୧୯୨୪ ମସିହା ଏପ୍ରିଲ୍ ମାସରେ ବାଳିକାମାନଙ୍କ ଭିତରେ 'ଯୁଗ୍ମ ଭାବେ' ପ୍ରଥମ ହୋଇ ପାସ୍ କଲୁ ଏବଂ ଦୁଇକଣ ଯାକ ଗୋଟିଏ ଲେଖାଏ 'Queen Marry's Medal' ପାଇଲୁ । ଆମ ଦୁହିଁଙ୍କୁ ମାସିକ କୋଡ଼ିଏ ଟଙ୍କା ହିସାବରେ ବୃତ୍ତି ମଧ୍ୟ ମିଳିଲା । ସେ ସମୟରେ ଖବର କାଗଜରେ ମାଟ୍ରିକ୍ ପାସ୍ କରୁଥିବା ପିଲାମାନଙ୍କର ନାମ ଓ ଡିଭିଜନ୍ ଇତ୍ୟାଦି ପ୍ରକାଶିତ ହେଉଥାଏ । ଆମେ ଦୁହେଁ ଉଚ୍ଚ ନମ୍ବର ରଖି ପାସ୍ କରିବା, ମେଡ଼ାଲ୍ ପାଇବା ଏବଂ ବୃତ୍ତି ମିଳିବା ଖବର ମଧ୍ୟ ଖବରକାଗଜରେ ବାହାରିଲା । ଏକଥା ଶୁଣି ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ । ଅନେକ ଲୋକ ଆମ ଘରକୁ ଆସି ପ୍ରଶଂସା କରିବାକୁ ଲାଗିଲେ । ସେହିଦିନଠାରୁ ସବୁ ମାଆମାନେ, ସେମାନଙ୍କ ଝିଅମାନେ କିପରି ଓଡ଼ିଆ ପାଠ ପଢ଼ିବେ, ସେ ଦିଗରେ ଆଗ୍ରହୀ ହୋଇଉଠିଲେ । ଯେଉଁ ହିନ୍ଦୁ ଝିଅମାନେ ସପ୍ତମ ଶ୍ରେଣୀରେ ପଢୁଥିଲେ ଏବଂ ସେମାନଙ୍କୁ ସେହିଠାରୁ ସ୍କୁଲରୁ ଉଠାଇ ନେଇଯିବା କଥା ସେମାନେ ଆଉ ସ୍କୁଲ୍ ନଛାଡ଼ି ରହିଗଲେ ଏବଂ ଆମର ପାସ୍ କରିବାର ପାଞ୍ଚବର୍ଷ ପରଠାରୁ ଓଡ଼ିଆ ହିନ୍ଦୁ ଘରର ଝିଅ ମାଟ୍ରିକ୍ୟୁଲେସନ୍ ପର୍ଯ୍ୟନ୍ତ ପଢ଼ିବାକୁ ଲାଗିଲେ । ତେଣିକି ସେମାନେ ଆଗେଇ ଚାଲିଲେ । ମୁଁ ଏତେ କଷ୍ଟ ସ୍ୱୀକାର କରି ପାଠ ପଢ଼ିଥିଲି ବୋଲି ଅନ୍ୟ ଝିଅମାନଙ୍କ ପାଇଁ ବାଟ ଫିଟିଗଲା । ଏ କଥା ଭାବିଲେ ମୋ ମନରେ ଅତ୍ୟନ୍ତ ଆନନ୍ଦ ଜାତ ହୁଏ ଏବଂ ମୁଁ ପରମ ସନ୍ତୋଷ ଲାଭ କରେ । କେହି

କେହି ହୁଏତ ଭାବିପାରନ୍ତି ଯେ ଓଡ଼ିଶାର ହିନ୍ଦୁଘରର ଝିଅମାନଙ୍କର ଉଚ୍ଚ ଶିକ୍ଷାର ପଥ ପ୍ରଦର୍ଶକ ମୁଁ ନୁହେଁ। ସେମାନଙ୍କୁ ମୁଁ କହିବାକୁ ଚାହେଁ ଯେ, ଝିଅମାନେ ଯଦି ଆଗରୁ ପଢ଼ିଥାନ୍ତେ, ତା'ହେଲେ ଆମେ ଦୁଇ ଭଉଣୀ ୧୯୨୪ ମସିହାରେ ପାସ୍ କରିବାର ଠିକ୍ ପରେ ପରେ ୧୯୨୫ ଓ ୧୯୨୬ରେ ମଧ୍ୟ ସେମାନେ କ୍ରମାନ୍ୱୟରେ ପାସ୍ କରିଥାନ୍ତେ। କିନ୍ତୁ ତାହା ନହୋଇ ଆମେ ପାସ୍ କରିବାର ୩-୪ ବର୍ଷ ବ୍ୟବଧାନରେ ଦ୍ୱିତୀୟ ବ୍ୟାଚ୍‌ର ଝିଅ ମାଟ୍ରିକ୍ୟୁଲେଟ୍ ହୋଇ ବାହାରିଲେ।

ଏଥିରୁ କ'ଣ ଜଣାଯାଏ ନାହିଁ କି ଆମେ ପଢ଼ିବା ଦ୍ୱାରା ସେମାନେ ଅନୁପ୍ରାଣିତ ହୋଇ ନିଜେ ପଢ଼ିବାକୁ ଲାଗିଲେ ? ଆଉ କେତେ ଜଣ ଭଦ୍ରଲୋକ ଆମେ ମାଟ୍ରିକ୍ ପାସ୍ କରିବା ପରେ ତାଙ୍କର ପ୍ରଥମ ଦୁଇ-ତିନି ଝିଅଙ୍କୁ ନପଢ଼ାଇ ସାନ ଝିଅମାନଙ୍କୁ ପଢ଼ାଇବାକୁ ଲାଗିଲେ। ଏହାର କାରଣ, ନାରୀ ଶିକ୍ଷା ତଥାପି ଅଗ୍ରଗତି କରି ନଥିଲା। ଏହିପରି ଆହୁରି ଅନେକ ଉଦାହରଣ ଦିଆଯାଇପାରେ। ବର୍ତ୍ତମାନ ପରି ସେ ସମୟରେ ପୁରୁଷ ପିଲାଙ୍କ ସ୍କୁଲ୍ ଓ କଲେଜରେ ଝିଅମାନଙ୍କୁ ଅନୁମତି ମିଳୁ ନଥିବାରୁ ରେଭେନ୍‌ସା ବାଳିକା ବିଦ୍ୟାଳୟରେ ଆଇ.ଏ. (ସେ ସମୟରେ ଏଫ୍.ଏ.)ର ଦୁଇଟି କ୍ଲାସ୍ ଖୋଲା ହୋଇଥିଲା। କିନ୍ତୁ ସେଥିରେ ଓଡ଼ିଆ ଏବଂ ଇଂରାଜୀ, ଏହି ଦୁଇଟି ବାଧ୍ୟତାମୂଳକ ବିଷୟ ଛଡ଼ା ଆଉ ତିନୋଟି ବିଷୟ ପଢ଼ିବାର ସୁବିଧା ଥିଲା, ତାହା ହେଲା, Logic, Sanskrit ଏବଂ Botany। କିନ୍ତୁ Botany ପଢ଼ିବା ପାଇଁ ରେଭେନ୍‌ସା କଲେଜକୁ ଯିବାକୁ ପଡୁଥିଲା। ସପ୍ତାହରେ ଦୁଇ ଦିନ ସେଠାରେ ବୋଟାନୀ ପଢ଼ାଇବାର ବ୍ୟବସ୍ଥା ଥାଏ। ସେ ସମୟରେ ଆମେ ପାଞ୍ଚଜଣ ଝିଅ, ଯଥା-ଆମେ ଦୁଇ ଭଉଣୀ (ମୁଁ ଆଉ ଜ୍ୟୋତ୍ସ୍ନା) ଏବଂ ତିନି ଜଣ ଖ୍ରୀଷ୍ଟିଆନ୍ ଝିଅ-ବନଲତା ଯାଚ଼କ, ଶାନ୍ତା ଚୌଧୁରୀ ଏବଂ ଫୁଲମଣି ନାୟକ ପଢୁଥିଲୁ। ସପ୍ତାହରେ ଯେଉଁ ଦୁଇଦିନ ଆମର ବୋଟାନୀ କ୍ଲାସ୍ ଥାଏ ସେଦିନ ଦୁଇଦିନ ଅନ୍ୟ କୌଣସି ପୁରୁଷ ପିଲାଙ୍କୁ ବୋଟାନୀ ପଢ଼ାଯାଏ ନାହିଁ। ଆମେ କଲେଜରେ ପ୍ରାୟ ପାଞ୍ଚ ଘଣ୍ଟା ରହୁ ଏବଂ ଏକାଦିନକେ ବୋଟାନୀର ଥିଓରି ଏବଂ ପ୍ରାକ୍‌ଟିକାଲ୍ କ୍ଲାସ୍ ହୁଏ। ପ୍ରଫେସର ଡକ୍ଟର ପରିଜା, ଡକ୍ଟର ସୁବ୍ରତ ଚାଟାର୍ଜୀ, ଡକ୍ଟର ମିଶ୍ର ଏବଂ ଆଉ ଜଣେ ପ୍ରାକ୍‌ଟିକାଲ୍ କ୍ଲାସ୍‌ର ଭଦ୍ରଲୋକ ଆମକୁ ପଢ଼ାନ୍ତି। ରେଭେନ୍‌ସା ବାଳିକା ବିଦ୍ୟାଳୟରୁ ପ୍ରାୟ ଦିନ ୧୧ଟା ୩୦ରେ ଗୋଟିଏ ଘୋଡ଼ା ଗାଡ଼ିରେ ବସି ଆମେ କଲେଜକୁ ଆସୁ ଏବଂ ଆମକୁ ଜଗିବା ପାଇଁ ଆମର ଲଜିକ୍ ପ୍ରଫେସର ମିସ୍ ଭକ୍ତିଲତା ଚାନ୍ଦ୍ ଆମ ସାଙ୍ଗରେ ଯାଆନ୍ତି ଏବଂ ଆମର ପଢ଼ା ସରିବା ପର୍ଯ୍ୟନ୍ତ ସେ ପ୍ରଫେସରଙ୍କ କମନ୍‌ରୁମ୍‌ରେ ବସନ୍ତି। ଆମର ପଢ଼ା ସରିଲେ ସେ ଆମ ସାଥିରେ ସ୍କୁଲକୁ ଫେରନ୍ତି। ଘୋଡ଼ାଗାଡ଼ିରେ ଗଲାବେଳେ ଗାଡ଼ିର ଝିଡ଼ିକି ସବୁ ବନ୍ଦ ହୁଏ। ତଥାପି ଆମ କଲେଜରେ ପହଞ୍ଚି ଗାଡ଼ିରୁ ଓହ୍ଲାଇଲାବେଳେ, ପୁଣି ପଢ଼ା ଶେଷରେ ଗାଡ଼ିରେ ଉଠିଲାବେଳେ ପୁରୁଷ ପିଲାମାନେ ଏଠିସେଠି ଉଙ୍କିମାରି ଆମକୁ ଚାହାଁନ୍ତି।

ଦିନେ ଆମେ କଲେଜକୁ ଗଲାବେଳେ ଦେଖାଗଲା ଘୋଡ଼ାଗାଡ଼ିରେ ଗୋଟିଏ ଖିଡ଼ିକି ଭଙ୍ଗା ଥିଲା ଏବଂ ସେଇ ବାଟ ଦେଇ ମିସ୍ ଚାନ୍ଦଙ୍କ ଦେହରେ ଖରା ପଡୁଥିଲା । ସେ ବିରକ୍ତି ପ୍ରକାଶ କରି ଗାଡ଼ିବାଲା ଉଦ୍ଦେଶ୍ୟରେ ଟିପ୍ପଣୀ କରି କହିଲେ - "ବୋକାଟା ଗୋଟାଏ ଭଙ୍ଗା ଗାଡ଼ିରେ ବସାଇ ଆମକୁ ଖରା ଖୁଆଇ ଖୁଆଇ ଆଣିଲା ।" ସେ ପୁଣି ଧୀର ସ୍ୱରରେ କହିଲେ- "ଉଡ଼େ ବୁଦ୍ଧି ତ ।" ଏ କଥା ମୁଁ ଶୁଣି ପାରିଥିଲି; କିନ୍ତୁ ଆମେ ଏତେଜଣ ଓଡ଼ିଆଣୀ ଥାଇ ସେ ଆମ ସାମ୍ନାରେ ଏଭଳି କହିଥିବେ ବୋଲି ମୋର ବିଶ୍ୱାସ ହେଲା ନାହିଁ । ପ୍ରତିଥର ଆମେ କଲେଜ ପଢ଼ାସାରି ରେଭେନ୍ସା ବାଳିକା ବିଦ୍ୟାଳୟର ହଷ୍ଟେଲ୍‌ରେ ଓହ୍ଲାଉ ଏବଂ ସେଠାରୁ ନିଜ ନିଜ ଘରକୁ ଯାଉ । ମିସ୍ ଚାନ୍ଦ୍ ହଷ୍ଟେଲ୍‌ରେ ରହନ୍ତି । ଗାଡ଼ିରୁ ଓହ୍ଲାଇବା ପରେ ସହପାଠିନୀ ଫୁଲମଣି ମତେ କହିଲା- "ମିସ୍ ଚାନ୍ଦ୍ କ'ଣ କହିଲେ ଶୁଣିଲୁ ତ ଦେଇ । ତୁ କେମିତି ପ୍ରତିବାଦ ନକରି ନୀରବ ରହିଲୁ ?" ଆଚ୍ଛା ହେଉ ଦେଖିବା କହି ମୁଁ ଘରକୁ ଆସିଲି । ପରବର୍ତ୍ତୀ ଦିନ ପୁଣି ଯେତେବେଳେ ଆମେ କଲେଜ ଗଲୁ, ଘୋଡ଼ାଗାଡ଼ି ଚାଲିଥାଏ ମୁଁ କହିଲି- "ଏଇଟା ଭଙ୍ଗାଗାଡ଼ି ନୁହେଁ ତ ? ଗଲାଥର ଉଡ଼େ ବୋକାମି କରି 'ବଙ୍ଗାଳୀ ବୁଦ୍ଧିଆ'ଙ୍କ ଠାରୁ ହକ ପଇସା ନେଲା ଅଥଚ୍ ଖରା ଖୁଆଇ ଖୁଆଇ ନେଲା । ଏଥର ବୁଦ୍ଧିଆ ବଙ୍ଗାଳୀ ବୋକା ଓଡ଼ିଆଙ୍କ ଠକାମିରେ ପଡ଼ି ନାହାନ୍ତି ତ ?" ଏକଥା ଶୁଣି ମିସ୍ ଚାନ୍ଦ୍‌ଙ୍କ ମୁହଁ କଳା ପଡ଼ିଗଲା । ସେ ମୁହଁ ଶୁଖାଇ ମଥା ନତକରି ବସି ରହିଲେ ଏବଂ ଗାଡ଼ି ଭିତରେ ଆମ ସାଙ୍ଗରେ ଆଉ କଥା କହି ନାହାନ୍ତି ।

ଆଉ ଦିନେ କଲେଜ ଗଲାବେଳେ ଘୋଡ଼ାଗାଡ଼ି ଖିଡ଼ିକିର ଝିଲିମିଲି ବାଟେ ବାହାରେ ଥିବା ଫଳନ୍ତି ଓଉଗଛକୁ ଦେଖି ମିସ୍ ଚାନ୍ଦ୍ ମୋତେ ପଚାରିଲେ- "ବୀନାପାନି ! ତୋମରା ଏକେ କି ବଲୋ ?" ମୁଁ କହିଲି - 'ଓଉ' । ସେ ଖୁବ୍ ହସିଲେ । ତେଣୁ ମୁଁ ତାଙ୍କୁ ପଚାରିଲି - "ଆପଣ ଏହାକୁ କ'ଣ କହନ୍ତି ?" ସେ କହିଲେ- 'ଚାଲ୍‌ତା' । ମୁଁ ଖୁବ୍ ଜୋର୍‌ରେ ହସିଲି ଏବଂ ମୋ ସାଥିରେ ସମସ୍ତେ ହସିଲେ। ମିସ୍ ଚାନ୍ଦ୍ ମଧ୍ୟ ହସିହସି କହିଲେ- "ବୀନାପାନି ଏମନ୍ ଯେ ।" ସେ ସବୁବେଳେ ଆମ ସାଥିରେ ବଙ୍ଗଳାରେ କଥାବାର୍ତ୍ତା କରନ୍ତି । କିନ୍ତୁ ଆମେ ସମସ୍ତେ ତାଙ୍କ ସଙ୍ଗେ ଓଡ଼ିଆରେ କଥାବାର୍ତ୍ତା କରିଥାଉ । କାରଣ ଆମ ରାଜ୍ୟକୁ ଆସି ସେ ଓଡ଼ିଆରେ କାହିଁକି ନ କହିବେ ? ମୋତେ ଭଲ ବଙ୍ଗଳା ଜଣା ଥିଲେ ମଧ୍ୟ ମୁଁ ଏବଂ ଅନ୍ୟ ସବୁ ଝିଅ ଓଡ଼ିଆରେ କହୁ ।

ଦିଲ୍ଲୀରେ କେବଳ ଝିଅମାନଙ୍କ ପାଇଁ ଗୋଟିଏ ମେଡ଼ିକାଲ୍ କଲେଜ ଥିଲା, ଯାହାର ନାମ ହେଉଛି ଲେଡ଼ି ହାର୍ଡିଞ୍ଜ ମେଡ଼ିକାଲ କଲେଜ । ସେ କଲେଜର ସମସ୍ତ ଶିକ୍ଷୟିତ୍ରୀ ଥିଲେ ବିଲାତରୁ ଆସିଥିବା ସାହେବାଣୀ । ସମଗ୍ର ଭାରତବର୍ଷରେ ସ୍ତ୍ରୀଲୋକଙ୍କ ପାଇଁ ଏହା ଥିଲା ଏକମାତ୍ର କଲେଜ । ଭାରତବର୍ଷର ସବୁ ପ୍ରଦେଶରୁ ଝିଅମାନେ ଆସି ଏଠାରେ ଡାକ୍ତରି ପଢ଼ନ୍ତି । ଆମେ ସେଠାରେ ପଢୁଥିଲା ବେଳେ ଶ୍ରୀଲଙ୍କାରୁ ଗୋଟିଏ ଖ୍ରୀଷ୍ଟିଆନ୍ ଝିଅ ଆସି ଆମ ସାଥିରେ

ପଢୁଥିଲା । ଏଭଳି ଏକ କଲେଜ ଥିବା କଥା ବାପା ଆଗରୁ ଜାଣି ନଥିଲେ । ଏହି କଲେଜରେ ଦୁଇଟି I.Sc. କ୍ଲାସ୍ ମଧ୍ୟ ସଂଯୁକ୍ତ ହୋଇଥିଲା । ଝିଅମାନେ ମାଟ୍ରିକ୍ ପାସ୍ କରି Lady Hardingeରେ ନାମ ଲେଖାଇ ଦୁଇ ବର୍ଷ ଆଇ.ଏସ୍‌ସି. ପଢ଼ି ତା'ପରେ ମେଡିକାଲ ପାଠ ପଢ଼ନ୍ତି । ଆମେ ଦୁଇ ଭଉଣୀ ରେଭେନ୍‌ସା ଗାର୍ଲସ ସ୍କୁଲ୍‌ରୁ ଆଇ.ଏ. ପାସ୍ କରି ବି.ଏ. ପଢ଼ିବା ପାଇଁ ମାସକୁ କୋଡ଼ିଏ ଟଙ୍କା ବୃତ୍ତି ପାଇବାକୁ ଯୋଗ୍ୟ ବିବେଚିତ ହୋଇଥିଲୁ । ସେହି ସମୟରେ ବିହାର-ଓଡ଼ିଶାର ଶିକ୍ଷାମନ୍ତ୍ରୀ ଓଡ଼ିଶା ପରିଦର୍ଶନରେ ଆସିଥାନ୍ତି । ସେ ବାରିଷ୍ଟର ମଧୁସୂଦନ ଦାସଙ୍କ ଘରେ ରହୁଥାନ୍ତି । ତାଙ୍କ ସହିତ ସାକ୍ଷାତ୍ କରିବାକୁ ବାପା ଆମ ଦୁଇ ଭଉଣୀଙ୍କୁ ସାଥିରେ ନେଇଗଲେ । ଆମେ ପ୍ରଥମବାର ଓଡ଼ିଆ ହିନ୍ଦୁ ଘରର ଝିଅ ହୋଇ ମାଟ୍ରିକ୍ ଓ ଆଇ.ଏ.ରେ ଭଲ ନମ୍ବର ରଖି ପାସ୍ କରିଥିବାର ସେ ଶୁଣିଲେ ଏବଂ ଆମେ ମେଡ଼ିକାଲ୍ କଲେଜରେ ପଢ଼ିବାକୁ ଇଚ୍ଛୁକ ଜାଣି, ଆମକୁ ମେଡ଼ିକାଲ୍ କଲେଜରେ ପଢ଼ିବା ପାଇଁ ମାସକୁ ୪୦ ଟଙ୍କା ଲେଖାଏଁ ବୃତ୍ତି ପ୍ରଦାନ କରିବାକୁ ପ୍ରତିଶ୍ରୁତି ଦେଲେ । ତା'ପରେ ବାପା Lady Hardinge ରେ ଆମର ପଢ଼ିବା ଲାଗି ଦରଖାସ୍ତ କଲେ ଏବଂ ପଢ଼ିବା ପାଇଁ ଆମକୁ ମଞ୍ଜୁରି ମଧ୍ୟ ମିଳିଗଲା ।

ମୁଁ ପିଲାଦିନେ ଶୁଣିଥିଲି ଭଲ ଓକିଲଟିଏ ହେବାକୁ ହେଲେ ବୁଦ୍ଧିର ଆବଶ୍ୟକ ଥାଏ । ଡାକ୍ତରମାନଙ୍କର ବୁଦ୍ଧିର କୌଣସି ଆବଶ୍ୟକତା ନଥାଏ । ଅଧିକ ପାଠ କହିଲେ ଓଡ଼ିଆ, ଇଂରାଜୀ, ସଂସ୍କୃତ, ଲଜିକ୍, ଫିଲୋସଫି ଇତ୍ୟାଦି ବିଷୟରେ ଭଲ ଜ୍ଞାନ ଥିବା ଦରକାର । ଆଇନରେ ଭଲ ଜ୍ଞାନ ଥିବା ମଧ୍ୟ ଦରକାର । ପିଲାଦିନେ ବାପା ଆମର କାନ ଓ ନାକ ଫୋଡ଼ି ଦେଇଥିଲେ । ଫୋଡ଼ିଲାବେଳେ ଔଷଧ ଲଗାଇ ଦେଇଥିଲେ ଏବଂ କାଟିବ ନାହିଁ ବୋଲି କହିଥିଲେ । କିନ୍ତୁ ମୋତେ କାଟିଥିଲା । ସେହିଦିନଠାରୁ ଡାକ୍ତରମାନେ ମିଛୁଆ ଓ ଠକ ବୋଲି ମୋର ଧାରଣା ହୋଇଥିଲା । ସେଇଥିପାଇଁ ମୋର ଇଚ୍ଛା ଥିଲା ମୁଁ ବହୁ ଭାଷା ଜ୍ଞାନ ଅର୍ଜନ କରିବି । ଲଜିକ୍ ଓ ଫିଲୋସଫି ପଢ଼ିବି । ଆଇନ ପଢ଼ି ଓକିଲ ହେବି ଏବଂ ପୁରୁଷମାନଙ୍କୁ ଦେଖାଇ ଦେବି ଯେ ସ୍ତ୍ରୀଲୋକମାନଙ୍କର ମଧ୍ୟ ବୁଦ୍ଧି ଥାଏ । ସେଇଥିପାଇଁ ଡାକ୍ତରି ନ ପଢ଼ିବା ପାଇଁ ମୁଁ ଜିଦି କଲି ।

ଡକ୍ଟର ପରିଜା ଯେତେବେଳେ ଶୁଣିଲେ ଯେ ମୋର ଇଚ୍ଛା ବିରୁଦ୍ଧରେ ମୋତେ ଡାକ୍ତରି ପଢ଼ିବା ପାଇଁ ପଠାଯାଉଛି, ସେତେବେଳେ ସେ କହିଥିଲେ- କାହାରି ଇଚ୍ଛା ବିରୁଦ୍ଧରେ ଅନ୍ୟ ପାଠ ପଢ଼ାଇବା ଅନୁଚିତ । ତେଣୁ ବାପା ମୋତେ କଲିକତା ନେଇଗଲେ ।

•

---

***ଅକିଂଚନାର ଜୀବନସ୍ମୃତି***, କାହାଣୀ, କଟକ, ୨୦୦୧

# ମୋ ଜୀବନ ସ୍ମୃତି

## ଅନନ୍ତ ପ୍ରସାଦ ପଣ୍ଡା

### କଟକରେ ପାଠପଢ଼ା

ବାଲେଶ୍ୱର ଜିଲ୍ଲା ହାଇସ୍କୁଲରୁ କୃତିତ୍ୱର ସହିତ ମେଟ୍ରିକ୍ୟୁଲେସନ ପାସ୍ କଲା ପରେ ମୁଁ ପ୍ରଥମ ଥର ପାଇଁ କଟକ ଆସିଲି ରେଭେନ୍‌ସା କଲେଜରେ ପଢ଼ିବା ପାଇଁ। ରେଭେନ୍‌ସା କଲେଜର ପୂର୍ବ ପାଖ ହଷ୍ଟେଲରେ ଆମର ବାଲେଶ୍ୱର ମେସ୍ ଥିଲା। ସେତେବେଳେ କଲେଜ ହଷ୍ଟେଲରେ ପ୍ରାୟ୍ ପ୍ରତି ଜିଲ୍ଲା ପାଇଁ ଗୋଟିଏ ଗୋଟିଏ ସ୍ୱତନ୍ତ୍ର ମେସ୍ ଥିଲା ଓ ପ୍ରତି ଜିଲ୍ଲାର ପିଲାମାନେ ଏକାଠି ହଷ୍ଟେଲରେ ଗୋଟିଏ ପାଖରେ ରହୁଥିଲେ। ଆମ ବାଲେଶ୍ୱର ଜିଲ୍ଲାର ପିଲାମାନେ ସେତେବେଳେ ପୂର୍ବପାଖ ହଷ୍ଟେଲର ଦକ୍ଷିଣ ଦିଗର ତଳ ମହଲାରେ ରହୁଥିଲେ। ତାର ଠିକ୍ ପାଖରେ ଥିଲା ମୟୂରଭଞ୍ଜ ମେସ୍ ଓ ପୁରୀ ମେସ୍। ସେଥିପାଇଁ ଏଇ ତିନୋଟି ମେସର ପିଲାମାନେ ପ୍ରାୟ୍ ପରସ୍ପର ସହିତ ମିଳାମିଶା କରିବା ପାଇଁ ବିଶେଷ ସୁଯୋଗ ପାଉଥିଲେ।

ପ୍ରଥମେ ମୁଁ ରେଭେନ୍‌ସା କଲେଜରେ ଆଇ.ଏସି. ବା ବିଜ୍ଞାନ ଶ୍ରେଣୀରେ ନାମ ଲେଖାଇଥିଲି। କିନ୍ତୁ କେଜାଣି କାହିଁକି ବିଜ୍ଞାନ ପଢ଼ିବା ପାଇଁ ମୋର ଇଚ୍ଛା ହେଲାନାହିଁ। ସେଥିପାଇଁ ପ୍ରାୟ୍ ଏକ ମାସ ପରେ ମୁଁ ବିଜ୍ଞାନ ଛାଡ଼ି କଳା ବିଭାଗରେ ଯୋଗଦେଲି।

ରେଭେନ୍‌ସା କଲେଜରେ ପଢୁଥିବା ସମୟରେ ଆମ ପୂର୍ବପାଖ ହଷ୍ଟେଲରୁ 'ଜାଗରଣ' ନାମକ ଏକ ହାତଲେଖା ସାହିତ୍ୟ ପତ୍ରିକା ପ୍ରକାଶ ପାଉଥିଲା। ଉକ୍ତ ପତ୍ରିକାରେ ନିୟମିତ ଭାବରେ ଲେଖିବା ଥିଲା ମୋର ଗୋଟିଏ କର୍ତ୍ତବ୍ୟ। ଏଇ ସମୟରେ ମୁଁ ମୋର ପ୍ରଥମ ଗଳ୍ପ ରଚନା ଆରମ୍ଭ କରିଥିଲି। ମୋର ପ୍ରଥମ ଗଳ୍ପ 'ଅନ୍ତିମ ମିଳନ' ଏଇ ହାତ ଲେଖା ସାହିତ୍ୟ ପତ୍ରିକା 'ଜାଗରଣ'ରେ ପ୍ରଥମେ ଆତ୍ମପ୍ରକାଶ କରିଥିଲା।

ତା ପରେ ମୁଁ ଅତୃପ୍ତ ବାସନା ନାମକ ଗୋଟିଏ ଗଳ୍ପ ଲେଖିଲି। ସେତେବେଳେ ଉତ୍କଳ ସାହିତ୍ୟ ଥାଏ ଓଡ଼ିଶାର ଏକ ସୁପ୍ରତିଷ୍ଠିତ ସାହିତ୍ୟ ପତ୍ରିକା। ସେଥିରେ କେବଳ ଲବ୍ଧପ୍ରତିଷ୍ଠ ଲେଖକମାନଙ୍କର ଲେଖା ପ୍ରକାଶ ପାଉଥାଏ। ଏପରି ଏକ ପତ୍ରିକାରେ ଆପଣାର ଲେଖା ପ୍ରକାଶ

କରିବା ନୂତନ ଲେଖକମାନଙ୍କ ପକ୍ଷରେ ଏକବାରେ ଅସମ୍ଭବ ଥିଲା । ସେଇ ସମୟରେ କଟକରୁ ସାହିତ୍ୟିକ ଶ୍ରୀ ଉପେନ୍ଦ୍ର କିଶୋର ଦାସଙ୍କ ଉଦ୍ୟମରେ ବାରୁଣୀ ନାମକ ଏକ ନୂଆ ସାହିତ୍ୟ ପତ୍ରିକା ପ୍ରକାଶ ପାଇଲା । ସେଇଥିରେ ନୂତନ ଲେଖକମାନଙ୍କର ଲେଖା ପ୍ରକାଶ ପାଇବାର ଟିକିଏ ସୁବିଧା ଥାଏ । ସେଥିପାଇଁ ମୋର ଗଳ୍ପ-ଅତୃପ୍ତ ବାସନାକୁ ପ୍ରକାଶ କରିବା ପାଇଁ ଇଚ୍ଛାକରି ମୁଁ ମୋର ଜଣେ ସହପାଠୀଙ୍କୁ ମୋର ଲେଖାଟି ଦେଇ ଗାଁକୁ ଚାଲିଗଲି ଛୁଟିରେ । କେଜାଣି କିପରି ମୋର ସେ ଲେଖାଟି ବାରୁଣୀ ସଂପାଦକଙ୍କ ପାଖରେ ନ ପହଞ୍ଚି ପହଞ୍ଚିଥିଲା ଉତ୍କଳ ସାହିତ୍ୟର ସୁନାମଧନ୍ୟ ଲବ୍ଧପ୍ରତିଷ୍ଠ ସଂପାଦକ ଶ୍ରୀ ବିଶ୍ୱନାଥ କରଙ୍କ ପାଖରେ । ସେ ଉକ୍ତ ଲେଖାଟିକୁ ଉତ୍କଳ ସାହିତ୍ୟରେ ପ୍ରକାଶ କରିଦେଲେ । ତା ପରେ ମୋ ନିକଟକୁ ଖବର ପଠାଇଲେ ତାଙ୍କ ସହିତ ସାକ୍ଷାତ୍ କରିବାପାଇଁ । ଛୁଟିରେ ଫେରି ମୁଁ କଟକ ଆସି ଦେଖେଁ ଯେ ମୋର ଗଳ୍ପ ଅତୃପ୍ତ ବାସନା ଉତ୍କଳ ସାହିତ୍ୟରେ ପ୍ରକାଶ ପାଇଛି । ମୁଁ ଯାଇ ଶ୍ରୀଯୁକ୍ତ ବିଶ୍ୱନାଥ କରଙ୍କ ସହିତ ସାକ୍ଷାତ୍ କଲି । ବାସ୍ତବିକ ଶ୍ରୀଯୁକ୍ତ ବିଶ୍ୱନାଥ କରଙ୍କର ତେଜୋଦୀପ୍ତ ଚକ୍ଷୁ, ଶୁଭ୍ର ସୁଗୌର ଓ ପ୍ରଶସ୍ତ କପାଳ ଦେଖି ଭୟ ଓ ଭକ୍ତିରେ ମୋର ମୁଣ୍ଡ ନଇଁ ପଡ଼ିଲା । ସେ ମୋର ପରିଚୟ ପଚାରିଲେ । ମୁଁ ମୋର ଲେଖା ଅତୃପ୍ତ ବାସନା କରିଆରେ ମୋର ଆତ୍ମପରିଚୟ ଦେଲି । ସେ ମୋତେ କୁଣ୍ଢାଇ ପକାଇ କହିଲେ- ତୁମର ଲେଖାଟି ବେଶ୍ ଭଲ ହୋଇଛି । ଆହୁରି ଗଳ୍ପ ଲେଖ । ଆଜିକାଲି ଓଡ଼ିଆ ଭାଷାରେ କ୍ଷୁଦ୍ରଗଳ୍ପ ଆଦୌ ନାହିଁ କହିଲେ ଚଳେ । ତୁମେ ଆଉ ଗଳ୍ପ ଲେଖିଲେ ମୋଠାକୁ ପଠାଇଦେବ । ମୁଁ ତାକୁ ଉତ୍କଳ ସାହିତ୍ୟରେ ପ୍ରକାଶ କରିବି ।

କହିବା ବାହୁଲ୍ୟ ଯେ ତାଙ୍କର ଏଇ ଶୁଭାଶିଷପୂର୍ଣ୍ଣ ଉତ୍ସାହ ବାଣୀ ମୋତେ ମୋର ସାହିତ୍ୟ ସାଧନା ପଥରେ ବହୁଦୂର ଠେଲି ଦେଇଥିଲା । ମୁଁ ସେଦିନ ହଷ୍ଟେଲକୁ ଫେରି ମୋର ତୃତୀୟ ଗଳ୍ପ- ବାସନା ତୃପ୍ତି ଲେଖିଲି ଓ ଉତ୍କଳ ସାହିତ୍ୟରେ ପ୍ରକାଶ ପାଇଁ ପଠାଇଦେଲି ।

କହିବା ନିଷ୍ପ୍ରୟୋଜନ ଯେ ଉକ୍ତ ଲେଖାଟି ପରବର୍ତ୍ତୀ ଗୋଟିଏ ସଂଖ୍ୟା ଉତ୍କଳ ସାହିତ୍ୟରେ ପ୍ରକାଶ ପାଇଲା । ବାସ୍ତବିକ୍ ସେତେବେଳେ ଓଡ଼ିଆ ସାହିତ୍ୟରେ କ୍ଷୁଦ୍ରଗଳ୍ପର ପ୍ରଚଳନ ଆଦୌ ନଥାଏ କହିଲେ ଚଳେ । ଯଦି କେତେବେଳେ କ୍ଷୁଦ୍ର ଗଳ୍ପଟିଏ କୌଣସି ପତ୍ରପତ୍ରିକାରେ ପ୍ରକାଶ ପାଉଥାଏ, ତେବେ ତାଙ୍କୁ ଅନେକେ ଯଥେଷ୍ଟ ଆଗ୍ରହର ସହ ପାଠ କରୁଥାନ୍ତି । ମୋର ବାସନାତୃପ୍ତି ଗଳ୍ପଟି ପ୍ରକାଶ ପାଇଲା ପରେ ପାଠକ ମହଲରେ, ବିଶେଷତଃ ଛାତ୍ରସମାଜରେ ଯଥେଷ୍ଟ ସମାଦର ଲାଭ କରିବାକୁ ସମର୍ଥ ହୋଇ ପାରିଥିଲା । ବିଶେଷତଃ ଛାତ୍ରସମାଜ ତାକୁ ଏପରି ଭାବେ ଗ୍ରହଣ କରିଥିଲେ ଯେ କେହି ଜଣେ ଛାତ୍ର ମୋର ଉକ୍ତ ଲେଖାଟିକୁ ମୋଠାରୁ କୌଣସି ଅନୁମତି ନ ନେଇ ଇଂରାଜୀରେ ଅନୁବାଦ କରି ରେଭେନ୍ସା କଲେଜରୁ ପ୍ରକାଶିତ 'ରେଭେନ୍ସାଭିଏନ୍' ନାମକ ଇଂରାଜୀ ପତ୍ରିକାରେ ପ୍ରକାଶ କରି ଦେଇଥିଲେ । ସେଇ ଅନାମଧେୟ ମୋ ଗଳ୍ପର ଅନୁବାଦକଙ୍କୁ

ମୁଁ ବାସ୍ତବିକ୍ ମୋର ଅନ୍ତରର ସର୍ବଶ୍ରେଷ୍ଠ ଅଭିନନ୍ଦନ ମନେ ମନେ ପ୍ରଦାନ କରିଥିଲି। ସେ କିନ୍ତୁ ତାଙ୍କ ନାମ ପ୍ରକାଶ କରି ନଥିଲେ। ଏ ପର୍ଯ୍ୟନ୍ତ ସୁଦ୍ଧା ମୁଁ ଜାଣେନାହିଁ, କିଏ ସେହି ବ୍ୟକ୍ତି ଯେ କି ମୋର ବାସନାତୃପ୍ତି ଗଳ୍ପଟିକୁ ଅତି ସୁନ୍ଦର ଭାବରେ ଇଂରାଜୀରେ ଅନୁବାଦ କରି ରେଭେନ୍‌ସାଭିଏନ୍ (Ravenshawvian) ପତ୍ରିକାରେ ପ୍ରକାଶ କରି ଦେଇଥିଲେ।

ମୁଁ ଗଳ୍ପ ଲେଖିବା ସଙ୍ଗେ ସଙ୍ଗେ ନାଟକ ଲେଖିବା ପାଇଁ ମଧ୍ୟ ମନ ବଳାଇଥିଲି। କାରଣ ସେତେବେଳେ କଟକରେ ବାସନ୍ତୀ ପେଣ୍ଡାଲରେ ବଳଙ୍ଗା ଥିଏଟର ପାର୍ଟି ବରାବର ନାଟକ ପ୍ରଦର୍ଶନ କରୁଥିଲେ। ସାଧାରଣତଃ ଅଶ୍ୱିନୀ ବାବୁଙ୍କର ନାଟକଗୁଡ଼ିକ ସେଥିରେ ଅଭିନୀତ ହେଉଥାଏ। ତାଙ୍କର ନାଟକଗୁଡ଼ିକ ତତ୍କାଳୀନ ଅବସ୍ଥାରେ ଦର୍ଶକମାନଙ୍କ ଉପରେ ଯଥେଷ୍ଟ ପ୍ରଭାବ ପକାଇ ପାରୁଥାଏ। ରାତି ଦଶଟା କି ଏଗାରଟା ବେଳେ ନାଟକ ଆରମ୍ଭ ହୁଏ ଓ ରାତି ୨/୩ଟା ଯାଏଁ ନାଟକ ପ୍ରଦର୍ଶନ ଚାଲେ। କଟକ ଜଗନ୍ନାଥବଲ୍ଲଭ ବାସନ୍ତୀ ପେଣ୍ଡାଲ ଆମର ଚାଉଳିଆଗଞ୍ଜ ରେଭେନ୍‌ସା କଲେଜ ହଷ୍ଟେଲଠାରୁ ପ୍ରାୟ ୩/ ୪ ମାଇଲ ଦୂର। ତଥାପି ଆମେ କେତେ ଜଣ ଛାତ୍ର ନିୟମିତ ଭାବରେ ଗୋଟିଏ ଘୋଡ଼ାଗାଡ଼ି କରି ଉକ୍ତ ଥିଏଟର ଦେଖିବାକୁ ଆସୁଥିଲୁ। ଉକ୍ତ ଥିଏଟର ଦର୍ଶନ ଯେପରି ମୋ ପକ୍ଷରେ ଥିଲା ଗୋଟାଏ ନିଶା। ପ୍ରତ୍ୟେକ ନୂଆ ନାଟକର ପ୍ରଦର୍ଶନ ମୁଁ ଦେଖିବାକୁ ଆସେଁ। କହିବା ବାହୁଲ୍ୟ ଯେ, ସେତେବେଳେ କଟକରେ ତାହାହିଁ ଥିଲା ଏକମାତ୍ର ଚିତ୍ତବିନୋଦନ କେନ୍ଦ୍ର; କାରଣ ସେତେବେଳେ କଟକରେ କୌଣସି ସିନେମା ପ୍ରଦର୍ଶିତ ହେଉ ନଥିଲା।

ଏଇ ନାଟକ ଦେଖା ନିଶାରୁ ମୋର ମନରେ ନାଟକ ଲେଖିବାର ପ୍ରବଳ ବାସନା ଜାଗ୍ରତ ହେଲା। ମୁଁ ଭାବିଲି, ଗୋଟିଏ ନାଟକ ଲେଖିବି। ସେତେବେଳେ ରାଜପୁତ୍ ଇତିହାସର ବୀରତ୍ୱପୂର୍ଣ୍ଣ କାହାଣୀ ପାଠକ ତଥା ଦର୍ଶକମାନଙ୍କ ଉପରେ ଯଥେଷ୍ଟ ପ୍ରଭାବ ପକାଇପାରୁଥିଲା। ସେଥିରୁ ମୁଁ ଭାବିଲି, ରାଜସ୍ଥାନ ଇତିହାସର କୌଣସି ବିଷୟବସ୍ତୁ ନେଇ ମୁଁ ଖଣ୍ଡିଏ ଐତିହାସିକ ନାଟକ ଲେଖିବି। ଖଣ୍ଡିଏ ବଙ୍ଗଳା ରାଜସ୍ଥାନର ଇତିହାସ ମୋ ନିକଟରେ ଥାଏ। ସେଥିରୁ ଖୋଜି 'ତାରାବାଈ' ନାମକ ଗୋଟିଏ ଉପାଖ୍ୟାନ ପାଇଲି। ସେଇ 'ତାରାବାଈ' ହିଁ ହେଉଚି ମୋର ପ୍ରଥମ ନାଟକ।

ସେତେବେଳେ ନାଟକ ସାଧାରଣତଃ ପାଞ୍ଚଗୋଟି ଅଙ୍କରେ ବିଭକ୍ତ ହେଉଥିଲା ଓ ତାହା ପ୍ରଦର୍ଶନ ପାଇଁ ପ୍ରାୟ ପାଞ୍ଚ ଘଣ୍ଟା ସମୟ ଲାଗୁଥିଲା। ମୁଁ ପ୍ରଥମେ ଏଇ ପଦ୍ଧତିର ବ୍ୟତିକ୍ରମ କରି ତିନୋଟି ଅଙ୍କରେ ବିଭକ୍ତ ଓ ତିନିଘଣ୍ଟା ଅଭିନୟ ଉପଯୋଗୀ ଖଣ୍ଡିଏ ନାଟକ ତାରାବାଈ ରଚନା କରିଥିଲି। ସେତେବେଳେ ମୁଁ ରେଭେନ୍‌ସା କଲେଜରେ ପାଠ ପଢୁଥାଏ।

ଏଇ 'ତାରାବାଈ' ନାଟକଟି ବହୁଦିନ ପାଣ୍ଡୁଲିପି ଅବସ୍ଥାରେ ପଡ଼ି ରହିଥିଲା। ତାପରେ ମୁଁ

ସରକାରୀ ଚାକିରି ପାଇ କଟକ ଜିଲ୍ଲାର କେନ୍ଦ୍ରାପଡ଼ାରେ ସେକେଣ୍ଡ ଅଫିସର୍ ଭାବରେ ଅବସ୍ଥାପିତ ହେଲା ପରେ ପ୍ରଥମେ ତାକୁ ସ୍ଥାନୀୟ ଲୋକ ବିଶେଷତଃ ଓକିଲ, ମୁକ୍ତିଆର କଚେରି ଅମଲା ଓ ସ୍କୁଲପିଲାଙ୍କ ସାହାଯ୍ୟରେ ଉକ୍ତ ନାଟକକୁ ମଞ୍ଚସ୍ଥ କରିଥିଲି।

କହିବା ବାହୁଲ୍ୟ ଯେ ସେ ସମୟରେ ଉକ୍ତ ନାଟକଟି ଦର୍ଶକମାନଙ୍କୁ ମୁଗ୍ଧ କରିପାରିଥିଲି। ଉକ୍ତ ନାଟକଟି ପୁସ୍ତକ ଆକାରରେ ପ୍ରକାଶ ପାଇବା ପରେ ବହୁ ସ୍କୁଲ୍ କଲେଜରେ ତାହା ଅଭିନୀତ ହେଉଥିବାର ସମ୍ବାଦ ମୁଁ ପାଇଥିଲି। ସ୍କୁଲମାନଙ୍କରେ ଉକ୍ତ ନାଟକ ଆଦୃତ ଓ ଅଭିନୀତ ହେବାର କାରଣ ହେଉଛି ଯେ ନାଟକଟି ତିନୋଟି ଅଙ୍କରେ ବିଭକ୍ତ ଓ ପ୍ରାୟ ତିନିଘଣ୍ଟା ବ୍ୟାପୀ ଅଭିନୟ ଉପଯୋଗୀ ହୋଇଥିଲା।

ଏଇ 'ତାରାବାଈ' ନାଟକଟି ହେଉଛି ମୋର ଏକମାତ୍ର ପ୍ରକାଶିତ ନାଟକ। କେନ୍ଦ୍ରାପଡ଼ାରେ ଅବସ୍ଥାପିତ ଥିବା ସମୟରେ ଉକ୍ତ ସ୍ଥାନର ପ୍ରସିଦ୍ଧ ଠାକୁର ବଳଦେବଜୀଉଙ୍କ ସମ୍ବନ୍ଧରେ ପ୍ରବର୍ତ୍ତିତ ଏକ ସ୍ଥାନୀୟ କିମ୍ବଦନ୍ତୀ ଉପରେ ନିର୍ଭର କରି ମୁଁ ଲେଖିଥିଲି ଗୋଟିଏ ପୌରାଣିକ ନାଟକ- ତୁଳସୀ। ଉକ୍ତ ନାଟକଟିକୁ ମୁଁ କେନ୍ଦ୍ରାପଡ଼ାରେ ଅଭିନୀତ କରାଇଥିଲି ମଧ୍ୟ। କହିବା ବାହୁଲ୍ୟ ଯେ ତାହା ବିଶେଷ ଭାବରେ ଆଦୃତ ହୋଇଥିଲା। ଉକ୍ତ ନାଟକଟି ଏପର୍ଯ୍ୟନ୍ତ ଅପ୍ରକାଶିତ ଅଛି। ତାପରେ ମୁଁ ଉକ୍ତ ନାଟକଟିକୁ ସଂକ୍ଷିପ୍ତ କରି ତୁଳସୀ ନାମରେ ଗୋଟିଏ ଏକାଙ୍କିକା ପ୍ରକାଶ କରିଥିଲି। ଉକ୍ତ ଏକାଙ୍କିକାଟି ମଧ୍ୟ ବହୁ ସ୍କୁଲରେ ପ୍ରାଇଜ ଦିଆଯିବା ସମୟରେ ବ୍ୟବହୃତ ହେଉଥିଲା।

କଟକ ରେଭେନ୍ସା କଲେଜରୁ ଇଂରାଜୀରେ ଅନର୍ସ ସହିତ ବି.ଏ. ପାସ୍ କଲା ପରେ ମୁଁ ଇଂରାଜୀରେ ଏମ୍.ଏ. ଓ ତା ସହିତ ବି.ଏଲ୍. ପଢ଼ିବା ପାଇଁ ପୁଣି କଲେଜରେ ଯୋଗଦେଲି। କିନ୍ତୁ ଇତିମଧ୍ୟରେ ସରକାରୀ ଡେପୁଟି ଓ ସବ୍‌ଡେପୁଟି ଚାକିରି ପାଇଁ ନୋଟିସ ବାହାରିଲା। ମୋର ବୟସ ମାତ୍ର କୋଡ଼ିଏ ବର୍ଷ ହୋଇଥିବାରୁ ମୁଁ ଦରଖାସ୍ତ କରିବାକୁ ଅନିଚ୍ଛୁକ ଥିଲି। କାରଣ ପୂର୍ବ ଅନୁଭୂତିରୁ ଜଣାଥିଲା ଯେ କେବଳ ଯେଉଁମାନଙ୍କର ବୟସ ପ୍ରାୟ ପଚିଶିର ପାଖାପାଖି ହୋଇଥାଏ, ସେଇମାନେ ଏଜ ଚାକିରି ପାଇଥାନ୍ତି।

କିନ୍ତୁ ନିୟତିର ନିର୍ଦ୍ଦେଶ ଅନ୍ୟପ୍ରକାର। ଯାହା ହେବାର କଥା, ତାହା ନିଶ୍ଚୟ ଟାଣି ଓଟରି ହେବ।

"ଭବିତବ୍ୟ ଯଥା ଯେନ ତଦ୍ ଭବତି ଅନ୍ୟଥା
ନୀୟତେ ତେନ ମାର୍ଗେଣ, ସ୍ୱୟଂ ବା ତତ୍ର ଗଚ୍ଛତି।"

ମୋର ଜଣେ ସାଥୀ ଛାତ୍ର ଶ୍ରୀ ଭୋଳାନାଥ ପଣ୍ଡା ଯେ କି ପରେ ମୟୂରଭଞ୍ଜରେ ଚାକିରି କରି ଜଜ୍ ଭାବରେ ଅବସର ଗ୍ରହଣ କରିଛନ୍ତି, ନିଜ ପାଇଁ ଖଣ୍ଡିଏ ଦରଖାସ୍ତ ଫର୍ମ ମଗାଇଥିଲେ।

ସେ ମୋତେ ସ୍ୱତଃପ୍ରବୃତ୍ତ ହୋଇ କହିଲେ ଯେ ସେ ଅଯଥାରେ ଏତେ ଅଳ୍ପ ବୟସରେ ଦରଖାସ୍ତ କରିବେ ନାହିଁ। ମୁଁ କହିଲି, ତେବେ ମୋତେ ଦରଖାସ୍ତ ଫର୍ମଟା ଦିଅ, ମୁଁ ଦରଖାସ୍ତ ଦେବି। ସେ ରାଜି ହୋଇ ଫର୍ମଟି ଦେଇଥିଲେ- ମୁଁ ଉକ୍ତ ଫର୍ମଟି ପୂରଣ କରି ଦରଖାସ୍ତଟିଏ ଦେଇଦେଲି।

ସେତେବେଳେ ମୋର ଜନ୍ମସ୍ଥାନ ବାଲେଶ୍ୱର ଜେ. ଜନ୍‌ଷ୍ଟନ୍ (J. Johnston) ନାମରେ ଜଣେ କଲେକ୍‌ଟର ଥାନ୍ତି। ସେ ଆୟରଲାଣ୍ଡର ଲୋକ। ସବୁବେଳେ ଗୋଟିଏ ନାଲି ରଙ୍ଗର କୋଟ୍ ମଡ଼ାଇ ଥାନ୍ତି, ଲାଲ ରଙ୍ଗ ଟାଇ ବାନ୍ଧିଥାନ୍ତି ବେକରେ। ସେ ଜଣେ ଅତିଶୟ ଦୟାଳୁ ଓ ଲୋକହିତୈଷୀ ଲୋକ ବୋଲି ସୁଖ୍ୟାତି ଲାଭ କରିଥାନ୍ତି। ତାଙ୍କରି ନିକଟରେ ଦରଖାସ୍ତ ଦେବାକୁ ପଡ଼ିଲା।

ତା ପରେ ବାଲେଶ୍ୱର ଜିଲ୍ଲାରୁ ଯେଉଁମାନେ ଦରଖାସ୍ତ କରିଥିଲେ, ଜନଷ୍ଟନ୍ ସାହେବ ସେମାନଙ୍କୁ ଦେଖା କରିବାକୁ ଡକାଇଲେ। କିନ୍ତୁ ସେ ସାଧାରଣ ପ୍ରଥାନୁସାରେ ଜଣ ଜଣ କରି ସାକ୍ଷାତ୍ ନ କରି ସମସ୍ତ ଦରଖାସ୍ତକାରୀଙ୍କୁ ଏକାଠି ବସାଇ ପ୍ରଶ୍ନ ପଚାରିବାକୁ ଲାଗିଲେ ଓ ଖଣ୍ଡିଏ ନୋଟଖାତା ଧରି ଜଅଣ ଟିପାଟିପି କରୁଥାନ୍ତି। ପରେ ଦେଖାଗଲା ଯେ ସେ କେବଳ ମୋତେ ହିଁ ବାଛିଛନ୍ତି କମିଶନର ସାହେବଙ୍କ ସଙ୍ଗେ ସାକ୍ଷାତ୍ କରିବା ପାଇଁ।

ସେତେବେଳେ ନିୟମ ଅନୁସାରେ ଓଡ଼ିଶା ଡିଭିଜନର କମିଶନର ସାହେବ ଜିଲ୍ଲା ସାହେବଙ୍କ ସୁପାରିସ ପାଇଥିବା ପ୍ରାର୍ଥୀମାନଙ୍କୁ ସାକ୍ଷାତ୍ ପାଇଁ ଡକାଉଥିଲେ। ମୁଁ ତାଙ୍କ ଡାକରା ପାଇଲି। ସାକ୍ଷାତ୍‌ବେଳେ କମିଶନର ମିଷ୍ଟର ହବାକ୍ ସାହେବ ଥାନ୍ତି। ସେ ସବୁ ଜିଲ୍ଲା କଲେକ୍‌ଟରଙ୍କୁ ଡକାଇଥାନ୍ତି। ମୋତେ ସାକ୍ଷାତ୍ ପାଇଁ ଡକାଗଲା ଓ ମୁଁ ଇଂରାଜୀରେ ଏମ୍.ଏ. ପଢୁଥିବାରୁ ମୋର ପାଠ୍ୟ ପୁସ୍ତକରୁ କେତେକ ପ୍ରଶ୍ନ ପଚାରିଲେ। ମୁଁ ଯଥାଯଥ ଉତ୍ତର ଦେଲି, ସେ ସନ୍ତୁଷ୍ଟ ହେଲାପରି ଜଣାଗଲା। କିନ୍ତୁ ସେ କହିଲେ- ତୁମର ତ ବୟସ ମାତ୍ର କୋଡ଼ିଏ, ଆଉ କିଛି ଦିନ ଅପେକ୍ଷା କର। ମୁଁ ତାର ଉତ୍ତର ଦେବା ପୂର୍ବରୁ ମୋର ଜିଲ୍ଲା କଲେକ୍‌ଟର ଜନଷ୍ଟନ୍ ସାହେବ କହି ପକାଇଲେ- ଆଇନ କହୁଚି, ଯେ କୋଡ଼ିଏ ବର୍ଷ ଅତିକ୍ରମ କରିଚି ସେ ଚାକିରି ପାଇବାକୁ ହକ୍‌ଦାର। ତାଙ୍କୁ ଯଦି ଆପଣ ଉପଯୁକ୍ତ ମନେ କରୁଛନ୍ତି, ସେ କୋଡ଼ିଏ ବର୍ଷରୁ ଦିନେମାତ୍ର ଅଧିକ ହୋଇଥିଲେ ବି ଉପଯୁକ୍ତ ବିବେଚିତ ହେବା ଉଚିତ। ତାଙ୍କରି କଥା ହିଁ କାଏମ ରହିଲା। ମୁଁ ପୁଣି ବଛାହୋଇ ଗଲି ପାଟନାରେ ରେଭିନ୍ୟୁ ବୋର୍ଡ ସହିତ ସାକ୍ଷାତ୍ କରିବାପାଇଁ। ସେତେବେଳେ ବିହାର ଓ ଓଡ଼ିଶା ଏକତ୍ର ଥାଏ। ପାଟଣାଗଡ଼ ରେଭିନ୍ୟୁ ବୋର୍ଡରେ ସାକ୍ଷାତ୍ ପାଇଁ ଡକା ହୋଇଥାଏ। ମୁଁ ପାଟନା ଗଲି ଜଣେ ସିନିୟର ଛାତ୍ରଙ୍କ ସଙ୍ଗରେ।

ନିର୍ବାଚନ ବୋର୍ଡରେ ସେତେବେଳେ ଲରି ହାମଣ୍ଡ ନାମରେ ଜଣେ ସାହେବ ଆଇ.ସି.ଏସ. ଥାନ୍ତି ସଭାପତି। ତାଙ୍କ ସାଙ୍ଗରେ ଡି.ପି.ଆଇ. ଫକସ୍ ସାହେବ ମଧ୍ୟ ବସିଥାନ୍ତି। ସେତେବେଳେ

ମୋତେ ଡକରା ହେଲା ସାକ୍ଷାତ୍ ପାଇଁ, ମୁଁ ଗଲି । ଯେତେ ଯେତେ ପ୍ରଶ୍ନ ପଚାରିଲେ ମୁଁ ତାର ଯଥାଯଥ ଉତ୍ତର ଦେଲି । ସେମାନେ ସନ୍ତୁଷ୍ଟ ହେଲାପରି ଜଣାଗଲା । ପ୍ରଥମ ସାକ୍ଷାତ୍ ପରେ ବଛାବଛି ହୋଇଗଲା । ତା ପରେ ପୁଣି ମୋତେ ଦ୍ୱିତୀୟ ସାକ୍ଷାତ୍ ପାଇଁ ଡକରା ହେଲା । ମୁଁ ଗଲି; ନିର୍ବାଚନ ବୋର୍ଡର ସଭାପତି କହିଲେ, ତୁମେ ଉପଯୁକ୍ତ ଅଟ; କିନ୍ତୁ ତୁମର ବୟସ ମାତ୍ର କୋଡ଼ିଏ ବର୍ଷ, ଆଉ କିଛି ଦିନ ଅପେକ୍ଷା କର । ମୁଁ ତତ୍‌କ୍ଷଣାତ୍ ତାଙ୍କୁ ଜବାବ ଦେଲି, ମହାଶୟ, ମୁଁ ଇତିହାସରେ ପଢ଼ିଛି, ଇଂଲଣ୍ଡରେ ପିଟ୍ ଦି ୟଙ୍ଗର (Pitt the Younger) ଅତି ଅଳ୍ପ ବୟସରେ ପ୍ରଧାନମନ୍ତ୍ରୀ ଭାବରେ ନିର୍ବାଚନ ହୋଇଥିଲେ ଓ ଦକ୍ଷତାର ସହିତ କାର୍ଯ୍ୟ ଚଳାଇଥିଲେ । ଏପରିସ୍ଥଳେ ମୁଁ ଆଇନ ନିର୍ଦ୍ଧାରିତ କୋଡ଼ିଏ ବର୍ଷ ଅତିକ୍ରମ କରିଚି । ତେବେ ମୁଁ ଯଦି ଅନ୍ୟଥା ଉପଯୁକ୍ତ ବିବେଚିତ ହୋଇଥାଏ ତେବେ କେବଳ କମ୍ ବୟସ ଯୋଗୁଁ ବାଦ୍ ଯିବି କାହିଁକି ? ନ୍ୟାୟ ବିଚାର ହେଉ ।

ମୁଁ ଲକ୍ଷ୍ୟ କଲି, ମୋର ଜବାବ ସେମାନଙ୍କୁ ଅଭିଭୂତ କରି ପକାଇଚି । କିଛିଦିନ ପରେ ଚିଠି ଆସିଲା । ମୁଁ ସବ୍‌ଡେପୁଟି କଲେକ୍‌ଟର ଭାବରେ ନିଯୁକ୍ତି ପାଇଚି । ସେଇଠୁ ମୋର ଏମ୍.ଏ.ବି.ଏସ୍. ପଢ଼ା ବନ୍ଦ ହେଲା । ୧୯୨୭ ମସିହା ଜାନୁୟାରୀ ମାସ ଆଦ୍ୟପାଦରେ ମୁଁ ସବ୍‌ଡେପୁଟି କଲେକ୍‌ଟର ଭାବରେ ମୋର କର୍ମସ୍ଥାନ ବାଲେଶ୍ୱରରେ ଯୋଗଦେଲି । ସେଇଦିନ ଠାରୁ ମୋର ଛାତ୍ରଜୀବନର ଅବସାନ ହେଲା । ମୁଁ କର୍ମକ୍ଷେତ୍ରରେ ପ୍ରବେଶ କଲି । ସେତେବେଳକୁ ମୋର ବୟସ ମାତ୍ର କୋଡ଼ିଏ ବର୍ଷ ।

•

---

*ମୋ ଜୀବନ ସ୍ମୃତି*, ଅନନ୍ତ ପ୍ରସାଦ ଗ୍ରନ୍ଥାବଳୀ, ୧୯୬୮

# କଟକରେ କଲେଜ ପଢ଼ା

## ଚିନ୍ତାମଣି ମିଶ୍ର

ପରୀକ୍ଷା ଫଳ ବାହାରିବା ପର୍ଯ୍ୟନ୍ତ ଗାଁରେ ବା ସତ୍ୟବାଦୀରେ ରହି ମଉଜରେ ସମୟ କଟାଇବାର ସୌଭାଗ୍ୟ ତ ନ ହେବାର କଥା । ମୋ ପରୀକ୍ଷା ଫଳ ବାହାରିବା ପୂର୍ବରୁ ପିଲାଙ୍କ ସ୍କୁଲ ଖୋଲିଗଲା । ମୋର କାର୍ଯ୍ୟକ୍ରମ ଦସ୍ତୁର ମୁତାବକ ଆରମ୍ଭ ହୋଇଗଲା । ଏ ଓଳି ସେ ଓଳି ଟିଉସନ କରେ; ବାକି ସମୟରେ କଟକ ସହରର ପରିକ୍ରମା । ଚାରି ଟଙ୍କା ଭଡ଼ାରେ ସୁବିଧା ଘର ଖଣ୍ଡେ ଖୋଜା ହେଉଥାଏ । ତା' ସଙ୍ଗେ କଟକର ବଡ଼ ବଡ଼ ଲୋକଙ୍କ ସଙ୍ଗେ ପରିଚୟ ହେଉଥାଏ । ଦରିଦ୍ର ପିଲାଙ୍କ ପ୍ରତିନିଧି ହୋଇ ସେ କାଳର ବଦାନ୍ୟ ଲୋକ ଜାନକୀବାବୁ, ଚିନ୍ତାମଣିବାବୁ, ଲକ୍ଷ୍ମୀନାରାୟଣ ସାହୁଙ୍କ ଠାରୁ ଦରିଦ୍ର ପିଲାଙ୍କ ପାଇଁ ସାହାଯ୍ୟର ପ୍ରତିଶ୍ରୁତି ସଂଗ୍ରହ କରୁଥାଏ । କଲେଜରେ ନାମ ଲେଖାଇବା ପରେ ଡକ୍ଟର ପରିଜା ଓ ବିପିନ ବାବୁଙ୍କ ବଦାନ୍ୟତାର ସୁଯୋଗ ବି ନେଲି ।

ଦିନେ ଜଣେ ପିଲା ପାଇଁ (କଲେଜରେ ନାମ ଲେଖାଇବାର ପ୍ରାୟ ୫ ମାସ ପରେ) ସାହାଯ୍ୟ ଭିକ୍ଷା କଲାବେଳେ ରାୟ ବାହାଦୁର ଜାନକୀନାଥ ବୋଷ ନିଜ ପାଇଁ କିଛି ନିଅ ବୋଲି ମୋତେ ଯାଚିଲେ । ମୁଁ ବୟାନ କଲି ଯେ, ମୁଁ ଦୁଇଓଳି ଟିଉସନ୍ କରି ଯାହା ପାଉଛି ସେଥିରେ ଆମ ତିନିଜଣଙ୍କର ବେଶ୍ ଚଳିଯାଉଛି । ସେତେବେଳେ ସେ ମୋତେ ଆଉ କିଛି କହିଲେ ନାହିଁ । ମାସେ ଖଣ୍ଡେ ପରେ ମୋତେ କହିଲେ, ତାଙ୍କର ସାନ ପୁଅକୁ ଟିଉସନ୍ କରିବାକୁ ! ମୁଁ ହଁ କରି ମୋର ସର୍ବପ୍ରଥମ ଟିଉସନ୍‌ଟି ଆଉ ଜଣେ ସାଙ୍ଗକୁ ଦେଇ ଜାନକୀ ବାବୁଙ୍କ ଟିଉସନ୍ ଗ୍ରହଣ କଲି । ମାସକ ପରେ ମୋ ଛାତ୍ରଟି ମୋ ଆଗରେ ଗୋଟିଏ ଲଫାଫା ଥୋଇଲା । ୟେ କ'ଣ ବୋଲି ପଚାରିବାରେ ସେ କହିଲା, ବାବା ଆପଣଙ୍କ ଦରମା ଦେଇଛନ୍ତି । ଲଫାଫାଟି ପକେଟରେ ପୂରାଇଦେଲି, ଟିଉସନ୍ ସରିଲା । ବାଟରେ ଟଙ୍କା ଗଣିଲାବେଳକୁ ୪ଟା ପାଞ୍ଚଟଙ୍କିଆ ନୋଟ୍ । ମୁଁ ଶୁଣିଥିଲି ପୂର୍ବ ଟିଉଟର ପନ୍ଦର ଟଙ୍କା ପାଉଥିଲେ । ହଠାତ୍ ମନରେ ହୋଇଗଲା, ଜାନକୀ ବାବୁ ଭୁଲରେ ଖଣ୍ଡେ ନୋଟ୍ ଅଧିକା ଦେଇ ପକାଇଛନ୍ତି । ସାଙ୍ଗେ ସାଙ୍ଗେ ଫେରିଲି । ତାଙ୍କ ମିସଲ

ଚାଲିଥାଏ । ସେତେବେଳକୁ ଦଶଟା ବାଜି ସାରିଥାଏ । ରାତି ଦୁଇଟା ଯାଏଁ ମିଷ୍ଟର୍ ଦାସଙ୍କ ମିସଲ୍ ଚାଲିଥିବାର ପରେ ଦେଖିଛି । ମୁଁ ଯାଇ ତାଙ୍କ ପାଖରେ ଠିଆ ହୋଇ ଅତି ବିନୀତ ଭାବେ ଜଣାଇଲି ଯେ, ବୋଧହୁଏ ଗୋଟିଏ ନୋଟ୍ ମୋତେ ଅଧିକ ଦିଆହୋଇଯାଇଛି । କୃତ୍ରିମ କ୍ରୋଧରେ ତାଙ୍କ ମୁହଁ ଆରକ୍ତ ହୋଇଗଲା । ସେ କହିଲେ, "ଯାଅ, ଆଉ ବାଡ଼ାବାଡ଼ି କରୋ ନା । ଜାନକୀ ବୋଷେର ଏ ମନ୍ ଭୁଲ ହୟନା ।"

ବାଡ଼ାବାଡ଼ିର ଅର୍ଥ ବୁଝି ନପାରି ମ୍ରିୟମାଣ ହୋଇ ଫେରୁଛି । ମୁଁ ତାଙ୍କ ଦୃଷ୍ଟିର ବାହାରକୁ ଯିବା ପରେ ସେ ତାଙ୍କର ଜଣେ ଜୁନିୟରଙ୍କୁ କହିଲେ, "ପିଲାଟି ଭଲ ପଢ଼ାଉଛି । ମୋର ସାନ ପିଲାଟା ଯ୍ୟକୁ ମାନୁଛି । କୋଡ଼ିଏ ଟଙ୍କା ଦେଲି । ସେ ଆପତ୍ତି କରିବାକୁ ଆସିଥିଲା ପୂର୍ବ ଟିଉଟର ତ ପନ୍ଦର ଟଙ୍କା ପାଉଥିଲା, ମୋତେ କାହିଁକି କୋଡ଼ିଏ ଦେଲ । କିଛି ଦିନ ପୂର୍ବେ ଯ୍ୟକୁ କିଛି ସାହାଯ୍ୟ ଦେବି ବୋଲି କହିବାରୁ କହିଥିଲା, ମୋର ଟିଉସନରୁ ଯେତେ ମିଳୁଛି ତାହା ଆମକୁ ଯଥେଷ୍ଟ । ନିଜେ ପଢ଼େ, ଦୁଇ ଭାଇଙ୍କୁ ମଧ୍ୟ ପି.ଏମ୍. ଏକାଡ଼େମୀରେ ପଢ଼ାଏ ।" ଏତକ କାନପାତି ଶୁଣି ଆଶ୍ୱସ୍ତ ହୋଇ ଘରକୁ ଫେରିଲି । ପଚିଶ ଟଙ୍କା ଆୟ ପଞ୍ଚତିରିଶକୁ ଉଠିଗଲା ।

ୟେ ତ କଲେଜରେ ନାମ ଲେଖାଇବାର ପରବର୍ତ୍ତୀ କଥା । ପରୀକ୍ଷା ଫଳ ବାହାରିବାକୁ ହପ୍ତେ ଖଣ୍ଡେ ଥାଏ ସତ୍ୟବାଦୀ ଗଲି ମୋ ଭାଇମାନଙ୍କୁ ଆଣିବାକୁ । ସେଠାରେ ଯେଉଁ ଦିନେ ଦି'ଦିନ ରହିଲି, ତାରି ଭିତରେ ମୋ ସଙ୍ଗେ କଟକ ଆସିବାକୁ ପ୍ରାୟ ଦଶକଣ ବାହାରି ପଡ଼ିଲେ । ତୁରନ୍ତ ଆସି ସ୍ୱରାଜ୍ୟ ଆଶ୍ରମ ପାଖରେ ଖଣ୍ଡିଏ ଘର ଭଡ଼ା ନେଲି । ବ୍ୟବସ୍ଥା ହେଲା, ସମସ୍ତେ ମେସ୍‌ରେ ଖାଇବେ, ଆମେ ତିନିହେଁ ସେଇଥିରୁ ଗୋଟିଏ ବଖରାରେ ରୋଷେଇ କରିବୁ । ଗୁଡ଼ାଏ ଦିନ ସେହିପରି ଚାଲିଲା । ପି.ଏମ୍. ଏକାଡ଼େମୀ ପଛପଟେ ଜଣେ ପୂର୍ବ ଜମିଦାରଙ୍କ ଘରେ ଦଶଟଙ୍କାର ଟିଉସନ ଗୋଟେ ଆସି ମୋ ଉପରେ ଲଦି ହେଲା । ମେସ୍‌ରେ ଆମେ ତିନିହେଁ ଖାଇଥିଲେ ବି ଚଳିଥାନ୍ତା, କିନ୍ତୁ ହାତ ରୋଷେଇଟା ମନକୁ ପାଉଥାଏ ଏବଂ ଅବଶିଷ୍ଟ ଟଙ୍କା ପାଇଁ ଗ୍ରହୀତା ବି ଠିକ୍ ହୋଇଯାଇଥାନ୍ତି ।

ମୁଁ ସପ୍ଲିମେଣ୍ଟାରୀ ପିଲା । ବାର୍ଷିକ ପରୀକ୍ଷାରେ ପାସ୍ କରିଥିବା ପିଲେ ସପ୍ଲିମେଣ୍ଟାରୀ ପିଲାଙ୍କୁ ସେ କାଳେ ଟିକିଏ ଛୋଟ ନଜରରେ ଦେଖନ୍ତି । ମୋ ଭାଗ୍ୟକୁ ମୋତେ ସେପରି ହୀନିମାନ ହେବାକୁ ପଡ଼ିନାହିଁ । ମୁଁ ତ ସାଧାରଣ ଫାଷ୍ଟଇଅର ଛାତ୍ରଙ୍କଠାରୁ ଦୁଇବର୍ଷ ବଡ଼, ବାହ୍ୟ ଅଭିଜ୍ଞତା ଅନ୍ୟମାନଙ୍କଠାରୁ ବେଶି, ଦୁଇ ଚାରିଟା ଟିଉଟରିଏଲ କ୍ଲାସର ପରୀକ୍ଷାରେ ମୋ କୃତିତ୍ୱ ପ୍ରକାଶ ପାଇଯିବାରେ ମୁଁ ଜଣେ ମାର୍କାମରା ଛାତ୍ର ହୋଇଗଲି । ମୋର ସହପାଠୀ ଶ୍ରୀ ପ୍ରାଣନାଥ ମହାନ୍ତି, ଅବସରପ୍ରାପ୍ତ ଆଇ.ଏ.ଏସ୍.; ଆଉ ଜଣେ ନିଖିଲ୍ ଗାଙ୍ଗୁଲି, ଗୋପାଳ ବାବୁ ପ୍ରଫେସରଙ୍କ ପୁଅ, ଆଉ ଜଣେ ଗୋବିନ୍ଦ ଗୁପ୍ତ କଲିଜିଏଟ୍ ହେଡ଼ମାଷ୍ଟରଙ୍କ ପୁଅ । ଆମ

ସତ୍ୟବାଦୀରୁ ରାମକୃଷ୍ଣ ନନ୍ଦ ଓ ଗୌରୀପଦ ତ୍ରିପାଠୀ ମଧ୍ୟ ଥାନ୍ତି । ଭାରି ବାଦବୁଦିଆ ହୋଇ ପାଠ ପଢ଼ା ହେଉଥାଏ । ଟର୍ମିନାଲ ପରୀକ୍ଷାରେ ମୁଁ ଫାଷ୍ଟ ହୋଇଯାଏ, କିନ୍ତୁ ବାର୍ଷିକ ଓ ଦ୍ୱିବାର୍ଷିକ ପରୀକ୍ଷାରେ ମୁଁ ୩-୪ ଜଣଙ୍କ ତଳକୁ ଖସିଯାଏ । ଆମ ପରୀକ୍ଷା ବେଳକୁ ମୋ ଟିଉସନ ପିଲାଙ୍କ ପରୀକ୍ଷା । ପୁଣି ସେତେବେଳେ, ବାଖରାବାଦରୁ କଲେଜକୁ ଯିବା ଆସିବା ଏବଂ ତିନୋଟିଯାକ ଟିଉସନର ଘେର ଘେର ବୁଲିବାରେ ଦୈନିକ (ରବିବାର ଓ ଛୁଟିଦିନ ଛାଡ଼ି) ୧୬ ମାଇଲ ଚାଲିବାକୁ ପଡ଼େ ।

ଆମର ସକାଳ ହୁଏ ୫ଟାରେ । ମୁଁ ଚୁଲି ଲଗାଇଦିଏ ଏବଂ ଭାଇ ଦୁହେଁ କାଠଯୋଡ଼ିକୁ ଗାଧୋଇ ଯାନ୍ତି । ସେମାନେ ପିଇବା ପାଣି ମାଠିଏ ଧରି ଫେରିଲା ବେଳକୁ ଭାତ ଡାଲି ହୋଇଯାଇଥାଏ । ନ ହୋଇଥିଲେ ବି ସାଙ୍ଗେ ସାଙ୍ଗେ ଭାତ ଗଳା ହୋଇଯାଏ ଓ ଡାଲି ଛୁଙ୍କ ହୋଇଯାଏ । ଦୁଇ ମିନିଟ୍ ଭିତରେ ମୁଁ କୂଅ ମୂଳେ ଗାଧୋଇ ପଡ଼ି ଆସି ବସିଯାଏ । ଯାହା ହୋଇଥାଏ ଏବଂ ଯେତିକି ଲେଖାଏଁ ବଢ଼ା ହୋଇଥାଏ ସେତକ ପାଟି ନ ଫିଟାଇ ଖାଇବାର ନିୟମ । ଭାତ ଚାଉଳିଆ ହୋଇଛି ବା ଡାଲି ସିଝିନାହିଁ ବୋଲି କେହି କହିଦେଲେ ସାଙ୍ଗେ ସାଙ୍ଗେ ମୋର ହାତ ଉଠେ । ହାତ ଉଠିଲେ ତ ମାରିବାବାଲା ଓ ମାଡ଼ ଖାଇବା ବାଲା ଦୁହେଁ ଛୁଆଛୁଇଁ ହେବାର ନୁହେଁ । ତୃତୀୟ ଜଣକୁ ଅବସ୍ଥା ଚକ୍ରରେ ଉଠିବାକୁ ପଡେ । କିନ୍ତୁ ଏ ଦଶା ଥରେ ମାତ୍ର ପଡ଼ିଥିଲା ପରି ମନେ ପଡୁଛି ।

ଆମେ ଖାଇକରି ଉଠିଲାବେଳକୁ ଅଧେ ଭାତ ଆଟିକାରେ ଥାଏ । ସେଥିରେ ପାଣି ଢାଳେ ମିଶାଇ ଆଟିକାଟା ଚୁଲି ଉପରେ ଥୋଇଦେଉଁ । ତିନିଟା ଆଳୁ ଚୁଲିରେ ପଡ଼େ । ରୋଷେଇ ଘର ବନ୍ଦ କରି ମୁଁ ଯାଏ ଟିଉସନକୁ । ସକାଳ ଓଳି ଦି'ଟା - ଗୋଟାଏ ମିଶନ ରୋଡ଼ରେ ଆଉ ଗୋଟାଏ ତଳ ତେଲେଙ୍ଗୀ ବଜାରରେ । ସାଢ଼େ ୬ଟାରୁ ସାଢ଼େ ୯ଟା ଭିତରେ ଏ ଦି'ଟା ସାରି ଘରେ ଗୋଡ଼ ଦେଲାବେଳକୁ ଦୁଇ ଭାଇ ପାଠରେ ମୁହଁ ଦେଇ ଭାଇନାଙ୍କ ପାଦ ଶବ୍ଦକୁ କାନ ଡେରିଥାନ୍ତି । ଧୂଆ ଧୋଇ ହୋଇ ରୋଷେଇ ଘରକୁ ଅଭିଯାନ ପଖାଳ ଆଳୁ ପୋଡ଼ା ସଙ୍ଗେ ଖାଇ ସେ ଦୁହେଁ ଯାନ୍ତି ସ୍କୁଲକୁ, ମୁଁ ଯାଏଁ କଲେଜ । ମୁଁ ଫେରିଲା ବେଳକୁ ଭାଇ ଦୁହେଁ ଆସି ଚୁଲି ଲଗାଇ ଦେଇଥାନ୍ତି । ସଂଧ୍ୟା ବେଳକୁ ଖିଆ ସାରି ମୁଁ ଯାଏଁ ଟିଉସନ, ସେ ପଢ଼ି ବସନ୍ତି । ସାଢ଼େ ଆଠଟା ବେଳେ ମୁଁ ଫେରିଲେ ପୁଣି ପଖାଳ ଆଳୁପୋଡ଼ା ଭୋଗ ଖାଇ ସେ ଶୁଅନ୍ତି ଓ ମୁଁ ପଢ଼ାପଢ଼ିରେ ଲାଗେ ।

ଥରେ ଏଭଳି ପାଠପଢ଼ାରୁ ସମସ୍ତେ ପୋଡ଼ି ମରିଥା'ନ୍ତୁ । ମୁଣ୍ଡ ଉପରେ, ଅର୍ଥାତ୍ ତତ୍‌ପରଦିନ ଟର୍ମିନାଲ୍ ପରୀକ୍ଷା, ସାଢ଼େ ନ'ଟା ରାତିରେ ମୁଁ ଗୋଟାକ ପର୍ଯ୍ୟନ୍ତ ପଢ଼ିବି ବୋଲି ସଂକଳ୍ପ କରିଦେଇ ତଦନୁସାରେ ଆୟୋଜନ କରିଦେଲି । ମଶାଙ୍କ ଉପଦ୍ରବରୁ ଦୁଇ ଖଣ୍ଡ ମଶାରି କରିଥାଉଁ, ଖଣ୍ଡେ ମୋର, ଆରଖଣ୍ଡ ଟିକିଏ ବଡ଼, ସେ ଦୁହିଁଙ୍କ ପାଇଁ । ଶେଯ, ଗୋଟିଏ ଗୋଟିଏ

ସତରଞ୍ଜି ଉପରେ ଖଣ୍ଡେ ଖଣ୍ଡେ ଚାଦର, ଚାଦର ଅଭାବରେ ଚିରାଲୁଗା । ସତରଞ୍ଜ ଓ ଚାଦର ମଝିରେ ଓଡ଼ଶ ଭେଳାବାନ୍ଧି ଅପେକ୍ଷା କରିଥାନ୍ତି ଆଲୁଅ ଲିଭିବାକୁ । ଦୁଇଟିଯାକ ସତରଞ୍ଜ ଉପରୁ ଓଡ଼ଶମାନଙ୍କୁ ଗିରଫ କରି ଲ୍ୟାମ୍ପରେ ପକାଇଲି । ଲ୍ୟାମ୍ପଟି ଗୋଟିଏ ବଡ଼ ଓ୍ୟାଲ ଲ୍ୟାମ୍ପ । ଭଲ ଆଲୁଅ ବୋଲି ସେଇଥିରେ ମୁଁ ପଢ଼େ । ସେଉଟିକୁ ମୁଣ୍ଡ ପାଖରେ ରଖି, ମଶାରି ଭିତରେ ଶୋଇ ମୁଁ ୟୁରୋପୀୟ ଇତିହାସ ପଢ଼ିବାକୁ ଆରମ୍ଭ କଲି । କେତେବେଳ ପରେ କେଜାଣି ନୀଳର ବିକଳ ଚିତ୍କାରରେ ମୁଁ ଉଠିଲାବେଳକୁ ମଶାରିକୁ ନିଆଁ ଘେରିଦେଇଛି । ମୋ ମାଣ୍ଡିରେ ନିଆଁ, ବାଳରେ ନିଆଁ ଧାସ ବାଜିଥାଏ । ସେଥର ଇତିହାସର ଯେଉଁ ଅଂଶଟି ପରୀକ୍ଷା ହେବାର କଥା ଠିକ୍ ସେତକ ଜଳୁଥାଏ । ନୀଳର ନିଦ ଭାଙ୍ଗିବା ସହଜ କଥା ନୁହେଁ, ମୋ ନିଦ ତ ମୁଁ ଜଳିଯିବା ପରେ ଭାଙ୍ଗିଥା'ନ୍ତା, ଭାଗ୍ୟକୁ ତା' ନିଦ ଭାଙ୍ଗିଲା । ତଦଣ୍ଡେ ନିଆଁ ଲିଭିଲା ଏବଂ ପ୍ରାୟ ଅଧଘଣ୍ଟେ ଭିତରେ ବିନା ମଶାରିରେ ସମସ୍ତେ ଶୋଇପଡ଼ିଲେ । ତହିଁ ଆରଦିନ ସକାଳୁ ପୁଣି ମାମୁଲି କାର୍ଯ୍ୟକ୍ରମ । ନିଆଁ ଲାଗିବା ଫଳରେ ମୋର ଏତିକି ଲାଭ ହେଲା ଯେ, ମୁଁ ଇତିହାସ ବହିଟି ହାତରେ ଉତାରିଦେଲି । ଭଲ ମନେରହିଲା, ୨ୟ ଟର୍ମିନାଲରେ ମୁଁ ଇତିହାସରେ ଫାଷ୍ଟ ହେଲି ।

ନୀଳ କୁଳ ଏକାଡ଼େମୀରେ ପଢୁଥା'ନ୍ତି । ହେଡ଼ମାଷ୍ଟର ସ୍ୱର୍ଗତ ନିମାଇଁଚ଼ରଣ ଚ୍ୟାଉ ପଟ୍ଟନାୟକ । ପ୍ରତି ରବିବାର ଦିନ ତାଙ୍କ ଘରକୁ ଯାଏ । ସେଭଳି ମେଳାପୀ, ଦୁଃସ୍ଥ ଛାତ୍ରଙ୍କୁ ହେମତ୍ ଦେବାବାଲା ଶିକ୍ଷକ ତାଙ୍କ ପରି ଆଉ କିଏ ଥିଲା ପରି ମନେ ହେଉନାହିଁ । ନୀଳ ସ୍କୁଲରେ ସମସ୍ତଙ୍କ ନକରରେ ପଡ଼ିଥାଏ । କୁଳର ମୁଣ୍ଡର କୌଣସି ବିକାର ଯୋଗୁଁ ଭାଇନା ପରି ପାଠରେ ପାରେନାହିଁ । ମଝିରେ ବାଧ୍ୟ ହୋଇ ତା' ପାଠ ବନ୍ଦ କରିବାକୁ ପଡ଼ିଲା ଏବଂ ଗାଁରେ ତା' ପାଇଁ ଗୋଟିଏ ଦୋକାନ ଛନ୍ଦିବା ପାଇଁ ପଇସାର ବ୍ୟବସ୍ଥା କଲୁ ।

ନୀଳ କୁଳଙ୍କ ଯୋଗୁଁ, ବିଶେଷକରି ନିମେଇଁ ବାବୁଙ୍କ ଯୋଗୁଁ ପି.ଏମ୍. ଏକାଡ଼େମୀର ସବୁ ଶିକ୍ଷକ ମୋତେ ଚିହ୍ନିଥା'ନ୍ତି । ତାଙ୍କ ଭିତରୁ ବସନ୍ତ ବାବୁ, ଅଶ୍ୱିନୀ ବାବୁ, ନରସିଂହ ମହାପାତ୍ରେ, ଗଙ୍ଗାଧର ମହାପାତ୍ରେ, ଭୋଳି ପଣ୍ଡିତେ ଓ ଗଦାଧର ପଣ୍ଡିତଙ୍କ ନାମ ମନେ ପଡୁଛି । ସବୁଠାରୁ ଗଦାଧର ପଣ୍ଡିତେ ମୋତେ ଖୁବ୍ ପସନ୍ଦ କରୁଥାନ୍ତି ବୋଲି ମୋର ଧାରଣା । ଥରେ କହୁ କହୁ ବେଆଡ଼ା କଥାଟେ କହିଦେବାରୁ ତାଙ୍କୁ ଶେଷ ପର୍ଯ୍ୟନ୍ତ ଲୁଚ଼ିଲି । ଗଦାଧର ପଣ୍ଡିତେ ସେକେଣ୍ଡ ପଣ୍ଡିତ ଓ ଭୋଳି ପଣ୍ଡିତ ହେଡ଼ ପଣ୍ଡିତ ହେଲେହେଁ, ଗଦାଧର ପଣ୍ଡିତଙ୍କର ମାନ୍ୟ, ପାଣ୍ଡିତ୍ୟ ମଧ୍ୟ ବେଶି । ପଣ୍ଡିତେ ଅତି ବ୍ରାହ୍ମଣିଆ, ଅତି ସଂସ୍କୃତିଆ । କଟକୀ ଭଣ୍ଡାରିମାନେ ଯବନଙ୍କୁ କ୍ଷୌର କରନ୍ତି ବୋଲି ପଣ୍ଡିତେ କଟକରେ ଖିଅର ହୁଅନ୍ତି ନାହିଁ । ପ୍ରତି ଶନିବାର ଭୁବନେଶ୍ୱର (ତାଙ୍କ ଘର) ଯା'ନ୍ତି, ରବିବାର ଦିନ ଲଣ୍ଡିତ ମୁଣ୍ଡ ହୋଇ ସୋମବାର ଦିନ ସକାଳେ କଟକ ଆସନ୍ତି । ଏଠାରେ ହାତରେ ରୋଷେଇ କରି ଖା'ନ୍ତି । କଟକିଆ ମୁଡ଼ି ଉଖୁଡ଼ା ମଧ୍ୟ ପାଟିରେ ପକାନ୍ତି

ନାହିଁ । ମିଠାଫିଟା ତ ଖା'ନ୍ତି ନାହିଁ, ବୃଥା ଖର୍ଚ୍ଚ କରିବେ ନାହିଁ ବୋଲି । ପଣ୍ଡିତଙ୍କର ଆଉ ଗୋଟିଏ ରୋଗ, ବିଶେଷଣର ଲିଙ୍ଗ ନିର୍ଦ୍ଦେଶ କରିବାରେ ଜିଦ୍ । ସୁନ୍ଦର ବାଳିକା କହିଲେ ତ ଭୁଲ, ସୁନ୍ଦର କଥା ବି ଠିକ୍ ନୁହେଁ ବୋଲି ସେ କହନ୍ତି । କ୍ଲାସରେ ସେଇଆ, ସାଙ୍ଗମେଳ କଥାବାର୍ତ୍ତାରେ ବି ସେଇଆ । ଗୋଟାଏ ଶନିବାର ତାଙ୍କର ମୋର ରେଳରେ ସହଯାତ୍ରୀ ହେଲୁ । ଖୁବ୍ ଆଦରରେ ପାଖରେ ବସାଇଲେ । କଥାବାର୍ତ୍ତା ହେଉ ହେଉ ମୋର ଓ ତାଙ୍କର ପରିଚିତ ଜଣକ ଖବର ପଚାରିଲେ । ତାଙ୍କର ଖୁବ୍ ଦେହ ଖରାପ ଥାଏ । ମୁଁ କହିଦେଲି ତାଙ୍କ ଅବସ୍ଥା ଶୋଚନୀୟ । ଯାଏ କୁଆଡ଼େ ? ମୋ ଭଳିଆ ଜଣେ ଛାତ୍ର ଶୋଚନୀୟା ନ କହି ଶୋଚନୀୟ କହିବା ଗୁରୁତର ଦୋଷ ହୋଇଗଲା । ଅବସ୍ଥାର ଯେ ସ୍ତ୍ରୀ ଲିଙ୍ଗ ! ଆମେ ସତ୍ୟବାଦିଆ, ସ୍ତ୍ରୀ ଲୋକଟି ସୁନ୍ଦର ବୋଲି କହୁ । ଅବସ୍ଥାର ବିଶେଷଣକୁ ଆକାରାନ୍ତ କରିବା କଥା ମୋ ମନକୁ କାହିଁକି ଆସନ୍ତା ? ଘୁଡୁଡେଇ ଘୁଡୁଡେଇ ସେ ବାରମ୍ବାର କହୁଥା'ନ୍ତି, "କ'ଣ କହିଲ, ଅବସ୍ଥା ଶୋଚନୀୟ !" ମୁଁ କଥା ମନକୁ ନ ନେଇ ବାରମ୍ବାର କହୁଥାଏ, "ହଁ, ଆପଣେ ତାଙ୍କ ଅବସ୍ଥା ଶୋଚନୀୟ । ବୋଧହୁଏ ତାଙ୍କୁ ଟାଇଫଏଡ୍ ହୋଇଛି ।" ପଣ୍ଡିତେ ଟାଇଫଏଡ୍ ବି କହିବାବାଲା ନୁହନ୍ତି । ଫୁଟବଲକୁ ଚର୍ମକନ୍ଦୁକ ବୋଲି କହନ୍ତି । ପଣ୍ଡିତେ ତର୍ଜମା କରି କହିଲେ, "ଓଃ ଆନ୍ତ୍ରିକ ଜ୍ୱର । ସାନ୍ନିପାତିକ ବିକାର ବି ହୁଏ । କିନ୍ତୁ ଏହା ଦୁରାରୋଗ୍ୟ ବ୍ୟାଧି ନୁହେଁ ।" ଏତକ କହି ପୁଣି ସେଇ ପ୍ରଶ୍ନ, "କ'ଣ କହିଲ ବାବୁ; ଅବସ୍ଥା ଶୋଚନୀୟ ।" ନୂଆ ହୋଇ ଖୋଲିଥିବା ମଞ୍ଚେଶ୍ୱର ଷ୍ଟେସନରୁ ଗାଡ଼ି ଛାଡ଼ିବାରେ ମୋର ଜ୍ଞାନୋଦୟ ହେଲା । ପଣ୍ଡିତଙ୍କୁ ପଦଟାଏ କହିବି ବୋଲି ଅଣ୍ଟାଭିଡ଼ି ରହିଲି । ତାଙ୍କର ବା ମୋର ଦୁର୍ଯୋଗକୁ ସେ ଭୁବନେଶ୍ୱରଠାରେ ରେଳରୁ ଓହ୍ଲାଉ ଓହ୍ଲାଉ କହିଲେ, "ହଉ ଯାଅ, କଟକ ଫେରିଲେ ଆସିବ । ହଁ, କହିଲ ପରା ଅବସ୍ଥା ଶୋଚନୀୟ !" ମୁଁ ସ୍ପଷ୍ଟଭାବରେ ଅବଶ୍ୟ ତାଙ୍କ ପାଦକୁ ଚାହିଁ କହିଦେଲି, "ପଣ୍ଡିତ ମହାଶୟ ! ଆପଣ ଲିଙ୍ଗଟି ଧରିଛନ୍ତି ବୋଲି ମୁଁ ଜାଣି ପାରିନଥିଲି ।" ପଣ୍ଡିତେ ବୁଲିପଡ଼ି ତାଙ୍କ ତମ୍ବା ରଙ୍ଗ ଆଖିରେ ମୋତେ ପୋଡ଼ିଦେଲା ପରି ଚାହିଁଲେ ଓ 'ହୁଁ' ବୋଲି କହି ଚାଲିଗଲେ । ଏ ଶବ୍ଦଟା ସେ ଯେପରି ସ୍ୱରରେ କହିଲେ ସେଥିରୁ ମୁଁ ଭାବାର୍ଥ ବୁଝିଲି, ସେ ମୋତେ ଭଲ ପିଲା ବୋଲି ବିଚାରି ଭୁଲ କରିଛନ୍ତି । ତାଙ୍କ ଅଭିଶାପ ଭୟରେ ମୁଁ ସୁଡୁ ବୁଡୁ । ମୋ ଆଡୁ ଏହା ଏବେ ସର୍ବପ୍ରଥମ ଲେଖୁଛି । କିନ୍ତୁ ପଣ୍ଡିତେ କଟକ ଫେରି ଏକଥା ନିମେଇଁ ବାବୁ ଏବଂ ଅନ୍ୟ ଶିକ୍ଷକମାନଙ୍କୁ ଶୁଣାଇ ମୁଁ କେଡ଼େ ବଗୁଲିଆ ପିଲା ପ୍ରଚାର କରିଦେଇଥା'ନ୍ତି । ମୁଁ ଦିନେ ଯାଇ ହେଡ୍‌ମାଷ୍ଟରଙ୍କୁ ନମସ୍କାର କରୁ କରୁ ସେ ହସି ହସି ମୋତେ କୁଣ୍ଢାଇ ପକାଇ କହିଲେ, "ପଣ୍ଡିତଙ୍କୁ ଠିକ୍ ଓଷୁଅ ଦେଇଛୁ ।" ସେ ରହସିଆ ଲୋକ ବୋଲି ସିନା ଏପରି କହିଲେ, ପଣ୍ଡିତଙ୍କ ପ୍ରତି ଅନ୍ୟାୟ କରିଛି ବୋଲି ମୁଁ ବିଶେଷ ଅନୁତପ୍ତ ହୋଇଥିଲି । ଗଦାଧର ପଣ୍ଡିତେ ଗଲା ଦିନଠାରୁ ହିନ୍ଦୀ ପରି ଆମ ଭାଷାରେ ବିଶେଷଣକୁ ବିଶେଷ୍ୟ ସଙ୍ଗେ ଲିଙ୍ଗିତ କରିବାର ଉଦ୍ୟମ ସରିଛି ।

କଲେଜ ଖୋଲିଗଲା । ମୁଁ ମଝିରେ ମଝିରେ ଯାଇ କଲେଜ କମ୍ପାଉଣ୍ଡ ଭିତରେ ଓ ବାହାରେ ଟିକିଏ ଟିକିଏ ପଇଁତରା ମାରି ଆସୁଥାଏ । ନୂଆ ପିଲାମାନେ ଆସି ନାମ ଲେଖାଉଥା'ନ୍ତି । ଜୁଲାଇ ପନ୍ଦରଠାରୁ କ୍ଲାସ୍ ଆରମ୍ଭ ହୋଇଗଲା । ମୋର ମନ ହାଇଁପାଇଁ ହେଉଥାଏ, କଲେଜରେ ନାମ ଲେଖାନ୍ତି, କ୍ଲାସରେ ଯୋଗ ଦିଅନ୍ତି ବୋଲି । ପରୀକ୍ଷା ଫଳ ବାହାରୁ ନାହିଁ କାହିଁକି ବୋଲି ମନରେ କର୍ତ୍ତୃପକ୍ଷଙ୍କ ଉପରେ ରାଗ ହେଉଥାଏ । ନାମ ଲେଖାଇବା ପଇସା ଜୁଲାଇ ମାସ ମଝିରୁ ପକେଟରେ ସାଇତା ହୋଇ ରହିଥାଏ । ବେଳେବେଳେ ଜିହ୍ୱା ଲାଳସା ଯୋଗୁଁ ସେଥିରୁ ଦି'ଅଣା ଚାରଣା ନିଅଣ୍ଟ ହୋଇଗଲେ ତାକୁ ଉଦ୍ୟମ କରି ସମାନ କରି ଦେଉଥାଏ । ବାର୍ଷିକ ପରୀକ୍ଷା ଫଳ ସେ ବର୍ଷ (୧୯୨୫) ସବୁ ବର୍ଷ ପରି ଏପ୍ରିଲ ମାସରେ ବାହାରି ସାରିଥିଲା । ସପ୍ଲିମେଣ୍ଟାରୀ ପରୀକ୍ଷା ହେଲା ମେ' ମାସ ଶେଷରେ ବା ଜୁନ୍ ପ୍ରଥମ ସପ୍ତାହରେ, ଠିକ୍ ମନେନାହିଁ । ଦୁଇ ମାସ ଭିତରେ ଫଳ ବାହାରିବାର କଥା । ଜୁଲାଇ ଶେଷ ସପ୍ତାହବେଳକୁ ମନ ଭାରି ଉଚ୍ଛନ୍ନ ହେଲା । ଇତିହାସ, ଲଜିକ୍ ଓ ସଂସ୍କୃତ ନେବି ବୋଲି ଆଗରୁ ସ୍ଥିର କରିଥାଏ । କ'ଣ କ'ଣ ବହି ଚଳୁଛି ବୁଝି ଖଣ୍ଡେ ଦି'ଖଣ୍ଡ ଲେଖାଏଁ ପଢ଼ା ବହି ବି ସଂଗ୍ରହ କରି ସାରିଥାଏ । ଟିଉସନ୍ ପାଇଁ ଆଗରୁ ଖଣ୍ଡେ ଇଂରେଜୀ ଡିକ୍‌ସିନାରୀ (Chamber's) ସଂଗ୍ରହ ହୋଇଥାଏ । ମନ ନିତାନ୍ତ ଅଥୟ ହେଲାରୁ ପଢ଼ା ବହିରୁ କେତେ ପତ୍ର ଲେଖାଏଁ ପଢ଼ି ପକାଉଥାଏ । ଇଂରେଜୀ ପାଠ୍ୟରୁ ଗୋଟାଏ ବହି ତ ମୂଳରୁ ଶେଷ ଯାଏଁ ଲେଉଟାଇଦେଲି ।

ନୂଆକରି କଲେଜରେ ନାମ ଲେଖାଇଥିବା କେତେକଣ ଛାତ୍ରଙ୍କ ସଙ୍ଗେ ପରିଚ଼ିତ ହୋଇ କେତେ ପଢ଼ା ହେଲାଣି, ଆମେ ଯେ ପରେ ନାମ ଲେଖାଇବୁ ତାଙ୍କ ପାଇଁ ସିଟ୍ ମିଳିବ କି ନାହିଁ ବାରମ୍ବାର ବୁଝା ହେଉଥାଏ । ସତ୍ୟବାଦୀ ସ୍କୁଲରେ ମୋ' ଉପରେ, ସାଙ୍ଗରେ ଓ ତଳେ ପଢ଼ିଥିବା କେତେଜଣ ବାର୍ଷିକ ପରୀକ୍ଷାରେ ପାସ୍ କରି ନାମ ଲେଖାଇଥା'ନ୍ତି । ତାଙ୍କ ସଙ୍ଗେ ଘନିଷ୍ଠ ସହଯୋଗ ରଖି ପଢ଼ା ଓ ପ୍ରଫେସରଙ୍କ ବିଷୟରେ ତଥ୍ୟ ସଂଗ୍ରହ ଚାଲିଥାଏ । ବାର୍ଷିକ ପରୀକ୍ଷାରେ ପାସ୍ କରିଥିବା ସଙ୍ଗୀଙ୍କ ଭିତରୁ ଲିଙ୍ଗରାଜ ମିଶ୍ର ଆସି ଶେଷରେ ଆବିର୍ଭୂତ ହେଲେ । ନାମ ଲେଖାଇବା ଫିସ୍ ଯୋଗାଡ଼ କରିପାରିନଥିବାରୁ ତାଙ୍କର ନାମ ଲେଖାଇବାରେ ଡେରି ହୋଇଥାଏ । ସେ ଦିନେ ମୋତେ ଖୋଜି ଖୋଜି ଆସି ପହଞ୍ଚିଲେ । ତାଙ୍କ ପାଇଁ ରହିବା ଜାଗା ଠିକ୍ ହୋଇଗଲା । ମେସ୍‌ରେ କିଛି ପଇସା ଆଡ଼ଭାନ୍‌ସ ଦେଇ କଲେଜ ଅଫିସକୁ ଗଲାବେଳକୁ ତାଙ୍କର ପାଞ୍ଚ ସାତ ଟଙ୍କା ନିଅଣ୍ଟ । ମୋର ପକେଟ୍‌ରେ ମହଜୁଦ ଥିବା ନାମ ଲେଖା ଟଙ୍କାରୁ ତାଙ୍କ ଅଭାବ ଭରଣା କରି ନାମ ଲେଖାଇଦେଲୁ । ମୋ ନିଜ ନାମ ଲେଖାଇଲା ପରି ଲାଗିଲା ।

ତା'ରି ଦିନେ ଦୁଇଦିନ ଭିତରେ ଫଳ ବାହାରିପଡ଼ିଲା । ମୋ' ନାମ ଫାଷ୍ଟ ଡିଭିଜନ୍‌ରେ । ସେ ପର୍ଯ୍ୟନ୍ତ ସପ୍ଲିମେଣ୍ଟାରୀ ପରୀକ୍ଷାରେ କେହି ପ୍ରଥମ ଶ୍ରେଣୀରେ ପାସ୍ ନ କରିଥିବାରୁ ମୋର

ଟିକିଏ ବାହାଦୁରି ବଢ଼ିଲା । କିନ୍ତୁ ସେଥିକୁ କାନ ଦେବାକୁ ମୋର ଫୁରସତ୍ କାହିଁ ? ନିଅଣ୍ଟ ହୋଇଥିବା ଟଙ୍କା ଭରିଣା କରି କଲେଜ ଅଫିସ ଝରକା ପାଖେ ଯାଇ ଠିଆ ହେବାକୁ ଅଠଚାଳିଶ ଘଣ୍ଟା ଡେରି ହୋଇଗଲା । ଏ ବିଳମ୍ବ ମୋତେ ଯେତେ ବାଧୁଥାଏ, ଲିଙ୍ଗରାଜ ମିଶ୍ରଙ୍କୁ ବାଧୁଥାଏ ତହିଁରୁ ଢେର ବେଶି । ଏ ବାଧାର ଉପଶମ ପାଇଁ ସଂଗୃହୀତ ଧନରୁ ଚାରି ପାଞ୍ଚଣା ଗୁଡ଼ିଆ ଦୋକାନରେ ପୁଣି କମିଯିବାର ବେଶ୍ ମନେଅଛି । ଲିଙ୍ଗରାଜ ମିଶ୍ରେ ଏ ବୃଥା ଖର୍ଚ୍ଚ କରିବାକୁ ଖୁବ୍ କୁନ୍ଥୁ କୁନ୍ଥୁ ହେଉଥାନ୍ତି । ମୁଁ ରାଏ ଦେଲି, "ତିନି ଟଙ୍କା ଯଦି ଭରିଣା କରିପାରିବା, ତେବେ କ'ଣ ଆଉ ପାଞ୍ଚଅଣା ପାଇଁ ଅଟକିଯିବ ?"

ନାମ ଲେଖା ହୋଇଗଲା ଓ ନିୟମିତ କଲେଜକୁ ପଦଯାତ୍ରା ଆରମ୍ଭ ହୋଇଗଲା । ସେତେବେଳେ ବସା ବାଖରାବାଦ ସତ୍ୟବାଦୀ ମେସରେ । କଲେଜ ସେଠାରୁ ସମାନ ତିନି ମାଇଲ । କିଛି ଦିନ ପରେ ସେଠାରୁ ଆସି ବାଖରାବାଦରେ ଗୋଟିଏ ସ୍ୱତନ୍ତ୍ର ଘର ନେଇ ରହିଲୁ । ସେତେବେଳର ଜଣେ ବିଶିଷ୍ଟ ଆଡ଼ଭୋକେଟ ବୈକୁଣ୍ଠନାଥ ଦତ୍ତଙ୍କର ଘର- ଚାରି ଟଙ୍କା ଭଡ଼ା, ଓପର ସାହାଲାରେ ରହିବା ଘର ବଖରାଏ, ତଳ ସାହାଲାରେ ରୋଷେଇ ଘର ବଖରାଏ । ବିସ୍ତୀର୍ଣ୍ଣ ଅଗଣା, ଅଗଣାରେ କୂଅ । ଆଉ ଜଣେ ମାତ୍ର ସେ ଖଞ୍ଜାରେ ସେଇ ଚାରିଟଙ୍କିଆ ଭଡ଼ାଟିଆ- ଜଣେ ବୟସ୍କ, ମାତ୍‌ପର ଓକିଲ ମୋହରୀର । ତାଙ୍କ ସଙ୍ଗେ ଖୁବ୍ ଘନିଷ୍ଠତା କାହୁଁ କାହୁଁ ହୋଇଗଲା । ସେ ଆମକୁ ନିଜ ପୁଅ ପରି ସ୍ନେହ କରୁଥା'ନ୍ତି ଏବଂ ଆମର ଅଣ୍ଟନିଅଣ୍ଟବେଳେ ଆଗ୍ରହରେ ଚାରଣା ଆଠଣା ଉଧାର ବି ଦିଅନ୍ତି । ବର୍ଷକ ଭିତରେ ପୁରୀଘାଟରେ ପାଞ୍ଚଟଙ୍କାକୁ ଗୋଟିଏ ଘରଭଡ଼ା ନେଇ ଉଠିଗଲି । କିନ୍ତୁ ଏହି ବୃଦ୍ଧଙ୍କ ସଙ୍ଗେ ସଂପର୍କ ତୁଟିଲା ନାହିଁ । ମଝିରେ ମଝିରେ ସେ ଆସି ଆମ ଖବର ବୁଝିଯା'ନ୍ତି, ମୁଁ ମଧ୍ୟ ସେପଟର ଟିଉସନରୁ ଫେରିବାବେଳେ ତାଙ୍କ ବସାରେ ମୁହଁ ମାରିଦେଇ ଆସେ । ମୋର ପଢ଼ା ସରିବାର ୨୦ ବର୍ଷରେ ସେ ମଲେ; ସେଦିନ ପର୍ଯ୍ୟନ୍ତ ସେ ମୋର ମୁରବି ଭଳିଆ ଆଚରଣ କରି ଆସିଥିଲେ । ତାଙ୍କ ମୁହଁରେ ସବୁବେଳେ ମୋର ପ୍ରଶଂସା, କେବଳ ମୁଁ ବି.ଏ. ଶେଷ କ୍ଲାସରେ ପଢୁଥିବାବେଳେ ମୋତେ ସେ ଥରେ ମାତ୍ର ରାଗିଯାଇ ବାଳୁଙ୍ଗା ବୋଲି କହିଥିଲେ ଏବଂ ଯାହାର ଭାଗ୍ୟରେ ନାଇଁ ସେ କଦାପି ବଡ଼ ହୋଇପାରିବ ନାହିଁ ବୋଲି ମନ ଦୁଃଖରେ ମନ୍ତବ୍ୟ ଦେଇଥିଲେ । ଏହାର କାରଣ, ବି.ଏ. ପାସ୍ କଲା ପରେ ଡେପୁଟି ସବ୍‌ଡେପୁଟି ଚାକିରି ପାଇଁ ଦରଖାସ୍ତ ଦେବାକୁ ମୋର ଦୃଢ଼ ନାସ୍ତିବାଣୀ । କିନ୍ତୁ ଏ ଗ୍ଲାନି ମୋ ପକ୍ଷରେ ବା ତାଙ୍କ ପକ୍ଷରେ ହପ୍ତାଏ ବି ରହିଲା ନାହିଁ ।

ଏ ଘଟଣାର ଷୋଳ ବର୍ଷ ପରେ ମୁଁ ଗୋଟିଏ ଛୋଟିଆ ଚାକିରି ଗ୍ରହଣ କରିଥାଏ, ଗୋଟିଏ ସଂକୀର୍ଣ୍ଣ ଘରେ ରହିଥାଏ । ସାମଲ ନା ସାମନ୍ତରାୟ, ସେଇ ବୃଦ୍ଧ ଦୈବାତ୍ ହାବୁଡ଼େ ପଡ଼ିଲେ; ମୋ ସାଙ୍ଗେ ମୋ ରହିବା ଘରକୁ ଆସିଲେ । ଆଗରୁ ତ କହିଛି ସେ ମାତ୍‌ପର୍, ଖାନ୍‌ଦାନ୍ ଲୋକ;

ଓକିଲ ମୋହଗୀରଙ୍କ ସ୍ୱାଭାବିକ ବୁଭୁକ୍ଷୁ ଚକ୍ଷୁ ତାଙ୍କର ନ ଥାଏ । ଦୁଃଖ ସୁଖ ପରେ, କ୍ଷୋଭରେ କହିଲେ, "ଚାକିରି କରିବାର କଲ, ବେଳସୁଁ କରିଥିଲେ ଏତେବେଳକୁ ସବ୍‌ଡିଭିଜନ ମାଜିଷ୍ଟ୍ରେଟ୍ ହୋଇଥା 'ନ୍ତ । (ସ୍ୱରାଜ୍ୟ ଅମଳର ପୂର୍ବ କଥା-ସବ୍‌ଡିଭିଜନ ମାଜିଷ୍ଟ୍ରେଟ ବୋଲି କହିଲେ ଭାରି ବଡ଼ଲୋକ, କ୍ଷମତାପନ୍ନ ଏବଂ ସମ୍ପତିସମ୍ପନ୍ନ ମଧ୍ୟ । ମୋର ସଙ୍ଗୀମାନେ ସେତେବେଳକୁ ସେଇ ପାହିଆ ଯାଏଁ ଚଢ଼ି ପାରିଥା 'ନ୍ତି ।) ତମେ କିଲଟର ହୋଇ ପାରିଥା 'ନ୍ତ । ମଝି ବୟସରେ ଆସିଲ ଯେ କୋଉଯାଏଁ ଯିବ ? ପଦ୍ମଚରଣ ଦାସେ ସେକ୍ରେଟେରୀ ହୋଇଛନ୍ତି !" ଯେ, ୧୯୪୪ର କଥା । ତାଙ୍କ ସାଙ୍ଗରେ ଶେଷ ସାକ୍ଷାତ୍ ହୋଇଥିଲା ଭୁବନେଶ୍ୱରରେ ୧୯୫୫ ଖ୍ରୀଷ୍ଟାବ୍ଦରେ । ଚାକିରି ଛାଡ଼ ନାହିଁ ବୋଲି ପରାମର୍ଶ ଦେବାକୁ ଆସିଥିଲେ ।

ଗୁଡ଼ାଏ ଅମଡ଼ା ମାଡ଼ି ହୋଇଗଲା । କହୁଥିଲି ୧୯୨୫ କଥା ୧୯୫୫ର କଥା ଯାଏଁ ମନ ଚାଲିଗଲା । କଲେଜକୁ ପଦଯାତ୍ରାର ସ୍ମୃତି ସାଇତି ରଖିବାକୁ କେତେ ଜଣ ଚାହାଁନ୍ତି ? କିନ୍ତୁ ସେ ବେଳର କଥା ମନେ ପଡ଼ିଗଲେ କାହୁଁ କାହୁଁ ଝୁରି ହେବାକୁ ପଡୁଛି । କଲେଜରେ ପଶିଲି, ଜଗନ୍ନାଥ ମିଶ୍ରଙ୍କଠାରୁ ସଂସ୍କୃତ, ଓଷ୍ଟନ୍ ସ୍ମିଥ୍‌ଠାରୁ ଇତିହାସ, ଲ୍ୟାମ୍ବଟ ସାହେବଠାରୁ ଇଂରେଜ ପଢ଼ିବାର ସୌଭାଗ୍ୟ ମିଳିଥାଏ । ପଇସାର ଅଭାବ ନ ଥାଏ । କେବଳ ଯାହା ଯିବା ଆସିବା ଛଅ ମାଇଲର ପଦଯାତ୍ରା ! ଟିଉସନ୍ ବାବତ୍ ଦଶ ମାଇଲଟା ଆଖିକୁ ବଡ଼ ଦିଶୁ ନ ଥାଏ । ସାଇକଲ ଖଣ୍ଡେ ହେଲେ ଭାରି ସୁବିଧା ହୁଅନ୍ତା ବୋଲି ମନରେ ମଝିରେ ମଝିରେ ଯୋଜନା ହେଉଥାଏ । ମୋ ଭାଇର ମଧ୍ୟ ସେଇ ଇଚ୍ଛା । ସେ ମୋର ଅଜାଣତରେ ସାଇକଲ ଶିଖିଯାଇଥାଏ । ମୋତେ ଶିଖାଇବାକୁ ବ୍ୟାକୁଳତାରେ ଜମିଖଣ୍ଡେ ବନ୍ଧା ପକାଇ ବା ବିକି ସାଇକଲ ଖଣ୍ଡେ କରିବାକୁ ତା ' ଆଡୁ କ୍ଷୀଣ ସୂଚନା ବି ବାରମ୍ବାର ଆସିଥାଏ । ମୋର କିନ୍ତୁ ଭରସା ପାଉନଥାଏ । ଜୋତା ହେଲା, ଧୋବ ଫର୍ ଫର୍ ବିଦେଶୀ ଲୁଗାକୁ ଇସ୍ତି କରା କାମିଜ୍ ବି ହେଲା-ଯେ, ଗରମ ଡାଳ ମଡ଼ା ଇସ୍ତି ନୁହେଁ, ଖାସ୍ ଧୋବାର ଇସ୍ତି । କାମିଜଟିକୁ କାଚି ବା କଚାଇ ଧୋବା ଦୁଆରେ ଅଧଲାଟିଏ ଦକ୍ଷିଣା ଦେଇଦେଲେ, ତତ୍‌କ୍ଷଣ କାର୍ଯ୍ୟସିଦ୍ଧି । ଧୋବାର ତତ୍‌କ୍ଷଣ ସେବା ଓ କଲେଜ ଯାତ୍ରା ପାଇଁ ତରତର ହେଉଥିବା କଲେଜ ଛାତ୍ରଙ୍କ ତତ୍‌କ୍ଷଣ ସନ୍ତୋଷ । ପୂରାଦସ୍ତୁର ବାବୁ ହେବାକୁ ସାଇକଲ ଖଣ୍ଡିଏ ହେଲେ ତ ବେଶ୍ ହୁଅନ୍ତା । କିନ୍ତୁ ହୁବ ପାଉନଥାଏ। ହୁଁ ଫାଣିଆ ଭାବରେ ଯେଉଁ ଯୋଜନାଟା କରିପକାଇଛି ତାହା ଯଦି ମଝିରେ ଫସର ଫାଟିଯାଏ ? ଆମର ରୋଷେଇ କରିବାରେ ସନ୍ଦେହ ନ ଥାଏ, ବାଟଚଲାରେ ବା ଟିଉସନ୍ ପାଇବାରେ ସନ୍ଦେହ ନ ଥାଏ, କିନ୍ତୁ ଏ ସବୁ କରି ପାଠପଢ଼ାରେ କୃତିତ୍ୱ ଅର୍ଜିବା ଯଦି ସମ୍ଭବ ନ ହେବ ? ପ୍ରଥମ ଯୋଡ଼ିକ ବର୍ଷ ନିଜର ସାମର୍ଥ୍ୟର କଳନା କରିବାରେ ଗଲା । ବି.ଏ.ରେ ନାମ ଲେଖାଇବା ପୂର୍ବରୁ ଭାଇର ସୂଚନା କାର୍ଯ୍ୟକାରୀ ହୋଇଗଲା, ତାରିଠାରୁ ସାଇକଲ ଚଢ଼ା ଶିଖିଲି ଓ ତୃତୀୟ ବାର୍ଷିକ ପରୀକ୍ଷା

ସଚିବାୟାଏଁ ସାଇକଲରେ କଲେଜକୁ ଗଲି। ୪ର୍ଥ ବର୍ଷଟା କଲେଜ ହଷ୍ଟେଲରେ ରହିଲି, ଓକିଲାତି ପଢ଼ିଲାବେଳକୁ ପୁଣି ପ୍ରଥମ ଦୁଇବର୍ଷର ଅବସ୍ଥାକୁ ଫେରିଲି। ତିନୋଟି ସ୍ତର। ଏଥିରୁ ପ୍ରଥମ ଦୁଇବର୍ଷର ପଦଯାତ୍ରା ବେଳେ ଥିଲା ମୋର ସବୁଠାରୁ ଭଲ।

ଆଗ ଠିକ୍ ହେଲା କୋଉ ବାଟରେ କଲେଜକୁ ଗଲେ ସବୁଠାରୁ କମ୍ କଷ୍ଟ ହେବ, ଅର୍ଥାତ୍ କୋଉ ବାଟଟା ପାଖ। ତିନିଟା ବାଟ ପାଦରେ ମାପିଦେଇ ସ୍ଥିର ହୋଇଥାଏ ଯେ, ରାଜାବଗିଚା, ଶିଖରପୁର ରାସ୍ତାଟା ଜଙ୍ଗଲିଆ ହେଲେ କ'ଣ ହେଲା, ପାଖ। ଆଜି ଶ୍ରମିକ କଲୋନୀ, ଲିଙ୍କ୍‌ରୋଡ୍ ଇତ୍ୟାଦି ଦ୍ୱାରା ଯା'ର ରୂପ ବଦଳିଗଲାଣି। ସେତେବେଳେ ଉଇହୁଙ୍କା ଓ ବେତବୁଦା କଡ଼ରେ ଡଗର ବାଟରେ ଯାଇ ଶିଖରପୁର ଗାଁ ଭିତରେ ପଶି କେନାଲମୁଣ୍ଡେ ବାହାରି, କଲେଜ ପାଚିରି ଡେଇଁ ଦକ୍ଷିଣ ପଶ୍ଚିମଦିଗରୁ କଲେଜ ହତାରେ ପଶିବାକୁ ହୁଏ। ବାଟ ହେଲା ପରେ ଖୋଜିଲି ପଥ-ସଙ୍ଗୀ। ଆଠ ଦଶଜଣ ପଦଯାତ୍ରୀ ଆମ ଭିତରେ ଥା'ନ୍ତି। କାହାର କୋଉ ପିରିଅଡ଼ରେ କ୍ଲାସ, ତାକୁ ଚାହିଁ ଯିବାବାଲାଙ୍କୁ ମୋ ସାଙ୍ଗରେ ପାଇବା କଷ୍ଟ। ନାନାପ୍ରକାର ପ୍ରଲୋଭନ ଦେଖାଇ ଡେରିରେ ଯିବାକୁ ଥିବା ପିଲାଙ୍କୁ ଆଗରୁ ଟାଣିବାକୁ ହୁଏ; ଜଙ୍ଗଲ ରାସ୍ତାରେ ଯିବାକୁ ଅମଙ୍ଗଙ୍କୁ ହେମତ୍ ଦେବାକୁ ହୁଏ। ସବୁଠାରୁ ବଡ଼ ପ୍ରଲୋଭନ ହୁଏ ଅଧ୍ୟାପକମାନଙ୍କ ସ୍ୱରରେ ବିଭିନ୍ନ ବିଷୟରେ ବକ୍ତୃତା ଦେବା, ଶ୍ଳୋକାନ୍ତ କରିବା, ଶ୍ଳୋକାର୍ଥ କରିବା ଇତ୍ୟାଦି। ହୁଙ୍କାପୂର୍ଣ୍ଣ ବେତବଣିଆରେ ଗୋଟାଏ ଅତି ଡଗୁଆ ସାଙ୍ଗକୁ (ମରିଗଲାଣି) ଧରି ଯାଉଛି, ବରଦାବାବୁଙ୍କ ସ୍ୱର ଓ ଠାଣିରେ ଡକ୍ଟର ଜନସନ୍ ଓ ବସ୍‌ୱେଲଙ୍କ କଥୋପକଥନ ସଙ୍ଗେ କଲେଜ ଆଡ଼କୁ କ୍ଷିପ୍ର ଗତିରେ ଚାଲିଛି, ହଠାତ୍ ଗୋଟାଏ କଡ଼ରୁ ବଡ଼ ସାପଟାଏ ବେତବୁଦାମୂଳ ଗାତରେ ପଶିଗଲା। ତହିଁ ଆରଦିନଠାରୁ ସାଥୀ କଲି ଗୋଟାଏ ବଡ଼ ଠେଙ୍ଗା। ସେଇଟା କାନ୍ଧରେ ଥାଏ, ବହି ଥାଏ କାଖରେ, ଆଣ୍ଠୁ ଉପରକୁ ଫଟିକଛା ଚଢ଼ା ହୋଇଥାଏ। ସେକାଳ କଟକର ଧୂଳି ଆଣ୍ଠୁତଳ କାମିଜ ପ୍ରାନ୍ତକୁ ଛୁଇଁବାକୁ ଉଠୁଥାଏ। ଏ ବେଶ ବଦଳେ କଲେଜର ପଶ୍ଚିମପଟ ପାଣି ପାଇପ ଧାଡ଼ି ମୂଳେ। ସେଠାରେ ପୂର୍ବରୁ ପାଇପ ସନ୍ଧିରେ ସାଇତା ହୋଇଥିବା ଖଣ୍ଡିଏ କନାରେ, ତଦ୍‌ଭାବେ ରୁମାଲରେ ପାଣି ପୋଛି, ଜୋତାରୁ ବି ଧୂଳି ପୋଛି, ଫେର ଛାଡ଼ି ନୟନଯୋଡ଼ି ବାବୁ ରୂପରେ ପିଲାଙ୍କ ଭିତରେ ମିଶିବାକୁ ହୁଏ। ଏଥିରେ ଥା'ନ୍ତି କନିକାର ବର୍ତ୍ତମାନ ରାଜା, ଢେଙ୍କାନାଳର ପୂର୍ବ ରାଜା ଓ ଟିକାୟତ, ଜମିଦାର ମୋତିଲାଲ ପଣ୍ଡିତ। ଯାଙ୍କଠାରୁ ତଳପାହାଚ଼ରେ ଯାଇ ଯାଇ ଅତି ଦୁଃସ୍ଥ ଓ ଅତି ମେଳଛିଆ ଦୁଇ ଚାରିଜଣ ଥା'ନ୍ତି, ଯେଉଁମାନେ ଅଦ୍ୟାପି ବଞ୍ଚିଛନ୍ତି ଏବଂ ବେଶ୍ ସଙ୍ଗତିସମ୍ପନ୍ନ ବି ହୋଇଛନ୍ତି। ବର୍ତ୍ତମାନ ବି ଏ ସମସ୍ତଙ୍କ ସଙ୍ଗେ ସଂପ୍ରୀତି ରହିଛି।

ବୋଧହୁଏ ମୁଁ ଏତିକି ବାହାଦୁରି ନେଇପାରେ ଯେ, ପୂର୍ବରେ ଦୋଅଣି ହକେଇଲା ପରି ମୁହଁ କରି ଯେଉଁ ଦରିଦ୍ରଗୁଡ଼ାକ ଲୁସୁରପୁସୁର ହୋଇ କଲେଜକୁ ଧୂଳିଧୂସରିତ ଦେହରେ ଚାଲି

ଚାଲି ଆସୁଥିଲେ ସେମାନଙ୍କର ମୁହଁର ଓ ଲୁଗାପଟାର ଚେହେରା ମୋ ଯୋଗୁଁ ଟିକିଏ ବାଗେଇଗଲା । ମହା ଅରକ୍ଷିତର ଠାଣି ଦେଖି ସେମାନେ ସମସ୍ତଙ୍କର ଆତ୍ମଗୌରବ ଟିକିଏ ଟିକିଏ ବଢ଼ିଗଲା । ଫଂଙ୍କେ ଯେ ବିଦ୍ରୂପ ନ କରୁଥାନ୍ତି, ତାହା ନୁହେଁ । ମୋ ଠେଙ୍ଗା ଖଣ୍ଡକ ଯୋଗୁଁ ସବୁଯାକ ସାଙ୍ଗଙ୍କୁ ଭାରି ଲାକ ମାଡୁଥାଏ । ଶିଖରପୁରରେ କାହା ପାଖେ ଏଇଟା କିମା ଦେଇ କଲେଜକୁ ଆସିବା ଭଦ୍ରତା ହୁଅନ୍ତା ବୋଲି ହିତୈଷୀମାନେ ପରାମର୍ଶ ଦେଉଥା 'ନ୍ତି । କିନ୍ତୁ ଥଟ୍ଟା ବିଦ୍ରୂପକୁ ଖାତିର ନ କରି ଛତରା ଗୋଲୋକ ଠେଙ୍ଗାଟା କାନ୍ଧରେ ପକାଇ ବସ୍ତିବାଲେ ହୁସିଆର ବୋଲି ଆମ କମନ୍ ରୁମରୁ ଥରେ ବାରଣ୍ଡାକୁ ବାହାରିଲାବେଳକୁ ପ୍ରିନସିପାଲ ଲ୍ୟାମ୍ବଟ ହାବୁଡ଼ିଗଲେ । "ମନେ ହେଉଛି, ତୁମକୁ ଅଦ୍ୟାପି ବର୍ବରତା ଛାଡ଼ିନାହିଁ ! (one would think you are still a savage)" ବୋଲି କହି ସେ ଚାଲିଯିବା ପରେ ଆମ କମନ ରୁମରେ ଯେଉଁ ଅବସ୍ଥା ତାହା ଦେଖିଥିଲେ ସେ କ'ଣ ବିଚାରିଥାନ୍ତେ କେଜାଣି ?

ଦିନେ ହଠାତ୍ ଠେଙ୍ଗା ତା ' ମାନ ରଖିଲା । ନିରର୍ଥକ ମୁଁ ତାକୁ ବୋହିବାର ପ୍ରାୟ ଚାରି ପାଞ୍ଚ ମାସ ହୋଇଯାଇଥାଏ । ଦିନେ ସାପଟାଏ ଦେଖିଛୁ ବୋଲି ଯେ ପୁଣି ଦେଖିବୁ ଯାକୁ ଲକିକ ସାହାଯ୍ୟରେ କେତେଜଣ ଏକାବେଳକେ ଉଡ଼େଇ ଦେଇଥା 'ନ୍ତି । ସେଇ ଜାଗାରେ, ସେଇ ବୁଦା ମୂଳରେ, ସେଇ ସାପ ଦିନେ ହଠାତ୍ ହାବୁଡ଼େ ପଡ଼ିଗଲା । ମୁଁ ପୂରା ଜାଗ୍ରତ ନ ଥିଲେ ସେ ଖସି ଯାଇଥାନ୍ତା । ପିଟି ପିଟି ତାକୁ ପନ୍ଦର ପଣ ମାରିଦେଲି । ଆଉ ଯେଉଁ ଟିକକ ପ୍ରାଣ ଥିଲା ସେଥିରେ ସେ ଠେଙ୍ଗା ଅଗରେ ଗୁଡ଼େଇ ହୋଇଗଲା । ପାଣି କଳ ପାଖେ ତା 'ର ପ୍ରଦର୍ଶନୀ ହେଲାବେଳକୁ ସେତେବେଳର ପ୍ରିନସିପାଲ ହୁଇଟ୍‌ଲକ୍ ସାହେବ କୁଆଡ଼ୁ ଆସି ହାବୁଡ଼ିଗଲେ । ପ୍ରଥମ ପ୍ରଶ୍ନ ହେଲା, "ସାପୁଆ କେଳା କିଏ ?" ମୁଁ ଭଲ ପିଲାଟି ପରି ତଳକୁ ମୁହଁ କରି ଚାହିଁବାରେ ବୋଧହୁଏ ଏ ପ୍ରଶ୍ନର ଉତ୍ତର ମିଳିଗଲା । ସେତେବେଳକୁ ସାପ ଲମ୍ବି ଯାଇ ମହାକଷ୍ଟରେ ମୋଡ଼ି ଭିଡ଼ି ହେଉଥାଏ । ପ୍ରିନ୍‌ସିପାଲ କହିଲେ, 'ଅବଶ୍ୟ ଏହାର ଅନିଷ୍ଟ କରିବାର ଶକ୍ତି ବର୍ତ୍ତମାନ ନାହିଁ, କିନ୍ତୁ ଜୀଅନ୍ତା ସାପ ସଙ୍ଗେ ଖେଳିବା ଦୁର୍ଦ୍ଧଷ କାର୍ଯ୍ୟ ।" ଏହା କହିସାରିଲାବେଳକୁ ସେ ନିଜର ଡାହାଣ ଗୋଡ଼ ଗୋଇଠିରେ ସାପର ମୁଣ୍ଡକୁ କୁଚାକୁଚା କରିସାରିଥାନ୍ତି । ଆଉ କିଛି ନ କହି ସେ ଚାଲିଗଲେ । ଆମ ଗହଳି ବି ଭାଜିଗଲା । ବୋଧହୁଏ ମେହେନ୍ତର ସାପକୁ ସ୍ଥାନାନ୍ତରିତ କରିଦେଲା ।

**ସେ ବେଳର ଅଧ୍ୟାପକ :**

ମୁଁ କଲେଜରେ ନାମ ଲେଖାଇଲାବେଳକୁ ମିଷ୍ଟର ଲାମ୍ବର୍ଟ ଥିଲେ ପ୍ରିନ୍‌ସିପାଲ । ଆମ କ୍ଲାସର ଯେଉଁ ଇଂରେଜୀ ଟିଉଟରିଏଲ୍ ଗ୍ରୁପରେ ମୁଁ ଥିଲି ତା 'ର ଚାର୍ଯରେ ସେ ଥିଲେ । ତେଣୁ ପ୍ରତି ସପ୍ତାହରେ ୫୦ ମିନିଟ୍ ଲେଖାଏଁ ତାଙ୍କ ସାମନାରେ ବସିବାକୁ ହେଉଥିଲା । ଆମର ଗୋଟାଏ

ଜେନେରାଲ କ୍ଲାସ ମଧ୍ୟ ସେ ନେଉଥିଲେ। କ୍ଲାସ୍‌ରେ ଗୋଟିଏ ମୁହୂର୍ତ୍ତ ମଧ୍ୟ ସେ ଖାଲି ବସି ରହିବାର ଦେଖିନାହିଁ। ଟିଉଟରିଏଲ୍ କ୍ଲାସରେ ସେ ଅନବରତ ମୌଖିକ ଓ ଲିଖିତ ପ୍ରଶ୍ନ ପଚାରି ପ୍ରତ୍ୟେକଙ୍କର ଦୋଷତ୍ରୁଟି ସମସ୍ତଙ୍କ ଆଗରେ ବୁଝାଇଦିଅନ୍ତି। ଆମର ପ୍ରଥମ ଟିଉଟରିଏଲ୍ କ୍ଲାସରେ ସେ ଗୋଟାଏ ପ୍ରଶ୍ନର ଉତ୍ତର ଲେଖିକରି ଦେବାକୁ ଦେଇଥିଲେ। ସେଥିରେ ମୋତେ ମିଳିଥିଲା, ଏ + (A+)। ସପ୍ଲିମେଣ୍ଟାରୀରେ ପାସ୍ କରିଥିବା ମୋର ଟିକିଏ ଉଚ୍ଛତା ବଢ଼ିଗଲା ଓ ମୋର ଆତ୍ମବିଶ୍ୱାସ ବି ଟିକାଏ ବଢ଼ିଗଲା ! ମୁଁ ତାଙ୍କର ଚିହ୍ନା ଛାତ୍ର ହୋଇଗଲି ଓ ମୋତେ ସେ ନମ୍ବର ୧୩୬ ବୋଲି ଡାକିଲେ। ଆମ କ୍ଲାସରେ ୧୪୫ ଜଣ ଛାତ୍ର ଥାଉଁ। ରୋଲ ନମ୍ବରରେ ସେ ଆମମାନଙ୍କ ମଧ୍ୟରୁ ଅଧିକାଂଶଙ୍କୁ ଚିହ୍ନିଥା'ନ୍ତି ଓ ଆମ ରୋଲ ନମ୍ବର ଧରି ଆମକୁ ଡାକନ୍ତି। ଲ୍ୟାମ୍ବର୍ଟ ସାହେବ, କେତେବେଳେ ହସିବାର ମୁଁ ଦେଖିନାହିଁ। ବିରକ୍ତ ହୋଇଗଲେ ତାଙ୍କ ମୁହଁରେ ଠା' ଠା' ହୋଇ ରକ୍ତ ଚଢ଼ିଯାଏ ଏବଂ ସେ ରକ୍ତ ଠା'କୁ ଠା' ଯା'ଆସ କରେ। ଟିଉଟରିଏଲ୍‌ରେ ପ୍ରଥମ ବେଞ୍ଚରେ ବସୁଥିବା ଆମେ କେତେ ଜଣ ତାଙ୍କ ପାଠ ଶୁଣିବା ଅପେକ୍ଷା ତାଙ୍କ ମୁହଁର ରକ୍ତକୁ ଅଧିକ ଦେଖୁଥାଉଁ ଏବଂ ବେଳେ ବେଳେ ଏହାକୁ ଦେଖିବା ପାଇଁ ଛାତ୍ରସୁଲଭ ଢଙ୍ଗରେ ଚିଡ଼ାଇବାକୁ ବି ଛାଡ଼ୁ ନାହିଁ। ତାଙ୍କର କଲେଜକୁ ଆସିବା ପୋଷାକ ଆଣ୍ଠୁ ଉପରକୁ ଚାରି ଆଙ୍ଗୁଳ ଯାଏଁ ଲମ୍ବିଥିବା ହାଫ୍ ପ୍ୟାଣ୍ଟ୍ ଓ ଦେହରେ ହାଫ୍ କାମିଜ୍। ପ୍ୟାଣ୍ଟ ତଳୁ କାମିଜ୍ ବୋର୍ଡରେ ଲେଖିଲାବେଳେ ଉଠିଯିବାରୁ ପେଟ ପିଠି ବି ଦିଶେ। ମଣିଷଟି ଛୋଟ। କିନ୍ତୁ କଲେଜ ବାରଣ୍ଡାରେ ବା ଲନ୍‌ରେ ତାଙ୍କ ସାମନାରେ ପଡ଼ିଗଲେ ମୋତେ ଝାଡ଼ା ମାଡ଼େ। ସେତେବେଳେ ଓଷ୍ଟନ୍ ସ୍ମିଥ୍ ବୋଲି ଜଣେ ସାହେବ ଇତିହାସ ଅଧ୍ୟାପକ ଥିଲେ। ଦଶହରା ପରେ କଲେଜ ଖୋଲିଲାବେଳକୁ ଏ ଦୁହେଁ ଯାକ ବଦଳି ହୋଇ ଯାଇଥାନ୍ତି। ଓଷ୍ଟନ୍ ସ୍ମିଥ ବିଜୁ ପଟ୍ଟନାୟକଙ୍କ ପରି ଉଚ୍ଚା ଓ ତାଙ୍କଠାରୁ ଡବଲ ଦିହ। ତୁଣ୍ଡ ଲାଗେ କି କ'ଣ, ଶବ୍ଦଗୁଡ଼ିକ ଗୋଟି ଗୋଟି କରି କହନ୍ତି। ତାଙ୍କ ବକ୍ତୃତା ଶୁଣିବାକୁ ସମସ୍ତେ ଖୁବ୍ ମନୋଯୋଗ ଦେଉଁ। ଘଣ୍ଟା ଆରମ୍ଭରେ ସେ କ୍ଲାସ ଭିତରେ ପଶିଲାବେଳକୁ ବକ୍ତୃତା ଆରମ୍ଭ କରନ୍ତି ଏବଂ ଘଣ୍ଟା ପଡ଼ିବାର ତିନି ଚାରି ମିନିଟ ଥାଇ ବକ୍ତୃତା ବନ୍ଦ କରି ହାଜିରା ପକାଇବାକୁ ଆରମ୍ଭ କରନ୍ତି। ଥରେ ଆମ କ୍ଲାସର ଜଣେ ଛତରା ଅନ୍ୟ ଜଣଙ୍କ ରୋଲ ଡକା ହେଲାବେଳେ 'ହାଜର ଆଜ୍ଞା' ବୋଲି କହିଦେବାକୁ ସେ ମୁହଁ ଉପରକୁ ନ ଟେକି, "ପ୍ରତ୍ୟେକ ନିଜ ନିଜର ପ୍ରେଜେଣ୍ଟ ପକାଇବା ଉଚିତ" ବୋଲି ଗୋଟି ଗୋଟି ଶବ୍ଦଟିମାନ ଉଚ୍ଚାରଣ କରି ଆର ନମ୍ବର ଡାକିଲେ। ଏ ବିଷୟରେ ଆଉ ପଦେ କଥା ହୋଇନାହାନ୍ତି। ପରେ ଖାତା କୌଶଳରେ ଦେଖି ଜାଣିଲୁ, ସେହି ପିଲାର ଉପସ୍ଥାନ ପଡ଼ି ତା' ଉପରେ ଗୋଟିଏ ଛକ ଦିଆହୋଇଥାଏ।

ମିଷ୍ଟର ସ୍ମିଥ୍ ଅବିବାହିତ। ତାଙ୍କ ବାପା ଚୀନରେ ଧର୍ମଯାଜକ ହୋଇ ଜୀବନ କଟାଇଥିଲେ; ୟାଙ୍କ ଭାଇ ବି ଧର୍ମଯାଜକ। ୟେ ପିଲାଦିନ ଚୀନରେ କଟାଇ ପଢ଼ିବାକୁ ବିଲାତ ଗଲେ ଏବଂ ସେଠାରୁ ଫେରି ବିହାର ଓଡ଼ିଶାରେ ଚାକିରି କଲେ। ୧୯୨୫କୁ ୟାଙ୍କର ପ୍ରାୟ ପେନସନ

ନେବାବେଳ ହୋଇଥାଏ । ଯ୍ୟଙ୍କ ପରିବାରରେ ଯ୍ୟଙ୍କର ହୋଇ ଗୋଟିଏ ଭୁଆ ବିରାଡ଼ି, ପାରସ୍ୟ ଦେଶୀୟ ନୀଳଚକ୍ଷୁ ଓ ଲମ୍ବ ବାଳଯୁକ୍ତ ଲୋଭନୀୟ ପଦାର୍ଥ । ମଝିରେ ମଝିରେ ପଣ୍ଡିମପଟ ହଷ୍ଟେଲକୁ ଭିଜିଟ୍ କରିବାକୁ ଆସେ । ପ୍ରଥମ ଟର୍ମିନାଲ ପରୀକ୍ଷାବେଳେ ମୁଁ ସେହି ଛାତ୍ରାବାସର ଜଣେ ସହପାଠୀର ଅତିଥି ହୋଇ ଚାରିଦିନ ରହିଥିଲି । ତା'ରି ଭିତରେ ଯ୍ୟ ସଙ୍ଗେ ମୋର ସଦ୍ଭାବ ହୋଇଗଲା । ଚାରି ପଇସାର ତାମଣ୍ଡା ଶୁଖୁଆ ଆଣି ପୋଡ଼ି ମୋ ଖଟର ମଶାରି ବାଡ଼ରେ ବାନ୍ଧି ଦେଇଥାଏ । ମଝିରେ ମଝିରେ ସେଥିରୁ ଦୁଇ ତିନିଟା ଭାତରେ ବା ପୁରୀରେ ଚକଟି ତାକୁ ଦିଏ । ଦିନେ ସନ୍ଧ୍ୟାରେ ନିମନ୍ତ୍ରଣ ଖାଇ ବ୍ରାହ୍ମଣ ଫେରିବା ଠାଣିରେ କୋଠିକୁ ଫେରିଲା, ଦ୍ୱିତୀୟ ରାତିଟି କିନ୍ତୁ ମୋ ଖଟରେ କଟାଇଲା । ତହିଁ ଆରଦିନ ସକାଳୁ ଦେଖ ସ୍ମିଥ ସାହେବଙ୍କ ଦୁର୍ଦ୍ଦଶା ! ପ୍ରାୟ ସାତଟାବେଳେ ସେ ଗୋଡ଼ରୁ ବେକ ପର୍ଯ୍ୟନ୍ତ ପୋଷାକ ପିନ୍ଧି (ଆଧୁନିକ ଦେଶୀ କଲେଜ ଅଧ୍ୟାପକମାନଙ୍କ ରୀତିରେ ସେ କୌଣସି ଦିନ ନେକଟାଇ ଓ କୋଟ୍ ନ ଲଗାଇ ଦାଣ୍ଡକୁ ବାହାରନ୍ତି ନାହିଁ) ରାସ୍ତା ବାଡ଼ମୂଳକୁ ନିରେଖି ନିରେଖି "ମୋ ବିଲେଇ", "ମୋ ବିଲେଇ" ବୋଲି କ୍ଷୀଣ ସ୍ୱରରେ ବାହୁନି ବାହୁନି ଛାତ୍ରାବାସର ରନ୍ଧନଶାଳା ସାହାଲାଟା ଦେଖି ଛାତ୍ରାବାସକୁ ଉଠିଲେ । ସେତେବେଳକୁ ବିରାଡ଼ିକୁ ଛାତ୍ରାବାସର ସମସ୍ତେ ଠାବ କରିସାରିଥାନ୍ତି, ବୋର୍ଡିଂ ଚାକରଙ୍କ ପର୍ଯ୍ୟନ୍ତ । ଆମ ରୁମ୍‌ର ଦୁଆର ମୁହଁରେ ଆସି ହେଲାବେଳକୁ ତାଙ୍କର ଦୃଷ୍ଟି ପଡ଼ିଲା ତାଙ୍କ ଏକାନ୍ତ ପ୍ରିୟ 'ଟମ୍' ଉପରେ । ଟମ୍ ତାମଣ୍ଡା ଉପରେ ଟ୍ରେଜେରୀ ପହରାବାଲାଙ୍କ ପରି ସତର୍କ ଦୃଷ୍ଟି ରଖି ମୋ ଖଟ କଡ଼ରେ ବସିଥାଏ । ଟମ୍ ବୋଲି ପ୍ରଭୁଙ୍କ ଡାକି ଶୁଣି ସେ ତାଙ୍କ ଗୋଡ଼ରେ ଯାଇ ଘଷି ହେଲା ଯେ ମଝିରେ ମଝିରେ ତାମଣ୍ଡା ପୁଡ଼ା ଆଡ଼କୁ ଚାହୁଁଥାଏ । ସାହେବଙ୍କର ବି ତା' ଉପରେ ଦୃଷ୍ଟି ପଡ଼ିଲା, ଫିଟାଇ ଦେଖାଇବାକୁ କହିଲେ । ତାମଣ୍ଡା ତାଙ୍କର ଅଦୃଷ୍ଟପୂର୍ବ । ତାଙ୍କ ବିରାଡ଼ିକୁ ଏହା ରାତିଏ ବାସିତକା କରିଦେଲା ବୋଲି ସେ ଖୁବ୍ ବିସ୍ମିତ ହେଲେ ଏବଂ ଏହା କଟକରେ ମିଳେ ବୋଲି ଆଶ୍ୱସ୍ତ ହୋଇ ଏଥିରୁ କିଛି ତାଙ୍କ ପାଖରେ ପହଞ୍ଚାଇ ଦେବାକୁ ମୋତେ ସନିର୍ବନ୍ଧ ଅନୁରୋଧ କଲେ । ଅବଶିଷ୍ଟ ଥିବା ତାମଣ୍ଡାତକ ସହ ସେ ବିରାଡ଼ିକୁ ଧରି ଘରକୁ ଗଲେ । ମୁଁ ସେଇଦିନ ଓପରଓଳି ଛ' ପଇସାର ବଛା ବଛା ତାମଣ୍ଡା ଧରି ଯାଇ ହାଜର । ମୁଁ ପଇସା ନେବି ନାହିଁ ବୋଲି ବହୁବାର ବଳାଇବା ସତ୍ତ୍ୱେ, କହିବାରୁ ତାଙ୍କ ବୈଠକଖାନାରେ ବସିବାକୁ ମିଳିଲା । ୧୦/୧୫ ମିନିଟ୍ କଥାବାର୍ତ୍ତା ହେଲା; ତାଙ୍କର ପରିଚୟ ଚେଷ୍ଟା କରି ଆଦାୟ କଲାବେଳକୁ ସେ ଇତିହାସର ମହତ୍ତ୍ୱ ପ୍ରତିପାଦନ କରିବାରେ ଲାଗିଯାନ୍ତି । ଅଫିମ ଯୋଗୁଁ ଚୀନ ସଙ୍ଗେ ହୋଇଥିବା ଯୁଦ୍ଧ କଥା ସେଇଦିନ ପ୍ରଥମେ ଶୁଣା । ତାମଣ୍ଡା ଶୁଖୁଆରୁ ଉଦ୍ଭୂତ ଏ ଘନିଷ୍ଠତା ସାହେବ ଓ ବିରାଡ଼ିଙ୍କ ସହିତ ସେ ଦୁହେଁ ଥିବାଯାକ ଥିଲା । ସେ ବିରାଡ଼ି ତାଙ୍କ ପେନସନ ପରେ ଚୀନ ହୋଇ ବିଲାତ ଯିବାରେ ବି ସ୍ଥିର ହୋଇଥାଏ ।

ଦଶହରା ପରେ ଆସିଲେ ମିଷ୍ଟର୍ ହ୍ୱାଇଟ୍ ଲକ୍ (Percy Oliver Whitlock)। ଆକୃତିରେ ଓଷ୍ଟନ୍ ସ୍ମିଥଙ୍କ ପରି, କିନ୍ତୁ ବୟସରେ ପଚାଶରୁ କମ; ସବୁବେଳେ ପ୍ରସନ୍ନ ମୁହଁ; ପିନ୍ଧା ଲ୍ୟାମ୍ବଟ ସାହେବଙ୍କ ପରି। ଆମ ସଂସ୍କୃତ ଅଧ୍ୟାପକ କାଶିବାବୁଙ୍କ ସଙ୍ଗେ ଏ ଦୁଇ ସାହେବଙ୍କର ପରିଧାନ-ଦାରିଦ୍ର୍ୟ ବିଷୟରେ କଥା ପଡ଼ିବାରୁ, ସେ ତାଙ୍କର ସ୍ୱାଭାବିକ ଭଙ୍ଗୀରେ କହିଲେ, "ବୁଝିଲ ନାଇଁ କି, ଅନ୍ନ ଓ ବସ୍ତ୍ର; ଅନ୍ନ ଭାଗଟା ଏ ମ୍ଲେଚ୍ଛଗୁଡ଼ାଙ୍କର ଅଧିକ ହୋଇ ଯିବାରୁ ବସ୍ତ୍ରକୁ ପାଉନାହିଁ।" ତା'ପରେ ତାଙ୍କର ନିଜସ୍ୱ ମୃଦୁହାସ। ମିଷ୍ଟର ହ୍ୱାଇଟ୍ ଲକ୍ ଆମ ଫୋର୍ଥ ଇଅର ଯାଏ ରହିଲେ; ଛାତ୍ର ଶିକ୍ଷକ ସଂଘର୍ଷରୁ ତାଙ୍କ ସଙ୍ଗେ ସଙ୍ଗେ ଘନିଷ୍ଠତା ଆସିଗଲା। ଖୁବ୍ ନିରୀକ୍ଷଣ କରି ଦେଖିଛି, ଖାଇବା ଓ ପିନ୍ଧିବା ବିଷୟରେ ଉଦାସୀନ, କିନ୍ତୁ ଆଉ ସବୁ ବିଷୟରେ ଅତି ଜାଗ୍ରତ।

ଆମେ ସବୁ ଫୋର୍ଥ ଇଅରରେ ଥିଲାବେଳେ କଟକ ଷ୍ଟେସନରେ ଜଣେ ଏଙ୍ଗଲୋ ଇଣ୍ଡିଆନ ଷ୍ଟେସନ ମାଷ୍ଟର ଥିଲେ। ଦିନେ ଆମେ ସବୁ ପ୍ଲାଟ୍‌ଫର୍ମକୁ ବୁଲିଯାଇଥିଲାବେଳେ ଦେଖିଲୁ ସେ ଟଙ୍ଗ ଟଙ୍ଗ ହୋଇ ପାଇଖାନା ଭିତରେ ବାସନା ଶୁଙ୍ଘି ଶୁଙ୍ଘି ପଶୁଛନ୍ତି। ମୁହୂର୍ତ୍ତକ ଭିତରେ ତୃତୀୟ ଶ୍ରେଣୀ ବିଶ୍ରାମାଗାର ବୁଲି ଆସିଲେ, ନଳାମାନଙ୍କୁ ମୁଖ ବିକୃତ ନ କରି ତନଖି କଲେ। ସେଇ ଦିନଠାରୁ ଆମ ଭିତରେ ଏସ୍.ଏମ୍. କହିଲେ ପ୍ରିନ୍‌ସିପାଲଙ୍କୁ ବୁଝାଇଲା। ସକାଳ ଭୋଜନ ପରେ (ଯେପରି ଭୋଜନ ଦିନ ପନ୍ଦରଟା କରିଦେଲେ ଅଷ୍ଟେ ମୋର ଉଠନ୍ତା ନାହିଁ) ସେ ବାହାରିପଡ଼ନ୍ତି କଲେଜର ଡ୍ରେନ୍ ଇନ୍‌ସପେକ୍ଟର ହୋଇ। ସାଙ୍ଗରେ ଯାନ୍ତି ତିନିଜଣ, ତାଙ୍କ ଅତି କ୍ଷୁଦ୍ରକାୟ କୁକୁର, ବିରାଟକାୟ ଧୂଆଁଳିଆ ପାଇପ ଓ ହାତରେ ଭୂଇଁକୁ ନ ପାଉଥିବା ଖଣ୍ଡେ ଠେଙ୍ଗା। ଆଉ କେହି ତାଙ୍କର ଏତେ ନିକଟତମ ହୁଅନ୍ତି ନାହିଁ। ପିଲା ଛାତ୍ରାବାସ କୋଠରି ଭିତରୁ ଝରକା ଫାଙ୍କରେ ଚାହାନ୍ତି, କଲେଜ ଚାକରବାକର ନିଜ ନିଜ ଦୁଆରେ ଲେସି ହୋଇ ରହିଥାନ୍ତି। "ଆରେ, ସକାଳେ ସାଇବ ଇଆଡ଼େ ଆସିଥିଲା ପରା, କ'ଣ କହୁଥିଲା ?" ବୋଲି ହଷ୍ଟେଲ ସୁପିରଣ୍ଟେଣ୍ଡେଣ୍ଟ ଜାଣିବାକୁ ଆଗ୍ରହୀ ହେବାର ବି ଦେଖିଛି। ସାହେବ କିନ୍ତୁ କେବେ କାହାକୁ କିଛି କହିବାର ଲକ୍ଷଣ ତାଙ୍କଠାରେ ଦିଶୁନଥାଏ। କଥା ପଦେ ଅଧେ ବା କହିଲେ କହିଥିବେ ତାଙ୍କ ତୁଣ୍ଡଠାରୁ ପ୍ରାୟ ସାଢ଼େ ପାଞ୍ଚଫୁଟ ତଳେ ଉନ୍ମୁଖ ହୋଇ ରହିଥିବା ପୁଡ଼ଲ୍‌କୁ। ମୁହଁର ପାଇପ୍‌ର ଦୀପ୍ତି ସବୁବେଳେ ଥାଏ, ଗୋଟିଏ କ୍ଷୀଣ ଧୂମ ରେଖା ପଛରେ ରହିଯାଉଥାଏ। ଜେଟ୍ ପ୍ଲେନର ଗୋଟିଏ କ୍ଷୁଦ୍ର ସଂସ୍କରଣ। ସାଢ଼େ ଦଶଟାବେଳକୁ ସାହେବ କୁକୁର, ପିକା, ବାଡ଼ି ପରିବାର ସହ କଲେଜ ଅଫିସରେ ହାଜର ହୁଅନ୍ତି। କୁକୁର ତା' ଆସ୍ଥାନ ଧରେ ଯେ ଲେକ୍‌ଚର ଦେବାରେ ସାଥି ହେବାକୁ କେବେ ବାହାରେ ନାହିଁ। ପାଇପ୍ ମଧ୍ୟ ଯାଏ ନାହିଁ, ବାଡ଼ି ମଧ୍ୟ ନୁହେଁ। ସେମାନେ ସମସ୍ତେ ତାଙ୍କ ତୁଣ୍ଡ ଓ ଚେହେରାକୁ ନିଜ ନିଜର ଯେଉଁ କଳା ଦେଇଥାନ୍ତି ସେତିକିରେ କ୍ଲାସର ଶାନ୍ତି ରକ୍ଷା ହୋଇଯାଏ।

ଘଣ୍ଟା ବାଜିଗଲାବେଳକୁ ଆମ ସଂସ୍କୃତ ଅଧ୍ୟାପକ କାଶିବାବୁ ତାଙ୍କ ଘୋଡ଼ା ଗାଡ଼ିରୁ ଓହ୍ଲାଉଥା'ନ୍ତି; ତା'ର ଟିକିଏ ଆଗରୁ ଗୋଟିଏ ଗାଡ଼ିରୁ ଚାରିକଣ ଅଧ୍ୟାପକ ବାହାରନ୍ତି। ପିରିଅଡ଼ ଆରମ୍ଭ ହେବାର ଦୁଇ ମିନିଟ୍ ଖୁବ୍ ବଡ଼ ହେଲେ ତିନି ମିନିଟ୍‌ରେ ଅଧ୍ୟାପକ ତାଙ୍କ କାର୍ଯ୍ୟ ଆରମ୍ଭ ନ କରିବାର ପ୍ରାୟ କେବେ ଦେଖି ନାହିଁ। ଦୁର୍ଯୋଗରେ କାହାର (ପ୍ରାୟ ସବୁବେଳେ ଆର୍ତ୍ତବଲ୍ଲଭ ମହାନ୍ତିଙ୍କର) ତିନି ମିନିଟ ଡେରି ହୋଇଗଲେ ପ୍ରାୟଶଃ ପ୍ରିନ୍‌ସିପାଲ ସାହେବଙ୍କୁ କୌଣସି ନା କୌଣସି କାରଣରେ ଅତି କ୍ଷିପ୍ର ଗତିରେ ଯିବାକୁ ପଡ଼େ। ଥରେ ଆମରି କ୍ଲାସରେ, ଆର୍ତ୍ତବାବୁଙ୍କର ଡେରି ହୋଇଗଲା। ସ୍ୱପ୍ନବାସବଦତ୍ତା ନାଟକର ପ୍ରଥମ ଶ୍ଳୋକ ତାଙ୍କରି ପ୍ଲାଟଫର୍ମରେ ଚଢ଼ି ଆବୃତ୍ତି କରିଦେଲି। ଚତୁର୍ଥ ପାଦର ଆଉ ଟିକିଏ ବାକି ଅଛି, ଆର୍ତ୍ତ ବାବୁଙ୍କ କୋତା ଶୁଭିଲା; ହଠାତ୍ କବାଟ ଆରପଟେ ସେ ଠିଆ ହୋଇ ରହିଲେ ଶ୍ଳୋକଟା ସରିବା ପର୍ଯ୍ୟନ୍ତ। ତା'ପରେ ପେଟର ଆନନ୍ଦକୁ ଲୁଚାଇବାର ନିଷ୍ଫଳ ପ୍ରଯତ୍ନ କରି ଯେଉଁ ଗାଳି ମିଳିଲା, ତାହା ସମସ୍ତଙ୍କୁ, ଦୋଷୀକୁ ମଧ୍ୟ ଆମୋଦିତ କଲା। ସେତିକିବେଳେ ପ୍ରିନ୍‌ସିପାଲ ବାରଣ୍ଡାରେ ଭାରି ତରତରରେ ଅଫିସ ଆଡ଼େ ଯାଉଥାନ୍ତି। ଆର୍ତ୍ତବାବୁଙ୍କୁ ସମସ୍ତେ ଶ୍ରଦ୍ଧା କରନ୍ତି; ବଙ୍ଗାଳୀ ଅଧ୍ୟାପକମାନେ ମଧ୍ୟ ଅନବରତ ଗାଳି ଖାଇ ଖାଇ।

କଲେଜରେ ଜଣେ ସମ୍ମାନିତ ଅଧ୍ୟାପକ ବିପିନ୍ ବାବୁ। ତାଙ୍କୁ ଚାହିଁଲେ ଚିହ୍ନିବାକୁ ମନ ହୁଏ, ଏବଂ ଚିହ୍ନିଲେ ଆଉ ଛାଡ଼ି ହୁଏ ନାହିଁ। ତାଙ୍କ ଘରକୁ ବହୁବାର ଯାଇଛି। ଯେତିକି ଦରକାର ତହିଁରୁ ପଦେ ଅଧିକା କ୍ଲାସରେ ବା ବାହାରେ ଶୁଣିବାର ମନେ ନାହିଁ।

କାଶିବାବୁଙ୍କୁ କେହି ପସରା କରନ୍ତି ନାହିଁ ସିନା ବହୁ ବିଳମ୍ବରେ ଜାଣିଲି ସେ ଜ୍ଞାନର ଗୋଟିଏ ଖଣି। ସେତେ ଯେପରି ନିଜକୁ ପ୍ରଚ୍ଛନ୍ନ ରଖିବାକୁ ସବୁବେଳେ ଯତ୍ନ କରୁଥାନ୍ତି। କଲେଜକୁ ଯାନ୍ତି ତାଙ୍କ ନିଜ ଘୋଡ଼ାଗାଡ଼ିରେ। ବାଟରେ ଦେଖିଲେ ଆମ ପଦଯାତ୍ରୀଙ୍କ ମଧ୍ୟରୁ କାହାକୁ କେମିତି ବସିବାକୁ ଡାକନ୍ତି। ମଫସଲିଆ ଭଦ୍ରଲୋକ ପରି କଥା କହନ୍ତି। କ୍ଲାସରେ ମଧ୍ୟ ଏକାଧିକବାର କହିଦିଅନ୍ତି, "ବୁଝିଲ କି ନାହିଁ, ଆମେ ତୁମକୁ ପାଠ ପଢ଼ାଇବାକୁ ନିଯୁକ୍ତ ହୋଇନାହୁଁ। ଆମେ ତୁମ ଆଗରେ ଗୋଟିଏ ଗୋଟିଏ ଦୃଷ୍ଟାନ୍ତ ହୋଇ ବସାଯାଇଛୁ। ଆମକୁ ଦେଖି ଆମପରି ହେବାକୁ ଉଦ୍ୟମ କରିପାର।" ଏତକ ଯେଉଁ ସ୍ୱରରେ କୁହାଯାଏ ତାହା ନ ଦେଖିଥିଲେ ବର୍ଣ୍ଣନାରୁ ଧରି ହେବ ନାହିଁ। ବି.ଏ. ବେଳକୁ ତ ସଂସ୍କୃତ ଛାଡ଼ିଦେଇଥିଲି, କିନ୍ତୁ ତାଙ୍କ ଘରକୁ ଯାଏ। ପଣ୍ଡିତ ନୀଳକଣ୍ଠ ଥରେ ଗୋଟାଏ କ'ଣ ଶ୍ଳୋକ ଖୁବ୍ ଖୋଜିହେଲେ; ଚାରି ପାଞ୍ଚ ଜଣ ପଣ୍ଡିତଙ୍କୁ ପଚରାପଚରି କଲେ; ଶେଷରେ ମୋତେ କହିଲେ, ଆରେ ଗଲୁ କାଶିବାବୁଙ୍କୁ ଟିକିଏ ପଚାରି ଦେଇ ଆସିବୁ। ମୁଁ ଟିକିଏ ଅବିଶ୍ୱାସ କଲାଭଳିଆ ମୁହଁ କରିବାରୁ ପଣ୍ଡିତଜୀ କହିଥିଲେ, 'ଆରେ ତାଙ୍କୁ ତମେସବୁ କ'ଣ ଜାଣିବ। ବନାରସ୍‌ରେ ବି ତାଙ୍କର ଖ୍ୟାତି ଅଛି। ଭାରି

ଜ୍ଞାନୀ । ସେ ଜ୍ଞାନ ତୁମର କ'ଣ ହେବ ବୋଲି ଏମିତି ହୁଅନ୍ତି ।'' କାଶିବାବୁଙ୍କୁ ଯ୍ୟ କହିଦେଲି । ସେ ତାଙ୍କର ସ୍ୱରରେ କହିଲେ, ''ନୀଳକଣ୍ଠ ବଗୁଲିଆଟେ । ଭଲ ଲୋକଙ୍କୁ ଭାଣ୍ଡିଆ କରିଦେବ ।'' ମୁଁ ଯାହା ପଚାରିଲି ତା'ର ଉତ୍ତର ସାଙ୍ଗେ ସାଙ୍ଗେ ମିଳିଲା; ଯେଉଁ ବହିର ଶ୍ଳୋକ ସେ ବହି ବି ଆସିଲା । ସେ ଶ୍ଳୋକର ପୂର୍ବାପର ସଂଗତି ଥାଇ ଅର୍ଥ ବି ଶୁଣିଲି । କିନ୍ତୁ ସଂସ୍କୃତ ପ୍ରତି ସେତେବେଳେ ଏତେ ଆଦର ଯେ, ଶ୍ଳୋକଟି ଆଜି ମନେ ପକାଇଲାବେଳକୁ ନାହିଁ ।

ଆଉ ଜଣେ ପ୍ରଫେସର ମୋହିନୀ ବାବୁ । ସବୁବେଳେ କ'ଣ ଗୋଟାଏ ଭାବୁଥାନ୍ତି । ଆମର ଗୋଟିଏ ଟିଉଟରିଏଲ୍ ନେଉଥିଲେ । ବସି କରି ସମୟ କଟାଇଦିଅନ୍ତି । ତାଙ୍କୁ ତାଙ୍କ ବିଷୟରେ କୌଣସି ବ୍ୟକ୍ତିଗତ ପ୍ରଶ୍ନ ପଚାରିଦେଲେ, ''ତୁମର ଜାଣିବା ନିଷ୍ପ୍ରୟୋଜନ'' ବୋଲି କହିଦିଅନ୍ତି । କିନ୍ତୁ ଯ୍ୟଙ୍କୁ ଦେଖିଦେଲେ ମନରେ ସଂଭ୍ରମ ଆସେ ।

ଭଗବାନ୍‌ଙ୍କୁ ତ ୟେ ସ୍ୱୀକାର କରୁ ନ ଥିଲେ. ସଂସାରରେ କାହାକୁ ଯ୍ୟଙ୍କର ଭୟ ନ ରହିବାର କଥା । ଥରେ କହୁ କହୁ ସିଣ୍ଡିକେଟ୍ ସଭାରେ ପଚାରିଲେ, ଇଂରେଜ କୁକୁର କଣ ବି.ଏ.ରେ ଇଂରେଜୀ ପଢ଼ାଇପାରିବ ? ପ୍ରିନ୍‌ସିପାଲ୍ ଲ୍ୟାମ୍ବର୍ଟ ଉଦ୍ଭିଦ ବିଜ୍ଞାନରେ ଏମ୍.ଏ. ପାସ୍ କରି ଇଂରେଜୀ କ୍ଲାସ ନେବାର ପ୍ରତିବାଦରେ ସେ ଏହା କହିଥିଲେ । ଯ୍ୟଙ୍କ ବିଷୟରେ ବହୁତ କଥା ତ ଆଗକୁ ଅଛି ।

ଆଉ ଜଣେ ଥିଲେ ଇଂରେଜୀ ଅଧ୍ୟାପକ ବରଦାକାନ୍ତ ଚ୍ୟାଟାର୍ଜୀ । ୟେ ବି.ଏ. ପାସ୍ କରି ଅଧ୍ୟାପକ ହୋଇଥିଲେ । ଆମ ଆଗରୁ ଥରେ ଇତିହାସ ଅଧ୍ୟାପକ ନିଅଣ୍ଟ ପଡ଼ିବାରୁ ୟେ ଗୋଟାଏ ଟର୍ମ ଇତିହାସ ନେଇଥିଲେ । ସଂସ୍କୃତ ଅଙ୍କ ମଧ୍ୟ ନେଇପାରିଥାନ୍ତେ । ପଢ଼ାଇବାରେ ବିଶିଷ୍ଟତା ନ ଥିଲା । କିନ୍ତୁ ଯ୍ୟଙ୍କ ବ୍ୟକ୍ତିତ୍ୱର ପ୍ରଭାବ ପିଲାଙ୍କ ଉପରେ ପଡୁଥିଲା ।

ଏଇ କେତେକଣ ଅଧ୍ୟାପକଙ୍କ ନାମ ଏଠାରେ ଲେଖି ହୋଇଗଲା । ଗୋପାଳ ଗାଙ୍ଗୁଲି, ନିର୍ମଳ ବାନେର୍ଜୀ, ନିଶିକାନ୍ତ ସାନ୍ୟାଲ, କୃତ୍ତିବାସ ବାବୁ, ଜନାଥନ ବାବୁ, ଗୋଷ୍ଠହରି ସିଂହ, ମି. ବ୍ୟାଥେଜା ପ୍ରଭୃତି ଆହୁରି ଅନେକ ରହିଗଲେ, ଯାହାଙ୍କ କଥା ଆଗକୁ ରହିଛି । ସବାଉପରେ ମିଷ୍ଟର ପରିଜା, ମିଷ୍ଟର ତ୍ରିପାଠୀ ପ୍ରଭୃତି ବି ଅଛନ୍ତି ଆଗକୁ ।

ଏ ସମସ୍ତେ ଗୋଟିଏ ଜାଟର, ବିଭିନ୍ନ ଦିଗରୁ ସମଭାବରେ ଏମାନେ ଆମକୁ ସବୁ ପ୍ରଭାବିତ କରୁଥିଲେ । କ୍ଲାସର ପାଠ ଅପେକ୍ଷା, ଯ୍ୟଙ୍କର ରୀତିଗତି, କଥାବାର୍ତ୍ତାରୁ ବହୁତ ଶିଖୁଥିଲୁ । ପାଠ ବିଷୟରେ, ଅନ୍ୟ ବିଷୟରେ ଏମାନଙ୍କ ସଙ୍ଗେ ଅନେକ ସମୟରେ ବାଦ ପ୍ରତିବାଦ ହୁଏ, କିନ୍ତୁ ଗୁରୁଶିଷ୍ୟ ସମ୍ବାଦରେ । ଆଇ.ଏ. ସରିବା ପର୍ଯ୍ୟନ୍ତ ଯେଉଁମାନେ ଆମର ଅଧ୍ୟାପକ ଥିଲେ ଆମର ପିତା ବା ପିତୃବ୍ୟ ସ୍ଥାନୀୟ, ତେଣୁ ମାନ୍ୟ ! ଏମାନଙ୍କ ବ୍ୟବହାରରେ ସେ ମାନ୍ୟ ରଖିବା ସହଜ ହେଉଥିଲା । ଯ୍ୟଙ୍କ ସଙ୍ଗେ ଆମର ଯେଉଁ ସଂଘର୍ଷ ହେଉଥିଲା ତାହା ଅଳି କଲାପରି । ଆମଆଡୁ

ଟିକିଏ ମାତ୍ରାଧିକ୍ୟ ହେଲେ ଏମାନେ ଏମାନଙ୍କ ଗୁଣରେ ଆମକୁ କ୍ଷମା ଦେଉଥିଲେ । ଛାତ୍ର ଶିକ୍ଷକ ସମ୍ପର୍କ ଆଜିକାଲି ଯେପରି ସୀମା ଲଂଘନ କରୁଛି ତାହା ସେକାଳେ ଅଧ୍ୟାପକମାନଙ୍କ ମହତ୍ତ୍ୱ ଯୋଗୁଁ କଳ୍ପନା କରି ହେଉ ନ ଥିଲା ।

କିନ୍ତୁ ବି.ଏ. ପ୍ରଥମ ବାର୍ଷିକ କ୍ଲାସରେ ଯାଇ ବସିଲାବେଳକୁ ତିନି ଜଣ ନୂଆ ଟୋକା ଅଧ୍ୟାପକ ଆସି ପହଞ୍ଚିଗଲେ ଯେଉଁମାନଙ୍କୁ ପିତୃବ୍ୟ ଦୃଷ୍ଟିରେ ନ ଦେଖି, ଅଗ୍ରଜ ଦୃଷ୍ଟିରେ ଦେଖିବାକୁ ବାଧ୍ୟ ହେଲୁ ।

**ମାଲଭାଇ ଦଳ :**

କଲେଜରେ ପଶିବାର ଅଳ୍ପଦିନ ଭିତରେ କଲେଜକୁ ଚାଲିକରି ବା ସାଇକଲ୍‌ରେ ଯାଉଥିବା କେତେକଣ ସାଙ୍ଗ ଓ ଓପରକ୍ଲାସର ପିଲାଙ୍କୁ ନେଇ ଗୋଟିଏ ମୁର୍ଦ୍ଦାରପୋଡ଼ା ସଂଘ ଗଠିତ ହୋଇଥାଏ । ଯାହାଙ୍କ ପାଇଁ 'ମାଲଭାଇ' ନ ମିଳନ୍ତି ସେ ଆମକୁ ଖବର ଦେଲେ ଆମେ ସାଙ୍ଗେ ସାଙ୍ଗେ ଅଣ୍ଟାରେ ଗାମୁଛା ଭିଡ଼ି ବାହାରି ପଡୁ । ଆମ ମଡ଼ାସାଙ୍ଗିଆ ଭାଇମାନେ ସହରର ବିଭିନ୍ନ ଅଞ୍ଚଳରେ ଥିବାରୁ ସବୁଆଡ଼ରୁ ମୁର୍ଦ୍ଦାର ଉଠାଇବାର ଅର୍ଡର ମିଳିଯାଏ । ପାଞ୍ଚବର୍ଷ ପରେ ପାଠରେ ଡୋର ବାନ୍ଧି ଅନ୍ୟ କାର୍ଯ୍ୟରେ ମାତିଯିବାରୁ ଏ କାର୍ଯ୍ୟ ଧିମେଇ ଗଲା, ପୂରା ବନ୍ଦ ହେଲା ନାହିଁ । ୧୯୪୧ ପର୍ଯ୍ୟନ୍ତ ମୁର୍ଦ୍ଦାରପୋଡ଼ା ଅନୁରୋଧ ଯେତେବେଳେ ଆସେ ମୁଁ ସାଙ୍ଗେ ସାଙ୍ଗେ ସଙ୍ଗୀ ଅନ୍ୱେଷଣରେ ଲାଗିଯାଏ । ଛାତ୍ର ଥିଲାବେଳେ ଚାରି ଜଣ କାହିଁକି ତା'ର ଡବଲ ସାଥି ବି ମିଳିଯାଉଥିଲେ, ପାଠ ଛାଡ଼ିବା ପରେ ବେଳେବେଳେ ଚାରି ଜଣ ବି ପୂରା ପଡ଼ନ୍ତି ନାହିଁ, ତିନିକଣରେ ବି କାମ ଚଳିଯାଏ; ମୁଁ ଗୋଟେ ପାଖ ଆଦରିଯାଏ ଏବଂ ଅନ୍ୟ ଦୁଇଜଣ ଗୋଟାଏ ପାଖ କାନ୍ଧାନ୍ତି । ସତୀଚଉରା ଅପେକ୍ଷା ଖାନନଗର ଶ୍ମଶାନ ଆମର ଥାଏ ପ୍ରିୟ; କାରଣ, ସେଠାରେ ଜଣେ କଂଗ୍ରେସବାଲା ଗୋଟିଏ କାଠ ଗୋଦାମ କରିଥାନ୍ତି, ଗୋଟିଏ ମୁର୍ଦ୍ଦାର ପାଇଁ ପାଞ୍ଚ ଟଙ୍କା । ସେଠାର ଦ୍ୱିତୀୟ ଆକର୍ଷଣ ଶ୍ମଶାନରେ ଆସ୍ଥାନ ଜମାଇଥିବା ଜଣେ ବାବାଜୀ । ସେ କାଠ ସଜାଡ଼ିବା, ମୁର୍ଦ୍ଦାରକୁ ଯଥାସ୍ଥାନାବସ୍ଥିତ କରିବା ଏବଂ କିପରି ଜାଳିଲେ ସହଜରେ ଓ ଶୀଘ୍ର କାର୍ଯ୍ୟ ଶେଷ ହେବ ଇତ୍ୟାଦି ବିଷୟରେ ଖୁବ୍ ବାଚିକ ଓ କାୟିକ ସାହାଯ୍ୟ କରନ୍ତି । ଆମକୁ ଫୁରୁସତ୍ ମିଳେ, ଆରାମରେ ବସି ନାନା ପ୍ରକାର ଖୁସିଗପ କରିବାକୁ । ସେତେବେଳର କେତେ ଅନୁଭୂତି ଓ କଥାବାର୍ତ୍ତା ମନେଅଛି । ମାଲଭାଇଙ୍କ ଭିତରୁ ଅର୍ଦ୍ଧାଧିକ ମାଲଭାଇଙ୍କ କାନ୍ଧରେ ଶ୍ମଶାନକୁ ଯାଇ ଗେଞ୍ଜଣା ଗଞ୍ଜଣା ପାଇ ସାରିଲେଣି; ମୋ ପରି କେତେଜଣ ବର୍ତ୍ତମାନ ସେହି ଅନୁଭୂତିର ଅପେକ୍ଷାରେ ଅଛନ୍ତି । ମୁର୍ଦ୍ଦାରପୋଡ଼ା ଯୋଗୁଁ ବୋଧହୁଏ ମୋର ଓ କେତେକ ଅନ୍ତରଙ୍ଗଙ୍କର ଜୀବନ ପ୍ରତି ଗୋଟାଏ ବେପରୁଆ ଭାବ ଆସିଯାଇଛି । ଆଜି ହେଉ, କାଲି ହେଉ ବା ପଅରଦିନ ହେଉ ନିଶ୍ଚୟ କୋକେଇରେ ଶୋଇବାକୁ ହେବା ସ୍ଥଳେ ଅଳ୍ପଦିନର ଏ ସଂସାର ପ୍ରତି ଗୁଡ଼ାଏ

ମାୟା ମମତା ବୃଥା ବୋଲି ସେଠାରେ ଆମେ କଥାବାର୍ତ୍ତା ହେଉ । ଶ୍ମଶାନବୈରାଗ୍ୟ କ୍ଷଣସ୍ଥାୟୀ କିନ୍ତୁ ବାରମ୍ବାର ଏହା ଆସିଲେ ଏହାର ସ୍ଥାୟୀ ପ୍ରଭାବ ମଣିଷ ମନରେ ରହିଯିବା ସ୍ୱାଭାବିକ ।

ଏ କାର୍ଯ୍ୟରେ ମୁଁ ଦୀକ୍ଷିତ ହୋଇଥିଲି ୧୯୨୧ ଖ୍ରୀଷ୍ଟାବ୍ଦରେ ଖୋର୍ଦ୍ଧା ସ୍କୁଲରୁ ପାଠ ଛାଡ଼ି ଖୋର୍ଦ୍ଧା ସ୍ୱରାଜ୍ୟ ଆଶ୍ରମରେ ଥିବାବେଳେ । ଆଶ୍ରମ ପାଖ ସାଇରେ ଗୋଟିଏ ନିରକ୍ଷ ଲୋକ ମରିଯାଇଥାଏ, ହଇଜା ରୋଗରେ । ତା'ର କେହି ଆତ୍ମୀୟ ନ ଥିଲେ, ସାଇବାଲା ମୃତ୍ୟୁ ସିଆଡ଼ୁ କାରଣ ଦେଖାଇ ମୂର୍ଦ୍ଦାର ବୋହିବାକୁ ରାଜି ହେଲେ ନାହିଁ । ଆମ ଆଶ୍ରମର ପରିଚାଳକ ୰ରଘୁନାଥ ମହାପାତ୍ରଙ୍କ ନିର୍ଦ୍ଦେଶରେ ଉପପରିଚାଳକ ୰ନରସିଂହ ଚ୍ୟାଉପଟ୍ଟନାୟକଙ୍କ ସହିତ ଆମେ ତିନିଜଣ କର୍ମୀ ଯାଇ ଶବଦାହ ସାରି ଘରକୁ ଫେରିଲୁ । ତହିଁ ଆରଦିନ ମୁଁ ଗାଁକୁ ଯାଇ ଦଦେଇଙ୍କୁ ଏକଥା କହିଲି ଏବଂ ନୀଚ୍ ଜାତିର ଲୋକକୁ ଦାହ କରିବା ହେତୁ କ'ଣ ପ୍ରାୟଶ୍ଚିତ୍ତ କରିବାକୁ ହେବ ପଚାରିଲି । ସେ ସେତେବେଳେ ଆମ ଗାଁରେ ସବୁଠାରୁ ନୈଷ୍ଠିକ ବ୍ରାହ୍ମଣ ୰ ମଧୁସୂଦନ ମିଶ୍ରଙ୍କୁ ପଚାରିଲେ । ମଧୁ ଦଦେଇ କହିଲେ, "ନିରକ୍ଷ ଲୋକର ଶବ ସଂସ୍କାର ପୁଣ୍ୟ କାର୍ଯ୍ୟ, ଏଥିପାଇଁ ପ୍ରାୟଶ୍ଚିତ୍ତ କାହିଁକି ? ନିଜର ଦେହ ଶୁଦ୍ଧି ନିମନ୍ତେ ଦଶାହ ଦିନ ଖିଅର ହୋଇ ଗାଧୋଇବ, ନୂଆ ଲୁଗା ଖଣ୍ଡେ ପିନ୍ଧିବ, ଶାନ୍ତି ଉଦକ ମୁଣ୍ଡରେ ଛିଞ୍ଚି ହେବ ଓ ପଇତା ଲଗେଇବ । ଦଶଦିନ ଆମିଷ ଖାଇବ ନାହିଁ, ପାରିଲେ ଏ ଦଶଦିନ ବକ୍ତେ ଲେଖାଏଁ ଖାଇବ ।" ସେଥର ସେହିପରି ହେଲା । ଆଶ୍ରମରେ ତ ୰ଚ୍ୟାଉପଟ୍ଟନାୟକଙ୍କ ଦୌରାତ୍ମ୍ୟରେ ମାଛ ମନା ଥାଏ, ଘରେ ଯାଇ ଖାଇଲେ ମଧ୍ୟ, ଫେରିଲେ ଜେରା କରି ସେ ଦିନକଠାରୁ ତିନିଦିନ ପର୍ଯ୍ୟନ୍ତ "ଏକ ବକ୍ତ" ବ୍ୟବସ୍ଥା କରନ୍ତି । ମଧୁ ଦଦେଇ ଶାନ୍ତି ଉଦକ ପକାଇଦେଲେ, ପଇତା ଲଗାଇଲି ।

କଟକରେ ଆମେ ଭୋଟରେ ବ୍ୟବସ୍ଥା କଲୁ ଯେ, ପଇତା ଲଗାଯାଇପାରେ; କିନ୍ତୁ ମୂର୍ଦ୍ଦାର ପୋଡ଼ି ସାରି ଗାଧୋଇ ଲୁଗାଟି ଧୋବା ଘରେ ପକାଇ, ଧୋବା ଘରୁ ଆସିଥିବା ଲୁଗା ଖଣ୍ଡେ ପିନ୍ଧିଲେ ଯଥେଷ୍ଟ ଦେହ ଶୁଦ୍ଧି ହେଲା । ଏହି ବ୍ୟବସ୍ଥା ଚାଲୁ ହେଲା, ମୋହିନୀ ବାବୁ ପ୍ରଫେସରଙ୍କର ଗୋଟିଏ ଚାକର ନା ଅନୁଗତ ଲୋକର ଦାହ କାର୍ଯ୍ୟରେ । ସେଦିନ ଦୈବାତ୍ ରବିବାର । ମୋହିନୀ ବାବୁ ସକାଳୁ ଆମ ମେସ୍‌କୁ ଆସି ତାଙ୍କ ଢଙ୍ଗରେ ପଚାରିଲେ, ଏଠାରେ ପରା ତୁମେ କେହି କେହି ମୂର୍ଦ୍ଦାର ପୋଡ଼ । ମୋରି ଗୋଟିଏ ଲୋକ ମରିଯାଇଛି । ଯାହା ଖର୍ଚ୍ଚ ପଡ଼ିବ ତାହା ମୁଁ ଦେବାକୁ ପ୍ରସ୍ତୁତ । ଲୋକଟି ରାତିରୁ ମଲାଣି, ଆଉ ବେଶି ସମୟ ମୂର୍ଦ୍ଦାର ପଡ଼ି ରହିବା ସ୍ୱାସ୍ଥ୍ୟ ପକ୍ଷରେ ଅନୁକୂଳ ନୁହେଁ ।"

ମୁଁ ତାଙ୍କୁ କହିଲି, କେବଳ ପାଞ୍ଚଟି ଟଙ୍କା କାଠ ପାଇଁ ଦରକାର । ସେ ଆପତ୍ତି କଲେ, "ତୁମମାନଙ୍କ ପରିଶ୍ରମ ପାଇଁ ତୁମେମାନେ କିଛି ପାରିଶ୍ରମିକ ପାଇବା ଉଚିତ । କେତେ ଦେବି କହ ।" ସେ ଆମର ପ୍ରଫେସର ବୋଲି କିଛି କଠୋର ମନ୍ତବ୍ୟ ନ ଦେଇ ମୁଁ କହିଲି, ଆମେ ଏହା ପଇସା ପାଇଁ କରୁନାହୁଁ । ସେ ମୋତେ ଦର୍ଶନ ଶାସ୍ତ୍ର ପଢ଼ାଇଲେ ଯେ, ପ୍ରତି କାର୍ଯ୍ୟ ପାଇଁ

ପାରିଶ୍ରମିକ ଦାବି କରିବା ଉଚିତ । ମୋର ସଙ୍ଗୀମାନେ ତ ଏକଥା ଶୁଣି ମୁସ୍ତେଜ । ଆଗ ସମସ୍ତେ ଧରି ବସିଲେ, ଏ ମୁର୍ଦ୍ଦାର ଆମେ ଛୁଇଁବା ନାହିଁ, ସେ ହାଡ଼ି ଆଣି ମୁର୍ଦ୍ଦାର ଉଠାନ୍ତୁ । ସମାଧାନ ହେଲା, ମୁର୍ଦ୍ଦାର ପୋଡ଼ି ସାରିଲା ପରେ ମହାଦେବ ମନ୍ଦିରରେ ଜଳଖିଆ କରିବାକୁ ପାଞ୍ଚ ଟଙ୍କା ସେ ଦିଅନ୍ତୁ । ଏ କଥା ମୋହିନୀ ବାବୁ ଶୁଣି ଟିକିଏ ତୁନି ହୋଇ ରହିଲେ । ଆମେ ଛ'ଜଣ ଯିବୁ ବୋଲି ଶୁଣି ଜଣକୁ ଚାରିଅଣା ଲେଖାଏଁ ଦେଢ଼ ଟଙ୍କା, କାଠ ପାଇଁ ପାଞ୍ଚ ଟଙ୍କା ଏପରି ଛଅ ଟଙ୍କା ଆଠଅଣା ମୋତେ ଦେଇ ତାଗିଦ କଲେ, ଶୀଘ୍ର ମୁର୍ଦ୍ଦାର ଉଠାଇବାକୁ ।

ପଇସା ଖର୍ଚ୍ଚ ବିଷୟରେ ମୋହିନୀ ବାବୁଙ୍କର ବଦ୍ଧମୁଷ୍ଟିତାର ଆହୁରି ପରିଚୟ ପରେ ପାଇଲି । ସେ ପ୍ରତ୍ୟହ ରିକ୍ସାରେ ବାଖରାବାଦରୁ କଲେଜକୁ ଯା'ନ୍ତି । ଯିବା ଆସିବା ଛ' ପଇସା ଲେଖାଏଁ ତିନି ଅଣା । ରିକ୍ସାବାଲା ଆପତ୍ତି କରେ ନାହିଁ । ଆପତ୍ତି କଲେ ମୋହିନୀ ବାବୁଙ୍କର ମୁଣ୍ଡ ଖରାପ ହୋଇଯାଏ ଯେ, ସେ କାହାକୁ କିଛି ନ କହି ଘଣ୍ଟା ଘଣ୍ଟା ଖଟରେ ପଡ଼ି କ'ଣ ଭାବନ୍ତି; ରିକ୍ସାବାଲା ପକ୍ଷରେ ଅଧିକ ଦାବି କରିବା ଅନୁଚିତ ବୋଲି କହନ୍ତି । ତାଙ୍କ ସ୍ତ୍ରୀ ରିକ୍ସାବାଲାକୁ ସ୍ୱାମୀଙ୍କ ଅଗୋଚରରେ ଦୁଇ ଦୁଇ ପଇସା ଚାରିପଇସା ଦେଇଦିଅନ୍ତି । ତାଙ୍କ ପିଲାଙ୍କଠାରୁ ଶୁଣିଛି ମା' ଧରା ବି ପଡ଼ନ୍ତି ଏବଂ ଘରେ ଦିନେ ଦୁଇ ଦିନ ଅଶାନ୍ତି ରହେ ।

ମୁଁ ମୋ ଥାର୍ଡ ଇଅର ବର୍ଷ ଏବଂ ବି.ଏ. ପରୀକ୍ଷା ଦେବା ପରେ ତିନିବର୍ଷ ଟିଉସନ କଲି । ମୋହିନୀ ବାବୁ ଜାଣିବାରେ ମୁଁ ପନ୍ଦର ଟଙ୍କା ପାଏ, ମା'ଙ୍କ ଠାରୁ ପାଏ ପାଞ୍ଚ ଟଙ୍କା । ପିଲାଙ୍କ ହାତରେ ମା' ମୋତେ ଅନୁରୋଧ କରିଥାନ୍ତି, ବାବୁ ପଚାରିଲେ ମୁଁ ପନ୍ଦର ଟଙ୍କା ବୋଲି କହିବି । ସେ ମୋତେ ପଚାରିନାହାନ୍ତି କି ମୁଁ କହିନାହିଁ । ଏଇ ଦୋଷଟି ଛାଡ଼ିଦେଲେ ମୁଁ ତାଙ୍କଠାରେ ପଡ଼ିଲାବେଳେ ଅନ୍ୟ କୌଣସି ଦୋଷ ଦେଖି ନ ଥିଲି । କର୍ତ୍ତବ୍ୟ ପରାୟଣତା ଓ ନିର୍ଭୀକତାର ସେ ଥିଲେ ଚଳନ୍ତି ପ୍ରତିମା ।

ଆମ ମଡ଼ାଚଣ୍ଡିଆ କଥା । ମୁଁ ଗାଁରେ ମାତ୍ର ଗୋଟିଏ ମୁର୍ଦ୍ଦାର ପୋଡ଼ିଛି । କଟକରେ ୧୯୩୧ ସୁଦ୍ଧା ପୋଡ଼ିଛି ଏକୋଇଶଟି । ଥରେ ପୁଲିସ୍ ଥାନାକୁ ଯିବାକୁ ପଡ଼ିଥିଲା । ତହୁଁ ଅଧିକ କିଛି ହୋଇନାହିଁ । ମୋର ବଲାଙ୍ଗୀର ବେଳର ଜଣେ ପ୍ରଧାନ ଶିକ୍ଷକ, ସେଠାର ଚାକିରି ଛାଡ଼ି କଟକର ପି.ଏମ୍. ଏକାଡେମୀରେ ପ୍ରଧାନ ଶିକ୍ଷକ ହେଲେ । ତାଙ୍କ ପରିବାର ଗାଁରେ ଥା'ନ୍ତି । ସେ ଗୋଟିଏ ଚାକର ଟୋକା ରଖି ଏକୁଟିଆ କଟକରେ ଥା'ନ୍ତି । ତା'ର କ'ଣ ବେମାର ହୋଇଥିଲା । ସେ ଚାକରଟି ଶୋଇଥିବା ଘରେ ଚାବି ପକାଇ ବୁଲି ଆସିଲେ । ଫେରିବାବେଳକୁ ଚାକରଟି ମରିଯାଇଛି । ସାଙ୍ଗେ ସାଙ୍ଗେ ମୋ ପାଖକୁ ଆସିଲେ । ସେତେବେଳେ ଭଡ଼ା ବୋହିବାକୁ ଆମର ଗୋଟାଏ ଟ୍ୟାକ୍ସି ଥାଏ । ମୁସଲମାନ ଡ୍ରାଇଭର ଗାଡ଼ି ଚଳେଇଲା । ମୁଁ, ମୋ ଭାଇ ଏବଂ ମୋର ଜଣେ ଅନ୍ତରଙ୍ଗ (ବର୍ତ୍ତମାନ ଓକିଲ) ବାହାରିଲୁ । ସଙ୍ଗୀମାନଙ୍କ ଅନୁରୋଧରେ ମୁର୍ଦ୍ଦାରଟିକୁ

ପଛପଟ କ୍ୟାରିଅରରେ କୁଅ ଦଉଡ଼ିରେ ବସିଲା ପରି ବାନ୍ଧି ଦେଲୁ । ସେ କାଳ ମଟରରେ କ୍ୟାରିଅରଟା ବାହାରକୁ ସାଇକଲ କ୍ୟାରିଅର ପରି ପଛରେ ଲାଗିଥାଏ । ଜେଲଖାନା ଛକ ପାଖେ ପୁଲିସ୍ ଗାଡ଼ି ଅଟକାଇ ମଣିଷ ବସିଛି ବୋଲି ପାଟି କଲା । ଆମେ କହିଲୁ "ଲୋକଟା ଉଠୁ ନାହିଁ, ଟିକିଏ ଉଠାଇ ଦିଅ ।" ସେ ଆସି ଆଲୁଅରେ ତାକୁ ଚାହିଁ, 'ଲାସ୍ ହୈ' ବୋଲି କହି ହସିଦେଲା । ଆମେ ହସିଦେଲୁ । କିନ୍ତୁ ଏତିକିରେ କଥା ସରିଲା ନାହିଁ । ଏକାଡେମୀ ପରିଚାଳନା କମିଟିର କେତେ ଜଣ ହେଡ୍‌ମାଷ୍ଟରଙ୍କ ବିରୋଧରେ ଖୁବ୍ ଲାଗିଥାନ୍ତି । ଥାନାରେ ଖବର ହୋଇଗଲା ଯେ, ହେଡ୍‌ମାଷ୍ଟ୍ରେ ବିଷ ଦେଇ ତାଙ୍କ ଚାକରକୁ ମାରିଦେଇ ରାତି ରାତି ନେଇ ପୋଡ଼ାଇ ଦେଇଛନ୍ତି । ପୁଲିସ୍ ଆସି ତାଙ୍କୁ ଓ ମୋତେ ଗୁଡ଼ାଏ ପଚରାପଚରି କଲେ । ମୁଁ ମଧ୍ୟ ଏତେ ଭାସିଗଲି ଯେ ଦିନେ ଦୁଇ ଦିନ ମୋ ହେଡ୍‌ମାଷ୍ଟ୍ରଙ୍କୁ ସନ୍ଦେହ କଲି । ଯାହାହେଉ ଲାଲବାଗ ଥାନାର ସେତେବେଳର ସବ୍‌ଇନ୍‌ସପେକ୍ଟରଙ୍କ ଅନୁଗ୍ରହରେ ଏତିକିରେ ବିଷୟର ଉପସଂହାର ହେଲା । ତାଙ୍କ ଯୋଗୁଁ ଓ ହେଡ୍‌ମାଷ୍ଟ୍ରଙ୍କ ଯୋଗୁଁ ମୋ ମନର ସନ୍ଦେହ ବି ଦୂର ହେଲା । ଚାକର ବିଚରାକୁ ଜ୍ୱର ହୋଇଥିଲା, ହେଡ୍‌ମାଷ୍ଟ୍ରେ ତା'ପାଇଁ ଅଟଳ ବାବୁଙ୍କ ଦୋକାନରୁ ଦି' ଚାରିଥର ଔଷଧ ବି ନେଇଥିଲେ । ସେଦିନ ଚାକରର ନିରାପତ୍ତା ପାଇଁ ସେ ଦୁଆରେ ତାଲା ପକାଇ ଔଷଧ ପାଇଁ ଆସିଥିଲେ । ତାଙ୍କର ଏତିକି ଦୋଷ, ସେ ଔଷଧ ପାଇଁ କାହାକୁ ପଠେଇଥା'ନ୍ତେ, ନିଜେ ଯାଇଥିଲେ ବୋର୍ଡିଂର ଜଣେ ଛାତ୍ର ବା ଶିକ୍ଷକଙ୍କୁ ରୋଗୀ ପାଖେ ରଖି ଦେଇଥାନ୍ତେ ଓ ଡାକ୍ତର ଦେଖାଇ ଆହୁରି ଅଧିକ ଚିକିତ୍ସା କରାଇଥା'ନ୍ତେ ।

ଆମର ମଡ଼ାଚଣ୍ଡିଆ ଖ୍ୟାତି ବଢ଼ିବାରେ ଆମର ଚାହିଦା ବି ବଢ଼ିଲା ଏବଂ ଯେଉଁ ମୁର୍ଦ୍ଦାରକୁ କେହି ନ ଛୁଇଁଲେ ତାହା ଆମ ହାତକୁ ଆସିଲା । ସେତେବେଳେ କଟକର ଜଣେ ବିଶିଷ୍ଟ ଲୋକ ନରହରି ମିଶ୍ରେ ବସନ୍ତ ରୋଗରେ ପଡ଼ି ମରିଗଲେ । ଶେଷାବସ୍ଥାରେ ସେ ଥିଲେ ତାଙ୍କ ଜ୍ୱାଇଁ କୃତ୍ତିବାସ ନନ୍ଦଙ୍କ ଘରେ । ସେ ବି ସେତେବେଳର ଜଣେ ବିଶିଷ୍ଟ ଲୋକ । କଟକ ମ୍ୟୁନିସିପାଲିଟିର ବହୁତ ଲୋକହିତକର କାର୍ଯ୍ୟ ସେ କରିଥିଲେ । ବସନ୍ତ ଗୋଟିଗୁଡ଼ାକ ପାଚି ଭାରି ଦୁର୍ଗନ୍ଧ ହେଉଥାଏ । ମଡ଼ା ବ୍ରାହ୍ମଣଙ୍କ ବ୍ୟତୀତ ଅନ୍ୟ କେହି ଉଠାଇବେ ନାହିଁ, ତାଙ୍କ ମାଇପି ମହଲର ଜିଦ୍ । ସେ ମାଲ ଭାଇ ଖୋଜାଖୋଜି କରି ନ ପାଇ ମୋ ପାଖକୁ ଆସିଲେ ଏବଂ ମୋତେ ମୁର୍ଦ୍ଦାର ପାଖକୁ ଡାକି ନେଲେ । ତାଙ୍କ ଦାଣ୍ଡ ଦୁଆର ପାର ହୋଇ ଭିତରକୁ ପଶୁ ପଶୁ ଗନ୍ଧରେ ନାକ ଚୁଣ୍ଟି ହୋଇଯାଉଥାଏ । ସେ ପଚାରିଲେ, "ତୋ ସାଥିମାନେ ବାହାରିବେଟି ?" ମୋ ସାଥିମାନେ ନ ବାହାରିବେ ଏମିତି କାମ ନାହିଁ ବୋଲି ସେତେବେଳେ ମୋର ବିଶ୍ୱାସ । ବ୍ରାହ୍ମଣ ପିଲା ନ ହେଲେ ଚଳିବ ନାହିଁ ବୋଲି କହିବାରୁ ଟିକିଏ ଖୋଜି ହେବାକୁ ପଡ଼ିଲା । ସେତେବେଳେ କେହି ଜାତି କଥା ପକେଇଲେ ମୋତେ ଭାରି ରାଗ ଲାଗେ । ଆମର ଓପର କ୍ଲାସ ହରି ମଳିକ (କଣ୍ଡରା)ଙ୍କୁ

ବ୍ରାହ୍ମଣିଆ ଢଙ୍ଗରେ ଆମେ ପୋଡ଼ିଥାଉଁ । କିନ୍ତୁ ଏ ସ୍ଥଳରେ ସବୁ କଥା - ନରହରି ମିଶ୍ରଙ୍କ ଘର, ବୟସ ଓ ତାଙ୍କ ପରିବାରର ସଂସ୍କାର କଥା ବୁଝାଇ ମୋତେ ବାଗେଇଥାନ୍ତି । କିନ୍ତୁ ମୁଁ ଧରି ବସିଲି ଉପରେ ବୋତଲେ ଫିନାଇଲ ନ ପକାଇଲେ ମୋ ସାଥିମାନେ ପାଖକୁ ଆସିବେ ନାହିଁ । ସେ ଘରେ କାହାକୁ ନ ପଚାରି ରାଜି ହୋଇଗଲେ । ଆମେ କୋକେଇ ସଜାଡ଼ିଲାବେଳକୁ ସେ ଘରେ, ଝୁଣାଧୂଆଁ ଓ ଫିନାଇଲ ଗନ୍ଧ ଯୋଗୁଁ ଦେଉଳ ଓ ପାଇଖାନାର ଅପୂର୍ବ ସମାବେଶ ହୋଇଥାଏ ।

କୋକେଇରେ ମୁର୍ଦ୍ଦାର ବନ୍ଧାବନ୍ଧି ସରିଲାଣି ଏଇ ସମୟରେ ଜଣେ ପଣ୍ଡିତ ଆସି, ଦୈବାତ୍ ବା ନରହରି ମିଶ୍ରେ ମରିଗଲେ ବୋଲି ଶୁଣି ପହଞ୍ଚିଲେ । ସେ ଆପତ୍ତି କଲେ, ବସନ୍ତ ମୁର୍ଦ୍ଦାର ପୋଡ଼ା ହୁଅନ୍ତି ନାହିଁ, ପୋତା ହୁଅନ୍ତି । ଗୁଡ଼ାଏ ବେଳ ଘଣ୍ଟଚକଟା ଲାଗିଲା, ମୋ ସଙ୍ଗୀଙ୍କ ଭିତରୁ ଜଣେ ଦି'ଜଣ ମୋ ଉପରେ ସେତେବେଳକୁ ମୁସ୍ତେଜ । ବାଉରିବନ୍ଧୁ କହିଲା, ଏ ଗନ୍ଧ ଆଉ ଅଧଘଣ୍ଟେ ଶୁଂଘିଲେ ଆମ ପାଇଁ ମଧ୍ୟ ମାଲଭାଇ ଦରକାର । ଆଉ ଜଣେ କହିଲା, ଗନ୍ଧରେ ଯଦି ମଣିଷ ମରୁଥାନ୍ତେ ତେବେ ଡାକ୍ତରଖାନାରେ ବେହେରା ଚାକିରି ପାଇଁ ଲୋକ ମିଳନ୍ତେ ନାହିଁ । ସେ ଦିନ ତମାମ ଆମେ ସମସ୍ତେ ପରସ୍ପରକୁ 'ବେହେରାଏ' ବୋଲି ଡକାଡ଼କି ହେଲୁ । ଯାହା ହେଉ, ଶେଷରେ କୃତ୍ତିବାସ ବାବୁଙ୍କ ଘରର ଜଣେ ବୃଦ୍ଧାଙ୍କ କଥା ରହିଲା । ସେ କହିଲେ, ଆମମାନଙ୍କ ଘରେ ବସନ୍ତ ରୋଗୀ ପୋଡ଼ା ହୁଅନ୍ତି । ସେଇଆ ହେଲା । କିନ୍ତୁ ରହସ୍ୟ ଲାଗିଲା, ମୁଁ ଯଦି ବସନ୍ତରେ ପଡ଼ିବି, ତେବେ ସାଙ୍ଗେ ସାଙ୍ଗେ ନେଇ ମୋତେ ପୋଡ଼ି ଦେବାକୁ ହେବ ।

କୃତ୍ତିବାସ ବାବୁ ତାଙ୍କର ଜଣେ ନାବାଳକ ଶଳାଦ୍ୱାରା ମୁଖାଗ୍ନି ଦିଆଇବାକୁ ଆମ ସାଙ୍ଗରେ ଯିବାରୁ ଆମର ମୁର୍ଦ୍ଦାର ପୋଡ଼ାବେଳର ଉଚ୍ଛୃଙ୍ଖଳ କଥାବାର୍ତ୍ତା ଯଥାସମ୍ଭବ କମିଲା । ମୁର୍ଦ୍ଦାର ପୋଡ଼ା ଗନ୍ଧ ଏତେ ଉତ୍କଟ ହୁଏ, ଆଗରୁ ଅନୁଭବ କରିନଥିଲି । ଗାଧୋଇ ପାଧୋଇ ଗୋଟିଏ ଦେବମନ୍ଦିରକୁ ଗଲୁ, ଭୂରି ଭୋଜନ ମିଳିଲା, ଖାଲି ଗୋବିନ୍ଦା ଦୋକାନ ଚାରି ପଇସିଆ ବଡ଼ ଖିରମୋହନ । ଦଶାହ ଦିନ ମୋ ପାଖକୁ ପାଞ୍ଚଖଣ୍ଡ ପିସ୍ତଲମାର୍କା ଲୁଗା ଆସିଲା । ଏ ଲୁଗା ସେତେବେଳେ ସବୁଠାରୁ ଦାମିକା, ଖଣ୍ଡକୁ ପନ୍ଦର ଅଣା । ଯୁ' ପୂର୍ବରୁ ଥରେ ଦି'ଥର 'ବମ୍ବେଇ କରିଆ' ମିଳିଥିଲା - ଖଣ୍ଡକୁ ପାଞ୍ଚଅଣା ଲେଖାଏଁ, ସାତହାତି, ଓସାର ନାଲି ବା କଳା ଧଡ଼ି । ପ୍ରଥମ ଥର ସେ ଲୁଗା ମିଳିବାରେ ଆମେ ସିଦ୍ଧାନ୍ତ କରିଥିଲୁ ଯେ, ଏ ଲୁଗା ସବୁ ଦରିଦ୍ର ଭିଖାରିଙ୍କୁ ଦେଇପକାଇବା । ପିସ୍ତଲମାର୍କା ଲୁଗା ଦେଇପକାଇବା ବିଷୟରେ ଟିକିଏ ଉଁ ଚୁଁ ହେଲା । କିନ୍ତୁ ଶେଷରେ ଦେଇ ଦେବାର ସିଦ୍ଧାନ୍ତ ହେଲା । ପ୍ରଥମେ ପାଇଲେ ହରିହର ଘାଟରେ ଖଣ୍ଡିଏ କୁଡ଼ିଆ କରି ରହୁଥିବା କୋଦେଇ ମାତା, ବୁଢ଼ୀ ହୋଇ ନଥା'ନ୍ତି, ତାଙ୍କ ସଙ୍ଗେ ରହୁଥିବା ବାବାଜୀଟି ଅତି ଶୀର୍ଣ୍ଣକାୟ ବୃଦ୍ଧ । ସର୍ବସମ୍ମତିକ୍ରମେ ସ୍ଥିର ହେଲା ,ତାଙ୍କୁ ଲୁଗା ଦେବା ବିଷୟ । ମୋ ମୁଣ୍ଡକୁ ପ୍ରଥମେ ଆସିଥିବାରୁ ଆଜିଠାରୁ ମୁଁ ବାବାଜୀଙ୍କ ସ୍ଥାନ ଅଧିକାର କରିବି । ଲୁଗା ଯୋଗୁଁ ମାତାଙ୍କର ମୋ ପ୍ରତି

ଶ୍ରଦ୍ଧା ବଢ଼ିଲା । ନଈକୂଳରେ ବୁଲି ଗଲାବେଳେ ସେ ଥରେ ଦି'ଥର ମୋତେ କହିଦେଲେ, "ବାପା, ଭଲ ଅଛ ?" ଯିଏ ଯେ ଶୁଣିଥିଲେ, ସେମାନେ ମୋର ଦୁର୍ନାମ ପ୍ରଚାର କରିଦେଲେ । ଫଳରେ ମାତାଙ୍କର ଆମ୍ଭମାନଙ୍କଠାରୁ ପଇସେ ଦି'ପଇସା ପ୍ରାପ୍ତି ବଢ଼ିଲା ।

ମୋ ଦୁଃସାହସିକତା, ବଗୁଲିଆଗିରି ଓ ପାଠ ଯୋଗୁଁ ମୋର ସଙ୍ଗୀଙ୍କ ସଂଖ୍ୟା ବଢୁଥାଏ । ସେତେବେଳେ ରେଭେନ୍‌ସା କଲେଜ ଆଜିକାଲିର ମାନଦଣ୍ଡରେ ଖୁବ୍ ଛୋଟ । ଛାତ୍ର ସଂଖ୍ୟା ଏମ୍.ଏ. କ୍ଲାସକୁ ମିଶାଇ ସାତ ଶହ ଭିତରେ-ସମସ୍ତେ ମୋତେ ଚିହ୍ନିଥାନ୍ତି । ଉପର କ୍ଲାସ ପିଲାମାନେ ଶ୍ରଦ୍ଧା କରୁଥାନ୍ତି, ମୁଁ ବି ସେମାନଙ୍କୁ ଖୁବ୍ ସମ୍ମାନ ଦେଖାଏ; ତଳ କ୍ଲାସ ପିଲାଙ୍କୁ ଯଥାସମ୍ଭବ ମୁରବିପଣିଆ ଦେଖାଏ । ସେମାନେ ମୋ ନାମରେ ବାବୁ ଯୋଡ଼ନ୍ତି । କିନ୍ତୁ ଆମ କ୍ଲାସର ଯେତେ ଅନ୍ତରଙ୍ଗ ପ୍ରାୟ ସମସ୍ତେ, ଅନଳଂକୃତ ଭାବେ ନାମ ଧରି ଡାକନ୍ତି ଏବଂ ପ୍ରାଣନାଥ ମହାନ୍ତିଙ୍କ ପରି କେତେଜଣ 'ଗୁଡ୍‌ବୟ୍'ଙ୍କୁ ଛାଡ଼ି ଦେଲେ ଆଉ ସମସ୍ତେ ମୋ ନାମ ପୂର୍ବରୁ 'ଶଳା' ବିଶେଷଣ ଯୋଗ କରନ୍ତି । ଯେଉଁମାନେ ସଂଭ୍ରମ ଦେଖାନ୍ତି ତାଙ୍କୁ ପାଠରେ ଆପଣାର କରେ, ଓପର ପିଲାଙ୍କୁ ଗୁଡ୍‌ବୟ୍ ହୋଇ ଏବଂ ସଙ୍ଗୀମାନଙ୍କୁ ବଗୁଲିଆ ଢଙ୍ଗରେ । ଆର୍ତ୍ତବାବୁ ଆମ ଦୁର୍ବୃତ୍ତିକୁ ବକାଟିଗିରି ବୋଲି କହନ୍ତି, କୃତ୍ତିବାସ ବାବୁ କହନ୍ତି ବଗୁଲିଆମି । ଥରେ ଓଡ଼ିଆ କ୍ଲାସରେ ଆର୍ତ୍ତବାବୁଙ୍କୁ ପଚାରିଦେଲି, "ସାର୍ ! ବଗୁଲିଆମି ଓ ବକାଟିଗିରିରୁ କେଉଁଟା ସହ୍ୟ ?" ସେ ତାଙ୍କରି ସ୍ୱାଭାବିକ ମୁଖବିକୃତି କରି ଘଡ଼ିଏ ତଳକୁ ଓ ଦଣ୍ଡେ ମୋତେ ଚାହିଁ କହିଲେ, ଏ 'ବକାଟି', ଦ୍ୱିରୁକ୍ତି କରିବାରୁ କହିଲେ, "ଆରେ ! ବକ୍ତାର ମନକୁ ନେଇ ଅର୍ଥ । ବକାଟି ଆମ ପାରମ୍ପରିକ ରୀତିକୁ ଅମାନ୍ୟ କରନ୍ତି ଏବଂ ବଗୁଲିଆ ତାକୁ ଅବଜ୍ଞା କରନ୍ତି ।" ଏଇଥିରୁ ଆରମ୍ଭ ହେଲା ଗୋଟିଏ ଆଲୋଚନା ଯାହା ସେତେବେଳେ ଆମ ସମସ୍ତଙ୍କୁ ବେଶ୍ ମନୋଯୋଗୀ କରିଥିଲା । ଆର୍ତ୍ତବାବୁ ଏଇପରି ସାମାନ୍ୟ କଥାରୁ ତତ୍ତ୍ୱ ବାହାର କରନ୍ତି ଓ ସେ ତତ୍ତ୍ୱରେ ନିଜେ ବିଭୋର ହୋଇ ଛାତ୍ରମାନଙ୍କୁ ତନ୍ମୟ କରି ପକାନ୍ତି । 'ସଂସ୍କୃତ' ଓ 'ଅସଂସ୍କୃତ' ଛାତ୍ର ସମସ୍ତେ ତାଙ୍କୁ ମାନନ୍ତି ।

ମୁଁ କଳା ଓ ବିଜ୍ଞାନ ଉଭୟର ଅଧ୍ୟାପକଙ୍କ ପରିଚିତ ହେବାକୁ ଚେଷ୍ଟା କରୁଥିଲି, ସାରଦା ବାବୁ (ଅଙ୍କ), ବାବା କର୍ତ୍ତାର ସିଂହ, ଅତୁଲ ବାବୁ, ଗୁରୁଚରଣ ବାବୁ (ରସାୟନ), ନାରାୟଣ ବାବୁ (ପଦାର୍ଥ ବିଜ୍ଞାନ), ବିରାଜମୋହନ ସେନାପତି (ଉଦ୍ଭିଦ ବିଜ୍ଞାନ) ପ୍ରଭୃତି ମୋର ଅଧ୍ୟାପକ ନ ହେଲେ ବି ଉପଦେଷ୍ଟା ଥିଲେ । ସେତେବେଳେ ଯେଉଁଠି ଯେଉଁ ଅଧ୍ୟାପକଙ୍କୁ ଭେଟେ ନମସ୍କାର କରେ । ଏହାର କଳନ୍ତର ସ୍ୱରୂପ ମିଳେ ସସ୍ନେହ ଦୃଷ୍ଟି, କିପରି ଅଛ ବୋଲି ପ୍ରଶ୍ନ ଏବଂ "ସାର୍ ଭଲ ଅଛି" ବୋଲି ମୋର ସବୁବେଳେ ସମାନ ଉତ୍ତର ।

ବାସ୍ତବିକ୍ ମୁଁ ଯେଉଁ ପରିବେଶରେ ଥାଏ ସେଥିରେ ମୁଁ ଯେ ଅରକ୍ଷିତ, ଓ ଟ୍ୟୁସନ୍ ମାତ୍ର ମୋର ନିଜକୁ ଓ ଦୁଇ ଭାଇଙ୍କୁ ପୋଷିବାର ଏକମାତ୍ର ଅବଲମ୍ବନ, ଏ କଥା ମୋ ମନକୁ ଘାଣ୍ଟିବାକୁ

ସମୟ ପାଏ ନାହିଁ । ବେଳେବେଳେ ସହୃଦୟ ବନ୍ଧୁମାନଙ୍କ କୁଶଳ ପ୍ରଶ୍ନ ଫଳରେ ମୋର ମନରେ ହୁଏ, ମୋର ବୃତ୍ତିଟା କ'ଣ ? ପେଟ ପୋଷିବା ନା ପାଠପଢ଼ା ? ସେତେବେଳେ ନିରୀକ୍ଷା କରିନଥିଲି । ଏବେ ବୁଝୁଛି, ଉଭୟକୁ ମୁଁ ସମାନ ଆସନ ଦେଇଥାଏ । ଖାଇବାକୁ ଟିଉସନ କରିବା ଯେପରି ପ୍ରୟୋଜନ, କଲେଜରେ ନାମ ଲେଖାଇବା ହେତୁ ପାଠ ପଢ଼ିବା ସେହିପରି ପ୍ରୟୋଜନ ଏବଂ ଏ ଉଭୟର ସଙ୍ଗେ ବା ସତ୍ତ୍ୱେ ସ୍ୱଚ୍ଛନ୍ଦ ଜୀବନଯାପନ ବି ମଣିଷର ସ୍ୱଭାବ । ଏପର୍ଯ୍ୟନ୍ତ ଏଇ ରୀତିକୁ ମୁଁ ପସନ୍ଦ କରି ଆସିଛି ଏବଂ ଯଥାସାଧ୍ୟ ପାଳୁଛି ।

ଆମେ ହାତରେ ରୋଷେଇ କରୁଥାଉଁ ଏବଂ ଅତି ଅଳ୍ପରେ ଚଳୁ । ଏହା ମୋତେ ଦୀନମ୍ମଣ୍ୟ କରେ ନାହିଁ । ସବୁଠାରୁ ସହଜ ଓ ଅଳ୍ପ ବ୍ୟୟସାପେକ୍ଷ ଗୋଟାଏ ପାକ୍ ପ୍ରଣାଳୀ ଏଇ ସମୟରେ ବାହାରିଲା-ଅଞ୍ଚାନଘଣ୍ଟ । ସେତେବେଳେ ବିଚାରିଥିଲି ଏହା ମୋର ଉଦ୍ଭାବନ । ପରେ ଜାଣିଲି, ବାଟଖେଚୁଡ଼ି, ନଳରାନ୍ଧଣା ଇତ୍ୟାଦି ନାମରେ ଏହା ବହୁ କାଳରୁ ଅଛି । ପୁରାତନ ସଭ୍ୟତାର ଆସ୍ଥାନ, ପୂର୍ବ ପରିଚିତ ଆମେରିକାକୁ ଆବିଷ୍କାର କଲେ ବୋଲି କଲମ୍ବସ ବାହାବା ପାଇଲା ପରି ମୋ ଅଞ୍ଚାନଘଣ୍ଟ ମୋ ସଙ୍ଗୀମାନଙ୍କ ଦ୍ୱାରା ଆଦୃତ ହେଲା ଏବଂ ତା ଫଳରେ ମୋ ଭାଇ ଦୁହେଁ ଯାକୁ ଗ୍ରହଣ କରିନେଲେ । ଅଞ୍ଚାନଘଣ୍ଟରେ, ଚାଉଳ ଡାଲି ବାଦ୍ ଯେଉଁ ଖାଦ୍ୟ ଜିନିଷ ହାତରେ ପଡ଼ିଲା, ପରିବାପତ୍ର, ଶାଗ ମାଛ ବି ଏକାଠି ପଡ଼େ । ସିଝିଥିଲେ ଓ ଲୁଣ ସମାନ ହୋଇଥିଲେ ଏହି ମିଶ୍ରଣ ରୁଚିକର ହୁଏ, ନ ହୋଇଥିଲେ ଓଳିକ ଚଳିଯିବା ପାଇଁ ଖାଏ ଓ ଭୟରେ ଭାଇ ଦୁହେଁ ଖାଇ ଦିଅନ୍ତି । ଶନିବାର ଦିନମାନଙ୍କରେ କଲେଜରୁ ସାଙ୍ଗ ୭/୮ ଜଣ ଡାକି ଆଣି ତାଙ୍କରି ଆଗରେ ଖାଦ୍ୟ ପାକ ହୁଏ, ସିଝିଲାଣି କି ନାହିଁ, ଲୁଣ ପଡ଼ିଛି କି ନାହିଁ ହାଣ୍ଡିରୁ କାଢ଼ି ପରୀକ୍ଷା ବି ଚାଲିଥାଏ । ନିଜର ମତ ଉପରେ ନିର୍ଭର ନ କରି ଆଉ ପାଞ୍ଚ ସାତ ଜଣଙ୍କର ଭୋଟ ବି ସଂଗୃହୀତ ହେଉଥାଏ ।

ସବୁ କାମରେ ମୁଣ୍ଡ ଭର୍ତ୍ତି କରିବାକୁ ବେଳ ତ ଥାଏ, ଦିନେ କଲେଜକୁ ଫେରିବା ବେଳେ ଆମ ବସା ପାଖରେ ଗୋଟିଏ ବୁଢ଼ା-ଗିରି ବୁଢ଼ା, ଆକାଶକୁ ଚାହିଁ ଆନନ୍ଦରେ ଆତ୍ମହରା ହେବାର ଦେଖି ମୁଁ ବି ଚାହିଁଲି । ବହୁ ଉଚ୍ଚରେ, ଚିଲଙ୍କର ବି ଉପରେ ଚାରୋଟି ପକ୍ଷୀ ଉଡ଼ିବାର ନଜର ପଡ଼ିଲା । ଗିରି ବୁଢ଼ା କହିଲା, "ବାବୁ ନିଂଘି ଯାଇଛନ୍ତି ମୋ ନିଜ ଭାଡ଼ିର ଛୁଆ ।" ପାରା ସଉକ କଟକରେ ବହୁତ ଦେଖିଛି । କିନ୍ତୁ ସମସ୍ତେ ସବୁ ଗୁଣରେ ଗିରି ବୁଢ଼ାର ତଳେ । କୋଉ ପାରା ଉପରକୁ ଯା'ନ୍ତି, କୋଉ ପାରା ସବୁଠୁ ବେଶିବେଳ ଆକାଶରେ ରହିପାରନ୍ତି, ମେଘୁଆ ସମୟରେ ପାରାଙ୍କୁ ଛାଡ଼ିଲେ କିପରି ସେମାନେ ବାଦଲରେ ଭାସିଯା'ନ୍ତି, ଶହେ ମାଇଲ ଦୂରକୁ ଭାସି ଯାଇଥିବା ପାରା ତିନି ଚାରି ଦିନରେ କିପରି ନିଜ ଭାଡ଼ିକୁ ଫେରି ଆସନ୍ତି, ଏ ସବୁ ବୁଢ଼ାକୁ ଜଣାଥାଏ ଏବଂ ଏହା ଆଗ୍ରହୀ ଶ୍ରୋତାକୁ ଶୁଣାଇବାରେ ସେ ଏତେ ଆନନ୍ଦ ପାଏ ଯେ ନିଜର ବେପାରକୁ ମଧ୍ୟ ପସରା କରେ ନାହିଁ ।

ବୁଢ଼ାକୁ ବୟସ ଷାଠିଏ ସତୁରି ହୋଇଥିବ ବୋଲି ଅନୁମାନ କରିଥିଲି । ଦୁଇଟିଯାକ ଗୋଡ଼ ଗୋଦର, ହାତୀ ଗୋଡ଼ ପରି, ହାତ ଯୋଡ଼ିକ ଅତି ସରୁ, ପେଟ ଭିତରେ ଲାଗିଥାଏ । ଭାର୍ଯ୍ୟା ଦ୍ୱିତୀୟ କି ତୃତୀୟପକ୍ଷ ହେବ କେଜାଣି ? ଯୋଡ଼ିଏ ପୁଅ, ସେଥିରୁ ଗୋଟିଏ ପାରି ଯାଇଥାଏ, ରୋକଗାର କରେ, ପାନ ଦୋକାନଟିଏ ବ୍ୟତୀତ ବୁଢ଼ାର ସମ୍ପତ୍ତି ବୋଇଲେ କିଛି ନାହିଁ । କୋଉ ଓଳି ଖା'ନ୍ତି, କୋଉ ଓଳି ନାଇଁ । ବୁଢ଼ା ସକାଳ ଓଳି ଦୋକାନରେ ବସେ; ଓପର ଓଳିଯାକ ପାରାଙ୍କ ସାଙ୍ଗରେ ଲାଗିଥାଏ । ମୁଁ ଉପର ଓଳି ଦୁଇ ଚାରିଥର ବୁଢ଼ା ପାଖରେ ବସି ହରା, ଭୁରା ପାରା ଚିହ୍ନିଲି । ଭୁରା ବୋଇଲେ କାଳିଆ ପାରା ଯେ ହରାଙ୍କ ସଙ୍ଗେ ଯୋଡ଼ ଦେଇ ଉଡ଼ନ୍ତି । ହରା ହରଡ଼ ଚଢ଼େଇ ବର୍ଣ୍ଣ । ପାରାଙ୍କ ବିଷୟରେ ଆଗ୍ରହୀ ହେବାରୁ ବୁଢ଼ାର ମୋ ପ୍ରତି ଶ୍ରଦ୍ଧା ହେଲା । ଯୋଡ଼ିଏ ହରା ଓ ଯୋଡ଼ିଏ ଭୁରା ପାରା ଛୁଆ ମୋତେ ଦାନ କଲା ଏବଂ ତିନି ହଳ ପାରା ରହିଲା ଭଳି ଗୋଟିଏ କାଠ ଭାଡ଼ି ମୋତେ ଦେଲା । ଦାମ୍ ନେବାକୁ କୁଦର୍ଥ ରାଜି ହେଲା ନାହିଁ । ଏଣୁ ତେଣୁ ପଚାରି ବୁଝିଲି ଏ ପାରା ଯୋଡ଼ି ଟଙ୍କାଏ ଲେଖାଏଁ ମିଳନ୍ତି ଯେ ତା' ପାରାଙ୍କ ସାଙ୍ଗେ କେହି ଯୋଡ଼ି ଦେଇପାରିବେ ନାହିଁ । ଖୁବ୍ କାକୁତି ମିନତି ହୋଇ ତାକୁ ତିନୋଟି ଟଙ୍କା ଗ୍ରହଣ କରାଇଲି । ତା'ର ଇତିବୃତ୍ତି ଶୁଣିଲି, ସେ ଟୋକା ସମୟରେ ଭଲରେ ଥିଲା, ତା' ବାପର ଖଣ୍ଡେ ଭଲ କାଗା ବି କଟକରେ ଥିଲା, ସବୁ ଏଇ ପାରା ରଙ୍ଗରେ ଯାଇଛି । ପାରା ଉଡ଼ାଇବାରେ ପ୍ରତିଦ୍ୱନ୍ଦ୍ୱିତା ହୋଇ ଥରେ ଦି'ଥର ବୁଢ଼ା ଫୌଜଦାରୀ ମକଦମାରେ ବି ପଡ଼ିଥିଲା ।

**ବସା ଭାଙ୍ଗିଲା :**

ଆଇ.ଏ. ପରୀକ୍ଷାର ଫଳ ବାହାରିଲା, ମୋର ବୃତ୍ତିଟିଏ ମିଳିବାର ବି ହେଲା । ମୁଁ ଫାଷ୍ଟ ଡିଭିଜନରେ ପାସ୍ କରିବାର ଆଶା ରଖିଥାଏ, ବୃତ୍ତି ମିଳିବା କଥା ଘୁଣାକ୍ଷରେ ବି ଭାବି ନ ଥାଏ । ସେ କାଳେ ଆଇ.ଏ., ବି.ଏ. ଓ ମାଟ୍ରିକ ପରୀକ୍ଷା ଏକ ସମୟରେ ହେଉଥାଏ । ମୁଁ ରାତିରେ ଓ ସକାଳେ ମୋ ଟିଉସନ ପିଲାଙ୍କୁ ପରୀକ୍ଷା ପାଇଁ ତାଲିମ କରି ମୋ ପରୀକ୍ଷା ଦେବାକୁ ଯାଏ । ପାସ୍‌ଟାଏ ହୋଇଗଲେ ବି କୃତାର୍ଥହେବାର କଥା ।

ମୋ ବିଚାରରେ ଭଲ ପାସ୍ ହେବାରୁ ମୋର ଆଶା ହେଲା ଗୋଟାଏ ଖଣ୍ଡେ ଟିଉସନ୍ କମାଇଦେଲେ ଓ ସାଇକଲ ଖଣ୍ଡେ କିଣିଲେ ବି.ଏ.ରେ ମୋର ଆହୁରି ଭଲ ହେବ । ସେଇ ସମୟରେ ବକ୍‌ସିବଜାର ଭଗତ ଘରର ଜଣେ ସହପାଠୀ ମୋ ତଳ ଭାଇକୁ ତା' ପାଖରେ ରଖି ତା'ଠାରୁ ପାଠ ପଢ଼ିବାର ପ୍ରସ୍ତାବ ଆଣିଲା । ମାସକୁ ପନ୍ଦର ଟଙ୍କା ଦେବ ଓ ରହିବାକୁବି ବସା ଦେବ । ସେ ମୋ ପାଖରୁ ଗଲା । ସାନଭାଇ ପାଠକୁ ନ ପାରି ଗାଁକୁ ଗଲା ଗୋଟିଏ ଦୋକାନ କରିବାକୁ । ଦୋକାନ ପାଇଁ ସାମାନ୍ୟ ମୂଳଧନ ଓ ପାରା ଭାଡ଼ିଟି ଦେଇ ତାକୁ ଗାଁକୁ ପଠାଇଲି । ଆମ ବସା ଓ ହାତ ରୋଷେଇ ଭାଜିଲା । ମୁଁ ଖଣ୍ଡିଏ ସାଇକଲ କରି ଗୋବିନ୍ଦ ରଥ ମେସ୍‌ରେ ରହି ପଢ଼ିବାର ମସୁଧା କଲୁଁ ।

ହାତ ରୋଷେଇ ବନ୍ଦ ହୋଇଗଲା । ଚାଲି ଚାଲି ଯାଇ ଟିଉସନ୍ କରିବା ଏବଂ କଲେଜକୁ ଏବଂ କଲେଜରୁ ପଦଯାତ୍ରା କରିବା କ୍ଳେଶ ଗଲା । ଭାଇମାନଙ୍କ ଦାୟିତ୍ୱ ଅନ୍ତତଃ ଆଠପଣ କମିଗଲା । ଗୁଡ଼ାଏ ସମୟ ମିଳଲା । ଏ ସମୟତକ ପାଠ ପଢ଼ାରେ ଲାଗିବ ବୋଲି ଆଶା କରିବାର କଥା । ପ୍ରଥମେ ମୁଁ ବି ସେଇଆ ବିଚାରିଥିଲି । କିନ୍ତୁ ଫଳ ହେଲା ଓଲଟା । ଭାଇ ଦୁହେଁ ପାଖରେ ଥିବାରୁ ମୁଁ ଅଭିଭାବକ ହୋଇଥିଲି । ସେମାନଙ୍କ ଦୃଷ୍ଟିରେ ମୋର ଦୋଷ ଦୁର୍ଗୁଣ ପଡ଼ିବ ନାହିଁ ବୋଲି ଭାରି ସାବଧାନ ଥିଲି । ତା'ର ପ୍ରୟୋଜନ ନ ହେବାରୁ ମୋର ଉଚ୍ଛୃଙ୍ଖଳତା ବଢ଼ିଲା । ନିଜ ଅବସ୍ଥା ବିଷୟରେ ସବୁବେଳେ ମନେଥିବାରୁ ଖଣ୍ଡା ଦାଢ଼ରେ ଚାଲୁଥିଲି । ତାହା ଦୂର ହେଲା । ପୂଝାରୀକୁ ଭାତ ବାଢ଼ ବୋଲି ହୁକୁମ ଦେବା ଲୋକ, ନିଜେ ରୋଷେଇ କରିଥିବା ଭାତ ପୁଞ୍ଜିଏ ହାଣ୍ଡିରୁ ବାଢ଼ି ଚୁଲିମୁଣ୍ଡେ ବସି ଖାଇବା ଲୋକଠାରୁ କେତେ ଅଲଗା ଅନୁଭବ କଲି । ପାହୁଣ୍ଡ ଗଣତି କରି କଲେଜକୁ ଯିବାବେଳେ ଠିକ୍ ଥିଲା, ପହଞ୍ଚିବାରେ ଆଦୌ ଡେରି ହେଉନଥିଲା । ଭଲ କରି ପେଡ଼ଲ ମାରିଲେ ଚଉଦ ମିନିଟ୍‌ରେ କଲେଜରେ ପହଞ୍ଚିବି ବୋଲି ପରୀକ୍ଷା ହେବା ପରେ ଆଉ ପହଞ୍ଚିବା ସମୟ ଠିକ୍ ରହିଲା ନାହିଁ । ଦିନେ ଦିନେ ଦଶ ମିନିଟ୍ ଆଗରୁ ଯାଇ କଲେଜ ବାରଣ୍ଡାରେ ପିଲାଙ୍କ ସାଙ୍ଗେ ହେଁ ହେଁ ଫେଁ ଫେଁ ହେଲି ତ ଦିନେ ଦିନେ କ୍ଲାସ ଆରମ୍ଭର ପାଞ୍ଚ ସାତ ମିନିଟ୍ ପରେ ଯାଇ ପହଞ୍ଚିଲି । ପିରିଅଡ୍ ଶେଷରେ ପ୍ରଫେସରଙ୍କୁ ଖୁସାମତ କଲେ ଉପସ୍ଥାନ ପଡ଼ିଲା । ଟିଉସନରେ ବି ସେଇଆ । ଆଗେ ମୁଁ ଯାଇ ପହଞ୍ଚିବା ପରେ ଟିଉସନ ପିଲେ ଆସି ବସୁଥିଲେ, ଏଥର ସେମାନଙ୍କୁ ମାଷ୍ଟ୍ରେ ଆସିବାକୁ ଅପେକ୍ଷା କରିବାକୁ ପଡ଼ିଲା । ପଦଯାତ୍ରୀ ଓ ସାଇକଲ ଆରୋହୀ ମଧ୍ୟରେ ଏ ପାର୍ଥକ୍ୟ ସେତେବେଳେ ଧରି ହୋଇନଥିଲା; ଏବେ ସିଂହାବଲୋକନ କରି ଦେଖୁଛି, ଆଇ.ଏ. ଯେଉଁଳି ପଢ଼ିଲି, ବି.ଏ. ସେହିପରି ପଢ଼ିଥିଲେ ପାଠ ଆହୁରି ଭଲ ହୋଇଥାନ୍ତା ଓ ଆର୍ତ୍ତବାବୁଙ୍କ ବକାରିଗିରି ଓ କୃତ୍ତିବାସ ବାବୁଙ୍କ ବଗୁଲିଆମି ଏତେ ଅଧିକ ବଢ଼ି ଜୀବନର ଗତିକୁ ଏକାବେଳକେ ବଦଳାଇ ଦେଇନଥାନ୍ତା ।

ମେସ୍ ଜୀବନର ପ୍ରଥମ ଲକ୍ଷଣ ହେଲା ପରିଚର୍ଚ୍ଚା; ଦ୍ୱିତୀୟ ତାସ ଖେଳ । ଗୋବିନ୍ଦ ରଥ ମେସ୍‌ରେ ଗୁଡ଼ିଏ କିରାଣି ଥାନ୍ତି, ଜଣେ ସଂସ୍କୃତ ପଣ୍ଡିତ, ଜଣେ ବିଗତଯୌବନ ଛାତ୍ର । ଏ ମହାଶୟ କଲେଜକୁ କରିଥାନ୍ତି ଇସ୍ତମରାରି ପଟ୍ଟା । ମୁଁ କଲେଜରେ ପ୍ରଥମେ ଭର୍ତ୍ତି ହେଲା ବେଳେ ସେ ଥିଲେ ଫୋର୍ଥ ଇଅରରେ । ମୁଁ ଥାର୍ଡ ଇଅରରେ ନାମ ଲେଖାଇବା ବେଳେ ମଧ୍ୟ ସେଇ ଫୋର୍ଥ ଇଅରର ମମତା ଛାଡ଼ିନଥାନ୍ତି । ଗୋବିନ୍ଦ ତ୍ରିପାଠୀଙ୍କ ସାଙ୍ଗେ ସେ ଫାଷ୍ଟ ଇଅରକୁ ଆସିଥିଲେ । ତ୍ରିପାଠୀଏ ମୋର ପାଞ୍ଚ ବର୍ଷ ଉପରେ । ଆମେ ଫୋର୍ଥ ଇଅର ବେଳକୁ ସେ ଏମ୍.ଏ. ପାସ୍ କରି, ଡେପୁଟି ହେବା ପୂର୍ବରୁ କେତେ ଦିନ ରେଭେନ୍‌ସା କଲେଜରେ ଅଧ୍ୟାପକ ହୋଇଥିଲେ । ଏ ମହାଶୟ ସେତେବେଳେ ଆମ ସାଙ୍ଗେ ଛାତ୍ର । ଆମେ ପାର ହୋଇ ଚାଲିଗଲୁ, ୟାଙ୍କର ଫୋର୍ଥ

ଇଅର ପାଠ ସରିନଥାଏ । ଆମର ବର୍ଷେ ଦୁଇବର୍ଷ ପରେ ସେ ବି.ଏ. ପାସ୍ କଲେ । ସେଇତକ ସାରିବାକୁ ସେ ଆସିଥିଲେ ଏବଂ ଅଳ୍ପଦିନ ପରେ ଇହଧାମରୁ ଚାଲିଗଲେ । ବି.ଏ. ପାସ୍ କରିବାକୁ ଏଭଳି ଦୃଢ଼ପ୍ରତିଜ୍ଞା କରିଥିବା ଲୋକ ଦ୍ୱିତୀୟ ଦେଖିନାହିଁ । ମାଟ୍ରିକ ପାସ୍ କରିବାକୁ ଏଇଭଳି କିଦ୍ ଦୁଇଜଣଙ୍କର ଦେଖିଛି । ପ୍ରଥମ ଜଣଙ୍କ ମୋଠାରୁ ବହୁତ ବଡ଼ । ସେତେବେଳେ ସପ୍ଲିମେଣ୍ଟାରୀ ପରୀକ୍ଷା ନଥାଏ । ଲାଗେ ଲାଗେ ୫ ଥର ପରୀକ୍ଷା ଦେଇ ସେ ଶେଷରେ ମାଟ୍ରିକ୍ ପାସ୍ କଲେ ଏବଂ ସବ୍ଇନ୍ସପେକ୍ଟର ଚାକିରି ପାଇଲେ । ଦ୍ୱିତୀୟ ଜଣକ ମୋଠାରୁ ବହୁତ ସାନ । ସପ୍ଲିମେଣ୍ଟାରୀ ଓ ଆନୁଆଲ ହୋଇ ସେ ସାତଟା ପରୀକ୍ଷା ଦେଇ ମାଟ୍ରିକ ପାସ୍ କଲେ । ଯାଙ୍କ ବେଳକୁ ପରୀକ୍ଷା ହଲରେ କପି କରିବା ଚଳିଯାଇଥିଲା । ପ୍ରଥମ ପରୀକ୍ଷାର୍ଥୀଙ୍କ ବେଳକୁ କପି କ୍ୱଚିତ୍ ହେଉଥିଲା ।

ରେଭେନ୍ସା କଲେଜର ଯେଉଁ ସ୍ଥାୟୀ ଛାତ୍ରଙ୍କ ବିଷୟ କହିଲି ସେ ଗୋବିନ୍ଦ ରଥ ମେସ୍ର ଉପର ମହଲାରେ ଥିବା ଏକମାତ୍ର କୋଠରି ନେଇଥାନ୍ତି ଓ ସବୁବେଳେ ପଢୁଥାନ୍ତି । ବି.ଏ.ରେ ସେ ଅର୍ଥନୀତି ଓ ଦର୍ଶନ ନେଇଥାନ୍ତି । ଯାଙ୍କ ପାଠପଢ଼ାର ଗୋଟିଏ ନମୁନା ଦେବାକୁ ବିଚାରୁଛି ଯେ, ପାଠକ ବୁଝିଲା ପରି ଲେଖି ହେବ କି ନାହିଁ ସନ୍ଦେହ । ଅର୍ଥନୀତିର 'ମାର୍କେଟିଂ' ଅଧ୍ୟାୟର ପ୍ରଥମ ବାକ୍ୟଟି ଚାରି ପାଞ୍ଚଥର ଘୋଷି ଦେଇ ବହିରୁ ମୁହଁ ଉପରକୁ କରି, ମାର୍କେଟିଂ ଇଜ ଏ ଓ୍ୱାର୍ଡ ପର୍ଯ୍ୟନ୍ତ ମନେ ପକାଇ ପୁଣି ବହିକୁ ଚାହିଁବାର ମୁଁ ଥରେ ଦେଖିଛି ଏବଂ ତାଙ୍କ ଅନୁପସ୍ଥିତିରେ ନକଲ ବି କରିଛି । ଯାହାହେଉ ତାଙ୍କୁ ଆମେ ସମସ୍ତେ ମୁରବି ବୋଲି ମାନୁ ଏବଂ ସେ ବି ମୁରବି ପଣିଆ କରି ତଳକୁ ଖସିଲା ବେଳେ କାହା ସଙ୍ଗେ ବିଶେଷ କଥାବାର୍ତ୍ତା ହୁଅନ୍ତି ନାହିଁ । ପଣ୍ଡିତେ ପ୍ରତିମୁହୂର୍ତ୍ତ ତାଙ୍କ ନିତ୍ୟକର୍ମ, ଟିଉସନ୍, ସ୍କୁଲକୁ ଯିବା ଓ ବହି ଲେଖାରେ କଟାନ୍ତି । ଆମ ଢଙ୍ଗ ତାଙ୍କୁ ଭଲ ତ ଲାଗେ ନାହିଁ, କେତେବେଳେ କେମିତି ପଦେ ତିଆରି ଦିଅନ୍ତି । ତାଙ୍କ କଥା ଆମେ ପସରା ନ କଲେ ମୁହୂର୍ତ୍ତକ ପାଇଁ ମାତ୍ର ଟିକିଏ ବ୍ୟସ୍ତ ହୁଅନ୍ତି ।

ବାକି ଯେଉଁ ତିନି ଚାରିଜଣ କିରାଣି ସେମାନେ ବୟସ୍କ ହେଲେ ବି ଆମର ସାଥୀ । ଠିକ୍ ସାଢ଼େ ଦଶଟାରେ ଅଫିସ୍କୁ ଯାନ୍ତି ଏବଂ ଆମେ କଲେଜରୁ ଫେରିବାର ବହୁ ପୂର୍ବରୁ ଆସି ତହିଁ ଆରଦିନର ସାଢ଼େ ଦଶଟା ପର୍ଯ୍ୟନ୍ତ କିପରି ସମୟ କଟିବ ସେ ବିଷୟରେ ଧନ୍ଦି ହେଉଥାନ୍ତି । ପୂଝାରୀକୁ ଗାଳି ଦେବା, ଆଗାମୀକୁ କ'ଣ କ'ଣ କିପରି ରନ୍ଧା ହେବ ସେ ବିଷୟରେ ନିର୍ଦ୍ଦେଶ ଦେବା, କାହା ଉପରେ ମେସ୍ ଚାର୍ଯ୍ୟ ଓ ଘରଭଡ଼ା କେତେ ବାକି ଅଛି ବୁଝି ପିଆଦା ପରି ତାଗିଦା କରିବା ବାଦ୍ ଯେଉଁ ଦୀର୍ଘ ଅବକାଶ ମିଳେ ସେତକଯାକ ଟ୍ୱେଣ୍ଟିନାଇନ୍ ଖେଳିବା ଯାଙ୍କର ରୁଟିନ୍ । ପରଚର୍ଚ୍ଚାଟା ଖେଳ ଭିତରେ ହୁଏ । ଶନିବାର ଉପର ଓଳିଠାରୁ ତ ରବିବାର ରାତି ଶେଷ ପର୍ଯ୍ୟନ୍ତ ନିରବଚ୍ଛିନ୍ନ ଖେଳ ଓ ଚୁଗୁଲି ।

ଥରେ ଦି'ଥର ଏ କାର୍ଯ୍ୟକ୍ରମରେ ମଡ଼ାଇ ଦେବା ପରେ ଆଉ ମୋତେ ଡାକିବା ଦରକାର ହେଲା ନାହିଁ । କଲେଜରୁ ଫେରିବା ମାତ୍ରେ ଖେଳରେ ବସିଯାଏ ଟିଉସନ ବେଳ ଯାଏଁ । ଟିଉସନକୁ ଯାଏ ବିଳମ୍ବରେ, ଫେରେ ଠିକ୍ ସମୟରେ ମିନିଟିଏ ଦୁଇ ମିନିଟ ପୂର୍ବରୁ, ଖାଇ ସାରି ମଧ୍ୟ ରାତି ୧୨ଟା ଯାଏଁ ବସିଯାଉ । ପଶା ଖେଳରେ ମଧ୍ୟ ଦୀକ୍ଷିତ ହେବାକୁ ଯ୍ୟ ଭିତରେ ଟିକିଏ ଉଦ୍ୟମ ହୋଇଥିଲା । କିନ୍ତୁ ଯ୍ୟର ମାହେନ୍ଦ୍ର ଯୋଗ ଆସିଲା ୧୯୩୦ରେ କଲେଜ ଚରିଦିନ ପାଇଁ ଛାଡ଼ିବା ପରେ ।

ମୋର ଏକମାତ୍ର କଲେଜ ସାଥି ଏ ମେସ୍‌ରେ ଥାନ୍ତି ସିଏ, ଯାହାଙ୍କୁ ଆମର ସତ୍ୟବାଦୀ ହେଡ଼ମାଷ୍ଟ୍ରେ ୧୯୨୨ରେ ସାଇକଲ ପଛରେ ବସାଇ ଆଣି ଆମକୁ ସଂପି ଦେଇଥିଲେ । ମୋର ନିଜ ଭାଇ ପରି ମୁଁ ତାଙ୍କୁ ସେଇ ଦିନୁଁ ଆଜିଯାଏଁ ଦେଖି ଆସିଛି । ସେ ବର୍ତ୍ତମାନ ଖୁବ୍ ବଡ଼ ଲୋକ, ତାଙ୍କ ସଙ୍ଗେ ସାକ୍ଷାତ୍‌ର ସୁଯୋଗ ବିଶେଷ ମିଳୁନାହିଁ । କିନ୍ତୁ ସତ୍ୟବାଦୀରେ ଓ ତପ୍ରେ କଟକରେ ସେ ମୋର ନିତ୍ୟ ଅନୁଗତ । ତାଙ୍କ କକେଇ ତାଙ୍କୁ ନେଇ ବର୍ଷେ ଦେଢ଼ବର୍ଷ ନିଜ ବସାରେ ରଖିଥିଲେ । ସେଠାରେ ପରିବେଶ ଅନୁକୂଳ ନ ହେବାରୁ ସେ ଆସି ପହଞ୍ଚିଲେ ମୋ ପାଖେ ଗୋବିନ୍ଦ ରଥ ବସାରେ । ତା'ର ଭଲ ମନ୍ଦ ବୁଝିବା ପାଇଁ ଦ୍ୱିତୀୟ ବ୍ୟକ୍ତି ଜଣେ ସର୍ବଦା ଥିବା ଦରକାର । ମୁଁ ଥାଉ ଥାଉ ସେ କାର୍ଯ୍ୟ ଆଉ କିଏ ନିଅନ୍ତା ? ରହିବେ କେଉଁଠି, ପଇସା ଆସିବ କୁଆଡୁ ତା'ର ବ୍ୟବସ୍ଥା ମୁଁ ମୁଣ୍ଡାଇବା ଫଳରେ ସେ ପ୍ରତି ହପ୍ତାରେ ମୋତେ ସିନେମା ଦେଖିଯିବାକୁ ମଙ୍ଗାଇଲେ ଓ ଭାଇମାନଙ୍କ ସାନ୍ନିଧ୍ୟ ଯୋଗୁଁ ମୁଁ ଭୁଲିବାକୁ ବାଧ୍ୟ ହୋଇଥିବା ମୋର ବାଲ୍ୟସଖା ସିଗ୍ରେଟକୁ-ମନେ ପକାଇଦେଲେ । ସିଗ୍ରେଟ୍ ଦୌରାତ୍ମ୍ୟ ଖୁବ୍ ଭୋଗି ଭୋଗି ସେ ଏବେ ତାହା ଛାଡ଼ିବାକୁ ଚେଷ୍ଟା କରୁଛନ୍ତି ବୋଲି ଶୁଣୁଛି । ମୁଁ ଆଜିକୁ ସତେଇଶ ବର୍ଷ ହେଲା ତାକୁ ଅସ୍ପୃଶ୍ୟ ଓ ଅପାଂକ୍ତେୟ ବୋଲି ତୁଚ୍ଛ କରିଦେଇଛି ।

ଦିନକର କଥା ମନେ ପଡୁଛି । ସଦା ଯୋଗୁଁ ମୁଁ ଚଳଚ୍ଚିତ୍ର ଜଗତ୍ ସହିତ ବେଶ୍ ପରିଚିତ ହୋଇଥାଏ । କଥାକୁହା ଏବଂ ଅର୍ଦ୍ଧଲଙ୍ଗଳା, ବେଳେ ବେଳେ ଊର୍ଦ୍ଧ୍ୱଲଙ୍ଗଳା ମାଇକିନିଆବହୁଳ ଚଳଚ୍ଚିତ୍ରର ଦୁର୍ଯୋଗ ସେ ଯାଏଁ ଆମ ଦେଶକୁ ଘୋଟିନଥାଏ । ସେତେବେଳେ ଡଗ୍‌ଲାସ୍ ଫେଆରବ୍ୟାଙ୍କ୍‌ସ ଓ ମାଷ୍ଟର ଭିଟଲ ହୋଇଥାନ୍ତି ଜନପ୍ରିୟ ଅଭିନେତା । ତିନିମହଲା ପକ୍‌କାରୁ ଫକ୍‌କିନି ତଳକୁ ଡେଇଁପଡ଼ିବା, ବଡ଼ ମଟର ସାଇକଲଟା ଷ୍ଟାଟ କରି, ପେଲି ଦଉଡ଼ାଇ ଦେଇ, ହ୍ୟାଣ୍ଡେଲରେ ଥିବା ହାତର ଜୋର୍‌ରେ ଉଡ଼ି ଆସି ସିଟ୍‌ରେ ବସିପଡ଼ିବା, ଘୋର ଜଙ୍ଗଲରେ ଡକାୟତ ଦଳକୁ ଭେଟି ନିଜର ଓଜରେ ସେମାନଙ୍କ ସମସ୍ତଙ୍କ ହାତରେ ହାତକଡ଼ି ପିନ୍ଧାଇଦେବାର ଚିତ୍ର ପରଦାରେ ଖେଳିଯାଉଥିବାର ଦେଖି ସେତେବେଳର ୨୦/୨୨ ବର୍ଷର ଯୁବକଙ୍କର ମନ କ'ଣ ହେଉଥିବ ଏବକାଳର ପିଲେ କ'ଣ କଳନା କରିପାରିବେ ! ସେମାନେ ତ

ଯୁବତୀ ବେଶ ପକାଉଥିବା ଷାଠିଏ ବର୍ଷିଆ ବୁଢ଼ୀର ସ୍ତନ ଜଘନ ରାଜ୍ୟର ବହିଃପ୍ରାନ୍ତରେ ଆଖି ପକାଇଦେଲେ କୃତାର୍ଥ ହେଉଛନ୍ତି !

ଦୁହେଁ ସିନେମା ଘରୁ ବାହାରିଲୁ ସାଇକେଲ ପାଖକୁ । ମୋ ଖଣ୍ଡ ଟିକିଏ ସରସା, ତା'ର ଟିକିଏ ନୀରସ । ମୁଁ ଆସିଲି ଡଗଲାସ୍ ଫେୟାରବ୍ୟାଙ୍କସ ପରି, ସେ ମାଷ୍ଟର ଭିଟଲ ପରି । ସଦା ଖୁବ୍ ଫୂର୍ତ୍ତି କରିଲା ବାଲା ଯେ ଅନୁରୂପ ବଳ ନ ଥାଏ । ଆମେ ସାଇକଲକୁ କେମିତି ଷ୍ଟାଣ୍ଡରୁ ଆଣିଲୁ, ଚଢ଼ିଲୁ ଏବଂ କି ଠାଣିରେ ପ୍ୟାଡ଼ାଲ ମାଡ଼ିଲୁ ତା'ର ଫଟୋ ଉଠି ଆମ ନାତି ନାତୁଣୀଙ୍କ ପାଇଁ ଥା'ନ୍ତା ହେଲେ ! ଦସ୍ତୁରମତ ଆସି ପ୍ରିଣ୍ଟିଂ କମ୍ପାନୀ ସାମନାରେ ହେଲାବେଳକୁ ଧଡ଼ାପକିନି ସାଇକଲ ବାଜି, ସଂଘର୍ଷ ଭିତରୁ 'ୟା ଆଲ୍ଲା' ବୋଲି ଚିତ୍କାର ଶୁଭିଲା । ମୋ ସଙ୍ଗୀ ମୋ ପ୍ରତି ସଂଭ୍ରମରେ କାନ୍ଧରେ ହାତ ନ ପକାଇ ଟିକିଏ ଛାଡ଼ିକରି ଆସୁଥିବାରୁ ବୁଢ଼ାର ଚିତ୍କାରର ପୂରା ଆଠପଣ ପାଇଁ ଦାୟୀ ହେଲେ ନାହିଁ, କିନ୍ତୁ ବୁଢ଼ାର ଦେହରେ ବାଜି ଓହ୍ଲେଇ ପଡ଼ିଲେ ।

ବୁଢ଼ାଟି ଗୋଟିଏ ମୁସଲମାନ ଫକୀର । ତା'ର ପୋଷାକ ଓ ସଡ଼କର ନାଲି ଧୂଳି ମିଶିଯାଉଥିବା ହେତୁ, ଆମର ଦୃଷ୍ଟି ତା' ଉପରେ ପଡ଼ି ପାରିନଥିଲା । ରାତିର ଏଇ ସମୟରେ ସେକାଳେ ମୁସଲମାନ ଫକୀରଙ୍କ ବୋଲି ନ ବୋଲି ସେ ତୁନି ହୋଇ ସଡ଼କର ଏ କଡ଼ରୁ ସେ କଡ଼କୁ ଆସୁଥିବାରୁ ଦୁର୍ଘଟଣାଟା ହେଲା ବୋଲି ପୂର୍ଣ୍ଣ ସହାନୁଭୂତିରେ ତାକୁ ଧରି ଉଠାଇଲାବେଳକୁ ସଡ଼କର ଦୁଇ କଡ଼ରୁ ବଡ଼ ପାଟିରେ ଶୁଣାଗଲା ତାକୁ ଜଖମ କରି ଘୋଷାରୁଛ କାହିଁକି ? ତା' ସାଙ୍ଗକୁ ଆମ ପ୍ରତି ଭଦ୍ର ସମ୍ଭାଷଣ ମଧ୍ୟ ଶୁଣାଗଲା । ବୁଢ଼ାର ଖପୁରୀ ପାଖେ ଗୋଟାଏ କଣା ହୋଇଯାଇ ରକ୍ତ ଧାର ଛୁଟୁଥାଏ । ଦି' ଚାରିଜଣ ପାଟି କରି ଉଠିଲେ 'ଶଳାଙ୍କୁ ମାର'; ଆଉ ହୁଏତ ଏଇମାନଙ୍କ ସଂଖ୍ୟାଧିକ୍ୟ ହୋଇଥାନ୍ତା । ଆମ ଭାଗ୍ୟକୁ ଏମାନେ ମଧ୍ୟ ବହୁ ଭିଡ଼ାଭିଡ଼ି ପରେ ମାନିଲେ ଯେ, ବୁଢ଼ାକୁ କିଛି ଦେଇ ସାଙ୍ଗରେ ନେଇ ସ୍ୱରାଜ ମେଡ଼ିକାଲ ହଲ୍‌ରେ ଚିକିତ୍ସା କରାଇଦେଲେ ଯଥେଷ୍ଟ ହେବ । ସାଙ୍ଗେ ସାଙ୍ଗେ ଚାରିଅଣାଟି ପଇସା ବୁଢ଼ାର ହାତରେ ଦେଇ, ମୋର ବାଁହାତ ତା' କାନ୍ଧରେ ପକାଇ ଡାହାଣ ହାତରେ ସାଇକେଲ ଚଳାଇଲି (ମୋ ସଙ୍ଗୀ ବୁଢ଼ାର ଆର କାନ୍ଧରେ ହାତ ପକାଇ ବାଁ ହାତରେ ସାଇକଲ ଚଳାଉଥାଏ) । ଲୋକଗହଳି କମିବାରୁ ବୁଢ଼ା ଆମ ହାତ ଛଡ଼େଇଦେଲା ଓ ଦବେଇ ଦରକାର ନାହିଁ ବୋଲି କହିଲା । ସେତିକିବେଳେ ମୋ ମୁଣ୍ଡରେ ସଇତାନ ଢୁକିଲା । ମୋର ଧାରଣା ହେଲା ତା' ମୁଣ୍ଡରୁ ଗୁଡ଼ାଏ ରକ୍ତ ବୋହିଛି ବୋଲି ଯାହା ବିଚାରିଥିଲି ତାହା ନୁହେଁ । ଡାକ୍ତରୀ ଔଷଧର ଯାତନା ସହୁ । କମ୍ପାଉଣ୍ଡର ବି ସେଇଆ କହିଲା ଓ ଟିଙ୍କଚର୍ ଆୟୋଡ଼ିନ ଟିକିଏ ମାରିଦେବାକୁ କହିଲା । ଚଉଦ ପଇସା ଦେଇ ଅଧ ଆଉନ୍‌ସେ ଟିଙ୍କଚର ଆୟୋଡ଼ିନ କିଣି ମୁଁ ନିଜେ, ରାତି ଅଧ ଯୋଗୁଁ ବିମୁଖ ବିଚରା କମ୍ପାଉଣ୍ଡରଙ୍କୁ ତୁଳା ଖୋଜିବାରୁ ରିହାତି ଦେଇ, ଅଧେ ହେବ ଓଷୁଅ ତା' ଘାରେ

ତାଳିଦେଲି । 'ଯ୍ୟ ଆଲ୍ଲା' 'ଯ୍ୟ ଆଲ୍ଲା' ବୋଲି ବିଚ଼ରା ଯେମିତି ଚାଲିଗଲା ତାହା ଦେଖିଲେ କିଏ ତାକୁ ବୁଢ଼ା ବୋଲି କହିବ ? ବସାରେ ପହଞ୍ଚିବା ପର୍ଯ୍ୟନ୍ତ ହସିଲୁ । ଖାଇ ସାରି, ସିଗ୍ରେଟ ଖଣ୍ଡେ ଖଣ୍ଡେ ମୁହଁରେ ଦେଇ, "ଯଦି ତା'ର ମସ୍ତିଷ୍କକୁ ଟିଙ୍କଚ଼ର୍ ଆୟୋଡ଼ିନ ଭେଦିବ ପ୍ରଶ୍ନର ସୁ ସମାଧାନ କରି ଶୋଇପଡ଼ିଲୁ ।"

ଗୁରୁଜନମାନଙ୍କୁ ଲୁଚ଼େଇ ସିଗ୍ରେଟ ଖାଉଥାଏ; କିନ୍ତୁ ମୋର ସାଥି ଲୁଚ଼େଇ ଚୋରେଇ କିଛି କରିବାର ପକ୍ଷପାତୀ ନୁହେଁ । କେବଳ ପଣ୍ଡିତଙ୍କୁ ଲୁଚ଼େଇ ସେ ଆଉ ସମସ୍ତଙ୍କ ଆଗେ ସିଗ୍ରେଟ ଖାଇଲା । ଦିନେ ରାତିରେ ଖାଇଲାବେଳେ (ରାତିରେ ସମସ୍ତେ ଏକାଠି ଖାଉ, ଗୋବିନ୍ଦ ରଥେ ନିକେ ଲଗାଇଥିବା ପଣସ ଗଛ ମୂଳେ) ସିଗ୍ରେଟ ଖିଆ କଥା ପଡ଼ିଲା । ଆମେ ଦୁହେଁ କିଛି କହୁନଥାଉ । ପଣ୍ଡିତେ ସମସ୍ତଙ୍କର କମାନବନ୍ଦୀ ଶୁଣି, ଆଇନଜ୍ଞ ନହୋଇଥିବାରୁ, ଆମକୁ କିଛି ନ ପଚ଼ାରି କହିଲେ, ନା, ଏମାନେ ଅମୁକ ଗାଁର, ଅମୁକ ଗାଁର ଲୋକ, ସତ୍ୟବାଦୀ ସ୍କୁଲ ଛାତ୍ର, ଏମାନେ ସିଗ୍ରେଟ ଖାଉନଥିବେ । ଏବେ ବିଚ଼ାରୁଛି, ପଣ୍ଡିତେ ଏହି ଭାବରେ ଆମକୁ ସିଗ୍ରେଟ ଖିଆରୁ ନିବର୍ତ୍ତାଇବାକୁ ବିଚ଼ାରିଥିଲେ । ତାଙ୍କ ଉଦ୍ଦେଶ୍ୟ ପୂରଣ ହେଲା ନାହିଁ । ଦିନେ କାଠଯୋଡ଼ିରେ ସ୍ନାନ କରି ସହସ୍ର ନାମ ବ୍ୟାହୃତି କରି କରି ସେ ମେସ୍ ଭିତରେ ପଶିଲାବେଳକୁ, ଆମେ ଆଗରୁ ପ୍ରସ୍ତୁତ ଥିବାରୁ, ଏକ ସଙ୍ଗେ ତାଙ୍କ ମୁହଁକୁ ଧୂଆଁ ଛାଡ଼ିଦେଲୁ । ମୁଁ ତାଙ୍କଠାରେ ଚିର କୃତଜ୍ଞ ଯେ, ସେ ଆଜୀବନ ମୋତେ ବାତ୍ସଲ୍ୟ ଦେଖାଇଛନ୍ତି ।

ସେ ବର୍ଷ ସଦାର ମୋର ଦୁଇ ଭାଇ ପରି ଗୋବିନ୍ଦ ରଥ ବସାରେ କଟାଇଲୁ । ବନ୍ଧୁ ଅଂଶରେ ସେ ମୋ ଭାଇମାନଙ୍କ ଅନୁପସ୍ଥିତି ରୂପ ଅଭାବ ଦୂର କଲା । ଥରେ ମୁଁ ପାଖକୁ କୁଆଡ଼େ ଯାଇଛି, କୋଠରିର ଚାବି ମୋ ପାଖେ (ଗୋଟାଏ ଅସାଧୁ ପ୍ରକୃତିର ଚାକର ଥାଏ) ଥିବାରୁ ସେ ମୋତେ ପ୍ରତୀକ୍ଷା କରୁଥାଏ । ମୁଁ ଆସି ପହଞ୍ଚିବାରେ ଅତି ଚଞ୍ଚଳ ହୋଇ କହିପକାଇଲା, "ଶ୍ରୀରାମ ବୋଷ ମୋଟରରେ ଆସି ତୁମକୁ ଖୋଜୁଥିଲେ ! ବୋଧହୁଏ ଥାନାକୁ ନେବେ ବା ମାରିବେ !" ଆଶଂକା ହେବାର କଥା । ଦୁଇ ଦିନ ପୂର୍ବେ ମୁଁ ତାଙ୍କ ସାନପୁଅର ଔଦ୍ଧତ୍ୟ ସହିନପାରି ଚାପୁଡ଼ାଟେ ମାଇଲି ଯେ, ଟେବୁଲ ଉପରେ ଥିବା ଲଣ୍ଠଣରେ ତା' ଗାଲ ବାଜି ଲଣ୍ଠନଟା ତଳେ ପଡ଼ିଗଲା ଓ ଫାଟିଗଲା । ନିଆଁ ଜଳି ଉଠିଲା । ମୁଁ ତାକୁ ଓ ତା' ବଡ଼ଭାଇକୁ ଟିଉସନ କରୁଥାଏ । କାହାକୁ କିଛି ନକହି ବସାକୁ ଫେରି ଆସିଲି । ମୋ ମନୋଭାବ ଲୁଚ଼ାଇପାରିଲି ନାହିଁ । ଉଭୟେ ସିଦ୍ଧାନ୍ତ କଲୁ କଥାଟା ଭଲ ହେଲା ନାହିଁ । ମୋର ନ ସହିବାର କଥା ବୋଲି ମୋ ସଙ୍ଗୀ ସ୍ୱୀକାର କଲା । ସେ ସନ୍ଧ୍ୟାରେ ମୁଁ ଯାଇ ବସିପଡ଼ିବା ମାତ୍ରେ ଟୋକାଟା ମୋତେ ପାଞ୍ଚଟା ପ୍ରଶ୍ନ ଦେଖାଇ କହିଥିଲା "ସାର୍ ! ଆମ କ୍ଲାସ ଟିଚ଼ର ଏ ପ୍ରଶ୍ନଗୁଡ଼ାକ ଘରୁ କରି ନେବାକୁ ଦେଇଛନ୍ତି । ଆପଣ କରିଦିଅନ୍ତୁ ।" ମୁଁ କହିଥିଲି, "ତୁ କରୁ ନାହୁଁ ?" ସେ ବଡ଼ଲୋକି ମୁହଁ କରି କହିଥିଲା, "ଆପଣ ଆଉ କାହିଁକି ଅଛନ୍ତି ?" ତାରି ପରେ ମାଡ଼ । ଯାହା ହେଉ ବଡ଼ଲୋକ ଘର କଥା, ଦୁହେଁ ସ୍ଥିର

କଲୁ, ମୁଁ ଆଉ ସେଠାକୁ ଯିବାର ନୁହେଁ। ଆଉ କେଉଁଠି ଗୋଟାଏ ଟିଉସନ ଯୋଗାଡ଼ କରିବାକୁ ହେବ। ଏଇ ଅବସ୍ଥାରେ ତାଙ୍କ ମଟର ଆସି ଦୁଆରେ ଲାଗିବାରେ ଶଂକିତ ହେବାର କଥା। କିନ୍ତୁ ସେ କହି ଯାଇଛନ୍ତି, ପରବର୍ତ୍ତୀ ସନ୍ଧ୍ୟାରେ ନିଶ୍ଚୟ ଆସିବ ବୋଲି କହିବ। ଗଲି, ପିଠିରେ ବାଘଛାଲ ପକାଇ ଯାଇଥିଲି ବୋଲି କହିଲେ ଠିକ୍ ହେବ।

ଶ୍ରୀରାମ ବୋଷ ସେକାଳର ଅତି ଟାଣୁଆ ଡେପୁଟି ମାଜିଷ୍ଟ୍ରେଟ୍। କମିଶନରଙ୍କ ପି.ଏ. ହୋଇଥିଲେ। ମୁଁ ତାଙ୍କ ଦାଣ୍ଡ ବାରଣ୍ଡାରେ ଡଙ୍ଗ ଡଙ୍ଗ ହୋଇ ଠିଆ ହେବାର ଦେଖି ସେ ମୋତେ ଡାକିଲେ ଓ ହାକିମ ରାଏ ଦେଲା ପରି କହିଲେ, "ଦୁଇ ଦିନ ହେଲା ଆସିନାହଁ କାହିଁକି ? ଯାଅ ପଢ଼ାଅ। ମୁଁ ସବୁ ଶୁଣିଛି। ପିଲାଗୁଡ଼ାକ ଉଦ୍ଧତ ହୋଇଯାଉଛନ୍ତି। ବାରମ୍ବାର ଟିଉସନ ମାଷ୍ଟର ବଦଳି ଯୋଗୁଁ ଏପରି ହୋଇଛି।" ମୁଁ ଗଲି। ପିଲାଟି ତା'ର ବ୍ୟବହାରରେ ମୁଗ୍‌ଧ କରିଦେଲା। ମାସ ଶେଷରେ ଦରମା ପାଞ୍ଚଟଙ୍କା ବଢ଼ିଲା। କହିବା ବାହୁଲ୍ୟ ଯେ ପ୍ରଥମ ମାସର ଦରମା ବୃଦ୍ଧିର ଫଳ ମେସ୍‌ର ସମସ୍ତେ ପାଇଲେ, ଉପର ମହଲାର ଚିରଛାତ୍ରଙ୍କ ପର୍ଯ୍ୟନ୍ତ।

ମୋର ବି.ଏ. ଦୁଇକ୍ଲାସ ଯାକ ପାଠ ହେଲା ମୋର କଣ୍ଟକ। ଥାର୍ଡ ଇଅରରେ ଦୁଇ ଓଳି ଦୁଇଟା ଟିଉସନ ଥିଲା। ତା' ବାଦ୍ ଦାସେ ଆପଣେ ଆଉ ଗୋଟେ କାମ ଯୋଗେଇଦେଲେ। ଥାର୍ଡ ଇଅରର ଟିଉସନ, ସିନେମା ଦେଖା ଆଦିର କଥା ଲେଖିଛି। ଶନିବାର ରାତି ଓ ରବିବାରର ଟ୍ରେଞ୍ଚିନାଇନ କଥା ଲେଖିଛି। ଏଥିରୁ କେଉଁଟିରୁ ସମୟ କାଟି ପଢ଼ାରେ ଲଗାଇବି ? ଫୋର୍ଥ ଇଅରରେ କଲେଜ ହଷ୍ଟେଲକୁ ଯାଇଥିଲି ପାଠ ପଢ଼ିବାକୁ ଯେ, ବିଚରା ପାଠ ସେଇଠାରେ ପାଇଲା ସବୁଠାରୁ ବେଶି ଅନାଦର। ତୃତୀୟ ବର୍ଷର ସବୁଗୁଡ଼ିକ ବୃତ୍ତି ସାଙ୍ଗକୁ ମିଶିଗଲା ଦସ୍ତୁରମତ୍ ନେତୃତ୍ୱ। କଲେଜ ବେଳ ହୋଇଗଲା ବୋଲି ସାଇକଲ ଧରିଲା ବେଳକୁ ପୂଝାରୀର ସଦା କର୍ମରତ ପୁଅଟି ଅଧ୍ୟବସାୟ କରି ଚେନ୍ ଖସାଇ ଦେଇଥାଏ। ଯୋଡ଼ିଏ କର୍ତ୍ତବ୍ୟ ଆସି ଠିଆ। ଚେନ୍‌ଟା ଲଗାଇବାକୁ ହେବ, ଟୋକାଟାକୁ ତା' ପରିଶ୍ରମର ମକୁରି ଦେବାକୁ ହେବ। ଥରେ ମକୁରି ଦେଉ ଦେଉ ଅଧିକ ଦେଇ ହୋଇଗଲା ଯେ ତାକୁ ବୋଧ କରି ଗଲାବେଳକୁ ପିରିଅଡ଼ ସରିଯାଇଥାଏ। ଫୋର୍ଥ ଇଅର୍‌ରେ ଖେଳୁ ଖେଳୁ ଘଣ୍ଟି ବାଜିଯାଏ। ଚାରିଜଣ ଯାକ ହିସାବ କରିଦେଉ ଶତକଡ଼ା ଯେତିକି ଲେକ୍‌ଚର ରଖିବା କଥା ତା' ବାଦ୍ ହାତରେ ପାଞ୍ଚ ଅଛି କି ନାଇଁ। ସମସ୍ତଙ୍କର ଥାଏ। ସେଠୁ ଆରମ୍ଭ ହୁଏ ସେ ପିରିଅଡ଼ ନେଇଥିବା ଅଧ୍ୟାପକଙ୍କ ଗୁଣ ଦୋଷର ଆଲୋଚନା। ଥରକର କଥା ମନେପଡୁଛି। ସମସ୍ତେ ସିଦ୍ଧାନ୍ତ କରିଦେଲୁ, ଟ୍ରେଞ୍ଚିନାଇନ୍‌ଠାରୁ ଅଧ୍ୟାପକଙ୍କ ବକ୍ତୃତା ଅଧିକ ଉପାଦେୟ ହେବ ନାହିଁ। ସେ ପିରିଅଡ଼ଟା ସେ ଅଧ୍ୟାପକଙ୍କ ପ୍ରୀତ୍ୟର୍ଥେ ସମର୍ପଣ କରି ପରବର୍ତ୍ତୀ ପିରିଅଡ଼ର ଅଧ୍ୟାପକଙ୍କଠାରେ ୩/ ୪ ମିନିଟ୍ ବିଳମ୍ବ ପାଇଁ କ୍ଷମା ପ୍ରାର୍ଥନା କରିବାକୁ ପଡ଼ିଲା।

କ୍ଷମା ପ୍ରାର୍ଥନାର କଥୋପକଥନ ମନେପଡୁଛି । ଇଂରେଜୀ ଥାଏ କଥ୍ୟ ଭାଷା । କଲେଜ ନା ! ପିଲାଙ୍କ ଭିତରେ କଥାଭାଷା ବି ହୁଏ ଇଂରେଜୀରେ, କେବଳ ଦୋ' ଅକ୍ଷରି ଭାଗଟା ମାତୃଭାଷା । ମହାମହୋପାଧ୍ୟାୟ ପଣ୍ଡିତ ଜଗନ୍ନାଥ ମିଶ୍ରଙ୍କ ଭାଷାରେ ମ୍ଳେଚ୍ଛଗୁଡ଼ାକ, ବାକ୍‌ସଂଯମୀ । ଦୋ' ଅକ୍ଷରି ଆରମ୍ଭ କରିବା ବେଳ ଆସିବାର ବହୁ ପୂର୍ବରୁ ସେମାନେ ପ୍ରତିପକ୍ଷର ପ୍ରାଣ ହରଣ କରିଥାଆନ୍ତି । ମୁଁ ଯେଉଁ ଅଧ୍ୟାପକଙ୍କୁ କ୍ଷମା ମାଗିଲି, ସେ ବଙ୍ଗାଳୀ କୁଳୀନ ବ୍ରାହ୍ମଣ, ମାତ୍ର ଚେହେରା ଓ ଆଚରଣ ସାହେବୀ । କଲେଜ ଛୁଟି ହେଲା ପରେ ଏ ଆଚରଣ କୁଆଡ଼େ ଯାଏ । କୁଞ୍ଚମାନ ବେକରେ ପକାଇ ସାଇକଲ ବୁଲୁଥାନ୍ତି ହୋମିଓପାଥି ଔଷଧ ବିତରଣ କରିବାକୁ । ଆମେ ବିଳମ୍ବ ପାଇଁ କ୍ଷମା ମାଗି କ୍ଲାସ ଭିତରେ ପଶିଯିବା ପୂର୍ବରୁ ସେ ପଚାରି ଅଟକାଇଲେ, "କୋଉ କ୍ଲାସରୁ ଆସୁଛ ?"

ଉତ୍ତର- ହଷ୍ଟେଲରୁ ଆସୁଛୁ ।

ପ୍ରଶ୍ନ- ପୂର୍ବ ପିରିଅଡ୍ କିଛି ନ ଥିଲା ?

ଉତ୍ତର- ଥିଲା ଯେ, ଆସୁ ଆସୁ ବେଶି ବିଳମ୍ବ ହୋଇଗଲା ।

ପ୍ରଶ୍ନ- ଆସିଥିଲ, ବାଟରୁ ବା କ୍ଲାସ ମୁହଁରୁ ଫେରିଗଲ ନା ବିଳମ୍ବ ତ ହେଲାଣି, କାହିଁକି ଯିବା ବୋଲି ବସିଗଲ ଖେଳରେ ? ନା ପାଠ ପଢ଼ାରେ ? ନା ବାପାଙ୍କ ଟଙ୍କା ଶ୍ରାଦ୍ଧ କରିବାରେ ? ନା ଦେଶ ଉଦ୍ଧାର କରିବାରେ ?

ସେ ଏମିତି ଧାଡ଼ି ଲମ୍ବାଇଲେ ଲମ୍ବାଉଥାନ୍ତି; ଆଜି ଏତିକିରେ ସାରି ନିୟମ ପ୍ରଣୟନ କଲେ : ଦୁଇ ମିନିଟ୍‌ରୁ ଅଧିକ ବିଳମ୍ବ କଲେ ଦଶ ମିନିଟ୍ ପର୍ଯ୍ୟନ୍ତ 'ଲେଟ୍' ପଡ଼ିବ; ତିନିଟା ଲେଟ୍‌ରେ ଗୋଟାଏ ଆବ୍‌ସେଣ୍ଟ । ଏ ନିୟମ ସେ ଅକ୍ଷରେ ଅକ୍ଷରେ ମାନିଥାନ୍ତେ ଯେ, ଦୁଇ ତିନି ମାସ ପରେ ଗୋଟାଏ ଘଟଣା ଆମର ପୂର୍ବ ଆପୋଷୀ ଭାବ ଫେରାଇ ଆଣିଲା । ସେ ଦିନ ଆମେ ସମସ୍ତେ ବାହାର ବାରଣ୍ଡାରେ; ନିର୍ମଳବାବୁ କ୍ଲାସ ଭିତରେ ପଶିଗଲେ, ହାଜିରା ଖାତା ମେଲାଇଦେଇ ନାମ ଡାକିବା ପୂର୍ବରୁ ବାହାରକୁ ଆସି ପଚାରିଲେ, 'ୟେ କ'ଣ ?'

ମୁଁ କହିଲି, "ଆପଣ ଦେଇଥିବା ଦୁଇମିନିଟିଆ ଅନୁଗ୍ରହ ଉପଭୋଗ କରୁଛୁ ।"

ଟିକିଏ ହସିଲା ପରି ହୋଇ ସେ କହିଲେ, ଭଦ୍ର ମହୋଦୟଗଣ ! ଯାକୁଇ କହନ୍ତି ମଣିଷକୁ ତା' ନିଜ ଠେଙ୍ଗାରେ ପିଟିବା । ଆଜିର ପାଠ୍ୟରେ ନେପୋଲିଅନ କିପରି ଇଂରେଜଙ୍କୁ ତାଙ୍କ ନିଜ ଠେଙ୍ଗାରେ ପିଟିଲେ ଶୁଣ । ସେତେବେଳକୁ ଆମେ ସମସ୍ତେ ଆସନ ଗ୍ରହଣ କରି ସାରିଲୁଣି । ହାଜିରା ପଡ଼ିଲା ପିରିଅଡ଼ର ଶେଷ ଦୁଇ ମିନିଟରେ, ମାତ୍ରାସମେଲ ଗତିରେ । ନିଜ କର୍ତ୍ତବ୍ୟରେ ଏଭଳି ତନ୍ମୟ ହେବା ଲୋକ ମୁଁ ଦେଖିନାହିଁ; ଯାଙ୍କରି ପାଠଟା ଘରେ ନ ପଢ଼ିଲେ ବି ହୋଇଯାଏ ।

ନାଇଁ, ଅର୍ଥଶାସ୍ତ୍ର ପଢ଼ ଯେ କାମରେ ଆସିବ। ଅର୍ଥଶାସ୍ତ୍ରରେ ମନ ବସିଲେ, ମଣିଷ ବାସ୍ତବ ଜଗତକୁ ଚିହ୍ନେ ଓ ଦେଶ ଓ ଦଶ ପାଇଁ କିଛି କରିବାକୁ ପ୍ରେରଣା ପାଏ। ଇଂରେଜୀରୁ କ'ଣ ପାଇବୁ ? ସେମାନଙ୍କର ପୁରୁଣା ଲୋକେ ଯାହା ଲେଖିଯାଇଛନ୍ତି ତାକୁ କ'ଣ ସେମାନେ ମାନନ୍ତି ?" ଏ ପ୍ରଶ୍ନର ଉତ୍ତର ମୁଁ ବହୁବର୍ଷ ଚିନ୍ତା କରି କରି ଯାହା ପାଇଛି, ତାହା ଠିକ୍ ବୋଲି କହିବାକୁ ମୋର ଏ ପର୍ଯ୍ୟନ୍ତ ସାହସ ହେଲାଣି କି ନାହିଁ ସନ୍ଦେହ ହୁଏ। ଦାସେ ଆପଣେଙ୍କ କଥାରେ ଅର୍ଥନୀତି ନେଲି ଯେ ଯେତେ ପଢ଼ିଲି ସେତେ ମୋର ତ ନୀତିରେ ଅନୀତି ଭରି ରହିଥିବାର ଦେଖିଲି। ମଧ୍ୟବୟସରେ ଯେଉଁ କମ୍ୟୁନିଷ୍ଟ ଓ ସୋସାଲିଷ୍ଟ୍ ଅର୍ଥନୀତିର ସମ୍ମୁଖୀନ ହେଲି ତା'ର ବି ମନ୍ଦଗୁଡ଼ାକ ମୋତେ ଦିଶିଲା। ସବୁବେଳେ ମନେପଡ଼େ ମହାମହୋପାଧ୍ୟାୟଙ୍କ କଥା "ମ୍ଳେଚ୍ଛମାନେ ଶାସ୍ତ୍ରୀ ହୋଇପାରନ୍ତି, କିନ୍ତୁ ତତ୍ତ୍ୱଜ୍ଞ ହୋଇପାରିବେ ନାହିଁ।"

**କଲେଜ ତୃତୀୟ ବର୍ଷ ବେଳର ଅଧ୍ୟାପକଗଣ :**

ଅର୍ଥନୀତି ନେବାର ଆଉ ଗୋଟିଏ କାରଣ ସେ ବିଭାଗରେ ଥିବା ଦୁଇଜଣ ଅଧ୍ୟାପକ। ବାଥେଜା ବର୍ଷଟାଏ ରହିଲେ, ଗୋରଖନାଥ ସିହ୍ନା ରହିଲେ ଶେଷ ପର୍ଯ୍ୟନ୍ତ। ତାଙ୍କ ସିହ୍ନାଟି ବ୍ୟତୀତ ଆଉ ସବୁ ଗୁଣ। ସିଂହ ହୋଇ ସିହ୍ନା ବୋଲି ନିଜ ସାଙ୍ଗିଆକୁ କହିବା ଦୋଷ, ତାଙ୍କ ଗୁଣ ସାନ୍ନିପାତରେ ବୁଡ଼ିଯାଇଥାଏ।

ତୃତୀୟ ବର୍ଷ ଆରମ୍ଭ ହେଲା ବେଳକୁ ବିଲାତରୁ ଶିକ୍ଷାପାଇ ତିନିଜଣ ଯୁବକ ଆମର ଅଧ୍ୟାପକ ହୋଇ ଆସିଲେ; ଦୁଇଜଣ ବିହାରୀ, ଜଣେ ଓଡ଼ିଆ, ମୋର ଆରାଧ୍ୟ ଘନଶ୍ୟାମ ଦାସେ। ଅନ୍ୟ ବିହାରୀ ଜଣକ ଇଂରେଜ ଅଧ୍ୟାପକ କେ.ପି. ସିହ୍ନା। ସେତେବେଳେ କେ.ପି.ର ବ୍ୟବହାର ଚାଲୁ ହୋଇନଥିଲା। ତାଙ୍କର ସବୁ କିଳାପୋତେଇ; ସିହ୍ନାଟା ମଧ୍ୟ ଦସ୍ତୁରମତ ସିହ୍ନା। ତ୍ରିପଣ୍ଡ କଳା ରୂପ ବ୍ୟତୀତ ତାଙ୍କର ଆଉ ସବୁ ସାହେବୀ; ଜେନେରାଲ୍ କ୍ଲାସରେ ଦିନେ ଦୁଇଦିନ ତାଙ୍କ ଆଗେ ବସିବା ପରେ ଇଂରେଜ ଅନୁକରଣକାରୀଙ୍କୁ ଦେଖି ଇଂରେଜଙ୍କ ସାହିତ୍ୟ ତୁଚ୍ଛ ମନେ ହୋଇଥିଲା।

କେ.ପି.ଙ୍କ ଯୋଗୁଁ ଇଂରେଜୀ ସିନା ନ ନେଲି, ନେଇଥିଲେ ସହଜ ହୋଇଥାନ୍ତା, ଭଲ ଅନର୍ସ ମିଳିଥାନ୍ତା। ଇକନମିକ୍ସ ନେଲି ଯେ ମିଳିଲା ୨ୟ ଶ୍ରେଣୀ ଅନର୍ସ; ମୋ ଜୀବନର ପ୍ରଥମ ଦ୍ୱିତୀୟ ଶ୍ରେଣୀ। ପାଠରେ ସବୁବେଳେ ପ୍ରଥମ ହେଉଥିଲି। ଥରେ ଖସିଲି ଓ ଏବେ ଖସି ଖସି ଶ୍ରେଣୀହୀନ ସମାଜର ନାଗରିକ ହେବାକୁ ପଡ଼ିଲା। ଗୋଟାଏ ଦୃଷ୍ଟିରୁ ଭଲ; ଦେଶର ସଂଖ୍ୟାଗରିଷ୍ଠ ଦଳର ଜଣେ ହୋଇଗଲି। ଗଣତନ୍ତ୍ର ଯୁଗରେ ଯେଉଁମାନେ ସଂଖ୍ୟାରେ ଅଧିକ ତାଙ୍କୁଇ ଧରି ରହିବାକୁ ହୁଏ।

ଗୋରଖ ନାଥ ସିହ୍ନା ମୋ ଛତରାମିକୁ ନାପସନ୍ଦ କରନ୍ତି ନାହିଁ ଯେ, ତାଙ୍କ ମତରେ ଛତରାମିରେ ଯିଏ ଶୀର୍ଷକୁ ଗଲା ତାହାର ପାଠରେ ବି ଶୀର୍ଷକୁ ଯିବା ଦରକାର। ସେ ଥିଲେ ସେଇମିତି ଜଣେ। କେ.ପି. ସିହ୍ନା ଓ ଘନଶ୍ୟାମ ଦାସଙ୍କ ତୁଳନାରେ ସେ ଖୁବ୍ ବଡ଼, ଛତରାମିରେ ମଧ୍ୟ ବଡ଼। ଥରେ ଟିଉଟରିଏଲ କ୍ଲାସରେ ଅଧ୍ୟାପକ ଘନଶ୍ୟାମ ଦାସ ତାଙ୍କର ବିଲାତକୁ ଜାହାଜରେ ଫେରିବାବେଳେ କଥା କହିବା ପ୍ରସଙ୍ଗରେ ଗୋରଖନାଥ ସିହ୍ନାଙ୍କ ସିଂହତ୍ୱର ବର୍ଣ୍ଣନା କରିଥିଲେ। ସେମାନେ ଆସୁଥିଲେ ଅଧ୍ୟାପକ ଓ ବାରିଷ୍ଟର ହୋଇ। ବାରଜଣ ଭାରତୀୟ ଗୋଟାଏ ଯାତ୍ରୀବାହୀ ଜାହାଜରେ। ଏ ଯୁଗରେ ଏଭଳି ଜାହାଜମାନଙ୍କ ମର୍ଯ୍ୟାଦା ଉଡ଼ାଜାହାଜ ଅପହରଣ କରିଛି। ସେ ଜାହାଜର କପ୍ତାନ ଇଂରେଜ, ଭାରି କଡ଼ା ଓ ଭାରତୀୟମାନଙ୍କୁ ତାଙ୍କର ଭାରି ଘୃଣା। ଭାରତୀୟଙ୍କୁ ପରୋକ୍ଷରେ ସେ ନେଟିଭ୍, ବ୍ଲାକି ଓ ନିଗର୍ ବୋଲି କହନ୍ତି। ଥରେ ଜଣକର ସମକ୍ଷରେ ରୂଢ଼ କଥା କହିଦେବାରୁ ଭାରତୀୟମାନେ ଆନ୍ଦୋଳନ ଆରମ୍ଭ କଲେ। କେ.ପି. ସିହ୍ନା ଗୋଟିଏ ଅଭିଯୋଗ ପତ୍ର ଲେଖିଲେ। କପ୍ତାନ ଯଦି କ୍ଷମାପ୍ରାର୍ଥନା ନ କରନ୍ତି ତେବେ ସେମାନେ ଜାହାଜ କମ୍ପାନୀର ହେଡ୍ ଅଫିସକୁ ଲେଖିବେ। ସମସ୍ତେ ଦସ୍ତଖତ କଲେ, ଶେଷରେ ଗୋରଖବାବୁଙ୍କ ପାଖକୁ କାଗଜଟା ଆସିଲା, ଦସ୍ତଖତ କରିବା ପାଇଁ। ସେ ଦରଖାସ୍ତ ଖଣ୍ଡ ଧରି ଦଶମିନିଟ୍‌ରେ ସବୁତକ ଭାରତୀୟ ବନ୍ଧୁଙ୍କୁ ଏକାଠି କରାଇଦେଲେ। ସମସ୍ତେ ଦଳବାନ୍ଧି ଗଲେ କପ୍ତାନଙ୍କ ପାଖକୁ; କପ୍ତାନ କାର୍ଯ୍ୟବ୍ୟସ୍ତ ଥିଲେ। ଏମାନଙ୍କ 'ଯୁଦ୍ଧଂ ଦେହି' ଢଙ୍ଗ ଦେଖି ସେ ଏମାନଙ୍କୁ ଆଦର କରି ନିଜ ବୈଠକଖାନାରେ ବସାଇଲେ। ଗୋରଖ ବାବୁ କପ୍ତାନଙ୍କୁ ଶୁଣାଇଦେଲେ, "ଆପଣ ଆମମାନଙ୍କୁ ଯେପରି କଳା କୁତ୍ସିତଗୁଡ଼ାକ ବୋଲି ମନେକରନ୍ତି, ଆମେ ମଧ୍ୟ ଆପଣଙ୍କୁ ଗୋରା ଗୁଣ୍ଡା ବୋଲି ମନେକରୁ। ଆପଣଙ୍କୁ ବାଧିବ ବୋଲି ପ୍ରକାଶ୍ୟରେ ଆପଣମାନଙ୍କ ଆଗରେ କହୁନାହୁଁ। ଆପଣ ଯଦି ଆମକୁ ଆମ ଆଗରେ ବ୍ଲାକ୍ ନିଗର ବୋଲି କହିଲେ, ଆମେ ମଧ୍ୟ ହ୍ୱାଇଟ୍‌ବ୍ଲାଗାର୍ଡ ବୋଲି ଆଜିଠାରୁ ଏହିଠାରେ କହିବା ଦରକାର ପଡୁଛି। ଗୋରଖନାଥ ସିହ୍ନାଙ୍କ ଅମାର୍ଜିତ ଢଙ୍ଗ ଓ ପାଇକପଣ ଦେଖି କପ୍ତାନ ଡରିଗଲେ, ଦୁଃଖ ପ୍ରକାଶ କଲେ ଏବଂ ସମସ୍ତଙ୍କୁ ପାନୀୟ ପିଆଇ ମତୁଆଲ୍ କରିଦେଲେ।

ଗୋରଖନାଥ ସିହ୍ନା ତାଙ୍କ ବସାରୁ ଆସନ୍ତି, ଗାଈ ଜାହା ଧାନ ବିଲରେ ପଶିଯାଇଛି ଶୁଣିଲେ ଗଉଡ଼ ଯେମିତି ଆସନ୍ତି; କେ.ପି. ସିହ୍ନା ଆସନ୍ତି ପଶ୍ଚିମ ଛାତ୍ରାବାସର ଆସିଷ୍ଟାଣ୍ଟ ସୁପରିଂଟେଣ୍ଡେଣ୍ଟ କୋଠିରୁ ରସିକ ନଈକୂଳରେ ବୁଲିଗଲା ପରି। କିନ୍ତୁ ଘନଶ୍ୟାମ ବାବୁ ଆସନ୍ତି, ଲଣ୍ଡନରେ ତାଙ୍କରି କୌଣସି ପ୍ରଫେସର ଚମଡ଼ା ବାକ୍ସ ଧରି କ୍ଲାସକୁ ଗଲା ପରି। ବାକ୍ସରେ ଥାଏ ପାଠ୍ୟପୁସ୍ତକ, ଯେଉଁ ବିଷୟ ପଢ଼ାଯିବ ସେ ବିଷୟରେ ବିଭିନ୍ନ ଲେଖକଙ୍କ ବହି, ଯ୍ୟଙ୍କ ନୋଟ୍ ଖାତା ସବୁ। ସେ ଖୁବ୍ ପରିପାଟୀର ସହିତ ସାହେବୀ ପୋଷାକ ପିନ୍ଧିଥାନ୍ତି। ନାତିକ୍ଷୁଦ୍ର ବାକ୍ସଟା

ଧରି ନାତିଦୀର୍ଘ ଘନଶ୍ୟାମ ବାବୁ ଯେପରି ଆସନ୍ତି ତାହା ଦେଖି ଆମ ବଜାରି ଗୋଷ୍ଠୀର ଆଖିକୁ କାଟିଲା । ମୁଁ ଥରେ ପଚାରିଲି, "ଆମେ ତ ଦେଖୁଛୁ, ଆପଣ ଗୋଟିଏ ମାତ୍ର ବହି ଆମ କ୍ଲାସରେ ସବୁଥର ବାହାର କରୁଛନ୍ତି, ଏଡ଼େ ବଡ଼ ବାକ୍ସ କାହିଁକି ଆଣୁଛନ୍ତି ?" ସେ ତାଙ୍କ ପକ୍ଷ ସମର୍ଥନ କରୁ କରୁ କହିଲେ, "ନିଜର ବହିପତ୍ର ସବୁବେଳେ ନିରାପଦରେ ପାଖରେ ରଖିବାକୁ ମୋର ଇଚ୍ଛା ।" ଦେଖ ଆମ ମନର ପ୍ରତିକ୍ରିୟା ! ତିଗିରିଆର ପରମାନନ୍ଦ ପଟ୍ଟନାୟକ ଓ ମୋର ବହିପତ୍ର, ଦର୍ପଣ ପାନିଆ, ପରମାନନ୍ଦର ବୁଟ୍ କୋତା ହଳକ ମଧ୍ୟ ତାରି ଟ୍ରଙ୍କରେ ଭରା ହେଲା । ସେ ମୁଣ୍ଡରେ ଗୋଟାଏ ସମ୍ବଲପୁରୀ ଗାମୁଛା ମୁଚୁଳା କରି ଟ୍ରଙ୍କଟା ମୁଣ୍ଡାଇ ମୋ ପଛେ ପଛେ ଆସି କ୍ଲାସରେ ପଶେ । ମୁଁ ପିନ୍ଧିଥାଏ ଲୁଗା ଉପରେ ଖଣ୍ଡେ ଗେଞ୍ଜି, ଗେଞ୍ଜି ଉପରେ ଚାଦର ପରି ପଡ଼ିଥାଏ ସମ୍ବଲପୁରୀ ଗାମୁଛା । ଠିକ୍ ଜଣେ ସମ୍ବଲପୁରୀ ବ୍ରାହ୍ମଣ ଗୌନ୍ତିଆ । ଗେଞ୍ଜି ଭିତରୁ ଶୁଭ୍ର ଯଜ୍ଞୋପବୀତ ଅଧେ ବାହାରିଥାଏ । ଆମ ଇତିହାସ କ୍ଲାସରେ ଦୁଇଧାଡ଼ି ବେଞ୍ଚ ଡେସ୍କ । ମୁଁ ଗୋଟିଏ ଧାଡ଼ିରେ ବସେ, ସେ ଗୋଟିଏ ଧାଡ଼ିରେ ବସେ, ପାଖକୁ ପାଖ । ଦୁଇ ଧାଡ଼ିର ମଝିରେ ଯେଉଁ ବାଟ, ସେଇଥିରେ ରହେ ଟ୍ରଙ୍କ । ପ୍ରଫେସରଙ୍କ ନଜର ଉପରେ ପରମାନନ୍ଦର କୋତା ଯୋଡ଼ିକ ବାହାରି ତଳେ ଥୁଆ ହୁଅନ୍ତି । ବେଳେବେଳେ ବିଛଣା ଚାଦର ବି ବାହାରେ । ଶେଷକୁ ବାହାରେ ବହି । ଇତିହାସ ସଙ୍ଗେ ଇଂରେଜୀ ଓ ଅର୍ଥନୀତି ପୁସ୍ତକ ବି ବାହାରନ୍ତି । ଅଧ୍ୟାପକ କିଛି ନ କହି, କିନ୍ତୁ ମୁହଁରେ ଷୋଳପଣ ବିରକ୍ତି ଭରି ତାଙ୍କ ବକ୍ତୃତା ଦେଉଥାନ୍ତି । ଏହିପରି ୪-୫ ଦିନ ହେବା ପରେ ଅଧ୍ୟାପକ ଆଉ ଚମଡ଼ା ବାକ୍ସ ଆଣିଲେ ନାହିଁ, ତା'ର ଦିନେ ଦି'ଦିନ ପରେ ଆମ ଟ୍ରଙ୍କ ମଧ୍ୟ ଖଟତଳୁ ଆଉ ବାହାରିଲା ନାହିଁ । ସମାବସ୍ଥା ଫେରି ଆସିବା ପରେ ଦିନେ ପ୍ରଫେସର ପଚାରିଲେ, "କିଓ ! ତୁମ ଟ୍ରଙ୍କଟି କ'ଣ ଗୁଡ଼ିଆ ଦୋକାନରେ ବନ୍ଧା ପଡ଼ିଗଲା କି ? ଆଉ ତ ତାକୁ ଦେଖୁ ନାହିଁ ?" ମୁଁ ଉତ୍ତର ଦେଲି, "ସାର୍ ଆପଣ ଯେଉଁ କାରଣରେ ଆଟାଚି ଆଣୁନାହାନ୍ତି, ଆମେ ସେଇ କାରଣରୁ ଆମ ସୁଟକେଶ ଆଣୁନାହୁଁ । ପାଠର ଗୁରୁତ୍ୱଠାରୁ ବାକ୍ସର ଗୁରୁତ୍ୱ ବେଶି ହୋଇଗଲା ।" ଭାରି ହସ ଲାଗିଲା; ମୋ କଥାର ଶ୍ଳେଷ ଯୋଗୁଁ ଅଧ୍ୟାପକଙ୍କର ହସରେ କୃତ୍ରିମତା ରହିଲା ।

ଘନଶ୍ୟାମ ବାବୁଙ୍କ ସଙ୍ଗେ ଆମର ସଦ୍ଭାବ ପୂର୍ଣ୍ଣ ପ୍ରତିଷ୍ଠିତ ହେଲାବେଳକୁ ମୋ ଦୁର୍ଭାଗ୍ୟକୁ ଗୋଟାଏ କାଣ୍ଡ ଘଟିଗଲା, ଯାହା ଯୋଗୁଁ ତାଙ୍କର ଗୁଡ଼ାଏ ଦିନ ଆର୍ଥିକ କ୍ଷତି ହେଲା । ଆମେ ତ ମଝିରେ ମଝିରେ ପ୍ରଶ୍ନ ପଚାରି ଅଧ୍ୟାପକମାନଙ୍କୁ ବିରକ୍ତ କରୁ । ସେଦିନ ସେ ଟିଲ୍‌ସିଟଠାରେ ନେପୋଲିୟନଙ୍କ ସଙ୍ଗେ ହୋଇଥିବା ସନ୍ଧି ବିଷୟ କହୁଥାନ୍ତି । ଗୋଟାଏ ମ୍ୟାପ୍ ବି ଆଣି ବ୍ଲାକବୋର୍ଡରେ ଝୁଲାଇଥା'ନ୍ତି । ଟିଲସିଟ ଜାଗାଟା ସେ ଗୋଟାଏ ପଏଣ୍ଟର ମାରି ଦେଖାଇ ଦେଲାବେଳକୁ ମୁଁ କହିଦେଲି, "ଆଉ ଦେଢ଼ଇଞ୍ଚ ତଳକୁ ସାର୍ ।" ସେ ବଡ଼ ବିବ୍ରତ ହୋଇ ମାନିଲେ । ତାଙ୍କ ବିଷୟରେ ରିପୋର୍ଟ ଦେବାକୁ ସରକାରଙ୍କର ଜଣେ ପଦସ୍ଥ ଅଫିସର

ଆସିଥା'ନ୍ତି। ପ୍ରିନ୍‌ସିପାଲ ଓ ସେ ଆମ କ୍ଲାସର ପଛବେଞ୍ଚରେ ଅଧଘଣ୍ଟେ ହେଲା ଆସି ବସିଛନ୍ତି, ଏହା ଆମ ଆଗ ବେଞ୍ଚବାଲାଙ୍କୁ ଜଣାନାହିଁ। ନ ହେଲେ ସେ ଦିନ ମୁଁ ଓ ମୋ ବନ୍ଧୁମାନେ ଅଧ୍ୟାପକଙ୍କୁ ଯେପରି ପ୍ରଶ୍ନ ସବୁ ପଚାରିଥିଲୁ ତାହା କେଉଁ ପଚାରିନଥା'ନ୍ତୁ। ଟିଲ୍‌ସିଟର ସ୍ଥାନ ନିର୍ଦ୍ଦେଶ ପରେ ଆଗନ୍ତୁକ ଓ ପ୍ରିନ୍‌ସିପାଲ ଉଠି ଚାଲିଗଲେ। ଯିବାବେଳେ ସେମାନେ ଆସିଥିବା କଥା ମୁଁ ଜାଣିଲି।

ସେଦିନ ସନ୍ଧ୍ୟାବେଳେ ଘନଶ୍ୟାମ ବାବୁ ମୋତେ ତାଙ୍କ ବସାକୁ ଡାକିଲେ; କଥା ପ୍ରସଙ୍ଗରେ କହିଲେ, "ତୁମ ଯୋଗୁଁ ମୋର ପାହିଆ କେ.ପି. ସିହ୍ନା ଓ ଗୋରଖନାଥ ସିହ୍ନାଙ୍କର ତଳକୁ ଚାଲିଯିବ। ଦରମା ବି ଗୁଡ଼ାଏ କମିବ। କିନ୍ତୁ ମୋର ଦୃଢ଼ ବିଶ୍ୱାସ, ତୁମେମାନେ ଯେଉଁ ବଗୁଲିଆମି କରୁଥିଲ ତା'ର ପରିଣାମ ବିଷୟରେ ଟିକିଏ ଜାଣିପାରିଥିଲେ ସେପରି କେଭେ କରିନଥାନ୍ତ। ମୁଁ ପିଲାଙ୍କ ପରି କାନ୍ଦି ପକାଇଲି। ତା'ପରେ କଲେକରେ ଓ ବାହାରେ ଘନଶ୍ୟାମ ବାବୁଙ୍କର ମୁଁ ଘନିଷ୍ଠ ସମ୍ପର୍କରେ ଆସିଛି। ତାଙ୍କ ମହତ୍ତ୍ୱ ଦେଖି ମୁଁ ବିମୁଗ୍‌ଧ ହୋଇଯାଇଥିଲି।

କେ.ପି. ସିହ୍ନାଙ୍କର ମହତ୍ତ୍ୱ ମୋ ପାଠପଢ଼ା ଭିତରେ ଦେଖି ପାରିନାହିଁ। ଇଂରେଜୀ ସାହିତ୍ୟରେ ତାଙ୍କ ପାରଗତା, ଗିରିଜା ବାବୁ, ନିରଞ୍ଜନ ନିୟୋଗୀ, ଗୋପାଳ ବାବୁଙ୍କଠାରୁ ଉଚ୍ଚକୋଟୀର ବୋଲି ମୋତେ ଲାଗେ ନାହିଁ। ସବୁଠାରୁ ମୋ ଦୃଷ୍ଟିରେ ତାଙ୍କର ବଡ଼ ଅପରାଧ ସେ ତାଙ୍କର ଗୋଟିଏ ଛାତ୍ରୀକୁ ବିଭା ହୋଇପଡ଼ିଲେ। ଶିଷ୍ୟ ଶିଷ୍ୟା ଓ ପୁତ୍ର କନ୍ୟା ଏକା ଗୋଷ୍ଠୀର ବୋଲି ଆର୍ତ୍ତବାବୁଙ୍କଠାରୁ ଏଇ ପ୍ରସଙ୍ଗ ଶୁଣିଥିଲି।

**ଆମ ପ୍ରିନ୍‌ସିପାଲ୍ ମିଃ ହୁଇଟ୍‌ଲକ୍ :**

ଆମ ଛତରାମି ଥରେ ଦି'ଥର ପ୍ରିନ୍‌ସିପାଲ ହୁଇଟ୍‌ଲକ୍‌ଙ୍କ ଉପରେ ମଧ୍ୟ ପ୍ରକଟ ହୋଇଥିଲା। ମୋର ସହାଧ୍ୟାୟୀ ମହାପାତ୍ରେ ହୋଲିଦିନ ପ୍ରିନ୍‌ସିପାଲଙ୍କ ଉପରକୁ ରଙ୍ଗ ପିଚ୍‌କାରୀ ମାରିଦେଲେ। ତାଙ୍କର କୋଟ୍‌ଟି ନଷ୍ଟ ହୋଇଗଲା। ସେ କାଳରେ କମିଶନର ଓଡିଶାରେ ସବୁଠାରୁ ବଡ଼ ହାକିମ। ସେଦିନ ପ୍ରିନ୍‌ସପାଲ ହୁଇଟ୍‌ଲକ୍ କମିଶନରଙ୍କ ସଙ୍ଗେ ଦେଖା କରିବାକୁ ଯାଇଥିଲେ। କଲେଜ ଫାଟକ ପାଖେ ଘୋଡ଼ା ଗାଡ଼ି ଛାଡ଼ି ଦେଇ ସେ ହତା ଭିତରେ ପଶି ତାଙ୍କ କୋଠିକୁ ଗଲାବେଳେ, ମହାପାତ୍ରେ, ମୁଁ, ଆଉ ଦୁଇଚାରିଜଣ ସଙ୍ଗୀ ହଷ୍ଟେଲରେ ହୋଲି ଉପଦ୍ରବ ସାରି ଫେରୁଥାଉ। ମହାପାତ୍ରଙ୍କ ପିଚ୍‌କାରୀ ଶେଷ ହୋଇନଥିଲା। ଆମେ ସବୁ ମତାଇଦେବାରୁ ସେ ପିଚ୍‌କାରୀ ମାରିଦେଲେ। ପ୍ରିନ୍‌ସିପାଲ କିଛି ନ କହି ଚାଲିଗଲେ, ଦୁଇଦିନ ପରେ ନୋଟିସ ବାହାରିଲା ମହାପାତ୍ରଙ୍କର ପାଞ୍ଚ ଦିନର ବୃତ୍ତି କଟିଗଲା।

ଯା'ପରେ ଯେଉଁ ରବିବାର ପଡ଼ିଲା, ସେଦିନ ସକାଳୁ ମୁଁ ଯାଇ ପ୍ରିନ୍‌ସିପାଲଙ୍କ କୋଠି ଦୁଆରେ ଲଙ୍ଗର ପଙ୍ଗର ହେଲି। ତାଙ୍କ କୁକୁର ଓ ଚାକର ଉଭୟେ ଯାଇ ମୋ ଆସିଥିବାର ବାର୍ତ୍ତା

ଦେଲେ । ମୋତେ ଡାକରା ହେଲା, ସେ ତାଙ୍କ ପଢ଼ାଘରେ ବସି କ'ଣ ଲେଖୁଥିଲେ । ମୁଁ ଯାଇ ପହଞ୍ଚିବାରେ ଲେଖା ଆଡ଼େଇଦେଇ କ'ଣ ବୋଲି ପଚାରନ୍ତେ, ମୁଁ ବକ୍ତୃତା ଆରମ୍ଭ କଲି । ତା'ର ସାର କଥା, ହୋଲି ଦିନ ଆମ ଦେଶରେ ଗୁରୁଜନମାନଙ୍କୁ ମଧ୍ୟ ପିଚ୍‌କାରୀ ମାଇଲେ ଦୋଷ ଧରାଯାଏ ନାହିଁ । ଏଇ ଦିନର ଉଚ୍ଛୃଙ୍ଖଳତାର ସୁଯୋଗ ପାଇ ଆମେ ବାକି ୩୬୪ ଦିନଯାକର ଆଚରଣକୁ ସୁଶୃଙ୍ଖଳ କରୁଁ । ସେ ଧୀର ଭାବରେ ମୋ କଥା ଶୁଣିବା ଭିତରେ କହିଥିଲେ, "ମୋର ଖଣ୍ଡିଏ ମାତ୍ର ବ୍ଲେଜର୍ କୋଟ୍, ଆଉ ଖଣ୍ଡେ କରିବା ମୋ ପକ୍ଷରେ କଷ୍ଟ । ସେ ଖଣ୍ଡିକ ଏ ଉତ୍ପାତରେ ଗଲା । ସେତିକିବେଳେ ମୂର୍ତ୍ତିମତୀ କରୁଣା ତାଙ୍କର ପତ୍ନୀ ମେରୀ ଆର ବଖରାରୁ କହି କହି ବାହାରି ଆସିଲେ, 'ପର୍ସି, ତୁମର ଆଉ ଖଣ୍ଡିଏ କୋଟ୍ କରିବାର ବଳ ନାହିଁ ବୋଲି ନିରୀହ ଛାତ୍ରଟିକୁ ତୁମେ ଦଣ୍ଡ ଦେଉଛ ?' ସେ ଆରଘର ଚଟାଣ ଘଷୁଥିଲେ । ଦୁଇ ଆଣ୍ଠୁରେ ଦୁଇଟା ପ୍ୟାଡ୍ ବନ୍ଧା ହୋଇଥାଏ, ହାତରେ ଚଟାଣ ଘଷିବା ବ୍ରଶ । ମୁଁ ନମସ୍କାର ହୋଇ ଅପସରିଗଲି । କହିବା ବାହୁଲ୍ୟ, ମହାପାତ୍ରଙ୍କୁ ହୋଇଥିବା ଜୋରିମାନା କଟିଗଲା ।

ଏ ସବୁ ବ୍ୟକ୍ତିଗତ ଓ ଛୋଟ ଛୋଟ କଥା । ଯା'ଠାରୁ ଢେର ଗୁରୁତର ରାଜନୀତିକ ଘଟଣାମାନଙ୍କରେ ଆମ ବେଳେ ଆମ ପ୍ରିନ୍‌ସିପାଲମାନଙ୍କଠାରୁ ସହୃଦୟତା ପାଇଛୁ ।

ଆଜି ଅତୀତର ରୋମନ୍ଥନ କଲାବେଳେ ବିସ୍ମିତ ହୁଏ, ଆଜିକାଲିର ପ୍ରିନ୍‌ସିପାଲ ଓ ଅଧ୍ୟାପକମାନେ ଆମ ଅମଳରେ ଥିଲେ ଆମ ଭିତରୁ କେତେକ, ସର୍ବାଦୌ ତ ମୁଁ, ବୋଧହୁଏ ପଢ଼ା ଶେଷ ପର୍ଯ୍ୟନ୍ତ ଚାରିପାଞ୍ଚ ବର୍ଷ କଦାପି ସୁରୁଖୁରୁରେ କଟାଇ ପାରିନଥାନ୍ତୁ । ଅନେକ ସମୟରେ ମନେପଡ଼େ, ଫାଷ୍ଟ ବେଞ୍ଚରେ ବସି ମୁଁ ମୋର ସହପାଠୀ ଲିଙ୍ଗରାଜ ମିଶ୍ର ସଂସ୍କୃତ ଅଧ୍ୟାପକଙ୍କ ନାକକୁ କାଗଜ ଗୋଟି କରି ଲାଖ କରିବା ଦିନର ଘଟଣା । ଆମ ସମସ୍ତଙ୍କର, ବିଶେଷକରି ମୋ ସାଥୀ ଲିଙ୍ଗରାଜ ମିଶ୍ରଙ୍କର ଦୃଢ଼ ଧାରଣା ହୋଇଯାଇଥିଲା ଯେ, ଏଇ ବାଜି ନିଶ୍ଚୟ କଲେଜରୁ ବିତାଡ଼ନ ବା ବଡ଼ଧରଣର ଜୋରିମାନା ହେବ । ଅଧ୍ୟାପକ ରଘୁବଂଶ ପଢ଼ାଉଥା'ନ୍ତି । ସେ ଚଉକିରେ ବସି ଆମକୁ ନିଜେ ନିଜେ ପଢ଼ିବାକୁ ନିର୍ଦ୍ଦେଶ ଦେଇଥିଲେ । ପଦେ ଦି'ପଦ ଆମେ ପଚାରିଲୁ; ସେ ଉତ୍ତର ଦେଇ ଆମକୁ ହସାଇଲେ । ତିଳଫୁଲ ନାସା ବୋଲି ଠାଏ ପଡ଼ିଲା । ତିଳଫୁଲ ନାସାର ଅର୍ଥ ମୁଁ ପଚାରିଦେଲି । ସେ କହିଲେ, "ଏଥିରେ ପଚାରିବାର କ'ଣ ଅଛି ? ତିଳ ବୋଇଲେ ରାଶି, ନାକ ରାଶିଫୁଲ ପରି ଦିଶୁଥିଲା । ରାଶିଫୁଲ ଦେଖି ସେଇଥିରୁ ଅନୁମାନ କରିନେବ ।" ସେ ନିଜେ ହସନ୍ତି ନାହିଁ । ଆମେ ସମସ୍ତେ ହସିଲୁ । ଏଇଭଳି ଉପକ୍ରମଣିକାର ପରିଣତିରେ ତାଙ୍କୁ ଟିକିଏ ନିଦ ମାଡ଼ିଗଲା । ତହୁଁ ଲିଙ୍ଗରାଜ ମିଶ୍ରଙ୍କ ରଫ୍ ଖାତାରୁ ପୃଷ୍ଠେ ଦି' ପୃଷ୍ଠା ଚିରି କାଗଜ ବାଟୁଳି କରି ଦୁହେଁ ଯାକ ଅଧ୍ୟାପକଙ୍କ ନାକକୁ ଲକ୍ଷ୍ୟ କରି ତିନିଟା ପୁଞ୍ଜେ ମାଇଲୁ । ଏ କାର୍ଯ୍ୟରେ ମୋର ସେତେବେଳେ ଭାରି ଦକ୍ଷତା । ମୋରି ଲାଖ ଠିକଣା

କାଗାରେ ବାଜିଗଲା । ଅଧ୍ୟାପକଙ୍କର ନିଦ ଭାଙ୍ଗିଗଲା , ତାଙ୍କ ତୁଣ୍ଡରୁ ଗୋଟାଏ ବହୁପ୍ରଯୁକ୍ତ ଗ୍ରାମ୍ୟ ଦୋ-ଅକ୍ଷରି ଶବ୍ଦ ବେଶ୍ ଶୁଭିଲା ପରି ସ୍ୱରରେ ବାହାରିପଡ଼ିଲା । ହଠାତ୍ ହାତବଢ଼ାଇ ଡେସ୍କ ଉପରୁ ରଫ୍ ଖାତାଟି ଛିନି ନେଇ ସେ ଦି'ଟାରିଟା କାଗଜ ବାଟୁଳା ଗୋଟାଇ ତରତର ହୋଇ ପ୍ରିନ୍‌ସିପାଲଙ୍କ ଅଫିସକୁ ଚାଲିଗଲେ; ପାଞ୍ଚ ମିନିଟ୍ ପରେ ଆସି ପାଠ ପଢ଼ାଇଲେ । ପିରିଅଡ଼ ଶେଷକୁ ମୋତେ ଡାକରା ଆସିଲା । ମୁଁ ଟିକିଏ ଅପମିଶ୍ରିତ ସତ୍ୟ କହିଲି, 'ଅଧ୍ୟାପକ ଟେବୁଲରେ ମୁହଁମାଡ଼ି ଶୋଇବା ଅବସରରେ ଆମେ କାଗଜ ବାଟୁଳି କରି ଆପଣା ଆପଣା ଭିତରେ ମରାମରି କରୁଥିଲୁ, ଗୋଟାଏ ଦୈବାତ୍ ଯାଇ ଅଧ୍ୟାପକଙ୍କ ମୁହଁରେ ବାଜିଥାଇପାରେ ।'' ବୋଧହୁଏ ତହିଁ ଆରଦିନ ଅଧ୍ୟାପକଙ୍କ ଭିତରେ ଗୋଟାଏ ନୋଟିସ୍ ବୁଲିଲା । ପରେ ଅନୁସନ୍ଧାନ ଫଳରେ ଜଣାଗଲା , ଠିଆ ହୋଇ ବକ୍ତୃତା ଦେବାକୁ ଅଧ୍ୟାପକମାନଙ୍କୁ ଅନୁରୋଧ କରାଯାଇଥିଲା । ସଂସ୍କୃତ ଅଧ୍ୟାପକ ସେଇ ଦୋ' ଅକ୍ଷରି ଶବ୍ଦଟା ଦାନ୍ତରେ ଉଚ୍ଚାରଣ କରି ନୋଟିସରେ ଦସ୍ତଖତ କରି ସେହିପରି ଚିପା ଗଳାରେ କହିଥିଲେ ''ଖମ୍ବଆଳୁ ବୁଝାମଣା'' । ଏହି ମନ୍ତବ୍ୟ ଯୋଗୁଁ ଆମର ଅନୁସନ୍ଧାନ ପ୍ରବୃତ୍ତି ଜାଗ୍ରତ ହୋଇଥିଲା ଓ ଜଣେ କିରାଣିଠାରୁ ନୋଟିସର ମର୍ମ ବୁଝିଥିଲୁ ।

ଏଇ କିରାଣିଟି ନୂଆ ହୋଇ ଚାକିରିରେ ଢୁକିଥାଏ । ଥରେ ମୋ ପ୍ରତି ସହାନୁଭୂତି ଦେଖାଇ ମୋର ଫିସ୍ ଦାଖଲ ହୋଇନାହିଁ ବୋଲି ମୋତେ ନାଁ ଧରି ଡାକି କହୁ କହୁ ତା ଗାଲରେ ଗୋଟାଏ ପାଞ୍ଚ ଆଂଗୁଠିଆ ଚାପୁଡ଼ା ବସାଇଦେଲି । ଷ୍ଟାଫର ଜଣେ ମେମ୍ବରଙ୍କୁ ମାରିବା ଗୁରୁତର ଅପରାଧ ବୋଲି ହେଡ଼କିରାଣି ରିପୋର୍ଟ କଲେ । ମୁଁ ଯାଇ କୈଫିୟତ୍ ଦେଇଥିଲି, କିରାଣିର ଯଦି ଧନ ବା ଉଦ୍ୟୋଗ ଥାନ୍ତା ତେବେ ସେ ଫାଷ୍ଟ ଇଅରରେ ନାମ ଲେଖାଇଥାନ୍ତା ଏବଂ ମୋତେ ବାବୁ ବୋଲି ସଂବୋଧନ କରିଥାନ୍ତା । ଅକର୍ମା ହୋଇଥିବା ଯୋଗୁଁ ଚାକିରି କଲା ବୋଲି କ'ଣ ମୋତେ ବେକିତ୍ କରିବ ? ୟେ କୈଫିୟତ ଗୃହୀତ ହେବାରେ ମଧ୍ୟ ସମସ୍ତେ ଆଶ୍ଚର୍ଯ୍ୟ ହୋଇଥିଲେ ।

ସବୁଠାରୁ ଅଧିକ ଆଶ୍ଚର୍ଯ୍ୟ ହୋଇଥିଲେ, ଆମେ ଲାଇବ୍ରେରୀର ଗୋଟାଏ ବହି, ଲାଇବ୍ରେରୀ ସାମନା ସୂର୍ଯ୍ୟଘଡ଼ି ସ୍ତମ୍ଭ ନିକଟରେ ସମବେତ ହୋଇ, ପୋଡ଼ି ମଧ୍ୟ ଖସିଯିବାରେ । କଟକର ଜଣେ କେରା ବଙ୍ଗାଳୀ 'ଉଡ଼ିଶ୍ୟା' ବିଷୟରେ ଖଣ୍ଡେ ବହି ଲେଖିଥିଲେ । ସେଥିରେ ଗୋଟାଏ ବାକ୍ୟ ଥିଲା , ''ଉଡ଼ିଶ୍ୟା କୁଲିଦେର୍ ଦେଶ୍'' । ଏ ବାକ୍ୟଟା ଆମ ଭିତରୁ କୌଣସି 'ବିଦ୍ଧ ଗଣା' ଛତରାର ଆଖିରେ ପଡ଼ିଗଲା । ଶହେ ଦେଢ଼ଶ ସମଧର୍ମା ଏକାଠି ହୋଇଗଲୁ । ମୋ ନାମରେ ବହିଟା ଲାଇବ୍ରେରୀରୁ ଅଣାଗଲା । ସମସ୍ତେ ମେଳ ହୋଇ ସୂର୍ଯ୍ୟଘଡ଼ି ପାଖକୁ ଆସିଲୁ; ଦିଆସିଲିର ଅଭାବ ନ ଥିଲା । ଏ କ୍ଷେତ୍ରରେ ତ ଗୋଟାଏ ବକ୍ତୃତା ଦେବାର କଥା; ଦେଇ, ବହିଟିରେ ଅଗ୍ନିସଂଯୋଗ କଲି । ପ୍ରିନ୍‌ସିପାଲଙ୍କ ଅଫିସ ପାଖ ଉପର ମହଲା ବାରଣ୍ଡାରେ ନିଜେ ହୁଇଟ୍‌ଲକ ସାହେବ ଚାହୁଁଥିବାର ଦେଖିଲୁ ।

କିନ୍ତୁ ଏ ଘଟଣାର ୫/୬ ଦିନ ବିତିଗଲେ ମଧ୍ୟ କୌଣସି ପ୍ରତିକ୍ରିୟାର ଖବର ପାଇଲୁ ନାହିଁ । ଲାଇବ୍ରେରିଆନ୍ ମୋର ମଉସା, ଭାରି ଭଦ୍ରଲୋକ । ମୋତେ ଡକାଇ ବହି ଖଣ୍ଡେ କିଣି ଦେଇଦେବାକୁ ନଚେତ୍ ତା'ର ଦାମ ଦି'ଟଙ୍କା କି ଅଢ଼େଇଟଙ୍କା ଦାଖଲ କରିବାକୁ ଅନୁରୋଧ କଲେ । ମୁଁ ଏକାବେଳକେ ନାରାଜ ହେବାରୁ ପ୍ରିନ୍‌ସିପାଲଙ୍କୁ ରିପୋର୍ଟ କରିବେ ବୋଲି ଶୁଣାଇଲେ । ବିଳମ୍ବ କରି ଘୋର ଅନିଚ୍ଛାରେ ପ୍ରିନ୍‌ସିପାଲଙ୍କୁ ଲେଖିଲେ; ଡାକରା ଆସିଲା । ମୋ କାର୍ଯ୍ୟ ଛାତ୍ରୋଚିତ ହେଲା ନାହିଁ ବୋଲି ସେ ମନ୍ତବ୍ୟ କଲେ । ମୁଁ ଏହା ସ୍ୱୀକାର କରି କହିଲି, "ସେ ଦିନ ଆମେ ଭାବପ୍ରବଣତାରେ ଏ କାର୍ଯ୍ୟ କରିଛୁ, କିନ୍ତୁ ଖୁବ୍ ବୁଝି ବିଚାରି କରିଥିଲେ ମଧ୍ୟ ଏହାଠାରୁ ଆଉ କିଛି କରାଯାଇପାରନ୍ତା ନାହିଁ ବୋଲି ମୋର ବିନୀତ ମତ ।" ମୁଁ ବୁଝାଇଲି, ଏଭଳି ଅସୂୟାମୂଳକ ଲେଖାର ପ୍ରତିବାଦ ନ କଲେ କଲେଜର ଓଡ଼ିଆ ପିଲାଙ୍କ ମନରେ ଘୋର ଦୁଃଖ ହେବ । ପେଟ ବିକଳରେ ଆମ ଭିତରୁ କେତେକ ଯାଇ କଲିକତାରେ କୁଲିକାମ କରୁଛନ୍ତି ବୋଲି ଆମେ ସମସ୍ତେ କ'ଣ କୁଲି ? ପାଣି କଳର, ଚଟକଳର କାମକୁ ନିଃସତ୍ତ୍ୱ ବଙ୍ଗାଳୀ ପାରୁନାହାନ୍ତି ବୋଲି ଓଡ଼ିଆ ଲୋକେ ସିନା ଯାଉଛନ୍ତି ! ଆମ ପାଖରେ ସେମାନେ କୃତଜ୍ଞ ହେବାର କଥା ।

ସେ ଯଥାସମ୍ଭବ ଗାମ୍ଭୀର୍ଯ୍ୟ ରଖି କିନ୍ତୁ ପ୍ରସନ୍ନ ମୁହଁରେ କହିଲେ, "ଏଇଠା ପର୍ଯ୍ୟନ୍ତ ମୁଁ ତୁମ ସାଥିରେ । ସେମାନେ କୃତଜ୍ଞ ହେବାର କଥା, କୃତଘ୍ନ ହେଲେ । ଦୁଃଖର ବିଷୟ । କିନ୍ତୁ ତା'ପରେ ? ସେ କଥାଟି ଏକାବେଳକେ ମନରୁ ପୋଛିଦେଇ ହାତ ଗୋଡ଼ ଧୋଇ ପୋଛାପୋଛି ହୋଇଗଲେ ଗଲା (wash your hands clean of it) ।

ମୁଁ ଆଜ୍ଞାବହ ଛାତ୍ରର ସ୍ୱରରେ କହିଲି, "ଯେଉଁଠା ପର୍ଯ୍ୟନ୍ତ ଏ କଥାଟା ଯାଇଛି, ସେତିକିରେ ଆପଣ କ୍ଷମା ଦିଅନ୍ତୁ ଏବଂ ଏ ଘଟଣା ପାସୋରି ଦିଅନ୍ତୁ ବୋଲି ମୋର ନିବେଦନ ।"

ଏଥର ସେ ମୁରୁକି ମୁରୁକି ହସିଲେ, "କହିଲେ, ବି.ଏ. ପରେ ତୁମେ କ'ଣ କରିବ ?"

ମୁଁ କହିଲି, "ଡେପୁଟି ହେବାକୁ ମନ କହିଥିଲି, କିନ୍ତୁ ବର୍ତ୍ତମାନ ଓକିଲ ହେବାକୁ ବିଚାରୁଛି ।"

ସେ କହିଲେ, "ମାନେ, ପୁଣି ମନ ବଦଳିବାର ସମ୍ଭାବନା ଅଛି । ଯାହା ହେଉ ଓକିଲାତି ପେସା ଯଦି ନିଅ ତେବେ ଭଲ କରିବ । ଆଚ୍ଛା ! ବର୍ତ୍ତମାନ ମୁଁ କ'ଣ କଲେ କ୍ଷମା କଲି ଓ ଏକଥା ପାସୋରିଦେଲି ବୋଲି ତୁମର ବିଶ୍ୱାସ ହେବ ?"

କ'ଣ ପାଇଁ ମୋ ମନ ବେପରୁଆ ହୋଇଗଲା କେଜାଣି ? ବୋଧହୁଏ ସାହେବଙ୍କ ସଦୟ ଆଲୋଚନା କରିବା ଢଙ୍ଗ ଯୋଗୁଁ । ମୁଁ କହିଲି, "ଆପଣଙ୍କ ପାଖେ କୌଣସି ଦୃଢ଼ ଦାବି କରିବାକୁ ଆମେ କେହି ଚାହୁନାହିଁ । ଆମର ଅନୁରୋଧ ଲାଇବ୍ରେରୀ ଖାତାରୁ ଏ ବହିର ନାମଟି କାଟିଦେଲେ ଆମ୍ଭେମାନେ ଅନୁଗୃହୀତ ହେବୁ ।"

ସେ କହିଲେ, "ତୁମେ ତ ସବୁ କଥା ବହୁ ବଚନରେ କହୁଛ ! ତୁମେ ଯାହା କହୁଛ, କଲେଜର ପ୍ରତ୍ୟେକ ଓଡ଼ିଆ ପିଲାଙ୍କର କ'ଣ ସେ କଥା ?" ମୁଁ ଉତ୍ତର ଦେଲି, "ଅଧିକାଂଶ ବଙ୍ଗାଳୀ ପିଲା ମଧ୍ୟ ଆମକୁ ସମର୍ଥନ କରୁଛନ୍ତି।" ସେ କହିଲେ, "ଓଃ ! ସେ କଥା ମୋତେ ଜଣା। ତୋର ତ ଗୁଡ଼ାଏ ବଙ୍ଗାଳୀ ପିଲା ଦୋସ୍ତ ବୋଲି ମୁଁ ଲକ୍ଷ୍ୟ କରିଛି। ଆଚ୍ଛା ! ଯଦି ପଚ଼ରାଯାଏ, ସବୁ ଓଡ଼ିଆ ପିଲା ତୋ କଥାରେ ହଁ ଭରିବେ ?"

ମୁଁ କହିଲି, "ଆପଣଙ୍କ ଭୟରେ ଯଦି କେହି ତୁଣ୍ଡ ନ ଫିଟାଇବେ ମୁଁ କହିପାରୁନାହିଁ। କିନ୍ତୁ ସମସ୍ତଙ୍କ ଆନ୍ତରିକ ସମର୍ଥନ ମୁଁ ପାଇବି।"

ସେ ମୁଣ୍ଡ ହଲେଇ କହିଲେ, "ଉଁ ହୁଃ ! ଅନ୍ୟମାନଙ୍କର ସମର୍ଥନ ନିଶ୍ଚୟ ମିଳିବ ବୋଲି ଗେଣ୍ଡ ହେବା ଚଳେ ନାହିଁ।"

ଏତେବେଳକୁ ଲାଇବ୍ରେରୀକୁ କ'ଣ ଗୋଟାଏ ଚିଠି ନେଇ ଚପରାଶୀ ଚାଲିଯାଇଥାଏ। ମୁଁ ଲାଇବ୍ରେରୀ ଆଡ଼େ ଆଖିବୁଲାଇ ଦେଖି ପାରିଥାଏ, ଖର୍ବ କିନ୍ତୁ ସ୍ଥୂଳକାୟ ଲାଇବ୍ରେରିଆନ୍ ଦାମବାବୁ ଗୋଟାଏ ବଡ଼ ଖାତା ଧରି ଆମ ଆଡ଼କୁ ପଲାଶିଛନ୍ତି। ଦାମବାବୁଙ୍କୁ ଦେଖିଥିବା ଆମ ବେଳର କୌଣସି କଲେଜବାଲା ଯଦି ଏହାକୁ ପଢ଼ିଲେ ଦାମବାବୁଙ୍କର ସେତେବେଳର ଠାଣି ମନଶ୍ଚକ୍ଷୁରେ ଦେଖିପାରିବ।

ପ୍ରିନ୍‌ସିପାଲ ମୋତେ ପଚ଼ାରିଥାନ୍ତି, "ତୋ ବିଚ଼ାରରେ ପାଠଟା ମୁଖ୍ୟ, ନା ଏ ଚଗଲାମି ?" ମୌନ ରହିବାକୁ ସଙ୍କଳ୍ପ କରି ମୁଁ ସମସ୍ୟାଟା ଅନୁଧ୍ୟାନ କରୁଥିବାର ମୁଦ୍ରା ଦେଖାଇଥାଏ। ମୋର ପିଲାଦିନର ଶିକ୍ଷକ ହୋଇଥିଲେ ଏ ମୁଦ୍ରାକୁ ଅନ୍ତତଃ ଗୋଟାଏ ଚାପୁଡ଼ା ପୁରସ୍କାର ଦେଇଥାନ୍ତେ।

ଏତିକିବେଳେ ଲାଇବ୍ରେରିଆନ ଆସି ଭଗବାନଙ୍କ ଆଗରେ ଗରୁଡ଼ଙ୍କ ପରି ଠିଆ ହୋଇଗଲେ। ତାଙ୍କ ଇଙ୍ଗିତରେ କ୍ୟାଟାଲଗର ସେଇ ପୃଷ୍ଠା ବାହାରିଲା। ଏତିକିବେଳ ଭିତରେ ଦାମବାବୁ ସେଇ ପୃଷ୍ଠାରେ ଚିହ୍ନଦେଇ ଆଣିଥାନ୍ତି। ପ୍ରିନ୍‌ସିପାଲ ବହିଟିର ନାମ କାଟି ଦସ୍ତଖତ କରି କ'ଣ ଦି'ଟା ଶବ୍ଦ ଲେଖିଦେଲେ ଓ ବହିଟି ଦାମବାବୁଙ୍କ ହାତକୁ ବଢ଼ାଇଦେଇ ମୋ ନାମଧରି କହିଲେ, "ଯେ କହୁଛି, ବହିଖଣ୍ଡେ ଲାଇବ୍ରେରୀରୁ ନଷ୍ଟ କରିଦେବାର କ୍ଷମତା ମୋର ଅଛି। ଅଛି ?"

ହଁ-ନାଇଁ-କିନ୍ତୁ-ତେବେ-ଯଦି-ଏହି ଶବ୍ଦମାନଙ୍କର ଇଂରେଜୀ ପ୍ରତିଶବ୍ଦ ପଣେ ବା ଦି'ପଣ ଉଚ୍ଚାରଣ କରି ଦାମବାବୁ ବାହାରକୁ ଯିବା ବାଟରେ ସିଆଡୁ ହେଡ଼କିରାଣି ଜଗନ୍ନାଥ ବାବୁଙ୍କ ଦେହରେ ବାଜିଲେ। ଉଭୟେ ପ୍ରିନ୍‌ସିପାଲଙ୍କ ଟେବୁଲ ପାଖକୁ ଆସିଲେ। ପ୍ରିନ୍‌ସିପାଲ ଜଗନ୍ନାଥ ବାବୁଙ୍କୁ କହିଲେ, "ଦାମବାବୁଙ୍କ ସଙ୍ଗେ କଥାବାର୍ତ୍ତା ହେବ। ଯଦି ଏ କଥା ଗଭର୍ଣ୍ଣିଂ ବଡ଼ିରେ ପକାଇବା ଦରକାର, ଆସନ୍ତା ବୈଠକର କାର୍ଯ୍ୟସୂଚ଼ୀରେ ରଖିବ। ଚିଠି ଖଣ୍ଡେ ଡ଼ି.ପି. ଆଇ.ଙ୍କ ପାଖକୁ ଲେଖା ବି ଯାଇପାରେ।

ସେ ଦୁଇଜଣ ଯିବା ପରେ ମୋତେ କହିଲେ, "ପ୍ରତ୍ୟେକ କାର୍ଯ୍ୟରେ ଆହୁରି ଅଧିକ ବିଚାର କରିବା ଦରକାର। ହଉ ଯାଅ।" ସିଧା ମୁଁ କମନରୁମକୁ ଗଲି ଏବଂ ପ୍ରିନ୍‌ସିପାଲ ଓ ମୋ ଭିତରେ ହୋଇଥିବା କଥାବାର୍ତ୍ତାର ଅଭିନୟ କଲି।

ଏହାର ଅଳ୍ପ କିଛିଦିନ ପରେ ଡକ୍ଟର ପି.ସି. ରାୟ ଆମ କଲେଜରେ ଆସି ଭାଷଣ ଦେଲେ। ଏଥିରେ ପ୍ରିନ୍‌ସିପାଲ ସଭାପତିତ୍ୱ ନକରି, ବୋଧହୁଏ ଡକ୍ଟର ପରିଜା ସଭାପତି ହେଲେ। ଡକ୍ଟର ପି.ସି. ରାୟ ରସାୟନ ବିଦ୍ୟାବିଶାରଦ, ବେଙ୍ଗଲ୍ କେମିକାଲ କଂପାନୀର ପ୍ରତିଷ୍ଠାତା, କଲିକତା ବିଶ୍ୱବିଦ୍ୟାଳୟର କୃତୀ ଅଧ୍ୟାପକ, ସେତେବେଳକୁ ଜଣେ ପ୍ରତିଷ୍ଠିତ କଂଗ୍ରେସନେତା। ତାଙ୍କର ବକ୍ତୃତା ଶୁଣି ମୋ ମନରୁ ଓକିଲ ହେବାକୁ ଥିବା ଆକାଂକ୍ଷାର ଅବଶେଷ ବି ଦୂର ହୋଇଗଲା।

ଏହାର କିଛିଦିନ ପୂର୍ବରୁ ଦାସେ ଆପଣେଙ୍କ ଆକସ୍ମିକ ତିରୋଧାନ ଯୋଗୁଁ ଜୀବନର ଗତିପଥ ପୂରା ବଦଳି ଯାଇଥାଏ। ଦାସେ ଆପଣେ ସତ୍ୟବାଦୀରେ ଜ୍ୱରାତିସାରରେ ପଡ଼ିଥିବାର ଖବର ପାଇ ସେଆଡ଼ ଖବରକୁ କାନ ଡେରିଥାଏ। ଦିନେ ପ୍ରାୟ ଏଗାରଟାବେଳେ ଖବର ପାଇଲି ଯେ ତାଙ୍କ ଅବସ୍ଥା ସାଂଘାତିକ। ସେଇ ତିନିଟା ଗାଡ଼ିରେ ସତ୍ୟବାଦୀ ସ୍କୁଲକୁ ଚାଲିଗଲି। ହରିବାବୁଙ୍କର ଛୋଟିଆ କୋଠରିଟିରେ ସେ ଶୋଇଥା'ନ୍ତି। ପୁରୀରୁ ଡାକ୍ତର ଆସି ଦେଖି ଯାଇଥା'ନ୍ତି। ବୈଦ୍ୟରତ୍ନ ମାଗୁଣି ବ୍ରହ୍ମା ମଧ୍ୟ ଦେଖି ସାରିଥା'ନ୍ତି। ଆଉ ବଞ୍ଚିବାର ଆଶା ନ ଥାଏ। ଦାସେ ଆପଣଙ୍କ ଉଇଲ୍ ହେବା ସକାଶେ ଜଗବନ୍ଧୁ ବାବୁ ଆସିଥାନ୍ତି। ଉଇଲ୍ ଦାସେ ଆପଣେ ଡାକୁଥାନ୍ତି, ଜଗବନ୍ଧୁ ବାବୁ ଲେଖୁଥାନ୍ତି। ସେମାନେ ସେବକ ମଣ୍ଡଳକୁ ଦେଇଦେଲେ, ଟିଣ ବାକ୍‌ସରେ ଥିବା ଅତି ସାମାନ୍ୟ ଟଙ୍କାର ବି ବେଉନ୍ତ ହୋଇଗଲା। ଦାସେ ଆପଣେଙ୍କର ମନେ ପଡ଼ିଗଲେ ନିଜ ସାନ ଝିଅ। ବଡ଼ଝିଅ ପାଇଁ ଚିନ୍ତା ନଥାଏ। ସେ ଅଧ୍ୟାପକ ରତ୍ନାକର ପତିଙ୍କ ସ୍ତ୍ରୀ; ତାଙ୍କର ଅଭାବ ନ ଥାଏ। ସାନ, ଅଧ୍ୟାପକ ସତ୍ୟବାଦୀ ମିଶ୍ରଙ୍କ ମାଆ; ତାଙ୍କର ପିଲାଝିଲା ଗୁଡ଼ିଏ, ସ୍ୱାମୀ ସ୍ୱଳ୍ପବେତନଭୋଗୀ, ଏଇ ଝିଅ ପିଲାଙ୍କ ପାଇଁ ସମାଜ ଅନୁଷ୍ଠାନରୁ କିଛି ସାହାଯ୍ୟର ବ୍ୟବସ୍ଥା କଲେ। ଉଇଲ୍ ଲେଖା ସରିଲା। ପ୍ରାଣ ଯିବାକୁ ଆଉ ଘଣ୍ଟେ ଦେଢ଼ ଘଣ୍ଟାମାତ୍ର। ଉପସ୍ଥିତ ସମସ୍ତଙ୍କ ସଙ୍ଗେ ପଦେ ଦି'ପଦ କଥାବାର୍ତ୍ତା ହେଲେ। ମୋ ପାଳି ପଡ଼ିଲାବେଳକୁ, ମୋ କୁଞ୍ଚରେ ତାଙ୍କର ହାତ ପଡ଼ିଗଲା। ମିଲ୍ ଲୁଗା ପିନ୍ଧିଥିଲି। କେତେମାସ ହେଲା ଖଦଡ଼ ଛାଡ଼ି ମିଲ୍ ଲୁଗା ପିନ୍ଧୁଥିଲି, ଦାସେ ଆପଣେଙ୍କ ହାବୁଡ଼େ ପଡ଼ିନଥିଲି। ମିଲ୍ ଲୁଗା ବୋଲି ବାରିଦେଇ କହିଲେ, "କିଓ ମିଶ୍ରେ, ଯେ ତ କ'ଣ ମିଲ୍ ଲୁଗା ! ସଙ୍କଳ୍ପ ଦୁର୍ବଳ ହୋଇଗଲା ପରା ?" ମୋ ଆଖିର ଲୁହ ତାଙ୍କ ଉପରେ ପଡ଼ିଗଲା। ଅସ୍ପଷ୍ଟ ସ୍ୱରରେ କହିଦେଲି, "ସଙ୍କଳ୍ପ ଦୃଢ଼

କରିବି"। ସରକାରୀ ଚାକିରି ନ କରି ଦେଶ କାର୍ଯ୍ୟରେ ଲାଗିବି ବୋଲି କଲେଜରେ ଭର୍ତ୍ତି ହେଲାବେଳେ ତାଙ୍କ ଆଗରେ ସଙ୍କଳ୍ପ କରିଥିଲି।

ଦାସେ ଆପଣେଙ୍କ ଶବ ସାଙ୍ଗରେ ଫଟୋ ଉଠିବାକୁ ସେତେବେଳେ ଯେଉଁ ଗୁଂଜିପଣା ଆଜିଯାଏଁ ପରିଷ୍କାର ଦିଶୁଛି। ମୁଁ କିନ୍ତୁ ଗୋଟିଏ ଅଣଆଡ଼ିଆ ସ୍ଥାନରେ ବସି ମୋର ଦୁଷ୍କୃତି ପାଇଁ ଅନୁତାପ କରୁଥାଏ। ମୃତ୍ୟୁଶଯ୍ୟାରେ ମୁଁ ତାଙ୍କ ଆତ୍ମାକୁ କଷ୍ଟ ଦେଇଛି ବୋଲି ଅନୁତପ୍ତ ହେଉଥାଏ। ଯା ପରେ ମୋର ମୁଣ୍ଡ ଏକାବେଳକେ ଥୟ ହୋଇଗଲା। ଯାହା ବି ଟିକିଏ କସୋର ଥିଲା, ଡକ୍ଟର ରାୟଙ୍କ ବକ୍ତୃତା ଓ ବକ୍ତୃତା ଶେଷରେ ତାଙ୍କ ସଙ୍ଗେ କଥାବାର୍ତ୍ତା ଫଳରେ, ସେତକ ଠିକଣା ହୋଇଗଲା। କଲେଜ ହଷ୍ଟେଲରେ ମୁଁ ହୋଇଗଲି ଜଣେ କଂଗ୍ରେସ ନେତା।

ଏଇ ସମୟରେ ସାଇମନ୍ କମିଶନ୍‌କୁ ବଏକଟ୍ କରିବା ଘଟଣାକ୍ରମେ ଲାଲା ଲଜପତ୍ ରାୟ ପୁଲିସ୍‌ଙ୍କ ମାଡ଼ରେ ପ୍ରାଣ ଦେଲେ। ପଣ୍ଡିତ ଗୋପବନ୍ଧୁ ତାଙ୍କ ନେତୃତ୍ୱ ଗ୍ରହଣ କରିଥିବା ହେତୁ ଲାଲାଜୀ ଆମର ସବୁ ଅତି ସମ୍ମାନିତ ନେତା। ତାଙ୍କ ଜୀବନୀ ପଢ଼ି ମୁଁ ପ୍ରେରଣା ପାଉଥାଏ। ତାଙ୍କ ମୃତ୍ୟୁରେ ଭାରତ ତମାମ ତୋଲପାଡ଼ ହୋଇଗଲା। ଜଣେ ସାମ୍ବାଦିକ ସେତେବେଳେ ଲେଖିଥିଲେ, ଏ ଘଟଣାଦ୍ୱାରା ବ୍ରିଟିଶ ସରକାରଙ୍କ ଶବାଧାରରେ ଗୋଟିଏ ବଡ଼ କଣ୍ଟା ବାଡ଼ିଆ ହୋଇଥିଲା। ଆମ ହଷ୍ଟେଲ୍‌ରେ ସ୍ଥିର ହେଲା, ତାଙ୍କ ଦଶାହ ଦିନ ଆମେ ହବିଷ କରିବା ଏବଂ ଯେଉଁମାନଙ୍କର ବାପ ଆଗରୁ ମରିଯାଇଛନ୍ତି, ସେମାନେ ମୁଣ୍ଡ ଲଣ୍ଡା ହେବେ। ଦଶାହଦିନ କଲେଜକୁ କେହି ଗଲୁନାହିଁ। ମୋ ପକ୍ଷରୁ ପ୍ରସ୍ତାବ ହେଲା, ପ୍ରିନ୍‌ସିପାଲଙ୍କୁ ଆମ ହବିଷକୁ ନିମନ୍ତ୍ରଣ କରିବା। ସେଇଆ ହେଲା। ପ୍ରିନ୍‌ସିପାଲ ନିମନ୍ତ୍ରଣ ଗ୍ରହଣ କଲେ ଏବଂ ଯଥାସମୟରେ ଆସି ପହଞ୍ଚିଲେ। ହବିଷ-ଅରୁଆ ଭାତ ଓ ଡାଲମା ତଳେ ଖଲିପତ୍ରରେ ବଢ଼ା ହେଉଥାଏ, ପିଲେ ଆସି ବସୁଥାନ୍ତି, ଆମେ କେତେକଜଣ କାର୍ଯ୍ୟଗ୍ରାହୀ ପଛକୁ ଥାଉ। ଏଇ ସମୟରେ ପ୍ରିନ୍‌ସିପାଲ ଆସି ପହଞ୍ଚିଲେ; ତଳେ ବସିକରି ଖାଇ ପାରିବେନାହିଁ, ଠିଆହୋଇ ଖାଇବେ ବୋଲି କହିବାରୁ ତାଙ୍କୁ ଅଣକେ ଭାତ ଓ ଅଣକେ ଡାଲି କାଢ଼ି ଖଲିପତ୍ରଟିଏ ବଢ଼ାଇ ଦେଲୁ, ସେ ତହିଁରୁ ଅଧାଅଧି ଖାଇ ଆମଠାରୁ ବିଦାୟ ନେଇ ଗଲେ।

ଏଇ କଥାଟି ମୁଁ ବହୁତ ଥର ଭାବେ। ସେଦିନ କାହିଁକି, ସେ ହସ୍ତାଟାଯାକ ଆମ କଲେଜରେ, ସଭାରେ, କଥାବାର୍ତ୍ତାରେ ଇଂରେଜ ସରକାରଙ୍କର ଶ୍ରାଦ୍ଧ କରୁଥାଉ। ପ୍ରିନ୍‌ସପାଲ ଇଂରେଜ ଓ ଇଂରେଜ ସରକାରଙ୍କର ଗୋଟିଏ ଅଙ୍ଗ। ଆଜିର କୌଣସି ପ୍ରିନ୍‌ସପାଲ ବା ପ୍ରଫେସର ପିଲାଙ୍କ ସଙ୍ଗେ, ସରକାର ବିରୋଧୀ କୌଣସି କାର୍ଯ୍ୟରେ ଅଣୁମାତ୍ର ସହଯୋଗ କରି ପାରିବେ କି ନାହିଁ କେଜାଣି ? ତତ୍‌ପର ଦିନ କଲେଜରେ ହୋଇଥିବା ଷ୍ଟ୍ରାଇକ୍; ଟେନିସ୍‌ଫିଲ୍‌ଡର ସଭା, ଅତୀତର କଥା ହୋଇଗଲା। କାହାକୁ କୈଫିୟତ୍ ମଗାଗଲା ନାହିଁ। ଦଣ୍ଡତ ଦୂରର କଥା।

ଏଇ ସମୟରେ ଉପରୁ ଗୋଟାଏ ପ୍ରସ୍ତାବ ଆସିଲା - କଲେଜମାନଙ୍କରେ ସାମରିକ ଶିକ୍ଷା ଦିଆଯିବ । ଛାତ୍ରମାନଙ୍କୁ ଏ ଯୋଜନା ପ୍ରତି ଆକୃଷ୍ଟ କରିବାକୁ ଆମ କଲେଜରେ ଗୋଟିଏ ସଭା ହେଲା । ଡକ୍ଟର ପରିଜା ସଭାପତି; ବହୁ ଅଧ୍ୟାପକ ଉପସ୍ଥିତ ଥିଲେ । କଲେଜ ପାଠ ପଢ଼ିବାର ସ୍ଥାନ, ଯାକୁ ସୈନିକ କଲେଜ କରିବାଦ୍ୱାରା ସାମରିକ ଶିକ୍ଷା ହେବନାହିଁ କି ପାଠ ପଢ଼ା ହେବ ନାହିଁ ବୋଲି ଯୁକ୍ତି କରି ଏଣୁତେଣୁ ଗୁଡ଼ାଏ ଗପିଲି । କଲେଜରେ ଡ୍ରିଲ୍ କ୍ଲାସ୍‌ଟାଏ ରଖି ଯେପରି ପ୍ରହସନ ହେଉଛି, ସେଇପରି ପ୍ରହସନ ହେବ ବୋଲି କହିଲାବେଳେ ଭାରି ହସ ହେଲା । ମୁଁ ପ୍ରାୟ ୪୫ ମିନିଟ୍ କହିଲି । ମୋ ପରେ ଯେ କହିଲେ ସେ ମୋରି କଥାକୁ ନିଜ ଢଙ୍ଗରେ ଆବୃତ୍ତି କଲେ ମାତ୍ର । ସାମରିକ ଶିକ୍ଷା ବିରୋଧରେ ଆମେ ସମସ୍ତେ ମତ ଦେଲୁ । ଅନ୍ୟଠି କ'ଣ ହେଲା କେଜାଣି, ଆମ କଲେଜରେ ସାମରିକ ଶିକ୍ଷା କଥା ଆଉ ଉଠିଲା ନାହିଁ ।

ଏ ସବୁ ଭିତରେ ଗଠନମୂଳକ କାର୍ଯ୍ୟ ଚାଲିଥାଏ । ଆମ ହଷ୍ଟେଲର ରୋଷେଇ ଘର ସାହାଲା ପଛରେ ପ୍ରାୟ ୨୦ ଡିସ୍‌ମିଲ ହେବ ଖାଲି ପଡ଼ିଆ ଥାଏ । ସେଥିରେ ଗୋଟାଏ ପନିପରିବା ବଗିଚା କରିବୁ ବୋଲି ମୁଣ୍ଡରେ ଢୁକିଲା । ପ୍ରିନ୍‌ସିପାଲଙ୍କ ପାଖକୁ ଦରଖାସ୍ତ ହେଲା । ସେ ତା'ର ବାଡ଼ ଘେରାଇବାକୁ ଦେଢ଼ଶହ ଟଙ୍କା ମଞ୍ଜୁର କଲେ । ଆମେ କେତେଜଣ ସ୍ୱେଚ୍ଛାସେବକ ହୋଇ ଉପରଓଳି ଘଣ୍ଟେ ଲେଖାଏଁ ସେଥିରେ କାମ କଲୁ । ଜାଗାଟା ବହୁତ ଦିନ ହେଲା ପଡ଼ିଆ ପଡ଼ିଥିଲା । ଅଧ୍ୟାପକମାନଙ୍କ ଘରୁ ଗୋବର ବି ଖୁବ୍ ମିଳିଲା । ବେଶ୍ ପରିବା ପତ୍ର ହେଲା । ପ୍ରିନ୍‌ସିପାଲଙ୍କ କୋଠି ବଗିଚାର ନିକଟରେ । ସେ ମଝିରେ ମଝିରେ ଆସି ଦେଖୁଥାନ୍ତି । ସେଥିରୁ ବିକ୍ରି କରିବୁ କି ନାହିଁ; ବହୁତ ଟଣା ଓଟରା ପରେ ଠିକ୍ ହେଲା, ଅଧେ ବିକା ହେବ ଏବଂ ବିକ୍ରି ଲବ୍‌ଧ ପଇସା କୌଣସି ସର୍ବସାଧାରଣ କାର୍ଯ୍ୟରେ ଖର୍ଚ୍ଚ ହେବ । ଆମ ପରିବା ସର୍ବପ୍ରଥମେ କିଣିଥିଲେ ପ୍ରିନ୍‌ସିପାଲଙ୍କ ପତ୍ନୀ ।

ପିଲାମାନେ ସକାଳେ ଓ ସନ୍ଧ୍ୟାବେଳେ ପୁରି ଓ କ୍ଷୀରମୋହନ ଜଳଖିଆ କରୁଥାନ୍ତି । ଆଜିକାଲି ଯେଉଁ କ୍ଷୀରମୋହନ ଆଠଣା ଲେଖାଏଁ ବିକ୍ରି ହେଉଛି, ତହିଁରୁ ଟିକିଏ ବଡ଼ ରାଜଭୋଗ ନାମରେ ଚାରି ପଇସାକୁ ମିଳୁଥାଏ । ଏଥିରୁ ଗୋଟିଏ କି ଯୋଡ଼ିଏ ନେଉ । ସାଙ୍ଗରେ ଦୁଇପଟ ପୁରି ହୋଇଥାଏ ଓଳିକର ଜଳଖିଆ । ମୋ ପରି କେତେଜଣ ଗୁଡ଼ିଆ ଦୋକାନରେ ଯାଇ ବସିଲେ ଯା'ର ବହୁଗୁଣ ଜଳଖିଆ କରିଦେଉ । ହପ୍ତାକୁ ଥରେ ଦି'ଥର ବାଦ ବି ପଡ଼େ । ଦିନେ ମନେ ହେଲା, ପୁରି କ୍ଷୀରମୋହନ ପରିବର୍ତ୍ତେ ଚୁଡ଼ା ଦୁଧ ବା ଚୁଡ଼ା ଦହି ଜଳଖିଆ କଲେ ଅଳ୍ପ ଖର୍ଚ୍ଚ ହେବ, ଅଧିକ ଖାଦ୍ୟସାର ମିଳିବ । ଚାଲିଲା ଆନ୍ଦୋଳନ । ଆମ ହଷ୍ଟେଲର ଗୁଡ଼ିଆ ଦୋକାନଟା ଫେଲ୍ ହୋଇଗଲା ।

ଏ ସବୁ ହେଉଥାଏ ହଷ୍ଟେଲରେ ପ୍ରାୟ ସମସ୍ତଙ୍କର ସମର୍ଥନ ମିଳୁଥିବାରୁ । ଆମ ଫୋର୍ଥ ଇୟରର ସମସ୍ତେ ମୋ ପଟେ; ଥାର୍ଡ ଇଅରର ଯେଉଁମାନେ ଅତି ଗ୍ରନ୍ଥକୀଟ, ତାଙ୍କ ବ୍ୟତୀତ ସମସ୍ତେ

ମୋ ସଙ୍ଗେ; ଦ୍ୱିତୀୟ ବାର୍ଷିକର ପ୍ରାୟ ସମସ୍ତେ ମୋ ଦଳରେ। ସେଥିରେ ନେତା ହୋଇଥାନ୍ତି, ଆଜିର ଡକ୍ଟର ମହେନ୍ଦ୍ର ମିଶ୍ର, ଡକ୍ଟର ରାମଚନ୍ଦ୍ର ରଥ, ଇଞ୍ଜିନିଅର ବାଞ୍ଛାନିଧି ସାହୁ ଇତ୍ୟାଦି। ଆଉ ଦୁଇଜଣ ଅତି ଘନିଷ୍ଠ ଡକ୍ଟର ନାରାୟଣ ମହାପାତ୍ର ଓ ଡକ୍ଟର ହରିଶ ପାଲ ଦ୍ୱିତୀୟ ମହାଯୁଦ୍ଧ ବେଳେ ଆମମାନଙ୍କୁ ଛାଡ଼ି ଚାଲିଗଲେ। ସମ୍ବଲପୁର ପିଲେ ଆମରି ପୂର୍ବ ଛାତ୍ରାବାସରେ ରହୁଥାନ୍ତି। ସେମାନଙ୍କ ଭିତରେ ବଡ଼ ସାନ ସମସ୍ତେ ଆମ ଦଳରେ। ବାହାର ପିଲା ସମସ୍ତେ ତ ଆମ ପଟିଆ। କାଳର ପ୍ରଭାବରେ ଆମ ମନ ପାଠ ଅପେକ୍ଷା ଅନ୍ୟାନ୍ୟ ହରେକ କାମରେ ଅଧିକ ମାତୁଥାଏ। ଆଉ କିଛି କାମ ନ ଜୁଟିଲେ ଆରମ୍ଭ ହୋଇଯାଏ ତାସଖେଳ-ଟ୍ୱେଣ୍ଟି ନାଇନ ବା ବିନ୍ତି। କେବଳ ପାଠପଢ଼ା ବ୍ୟତୀତ ଆଉ ସବୁ କାର୍ଯ୍ୟରେ ଆମର ଅପୂର୍ବ ମେଳ ଥାଏ। ପାଠପଢ଼ା ଛାଡ଼ି ଆଉ ସବୁ କାର୍ଯ୍ୟରେ ଡାକିଦେଲେ ସାଙ୍ଗେ ସାଙ୍ଗେ ସମସ୍ତେ ଆସି ହାଜର ହୋଇଯାନ୍ତି। ଯେଉଁମାନଙ୍କର ପାଠପଢ଼ା ମୁଖ୍ୟ କାମ ସେମାନେ ଆମ ଦୌରାତ୍ମ୍ୟରୁ ମୁକ୍ତି ପାଇବାକୁ ଦିନେ ଦିନେ ବଡ଼ ହଇରାଣ ହୁଅନ୍ତି। ତାସ ଖେଳିବାକୁ ଜଣେ ଅଧେ ନିଅଣ୍ଟ ହେଲେ ଆମେ ଏଇ ଗ୍ରନ୍ଥକୀଟଙ୍କ ଭିତରୁ ଜଣେ ଅଧେଙ୍କୁ ଭିଡ଼ିବା ପାଇଁ ଅଦୌତି କରୁ। ବିଚରେ ବାଧ୍ୟ ହୋଇ ବାହାରନ୍ତି, କିନ୍ତୁ ବଦଳିଆ ମିଳିବା ସାଥି ସାଥି ଯାଙ୍କୁ ମୁକ୍ତି ଦେବାକୁ ଆଗରୁ ସର୍ତ୍ତ ହୋଇଥାଏ।

ପାଠପଢ଼ାବେଳେ ଆମେ ଖେଳରେ ମାତିଲେ ଆମ ସୁପରିନ୍‌ଟେଣ୍ଡେଣ୍ଟ ଆର୍ତ୍ତବାବୁଙ୍କୁ ଭାରି କାଟେ। ସେ ସମୟରେ ସେ ପେଟମରା ବେମାରି ଯୋଗୁଁ ଭାରି କଷ୍ଟ ପାଉଥାନ୍ତି। ସାମୟିକ ଉପଶମ ନିମନ୍ତେ ସେ ଗୁଡ଼ାଏ ସୋଡ଼ା ଖା'ନ୍ତି ; ତଥାପି କ୍ଲାସରେ ପଢ଼ାଇଲାବେଳେ ଅନେକ ସମୟରେ ପେଟକୁ ଚିପି ଧରିଥାନ୍ତି, ମୁହଁ ବିକୃତ ହୋଇଯାଏ। ଏସବୁ ସତ୍ତ୍ୱେ ନିଜର କର୍ତ୍ତବ୍ୟ କରିବାରେ ଉନ୍ମୁଖ ଲୋକ ତାଙ୍କ ପରି ମୁଁ କ୍ୱଚିତ୍ ଦେଖିଛି। ମୋତେ ସେ ବିଶେଷ ସୁଖ ପାନ୍ତି; ମୋର ଅବସ୍ଥା ତାଙ୍କୁ ସବୁ ଜଣା। ସେ ଖୁବ୍ ଆଶା ରଖିଥାନ୍ତି, ମୁଁ ପଢ଼ାରେ ମନ ଦେବି, ଭଲରେ ପାସ୍ କରିବି, ଭଲ ଚାକିରି ଖଣ୍ଡେ କରିବି ଓ ମୋର ଅବସ୍ଥା ସ୍ୱଚ୍ଛଳ କରିବି। ଅନେକ ସମୟରେ ଡାକି ବୁଝାନ୍ତି, ଅନ୍ତତଃପକ୍ଷେ ପାଠରେ ଦଶଅଣା ଓ ଅନ୍ୟାନ୍ୟ ଚଗଲା କାମରେ ଛ'ଅଣା ସମୟ ଦେବାକୁ।

ଥରେ ରାତି ପ୍ରାୟ ବାରଟା। ତହିଁ ଆର ଦିନ ମୋର ବିଶ୍ୱବିଦ୍ୟାଳୟ ପରୀକ୍ଷା ସରିବ। ଅନର୍ସ କୋର୍ସର ଶେଷ ପରୀକ୍ଷା-ଖାଲି ଗୋଟିଏ ପ୍ରବନ୍ଧ ଲେଖିବାକୁ ହେବ। କ'ଣ ପଢ଼ିବି ? ମନେ ହେଲା ଏତିକିବେଳେ ଘଣ୍ଟେ ଖଣ୍ଡେ ଖେଳିଦେଲେ ହୁଅନ୍ତା। ବାଞ୍ଛାନିଧି ମିଳିଲା, ସବୁବେଳେ ମିଳେ, ତା'ର ଥାର୍ଡ ଇଅର, ପରୀକ୍ଷା ନ ଥାଏ। ତା' ଉଦ୍ୟମରେ ଆଉ ଦୁଇଜଣ ମିଳିଲେ, ତା' ଭିତରୁ ଜଣେ ପରୀକ୍ଷାର୍ଥୀ ସେକେଣ୍ଡ ଇଅରର। ଆମ ଖେଳ ଠିକ୍ ଜମି ଆସିଥାଏ, ଦ୍ୱାରେ ଆସି ଆର୍ତ୍ତବାବୁ ଠିଆ ହୋଇଗଲେ।

ମୁଁ ପ୍ରଥମେ ଅଭିଯୋଗ କଲି, 'ଆପଣ ଏତେ ରାତିରେ କାହିଁକି ବୁଲୁଛନ୍ତି, ପେଟକୁ ମାଡ଼ିବ।''

କୃତ୍ରିମ କ୍ରୋଧରେ ସେ ପାଟି କଲେ, ''ମୋ ପେଟମରାକୁ ଓଷୁଅ ପାଇଁ ମୁଁ ତମମାନଙ୍କ ପାଖକୁ ଆସିନାହିଁ। ଆଜି ସନ୍ଧ୍ୟାବେଳରୁ ମୋର ଉକ୍‌ଟ ପୀଡ଼ା। ଓଷୁଅ ଶୁଣୁନାହିଁ। କିନ୍ତୁ ତୁମର ଏଠାରେ ଚାଲିଛି କ'ଣ ? (ମୋତେ ଚାହିଁ) କିରେ ଛତରା ! ତୋର ପରା କାଲି ଅନର୍ସ ପରୀକ୍ଷା ! କ'ଣ ପରୀକ୍ଷାକୁ ପ୍ରସ୍ତୁତ ହେଉଛୁ ?''

ମୁଁ ବୁଝାଇବାକୁ ଚେଷ୍ଟା କଲି ଯେ କାଲି ପ୍ରବନ୍ଧ ପେପର ଥିବାରୁ ପ୍ରସ୍ତୁତ ହେବାକୁ କିଛି ନାହିଁ। ସେ ଅର୍ଥଶାସ୍ତ୍ରର ଧାର ଧାରନ୍ତି ନାହିଁ ବୋଲି ମୋର ଧାରଣା ଥିଲା। କିନ୍ତୁ ସେ କହିଲେ, କୋଅପରେଟିଭ୍ ମୁଭମେଣ୍ଟ, ରେଳବାଇ, ଗ୍ରାମ ଗହଳିର ମଙ୍ଗଳ ଏସବୁ ବିଷୟରେ ଟିକିଏ ବହି ଓଲଟା ଓଲଟି କରୁନାହୁଁ ? ଯାଆ, ବର୍ତ୍ତମାନ ଶୁଅ। କାଲି ସକାଳେ ବହିପତ୍ର ଓଲଟାଇବୁ। ସେକେଣ୍ଡ ଇଅର ଟୋକା ହାବୁଡ଼େ ପଡ଼ିଲା ନାହିଁ, ନହେଲେ ସେ ଭଲକରି ଦି'ଚାରିପଦ ଶୁଣିଥା'ନ୍ତା। ଆମେ ସାଙ୍ଗେ ସାଙ୍ଗେ ଶୋଉଛୁ ବୋଲି କୁହାକୁହି କରି ତାଙ୍କୁ ବିଦାୟ ଦେଲୁ। ଆମ ଶୋଇବାଟା ନିଃସନ୍ଦିଗ୍ଧ କରିବା ସକାଶ ସେ ତାସ ମୁଠାରୁ ଯେତିକି ହାତରେ ପଡ଼ିଲା ନେଇଗଲେ। ସେ ମୁହଁ ବୁଲାଇବା ସାଙ୍ଗେ ସାଙ୍ଗେ ଆମେ ଲାଇଟ୍ ଲିଭାଇ ଦେଲୁ। ମୁଁ ମୋର କଣକିଆ କୋଠରିକୁ ଚାଲିଗଲି, କିନ୍ତୁ ଶୋଇବା ପାଇଁ ନୁହେଁ। ମୋ ଶେଲଫ ଉପରେ ଆଉ ଗୋଟାଏ ଭଲ ମୁଠା ଥିଲା। ସେ ତାଙ୍କ କୋଠି ଭିତରେ ପଶିବାର ମିନିଟିଏ ଦୁଇ ମିନିଟ୍ ପରେ ଆମର ପୁଣି ଲାଇଟ ଜଳିଲା, ଖେଳ ଲାଗିଲା ପ୍ରାୟ ୪ଟା ପର୍ଯ୍ୟନ୍ତ। ଆର୍ତ୍ତବାବୁଙ୍କ ପେଟମରାର ମାତ୍ରା ବୋଧହୁଏ ଟିକିଏ ବେଶି ହୋଇଯିବାରୁ ଆଉ ତାଙ୍କ ଆଡୁ କୌଣସି ପ୍ରତିଘାତ ହେଲା ନାହିଁ କିମ୍ବା ତାସ୍ ମୁଠାଟା ନେଇଯାଇଥିବାରୁ ଏବଂ ଆମେ ଶୋଇବାକୁ ଯାଉଛୁ ବୋଲି ନିର୍ଭର ପ୍ରତିଶ୍ରୁତି ପାଇ ତାଙ୍କର ଆମ ବିଷୟରେ ସନ୍ଦେହ ନ ଥାଏ।

**ଅନର୍ସରେ ଦ୍ୱିତୀୟ ଶ୍ରେଣୀ :**

ଆର୍ତ୍ତବାବୁ ବହୁବାର ମୋତେ ପଚାରନ୍ତି, ''କିରେ ବକାରି ! ଅନର୍ସ ପାଇବୁଟି ?'' ମୁଁ ପୂର୍ଣ୍ଣ ନିର୍ଭର ଦିଏ, ନିଶ୍ଚୟ ପାଇବି। ସେ ବ୍ୟସ୍ତ ହୋଇ କହନ୍ତି, ''ଟିକିଏ ପାଠରେ ମନ ଦେଇଥିଲେ ନିଶ୍ଚୟ ଫାଷ୍ଟ କ୍ଲାସ୍ ପାଇଥା'ନ୍ତୁ।'' ଏ କଥାଟା ତାଙ୍କ ମରିବା ବର୍ଷ ମଧ୍ୟ କହିଥିବାର ମନେଅଛି। ଏଇ ସେକେଣ୍ଡ କ୍ଲାସ୍‌ଟା ମଧ୍ୟ ମିଳୁ ମିଳୁ ହାତରୁ ଯାଉଥିଲା। ଶେଷ ପରୀକ୍ଷା ପୂର୍ବ ରାତିରେ ୪ଟା ପର୍ଯ୍ୟନ୍ତ ଖେଳି ଶୋଇବାକୁ ଗଲି। ଟିକିଏ ଶୋଇ ଗାଧୋଇ ପଡ଼ି ଘଣ୍ଟେ ଦି'ଘଣ୍ଟା ଶୋଇଲି। ଭାତ ଖାଇ ପରୀକ୍ଷା ହଲକୁ ଗଲାବେଳେ ମୁଣ୍ଡ କ'ଣ ହେଉଥାଏ। ଗାମୁଛା ଖଣ୍ଡେ ମୁଣ୍ଡରେ ପକାଇ ଗଲି। ପ୍ରଶ୍ନ କାଗଜ ଦେଖିଲାବେଳକୁ ଯେଉଁ ତିନୋଟିରୁ ଗୋଟିକ ବିଷୟରେ ପ୍ରବନ୍ଧ ଲେଖିବାର

କଥା, ସେ ତାଲିକାର ପ୍ରଥମରେ ଅଛି, "ଭାରତରେ ସମବାୟ ଆନ୍ଦୋଳନ।" ସାଙ୍ଗେ ସାଙ୍ଗେ ଲେଖିବାକୁ ଆରମ୍ଭ କଲି ଯେ ସମାକର ଗୋଟାଏ ସମ୍ପାଦକୀୟ ପରି ହୋଇଗଲା। ମୋ ଲେଖାର ସାର କଥା : ସମବାୟ ଆନ୍ଦୋଳନ ଭାରତ ପକ୍ଷେ ଉପଯୋଗୀ ନୁହେଁ। ସମବାୟ ସମିତିର କର୍ମକର୍ତ୍ତାମାନେ ଢୋଲ ଭିତରେ ମୂଷା ପରି ଯ୍ୟକୁ ଖାଇ ଯାଉଛନ୍ତି। ଆମର ବାଇଶିପାହାଚିଆ ସମାଜରେ ଉପର ପାହାଚବାଲା କର୍ମକର୍ତ୍ତା ହୁଅନ୍ତି। ନିରୀହ ମେମ୍ବରମାନେ ତାଙ୍କ ଅନୌତି ରୋକିବାକୁ ପାତ୍ର ନୁହନ୍ତି। ସେ ପେପରର ପରୀକ୍ଷକ ଗୋରେଖନାଥ ସିହ୍ନା। ପରୀକ୍ଷା ସରିବାର ହପ୍ତେ ଖଣ୍ଡେ ପରେ ଶୁଣିବାକୁ ପାଇଲି ମୋର ସେ ପେପରଟା ସ୍କ୍ରାଚ୍ ହୋଇଗଲା। ସେଥିରେ ୩୦ରୁ କମ୍ ନମ୍ବର ମିଳିଥିବାରୁ ତାହା ଆଉ ହିସାବକୁ ନିଆଯିବ ନାହିଁ। ଅର୍ଥାତ୍ ମୋର ଯଦି ପାଞ୍ଚଟା ପେପର ମିଶି ୬ ଶହର ସେକେଣ୍ଡ କ୍ଲାସ୍ ନମ୍ବର ହେବ, ତେବେ ଯାଇ ଅନର୍ସ। ସମୟ ଗଡ଼ିବା କ୍ରମେ ପାସ୍ ବିଷୟରେ ବି ସନ୍ଦେହ ହେଲା। ଯାହା ହେଉ, ପରୀକ୍ଷା ଫଳ ବାହାରିଲାବେଳକୁ ମୋତେ ସେକେଣ୍ଡ କ୍ଲାସ୍ ଅନର୍ସ ମିଳିଛି ବୋଲି ପଢ଼ିଦେଇ ମୁଁ କୃତାର୍ଥ ହୋଇଗଲି। ଯାହାଙ୍କୁ କ୍ଲାସ୍‌ରେ ମୁଁ ମଣିଷ ବୋଲି ଗଣେ ନାହିଁ, ତାଙ୍କ ତଳକୁ ମୋ ନାମ ଥିବାରୁ ଶୁଭାନୁଧ୍ୟାୟୀମାନେ କେତେ କଥା କହିଲେ। କିନ୍ତୁ ମୁଁ ମନେ ମନେ ବିଚାରୁଥାଏ, "କଣା ହେଲେ ବି ତ ମାମୁଁ"। ମୋର ଭବିଷ୍ୟତ କର୍ମପନ୍ଥାରେ ବି.ଏ. ପାସ୍ ମୂଲ୍ୟହୀନ, ଅନର୍ସ ତତୋଽଧିକ। ପାଠ ପଢୁଥିଲ ନା ଚକ୍ଷୁ କୁଟୁଥିଲ ବୋଲି ପଚାରିବା ବାଲାଙ୍କ ପାଇଁ ଏ ଉପାଧି ରହିଲା, ଏ ସମ୍ମାନ ରହିଲା। ମୋର କାମ ସରିଛି। ଯଦି ସୁବିଧା ହେବ ଆଇନ କ୍ଲାସରେ ନାମ ଲେଖାଇଦେବି ଅଭିଜ୍ଞତା ଅର୍ଜିବା ପାଇଁ, ଓକିଲ ହେବା ପାଇଁ ନୁହେ।

ପରୀକ୍ଷା ସରିବା ପରେ ବା କିଛିଦିନ ପୂର୍ବରୁ ଚାକିରିମେଧ ଯଜ୍ଞର ପୂର୍ଣ୍ଣାହୁତି ଦେଇ ସାରିଥାଏ ବାଲେଶ୍ୱରଠାରେ। ବାଲେଶ୍ୱରଠାରେ ନିଖିଳ ଉତ୍କଳ ଛାତ୍ର ସମ୍ମିଳନୀ ବସିଥିଲା। ଡକ୍ଟର ପରିଜା ସଭାପତି, ସମ୍ପାଦକ ବିଜୁ ବାବୁଙ୍କ ବାପା ଲକ୍ଷ୍ମୀନାରାୟଣ ପଟ୍ଟନାୟକ। ସ୍କୁଲ ଇନ୍‌ସ୍‌ପେକ୍ଟର ଭବନାଥ ମୁଖାର୍ଜୀ ମଧ୍ୟ ଯୋଗ ଦେଇଥା'ନ୍ତି ଅତିଥି ଭାବରେ। ଭବନାଥ ବାବୁ ବକ୍ତୃତା ଦେବାକୁ ଉଠିବା ପର୍ଯ୍ୟନ୍ତ ସବୁ ସୁରୁଖୁରୁରେ ଚାଲୁଥିଲା। ଭବନାଥ ବାବୁ ବିଲାତ ଫେରନ୍ତା, ଖୁବ୍ ବଢ଼ିଆ ବକ୍ତୃତା ଦିଅନ୍ତି ଇଂରେଜୀରେ। ଆମେ ତାଙ୍କ କଥା ଶୁଣିବାକୁ କାନ ଡେରିଲାବେଳକୁ ଦେଖିଲୁ ସେ ଗୋଟିଏ ଗୋଡ଼ ଟେବୁଲ ଉପରେ ରଖି ଗୋଟିଏ ଗୋଡ଼ରେ ଠିଆ ହୋଇ ବକ୍ତୃତା ଆରମ୍ଭ କଲେ। ସଭାପତିଙ୍କ ଆଗରେ ତାଙ୍କ ଗୋଡ଼ ଥାଏ। ସଭାପତିଙ୍କ ଡାହାଣପଟେ ବସିଥାନ୍ତି ଲକ୍ଷ୍ମୀନାରାୟଣ ପଟ୍ଟନାୟକ। ଡକ୍ଟର ପରିଜା ଓ ଲକ୍ଷ୍ମୀନାରାୟଣ ବାବୁଙ୍କୁ ଆମ ସମସ୍ତଙ୍କର ମାନ୍ୟ-ଡକ୍ଟର ପରିଜା ସେତେବେଳର ଓଡ଼ିଆ ପିଲାଙ୍କର ଆଦର୍ଶ ଏବଂ ଲକ୍ଷ୍ମୀନାରାୟଣ ବାବୁ ସବୁ ବିଷୟରେ ଆମକୁ ସାହସ ଓ ଉତ୍ସାହ ଦେବାବାଲା। ମୋ ମୁଣ୍ଡରେ

ଗୋଟାଏ ପୋକ ପଶିଲା ଯେ, ଭବନାଥ ବାବୁ ଆମର ଦୁଇ ପୂଜ୍ୟ ଗୁରୁଜନଙ୍କୁ ଅପମାନ ଦେଉଛନ୍ତି । ହଁ ! ପରିଜାଙ୍କର ଟିକିଏ ପଛକୁ ମୋର ଜଣେ ପୃଷ୍ଠପୋଷକ ୬ଭୁବନାନନ୍ଦ ଦାସ ମଧ୍ୟ ବସିଥାନ୍ତି । ମୁଁ ଉଠିପଡ଼ି ସଭାପତିଙ୍କୁ ନିବେଦନ କଲି, "ବକ୍ତା ଗୋଡ଼ ତଳକୁ ଆଣନ୍ତୁ । ସେ ଆମର ପୂଜ୍ୟ ସଭାପତି, ସମ୍ପାଦକ ଓ ମାନ୍ୟ ଅତିଥିଙ୍କୁ ଅବମାନନା ଦେଖାଉଛନ୍ତି । ତାଙ୍କ ଆଚ଼ରଣ ସମଗ୍ର ସମ୍ମିଳନୀକୁ ବି ଅପମାନ ।"

ଭବନାଥବାବୁ ହାଇସ୍କୁଲ ହେଡ଼ମାଷ୍ଟରଙ୍କ ଯମ, ଭାରି ଅହଂକାରୀ । ସେ ହେଡ଼ମାଷ୍ଟରଙ୍କୁ କହିବା ସ୍ୱରରେ କହିଲେ, "ଛାତ୍ର ବନ୍ଧୁଙ୍କର ଅଭିଜ୍ଞତା ନାହିଁ । ବିଲାତରେ ଏଭଳି ବକ୍ତୃତା ଦେବା ଦୋଷାବହ ହୁଏ ନାହିଁ । ମୋର ଏପରି କହିବା ଅଭ୍ୟାସ ।" ଏହା କହି ସେ ତାଙ୍କ ବକ୍ତବ୍ୟ ପୁଣି ଆରମ୍ଭ କଲାବେଳକୁ ସ୍ୱତଃ ଆମ ସମସ୍ତଙ୍କ ଗୋଡ଼ ଚଟାଣରେ ଘଷି ହେଲା । କି ଶବ୍ଦ ! ମୁଁ ପୁଣି ଠିଆ ହୋଇ କହିଲି, "ସଭାପତି ମହାଶୟ ! ବକ୍ତା ଭଦ୍ର ଭାବରେ ଯଦି ଠିଆ ନ ହେବେ ତେବେ ଆମେ ତାଙ୍କୁ କୁହାଇ ଦେବୁନାହିଁ । ମୁଁ ଠିଆ ହୋଇ କହୁଥିଲା ଯାକ ଯୋତା ଘଷା ବନ୍ଦ ଥିଲା, ମୁଁ ବସିବା ମାତ୍ରେ ପୁଣି ଆରମ୍ଭ ହେଲା । ମୁଁ ଏହି ଶୃଙ୍ଖଳାହୀନ ପିଲାମାନଙ୍କୁ କିଛି କହିବାକୁ ଚାହେଁ ନାହିଁ" ବୋଲି କହି ମିଷ୍ଟର ମୁଖାର୍ଜୀ ବସିପଡ଼ିଲେ । ଭୁବନାନନ୍ଦ ବାବୁ କହିବାକୁ ଠିଆ ହେଉ ହେଉ, ମୁଁ ଠିଆ ହୋଇ କହିଲି, 'ମିଷ୍ଟର ମୁଖାର୍ଜୀ ଆମକୁ କାର୍ଯ୍ୟରେ ଓ କଥାରେ (ଶୃଙ୍ଖଳାହୀନ ବୋଲି କହି) ଯେଉଁ ଅପମାନ ଦେଇଛନ୍ତି ସେଥିପାଇଁ କ୍ଷମା ମାଗିବେ ବୋଲି ଆଶା କରୁ ।" ଡକ୍ଟର ପରିଜା ଟିକିଏ ବିରକ୍ତିରେ, ହଉ ବସ ବୋଲି କହିଲେ । ସଭା କାର୍ଯ୍ୟ ଚାଲିଲା, ସତେ ଯେପରି କିଛି ନ ହୋଇଛି । ଭବନାଥ ବାବୁ ଭୁବନାନନ୍ଦ ବାବୁ କହିବା ଭିତରେ ଚାଲିଗଲେ । ସେତିକିବେଳୁଁ ସମ୍ମିଳନୀ ସାରି କଟକରେ ଆସି ପହଞ୍ଚିବା ଯାଏଁ ଆମେ ସବୁ କୁରୁଡ଼ି ହେଉଥାଉଁ ।

ସେ ମୋତେ ପୂର୍ଣ୍ଣ ସହାନୁଭୂତିରେ କହିଲେ, "ଏଭଳି ଏକଜିଦିଆ ହେଲେ ତୁମେ କ'ଣ ଚାକିରି ରଖିପାରିବ ?" ମୁଁ ଜଣାଇଦେଲି "ମୁଁ ଚାକିରି କରିବାକୁ ପାଠ ପଢୁନାହିଁ, "ମୁଁ ପଣ୍ଡିତ ଗୋପବନ୍ଧୁଙ୍କ ପରି ଦେଶ କାର୍ଯ୍ୟରେ ଲାଗିବି ।" ସେ ବିରକ୍ତିରେ କହିଲେ, "ସେ ତ ଦେଶଟାକୁ ସ୍ୱର୍ଗକୁ ଟେକି ଦେଲେଣି, ତୁମେ ଆଉ କୁଆଡ଼େ ଟେକିବ ?" ସେଇଦିନଠାରୁ ଲକ୍ଷ୍ୟ କରିଛି ମୋ ପ୍ରତି ତାଙ୍କ ଶ୍ରଦ୍ଧା କମିଗଲା; ବୋଧହୁଏ ପୂରା ଲୋପ ହୋଇଗଲା । ମୋର କିନ୍ତୁ ଲାଗିଲା ଆନ୍ଦୋଳନରେ ସହଯୋଗ । ପରୀକ୍ଷା ଫଳ ବାହାରିବା ପରେ ଦିନେ କାଠଯୋଡ଼ି ବାଲିରେ ବିଲାତି ଲୁଗାପୋଡ଼ା ସଭାଟାଏ ହେଲା । ଗୁଡ଼ାଏ ପ୍ୟାଣ୍ଟ, କୁରୁତା, ଲୁଗା, କାମିଜ ସଂଗୃହୀତ ହୋଇଥାଏ । ମୁଁ ପ୍ରଥମେ ଲୁଗା ନିଆଁରେ ପକାଇଲି ଓ ବକ୍ତୃତାରେ ଇଂରେଜ ସରକାର ମୁହଁରେ ନିଆଁ ଦେଲି । ସେଦିନର ଉତ୍ସାହ, ସମସ୍ତଙ୍କର, ଆଜି ଦିଶୁଛି । ସେ ଉତ୍ସାହ ଆଜି ଥିଲେ ଲୋକେ ଏପରି ହନ୍ତସନ୍ତ ହେଉ ନ ଥାନ୍ତେ । ସଭାରେ ପୁଲିସ୍ ଥିଲେ, ମାଜିଷ୍ଟ୍ରେଟ୍ ଥିଲେ, ଲାଠି ବି ଥିଲା,

କିନ୍ତୁ କିଛି ହେଲା ନାହିଁ । ମୋର ଆନ୍ଦୋଳନରେ ଉତ୍ସାହ ବଢ଼ିଲା ।

ବି.ଏ. ପରୀକ୍ଷାର ଫଳ ବାହାରିବାକୁ ଯେଉଁ ଦୁଇ ମାସ ବା ସାମାନ୍ୟ କିଛି ଅଧିକା ଲାଗିଲା, ସେତକ ଦିନ ସବୁ କାମ ଭିତରେ, ମନରେ ଗୋଟାଏ ସଂଶୟ ଥାଏ, ଯଦି ଫେଲ ହୋଇଯାଏ ସପ୍ଲିମେଣ୍ଟାରୀ ପରୀକ୍ଷା ପାଇଁ ପ୍ରସ୍ତୁତ ହେବାକୁ ଧୈର୍ଯ୍ୟ ରହିବଟି ? ପୁଣି ଆଉ ଥରେ ଫିସ୍ ଦେବାକୁ ଟଙ୍କା କୁଆଡୁ ସଂଗ୍ରହ କରିବି ? ଅବଶ୍ୟ କଲେଜ ହଷ୍ଟେଲରୁ ଆସିବାର ୫/୬ ଦିନ ଭିତରେ ଦୁଇଟା ଟିଉସନ ମିଳିଗଲା । ଦି'ପହରଟାଯାକ ବେକାର ହୋଇ ବସିବାକୁ ଭାରି ଖରାପ ଲାଗୁଥାଏ । ତାସ ଖେଳିବାକୁ ମଣିଷ ସଂଗ୍ରହ କରିବାକୁ ଖୁବ୍ ଚେଷ୍ଟା କରି ତିନିଜଣ ସଂଗ୍ରହ କରିଥାଏ ଯେ, ମଝିରେ ମଝିରେ ସେଥିରୁ ଜଣେ ଦୁଇଜଣ ଘରକୁ, ନ ହେଲେ ବନ୍ଧୁ ଘରକୁ ଚାଲିଯାନ୍ତି ।

ଡିକେନ୍ସଙ୍କର ଖଣ୍ଡେ ଖଣ୍ଡେ ଉପନ୍ୟାସ ପାଖରେ ରହିଥାଏ । ଖେଳ ଆଡ୍ଡାରୁ ନିରାଶ ହୋଇ ଫେରିଲେ ସେଇଥିରେ ଲାଗିଯାଏ । ଦିନେ ଦିନେ ଏତେ ମନ ଲାଗିଯାଏ ଯେ, ରାତିଓଳି ଟିଉସନଟା ମାରା କରିଦିଏ । ସାଢ଼େ ୬ଟାରେ ଯିବାର କଥା, ଅଧଘଣ୍ଟେ ଘଣ୍ଟେ ବିଳମ୍ବରେ ଯାଏ, ନ ହେଲେ ଏକାବେଳକେ ନ ଯାଇ ରହିଯାଏ । ରାତିଓଳି ରୋଷେଇ କରିବାକୁ ବି ବେଳ ହୁଏ ନାହିଁ । ପରୀକ୍ଷା ଫଳ ବାହାରି ନିଶ୍ଚିନ୍ତ ହେବା ପରେ ଉପନ୍ୟାସ ପଢ଼ା ଝୁଙ୍କ ବେଶି ଲାଗିଗଲା ଆଇନ ଶ୍ରେଣୀରେ ନାମ ଲେଖାଇବା ପର୍ଯ୍ୟନ୍ତ ।

ମଝିରେ ମଝିରେ ଶନିବାର ଦିନକ ଦୁଇଟାଯାକ ଟିଉସନରୁ ଛୁଟି ନେଇ ଗାଁକୁ ଚାଲିଯାଏ । ଉପନ୍ୟାସ ବହିଖଣ୍ଡ ସାଙ୍ଗରେ ନିଏ, କିନ୍ତୁ ରେଳରୁ ଓହ୍ଲାଇବାଠାରୁ ପୁଣି ରେଳରେ ବସିବା ଯାଏଁ ସବୁବେଳେ ଅନ୍ୟ କାର୍ଯ୍ୟରେ ଏତେ ଲାଗିଯାଏ ଯେ ବହି ପାଖରେ ଅଛି ବୋଲି ମନେପଡେ ନାହିଁ । ରାତିଯାକ ତାସ ଖେଳ; ଦିନତମାମ ମାଛଧରା, ଆମ୍ବ ତୋଳା ।

•

---

*ଅର୍ଦ୍ଧଶତାବ୍ଦୀର ଅନୁଭୂତି*

ନବଜୀବନ ପ୍ରେସ୍, କଟକ, ୧୯୮୧

# ଉଚ୍ଚଶିକ୍ଷା

## ଜଗନ୍ନାଥ ଦାସ

ଜୁଲାଇ ମାସରେ କିପରି କଲେଜରେ ନାମ ଲେଖାଇବାକୁ ହେବ, ତାହା ହେଲା ଏକ ଚିନ୍ତାର ବିଷୟ। କାରଣ ଆମର ସେତେବେଳର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନ ଥିଲା ଏବଂ ବାପାଙ୍କର ସୀମିତ ଆୟରୁ ମତେ ନିୟମିତ ଅର୍ଥ ଯୋଗାଇ କଲେଜରେ ପଢ଼ାଇବା ସମ୍ଭବ ମନେ ହେଉ ନଥିଲା। ସେତେବେଳେ (୧୯୨୪ ମସିହାରେ) କଟକ ରେଭେନ୍‌ସା କଲେଜରେ ପ୍ରଥମ ବାର୍ଷିକ ଶ୍ରେଣୀର କଲେଜ ଫିସ୍ ୭/୮ ଟଙ୍କା ସହିତ ମାସିକ ଖର୍ଚ୍ଚ ଅନ୍ତତଃ ପ୍ରାୟ ୩୫ ଟଙ୍କା ଥିଲା। ପ୍ରଥମେ ନାମ ଲେଖାଇବାକୁ ଯିବାବେଳେ ନାଁ ଲେଖା ଫି ଛଡ଼ା ଅନ୍ତତଃ ଏକମାସର ବସାଖର୍ଚ୍ଚ ଓ ବହିପତ୍ର ଆଦି ଅନ୍ୟାନ୍ୟ ଖର୍ଚ୍ଚ ପାଇଁ କିଛି ଅଧିକ ଟଙ୍କା ନେଇ ଯିବାକୁ ହେବ। ଏତେଟଙ୍କା ଏକକାଳୀନ ଯୋଗାଡ଼ କରିବା ସହଜ ନ ଥିଲା। ବାପାଙ୍କୁ ଚିଠି ଦିଆହୋଇଥିଲା। ତାଙ୍କଠାରୁ ଟଙ୍କା ଆସିବାରେ ଡେରି ହେଉଥାଏ। ଏଣେ ନାଁ ଲେଖା ବେଳ ନିକଟେଇ ଆସିଲା। ତେଣୁ ମୋର ବୋଉ ତା'ର ଏକ ମାତ୍ର ସୁନାହାରଟି ବନ୍ଧା ପକାଇ ମତେ ଟଙ୍କା ଦେଲାରୁ ମୁଁ କଟକ ଯିବାକୁ ପ୍ରସ୍ତୁତ ହେଲି। ତା' ପୂର୍ବରୁ ମୁଁ କଟକ ସହର କେବେ ଦେଖି ନ ଥିଲି। ସେଠାରେ ପହଞ୍ଚି ପ୍ରଥମେ ସେଠାରେ କେଉଁଠି ରହିବାକୁ ହେବ ସ୍ଥିର କରି ଯିବା ଦରକାର, ନ ହେଲେ ଅସୁବିଧା ହେବ। ଏହି ଅସୁବିଧାଟି ଦୂର ହେଲା ମୋର ଜଣେ ହିତାକାଙ୍କ୍ଷୀର ଆତ୍ମୀୟ ତଥା ଆମ ଗ୍ରାମର ଜଣେ ମାନ୍ୟଗଣ୍ୟ ବ୍ୟକ୍ତିଙ୍କ ଦ୍ୱାରା। ତାଙ୍କ ନାମ ଥିଲା ଶ୍ରୀ ନିତ୍ୟାନନ୍ଦ ମହାନ୍ତି। ସେ ସ୍ୱତଃପ୍ରବୃତ୍ତ ହୋଇ କଟକରେ ଓକିଲାତି କରୁଥିବା ତାଙ୍କର ଶାଳକ ଶ୍ରୀ ଅଦ୍ୱୈତ ଚରଣ ଦାସଙ୍କ ନିକଟକୁ ମୋର ନାମ ଲେଖାଇବା ଓ କଟକରେ ରହିବାର ସୁବିଧା କରାଇ ଦେବାକୁ ଅନୁରୋଧ କରି ଖଣ୍ଡେ ଚିଠି ଲେଖି ଦେଲେ। ଚିଠିଖଣ୍ଡି ନେଇ ମୁଁ କଟକରେ ଅଦ୍ୱୈତବାବୁଙ୍କ ବସାରେ ପହଞ୍ଚିଲି। ସେ ମୋତେ ଆଗରୁ ଚିହ୍ନି ନ ଥିଲେ କି ଦେଖି ନଥିଲେ। ତାଙ୍କୁ ପ୍ରଣାମପୂର୍ବକ ଚିଠି ଖଣ୍ଡି ଦେଲି। ଚିଠି ପଢ଼ି ସେ ମୋ ପରିଚୟ ପାଇଲେ ଓ ମୋର ତାଙ୍କ ପାଖକୁ ଆସିବାର ଉଦ୍ଦେଶ୍ୟ ଜାଣିଲେ। ମୋର ଅନ୍ୟ କେଉଁଠାରେ ଅର୍ଥାତ୍ କଲେଜ ହଷ୍ଟେଲ କିମ୍ବା କୌଣସି ମେସ୍‌ରେ ରହିବାର ବନ୍ଦୋବସ୍ତ

ହେବାପର୍ଯ୍ୟନ୍ତ ତାଙ୍କ ବସାରେ ରହି କଲେଜରେ ନାମ ଲେଖାଇବାକୁ ସେ ମୋତେ କହିଲେ। ତାପରେ ମୁଁ କଲେଜରେ ନାମ ଲେଖାଇଲି। ମୋର ଇଚ୍ଛା ଥିଲା ଆର୍ଟସ ଅର୍ଥାତ୍ କଳା ଶ୍ରେଣୀରେ ନାମ ଲେଖାଇବାକୁ, କାରଣ ମୋର ପ୍ରବେଶିକା ପରୀକ୍ଷା ପାଇଁ ଅତିରିକ୍ତ ବିଷୟ ଗଣିତ ଥିଲେ ହେଁ ମୋର ଗଣିତ ଅପେକ୍ଷା ସାହିତ୍ୟ ଓ ଅନ୍ୟାନ୍ୟ ବିଷୟରେ ବରାବର ବେଶି ନମ୍ବର ରହୁଥିଲା। ବିଶେଷ କରି ଇଂରାଜୀ ବିଷୟକୁ ମୁଁ ବେଶି ଭଲ ପାଉଥିଲି। କିନ୍ତୁ ପଢ଼ାପରେ ନିଯୁକ୍ତି ବିଷୟରେ ସୁବିଧା ନିମନ୍ତେ ଅଦ୍ୱୈତବାବୁ ବିଜ୍ଞାନ (ଆଇ.ଏସ୍‌ସି.) ଶ୍ରେଣୀରେ ନାମ ଲେଖାଇବାକୁ କହିବାରୁ ମୁଁ ଆଇ.ଏସ୍‌ସି. ପ୍ରଥମ ଶ୍ରେଣୀରେ ନାମ ଲେଖାଇଲି; ଯେପରି ଆଇ.ଏସ୍‌ସି. ପାସ୍ ପରେ ଡାକ୍ତରୀ ବା ଇଞ୍ଜିନିୟରିଂ କଲେଜରେ ପଢ଼ିପାରିବି।

ସେତେବେଳେ ଅଦ୍ୱୈତବାବୁଙ୍କ ବସାଘର ଚାନ୍ଦିନୀ ଚୌକ ଛକର ଅଳ୍ପଦୂର ପଶ୍ଚିମକୁ ହରହରିଘାଟ ସାମନା ପ୍ରଧାନ ରାସ୍ତା ଉପରେ ଥିଲା। ସେଠୁ ଚାଉଳିଆଗଞ୍ଜ ରେ ଥିବା କଲେଜ ପ୍ରାୟ ତିନି ମାଇଲ ବାଟ। ବିଜ୍ଞାନ ପ୍ରଥମ ଶ୍ରେଣୀର କ୍ଲାସ ପ୍ରତିଦିନ ଦଶ ଘଣ୍ଟାବେଳେ ଆରମ୍ଭ ହେଉଥିଲା। ହରହରି ଘାଟ ପାଖରୁ ତିନିମାଇଲ୍ ଚାଲି ଚାଲି କଲେଜରେ ପହଞ୍ଚିବାକୁ ହୁଏ। ସେତେବେଳେ କଟକରେ ଆଜିକାଲି ପରି ପିଚୁରାସ୍ତା ନଥିଲା। ସବୁ ରାସ୍ତା ନାଲି ମୁରୁମମାଟି। ମୋର ସେତେବେଳକୁ ଯୋତା ନଥାଏ। ବିନା ଯୋତାରେ ଏତେ ବାଟ ଚାଲିଲାପରେ ଗୋଡ଼ ପୂରା ନାଲି ହୋଇଯାଏ। ପ୍ରତିଦିନ ଛତର ବଜାର ପୋଲ ପାଖରେ କେନାଲରେ ଗୋଡ଼ ଧୋଇ କଲେଜରେ ପହଞ୍ଚେ। ତା ପରେ ପ୍ରାକ୍‌ଟିକାଲ୍ କ୍ଲାସରେ ପଚାଶମିନିଟ୍ ଠିଆ ହୋଇ କାମ କରିବାକୁ ହୁଏ। ଏତେ ବାଟ ଚାଲିଲା ପରେ ଏତେ ସମୟ ଠିଆ ହୋଇ କାମ କରିବା କଷ୍ଟକର ହେଲେ ହେଁ, କ୍ରମେ ଅଭ୍ୟସ୍ତ ହୋଇଗଲାରୁ ଆଉ କିଛି ଭାବିବାକୁ ହେଲା ନାହିଁ। ଏହିପରି ଦଶମାସ କଟିଗଲା। ପ୍ରଥମ ଶ୍ରେଣୀରୁ ଦ୍ୱିତୀୟକୁ ଉତ୍ତୀର୍ଣ୍ଣ ହେଲି। ଦୁଇମାସ ଗ୍ରୀଷ୍ମଛୁଟି ହେବାରୁ ଗାଁକୁ ଗଲି।

ଗାଁରେ ପୂରା ଛୁଟି କଟାଇଲି। ସେତେବେଳେ ଆମ ଘରେ ଥିଲେ ମୋର ବୋଉ, ସାଆନ୍ତ ବାପା, ସା'ନ୍ତ ମା, ଦାଦା, ଖୁଡ଼ୀ, ମୋର ଦୁଇଟି ପିଉସୀ ଓ ସାନଭାଇ ନାରଣ। କେବଳ ବାପା ଥିଲେ ସୁନ୍ଦରଗଡ଼ରେ। ସାଆନ୍ତ ବାପା (ଶ୍ରୀ ଚୈତନ୍ୟ ଚରଣ ଦାସ) ଥିଲେ ଜଣେ ଅବସରପ୍ରାପ୍ତ ସ୍କୁଲ ପରିଦର୍ଶନକାରୀ ପଣ୍ଡିତ (inspecting Pandit of Schools) ଯାହା କି ତାଙ୍କ ପରେ ଏବର ସ୍କୁଲ ସବ୍‌ଇନ୍‌ସପେକ୍‌ଟର ପଦବୀରେ ପରିଣତ ହେଲା। ସେ ଅତି ସରଳ, ସଚ୍ଚରିତ୍ର ଓ ଧର୍ମପରାୟଣ ଥିଲେ। ସେ ଏତେ ନୀତିବାନ୍ ଓ ସତ୍ୟନିଷ୍ଠ ଥିଲେ ଯେ ଥଟ୍ଟା ପରିହାସରେ ମଧ୍ୟ ମିଥ୍ୟା କହୁ ନଥିଲେ। ସେ ଖୁବ୍ ଦୟାଳୁ ଓ ପରୋପକାରୀ ଥିବାରୁ ବହୁ ବିଦ୍ୟାର୍ଥୀଙ୍କୁ ସାହାଯ୍ୟ କରୁଥିଲେ। ନିଜର ଆତ୍ମୀୟ ବନ୍ଧୁବାନ୍ଧବ ପିଲାମାନଙ୍କୁ ଘରେ ରଖି ଗ୍ରାମର ସ୍କୁଲରେ ପଢ଼ିବାର

ସୁବିଧା କରିଦେଉଥିଲେ । ଏହାଛଡ଼ା ପଢ଼ାଶୁଣା କରିଥିବା ଯେ କୌଣସି ଆତ୍ମୀୟ ବା ପରିଚିତ ବ୍ୟକ୍ତିଙ୍କୁ ବେକାର ହୋଇ ବସିଥିବାର ଦେଖିଲେ, ତାଙ୍କୁ କେଉଁଠି ହେଲେ ପ୍ରାଥମିକ ସ୍କୁଲ ଶିକ୍ଷକ ଭାବେ ରଖାଇ ଦେଉଥିଲେ ।

ସେ ଥିଲେ ପରମ ଈଶ୍ୱରଭକ୍ତ । ହିନ୍ଦୁ ଧର୍ମର ଯାବତୀୟ ଗ୍ରନ୍ଥ ଓ ପୁରାଣରେ ତାଙ୍କର ଭଲ ଜ୍ଞାନ ଓ ଶ୍ରଦ୍ଧା ଥିଲା । ସେ ବିଶେଷ କରି ଭାଗବତ, ଭଗବତ୍‌ଗୀତା ଓ ଚୈତନ୍ୟଚରିତାମୃତ ପାଠ ଓ ତତ୍‌ସମ୍ବନ୍ଧୀୟ ଆଲୋଚନାରେ ରତ ରହୁଥିଲେ । ଆମର ଇଷ୍ଟଦେବ ଶ୍ରୀ ରାଧା ଗୋପୀନାଥଙ୍କ ପ୍ରତି ତାଙ୍କର ପ୍ରଗାଢ଼ ଭକ୍ତି ଥିଲା । ତାଙ୍କର ଦୈନିକ ସେବାପୂଜାରେ ଯେପରି ଅବହେଳା ନ ହୁଏ ସେଥିପ୍ରତି ତାଙ୍କର ତୀକ୍ଷ୍ଣ ଦୃଷ୍ଟି ଥିଲା । ସେ ଯେତେବେଳେ ଚାକିରିରୁ ଗାଁକୁ ଆସୁଥିଲେ, ସେତେବେଳେ ସେ ପ୍ରଥମେ ଠାକୁର ମନ୍ଦିରକୁ ଯାଇ ଇଷ୍ଟଦେବଙ୍କୁ ଦର୍ଶନ ପରେ, ତାଙ୍କର କୌଣସି ପୂଜା ସାମଗ୍ରୀର ଅଭାବ ବା ସେ ସମ୍ବନ୍ଧରେ କୌଣସି ଅସୁବିଧା ଥିଲେ ତାହା ସେ ଅବିଳମ୍ବେ ଦୂର କରିବାକୁ ଯତ୍ନବାନ୍ ହେଉଥିଲେ । ତା'ପରେ ଘରକୁ ଯାଉଥିଲେ । ଏହିପରି ସଦ୍ ଗୁଣସମ୍ପନ୍ନ ହୋଇଥିବାରୁ ଲୋକେ ତାଙ୍କୁ ଖୁବ୍ ସମ୍ମାନ କରୁଥିଲେ । ସର୍ବ ସାଧାରଣରେ ସେ ପଣ୍ଡିତେ ବୋଲି ପରିଚିତ ଥିଲେ ଓ ଲୋକେ ତାଙ୍କୁ ତାହାହିଁ ସମ୍ବୋଧନ କରୁଥିଲେ । ତେଣୁ ସେ ଜୀବିତ ଥିବାବେଳେ ଓ ତାଙ୍କ ଅନ୍ତେ ମଧ୍ୟ ଆମ ଘରକୁ ଲୋକେ ପଣ୍ଡିତଙ୍କ ଘର ବୋଲି କହୁଥିଲେ । ସେ ଥିଲେ ଆଦର୍ଶ ପୁରୁଷ । ତେଣୁ କହିବା ଅନାବଶ୍ୟକ ଯେ ସଚ୍ଚରିତ୍ର ଗଠନ ଓ ସଦାଚରଣ ଶିକ୍ଷା ନିମନ୍ତେ ସେ ଥିଲେ ମୋର ତଥା ଅନ୍ୟମାନଙ୍କର ପ୍ରଧାନ ପ୍ରେରଣାର ଉତ୍ସ ।

ସେ ସରକାରୀ ଚାକିରିରୁ ଅବ୍ୟାହିତ ନେଲା ପରେ ଆମ ଗ୍ରାମରୁ ପ୍ରାୟ ଚାରି ମାଇଲ ଦୂରସ୍ଥ କାଜିରାମ ବାଗ ମଠର ମହନ୍ତ ମୁକୁନ୍ଦ ଦାସଙ୍କ ଅନୁରୋଧରେ ସେଠାରେ ଥିବା ଏକ ପ୍ରାଥମିକ ସ୍କୁଲର ଶିକ୍ଷକତା କରୁଥିଲେ । ତାଙ୍କର ପ୍ରକୃତ ଉଦ୍ଦେଶ୍ୟ ଥିଲା ଉକ୍ତ ମଠରେ ଶ୍ରୀ ରାଧାଗୋବିନ୍ଦଙ୍କୁ ଆରାଧନା କରିବାର ସୁଯୋଗ ଥିବାରୁ, ସେଠାରେ ଶେଷ ଜୀବନ ଅତିବାହିତ କରିବେ । ସେଠି ଅଳ୍ପ କିଛି ବର୍ଷ କଟାଇବା ପରେ, ଅସୁସ୍ଥତା ହେତୁ ଚିକିତ୍ସା ନିମନ୍ତେ ଘରକୁ ଆସିଲେ । କ୍ରମେ ତାଙ୍କର ମୂତ୍ରାଶୟଜନିତ ପୀଡ଼ା ବୃଦ୍ଧି ପାଇବାରେ ଲାଗିଲା । କିନ୍ତୁ ସେ ଧୀର ସ୍ଥିର ଭାବରେ ଶଯ୍ୟାଶାୟୀ ହୋଇ ଜଣେ କବିରାଜଙ୍କ ଚିକିତ୍ସାରେ ରହିଲେ । ରୋଗାକ୍ରାନ୍ତ ଅବସ୍ଥାରେ ଅବିଚଳିତ ରହି ଈଶ୍ୱର ଚିନ୍ତାରେ ନିମଗ୍ନ ରହୁଥିବାରୁ ତାଙ୍କର ଆତ୍ମୀୟ ସ୍ୱଜନ ତଥା ଅନ୍ୟମାନେ ତାଙ୍କର ପୀଡ଼ିତାବସ୍ଥାର ଗୁରୁତ୍ୱ ଜାଣିପାରୁ ନଥିଲେ । ସେତେବେଳେ ମୋର ଦାଦା (ତାଙ୍କର ଦ୍ୱିତୀୟ ପୁତ୍ର) ଦଶପଲ୍ଲାରେ ତାଙ୍କର ଚାକିରିରୁ ଛୁଟିରେ ଆସି ଘରେ ଥିଲେ । ତାଙ୍କର ଛୁଟି ସରିଆସିବାରୁ, ଏତେ ପୀଡ଼ିତ ଥାଇ ସୁଦ୍ଧା ତାଙ୍କୁ ସେ କହିଲେ, "ମୋ ଦେହ କ୍ରମେ ଭଲ ହୋଇଯିବ । ତୁ କେତେଦିନ ଅପେକ୍ଷା କରିବୁ । ତୁ ଚାଲିଯାଅ ।" ସେ ବି ଜାଣିପାରିଲେ ନାହିଁ ଯେ

ତାଙ୍କ ଅବସ୍ଥା ଖୁବ୍ ଖରାପ ହେଲାଣି। ସେ ଫେରିଗଲେ। ତାପରେ ମୋର କଲେଜ ଖୋଲିବାବେଳ ଆସିଲା। ମତେ ମଧ୍ୟ ସେହିପରି କହିଲେ। ସେ ଏତେ ଅସୁସ୍ଥ ଥିଲେ ମଧ୍ୟ ଧୀର ସ୍ଥିର ଭାବେ ଶୋଇରହିଥିଲେ। ବାହାରେ କୌଣସି ବ୍ୟସ୍ତତା ପ୍ରକାଶ ପାଉ ନ ଥିଲା। ତେଣୁ ସେ କ୍ରମେ ଆରୋଗ୍ୟ ଲାଭ କରିବେ ବୋଲି ତାଙ୍କ କଥାରେ ବିଶ୍ୱାସ କରି ମୁଁ ମଧ୍ୟ କଟକ ଫେରିଗଲି। କିନ୍ତୁ ଦୁଃଖ ଓ ପରିତାପର କଥା, ପ୍ରାୟ ପନ୍ଦରଦିନ ପରେ ସେ ହଠାତ୍ ଇହଲୀଳା ସାଙ୍ଗ କରି ଚାଲିଗଲେ। ତେଣୁ ଅନ୍ତିମକାଳରେ ତାଙ୍କ ପାଖରେ ରହି ସେବା କରିବା ପୁଅ ନାତି କାହାରି ଭାଗ୍ୟରେ ଘଟିଲା ନାହିଁ। ତାଙ୍କର ମରଣଶରୀର ସତ୍କାର ଗ୍ରାମବାସୀ ଆତ୍ମୀୟ ସ୍ୱଜନମାନଙ୍କ ଦ୍ୱାରା ଯଥାରୀତି ସମ୍ପନ୍ନ ହୋଇଥିଲା। ଟେଲିଗ୍ରାମ ପାଇ ଆମ୍ଭେମାନେ ଯଥାଶୀଘ୍ର ଘରେ ପହଞ୍ଚିଲୁ ଓ ତାଙ୍କର ଅନ୍ତ୍ୟେଷ୍ଟିକ୍ରିୟା ସମାପନ କଲୁ। ଜେଜେ ବାପାଙ୍କର ଜୀବନାବସାନ ଏହିପରି ହୋଇଥିଲା ବେଳେ, ତାଙ୍କର ମା'ଙ୍କର ଅନ୍ତିମ କାଳୀନ କଥା ମୋ ବୋଉଠାରୁ ମୁଁ ଯାହା ଶୁଣିଥିଲି ତାହା ପ୍ରାସଙ୍ଗିକ ମନେ ହେବାରୁ ଲେଖୁଛି। ଜେଜେ ଏତେ ମାତୃଭକ୍ତ ଥିଲେ ଯେ ସେ ତାଙ୍କ ମା'ଙ୍କ ଅନ୍ତିମକାଳରେ ବହୁଦିନ ଛୁଟି ନେଇ ବରାବର ଘରେ ରହିଲେ ଓ ତାଙ୍କ ସେବା ଶୁଶ୍ରୂଷାରେ ରତ ରହିଲେ। ତାଙ୍କର ଅନୁପସ୍ଥିତିରେ କାଳେ ମା'ଙ୍କର ଦେହାନ୍ତ ହୋଇଯିବ, ସେଥିଯୋଗୁଁ ସେ ଘର ଛାଡ଼ି କୁଆଡ଼େ ନ ଯାଇ ଅନ୍ତିମକାଳ ପର୍ଯ୍ୟନ୍ତ ପାଖରେ ଉପସ୍ଥିତ ଥିଲେ। କିନ୍ତୁ ତାଙ୍କର ନିଜର ଅନ୍ତିମକାଳକୁ କେହିହେଲେ ପୁତ୍ର ପୌତ୍ର ପାଖରେ ନ ଥିଲେ। ଯେଉଁମାନେ ପାଖରେ ଥିଲେ ତାଙ୍କୁ ସେ ନିକଟରୁ ଦୂରକୁ ବିଦାକରି ଦେଲେ। ଏହା ଭାଗ୍ୟର ଏକ ବିଡ଼ମ୍ବନା ଛଡ଼ା ଆଉ କ'ଣ ହୋଇପାରେ ! ଏହି ପ୍ରସଙ୍ଗରେ ଶ୍ରୀ ଅରବିନ୍ଦଙ୍କର ସାବିତ୍ରୀ ମହାକାବ୍ୟର ଗୋଟିଏ ପଂକ୍ତି ଉଲ୍ଲେଖନୀୟ। ତାହା ହେଉଛି, ('it is fate which punishes virtue with defeat') ଭାଗ୍ୟ ଦୋଷରୁ ପୁଣ୍ୟାତ୍ମା ଧାର୍ମିକ ଦଣ୍ଡିତ ହୋଇଥାଏ।

ସାଆନ୍ତ (ଜେଜେ)ଙ୍କର ଅନ୍ତ୍ୟେଷ୍ଟିକ୍ରିୟା ପରେ ମୁଁ କଟକ ଫେରିଲି। କଲେଜରେ ପ୍ରଥମ ବର୍ଷଟି ଅଦ୍ୱୈତବାବୁଙ୍କ ବସାରେ ରହି ସେଠାରୁ ଚାଲିକରି କଲେଜ ଯିବା ଆସିବାକୁ ହେଉଥିଲା। ଅବଶ୍ୟ ବର୍ଷର ଶେଷ ଭାଗରେ ଗୋଟିଏ ପୁରୁଣା ସାଇକଲ କିଣି କିଛିଦିନ ଯିବାଆସିବା କରୁଥିଲି। କିନ୍ତୁ ଏତେ ଦୂରରେ ରହି କଷ୍ଟସାଧ୍ୟ ବିଜ୍ଞାନପାଠ ପଢ଼ିବା ଅସୁବିଧା ବୋଧ ହେବାରୁ କଲେଜ ନିକଟବର୍ତ୍ତୀ 'ବିଶ୍ୱଭବନ' ନାମକ ଏକ ମେସ୍‌ରେ ଦ୍ୱିତୀୟ ବର୍ଷଟା ରହିଲି। ସେତେବେଳେ ଆମ ଦେଶର ଆର୍ଥିକ ପରିସ୍ଥିତି ବିଶେଷ ଦୁର୍ଦ୍ଦଶାଗ୍ରସ୍ତ ଥିବାରୁ ସବୁ କ୍ଷେତ୍ରରେ ଅର୍ଥାଭାବ ଖୁବ୍ ଉତ୍କଟ ଥିଲା ଓ ସବୁ ଜିନିଷପତ୍ର ଦରଦାମ ବହୁ ପରିମାଣରେ ବଢ଼ିଯାଇଥିଲା। ମୋର ମାସିକ ଖର୍ଚ୍ଚପାଇଁ ବାପା ୩୫ ଟଙ୍କା ମାତ୍ର ପଠାଉଥିଲେ। ସେଥିରୁ କଲେଜ ଦରମା ଟ.୮/- ଘର ଭଡ଼ା ସହ ମେସ୍ ଖର୍ଚ୍ଚ ଟ.୧୫/୧୭ ଟଙ୍କା ଓ ବାକି ୧୦/୧୨ ଟଙ୍କାରେ

ଜଳଖିଆ, ଧୋବା, ଭଣ୍ଡାରି, କାଗଜ ଆଦି ଖର୍ଚ୍ଚ ଚଳାଇବାକୁ ପଡ଼ୁଥିଲା । ତେଣୁ ମତେ ଖୁବ୍ ସଂଯତ ହୋଇ ଚଳିବାକୁ ହେଉଥିଲା । ପାନ, ସିଗାରେଟ୍, ଚାହା, ସିନେମା, ଥିଏଟର ଓ ହୋଟେଲ ଖାଇବା ଆଦି ଅଭ୍ୟାସ ମୋର ନଥିଲା । ଏହାଛଡ଼ା ସେ କାଳର କଲେଜ ଛାତ୍ରମାନେ ଦାମିକା ପୋଷାକ ପତ୍ର ବ୍ୟବହାର ନ କରି ଆମର ତତ୍କାଳୀନ ସାମାଜିକ ଚଳଣି ଅନୁସାରେ ଧୋତି, କାମିଜ ବା ପଞ୍ଜାବି ବ୍ୟବହାର କରୁଥିଲେ । ତେଣୁ ପୋଷାକ ଓ ଯୋତାରେ ମୋର ଖର୍ଚ୍ଚ ମଧ୍ୟ ବେଶି ନ ଥିଲା । ଏହି ସବୁ କାରଣରୁ ମୁଁ କୌଣସିମତେ ଟାଣଟୁଣ ହୋଇ ଚଳିଯାଉଥିଲି ।

ଏବେ ଦେଶରୁ ବ୍ରିଟିଶ୍ ଶାସନର ବିଲୋପ ଓ ଇଂରେଜମାନଙ୍କର ବିଦାୟପରେ ବିଦେଶୀ ପୋଷାକର ବ୍ୟବହାର ଓ ବିଦେଶୀ ଢଙ୍ଗର ଜୀବନ ଯାପନ ଆମ ଦେଶ ଲୋକଙ୍କର, ବିଶେଷ କରି ଛାତ୍ର ସମାଜ, ଅଫିସର କର୍ମଚାରୀ ତଥା ଅଧିକାଂଶ ସହରବାସୀଙ୍କର ଯେପରି ସାଧାରଣ ଅଭ୍ୟାସରେ ପରିଣତ ହେଲାଣି, ସେତେବେଳେ ଆଦୌ ସେପରି ନ ଥିଲା । ଓଡ଼ିଶାରେ ଦେଢ଼ଶହ ବର୍ଷ ବ୍ରିଟିଶ ଶାସନ ସତ୍ତ୍ୱେ ଆମ ଲୋକେ ନିଜର ସଂସ୍କୃତି ଓ ଜାତୀୟତା ପ୍ରତି ଯେତେ ବିମୁଖ ହୋଇ ନଥିଲେ ଏବେ ସ୍ୱାଧୀନତାପରେ କିନ୍ତୁ ଏହାର ବିପରୀତ ପରିଲକ୍ଷିତ ହୁଏ । ଖାଲି ଓଡ଼ିଶା ନୁହେଁ, ସାରା ଭାରତବର୍ଷ ହିଁ ଏହି ଦୋଷଦୁଷ୍ଟ ଏହାହିଁ ଭାରତର ପ୍ରକୃତ ପ୍ରଗତିର ମୌଳିକ ଅନ୍ତରାୟ, ଯାହାକି ଏକ ସ୍ୱତନ୍ତ୍ର ଆଲୋଚନାର ବିଷୟ ।

ମୋର ଆର୍ଥିକ ଅବସ୍ଥା ଦ୍ୱିତୀୟ ବର୍ଷରେ ଟିକିଏ କୋହଳ ହୋଇଥିଲା । କାରଣ ସେ ବର୍ଷ ମୋତେ କଲେଜ ଦରମା ମାସିକ ଆଠଟଙ୍କା ଦେୟରୁ ଅବ୍ୟାହତି ମିଳିଥିଲା । ଯେଉଁ ଛାତ୍ରମାନେ ପ୍ରଥମ ବର୍ଷ ପାଠ୍ୟକ୍ରମରେ ସଫଳତା ପ୍ରଦର୍ଶନ କରିଥାନ୍ତି, ସେମାନଙ୍କର ଆର୍ଥିକ ସ୍ୱଚ୍ଛଳତା ନ ଥିଲେ ସେମାନଙ୍କର ମଧ୍ୟରୁ ନିର୍ଦ୍ଦିଷ୍ଟ ଶତାଂଶ ଛାତ୍ରଙ୍କୁ ଏପରି ସୁବିଧା ମିଳିଥାଏ ।

ଏହିପରି ଦୁଇବର୍ଷ କଟିଗଲା । ଆଇ.ଏସ୍‌ସି. ପାସ୍ କଲି । କିନ୍ତୁ ତୃତୀୟ ଶ୍ରେଣୀରେ । ଏହାର ପ୍ରଧାନ କାରଣ ହେଲା ମୋ ନିଜ ରୁଚି ଓ ଇଚ୍ଛାନୁସାରେ ଆଇ.ଏ. ନ ପଢ଼ି ଅନ୍ୟମାନଙ୍କର ପରାମର୍ଶାନୁସାରେ ଭବିଷ୍ୟତ ନିଯୁକ୍ତି ସୁବିଧା ଦୃଷ୍ଟିରେ ବିଜ୍ଞାନ (ଆଇ.ଏସ୍‌ସି.) ଶ୍ରେଣୀରେ ନାମ ଲେଖାଇ ଥିଲି । ଦ୍ୱିତୀୟ କାରଣ ହେଲା, ତତ୍କାଳୀନ ପାଟଣା ବିଶ୍ୱବିଦ୍ୟାଳୟରେ ପରୀକ୍ଷାର ମାନ (standard) ଉଚ୍ଚ ଥାଇ ଶିକ୍ଷାଦାନର ମାନ ନୀଚ ଥିବାରୁ ପରୀକ୍ଷାରେ ସାଧାରଣତଃ ୨୦/୨୨ ଶତାଂଶ ପିଲା ପାସ୍ କରୁଥିଲେ, ଅଧିକାଂଶ ତୃତୀୟ ଶ୍ରେଣୀରେ ।

ଆଇ.ଏସ୍‌ସି. ପଢ଼ିବାର ମୋର ଯେଉଁ ଉଦ୍ଦେଶ୍ୟ ଥିଲା, ତାହା ସାଧିତ ହୋଇ ପାରିଲା ନାହିଁ । କାରଣ ସେତେବେଳେ ଓଡ଼ିଶାରେ ଡାକ୍ତରୀ ବା ଇଞ୍ଜିନିୟରିଂ କଲେଜ ନ ଥାଇ ସୁଦୂର ବାଙ୍କିପୁର ପାଟଣାରେ ଥିଲା । ଆମର ଆର୍ଥିକ ଅବସ୍ଥା ଅନୁକୂଳ ନ ଥିବାରୁ ବ୍ୟୟବହୁଳ ଡାକ୍ତରୀ ବା ଇଞ୍ଜିନିୟରିଂ ପାଠ ଏତେ ଦୂର ଯାଇ ଚାରିପାଞ୍ଚ ବର୍ଷ ପଢ଼ିବାକୁ ସାହସ ହେଲା ନାହିଁ । ପ୍ରତିକୂଳ

ଆର୍ଥିକ ଅବସ୍ଥା ହେତୁ ସେ ବର୍ଷ କଟକ ସହରରେ ବି.ଏ. ବା ବି.ଏସ୍‌ସି. ପଢ଼ିବାର ମଧ୍ୟ ସୁଯୋଗ ହେଲା ନାହିଁ । ତେଣୁ ସେ ବର୍ଷ କିଛି ନ କରି ଘରେ ରହିବାକୁ ହେଲା ଓ ବେଳେ ବେଳେ କିଛି ଚାକିରି ପାଇଁ ଚେଷ୍ଟା କରିବାକୁ ହେଲା ।

ସେତେବେଳେ ସ୍ଥାନୀୟ ଡାକଘରେ ଶ୍ରୀ ଭୂପାଳଚନ୍ଦ୍ର ଭଟ୍ଟାଚାର୍ଯ୍ୟ ନାମକ ଜଣେ ପୋଷ୍ଟମାଷ୍ଟର ଥିଲେ । ସେ ଆମ ପରିବାର ସହିତ ବେଶ୍ ପରିଚିତ ଥିଲେ ଏବଂ ମତେ ଖୁବ୍ ଭଲ ପାଉଥିଲେ । ସେ ସ୍ୱଭାବତଃ ଜଣେ ପରୋପକାରୀ ବ୍ୟକ୍ତି ଥିବାରୁ ମତେ ଚାକିରି ପାଇବାରେ ସାହାଯ୍ୟ କରିବାକୁ ତତ୍ପର ଥିଲେ । ଥରେ ତାଙ୍କ ବିଭାଗୀୟ ତତ୍ତ୍ୱାବଧାରକ ଡାକଘର ପରିଦର୍ଶନ ପାଇଁ ଆସିଥିବା ବେଳେ, ସେ ତାଙ୍କୁ ନାମ ସୁପାରିସ କରି ମତେ ଏକ ନିଯୁକ୍ତି ଦେବାକୁ ଅନୁରୋଧ କରିଥିଲେ । ସେତେବେଳେ ତାଙ୍କ ଅଫିସର ଗୋଟଏ ଚାକିରି ଖାଲି ଥିବାରୁ ସେଥିପାଇଁ ମୁଁ ଶୀଘ୍ର ଏକ ଦରଖାସ୍ତ ପଠାଇବାକୁ କହିଗଲେ । ସେ ଗଲାପରେ, ଭୂପାଳବାବୁ ମତେ ଡକାଇ ଶୀଘ୍ର ଦରଖାସ୍ତ ଦେବାକୁ କହିଲେ । ମୁଁ ଆସି ଏକଥା ଘରେ କହିଲି । ବୋଉ ଶୁଣିଲା ମାତ୍ରେ ଦରଖାସ୍ତ ଦେବାକୁ  ମତେ ମନା କରି କହିଲା ତୁ ଡାକ ବିଭାଗରେ ଚାକିରି କରିବା ମୁଁ ଚାହେଁ ନା, "କାରଣ ସେ ବିଭାଗରେ ଚାକିରି କଲେ ଜୀବନର ଶେଷାବସ୍ଥାରେ ତତେ ଦେଖି ପାରିବି ନାହିଁ" ଏହା କହି ସେ ନିଜେ ଜାଣିଥିବା ଓ ଦେଖିଥିବା ଘଟଣାଟିର କଥା କହିଲା । ସୁନ୍ଦରଗଡ଼ରେ ଆମେ ରହୁଥିବା ଘର ଆଗରେ ସ୍ଥାନୀୟ ଡାକ ଘରର ପୂର୍ବତନ ପୋଷ୍ଟମାଷ୍ଟର ଧରଣୀଧର ବାନାର୍ଜୀଙ୍କର ମା' ଖୁବ୍ ବେମାର ଥିବାରୁ ସେ ଶୀଘ୍ର ଘରକୁ ଯିବାକୁ ଚିଠି ପାଇଲେ । ଚିଠି ପାଇ ସେ ଛୁଟି ପାଇଁ ଦରଖାସ୍ତ ଦେଲେ । ଛୁଟି ମଞ୍ଜୁର ହେବାରେ ପ୍ରଥମେ ଡେରି ହେଲା । ଚିଠିପରେ ମା'ଙ୍କ ଅବସ୍ଥା ଖୁବ୍ ଖରାପ ବୋଲି ଶୀଘ୍ର ଯିବାକୁ ଟେଲିଗ୍ରାମ ଆସିଲା । ଛୁଟି ମଞ୍ଜୁର ହେଲା ଓ ଜଣକୁ କାର୍ଯ୍ୟଭାର  ଦେଇ ଘରକୁ ଯିବେ ବୋଲି ଆଦେଶ ମିଳିଲା । କିନ୍ତୁ ଯାହାଙ୍କୁ କର୍ଯ୍ୟଭାର ଦେବାର କଥା ସେ ଅନ୍ୟସ୍ଥାନରୁ ତାଙ୍କ କାର୍ଯ୍ୟରୁ ଅବ୍ୟାହତି ପାଇ ଆସିବାରେ ଡେରିହେଲା । ଇତ୍ୟବସରେ ଅବସ୍ଥା ସାଂଘାତିକ, ଅତି ଶୀଘ୍ର ଆସେ ବୋଲି ପୁଣି ଟେଲିଗ୍ରାମ ଆସିଲା । ତଥାପି କାର୍ଯ୍ୟଭାର ନେବାଲୋକ ନ ଆସିବାରୁ ସେ ଯାଇପାରିଲେ ନାହିଁ । ଏହା ପରେ ମା'ଙ୍କର ଦେହାନ୍ତ ହୋଇଗଲା ବୋଲି ଟେଲିଗ୍ରାମ ଆସିଲା । ଟେଲିଗ୍ରାମ ପାଇଲା ପରେ କାର୍ଯ୍ୟଭାର ନେବାଲୋକ ଆସି ପହଞ୍ଚିବାରୁ ସେ କାର୍ଯ୍ୟଭାର ଦେଇ ଅତ୍ୟନ୍ତ ଦୁଃଖରେ ଘରକୁ ଗଲେ । ଏହି ପ୍ରତ୍ୟକ୍ଷ ଘଟଣା ମୋ ବୋଉ ମନରେ ଖୁବ୍ ଆଲୋଡ଼ନ ସୃଷ୍ଟି କରି ଗଭୀର ରେଖାପାତ କରିଥିଲା । ତେଣୁ ଡାକ ବିଭାଗରେ ଚାକିରି ପାଇଁ ଦରଖାସ୍ତ ଦେବାକୁ ମତେ ମନା କରିଦେଲା । ଏହି ହେତୁ ସେ ବିଭାଗରେ ମୋର ଚାକିରି କରିବା ନୋହିଲା ।

ତାପରେ ମତେ ଆଉ ଦୁଇବର୍ଷ କଟକ କଲେଜରେ ପଢ଼ାଇବା ପାଇଁ ବୋଉ ବାରମ୍ବାର ବାପାଙ୍କୁ କହିଲା । ବାପା ଶୁଣନ୍ତି କିନ୍ତୁ କହିବେ କ'ଣ ସବୁତ ଅର୍ଥ ଉପରେ ନିର୍ଭର କରୁଥାଏ ସେ ଖାଲି କହନ୍ତି, ହଉ ଈଶ୍ୱର ଯାହା କରିବେ । ଏହିପରି କେତେ ମାସ ଗଲା ପରେ କଲେଜରେ ନାଁ ଲେଖାଇବାବେଳେ ନିକଟେଇ ଆସିଲା । ଶେଷରେ ସେ ସ୍ଥିର କଲେ ଧାର ଉଧାର କରି ଯେପରି ହେଉ ନାଁ ଟା ଲେଖାଇ ଦେବେ । ତା' ପରେ ମାସକୁ ମାସ ଯାହା ନିତାନ୍ତ ଦରକାର କୌଣସି ମତେ ପଠାଇବେ । ସେ ଯେଉଁ କାର୍ଯ୍ୟ କରି ପରିବାର ପୋଷଣ କରୁଥିଲେ, ସେଥିରୁ ଯଥେଷ୍ଟ ସଞ୍ଚୟ କରିବା ସମ୍ଭବ ନଥିଲା । ତାଙ୍କର ସୀମିତ ଆୟ ସତ୍ତ୍ୱେ ସେ ଯେ ମତେ ଆଉ ଦୁଇବର୍ଷ ପଢ଼ାଇବାକୁ ସାହସ ବାନ୍ଧି ସ୍ଥିର କଲେ, ତା'ର ପଶ୍ଚାତରେ ଥିଲା ବୋଉର ପ୍ରେରଣା ଓ ମୋର ବଳବତୀ ଇଚ୍ଛା । ମୁଁ ଯଥାସମୟରେ କଟକ ଯାଇ ବି.ଏ. କ୍ଲାସରେ ନାମ ଲେଖାଇଲି, ବାହାରେ କୌଣସି ମେସରେ ନ ରହି କଲେଜ ହଷ୍ଟେଲରେ ରହିଲି । ବିଜ୍ଞାନ ଅପେକ୍ଷା ସାହିତ୍ୟ ବିଷୟ ପ୍ରତି ମୋର ଅନୁରାଗ ବେଶି ଥିବାରୁ ମୁଁ ବି.ଏସ୍‌ସି. ନ ପଢ଼ି ବି.ଏ. ପଢ଼ିଲି । ସେଥି ନିମନ୍ତେ ବି.ଏ.ରେ ଗଣିତ ପରିବର୍ତ୍ତେ ସଂସ୍କୃତ ବିଷୟ ନେଲି । ସେଥିପାଇଁ ମତେ ଆଇ.ଏ. ଶ୍ରେଣୀରେ ମଧ୍ୟ ଏକାବେଳେ ନାମ ଲେଖାଇ ସଂସ୍କୃତରେ ବର୍ଷକପରେ ଆଇ.ଏ. ପାସ୍ କରିବାକୁ ହେଲା ।

ନାମ ଲେଖାଇବାର କିଛିଦିନ ପରେ ସୁନ୍ଦରଗଡ଼ର ଜଣେ ପରୋପକାରୀ ବିଶିଷ୍ଟ ଭଦ୍ରବ୍ୟକ୍ତି ମତେ ନିୟମିତ କିଛି ଅର୍ଥ ସାହାଯ୍ୟ ଦେବାକୁ ଇଚ୍ଛା ପ୍ରକାଶ କରି ବାପାଙ୍କୁ କହିଲେ । ତାଙ୍କ ନାମ ଥିଲା ଶ୍ରୀ ରାହାସ ବିହାରି ବହିଦାର, ସେଠାର ତହସିଲଦାର ମାଜିଷ୍ଟ୍ରେଟ । ତାଙ୍କର ବଦାନ୍ୟତା ପାଇଁ ମୁଁ ତାଙ୍କଠାରେ ଚିରଋଣୀ । ତାଙ୍କର ସାହାଯ୍ୟ ଯୋଗୁଁ ହିଁ ବାପା ମତେ ନିୟମିତ ଆବଶ୍ୟକ ଖର୍ଚ୍ଚ ପଠାଇ ପାରୁଥିଲେ ।

କଲେଜରେ ଯୋଗ ଦେବାର କିଛିଦିନ ପରେ ପାଟଣା ଇଞ୍ଜିନିୟରିଂ କଲେଜରୁ ଗୋଟିଏ ଟେଲିଗ୍ରାମରେ ଡାକରା ଆସିଲା ଶୀଘ୍ର ଯାଇ ସେଠାରେ ନାମ ଲେଖାଇବାକୁ । କଟକ କଲେଜରେ ନାମ ଲେଖାଇବା ପୂର୍ବରୁ ସେଠାରେ ନାମ ଲେଖାଇବା ପାଇଁ ଗୋଟିଏ ଦରଖାସ୍ତ ପଠାଇ ଦେଇଥିଲି । ଆବଶ୍ୟକୀୟ ଦରଖାସ୍ତ ଫି ଦେଇ ନ ଥିଲେ ହେଁ ଡାକରା ଆସିଲା । କାରଣ ସେତେବେଳେ ଓଡ଼ିଶା ଛାତ୍ରଙ୍କ ପାଇଁ ସେ କଲେଜରେ ଦୁଇଟି ସ୍ଥାନ ସଂରକ୍ଷିତ ଥିଲା । ବୋଧହୁଏ ମତେ ମିଶାଇ ଦୁଇଜଣ ଓଡ଼ିଶା ଛାତ୍ର ଦରଖାସ୍ତ ଦେଇଥିବାରୁ ମତେ ଡକାହୋଇଥିଲା । କିନ୍ତୁ ଆବଶ୍ୟକ ଅର୍ଥର ଅଭାବ ହେତୁ ସେ ସୁଯୋଗ ହରାଇବାକୁ ହେଲା ।

ମୁଁ ରହୁଥିଲି କଲେଜର ପୂର୍ବପାଖ ଛାତ୍ରାବାସରେ । ସେତେବେଳେ ଶ୍ରୀ ଶ୍ୟାମଚନ୍ଦ୍ର ତ୍ରିପାଠୀ (ଆଇ.ଇ.ଏସ୍) ପଦାର୍ଥ ବିଜ୍ଞାନ ପ୍ରଫେସର ଥିଲେ ଆମ ଛାତ୍ରାବାସରେ ଅଧୀକ୍ଷକ । (Warden) ଶ୍ରୀଯୁକ୍ତ ଆର୍ତ୍ତବଲ୍ଲଭ ମହାନ୍ତି (ପରେ ରାୟ ବାହାଦୁର) ଓ ଶ୍ରୀ ଗୁରୁଚରଣ ମହାନ୍ତି

ଥିଲେ ତତ୍ତ୍ୱାବଧାରକ ଓ ସହକାରୀ ତତ୍ତ୍ୱାବଧାରକ । ସେମାନଙ୍କ ଅମଳରେ ଛାତ୍ରବାସରେ ପୂର୍ବ ପ୍ରଚଳିତ ବିଭିନ୍ନ ମେସ୍ ପରିବର୍ତ୍ତେ ସମସ୍ତ ଛାତ୍ରମାନଙ୍କ ପାଇଁ ଗୋଟିଏ ସାଧାରଣ (Common) ମେସ୍ ପ୍ରଥମେ ପ୍ରତିଷ୍ଠିତ ହେଲା । ଏହା କରାଯାଇଥିଲା ବୃହତ୍ତର ସମୂହ ସ୍ୱାର୍ଥ ଦୃଷ୍ଟିରୁ, ଅର୍ଥାତ୍ ଅନ୍ତେବାସୀ ଛାତ୍ରମାନଙ୍କ ମଧ୍ୟରେ ଐକ୍ୟ ଓ ସଂହତି ସୃଷ୍ଟି ତଥା ଖାଦ୍ୟପେୟର ମାସିକ ଖର୍ଚ୍ଚ ହ୍ରାସ କରି ମାସକୁ ଟ. ୧୨ ପଡୁଥିଲା ଏହି ଖର୍ଚ୍ଚରେ ଦିଆଯାଉଥିଲା ଭାତ, ଡାଲି, ସାଧା ଓ ମାଛ ତରକାରି, ଭଜା ଏବଂ ସପ୍ତାହରେ ଥରେ ମାଂସ ଏହାଛଡ଼ା ମାସରେ ଥରେ ଭୋଜି ହେଉଥିଲା । ପିଲାମାନେ ଜଳଖିଆ ହାତରୁ କିଣି ଖାଉଥିଲେ । ସେତେବେଳେ ଦୁଇ ଅଣା (ଏବର ବାର ନୂଆ ପଇସା)ରେ ଚାରିଟା ଖାଣ୍ଟି ଘିଅର ପୁରି, ଗୋଟିଏ ବଡ଼ ରସଗୋଲା (ଏବର ଟଙ୍କିକିଆ ରସଗୋଲାରୁ ବଡ଼) ଓ କିଛି ତରକାରି (ବିନାମୂଲ୍ୟରେ) ମିଳୁଥିଲା । ମୁଁ ଯେଉଁ ପଇଁତିରିଶ ଟଙ୍କା ବାପାଙ୍କଠାରୁ ପ୍ରତିମାସ ପାଉଥିଲି ସେଥିରେ ସାଧାରଣ ଭାବେ ଚଳିଯାଉଥିଲା । ଶ୍ରୀଯୁକ୍ତ ତ୍ରିପାଠୀଙ୍କ ପରି ଜଣେ ବିଲାତ ଫେରନ୍ତା ଦକ୍ଷ ଅଧୀକ୍ଷକ (Warden) ଓ ଦୁଇ ଜଣ ଅଧ୍ୟାପକଙ୍କ ତତ୍ତ୍ୱାବଧାନ ପରିଚାଳିତ ଛାତ୍ରାବାସର ଶୃଙ୍ଖଳିତ ବାୟୁମଣ୍ଡଳ ଓ ପରିବେଶ ମଧ୍ୟରେ ପ୍ରାୟ ଦୁଇବର୍ଷ ବେଶ୍ ସ୍ୱଚ୍ଛନ୍ଦରେ ଅତିବାହିତ ହୋଇଥିଲା । ଯଥା ସମୟରେ ବି.ଏ. ପରୀକ୍ଷା ଦେଇ ସାରି ସୁନ୍ଦରଗଡ଼ ଫେରିଲି ।

•

---

*ଦିବ୍ୟଜୀବନ ପଥେ,* ସ୍ୱ-ପ୍ରକାଶନ, ୧୯୯୮

# କଲେଜ ଶିକ୍ଷା

## ଶରତ ଚନ୍ଦ୍ର ମହାରଣା

ମୁଁ ୧୯୨୫ ଡିସେମ୍ବରରେ ମ୍ୟାଟ୍ରିକୁଲେସନ୍‌ର ଟେଷ୍ଟ୍ ଦେବାବେଳେ classes ଥିଲା :-

Lower Primary = ଶିଶୁ, ୧ମ, ୨ୟ ଓ ୩ୟ ଶ୍ରେଣୀ = ୪ ବର୍ଷ

Upper Primary = ୪ର୍ଥ ଓ ୫ମ ଶ୍ରେଣୀ = ୨ ବର୍ଷ

Middle English = ୬ଷ୍ଠ ଓ ୭ମ ଶ୍ରେଣୀ = ୨ ବର୍ଷ

Higher English = ୮ମ, ୯ମ, ୧୦ମ ଓ ୧୧ଶ ଶ୍ରେଣୀ = ୪ ବର୍ଷ

ମୋଟ = ୧୨ ବର୍ଷ

**ଆମ ସମୟରେ**

୧) H. Lambert, Principal, I.E.S.

୨) Dr. Bawa Kartar Singh, Ph.D., I.E.S., Head of Chemistry

୩) P. K. Parija, M.A., I.E.S., Head of Botany

୪) ଶ୍ୟାମଚରଣ ତ୍ରିପାଠୀ, ବି.ଏ. (ଅକ୍ସଫୋର୍ଡ), I.E.S., Head of Physics

୫) ନାରାୟଣ ମିଶ୍ର, ଏମ୍.ଏସ୍‌ସି.(କଲିକତା), Professor of Physics

୬) ସୁକାନ୍ତ ରାଓ (ମଧୁସୂଦନ ରାଓଙ୍କର କନିଷ୍ଠ ପୁତ୍ର), Lect. in Physics

୭) ରାଧାକୃଷ୍ଣ ଦାସ, Lect. in Physics

୮) Atul Ganguli, B.A., Sir P.C. Royଙ୍କର ଛାତ୍ର, Lect. in Chemistry

୯) ଗୁରୁଚରଣ ମହାନ୍ତି, ଏମ୍.ଏସି., Lect. in Chemistry

୧୦) ଲୋକନାଥ ମିଶ୍ର, ଏମ୍.ଏସ୍‌ସି, Lect. in Chemistry, ଥିଲେ। ସାରଦାକାନ୍ତ ଗାଙ୍ଗୁଲି, ଏମ୍.ଏ. (କଲିକତା), Head of Mathematics Dept.

୧୧) ପ୍ରମଥନାଥ ଦେ, M.Sc. (Chemistry) ପରେ ଏମ୍.ଏ.(ଲଣ୍ଡନ), Lect. in Mathematics.

୧୨) ହରେକୃଷ୍ଣ ଦାସ, ଏମ୍.ଏ.(କଲିକତା), Lect. in Mathematics.

୧୩) ଦେବବ୍ରତ ଚାଟାର୍ଜୀ, ଏମ୍.ଏ.(କଲିକତା), Botany Demonstrator.

(୧୪) ପରଶୁରାମ ମିଶ୍ର, ଏମ୍.ଏସ୍‌ସି.(କଲିକତା)
ଘର ତୁଳଣ୍ଡୀ ଗ୍ରାମ, ବରପାଲି ଥାନାରେ- ପରେ ବିଲାତ ଗଲେ, ପି.ଏଚ୍‌ଡ଼ି ପାଇଲେ - ସମ୍ବଲପୁର ୟୁନିଭରସିଟିରେ କୁଳପତି

୧୫) କାଶୀନାଥ ଦାଶ, ଏମ୍.ଏ. (ସଂସ୍କୃତ), କଲିକତା - ସଂସ୍କୃତରେ ଅଧ୍ୟାପକ,

୧୬) ଆର୍ତ୍ତବଲ୍ଲଭ ମହାନ୍ତି, ଏମ୍.ଏ. (ସଂସ୍କୃତ) କଲିକତା - ଓଡ଼ିଆରେ ଓ ସଂସ୍କୃତରେ ଅଧ୍ୟାପକ

୧୭) ଲକ୍ଷ୍ମୀକାନ୍ତ ଚୌଧୁରୀ, ଏମ୍.ଏ.(ସଂସ୍କୃତ) କଲିକତା- ଓଡ଼ିଆରେ ଓ ସଂସ୍କୃତରେ ଅଧ୍ୟାପକ,

୧୮) ଗୋପାଳଚନ୍ଦ୍ର ଗାଙ୍ଗୁଲି, ଏମ୍.ଏ. କଲିକତା - Head in English.

୧୯) କୃତ୍ତିବାସ ସାମନ୍ତରାୟ, ଏମ୍.ଏ., କଲିକତା - Lect. in English.

୨୦) ଯୋନାଥନ ମହାନ୍ତି, ଏମ୍.ଏ., କଲିକତା - Lect. in English, ଘର ପେଟିନ୍ ସାହି, କଟକ। ଗୋପବନ୍ଧୁ ଚୌଧୁରୀଙ୍କ ସହ କଲିକତାରେ ପଢୁଥିଲେ, (ଏହାଙ୍କର ସାନ ଭଉଣୀ ମିସ୍ ଯମା ମହାନ୍ତି, ବି.ଏ., ବି.ଇଡ଼ି., ବି.ଓ., ପାଟଣା ସରକାରୀ ବାଳିକା ସ୍କୁଲରେ ମିଷ୍ଟ୍ରେସ୍ ଥିଲେ ଓ ପରେ ରାମଚନ୍ଦ୍ରପୁର ବେସରକାରୀ ବେସିକ୍ ସ୍କୁଲରେ ଶିକ୍ଷୟିତ୍ରୀ ଥିଲେ)

୨୧) ବିପିନ ବିହାରୀ ରାୟ, ଏମ୍.ଏ., କଲିକତା, Head of Philosophy Dept.

୨୨) ମୋହିନୀ ମୋହନ ସେନାପତି (କବି ଫକୀର ମୋହନଙ୍କର ପୁଅ), Lect. in Philosophy

୨୩) ରତ୍ନାକର ପତି (ଗୋପବନ୍ଧୁ ଦାସେ ଆପଣେଙ୍କ ଜ୍ୟେଷ୍ଠ ଜାମାତା)- ଏମ୍.ଏ.(କଲିକତା) Lect. in Philosophy. ଘର ତଅଁରପା (ବିରିବାଟୀ ପାଖରେ, କଟକ ଜିଲ୍ଲା)

୨୪) ନିଶିକାନ୍ତ ସାନ୍ୟାଲ, ଏମ୍.ଏ.(କଲିକତା) - ଇତିହାସର ଅଧ୍ୟାପକ

୨୫) ଘନଶ୍ୟାମ ଦାସ, ବି.ଏ. (ଲଣ୍ଡନ) - ଘର କଟାପାଲି, ସମ୍ବଲପୁର ଅଧ୍ୟାପକ ହେଲେ

୨୬) ନିର୍ମଳ ଚନ୍ଦ୍ର ବାନାର୍ଜୀ, ଏମ୍.ଏ. (କଲିକତା), ଇତିହାସର ଅଧ୍ୟାପକ, ଘର ଉପର ବଙ୍ଗାଳୀ ସାହି, କଟକ ଟାଉନ୍

୨୭) ହେଡ୍ କ୍ଲର୍କ - ଧ୍ୱଜାଧାରୀ ସେନ୍

୨୮) ପରେ ହେଡ୍ କ୍ଲର୍କ - ଜଗନ୍ନାଥ ମିଶ୍ର। ପଚାରୁଥିଲେ ଏଡ୍‌ମିଶନ୍ ସମୟରେ ପ୍ରତି ଛାତ୍ରକୁ "କି ନାମ୍ ତୋମାର ?"ଏବଂ ନାମ ମନେ ରଖିପାରୁଥିଲେ।

୨୯) କ୍ଲର୍କ - ସାଧୁଚରଣ ପରିଜା, ଦ୍ୱାରିକାନାଥ ନାୟକ ଆଦି
୩୦) କନିକା ଲାଇବ୍ରେରୀରେ ଲାଇବ୍ରେରିଆନ୍ - ଦାମୋଦର ମିଶ୍ର; ୩ ଜଣ ପିଅନ୍
୩୧) ବଳଭଦ୍ର ପ୍ରସାଦ, D.Sc., Chemistry ବିଭାଗ
୩୨) କିଶୋର ପ୍ରସାଦ ସିହ୍ନା, ଏମ୍.ଏ. English ବିଭାଗ
୩୩) ଗୋରଖ ନାଥ ସିହ୍ନା, ଏମ୍.ଏ, (Cambridge) - Economics ବିଭାଗ
୩୪) ଆଗରୁ ଥିଲେ ଏଚ୍.ଆର୍. ବାଥେକା, ଆଇ.ଇ.ଏସ୍. ବିଲାତ ଫେରନ୍ତା
୩୫) ଆଗରୁ ଥିଲେ ସୁରେଶଚନ୍ଦ୍ର ବର୍ଦ୍ଧନ, ଏମ୍.ଏ., (କଲିକତା) - Economics
୩୬) Sir Jadunath Sarkar (History), Principal, Ravenshaw College, Cuttack.

୧୯୨୫-୧୯୨୭ ମସିହାରେ ମୁଁ ଛୁଟି ସମୟରେ ରେମୁଣାରେ ଥିବାବେଳେ, ମୋର ବାବା ଚନ୍ଦ୍ରମୋହନ ମହାରଣା ବାଲେଶ୍ୱର ଟ୍ରେଜରୀରୁ ପେନ୍‌ସନ୍ ଆଣିବାପାଇଁ ଚାଲି କରି ଯା ଆସ କରୁଥିଲେ ଏବଂ ମୁଁ ତାଙ୍କ ସହ ୨/୪ ଥର ଯାଇଥିଲି। ସେ ଛତା ବା ବାଡ଼ି ଧରୁ ନଥିଲେ; ସଡ଼କର ବାମ ପାଖରେ, ଘାସ ଉପରେ ବା ଅମଡ଼ା ବାଟରେ ଚାଲୁଥିଲେ; ବାଟର ତଳକୁ ବେଶି ଚାହୁଁଥିଲେ, ଏଣେତେଣେ ଚାହୁଁ ନଥିଲେ। ସେ ପ୍ରାୟ ମୌନ ରହୁଥିଲେ, ଗପ କରି ଚାଲୁ ନଥିଲେ।

ସେ ପେନ୍‌ସନ୍-ବିଲ୍‌ରେ ଦସ୍ତଖତ ଓ ଟଙ୍କା ପାଇବାର ଖାତାରେ ଦସ୍ତଖତ କରି ଦେଉଥିଲେ। ସେ ଟଙ୍କାପଇସା ଛୁଉଁ ନ ଥିବାରୁ, ମୁଁ ତାହା (ଟଙ୍କା) ଧରି ଘରକୁ ଆସୁଥିଲି।

ଥରେ, ବାଲେଶ୍ୱରର କଲେକ୍ଟର ସୁଦର୍ଶନ ଦାସ ତାଙ୍କ ଅଫିସରେ ବସିଥିଲେ ଏବଂ ମୋର ବାବାଙ୍କୁ ଭିତରକୁ ଡକାଇ, ଏକ ଚୌକିରେ ବସାଇଲେ ଏବଂ ପଚାରିଲେ- "ଆପଣ ଓଡ଼ିଆଙ୍କର ବିରୋଧୀ କାର୍ଯ୍ୟ କରିଛନ୍ତି !" ବାବା ଘଟଣାଟି କଅଣ ବୋଲି ପଚାରିବାରୁ, ସେ କହିଲେ - "ଆପଣ ହରିଶ୍ଚନ୍ଦ୍ର ବଡ଼ାଲ (permanently domiciled Bengali) କୁ testimonial ଦେଇଛନ୍ତି।" ବାବା କହିଲେ- "ହରିଶ ମୋର ଛାତ୍ର ବାଲେଶ୍ୱର ଜିଲ୍ଲା ସ୍କୁଲରେ ଥିଲା ଏବଂ ସେ All India Services - ଯଥା ଆଇ.ସି.ଏସ୍., ଆଇ.ଏଫ୍.ଏସ୍., ଆଇ.ଆର୍.ଏସ୍. ଚାକିରି ପାଇଁ ପ୍ରାର୍ଥୀ ଅଟେ। ସେ ସାମାନ୍ୟ ସବ୍‌ଡେପୁଟି ବା ଡେପୁଟି ଚାକିରି ପାଇଁ ଦରଖାସ୍ତ କରିନାହିଁ।"

ସୁଦର୍ଶନ ବାବୁ ବୁଝିଗଲେ ଓ ନୀରବ ରହିଲେ।

ମୋର ବାବା ନିଖିଳ ଭାରତ ପ୍ରତିଯୋଗିତା ପାଇଁ merit and efficiency ପାଇଁ ଉତ୍ସାହ ଦେଉଥିଲେ। ସେ ଉପର ଅଫିସର ବା ସାହେବମାନଙ୍କୁ ନ୍ୟାଯ୍ୟ କଥାରେ ଡରୁ ନ ଥିଲେ।

ବାଲେଶ୍ୱର ଜିଲ୍ଲା ସ୍କୁଲର ଛାତ୍ର ବ୍ରଜକିଶୋର ଦାସ (ସୋରର ମଙ୍ଗଳପୁର ଭୂୟାଁ ପରିବାରର ପୁଅ) କୁ ରାସ୍ତାରେ ଜଣେ ମିଲିଟାରୀ ସର୍ଜେଣ୍ଟ ଅପମାନ ବା ଅବଜ୍ଞା କରି କହିବାରୁ, ବାବା ମୁକୁନ୍ଦ ପ୍ରସାଦ ଦାସ (ମୋକ୍ତାର- ବ୍ରଜର ମଉସା)ଙ୍କୁ କହିଲେ- ସେହି ସର୍ଜେଣ୍ଟ୍

ବିରୋଧରେ ମକଦ୍ଦମା କରନ୍ତୁ । ଉକ୍ତ ସର୍ଜେଣ୍ଟ୍ ଏହା ଜାଣି ପାରି, ବ୍ରଜଠାରେ (ବ୍ରଜର ବସାରେ) ନିଜର ଭୁଲ ଜଣାଇଗଲେ ।

(ମୁଁ ଆଇ.ଏସ୍‌ସି.ରେ P.C.M. ସହିତ ୪ର୍ଥ Optional Botany ନେଇଥିଲି । ଦ୍ୱିତୀୟ ବର୍ଷରେ ମୁଁ Botany ଛାଡ଼ିଦେଲି । ସବୁଥିରେ ଭଲ କରୁଥିଲି, ପ୍ରାୟ ଶତକଡ଼ା ୭୦ ରୁ ୮୫ ନମ୍ବର ରଖୁଥିଲି । ୧୯୨୬ରେ ଗଣେଶ ପୂଜାର ବାସି ଦିନ ସାମାନ୍ୟ ଫୁଟବଲ ଖେଳରେ ମୋର ଡାହାଣ ହାତରେ Collis fracture ହୋଇଗଲା । ତହିଁ ଆର ଦିନ ମୋର ମେଡ଼ିକାଲ୍ ସ୍କୁଲ ହସ୍ପିଟାଲ୍‌ରେ Chloroform ଦେଇ ମୋତେ ଅଜ୍ଞାନ କରାଇ ଡାକ୍ତର ଜୟନ୍ତ ରାଓ, Dy. Superintendent ତାକୁ set କଲେ । ଅସହ୍ୟ ଯନ୍ତ୍ରଣା ୩ ଦିନ ହୋଇଥିଲା- ହାତ ବିନ୍ଧିବାରେ । ମୋର ପଢ଼ାଲେଖାରେ ଅଢ଼େଇ ମାସ ବ୍ୟାଘାତ ଘଟିଲା । ୧୨ଦିନ ପରେ ମୁଁ କେବଳ ଶ୍ରେଣୀରେ ବସି lectures ଶୁଣୁଥିଲି । ବହୁ ପରିଶ୍ରମରେ ପରେ ପଢ଼ା ଓ ପ୍ରାକ୍ଟିକାଲ୍ ପୂରଣ କଲି । ସେହି ହେତୁରୁ ଦ୍ୱିତୀୟ ବର୍ଷରେ ମୁଁ Optional Botany ଛାଡ଼ିଦେଲି ।

୧୯୨୭ରେ ଆଇ.ଏସ୍‌ସି. ଦ୍ୱିତୀୟ ବର୍ଷରେ ପ୍ରାୟ ଅଗଷ୍ଟ ମାସରେ ମହାନଦୀ, ବୈତରଣୀ, ବ୍ରାହ୍ମଣୀ ନଦୀଗୁଡ଼ିକରେ ପ୍ରବଳ ଘରଭଙ୍ଗା ବନ୍ୟା ହେଲା । ଶ୍ରୀ ସୁକାନ୍ତ ରାଓ, M.Sc (ଭକ୍ତସୂଦନ ରାଓଙ୍କର ୩ୟ ପୁତ୍ର) ଓ ଶ୍ରୀ ପି.ଏନ୍. ମଜୁମ୍‌ଦାର, ଏମ୍.ଏସ୍‌ସି. (ଉଦ୍ଭିଦ ବିଜ୍ଞାନ) ନୂଆ lecturerଙ୍କ ତତ୍ତ୍ୱାବଧାନରେ ଆମେ ୧୫ ଜଣ କଲେଜ ଛାତ୍ର ରିଲିଫ୍ କାମ କରିବାକୁ ତା.୧୩.୧୦.୧୯୨୭ରେ କଲେଜରୁ ଗଲୁ । ବୈତରଣୀ ରୋଡ଼ରେ ୨ଟା ଖାଲି ମାଲଗାଡ଼ି ଡବାରେ ଆମେ ରହି, ବନ୍ୟାଗ୍ରସ୍ତ ଗାଁ ମାନଙ୍କୁ - ୪/୫ ମାଇଲ ଦୂରକୁ ଯାଇ ଅବସ୍ଥା ଦେଖିଲୁ, କ୍ଷୟକ୍ଷତିର ବିବରଣୀ ସଂଗ୍ରହ କଲୁ ଓ ରିଲିଫ୍ ଦେଲୁ ।

ବୈତରଣୀ ରୋଡ଼ର ଉତ୍ତରକୁ ମଞ୍ଜୁରି ରୋଡ଼ ପର୍ଯ୍ୟନ୍ତ - ବୈତରଣୀ ପୋଲ ଓ ଆଉ ଏକ ପ୍ରାୟ ୫୦/୬୦ ଫୁଟ୍ ଲମ୍ବର ରେଳ ପୋଲକୁ ଛାଡ଼ି, ରେଳ ରାସ୍ତା ଅଚଳ ହୋଇଥିଲା । ୫ ସପ୍ତାହ କାଳ ଟ୍ରେନ୍ ବନ୍ଦ ରହିଲା । ବୈତରଣୀ ପୋଲର ଦକ୍ଷିଣକୂଳସ୍ଥ ଦୁଲଖାପାଟଣା ଗାଁର ଦାଣ୍ଡରେ ପ୍ରାୟ ୧୪ ବା ୧୫ ଫୁଟ ଉଚ୍ଚତାର ବଢ଼ିପାଣି ହୋଇଥିଲା । ବୈତରଣୀ ରୋଡ଼ ରେଳଷ୍ଟେସନ୍‌ରୁ ସେହି ଗ୍ରାମ ପ୍ରାୟ ୪ ମାଇଲ ଦୂର ଅଟେ । ସେହି ଗ୍ରାମର ଏକ ଘରର କାନ୍ଥ ପଡ଼ିଯାଇଥିଲା ଏବଂ ସମଗ୍ର ଚାଳ ବାଲିରେ ଲାଗି ରହିଯାଇଥିଲା । ସେହି ଚାଳ ତଳେ ଜଣେ ପ୍ରାୟ ୮୦ ବର୍ଷର ପଳିତକେଶୀ ବିଧବା ବୁଢ଼ୀ ଓ ତାହାର ୪୨ ବର୍ଷ ବିଧବା ବୋହୂ ଥିଲେ । ସେମାନଙ୍କର ନିଜର ଆଉ କେହି ନ ଥିଲେ । ଆମେ କଲିକତା ମାରୱାଡ଼ୀ ସୋସାଇଟିର ଚାଉଳ, ଲୁଗା ତାଙ୍କୁ ଦେଇଥିଲୁ ।

ମୋ ସହ (୧) ଭଗବତୀ ପାଣିଗ୍ରାହୀ, (୨) ପୂର୍ଣ୍ଣଚନ୍ଦ୍ର ରଥ (ବଲାଙ୍ଗିର ଜିଲ୍ଲା), (୩) କନିକା ରାଜାଙ୍କର ୨ୟ ରାଣୀଙ୍କର କନିଷ୍ଠ ପୁତ୍ର ହରିଶ ରାୟ (ମୋର ସହପାଠୀ), (ପରେ ଏ

ବିଲାତରୁ ଡାକ୍ତରୀ ପାସ୍ କଲେ ଓ ଆଇରିଶ୍ ମହିଳାଙ୍କୁ ବାହା ହେଲେ) । ଜୟକୃଷ୍ଣ ମହାନ୍ତି ଘର, ଉତ୍ତର ବାଲେଶ୍ୱରରେ- ଆଦି ୧୪ ଜଣ ଯାଇଥିଲେ । ବଡ଼ ଉତ୍ସାହୀ ଓ ପଞ୍ଜାବ, ବଙ୍ଗଳାରେ ବନ୍ୟାରିଲିଫ୍ କାମ କରିଥିଲେ ।

୧୯୨୭ରେ ବନ୍ୟା ରିଲିଫ୍ କାର୍ଯ୍ୟ ରେଳ ଗାଡ଼ି ଚଳାଚଳ ୫ ସପ୍ତାହ ବନ୍ଦ ଥିଲା । ଲାଇନ୍ ମରାମିତ ହେବା ପରେ ପ୍ରଥମେ ballast train ଚାଲିଲା । ଦିନେ ସନ୍ଧ୍ୟା ସମୟରେ ଜୟକୃଷ୍ଣ ମହାନ୍ତି, ମୁଁ, ଆଉ ଜଣେ ସ୍ୱେଚ୍ଛାସେବକ ମଞ୍ଜୁରି ରୋଡ୍ ଆଡୁ ବୈତରଣୀ ରୋଡ୍‌କୁ ଫେରିବା ବେଳେ, ଗୋଟିଏ ପ୍ରାୟ ୬୦/୭୦ ଫୁଟ ଲମ୍ବ ଓ ବାଡ଼ ନ ଥିବା ରେଳପୋଲ ଉପରେ ଆସୁଥିଲୁ । ସେହି ଇଞ୍ଜିନର head light ନଥିଲା, କେବଳ ଲାଲ ଆଲୁଅ ଥିଲା । ଆମେ ଭଗବାନଙ୍କ କୃପାରୁ ଅଳ୍ପକେ ରକ୍ଷା ପାଇଗଲୁ । ଆମେ ତେରେଛା ଭାବରେ ପୋଲର ଶେଷ ମୁଣ୍ଡରୁ ମାଟିକୁ ଡେଇଁ ପଡ଼ିବାର ମାତ୍ର ୨/୪ ସେକେଣ୍ଡ ପରେ ସେହି ଇଞ୍ଜିନ ପୋଲ ଉପରକୁ ଆସିଯାଇଥିଲା । ମାତ୍ର ୫ ସେକେଣ୍ଡ ଆମର ଡେରି ହୋଇଥିଲେ ଇଞ୍ଜିନ୍ ସାମନାରୁ ଆମ ଉପରେ ମାଡ଼ି ଯାଇଥାନ୍ତା ।

ଆମ ଠାରେ ଚାଉଳ, ଲୁଗାପଟା ରିଲିଫ୍ ଜିନିଷ ନଥିଲା । ମାରୱାଡ଼ୀ ରିଲିଫ୍ ସୋସାଇଟି କଲିକତାରୁ ବିଜୟନଗରମ୍ ବାଟେ ଟ୍ରେନ୍‌ରେ, ପ୍ରାୟ ଏକ ଲକ୍ଷ ଟଙ୍କାର ଚାଉଳ, ଲୁଗା, କମ୍ବଳ ବୈତରଣୀ ରୋଡ୍‌କୁ ଅଣାଇଥିଲେ । ତାଙ୍କର volunteer ଜଣେ ସୁଦ୍ଧା ନ ଥିଲେ । ଆମେ volunteers ଭାବରେ ତାହା ବିତରଣ କଲୁ । ତାଙ୍କର ରବର୍ ମୋହର ଥିବା ସ୍ଲିପ୍ ଆମେ ନେଇ deserving ଲୋକଙ୍କୁ ଦେଖି ପାଇବା ପଦାର୍ଥ ଓ ପରିମାଣ ଦେଖି ଦେଉଥିଲୁ । ସେ ଲୋକେ ଆସି ନେଇ ଯାଉଥିଲେ । ଅସହାୟ ସ୍ତ୍ରୀଲୋକ, ବୁଢ଼ା, ବୁଢ଼ୀଙ୍କ ପାଇଁ ଆମେ କିଛି ଚାଉଳ, ଲୁଗା ନିଜେ ନେଇ ଦେଇଥିଲୁ ।

ପୂଜାଛୁଟିର ଠିକ୍ ପୂର୍ବ ଦିନ ଆମେ କଲେଜକୁ ଆସି, ଶ୍ରେଣୀମାନଙ୍କରେ ଯୋଗ ଦେଇ ପୁଣି ୧୫ ଦିନ ସେ ଅଞ୍ଚଳରେ ରିଲିଫ୍ କାମ କଲୁ । ଗରିବ ଲୋକଙ୍କ ପାଇଁ କୁଡ଼ିଆ କରାଇଲୁ ।

ପି.ଏନ୍. ମଜୁମ୍‌ଦାର କଟକର କମିସନର୍ ମିଷ୍ଟର Peck ସାହେବଙ୍କୁ ଆମର ସଂଗୃହୀତ ତଥ୍ୟମାନ ନିଜେ ଦେଲେ । Mr. Peck ଗ୍ରହଣ ନ କରିବା ବା ଅବଜ୍ଞା କରିବା ଫଳରେ କଅଣ ହେଲା ଯେ - ମଜୁମ୍‌ଦାର ପାଗଳ ହୋଇଗଲେ । ମିଷ୍ଟର ନୀଳମଣି ସେନାପତି, I.C.S. ତାଙ୍କୁ Quarters ରେ ଦୁଇ ତିନି ଦିନ ଲୋକଙ୍କ ଦ୍ୱାରା ଜଗାଇ, ପରେ ରାଞ୍ଚିର Kanke Mental Hospital କୁ ପଠାଇ ଦେଲେ । Ravenshavian Vol.XIII - Dec. 1927 No.2 ଦେଖନ୍ତୁ ।

ସେ କାମରେ ମୋର ପଢ଼ା ଏକ ମାସ ବାଧାପ୍ରାପ୍ତ ହେଲା । ବୈତରଣୀର ଉପରମୁଣ୍ଡରେ catchment area ରେ ଏତେ ବର୍ଷା ପ୍ରାୟ ୧୪/୧୬ ଘଣ୍ଟା କ୍ରମାଗତ ଭାବରେ ହୋଇଥିଲା ଯେ ଚମ୍ପୁଆର ଜଗନ୍ନାଥପୁର ଡାକବଙ୍ଗଳାରେ rain-gauge ରେ ୧୮ ଇଞ୍ଚ ରେକର୍ଡ ହୋଇଥିଲା । ମୁଁ ୧୯୫୭ରେ ଭୂଦାନ କାମରେ ଜଗନ୍ନାଥପୁରକୁ ଯାଇ ଏହା ଦେଖିଥିଲି ।

ବୈତରଣୀର ଆନନ୍ଦପୁର ଅଞ୍ଚଳରେ ପଣ୍ଡିତ ଗୋପବନ୍ଧୁ ଦାସ (ଦାସେ ଆପଣ) ରିଲିଫ୍ କାମ କରୁଥିଲେ। ତାଙ୍କଠାରେ ଜଣେ କଲେଜ ଛାତ୍ର ଭାଗବତ ମହାନ୍ତି ଥିଲେ। ଭାଗବତ ମହାନ୍ତି ଆଇ.ଏସ୍‌ସି.. ତୃତୀୟ ଶ୍ରେଣୀରେ ପାସ୍ କରି ୧୯୨୮-୩୨ ପର୍ଯ୍ୟନ୍ତ ବିହାରର ପାଟଣା ଇଂଜିନିୟରିଂ କଲେଜରେ ପଢ଼ି, ପାସ୍ କରିଥିଲେ ଏବଂ କେଉଁଝରର ସିରାଜଉଦ୍ଦିନ୍‌ଙ୍କ ସହ mineral-ores ରପ୍ତାନୀ କରି ଧନୀ ହୋଇଥିଲେ। ପ୍ରଥମ ଘର ଯାଜପୁରର ଅପସ୍‌ରପୁରରେ; ପରେ ଘର କଟକର ରାଜାବଗିଚ଼ାରେ।

୧୯୨୭ ମସିହାର ଜୁଲାଇ ମାସରେ ବଙ୍ଗାଳୀ ସାହିର retired inspecting pundit ରାମ ପ୍ରସାଦ ନନ୍ଦୀଙ୍କର ଏକମାତ୍ର ପୁଅ ନିର୍ମଳ ଚନ୍ଦ୍ର ନନ୍ଦୀ ରେଭେନ୍‌ସା କଲେଜରେ ଆଇ.ଏସ୍‌ସି. ପ୍ରଥମ ବର୍ଷରେ ନାମ ଲେଖାଇଲା ଓ west block ରେ ମୋର room-mate ଭାବରେ ରହିଲା। ତାଙ୍କର ଏକ ପୋଖରୀ (ନାମ ନୂଆ ପୋଖରୀ) ପୈତୃକ ସଂପତ୍ତି ଥିଲା। ୧୯୨୭ ମସିହାର ବନ୍ଦୋବସ୍ତରେ ଅମିନ ଓ ହାକିମଙ୍କର ଭ୍ରମବଶତଃ ତାହାର ପଟ୍ଟା ଚନ୍ଦ୍ରମୋହନ ମହାରଣାଙ୍କ ନାମରେ ହୋଇଗଲା। ଏହା ଜାଣି, କେତେ ଖଳପ୍ରକୃତିର ବଙ୍ଗାଳୀ ଲୋକ ରାମପ୍ରସାଦ ନନ୍ଦୀଙ୍କୁ କହିଲେ - ଆପଣ ନିଜର ସତ୍ତ୍ୱ ରକ୍ଷା କରିବା ପାଇଁ ମକଦମା କରନ୍ତୁ; ଏଣେ ଆଉ କେତେକ ଲୋକ ଏବଂ କଅଁରାଳୀର ମୋହରିର କୃଷ୍ଣମୋହନ ଦାସ ମୋର ବାବାଙ୍କୁ ଚିହାଇ ଦେଲେ - "ଆପଣ ମକଦମା ଲଢ଼ନ୍ତୁ। କାରଣ, ଏ ଆପଣଙ୍କୁ ଏକ ଅପମାନ।"

ମୁଁ ଏ କଥା ଗ୍ରୀଷ୍ମଛୁଟିରେ ଘରକୁ ଆସି ଜାଣିଲି, ଏବଂ ଓ ଅନ୍ୟାୟ ମକଦମା ଆମେ କରିବା - ଜିଦ୍‌ରେ - ଉଚିତ ନୁହେଁ କହିଲି ଏବଂ ମକଦମା ଉଠାଇ ନ ଆଣିଲେ ମୁଁ ଅନଶନ (ଉପବାସ) କରିବି ବୋଲି ମୋର ବିମାତାଙ୍କୁ କହିଲି। ଏହା ଫଳରେ ବାବା ଉକ୍ତ ମକଦମା ଉଠାଇ ଆଣିଲେ। ଏହା ୧୯୨୭ର ପ୍ରାୟ ମେ ମାସର ଘଟଣା।

୧୯୨୭ ଡିସେମ୍ବରରେ ରେଭେନ୍‌ସା କଲେଜର ପଶ୍ଚିମ ହଷ୍ଟେଲ୍‌ରେ କେବଳ ମୋତେ chicken-pox ହେଲା। ଡାକ୍ତର କ୍ଷେତ୍ରମୋହନ ରାୟ (ମୋର ସହପାଠୀ ସଂଗ୍ରାମର ପିତା) ମୋତେ ଦୟାକରି ବସନ୍ତ-ଜ୍ୱର ବୋଲି ଛୁଟି ଦେଲେ। ମୁଁ ଘରକୁ ରେମୁଣାକୁ ଯାଇ, ଦେଶୀୟ ଚିକିତ୍ସାରେ ଭଲ ହେଲି। ମାତ୍ର Quarantine ୨୧ ଦିନ ପୂରି ନ ଥିବାରୁ ମୋତେ ଆଇ.ଏସ୍‌ସି.ର ଟେଷ୍ଟ ପରୀକ୍ଷା ଦେବାକୁ ଅନୁମତି ମିଳିଲା ନାହିଁ। ଫଳରେ ମୁଁ ଟେଷ୍ଟ ପରୀକ୍ଷା ଦେଇ ପାରିଲି ନାହିଁ। ମାତ୍ର, ପୂର୍ବ ପରୀକ୍ଷାଗୁଡ଼ିକରେ ମୋର ଖୁବ୍ ଭଲ ନମ୍ବର ଥିବାରୁ ମୁଁ sent up ହେଲି। ମୁଁ ଆଇ.ଏସ୍‌ସିରେ ଦ୍ୱିତୀୟ ଶ୍ରେଣୀରେ ପାସ୍ କଲି।

ଆଇ.ଏସ୍‌ସି.ର Chemistry University Practical Examination ରେ କେଳୁ ନାମକ bearer ସ୍ୱେଚ୍ଛାରେ ଅନେକ ଛାତ୍ରଙ୍କୁ salt ନାମ (for detection) ଭୁଲ କହିଥିଲେ। ତାକୁ ବିଶ୍ୱାସ କରି, ଅନେକ ଭଲ ଛାତ୍ର ଭୁଲ କଥା ପରୀକ୍ଷା ଖାତରେ ଲେଖିଲେ ଓ କମ୍ ନମ୍ବର

ରଖିଲେ ବା ଫେଲ୍ କଲେ। ମାତ୍ର external examiner ସେମାନଙ୍କୁ ଦୟା କରି ପାସ୍ କରାଇଦେଲେ।

ମୁଁ ଭଗବାନଙ୍କୁ ଡାକି, କେଳୁର କଥାରେ ନ ପଡ଼ି, ଠିକ୍ ଠିକ୍ ଯାହା ତଥ୍ୟ experimentରୁ ପାଇଥିଲି, ତାହା ଲେଖିଥିଲି ଏବଂ ଭଲ ନମ୍ବର ପାଇଥିଲି।

ସେତେବେଳେ ୟୁନିଭର୍ସିଟିର theoretical examinations ପ୍ରାୟ ୧୫ ଦିନରେ ସରି ଯାଉଥିଲା ଏବଂ ତାହାର ୫ ଦିନ ପରେ ପ୍ରାକ୍ଟିକାଲ୍ ପରୀକ୍ଷା ହେଉଥିଲା। କାରଣ, ବିହାର ଓଡ଼ିଶାର ମାତ୍ର ୬/୭ଟି କଲେଜ ଥିଲା, ଛାତ୍ର ସଂଖ୍ୟା କମ୍ ଥିଲା ଏବଂ ସବୁ କାର୍ଯ୍ୟ sincerely and promptly ହେଉଥିଲା। ପରୀକ୍ଷା ସରିବାର ଦେଢ଼ ମାସ ମଧ୍ୟରେ B.O. Gazetteରେ ଫଳ ପ୍ରକାଶିତ ହେଉଥିଲା। ଅଧିକ ଟଙ୍କା ପଠାଇ, ଛାତ୍ର ମାର୍କ ଲିଷ୍ଟରୁ ୟୁନିଭର୍ସିଟିରୁ ଆଣୁଥିଲେ। ଆଇ.ଏସ୍‌ସି.ରେ ମାସିକ ଦରମା ୮ ଟଙ୍କା, ଆଇ.ଏ.ରେ ୭ ଟଙ୍କା ଓ ପରୀକ୍ଷାଫିଜ୍ ଯଥାକ୍ରମେ ୪୦ ଟଙ୍କା ଓ ୩୫ ଟଙ୍କା ଥିଲା।

ପରୀକ୍ଷା ଫଳ ବାହାରିବାର ମାସେରୁ ଦେଢ଼ମାସ ଭିତରେ ସପ୍ଲିମେଣ୍ଟାରୀ ପରୀକ୍ଷା ହେଉଥିଲା ଏବଂ ଶୀଘ୍ର ଫଳ ପ୍ରାୟ ଅଗଷ୍ଟ ଶେଷ ପୂର୍ବରୁ ବାହାରୁଥିଲା।

ରେଭେନ୍ସା କଲେଜରେ ସେତେବେଳେ କେବଳ Englishରେ M.A. ଓ ଥିଲା B.L. Class ଥିଲା ଦୁଇ ବର୍ଷର କୋର୍ସ ଥିଲା। ୨ଟି ବିଷୟ ଏକା ସମୟରେ ପଢ଼ିପାରୁଥିଲେ ଓ ଏକା ବର୍ଷ ଦୁଇଟି ପରୀକ୍ଷା ବ୍ୟବଧାନ ଥାଇ ହେଉଥିବାରୁ ଜଣେ ଦେଇ ପାରୁଥିଲା।

୧୯୨୮ରୁ ଏ ନିୟମ ବଦଳିଗଲା; ଏକା ବର୍ଷ ୨ଟି ପରୀକ୍ଷା କେହି ଦେଇପାରିଲେ ନାହିଁ।

ଆମ ସମୟରେ research ଆଦୌ ନ ଥିଲା। କେବଳ Chemistry ରେ M.Sc. ପାସ୍ କରି ଅନ୍ୟ ସ୍ଥାନରୁ ଆସିଥିବା ଭୂତନାଥ ଭାଦୁଡ଼ି ନାମକ ଜଣେ ମାସିକ ଟ.୭୫/ - ଭତ୍ତାରେ ବାବା କର୍ତ୍ତାଇ ସିଂହଙ୍କ ଠାରେ କଅଣ research କରୁଥିଲେ।

ଆମ ସମୟରେ ହଷ୍ଟେଲ୍‌ରେ study hours ଓ ନିୟମ ନାମକୁ ମାତ୍ର ଥିଲା। ଆମ ପଶ୍ଚିମ ହଷ୍ଟେଲ୍‌ର ଦକ୍ଷିଣରେ ଅଧା ପୂର୍ବ ୱାର୍ଡରେ ହରିହର ମିଶ୍ର (ଇଂରାଜୀ M.A.ର ୫ମ ବରଷ ଛାତ୍ର) Perfect ଥିଲେ। ସେ ଭାରୀ ମେଳାପୀ ଓ ସ୍ଫୂର୍ତ୍ତିଯୁକ୍ତ ଥିଲେ। ସେ ବିଲାତରେ ସରକାରୀ ବୃତ୍ତିରେ ୩ ବର୍ଷ ପଢ଼ି ଆସି ପରେ ରେଭେନ୍ସା କଲେଜରେ English lecturer ଓ ପରେ ଗଡ଼ଜାତରେ ଇନ୍‌ସପେକ୍ଟର ଏବଂ ୧୯୪୬ରେ ଓଡ଼ିଶାର Organiser of Basic Education ଓ ପରେ Jt. Director ହୋଇଥିଲେ।

•

*ଅନୁଭବମାଳା*, ଶିକ୍ଷାସନ୍ଧାନ, ଭୁବନେଶ୍ୱର, ୨୦୦୫

# କଲେଜ ଶିକ୍ଷା

## ନନ୍ଦକିଶୋର ଦାସ

ମାଟ୍ରିକ୍ୟୁଲେସନ୍ ବୃତ୍ତି ଫଳ ବାହାରିବା ପୂର୍ବରୁ କଟକ ରେଭେନ୍ସା କଲେଜରେ ନାମ ଲେଖା କାର୍ଯ୍ୟ ଶେଷ ହେବାର କଥା । ମୋର ଭଗିନୀପତିଙ୍କ ଇଚ୍ଛାନୁସାରେ ମୁଁ ରେଭେନ୍ସା କଲେଜରେ ଭର୍ତ୍ତି ହୋଇଯାଇଥିଲି ସତ; କିନ୍ତୁ ବୃତ୍ତି ନପାଇଲେ ମୁଁ ଘରକୁ ବାହୁଡ଼ି ଆସିବି-ଏ ସୂଚନା ମୋତେ ସ୍ପଷ୍ଟ ଭାବରେ ଦିଆଯାଇଥିଲା । ବିହାର ଓଡ଼ିଶା ଗେଜେଟ୍ ପ୍ରତି ଶୁକ୍ରବାରରେ ପ୍ରକାଶିତ ହୁଏ । ତେଣୁ କଲେଜରେ ଭର୍ତ୍ତି ହେବା ପରେ ପ୍ରତି ଶୁକ୍ରବାର ଦିନ ମୁଁ କଲେଜ ଛାତ୍ରାବାସରୁ କଲେଜକୁ ଆସିଲାବେଳେ ବିଛଣାପତ୍ର ବାନ୍ଧି ରଖିଦେଇ ଆସିଥାଏ । ମୁଁ ଭାବି ସ୍ଥିର କରିଥାଏ, ଯେଉଁ ଦିନ ଗେଜେଟ୍‌ରେ ବୃତ୍ତି ଫଳ ବାହାରିବ ଓ ମୁଁ ବୃତ୍ତି ପାଇ ନଥିବି ବୋଲି ଜଣାଯିବ, ସେଦିନ ମୁଁ ଘରକୁ ଫେରିଯିବି । ଏହିପରି ତିନି ଚାରୋଟି ଶୁକ୍ରବାର ଗଲା, ବୃତ୍ତି ଫଳ ବାହାରିଲା ନାହିଁ । ଯେଉଁ ଦିନ ବାହାରିଲା, ସେ ଦିନ କଲେଜରେ ପ୍ରଥମ ବାର୍ଷିକ ଶ୍ରେଣୀର ଛାତ୍ରମାନେ ବୃତ୍ତି ଫଳ ବାହାରିଛି ବୋଲି କୁହାକୁହି ହେଲେ । ସେଦିନ ଘରକୁ ଫେରିଯିବା ସୁନିଶ୍ଚିତ ଭାବି ମୁଁ ଭାଙ୍ଗିପଡ଼ିଲି; ଆପାଦମସ୍ତକ ଥରିବାକୁ ଲାଗିଲା । ଶ୍ରେଣୀରେ ମୋ ପାଖରେ ବସିଥିବା ସହପାଠୀଙ୍କୁ ଫଳ ସମ୍ବନ୍ଧରେ ପଚାରିବାରେ ସେ କହିଲେ, "ଏବର୍ଷ ପ୍ରଥମ ଶ୍ରେଣୀର ମାସିକ କୋଡ଼ିଏ ଟଙ୍କା ବୃତ୍ତି ବିହାର ଓଡ଼ିଶାରେ ନ ଜଣ ପାଇଛନ୍ତି ଏବଂ ଓଡ଼ିଶାରୁ ଜଣେ ମାତ୍ର ବାଲେଶ୍ୱର ଜିଲ୍ଲା ସ୍କୁଲ ଛାତ୍ର ପାଇଛି ।" ନାମ ସେ କହିପାରିଲେ ନାହିଁ । କିନ୍ତୁ ମୁଁ ତାଙ୍କ କଥାରେ ଆଦୌ ବିଶ୍ୱାସ କରିପାରିଲି ନାହିଁ । ପ୍ରଥମ ଶ୍ରେଣୀର କୋଡ଼ିଏ ଟଙ୍କା ବୃତ୍ତି ପାଞ୍ଚଟା ମିଳିବା ବିଧାନ ଥିବାସ୍ଥଳେ ଛ'ଜଣ କିପରି ପାଇଲେ ? କଲେଜର ଶେଷ ଘଣ୍ଟି ବାଜିଲା ମାତ୍ରକେ ମୁଁ କାହାରିକୁ କିଛି ନ କହି ଏବଂ କାହାରି ଆଡ଼କୁ ନ ଚାହିଁ ବିଷଣ୍ଣ ମନରେ ଛାତ୍ରାବାସ ଆଡ଼କୁ ମୁହାଁଇ ଆସୁଥାଏ । ବାଲେଶ୍ୱର ଜିଲ୍ଲା ସ୍କୁଲର କେତେକ ବନ୍ଧୁ ମୋତେ ଜବରଦସ୍ତି କଲେଜ ଅଫିସକୁ ଟାଣି ନେଇଗଲେ ଓ ଗେଜେଟ୍‌ରେ ମୁଁ କୋଡ଼ିଏ ଟଙ୍କା ବୃତ୍ତି ପାଇଛି ବୋଲି ଯେଉଁଠାରେ ପ୍ରକାଶିତ ହୋଇଛି ଓ ମୋ ନାମ ତଳେ ନାଲି ପେନ୍ସିଲରେ ଗାର ପଡ଼ିଛି, ତାହା ଦେଖାଇଦେଲେ ।

ଅନୁସନ୍ଧାନକୁ ଜଣାଗଲା ଯେ, ବିହାରର ପ୍ରଥମ ଶ୍ରେଣୀ ବୃତ୍ତି ଚାରି ଜଣ ପ୍ରଥମ, ଦ୍ୱିତୀୟ, ତୃତୀୟ ଓ ଚତୁର୍ଥ ହୋଇଛନ୍ତି। ବିହାରର ପଞ୍ଚମ ପିଲା ଓ ଓଡ଼ିଶାରୁ ମୁଁ ବାଲେଶ୍ୱର ଜିଲ୍ଲାସ୍କୁଲ ଛାତ୍ର ହିସାବରେ ସମାନ ନମ୍ବର ରଖି ପଞ୍ଚମ ହୋଇଛୁ-ତେଣୁ ପାଞ୍ଚ ସ୍ଥାନରେ ଛ'ଜଣଙ୍କୁ ପ୍ରଥମ ଗ୍ରେଡ୍‌ର କୋଡ଼ିଏ ଟଙ୍କା ବୃତ୍ତି ମିଳିଛି ଓ ଓଡ଼ିଶାର ଦ୍ୱିତୀୟ ଶ୍ରେଣୀ ପନ୍ଦର ଟଙ୍କିଆ ବୃତ୍ତି ତିନିଗୋଟିରୁ ଗୋଟିଏ କାଟି ଦିଆଯାଇଛି।

ଈଶ୍ୱରଙ୍କ ଏହି ଅପ୍ରତ୍ୟାଶିତ କରୁଣା ଯୋଗୁଁ ମୋ ମନରେ ଅପାର ଆନନ୍ଦ ହେଲା ସତ; କିନ୍ତୁ କେଜାଣି କାହିଁକି ପୂର୍ବଠାରୁ ମୋଠାରେ ଅଧିକ ନମ୍ରତା ଭାବ ଆସିଗଲା। ଈଶ୍ୱରଙ୍କ ଏଭଳି ଅପାର କରୁଣାର ବୋଝ ମୁଁ କ'ଣ ସତେ ସମ୍ଭାଳି ପାରିବି ? ଏହି ଭାବନା ମୋତେ ଘାରି ପକାଇଲା।

ଏ ସମ୍ପର୍କରେ ଗୋଟିଏ ବିଶେଷ କଥା ଉଲ୍ଲେଖଯୋଗ୍ୟ। ଯେଉଁ ବର୍ଷ ବାଲେଶ୍ୱର ଜିଲ୍ଲାସ୍କୁଲରୁ ମୁଁ କୋଡ଼ିଏ ଟଙ୍କା ବୃତ୍ତି ପାଇଲି; ତାହାର ତିନି ଚାରିଟି ପୂର୍ବ ବର୍ଷମାନଙ୍କରେ ବାରିପଦା ହାଇସ୍କୁଲ ଓ ବାଲେଶ୍ୱର ଜିଲ୍ଲାସ୍କୁଲ ମଧ୍ୟରେ ବୃତ୍ତି ଫଳ ସମ୍ବନ୍ଧରେ ଭୀଷଣ ପ୍ରତିଦ୍ୱନ୍ଦ୍ୱିତା ଚାଲିଥିଲା ଓ ପ୍ରତ୍ୟେକ ବର୍ଷ ବାରିପଦା ସ୍କୁଲ ବାଲେଶ୍ୱର ଜିଲ୍ଲା ସ୍କୁଲକୁ ପ୍ରତିଦ୍ୱନ୍ଦ୍ୱିତାରେ ପରାସ୍ତ କରି ଦେଉଥିଲା। ମୁଁ ମାଟ୍ରିକ୍ୟୁଲେସନ ପରୀକ୍ଷା ଦେବା ବର୍ଷ ପୁଣି ଏହାର ପୁନରାବୃତ୍ତି ହେବାର ସୂଚନା ମଧ୍ୟ ମିଳିଲା। ବାରିପଦା ହାଇସ୍କୁଲ ପରୀକ୍ଷାର୍ଥୀଙ୍କ ମଧ୍ୟରେ ଗୋପାଳ ବନ୍ଦୋପାଧ୍ୟାୟ ନାମକ ଜଣେ ମୋ ତୁଳନାରେ ଟିକିଏ ଅପରିଣତ ବୟସ୍କ ଛାତ୍ରଙ୍କ ଅସାଧାରଣ ମେଧା ଓ କୃତିତ୍ୱ ବିଷୟରେ ସମସ୍ତେ ଆଲୋଚନା କରୁଥିଲେ। ପରୀକ୍ଷାର୍ଥୀମାନଙ୍କ କଥାବାର୍ତ୍ତା ଓ ବ୍ୟବହାରରୁ ଏବଂ ଗୋପାଳ ବନ୍ଦୋପାଧ୍ୟାୟଙ୍କ ଆକାର ଇଙ୍ଗିତରୁ ଏହାର ସ୍ପଷ୍ଟ ଆଭାସ ମିଳିଲା। ରେଭେନ୍‌ସା କଲେଜରେ ନାମ ଲେଖାଇବା ପରେ ସମସ୍ତେ ବୃତ୍ତି ଫଳକୁ ଅପେକ୍ଷା କରିଥାନ୍ତି। ଗୋପାଳ ବନ୍ଦୋପାଧ୍ୟାୟ ଓ ମୋ ମଧ୍ୟରେ ଯେତେବେଳେ ଭେଟ ହୋଇ ଯାଉଥାଏ, ସେତେବେଳେ ତାଙ୍କର ହର୍ଷୋତ୍‌ଫୁଲ୍ଲତା ଏବଂ ମୋର ବିନୟ-ନମ୍ରତା ଓ ସଙ୍କୋଚ ଯେଉଁମାନେ ଲକ୍ଷ୍ୟ କରୁଥିଲେ, ସେମାନେ ସ୍ଥିର କରି ନେଉଥିଲେ ଯେ, ମୋ ତୁଳନାରେ ତାଙ୍କର ସ୍ଥାନ ବହୁ ଉଚ୍ଚରେ ରହିବ। ବିହାର ଓଡ଼ିଶା ଗେଜେଟ୍ ସେତେବେଳେ ପ୍ରତି ଶୁକ୍ରବାର ଦିନ କଟକରେ ପହଞ୍ଚେ। ତେଣୁ କଲେଜରେ ଭର୍ତ୍ତି ହେବା ପରେ ପ୍ରତ୍ୟେକ ଶୁକ୍ରବାର ଦିନ ମୋର ଘରକୁ ଫେରିଯିବା ଆଶଙ୍କା ମନକୁ ଅସ୍ଥିର କରି ପକାଉଥାଏ। ମାସିକ କୋଡ଼ିଏ ଟଙ୍କା ବୃତ୍ତି ପାଇଛି- ଏହା ଜାଣି ସୁଦ୍ଧା ମୋ ମନରେ ସ୍ଥିରତା ଆସୁ ନଥାଏ। ପରମେଶ୍ୱରଙ୍କର ଏ କି ଅଦ୍ଭୁତ ଦୟା ! ଦୁଃଖଦୁର୍ଦ୍ଦଶା ଗର୍ତ୍ତରେ ପତନୋନ୍ମୁଖ ଏ ଅଧମକୁ ସତେ ଯେପରି ସେ ନିଜ ହାତରେ ଉପରକୁ ନେଉଛନ୍ତି। ବୃତ୍ତି ପରୀକ୍ଷାରେ ମୋର ଏହି ଅସାଧାରଣ କଳ୍ପନାତୀତ କୃତିତ୍ୱ ସାଙ୍ଗକୁ ବାରିପଦା ସ୍କୁଲର ଶ୍ରୀ

ଗୋପାଳ ବନ୍ଦୋପାଧ୍ୟାୟଙ୍କୁ କୌଣସି ବୃତ୍ତି ନ ମିଳିବା ଅଧିକ ଆଶ୍ଚର୍ଯ୍ୟ ବିଷୟ। ଯାହାଙ୍କୁ ଏହା ପୂର୍ବରୁ ଦେଖିଲାମାତ୍ରକେ ମୁଁ ସ୍ୱଭାବତଃ ସଙ୍କୁଚିତ ହୋଇ ପଡୁଥାଏ, ସେହି ବନ୍ଦୋପାଧ୍ୟାୟଙ୍କୁ ଏହା ପରେ ଦେଖିଲା ମାତ୍ରକେ ମୁଁ ପୂର୍ବାପେକ୍ଷା ବହୁଗୁଣ ଅଧିକ ସଙ୍କୁଚିତ ହୋଇଗଲି।

ରେଭେନ୍‌ସା କଲେଜରେ ମୋର ଅଧ୍ୟୟନ ମୋଟରେ ଚାରି ବର୍ଷ ହୋଇଥିଲା। ଦୁଇ ବର୍ଷ ଆଇ.ଏ. ଶ୍ରେଣୀରେ ଓ ଆଉ ଦୁଇ ବର୍ଷ ବି.ଏ. ଶ୍ରେଣୀରେ। ପ୍ରଥମ ଶ୍ରେଣୀରେ ପଢୁଥିଲାବେଳେ ସରସ୍ୱତୀ ପୂଜା ଉପଲକ୍ଷେ କଲେଜ ଛାତ୍ରମାନେ ନାଟକ ଅଭିନୟ କରନ୍ତି। ସେ ବର୍ଷ ଫକୀରମୋହନ ସେନାପତିଙ୍କ 'ଲଛମା' ଉପନ୍ୟାସକୁ ନାଟକ ଆକାରରେ ରୂପାୟିତ କରି ତାହାର ଅଭିନୟର ବ୍ୟବସ୍ଥା ହେଲା। ସାଧାରଣତଃ ପ୍ରଥମ ଶ୍ରେଣୀର ଓ ତୃତୀୟ ଶ୍ରେଣୀର ଛାତ୍ରମାନେ ଏହି ଅଭିନୟରେ ଅଗ୍ରଣୀ ହୋଇ ବାହାରନ୍ତି ଓ ବିଭିନ୍ନ ଭୂମିକାରେ ଅଂଶ ଗ୍ରହଣ କରନ୍ତି। ପିଲାଟି ଦିନରୁ ସଙ୍ଗୀତ ଓ ଯାତ୍ରା ପ୍ରଭୃତିରେ ମୋର ବିଶେଷ ରୁଚି ଥିବା ଯୋଗୁଁ ମୁଁ ଅଭିନୟ ପ୍ରତି ଆକର୍ଷିତ ହେଲି। ମୁଁ ଏକ ବୃତ୍ତିଭୋଗୀ ଛାତ୍ର ଥିବାରୁ ନାଟକର ମୁଖ୍ୟ ଉଦ୍ୟୋକ୍ତାମାନେ ମୋତେ ଅଭିନୟରେ ଅଂଶ ନେବାପାଇଁ ପ୍ରବର୍ତ୍ତାଇବାକୁ ସାହସ କରୁନଥିଲେ। କିନ୍ତୁ ମୋର ଆଗ୍ରହାତିଶଯ୍ୟ ଓ ମୁଁ ଆପେ ଆପେ ସେ ଆଡ଼କୁ ଆକର୍ଷିତ ହେବାର ଦେଖି ସେମାନେ ମୋତେ ସାଙ୍ଗକୁ ନେଲେ।

ସଙ୍ଗୀତ ପ୍ରତି ମୋର ଅତ୍ୟଧିକ ଆକର୍ଷଣ ଥିଲା। ସଭାସମିତିରେ ବ୍ୟବସ୍ଥା ଗ୍ରହଣ ଓ ଫୁଟବଲ ଖେଳ ଦେଖିବା ପାଇଁ କିଲ୍ଲାପଡ଼ିଆ ଗମନ-ଏଇଥିରେ ହିଁ ମୁଁ ଅଧିକ ସମୟ ଦେଉଥିଲି। ପ୍ରତିଦିନ ପଢ଼ାପଢ଼ି କରିବା ଓ ଶ୍ରେଣୀର ପାଠୋନ୍ନତି ମାର୍ଗରେ ଅଗ୍ରସର ହେବାରେ ମୋର ବିଶେଷ ରୁଚି ରହିଲା ନାହିଁ। ପରୀକ୍ଷା ସମୟ ନିକଟ ହୋଇ ଆସିଲେ ବେଶି ପରିଶ୍ରମ କରି କୌଣସିମତେ କୃତକାର୍ଯ୍ୟ ହେବା ହିଁ ମୋର ଲକ୍ଷ୍ୟ ହେଲା। ପାଠ୍ୟପୁସ୍ତକ ଅଧ୍ୟୟନ କରିବାରେ କୁଣ୍ଠା ମୋର ସ୍ୱଭାବସିଦ୍ଧ ଥିବା ଯୋଗୁଁ ମୁଁ ଆଇ.ଏ.ପରୀକ୍ଷାରେ କୌଣସିମତେ ଉତ୍ତୀର୍ଣ୍ଣ ହୋଇଗଲି। ଆଇ.ଏ.ରେ ମୁଁ ଗଣିତ ବିଷୟ ନେଇଥିଲି ଏବଂ ସେହି ଗଣିତ ସୂତ୍ରଗୁଡ଼ିକ କରାୟତ୍ତ କରିବାର ଅନଭ୍ୟାସ ଯୋଗୁଁ ବିଶ୍ୱବିଦ୍ୟାଳୟ ପରୀକ୍ଷାରେ ଆଶାନୁରୂପ କୃତିତ୍ୱ ହାସଲ କରିପାରିଲି ନାହିଁ। ଓଡ଼ିଆ ଛାତ୍ରମାନଙ୍କ ମଧ୍ୟରେ ପ୍ରଥମ ହୋଇଥିବା ହେତୁ ମେୟୋ ବୃତ୍ତି ମାତ୍ର ପାଇଲି।

ମାଟ୍ରିକ୍ୟୁଲେସନରେ କୋଡ଼ିଏ ଟଙ୍କା ବୃତ୍ତି ପାଇବା ପରେ ଆଇ.ଏ.ରେ ଦଶଟଙ୍କିଆ ବୃତ୍ତି ଯୋଗୁଁ ମୋତେ ଆର୍ଥିକ ସଙ୍କଟର ସମ୍ମୁଖୀନ ହେବାକୁ ପଡ଼ିଥିଲା। କିନ୍ତୁ ଭଗିନୀପତିଙ୍କ ସାହାଯ୍ୟ ମୋତେ ବି.ଏ.ଶ୍ରେଣୀର ଦୁଇ ବର୍ଷ ବିତାଇବାରେ ଯଥେଷ୍ଟ ସହାୟତା କରିଥିଲା। ବି.ଏ.ରେ ମୁଁ ସଂସ୍କୃତ ଓ ଦର୍ଶନ ସାଙ୍ଗକୁ ଇଂରାଜୀରେ ଅନର୍ସ ବାଛି ନେଇଥିଲି।

ବିଶ୍ୱବିଦ୍ୟାଳୟ ପରୀକ୍ଷାର ମାତ୍ର ଦଶବାର ଦିନ ପୂର୍ବରୁ କଟକରେ ଉତ୍କଳ ସମ୍ମିଳନୀର ଅଧିବେଶନ ବସିଥିଲା । ସେ ସମ୍ମିଳନୀ ସାଙ୍ଗକୁ ନିଖିଳ ଉତ୍କଳ ଛାତ୍ର ସମ୍ମିଳନୀର ମଧ୍ୟ ଅଧିବେଶନ ବସିଲା ।

ଛାତ୍ର ସମ୍ମିଳନୀର ପୂର୍ବ ବର୍ଷ ଅଧିବେଶନରେ କୌଣସି ସୈଦ୍ଧାନ୍ତିକ ବିଷୟ ନେଇ ସମ୍ମିଳନୀ ଦୁଇ ଦଳରେ ବିଭକ୍ତ ହୋଇଥିଲା । ଗୋଟିଏ ଦଳ ପରିବର୍ତ୍ତନ ଚାହୁଁଥିଲେ; ଅପର ପକ୍ଷ ଛାତ୍ର ସମ୍ମିଳନୀର ମୂଳନୀତି ଅପରିବର୍ତ୍ତିତ ରଖିବାକୁ ଚାହୁଁଥିଲେ । ପରିବର୍ତ୍ତନବାଦୀଙ୍କ ସମ୍ମିଳନୀ ସେ ବର୍ଷ ସ୍ୱତନ୍ତ୍ର ଭାବରେ କଟକ ଟେଲିଗ୍ରାଫ ଅଫିସ ନିକଟରେ ହୋଇଥିଲା । ସେଥିରେ ଜଣେ ବ୍ରିଟିଶ ମହିଳା ସଭାନେତ୍ରୀ ହୋଇଥିଲେ । ଏ ସମ୍ମିଳନୀର ପୃଷ୍ଠପୋଷକତା କରିଥିଲେ ବାରିଷ୍ଟର ବିଶ୍ୱନାଥ ମିଶ୍ର ଓ ଛାତ୍ରନେତା ଯଦୁମଣି ମଙ୍ଗରାଜ । ଦ୍ୱିତୀୟ ପକ୍ଷଙ୍କର ସମ୍ମିଳନୀ ଉତ୍କଳ ସମ୍ମିଳନୀ ଅଧିବେଶନ ବେଳେ ସେହି ସମ୍ମିଳନୀ ମଣ୍ଡପରେ ହେଲା । ଉତ୍କଳ ସମ୍ମିଳନୀର ଅଧିବେଶନ କଟକ ଇଦ୍‌ଗାପଡ଼ିଆରେ ବସିଥିଲା ଓ ବ୍ୟାସକବି ଫକୀରମୋହନ ସେନାପତି ଏହାର ସଭାପତିତ୍ୱ କରିଥିଲେ ।

ଉତ୍କଳ ସମ୍ମିଳନୀ ଦୁଇଦିନ ହୋଇଯିବା ପରେ ତୃତୀୟ ଦିନ ସେହି ସମ୍ମିଳନୀ ମଣ୍ଡପରେ ହିଁ ଛାତ୍ର ସମ୍ମିଳନୀର ବୈଠକ ବସିଲା । ଫକୀରମୋହନ ସେନାପତି ଏହି ସମ୍ମିଳନୀର ମଧ୍ୟ ସଭାପତି ହୋଇଥିଲେ । ମୁଁ ଉତ୍କଳ ସମ୍ମିଳନୀରେ ସ୍ୱେଚ୍ଛାସେବକ ହୋଇଥିଲି ଓ ଛାତ୍ର ସମ୍ମିଳନୀର ସମ୍ପାଦକ ଦାୟିତ୍ୱ ତୁଲାଇଥିଲି । ଏହି ଛାତ୍ର ସମ୍ମିଳନୀର ମାର୍ଗଦର୍ଶନ ଦେଇଥିଲେ ଉତ୍କଳ ଗୌରବ ମଧୁସୂଦନ ଦାସ ଓ ରେଭେନ୍‌ସା କଲେଜର ଖ୍ୟାତନାମା ଅଧ୍ୟାପକ ଯୋଗେଶ ଚନ୍ଦ୍ର ରାୟ ବିଦ୍ୟାନିଧି । ମୋର ମନେ ଅଛି; ଛାତ୍ର ସମ୍ମିଳନୀର ସମ୍ପାଦକ ହିସାବରେ ମୁଁ ଯେଉଁ ରିପୋର୍ଟ ପାଠ କରିଥିଲି, ତାହାର ଆମୂଳଚୂଳ ଚିଠା କରି ଦେଇଥିଲେ ସମ୍ମାନାସ୍ପଦ ଯୋଗେଶବାବୁ ।

ଉତ୍କଳ ଗୌରବ ମଧୁସୂଦନ ଦାସଙ୍କ ପ୍ରତ୍ୟକ୍ଷ ସମ୍ପର୍କରେ ମୁଁ ଏହାର କିଛି କାଳ ପୂର୍ବରୁ ଆସିଥିଲି । ଆଗରୁ କେତେ ଥର ମୋର କେତେ ଜଣ ସହପାଠୀଙ୍କୁ ନେଇ ମଧୁବାବୁଙ୍କ ନିର୍ଦ୍ଦେଶରେ ତାଙ୍କ ଘରକୁ ଯାଇଥିଲି । ପ୍ରତି ଥର ସେ ଛାତ୍ରମାନଙ୍କୁ ଉଦ୍‌ବୋଧନ ଦେଉଥିଲେ ଓ ଜଳଯୋଗରେ ଆପ୍ୟାୟିତ କରୁଥିଲେ । ଆଉ ମନେ ଅଛି , ଥରେ କେତେକ କଲେଜ ଛାତ୍ରଙ୍କୁ ଆଗରୁ କୌଣସି ଖବର ନ ଦେଇ ତାଙ୍କ ଘରଠାକୁ ନେଇ ଯାଇଥିଲି । ସେ ଛାତ୍ରମାନଙ୍କୁ ସମ୍ୟକ୍ ଅଭ୍ୟର୍ଥନା କରିବା ପାଇଁ ପ୍ରସ୍ତୁତ ନ ଥିବା ଯୋଗୁଁ ହଠାତ୍ କାହିଁକି ଏମାନଙ୍କୁ ନେଇ ଯାଇଥିଲି , ସେଥିପାଇଁ ସେ ମୋ ଉପରେ ଭୀଷଣ ବିରକ୍ତ ହୋଇଥିଲେ ।

ଉତ୍କଳ ସମ୍ମିଳନୀର ଇଦ୍‌ଗାପଡ଼ିଆ ଅଧିବେଶନ ପ୍ରକୃତରେ କହିବାକୁ ଗଲେ ଉତ୍କଳ ଗୌରବ ମଧୁସୂଦନ ଦାସଙ୍କ ଅଧିବେଶନ । ଏହି ଅଧିବେଶନର କେତେକ ମାସ ପୂର୍ବରୁ

ମଧୁବାବୁଙ୍କ ସଂପାଦିତ 'ଦି ଓଡ଼ିଆ' ଇଂରାଜୀ ସାପ୍ତାହିକ ସମ୍ବାଦପତ୍ର ଉତ୍କଳର ଶିକ୍ଷିତ ସମ୍ପ୍ରଦାୟ ଓ ଛାତ୍ର ମହଲରେ ଯଥେଷ୍ଟ ଉତ୍ସାହ ଓ ଉତ୍ତେଜନା ସୃଷ୍ଟି କରିଥିଲା । ମୋରେ ମନେ ଅଛି, ଯେଉଁ ଦିନ ସମ୍ଭବତଃ ବୁଧବାର ଦିନ ଏହି ସାପ୍ତାହିକ ପ୍ରକାଶିତ ହେଉଥିଲା, ତାହାର ପୂର୍ବଦିନ ରାତ୍ରରେ ମୋ ପାଖରେ ସମ୍ବାଦପତ୍ର ବିକ୍ରେତା ତିରିଶ ଚାଳିଶଖଣ୍ଡ ପତ୍ରିକା ରଖିଦେଇ ଯାଉଥିଲା ଓ ପରଦିନ କଲେଜ ଛାତ୍ରାବାସର ଦୁଇ ବ୍ଲକରେ ଥିବା ଛାତ୍ରମାନଙ୍କୁ ମୁଁ ତାହା ବିକ୍ରି କରୁଥିଲି । ଇଦ୍‌ଗାଡ଼ିଆ ସମ୍ମିଳନୀରେ ମଧୁବାବୁଙ୍କ ଉଦ୍‌ବୋଧନ ଓ ଜ୍ୱାଳାମୟୀ ଭାଷଣ ପ୍ରତିନିଧି ଓ ଦର୍ଶକଙ୍କ ମନରେ ବିଶେଷ ପ୍ରେରଣା ଓ ଉତ୍ସାହ ସୃଷ୍ଟି କରିଥିଲା । ପୁଣି ଏହି ସମ୍ମିଳନୀରେ ଉତ୍କଳମଣି ଗୋପବନ୍ଧୁଙ୍କ ଆବେଗପୂର୍ଣ୍ଣ ଓଜସ୍ୱିନୀ ବକ୍ତୃତା ସମ୍ମିଳନୀକୁ ଅତ୍ୟନ୍ତ ଗୌରବମୟ କରିଥିଲା ।

ସମ୍ମିଳନୀରେ ସ୍ୱେଚ୍ଛାସେବକ ହେବାର ଓ ଛାତ୍ରନେତା ହେବାର ଅଭିଜ୍ଞତା ଏହାହିଁ ମୋର ହେଲା ପ୍ରଥମ । ଏହାର ମାତ୍ର ଦଶବାର ଦିନ ପରେ ବି.ଏ. ପରୀକ୍ଷା ହେଲା-ସମ୍ଭବତଃ ୧୯୧୮ ମସିହା ମଇମାସରେ । ନୂତନ ଗଠିତ ପାଟଣା ବିଶ୍ୱବିଦ୍ୟାଳୟର ଏହାହିଁ ପ୍ରଥମ ପରୀକ୍ଷା । କଲିକତା ବିଶ୍ୱବିଦ୍ୟାଳୟର ସିଲାବସ ଓ ପାଠ୍ୟକ୍ରମ ଉପରେ ପାଟଣା ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ସ୍ୱତନ୍ତ୍ର ପରୀକ୍ଷା ତରବରରେ କରିଥିଲେ ।

ମୁଁ ପରୀକ୍ଷା ଦେଇ କଟକ ଛାଡ଼ି ଘରକୁ ଆସିଲି । ଗ୍ରୀଷ୍ମାବକାଶ ମଧ୍ୟରେ ଗାଁର ସାଙ୍ଗପିଲାଙ୍କୁ ଧରି ପ୍ରଥମଥର ପାଇଁ ଗ୍ରାମରେ ଓଡ଼ିଆ ନାଟକ ଅଭିନୟ କରାଇଥିଲି । କହିବା ନିଷ୍ପ୍ରୟୋଜନ, ସେ ଅଭିନୟର ପ୍ରଧାନ ଉଦ୍ୟୋକ୍ତା ଓ ପ୍ରଧାନ ଭୂମିକାର ଅଭିନେତା ମୁଁ ନିଜେ ଥିଲି ।



---

***ମୋ ଜୀବନ ଓ ଜଂଜାଳ କାହାଣୀ,*** ଗୋପବଂଧୁ ସାହିତ୍ୟ ମନ୍ଦିର, କଟକ, ୧୯୮୧

# ରେଭେନ୍‌ସା କଲେଜ

## ରାମକୃଷ୍ଣ ନନ୍ଦ

ଦଶପଲ୍ଲା ମେସ୍‌ରେ ରହି ଆଇ.ଏ. ପଢ଼ିବାର ସ୍ଥିର କଲି । ରେଭେନ୍‌ସା କଲେଜ ସେତେବେଳକୁ ତାର ବର୍ତ୍ତମାନ ସ୍ଥାନକୁ ଉଠି ଯାଇଥାଏ । କାଠଗଡ଼ା ସାହିରୁ ଚାଲିକରି ସେଠାକୁ ଯିବାକୁ ହୁଏ ।

ନାମ ଲେଖାଇଲା ବେଳେ ଶ୍ୱଶୁର କିଛି ଅର୍ଥ ସାହାଯ୍ୟ ଦେଇଥିଲେ, ମାତ୍ର ତା ପରେ ଖର୍ଚ୍ଚ ତୁଲାଇବା ମୋ ପକ୍ଷରେ କଷ୍ଟକର ହୋଇପଡ଼ିଲା । ଦ୍ୱିତୀୟ ବର୍ଷ ଅବଶ୍ୟ କଲେଜ 'ସୋସିଆଲ୍ ସର୍ଭିସ୍ ଗିଲଡ୍' ରୁ ମାସିକ ଚାରିଟଙ୍କା ଖଣ୍ଡେ ସାହାଯ୍ୟ ମିଳିଲା । ପୂଜ୍ୟ ଅଧ୍ୟାପକ ରତ୍ନାକର ପତି ମୋତେ ଏ ଦିଗରେ ଖୁବ୍ ସାହାଯ୍ୟ କରିଥିଲେ । ପାଠ୍ୟପୁସ୍ତକ କିଛି କିଣିପାରିଲି ନାହିଁ । ସହପାଠୀମାନଙ୍କଠାରୁ ବହି ମାଗି ଆଣି କାମ ଚଳାଇଲି । ଦୁଇବେଳା ଟିଉସନ କରିବାକୁ ପଡ଼ୁଥାଏ । ଗୋଟିଏ ଟିଉସନରୁ ମାସିକ ପ୍ରାୟ ଛଅ ସାତ ଟଙ୍କା ମିଳେ । ଏହିପରି ବହୁ କଷ୍ଟରେ ଆଇ.ଏ. ଦୁଇ ବର୍ଷ କାଟିବାକୁ ହେଲା ।

ମୋର ପୂର୍ବତନ ବନ୍ଧୁ କୃଷ୍ଣଚନ୍ଦ୍ର ପ୍ରଧାନ ସେତେବେଳେ କଂଗ୍ରେସ କାମ ଛାଡ଼ି ପୁସ୍ତକ ବ୍ୟବସାୟ କରୁଥାନ୍ତି । ସେ ମୋଠାରୁ ମଧୁସୂଦନ ରାଓଙ୍କ 'ବାଳବୋଧ' ଓ 'ସାହିତ୍ୟ ପ୍ରସଙ୍ଗ'ର ଦୁଇଖଣ୍ଡ ଟୀକାବହି ଲେଖାଇ ନେଇ ମୋତେ ଏକଶହ ଟଙ୍କା ଦେଇଥିଲେ । ସେଥିରେ ମୁଁ ଖଣ୍ଡେ ହରକ୍ୟୁଲେସ୍ ସାଇକେଲ କିଣିଲି । ତେଣୁ କଲେଜକୁ ଯିବା ଆସିବାରେ ଟିକିଏ ସୁବିଧା ହେଲା ।

ମୋର ଅତୀତ ଜୀବନ କଥା ଲେଖିଲାବେଳେ, ବିଶେଷତଃ 'ସାହିତ୍ୟ ପ୍ରସଙ୍ଗ ଟୀକା' ଓ ସାଇକେଲ କିଣା ବିଷୟ ଉଲ୍ଲେଖ କଲାବେଳେ ମୋର ପିତାମହ (ବାପା) ବୃନ୍ଦାବନ ନନ୍ଦଙ୍କ କଥା ମନେ ପଡ଼ୁଛି । ମୁଁ ଭାବୁଛି, ତାଙ୍କ ବିଷୟରେ ଏଠାରେ ଦୁଇପଦ ନ କହିଲେ ମୋର ଆତ୍ମଜୀବନୀ ଅପୂର୍ଣ୍ଣ ରହିଯିବ । ବାପାଙ୍କ ବିଷୟବୁଦ୍ଧି ଏବଂ କର୍ମଦକ୍ଷତା ଅସାଧାରଣ ଥିଲା । ତାଙ୍କରି ଉଦ୍ୟମ ଫଳରେ ଆମର ବୈଷୟିକ ବିଭବ ଯଥେଷ୍ଟ ବୃଦ୍ଧି ପାଇଥିଲା । ସେ କେତେବେଳେ ଆଳସ୍ୟରେ କାଳକ୍ଷେପଣ କରୁ ନଥିଲେ । କାହା ସଙ୍ଗେ କଥାବାର୍ତ୍ତା କରୁଥିଲାବେଳେ ମଧ୍ୟ ତାଙ୍କର ହାତ

ନିଶ୍ଚେଷ୍ଟ ରହୁ ନଥିଲା; ହୁଏତ ବଗିଚାରୁ ଗୋଡ଼ି ବାଛି ଅଥବା ଗୁଆକାତିରେ ଗୁଆ କାଟି ସେ ସେହିତକ ସମୟର ପୂର୍ଣ୍ଣ ସଦ୍‌ବ୍ୟବହାର କରୁଥିଲେ ।

ବିଲବାଡ଼ି ଓ ଚାଷବାସ କାର୍ଯ୍ୟରେ ଗ୍ରାମର କୌଣସି ଚାଷୀ ତାଙ୍କର ସମକକ୍ଷ ନ ଥିଲେ । ମୌକାର ପ୍ରତ୍ୟେକ କମିର ଆକାର ପ୍ରକାର ସେ ଏପରି ମନେ ରଖିଥିଲେ ଯେ ଭୂଇଁଉପରେ ନଖ ସାହାଯ୍ୟରେ ଗାର ଟାଣି ସେ ଚକଗୁଡ଼ିକର ନକ୍ସା ଆଙ୍କି ଦେଉଥିଲେ । କେବଳ ଆମ ଗ୍ରାମରେ ନୁହେଁ, ଆଖପାଖ ପଚିଶଖଣ୍ଡ ଗ୍ରାମର ଲୋକମାନେ ମଧ୍ୟ ହାନିଲାଭରେ ତାଙ୍କର୍ ପରାମର୍ଶ ଲୋଡ଼ୁଥିଲେ । ତେଣୁ ପ୍ରାୟ୍ ଅଧିକାଂଶ ସମୟରେ ସେ କେତେକଣ ପାର୍ଶ୍ୱଚରଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ରହୁଥିଲେ ।

ନିକର ବଡ଼ିମା ନିକେ ବଖାଣିବା ଶୋଭନୀୟ୍ ନୁହେଁ; ଏହା ଗର୍ବ ବା ଅହମିକା ନାମରେ ପରିଗଣିତ ହୁଏ । କିନ୍ତୁ 'କହି କାଣିଲେ କଥା ସୁନ୍ଦର' ଏବଂ 'ବାନ୍ଧି ଜାଣିଲେ ମଥା ସୁନ୍ଦର' । ବାପାଙ୍କୁ ଏହି ବିଦ୍ୟାଟି ବେଶ୍ କଣା ଥିଲା । ସେ ଏପରି କୌଶଳରେ ନିକର ବକ୍ତବ୍ୟ ପରିବେଷଣ କରୁଥିଲେ ଯେ ସରଳମତି ଗାଉଁଲୀ ଲୋକେ ତାଙ୍କର ପ୍ରଚ୍ଛନ୍ନ ଉଦ୍ଦେଶ୍ୟ ବୁଝି ନ ପାରି ତାଙ୍କ କଥାଚାତୁରୀରେ ସମ୍ପୂର୍ଣ୍ଣରୂପେ ଭଳି ଯାଉଥିଲେ ।

ମୁଁ କଲେଜରେ ପଢ଼ୁଥିବାରୁ ବାପାଙ୍କର ଆନନ୍ଦର ସୀମା ନଥିଲା । ତାଙ୍କର ଧାରଣା ଥିଲା ଯେ କଲେଜରେ ପଢ଼ି ବି.ଏ ପାସ୍ କଲେ ନିଶ୍ଚୟ୍ ଦିପୋଟି ଚାକିରି ମିଳିବ । ସେତେବେଳେ ଆମ ଗ୍ରାମରୁ ଦୁଇ ତିନିକଣ ମାତ୍ର କଲେଜରେ ପଢ଼ୁଥିଲେ । କିନ୍ତୁ ମୋ ପରି କେହି ବହି ଲେଖି ଛପାଇ ନ ଥିଲେ କି ସାଇକେଲ କରି ନଥିଲେ । ଏ ବିଷୟ୍ ଲୋକମାନଙ୍କ ଆଗରେ କହି ଆତ୍ମସନ୍ତୋଷ ଲାଭ କରିବା ଉଦ୍ଦେଶ୍ୟରେ ବାପା ଖଣ୍ଡିଏ 'ସାହିତ୍ୟପ୍ରସଙ୍ଗ ଟୀକା' ମୋ ପାଖରୁ ନେଇ ନିକ ବସ୍ତାନି ଭିତରେ ଯତ୍ନରେ ସାଇତି ରଖିଥିଲେ, କିନ୍ତୁ ସାଇକେଲଟିକୁ ତ ଆଉ ସେପରି ରଖିପାରିବେ ନାହିଁ । ସେଥିପାଇଁ ସେ କିପରି ଚତୁରତାର ସହ ସେ ପ୍ରସଙ୍ଗ ଉତ୍‌ଥାପନ କରୁଥିଲେ, ତାହା ମୁଁ ଭାଇନାଙ୍କ ପାଖରୁ ଶୁଣିଛି ।

ନଖରା-ମାଧବ ସଡ଼କ କଡ଼ରେ ସେ ଗୋଟିଏ ବଡ଼ ତେକରାତି ଦୋକାନ କରି ସେହିଠାରେ ରହୁଥାନ୍ତି । ଦିନେ ମୁଁ ସାଇକେଲରେ ବସି ରାସ୍ତାରେ ଯାଉଥିଲି । ବାପାଙ୍କ ତୀକ୍ଷ୍ଣ ଦୃଷ୍ଟି ମୋ ଉପରେ ପଡ଼ିଲା । ସଙ୍ଗେ ସଙ୍ଗେ ସେ ଚାକରକୁ ଡାକପକାଇ କହିଲେ, "ଆରେ ନଟିଆ, ଦେଖିଲୁ ସାଇକେଲରେ ସେ ଉଗ୍ରେସର ବାବୁ (ଓଭରସିଅର) ଯାଉଛନ୍ତି କି ?" ନଟିଆ ଦେଖିଆସି କହିଲା, "ରାମବାବୁ ଯାଉଛନ୍ତି ।"

ଦୋକାନ ପିଣ୍ଡାରେ ପାଞ୍ଚଖଣ୍ଡି ଗାଁର ଲୋକ ବସିଛନ୍ତି । ବିଜ୍ଞାପନ ପାଇଁ ଏ ମାହେନ୍ଦ୍ର ବେଳା । ବାପା ସଙ୍ଗେ ସଙ୍ଗେ କହିଲେ, "ଓ, ଆମ ରାମ ଯାଉଛି ! ସେ ଆମ ମଝିଆଁ ନାତି ନୁହେଁ କି ? ଘଣ୍ଟାବିଚ୍ ସେ ଏଇଲାଗେ ମୁକାମ ସହରରେ ପହଞ୍ଚିଯିବ ।"

କେହି ଜଣେ ହୁଏତ ଟିପ୍ପଣୀ ଦେଲା, "ନାତିଙ୍କ ପାଇଁ ମକଦ୍ଦମ ସାଇକେଲ ଖଣ୍ଡେ କରିଦେଇଛନ୍ତି ତାହାହେଲେ । କେତେ ପଡ଼ିଲା, ଆଜ୍ଞା ?"

"ଶହେ ସତାବନ ଟଙ୍କା ଆଠଣା । (ପ୍ରକୃତରେ ୭୫ ଟଙ୍କାକୁ ମୁଁ ସେ ସାଇକେଲଟି କିଣିଥିଲି ।) ମୁଁ କିନ୍ତୁ ଗୋଟିଏ ପଇସା ଦେଇନାହିଁ ।"

"ତେବେ ?" ଶ୍ରୋତାମାନେ ଜିଜ୍ଞାସୁ ନେତ୍ରରେ ବାପାଙ୍କ ମୁହଁକୁ ଅନାଇ ରହନ୍ତି । ଏହି ସୁଯୋଗରେ ବାପାଙ୍କର ବସ୍ତାନି ଫିଟେ । ଆଖିରେ ଚଷମା ଲଗାଇ କମ୍ପିତ ହସ୍ତରେ ବହିଖଣ୍ଡିକ ଧରି ପଢ଼ିବାକୁ ଆରମ୍ଭ କରନ୍ତି ।

ତା 'ପରେ ମଲାଟ ପୃଷ୍ଠାଟିକୁ ଓଲଟାଇ ପୁଣି ପଢ଼ନ୍ତି- "ମନୁଷ୍ୟର ଧର୍ମବୁଦ୍ଧି-ଧର୍ମରେ ବୁଦ୍ଧି ଧର୍ମବୁଦ୍ଧି, ହିତାହିତ ବିବେଚନା କରିବାର ଶକ୍ତି-୭ମୀ ତତ୍ ପୁରୁଷ...ଦର୍ପଣ ବାଡ଼ପରି ବିଶୋଳ ଭାବରେ ସବୁ ବୁଝାଇ ଲେଖିଦେଇଛି... ଅନ୍ଧ ବି ପଢ଼ି ବୁଝିଯିବ ।" ବ୍ୟାକରଣର ବିନ୍ଦୁବିସର୍ଗ ଜାଣି ନ ଥିବା ସାହୁ, ପ୍ରଧାନ ଓ ସ୍ୱାଇଁମାନେ ବିସ୍ମୟବିସ୍ଫାରିତ ନେତ୍ରରେ କେବଳ ଚାହିଁ ରହିଥାନ୍ତି ବାପାଙ୍କ ମୁହଁକୁ ।

ବହିଟିକୁ ବସ୍ତାନି ଭିତରେ ରଖି ଦେଉଁ ଦେଉଁ ବାପା କହନ୍ତି, "ଏଇ ବହି ଖଣ୍ଡିକ ଲେଖି ସେ ଯେଉଁ ଟଙ୍କା ପାଇଥିଲା, ସେଇଥିରେ ସାଇକେଲ କିଣିଛି । ତାର ଏଇଲାଗେ ଖୁବ୍ ସରସ ପଢ଼ା । କଲେଜର ସାହାବ ତା ପିଠିରେ ହାତ ମାରି କହିଛି ପରା-ତତେ ଡିପୋଟି କରିଦେବି ।" ଇତ୍ୟାଦି ଇତ୍ୟାଦି ।

"ସାହିତ୍ୟ ପ୍ରସଙ୍ଗର ଟୀକା" କି ଶ୍ରେଣୀର ବହି, ହର୍‌କ୍ୟୁଲସ୍ ସାଇକେଲର ଦାମ୍ କେତେ, ଡିପୋଟି ଚାକିରି କିପରି ମିଳେ-ସେ ବିଷୟରେ ଯେଉଁମାନେ ସମ୍ପୂର୍ଣ୍ଣ ଅନଭିଜ୍ଞ, ସେମାନେ ବାପାଙ୍କ କଥାର ସତ୍ୟତାର ତିଳେମାତ୍ର ଅବିଶ୍ୱାସ କରନ୍ତି ନାହିଁ । ବିଜ୍ଞାପନର ଉଦ୍ଦେଶ୍ୟ ଏହିପରି ପୂର୍ଣ୍ଣମାତ୍ରାରେ ସାଧିତ ହୁଏ ।

ବାପାଙ୍କ କଥା କହିବସିଲେ ବହି ପୂରିଯିବ । ବର୍ତ୍ତମାନ ମୋ କଲେଜ ଜୀବନକୁ ଫେରିଆସେଁ । ଆଇ.ଏ.ଟେଷ୍ଟ ପରୀକ୍ଷା ଦେଇ ସାରି ଗୋଟିଏ ସ୍ୱତନ୍ତ୍ର ବସାରେ ରହି ଶେଷ ପରୀକ୍ଷା ପାଇଁ ପ୍ରସ୍ତୁତି ହେଲି । ହାତରେ ରୋଷେଇ କରି ଖାଏ ଏବଂ ଅବଶିଷ୍ଟ ସମୟରେ ପଢ଼ାପଢ଼ି କରେ । ଏହିଠାରେ ଥିଲାବେଳେ ଥରେ ଅଧ୍ୟାପକ ବିପିନବିହାରୀ ରାୟ ମୋତେ ଡକାଇ କହିଲେ, "କନିକା ଟିକାଏତ୍ ଶୈଳେନ୍ଦ୍ର ନାରାୟଣଙ୍କ କୋଠିରେ ରହି ପଢ଼ାଶୁଣା କରିବ କି ? ଶୁଣୁଛି ତୁମେ ଅସୁବିଧାରେ ରହିଛ । ସେଠାରେ ରହିଲେ ଟିକାଏତ୍‌ଙ୍କର ମଧ୍ୟ ପଢ଼ାପଢ଼ିରେ ଟିକିଏ ସୁବିଧା ହୁଅନ୍ତା । ଗିରିଜାବାବୁ ଏବଂ ମୁଁ ସେଠାକୁ ଯାଉଛୁ । ତୁମର ଯଦି କିଛି ବୁଝିବାର ଥାଏ, ଆମଠାରୁ ବୁଝିନିଅନ୍ତୁ ।" ଏ ବିଷୟରେ ଭାବିଚିନ୍ତି କହିବି ବୋଲି ତିନିଦିନ ସମୟ ମାଗି ବସାକୁ ଆସିଲି ।

ଘରେ ଆସି ଭାବିଲି ଟିକାଏତଙ୍କର ଏବଂ ମୋର ପାଠପଢ଼ାର ଉଦ୍ଦେଶ୍ୟ ଭିନ୍ନ । ତାଙ୍କ କୋଠିରେ ରହିଲେ କାଳେ ପଢ଼ାପଢ଼ି କରିବାକୁ ଯଥେଷ୍ଟ ସମୟ ପାଇବି ନାହିଁ, ଏହି ଆଶଙ୍କା କରି ବିପିନବାବୁଙ୍କୁ ବିନୀତ ଭାବରେ ମୋର ନିଷ୍ପତ୍ତି ଜଣାଇ ଦେଲି । ସେ ମୋର ଅସୁବିଧା ହୃଦୟଙ୍ଗମ କରି ମୋତେ ସେ ଦିଗରେ ଆଉ ବଳାଇଲେ ନାହିଁ ।

ଆଇ.ଏ. ପରୀକ୍ଷା ଦେଇ ସେହି ବସାରେ ଏକୁଟିଆ ରହିଥାଏ । ମୋ ବସାକୁ ଲାଗି Star of Utkal ପ୍ରେସ୍ ଓ ଅଫିସ । ରାଜକୃଷ୍ଣବାବୁ ପରିଚାଳକ । ସେଇ ପତ୍ରିକାରେ ସର୍ବପ୍ରଥମେ ଆମେ ପରୀକ୍ଷାଫଳ ବାହାରିଲା । ମନେ ନାହିଁ କିଏ ଜଣେ ସହପାଠୀ ଦାଣ୍ଡ କବାଟରେ ଆଘାତ କଲେ । ମୁଁ ଦ୍ୱାର ଖୋଲିବାକୁ ଆସିବାରୁ ମୋତେ କହିଲେ "ପରୀକ୍ଷାଫଳ ବାହାରିଲାଣି, ତୁମେ ଏତେବେଳେ ଘରଭିତରେ ପଶିଛ ! ଜାଣିଲଣି ତୁମ result ? ମୁଁ ନାହିଁ କରିବାରୁ ସେ କହିଲେ, ତୁମେ ଫାଷ୍ଟ ଡିଭିଜନ ମାରିଦେଇଛ ।"

ମୁଁ ଆନନ୍ଦରେ ବିହ୍ୱଳ ହୋଇ ତାଙ୍କ କଥାର ସତ୍ୟତା ଜାଣିବା ପାଇଁ ପ୍ରେସ୍‌କୁ ଗଲି । ବହୁତ ପିଲା ବାହାରେ ଅପେକ୍ଷା କରି ରହିଥାନ୍ତି । ରାଜକୃଷ୍ଣବାବୁ ମୋତେ କିନ୍ତୁ ଭିତରକୁ ଛାଡ଼ିଦେଲେ । ପାସ୍ ତାଲିକାରୁ ଦେଖିଲି, ମୁଁ ପ୍ରଥମ ଶ୍ରେଣୀରେ ପାସ୍ କରିଛି, ବିଶ୍ୱବିଦ୍ୟାଳୟରେ ପଞ୍ଚମ ଓ ଆମ କଲେଜରେ ତୃତୀୟ ସ୍ଥାନ ଅଧିକାର କରିଛି । ପ୍ରଥମ ସ୍ଥାନ ପାଇଥାନ୍ତି ଶ୍ରୀ ପ୍ରାଣନାଥ ମହାନ୍ତି (ପରେ ଆଇ.ଏ.ଏସ୍) ଏବଂ ଦ୍ୱିତୀୟ ହୋଇଥାନ୍ତି ଅଧ୍ୟାପକ ଗୋପାଳଚନ୍ଦ୍ର ଗାଙ୍ଗୁଲିଙ୍କ ପୁଅ ନିଖିଳଚନ୍ଦ୍ର । ନିଖିଲ ଏଠାରେ ନ ପଢ଼ି କଲିକତା ଚାଲିଗଲେ ବି.ଏ. ପଢ଼ିବା ପାଇଁ, ତେଣୁ ମୁଁ ସହଜରେ ଗୋଟିଏ କୋଡ଼ିଏ ଟଙ୍କିଆ ସରକାରୀ ବୃତ୍ତି ପାଇଗଲି ।

ଅଧ୍ୟବସାୟ କଦାପି ବ୍ୟର୍ଥ ହୁଏ ନାହିଁ । ପରୀକ୍ଷାର ଫଳ ଲାଗି ମନେ ମନେ ଭଗବାନଙ୍କୁ ଅଶେଷ ଧନ୍ୟବାଦ ଦେଲି । ବି.ଏ. ପଢ଼ିବା ପାଇଁ ଅନ୍ତତଃ ଗୋଟିଏ ସାହାଯ୍ୟ ମିଳିଗଲା । ଆଉ ଯାହା ମାସିକ ପନ୍ଦର କୋଡ଼ିଏ ଟଙ୍କା ନିଅଣ୍ଟ ପଡ଼ିବ, ଟିଉସନ ଦ୍ୱାରା ଚଳାଇ ନେଇହେବ ।

ଆଇ.ଏ.ରେ History, Logic, Sanskrit ନେଇଥିଲି । ବି.ଏ.ରେ ନେଲି History, Economics, English Honours. ଜୋବ୍ରା ନିକଟ ଚାଉଳକଳ ପାଖରେ ଗୋଟିଏ ମେସ୍‌ରେ ରହି ବି.ଏ. ପଢ଼ିଲି ।

ସେତେବେଳେ ରେଭେନ୍ସା କଲେଜରେ ସମସ୍ତେ ଥିଲେ ଛାତ୍ର । ଛାତ୍ରୀ କେହି ନ ଥିଲେ । ଆମରି ସମୟରେ ପ୍ରଥମ ଛାତ୍ରୀ କଲେଜରେ ନାମ ଲେଖାଇଲେ । ଏ ଷାଠିଏ ବର୍ଷ ଭିତରେ ଅବସ୍ଥା କେତେ ବଦଳିଗଲାଣି !

କିନ୍ତୁ ଗୋଟିଏ କଥା ବଦଳି ନାହିଁ-ଖେଳପଡ଼ିଆରେ ମାଡ଼ପିଟ । ବର୍ତ୍ତମାନ ଯେପରି ବେଳେବେଳେ ଫୁଟବଲ ଖେଳରେ ମହାଭାରତ ଯୁଦ୍ଧ ଲାଗିଯାଉଛି, ସେତେବେଳେ ବି ସେହିପରି

ହେଉଥିଲା । ହ୍ୟୁଇଟଲକ୍ ସାହେବ ଆମର ପ୍ରିନ୍‌ସିପାଲ ଥିଲାବେଳେ ଥରେ କଲେଜ ଓ ମେଡ଼ିକାଲ ପିଲାଙ୍କ ଭିତରେ ଫୁଟବଲ ଖେଳ ହେଉଁ ହେଉଁ ମୁଣ୍ଡ ଫଟାଫଟି ପର୍ଯ୍ୟନ୍ତ ଯାଇଥିଲା । ମନୁଷ୍ୟଙ୍କ ଭିତରେ ଦେବ ଓ ଦାନବ ଉଭୟେ ଅଛନ୍ତି । ସେ କଣ କେବେ ବଦଳିବ ?

ବି.ଏ. ଶ୍ରେଣୀରେ ଥିଲାବେଳେ *Ravenshavian* ରେ ଏବଂ 'ସହକାର'ରେ ମୋର କେତେ ଗଳ୍ପ ଓ କବିତା ପ୍ରକାଶ ପାଇଥିଲା । ଏହି ସମୟରେ ମୋ 'ତୁଳସୀଦାସ' ବହିର ପାଣ୍ଡୁଲିପି ପ୍ରସ୍ତୁତ କରିଥିଲି ଏବଂ ମାଇନର ଶ୍ରେଣୀ ଉପଯୋଗୀ ଖଣ୍ଡେ ଟ୍ରାନ୍‌ସଲେସନ ବହି ମଧ୍ୟ ଲେଖିଥିଲି । 'ଉତ୍କଳ ବୁକ୍ କମ୍ପାନୀ'ର ମ୍ୟାନେଜର କୃଷ୍ଣଚନ୍ଦ୍ର ପ୍ରଧାନ ତାହାକୁ ପ୍ରକାଶ କରିଥିଲେ Mathew Arnold ଙ୍କ Sohrab and Rustum ର ଏକ ପଦ୍ୟାନୁବାଦ କରିଥିଲି ଏତିକିବେଳେ । ମୂଳ ଇଂରାଜୀ ପରି ମୋ ଅନୁବାଦ ମଧ୍ୟ ଅମିତ୍ରାକ୍ଷର ଛନ୍ଦରେ ରଚିତ ହୋଇଥିଲା । ଇଂରାଜୀ :

The first grey of morning filled the east,
And the fog rose out of the Oxus stream;

ମୋର ଓଡ଼ିଆ ଅନୁବାଦ :

ପ୍ରାଚୀପଟେ ପ୍ରକାଶିଲା ପ୍ରଭାତର ପ୍ରଥମ ସିନ୍ଦୂର,
ଅକ୍ଷସା ତଟିନୀବକ୍ଷୁ ସ୍ତରେ ସ୍ତରେ ଉଠିଲା କୁହେଳି;

ଆମ ଇଂରାଜୀ ଅଧ୍ୟାପକ ଗିରିଜାବାବୁଙ୍କୁ ଏହି ଖଣ୍ଡକାବ୍ୟଟି ପଢ଼ି ସଂଶୋଧନ କରିଦେବାକୁ ଅନୁରୋଧ କରିଥିଲି, ମାତ୍ର କେତେକ ଅସୁବିଧା ଯୋଗୁଁ ତାହା ହୋଇପାରି ନ ଥିଲା । ସେ ଲେଖାଟି ଅନେକ ଦିନ ପର୍ଯ୍ୟନ୍ତ ମୋ ପାଖରେ ରହିଥିଲା । ବାରିପଦା ହାଇସ୍କୁଲରେ ଶିକ୍ଷକ ଥିଲାବେଳେ ଥରେ ଗ୍ରୀଷ୍ମଛୁଟିରେ ମୋର ଅନ୍ୟାନ୍ୟ କେତେକ ଜିନିଷପତ୍ର ସହ ସେ ପାଣ୍ଡୁଲିପିଟି କୁଆଡ଼େ ହଜିଗଲା, ଜାଣିପାରିଲି ନାହିଁ ।

ଛାତ୍ରାବସ୍ଥାରେ ମୁଁ ଖେଳ ବା ବକ୍ତୃତାରେ ସାମୟିକ ଭାଗ ନେଉଥିଲି ହେଁ କୌଣସିଟିରେ କେବେ ଉତ୍କର୍ଷ ଅର୍ଜନ କରି ପାରି ନଥିଲି । ଅର୍ଥାଭାବ ମୋତେ ମଧ୍ୟେ ମଧ୍ୟେ ବିବ୍ରତ କରିପକାଉଥିଲା, କିନ୍ତୁ ସବୁବେଳେ ଶେଷ ମୁହୂର୍ତ୍ତରେ ଭଗବାନ ମୋର ଅଭାବ ପୂରଣ କରି ଦେଉଥିଲେ । ବି.ଏ. ଶ୍ରେଣୀରେ ଦୁଇ ତିନିଖଣ୍ଡ ଛୋଟ ଇଂରାଜୀ ବହି ଛଡ଼ା ଆଉ କିଛି କିଣି ପାରିନଥିଲି । ଥରେ ନିମାଇବାବୁ (ସୁପରିଚିତ ପୁସ୍ତକପ୍ରଣେତା ଓ ସଂକଳକ) ମୋତେ ରାସ୍ତାରେ ଖାଲି ଗୋଡ଼ରେ ଚାଲୁଥିବାର ଦେଖି ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ । ଏପରି ଅବସ୍ଥାରେ ଥାଇ ମଧ୍ୟ ଘରକୁ ସାମୟିକ କିଛି କିଛି ସାହାଯ୍ୟ ଦେଉଥିଲି । ସାନ ଭଉଣୀ ପଦ୍ମାର ବିଭାଘର ପାଇଁ ମୋତେ ପ୍ରାୟ ଏକଶତ ଟଙ୍କା ଦେବାକୁ ପଡ଼ିଥିଲା ।

ଆମର କିଛି ଜମିଦାରୀ, ମକଦମୀ ଓ ବିଷୟବୃତ୍ତି ଥିଲା ବୋଲି ପୂର୍ବରୁ କହିଛି। ଏପରି ସ୍ଥଳେ ଘରୁ ସାହାଯ୍ୟ ନ ଆଣି ମୁଁ କାହିଁକି ଓଲଟି ଘରଖର୍ଚ୍ଚ ପାଇଁ ସାମୟିକ ଟଙ୍କା ଦେଉଥିଲି, ତାହା ହୁଏତ କେତେକଙ୍କୁ ଆଶ୍ଚର୍ଯ୍ୟ ଲାଗିପାରେ। ସେଥିପାଇଁ ଘରର ତତ୍କାଳୀନ ପରିସ୍ଥିତି ସମ୍ବନ୍ଧରେ ଦୁଇଚାରି କଥା କହିବି।

ବୃଦ୍ଧ ପିତାମହ ଥିଲେ ଆମ ପରିବାରର ଏକାମାତ୍ର ପୋଷଣକର୍ତ୍ତା। ତାଙ୍କର ଅର୍ଥ ଉପାର୍ଜନର ଫନ୍ଦା ଭିତରେ ଥିଲା ଗୋଟିଏ ଦୋକାନ ଏବଂ ଚାଷବାସ। ସେଥିରୁ ସେ ଯାହା ଆୟ କରୁଥିଲେ, ତହିଁରେ ପରିବାରକୁ ଚଳାଇ ଉଦ୍‌ବୃତ୍ତ ଧନରେ ଋଣ ପରିଶୋଧ କରୁଥିଲେ। ତାଙ୍କ ଯୌବନରେ ଜମିଦାରୀ ଓ ମକଦମୀ କିଣିବାରେ ସେ ଗୁଡ଼ିଏ କରଜ କରି ପକାଇଥିଲେ ଏବଂ ତାର ସୁଧ ବହୁତ ବଢ଼ିଯାଇଥିଲା। ନାତିମାନଙ୍କ ମୁଣ୍ଡ ଉପରକୁ ସେ ବୋଝ ରଖିଯିବାକୁ ସେ ଚାହୁଁନଥିଲେ, ତେଣୁ ତାଙ୍କର ସମସ୍ତ ଉପାର୍ଜନ ମୁଖ୍ୟତଃ ସେହି ଉଦ୍ଦେଶ୍ୟରେ ବ୍ୟୟିତ ହେଉଥିଲା।

ଋଣ ପରିଶୋଧ କଲା ପରେ ସେ ଆମର ଇଷ୍ଟଦେବଙ୍କ ପାଇଁ ଗୋଟିଏ ପକ୍କା ଘର ତୋଳାଇବାକୁ ମନସ୍ଥ କଲେ। କେବଳ ଚାଷବାସର ଆୟରୁ ଗ୍ରାମାଞ୍ଚଳରେ ଗୋଟିଏ କୋଠାଘର ତୋଳିବା ଏଡ଼େ ସହଜ ନ ଥିଲା। ସେ କାଳରେ ଟଙ୍କାରେ ଧାନ ମିଳୁଥିଲା ଆଠ ଗୌଣୀ ଅର୍ଥାତ୍ ପ୍ରାୟ ୩୦ କିଲୋ, ନଡ଼ିଆ କଡ଼ାକୁ ଚାରିପଇସା ବା ଛଅ ପଇସା। ଏକେ ତ ପିତାଙ୍କର ଅକାଳ ମୃତ୍ୟୁ ଯୋଗୁଁ ଆମ୍ଭମାନଙ୍କର ଭରଣପୋଷଣ ଦାୟିତ୍ୱ ତାଙ୍କ ଉପରେ ପଡ଼ିଛି, ସେଥିରେ ପୁଣି ତାଙ୍କ ଜୀବନର ଶେଷ ଅଭିଳାଷ ପୂରଣ ପଥରେ ଅନ୍ତରାୟ ସୃଷ୍ଟି କରି ମୁଁ ପ୍ରତି ମାସରେ ତାଙ୍କୁ ଅର୍ଥ ସାହାଯ୍ୟ ମାଗିବି, ଏହା ମୁଁ ପସନ୍ଦ କରୁ ନଥିଲି।

ଚାହୁଁ ଚାହୁଁ ଦୁଇଟି ବର୍ଷ କଟିଗଲା। ବି.ଏ ପରୀକ୍ଷା ଦେଲି। ଆମର ଇଂରାଜୀ ଅନର୍ସ ପ୍ରଶ୍ନପତ୍ରରେ ଏପରି ଗୋଟିଏ ପ୍ରବନ୍ଧ ଲେଖିବାକୁ ପଡ଼ିଥିଲା, ଯାହାକୁ ଆମ କଲେଜରେ କୌଣସି ଛାତ୍ର ସେତେବେଳେ ବୁଝିପାରିଲୁ ନାହିଁ। ବର୍ତ୍ତମାନ ଶୁଣିଲେ ଅବଶ୍ୟ ଆଶ୍ଚର୍ଯ୍ୟ ଲାଗୁଛି। ବିଷୟଟି ଥିଲା- Broadcasting in India. ରେଡ଼ିଓ ଆଜିକାଲି ଘରେ ଘରେ, କିନ୍ତୁ ସେତେବେଳେ ଆମେ ରେଡ଼ିଓ ଦେଖି ନ ଥିଲୁ କି Broadcasting ଶବ୍ଦର ଅର୍ଥ ବୁଝି ନଥିଲୁ ! ଆଉ ସେ ବିଷୟରେ ପ୍ରବନ୍ଧ ଲେଖିଥାନ୍ତୁ କଣ ?

ବି.ଏ. ପରୀକ୍ଷା ଦେଇ ଗ୍ରାମକୁ ଗଲି। ଆମ ମୌଜାରେ ସେତେବେଳେ ବନ୍ଦୋବସ୍ତ କ୍ୟାମ୍ପ୍ ପଡ଼ିଥାଏ। ଜଣେ ବିହାରୀ ଡିପୋଟି ଥାନ୍ତି ସେଟଲ୍‌ମେଣ୍ଟ ଅଫିସର। ତାଙ୍କ ପାଖକୁ ପାଟନାରୁ ପ୍ରକାଶ ପାଉଥିବା 'Searchlight' ପତ୍ରିକା ଆସେ। ମୁଁ ପରୀକ୍ଷା ଦେଇଛି ବୋଲି ସେ ଜାଣିଥାନ୍ତି। ଦିନେ ରାତି ପ୍ରାୟ ୮ଟା ବେଳେ ସେ ଚୌକିଦାର ହାତରେ ମୋତେ ଡକାଇ

ପଠାଇଲେ। ମୁଁ ପହଞ୍ଚିବା ମାତ୍ରେ ମୋ ହାତକୁ ଖବରକାଗଜ ଖଣ୍ଡି ବଢ଼ାଇ ଦେଇ କହିଲେ, "ଆପଣଙ୍କ ପରୀକ୍ଷାଫଳ ବାହାରିଛି, ଦେଖନ୍ତୁ।" ମୁଁ ତାଙ୍କ ହାତରୁ କାଗଜଟି ନେଇ ଦେଖିଲି ଯେ ଇଂରାଜୀ ଅନର୍ସରେ ପାସ୍ କରିଥିବା ମୋଟ ଏଗାର ଜଣଙ୍କ ମଧ୍ୟରୁ ରେଭେନ୍ସା କଲେଜରୁ କେବଳ ମାତ୍ର ଜଣେ ପାସ୍ କରିଛି ଏବଂ ସେ ଜଣକ ମୁଁ। ମନ ଆନନ୍ଦରେ ନାଚି ଉଠିଲା। ଭଗବାନ ନାହାନ୍ତି ବୋଲି କିଏ କହେ ? ପଦେ ପଦେ ସେ ତ ମୋତେ ସାହାଯ୍ୟ କରୁଛନ୍ତି। ଆଗ ଯାଇ ବାପାଙ୍କୁ ଖବରଟା ଦେବାକୁ ହେବ। ଡିପୋଟିବାବୁଙ୍କୁ ଧନ୍ୟବାଦ ଜଣାଇ ଘରକୁ ଫେରିଲି।

## ଏମ୍.ଏ. ଶ୍ରେଣୀରେ ଯୋଗଦାନ (୧୯୨୯-୩୦)

ବି.ଏ. ତ ପାସ୍ କଲି, ତା'ପରେ କଣ କରିବି ? ଆଉ ପଢ଼ିବି ନା ଚାକିରି ଖୋଜିବି ? -ଏ ପ୍ରଶ୍ନ ମନକୁ ଆନ୍ଦୋଳିତ କଲା। ବୃଦ୍ଧ ବାପା ମୋ ସାହାଯ୍ୟକୁ ଅପେକ୍ଷା କରି ରହିଛନ୍ତି, ଅନ୍ୟ ତିନି ଭାଇଙ୍କର କୌଣସି ଉପାର୍ଜନ ନାହିଁ। ଡିପୋଟି, ସବ୍‌ଡିପୋଟି ଚାକିରି ପାଇଁ ଦରଖାସ୍ତ କରିବାକୁ କେତେକ ବନ୍ଧୁ ପରାମର୍ଶ ଦେଲେ। ସେତେବେଳେ ଯେଉଁମାନେ ବି.ଏ. ବା ଏମ୍.ଏ. ପରୀକ୍ଷାରେ କୃତିତ୍ୱ ଅର୍ଜନ କରୁଥାନ୍ତି କିମ୍ବା ଯେଉଁମାନଙ୍କର ମୁରବିବଳ ଥାଏ, ସେହିମାନଙ୍କୁ ସାଧାରଣତଃ ଉକ୍ତ ଚାକିରି ମିଳୁଥିଲା। ପ୍ରଥମେ ଜିଲ୍ଲାସ୍ତରରେ, ତା ପରେ ଡିଭିଜନ ସ୍ତରରେ ଏବଂ ଶେଷରେ ପ୍ରଦେଶ ସ୍ତରରେ 'ଇଣ୍ଟରଭିଉ' ଓ ବଛାବଛି ହେବା ପରେ ନିଯୁକ୍ତି ଦିଆଯାଉଥିଲା। ମୋ ସହପାଠୀମାନଙ୍କ ମଧ୍ୟରୁ କେତେକ ମଧ୍ୟ ଦରଖାସ୍ତ କରୁଥାନ୍ତି। କିନ୍ତୁ ମୁଁ ଯେ ଇଂରେଜ ସରକାର ଆଖିରେ ଜଣେ ଦାଗୀ ! ଚାରିବର୍ଷ କଂଗ୍ରେସରେ ପଶିଛି, କେତେ ଆଶ୍ରମରେ ଘେର ଦେଇଛି, ସତ୍ୟବାଦୀ ଜାତୀୟ ସ୍କୁଲରେ ପଢ଼ିଛି ଏବଂ ସେ ପର୍ଯ୍ୟନ୍ତ ଖଦଡ଼ ଛାଡ଼ି ନାହିଁ ! ସରକାରର ସତର୍କ ପ୍ରହରୀ ପୋଲିସବାଲା କଣ ଏ ଖବର ସବୁ ରଖି ନଥିବେ ? ପୁଣି ଯାହା ତାହା ଚାକିରି ନୁହେଁ, ଡିପୋଟି ଚାକିରି !

ଅସମ୍ଭବଂ ହେମମୃଗସ୍ୟ ଜନ୍ମ
ତଥାପି ରାମଃ ଲୁଲୁଭେ ମୃଗାୟ।

ସୁନାର ମୃଗ କଣ କେଉଁଠି ଅଛନ୍ତି ? ତଥାପି ରାମଚନ୍ଦ୍ରଙ୍କ ପରି ବ୍ୟକ୍ତି ପୁଣି ତ ଲୋଭ କରି ତା ପଛରେ ଗୋଡ଼ାଇଥିଲେ। "ଆଶ ବୈତରଣୀ ନଦୀ।" କାଳେ ଚାକିରି ଖଣ୍ଡେ ମିଳିଯିବ ପରା ? ସ୍ଥିର କଲି, ଦରଖାସ୍ତ କରିବି।

ମାତ୍ର ସେ ପର୍ଯ୍ୟନ୍ତ ତ ଆଉ ଘରେ ବସି ରହିବା ଠିକ୍ ହେବ ନାହିଁ, ପଢ଼ିବାକୁ ହେବ। କଟକରେ ସେତେବେଳେ କେବଳ ଇଂରାଜୀରେ ଏମ୍.ଏ. ପଢ଼ିବାର ବ୍ୟବସ୍ଥା ଥାଏ। କିନ୍ତୁ ମୋର ସମ୍ବଳ କାହିଁ ? ବି.ଏ. ଇଂରାଜୀ ପରୀକ୍ଷାରେ ରେଭେନ୍ସା କଲେଜର ଫଳ ଭଲ ହୋଇ ନ ଥିବାରୁ କେତେକ ପିଲା ଏମ୍.ଏ. ପଢ଼ିବାକୁ ପାଟନା ଚାଲିଯାଉଥାନ୍ତି। ବିଶ୍ୱବିଦ୍ୟାଳୟ ପାଟନାରେ,

ଅଧିକାଂଶ ପରୀକ୍ଷକ ବିହାରୀ । ତେଣୁ ପାଟନା କଲେଜର ଫଳ ଭଲ ହେବ, ଏହା ଆଶାକରିବା ସ୍ୱାଭାବିକ । ଆମର ଇଂରାଜୀ ଅଧ୍ୟାପକମାନଙ୍କ ଇଚ୍ଛା ଥାଏ-ମୁଁ କିପରି କଟକ କଲେଜରେ ଏମ୍.ଏ. ପଢ଼େଁ । ଆର୍ଥିକ ଅସୁବିଧା କଥା ସେମାନଙ୍କୁ କହିବାରୁ ମୋର ଦରମା ଛାଡ଼ ପାଇଁ ସେମାନେ ଚେଷ୍ଟା କରିବେ ବୋଲି ଆଶା ଦେଲେ । ମାତ୍ର ଘରର ଅବସ୍ଥା ଦୃଷ୍ଟିରୁ ମୋର ଆଉ ଅଧିକ ପଢ଼ିବାକୁ ଇଚ୍ଛା ନ ଥିଲା । କଂଗ୍ରେସରେ ପଶିବାଦିନଠାରୁ ଡିଗ୍ରୀର ମୋହ ଭାଙ୍ଗି ଯାଇଥିଲା । କେବଳ ଚାକିରି ପାଇବା ଲାଗି ଏମ୍.ଏ. କ୍ଲାସରେ ଭର୍ତ୍ତି ହେବା ଆବଶ୍ୟକ ମନେକଲି ଏବଂ ଏମ୍.ଏ. ଓ law ଉଭୟ ଶ୍ରେଣୀରେ ନାମ ଲେଖାଇଦେଲି ।

ଦୁଇ ତିନିମାସ ପରେ ଦେଖିଲି, ଏମ୍.ଏ. ଏବଂ law ଦୁଇଟିଯାକର ଖର୍ଚ୍ଚ ତୁଲାଇବା ମୋ ପକ୍ଷରେ କଷ୍ଟକର । ତେଣୁ ଦ୍ୱିତୀୟଟିକୁ ଛାଡ଼ିଦେଲି । ଏମ୍.ଏ.ରେ ଯଦିଓ ମୋତେ ଫ୍ରିଷ୍ଟୁଡେଣ୍ଟସିପ୍‌ଟିଏ ମିଳିଲା, ଅନ୍ୟାନ୍ୟ ଖର୍ଚ୍ଚ ପାଇଁ ଟିଉସନର ଆଶ୍ରୟ ନେବାକୁ ହୋଇଥିଲା ।

ତେଲଙ୍ଗୀବଜାରରେ ପଣ୍ଡିତ ଆକୁଳ ମିଶ୍ରଙ୍କ ଘର ନିକଟସ୍ଥ ଗୋଟିଏ ମେସ୍‌ରେ ରହି ଏମ୍.ଏ. ପଢ଼ିଲି । ସେଠାରେ ଭଗବାନ ମୋର ଧୈର୍ଯ୍ୟ ଓ ସହନଶୀଳତାର ଚରମ ପରୀକ୍ଷା କଲେ । ଅଭାବ ଅନଟନର ଏତେ ତୀବ୍ରତା ପୂର୍ବରୁ କେବେ ଅନୁଭବ କରି ନ ଥିଲି । ଅନେକଥର ବଜାରରେ ଜଳଖିଆ କରିଛି ବୋଲି କହି ମେସ୍‌ରେ ମିଲ୍ ବନ୍ଦ କରେ, ମାତ୍ର ଉପବାସରେ ରାତ୍ରି କଟାଏ । କେବେ କେବେ ଅବା ଚାରି ଛଅ ପଇସାର ବରା ଗୁଲୁଗୁଲା ଖାଇ ରହିଯାଏ । ମଝିରେ ମଝିରେ ପୁଣି ଘରକୁ ସାହାଯ୍ୟ ଦେବାକୁ ପଡ଼େ । ଟିଉସନ ଟଙ୍କା ଯଥେଷ୍ଟ ହୁଏ ନାହିଁ, ତେଣୁ ବନ୍ଧୁମାନଙ୍କଠାରୁ ବେଳେବେଳେ ଧାର ଆଣିବାକୁ ହୁଏ ।

ଶ୍ରୀ ଉମାଚରଣ ମହାନ୍ତିଙ୍କ ସଙ୍ଗେ ଏହିଠାରେ ମୋର ଭଲରକମ ପରିଚୟ ହେଲା । ସେ କଟକ ଟ୍ରେଡ଼ିଂ କମ୍ପାନୀରେ କାର୍ଯ୍ୟ କରୁଥାନ୍ତି । ମୋର ବାଲ୍ୟବନ୍ଧୁ ନଟବର ମହାପାତ୍ର ଆମରି ମେସ୍‌ରେ ରହି ମୁକ୍ତାରି ପରୀକ୍ଷା ଦେଉଥାନ୍ତି । ଆମେ ତିନିଜଣ ଅନେକଥର ଏକତ୍ର କାଠଯୋଡ଼ି କୂଳକୁ ବୁଲିବାକୁ ଯାଉଁ । ବନ୍ଧୁ ନଟବର ମୋ 'ତୁଳସୀ ଦାସ' ପାଣ୍ଡୁଲିପିର କିୟଦଂଶ ପଢ଼ି ତାହାକୁ ଉମାଚରଣବାବୁଙ୍କୁ ଛାପିବା ପାଇଁ ଦେବା ନିମନ୍ତେ ମୋତେ ପ୍ରସ୍ତାବ ଦେଲେ । ମୋର ଆଶା ଥାଏ, ବହିଟି ଛପାହେଲେ ସେ ସୂତ୍ରରୁ କିଛି ଟଙ୍କା ପାଇପାରିବି । ତେଣୁ ପାଣ୍ଡୁଲିପିଟିକୁ ଉମାଚରଣ ବାବୁଙ୍କୁ ଦେଖିବାକୁ ଦେଲି ।

ଦିନେ ରାତି ପ୍ରାୟ ନଅଟା ବେଳେ ପଣ୍ଡିତ ଆକୁଳ ମିଶ୍ର ଆମ ମେସ୍‌କୁ ଆସି ମୋତେ କହିଲେ, "ରାମକୃଷ୍ଣ, ତୁମର ସେ ତୁଳସୀଦାସ ଲେଖାଟି ଖୁବ ଭଲ ହୋଇଛି । ଉମାଚରଣ ସେ ପାଣ୍ଡୁଲିପିକୁ ମତେ ଦେଖିବାକୁ ଦେଇଥିଲା । ଆଜି ତାକୁ ମୁଁ ପଢୁଥିଲି । ଏତେ ଭଲ ଲାଗିଲା ଯେ ଏକା ନିଃଶ୍ୱାସରେ ପଢ଼ି ଶେଷ କରିଦେଲି । ମୋ ଜୀବନରେ ଆଉ ଖଣ୍ଡିଏ ମାତ୍ର ବହି ଏହିପରି

ପଢ଼ିଥିଲି- 'ନାଗ ମହାଶୟଙ୍କ ଜୀବନୀ ।' ଏ ଖଣ୍ଡି ଦ୍ୱିତୀୟ ।" ଏହିପରି ପ୍ରଶଂସା କରି ପଣ୍ଡିତ ମହାଶୟ ଚାଲିଗଲେ । ସେଦିନ ତାଙ୍କର ଏ ମତାମତ ଶୁଣି ମୋ ମନରେ ଯେଉଁ ଉତ୍ସାହ ଓ ଉଦ୍ଦୀପନା ଜାତ ହୋଇଥିଲା, ତାହା ବର୍ଣ୍ଣନା କରିବାକୁ ମୋର ଭାଷା ନାହିଁ । ତାଙ୍କରି ସୁପାରିସ ଫଳରେ ମୋର ପ୍ରଥମ ସାହିତ୍ୟିକ କୃତି ଯେ ମୁଦ୍ରିତ ହୋଇପାରିଲା, ସେଥିପାଇଁ ମୁଁ ତାଙ୍କ ନିକଟରେ ଚିର ଋଣୀ । ୧୯୬୪ରେ ତାଙ୍କ ଭଣଜା ଶ୍ରୀ ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କ ଉଦ୍ୟମରେ 'ଆକୁଳ ପଣ୍ଡିତେ' ନାମକ ଯେଉଁ ସ୍ମରଣିକା ପ୍ରକାଶ ପାଇଥିଲା, ତାର ସଂକଳନରେ ସାହାଯ୍ୟ କରି ମୁଁ ସେ ଋଣରୁ ଅଂଶିକ ମୁକ୍ତ ହୋଇଛି ଭାବି ଆଶ୍ୱସ୍ତ ହେଉଛି ।

ଉମାଚରଣବାବୁ ମୋର ବହିଟିକୁ ପ୍ରକାଶ କରି ମୋତେ ଏକକାଳୀନ ପଚାଶ ଟଙ୍କା ଦେଇଥିଲେ । ମୁଁ ତାଙ୍କୁ ସେ ପୁସ୍ତକର ସମସ୍ତ ସ୍ୱତ୍ୱ ବିକି ଦେଇଛି ବୋଲି ଧରି ନେଇଥିଲି । ମାତ୍ର ପରେ ସେ ବହିଟି ଅଷ୍ଟମ ଶ୍ରେଣୀର ଅତିରିକ୍ତ ପାଠ୍ୟ ରୂପେ ନିର୍ବାଚିତ ହେବାରୁ ତାର ରୟାଲଟି ବାବଦ୍ ଟଙ୍କା ମୁଁ ନାହିଁ କରିବା ସତ୍ତ୍ୱେ ସେ ମୋତେ ରୀତିମତ ଦେଉଥିଲେ ।

ଡିପୋଟି ଚାକିରି ପାଇଁ ଯେଉଁ ଦରଖାସ୍ତ କରିଥିଲି, ସେ ସମ୍ପର୍କରେ କଟକ କିଲ୍ଲା କଲେକ୍ଟରଙ୍କ ଅଫିସରେ ପ୍ରାର୍ଥୀମାନଙ୍କର 'ଇଣ୍ଟରଭିଉ' ହେଲା । କଲେକ୍ଟର ମାରଉଡ୍ ସାହେବ ଦରଖାସ୍ତରେ ମୋ ହସ୍ତାକ୍ଷର ଦେଖି ପଚାରିଲେ, "Is it your own handwriting ?" -ଏ କଣ ତୁମ ନିଜ ହସ୍ତାକ୍ଷର ? ମୁଁ 'ହଁ' କହିବାରୁ ସେ ଖୁବ୍ ଖୁସି ହୋଇ ମୋର ସ୍ୱାସ୍ଥ୍ୟ ପରୀକ୍ଷା ବିଷୟରେ ଦୁଇ ଚାରିକଥା ପଚାରି ମୋତେ ବିଦାୟ ଦେଲେ । ଡିଭିଜନ ସ୍ତରୀୟ ସମ୍ମିଳନୀକୁ ଆମ କିଲ୍ଲାରେ ଯେଉଁ ଦଶକଣ ବଛା ହେଲେ, ମୋର ନାମ ସେଥିରେ ସର୍ବପ୍ରଥମେ ଥିଲା ।

ଓଡ଼ିଶାରେ ସେତେବେଳେ ପାଞ୍ଚଟି ଜିଲ୍ଲା ଥିଲା । ପ୍ରତି କିଲ୍ଲାରୁ ଦଶକଣ ଲେଖାଏଁ ପ୍ରାର୍ଥୀ ବଛାହୋଇ ଡିଭିକନାଲ ସମ୍ମିଳନୀକୁ ଆସିଲେ । ସେଠାରେ ମଧ୍ୟ ଆମର କିଲ୍ଲା ହାକିମ ମୋତେ ପ୍ରଶଂସା କରି କହିଲେ, "I know he is a selfmade boy ?" -ମୁଁ ଜାଣେ ଏ ପିଲା ନିଜେ ନିଜକୁ ଗଢ଼ିଛି । Selfmade କଥା ପଦକ ଶୁଣି ସଭାପତି କମିଶନର ସାହେବ ମୋତେ ତାଙ୍କ ପାଖକୁ ଡାକି ମୋ ତାଳୁରୁ ତଳିପା ଯାଏ ଚାହିଁଗଲେ ଏବଂ ମୁଁ କି କି ଖେଳ ଖେଳେ ପଚାରିଲେ । ମୁଁ ଦେଶୀୟ ଖେଳ, ଫୁଟବଲ ଏବଂ ବ୍ୟାଡ଼ମିଣ୍ଟନ ଆଦି ଖେଳେ ବୋଲି କହିଲି । ମୋ ଚେହେରାରେ ଅବଶ୍ୟ ଖେଳୁଆଡ଼ର କୌଣସି ଲକ୍ଷଣ ନ ଥିଲା । ତଥାପି ପାଟନାକୁ ଯିବାପାଇଁ ଯେଉଁ ଦଶକଣ ବଛା ହେଲେ, ମୁଁ ସେମାନଙ୍କ ମଧ୍ୟରେ ରହିଲି ।

ପାଟନାରୁ ଚିଠି ଆସିଲା, ନିର୍ବାଚନ ବୋର୍ଡ ଆଗରେ ନିର୍ଦ୍ଦିଷ୍ଟ ଦିନ ଉପସ୍ଥିତ ହେବାକୁ ହେବ । ସାହେବୀ ପୋଷାକ ଦରକାର । ଓଡ଼ିଶାରେ ଯେଉଁ ଇଣ୍ଟରଭିଉ ହେଲା, ମାଗିଯାଚି ଚଳାଇ

ନେଇଥିଲି । ଏ କ୍ଷେତ୍ରରେ ମଧ୍ୟ ସେଇଆ କରିବାକୁ ହେବ । ନେକ୍‌ଟାଇ ବାନ୍ଧିବାର କୌଶଳ ଶିଖିବାକୁ ହେଲା । ସେ କାଳରେ ଅଧିକାଂଶ ପିଲା ଧୋତି ପିନ୍ଧି କଲେଜକୁ ଯାଉଥିଲେ । ମୁଁ କିନ୍ତୁ ଖଦଡ଼ ଲୁଗା ପିନ୍ଧି ଯାଉଥିଲି ।

ବାଟଖର୍ଚ୍ଚ ଏବଂ ପୋଷାକପତ୍ର ଯୋଗାଡ଼ କରି ପାଟନା ଗଲି । କଂଗ୍ରେସରେ ଯୋଗ ଦେବା ଫଳରେ ସାହସ ଟିକିଏ ବଢ଼ି ଯାଇଥିଲା । ସକାଳୁ ହାବଡ଼ା ଷ୍ଟେସନରେ ଓହ୍ଲାଇ, ଏକା ଏକା ଭିକ୍‌ଟୋରିଆ ମେମୋରିଆଲ ଦେଖି, ପୁଣି ୧୦ଟାବେଳେ ପାଟନାକୁ ଗାଡ଼ି ଧରିଲି । ପାଟନାରେ ଆମ ଗ୍ରାମର ମୋର କକେଇ ଆର୍ତ୍ତତ୍ରାଣ ନନ୍ଦ ଚାକିରି କରୁଥାନ୍ତି । ତାଙ୍କରି ବସାରେ ରହି 'ଇଣ୍ଟରଭିଉ'କୁ ଗଲି । ମୋର ଖଦଡ଼ ଲୁଗା ଦେଖି ଆର୍ତ୍ତକକେଇ ହସି ହସି କହିଲେ, "ଆମ ବସାରେ ତ ସି.ଆଇ.ଡ଼ି. ଅଛନ୍ତି; ଏଠାକୁ କାହିଁକି ଖଦଡ଼ ଆଣିଛୁ ?" ମୁଁ ସେହିପରି ହସି ହସି ଉତ୍ତର ଦେଲି, "କିଛି ନ ହେଲେ ପାଟନା ଦେଖିବାଟା ତ ହେବ ।"

ସରକାରୀ ଚାକିରି ପାଇଁ ମୋର ଆହୁରି ବର୍ଷେ ବୟସ ଥାଏ । ଇଣ୍ଟରଭିଉରେ ମୋର କିଛି ହେଲା ନାହିଁ, କେବଳ କଲିକତା ଓ ପାଟନା ଦେଖା ସାର ହେଲା ।

ପଞ୍ଚମ ବାର୍ଷିକ ଶ୍ରେଣୀରେ ଶ୍ରୀଯୁକ୍ତ ନିରଞ୍ଜନ ନିୟୋଗୀ, କେ.ପି.ସିହ୍ନା, କୃତ୍ତିବାସ ସାମନ୍ତରାୟ, ବରଦାକାନ୍ତ ଚାଟାର୍ଜୀ ପ୍ରମୁଖ ଆମର ଅଧ୍ୟାପକ ଥାନ୍ତି । ସେ ବର୍ଷ ନୂତନ ସିଲାବସ୍ ଅନୁଯାୟୀ କେତେକ ଇଂରାଜୀ ପାଠ୍ୟପୁସ୍ତକ ମିଳୁ ନ ଥିବାରୁ ଆମ ପଢ଼ାପଢ଼ିରେ ବ୍ୟାଘାତ ଘଟିଥାଏ । ତେଣୁ ବାର୍ଷିକ ପରୀକ୍ଷା ନ କରାଇବା ପାଇଁ ଆମ୍ଭେମାନେ ଅଧ୍ୟାପକଙ୍କ ନିକଟରେ ଆପତ୍ତି କଲୁ, ମାତ୍ର ତାହା ଶୁଣା ନ ଯିବାରୁ ସମସ୍ତେ ମିଳି ସ୍ଥିର କଲୁ, ପରୀକ୍ଷା ହଲରେ କେବଳ ପାଞ୍ଚ ମିନିଟ୍ ବସି ଅଲେଖା ଖାତା ଦେଇ ବାହାରି ଆସିବୁ । ପରୀକ୍ଷାର ପ୍ରଥମ ଦିନ ସେଇଆ କଲୁ ଏବଂ ସଙ୍ଗେ ସଙ୍ଗେ ସମସ୍ତେ କଲେଜ ଛାଡ଼ି ବସାକୁ ଚାଲି ଆସିଲୁ ।

ଦୁଇ ତିନି ଘଣ୍ଟା ପରେ ପ୍ରିନ୍‌ସିପାଲ ଟି.ସି. ଅର୍ଗିଲଙ୍କ ସ୍ୱାକ୍ଷରରେ ଖଣ୍ଡିଏ ଚିଠି କଲେଜ ପିଅନ ଆଣି ଦେଇଗଲା । ସେଥିରେ ଲେଖାଥିଲା - ଆଜି ତୁମେ ପରୀକ୍ଷାରେ ମିଳିତ ଭାବରେ ଯାହା କରିଛ, ତାହା ଅତ୍ୟନ୍ତ ଅସନ୍ତୋଷଜନକ । ତୁମର ପ୍ରମୋଶନର ପଥ ସୁଗମ କରିବା ପାଇଁ ପରବର୍ତ୍ତୀ ପରୀକ୍ଷାମାନଙ୍କରେ ଭଲ କରିବାକୁ ମୁଁ ତୁମକୁ ଏତଦ୍ୱାରା ନିର୍ଦ୍ଦେଶ ଦେଉଛି ।

ସନ୍ଧ୍ୟାବେଳେ କାଠଯୋଡ଼ି କୂଳ ବଡ଼ ବୁରୁଜ ଉପରେ ଆମ ସମସ୍ତଙ୍କର ଏକ ମନ୍ତ୍ରଣା ସଭା ବସିଲା । ଆଲୋଚନା ପରେ ସ୍ଥିର ହେଲା, ତା ପରଦିନ ପ୍ରଥମେ ପ୍ରିନ୍‌ସିପାଲଙ୍କୁ ଦେଖା କରି ସମସ୍ତ ବିଷୟ ଜଣାଇ, ତାପରେ ଯାହା କରିବୁ ।

ପରଦିନ କଲେଜକୁ ଯାଇ ଦେଖିଲୁ, ଆମ ପଞ୍ଚମ ବାର୍ଷିକ ଶ୍ରେଣୀର ପିଲାଙ୍କୁ ଅନ୍ୟ ପିଲାମାନେ ପାଖରୁ ଅଲଗା କରି ଅଫିସ ପାଖ ଗୋଟିଏ ଛୋଟ ବଖରାରେ ପରୀକ୍ଷାର ବ୍ୟବସ୍ଥା

କରାଯାଇଛି ଏବଂ ସେଠାରେ ଆମର ଇଂରାଜୀ ବିଭାଗର ମୁଖ୍ୟ ଅଧ୍ୟାପକ ବରଦାବାବୁ ଆମକୁ ଅପେକ୍ଷା କରି ଠିଆ ହୋଇଛନ୍ତି । ତାଙ୍କର ଅନୁମତି ନେଇ ପ୍ରିନ୍‌ସିପାଲଙ୍କୁ ଭେଟିଲୁ ଏବଂ ଆମର ଆପତ୍ତି ଜଣାଇଲୁ; ମାତ୍ର ସେ କହିଲେ, "ତୁମ୍ଭେମାନେ ମେଳି ବାନ୍ଧି କାଲି ଯାହା କରିଛ, ତାହା ସଂପୂର୍ଣ୍ଣ ନିୟମବିରୁଦ୍ଧ । କାହାକୁ କିଛି ପାଠ ଆସିଲା ନାହିଁ, ଏହା କଣ ବିଶ୍ୱାସ କରାଯାଇପାରେ ? ସେପରି ନ କରି ଯାହାକୁ ଯାହା ଆସୁଛି, ଲେଖ । ଆଗ ପରୀକ୍ଷା ଦିଅ, ପରେ ତୁମର ଆପତ୍ତି ବିଚାର କରାଯିବ ।"

ଶୁଣିଥିଲୁଁ ପ୍ରିନ୍‌ସିପାଲ ଅର୍ଗିଲ ସାହେବ ପୂର୍ବେ ସାମରିକ ବିଭାଗରେ କୁଆଡ଼େ କାର୍ଯ୍ୟ କରୁଥିଲେ । କୌଣସି ପ୍ରକାର ବିଶୃଙ୍ଖଳାକୁ ବରଦାସ୍ତ କରିବା ଲୋକ ସେ ନୁହନ୍ତି । ମୁଁ ଏ ମେଳିରେ ଯୋଗ ଦେଇଥିବାରୁ ସେ ମୋର ଫ୍ରିଷ୍ଟୁଡେଣ୍ଟସିପ୍ କାଟି ଦେବାର ଧମକ ଦେଲେ । ଯାହା ହେଉ, ତାଙ୍କ ପାଖରୁ ଆସି ପରୀକ୍ଷା ହଲକୁ ଯିବା ଭିତରେ ଆମ୍ଭେମାନେ ବିଚାର କରି କର୍ମପନ୍ଥା ସ୍ଥିର କରିନେଲୁ । କଥା ହେଲା ଯେ ଗୋଟିଏ ପୃଷ୍ଠାରୁ କେହି ଅଧିକ ଲେଖିବୁ ନାହିଁ । କିଏ କଣ କଲା କହିପାରିବି ନାହିଁ, ମୁଁ କିନ୍ତୁ ତାହାହିଁ କଲି । ପରୀକ୍ଷା ପରେ ନୋଟିସ ବାହାରିଲା, କେତେକ ପତ୍ରରେ ପୁନର୍ବାର ପରୀକ୍ଷା ଦେବାକୁ ହେବ । ଷଷ୍ଠ ବାର୍ଷିକ ଶ୍ରେଣୀକୁ ଆମ୍ଭମାନଙ୍କର ପ୍ରମୋଶନ ସେ ପର୍ଯ୍ୟନ୍ତ ସ୍ଥଗିତ ରଖାଗଲା ।

•

---

***ଜୀବନ ତରଙ୍ଗ,*** ସୌଦାମିନୀ ପ୍ରକାଶନ, କଟକ, ୧୯୮୯

# କଟକରେ ଉଚ୍ଚଶିକ୍ଷା

## ଶ୍ୟାମସୁନ୍ଦର ମିଶ୍ର

୧୯୨୭ ମସିହାରେ ମାଟ୍ରିକ ପରୀକ୍ଷା ପାସ୍ କରି ଉଚ୍ଚଶିକ୍ଷା ଲାଭ କରିବା ପାଇଁ ମୁଁ କଟକ ଆସିଲି । କିଂତୁ ଉଚ୍ଚଶିକ୍ଷା ପାଇବା ପାଇଁ ପ୍ରଚ଼ଣ୍ଡ ଅଭିଳାଷ ଥିଲେ ହେଁ, ତଦନୁରୂପ ସମ୍ବଳର ଅଭାବ । ବାଧ୍ୟ ହୋଇ କଟକ ବାଖରାବାଦରେ ଆତ୍ମୀୟମାନଙ୍କର ଏକ ମେସରେ ରହି ସେଠାରୁ ଚାଲି ଚାଲି ରେଭେନ୍‌ସା କଲେଜକୁ ଯାଇ ପାଠପଢ଼ିବା ଆରମ୍ଭ କଲି । ମୋର କଲେଜ ପଢ଼ାର ପ୍ରଥମ ବର୍ଷରେ ମୁଁ ଓ ମୋର ସହାଧ୍ୟାୟୀ ଶ୍ରୀଯୁକ୍ତ ଦୀନବଂଧୁ ତ୍ରିପାଠୀ ସନ୍ଧ୍ୟା ହେବା ସାଙ୍ଗେ ସାଙ୍ଗେ ନିମଚୌଡ଼ିରେ ପ୍ରତିଷ୍ଠିତ ହୋଇଥିବା "ସମାଜ" ଅଫିସକୁ ଯାଉ କେବଳ ପଣ୍ଡିତ ଗୋପବନ୍ଧୁଙ୍କୁ ଦେଖିବା ପାଇଁ ଏବଂ ସମ୍ଭବ ହେଲେ ତାଙ୍କ ଠାରୁ ଦି'ପଦ କଥା ଶୁଣିବା ପାଇଁ। ଏହା ଆମର ପ୍ରତିଦିନର ମୁଖ୍ୟ କର୍ତ୍ତବ୍ୟ ଥିଲା । ଅଧିକାଂଶ ଦିନ ଦାସେ ଆପଣେ କଟକ ଟାଉନ ହଲରେ କହିବାର ପ୍ରୋଗ୍ରାମ ଥାଏ । ଆମ୍ଭେ ଦୁହେଁ ତାଙ୍କ ସାଙ୍ଗରେ ଚାଲି ଚାଲି ଟାଉନ ହଲକୁ ଯାଉ । ଏପରି ଯିବା ଫଳରେ ଆମେ ଦୁହେଁ କଟକ ସହର ତଥା ଓଡ଼ିଶା ରାଜନୀତି ସହିତ ଢ଼ଣା ଅଧିକେ ପରିଚ଼ିତ ହୋଇ ପାରିଥିଲୁ। ଏହା ଫଳରେ ରାଜନୀତିକ ଅନୁଷ୍ଠାନଗୁଡ଼ିକର ଆଲୋଚ଼ନାରେ ମୁଁ ପାଗଳ ଭଳି ଯୋଗ ଦେଲି । ଦୈବାତ ମୁଁ ଇଣ୍ଟର ମିଡ଼ିଏଟ ପାସ୍ କରି ବି.ଏ. ପଢୁଥିଲା ବେଳେ ୧୯୨୮ ମସିହାରେ ପଣ୍ଡିତ ମୋତିଲାଲ ନେହେରୁଙ୍କ ସଭାପତିତ୍ୱରେ କଲିକତାରେ ଭାରତୀୟ ଜାତୀୟ କଂଗ୍ରେସର ଅଧିବେଶନ ଅନୁଷ୍ଠିତ ହୋଇଥିଲା । ସେତେବେଳେ ଦାସେ ଆପଣେଙ୍କ ଅକାଳ ବିୟୋଗ ଓଡ଼ିଶାର କଂଗ୍ରେସ ଦଳକୁ ଏକରକମ ନେତୃହୀନ କରିଥାଏ । କିନ୍ତୁ ଦାସେ ଆପଣେ ନିଜେ ଲେଖିଛନ୍ତି- ନ ଅଟକେ କର୍ମ ନେତାର ଅଭାବେ । କଲିକତା ଓଡ଼ିଶାର ଅତି ନିକଟବର୍ତ୍ତୀ ହୋଇଥିବା ହେତୁ ଓଡ଼ିଶା କଂଗ୍ରେସ ଅନୁଷ୍ଠାନର ବହୁ ନେତୃ ସ୍ଥାନୀୟ ଲୋକ କଲିକତା କଂଗ୍ରେସ ଅଧିବେଶନରେ ଯୋଗ ଦେଇଥିଲେ । ମୁଁ ଏବଂ ମୋର ସହାଧ୍ୟାୟୀ ଶ୍ରୀଯୁକ୍ତ ଜଗନ୍ନାଥ ମହାନ୍ତି ଏହି ଅବସରର ସୁଯୋଗ ନେଇ କଲିକତା କଂଗ୍ରେସରେ ଯୋଗ ଦେଇଥିଲୁ। ପ୍ରତିନିଧି ଭାବରେ ନୁହେଁ-ଦର୍ଶକ ଭାବରେ । ଆମେ ଦୁହେଁ

କଂଗ୍ରେସ ପରିସର ଭିତରେ ନ ଥିଲୁ; ଥିଲୁ କଲିକତା ବ୍ରଜନାଥ ଦତ୍ତ ଲେନ୍‌ରେ । କିନ୍ତୁ ଖାଇବା, ଶୋଇବା ସମୟ ବ୍ୟତୀତ ଆମର ଅନ୍ୟ ସମୟତକ ଅତିବାହିତ ହେଉଥିଲା ପାର୍କ ସର୍କସରେ, ଯେଉଁଠାରେ କଂଗ୍ରେସ ଅଧିବେଶନ ଅନୁଷ୍ଠିତ ହେଉଥିଲା । କଂଗ୍ରେସ ଅଧିବେଶନରେ ବହୁ ଜାତୀୟ ନେତାମାନଙ୍କୁ ଦେଖିବାର ସୁଯୋଗ ମିଳିଥିଲା । ପଣ୍ଡିତ ମୋତିଲାଲ ନେହେରୁ ତାଙ୍କର ସଭାପତି ଅଭିଭାଷଣ ଇଂରାଜୀ ଭାଷାରେ ଲେଖିଥିଲେ । ଖୋଲା ଅଧିବେଶନରେ ଯେତେବେଳେ ଉପସ୍ଥିତ ଜନତା ଦାବି କଲେ ଯେ ପଣ୍ଡିତଜୀ ତାଙ୍କର ସଭାପତି ଅଭିଭାଷଣ ହିନ୍ଦୀରେ ଦିଅନ୍ତୁ, ପଣ୍ଡିତ ମୋତିଲାଲ ସେଥିରେ ରାଜି ହେଲେ ନାହିଁ । ସେ କହିଲେ ଯେ ଭାରତର ପ୍ରତି କୋଣର ଲୋକେ ଏହି ଅଧିବେଶନରେ ଯୋଗ ଦେବାପାଇଁ ଆସିଛନ୍ତି । ସେମାନଙ୍କ ଭିତରୁ ଅନେକେ, ବିଶେଷତଃ ଦାକ୍ଷିଣାତ୍ୟର ଲୋକେ ହିନ୍ଦୀ ଜାଣନ୍ତି ନାହିଁ । ତେଣୁ ମୁଁ ନିଶ୍ଚୟ ଇଂରାଜୀ ଭାଷାରେ ମୋର ଅଭିଭାଷଣ ପଢ଼ିବି । ଏହା କହି ସେ ଇଂରାଜୀ ଭାଷାରେ ନିଜ ଅଭିଭାଷଣ ପଢ଼ିଲେ । ପଣ୍ଡିତ ମୋତିଲାଲ ଥିଲେ ଜଣେ ଦୃଢ଼ଚେତା; ଏକଜିଦିଆ ଲୋକ । ଯାହା ସେ ଠିକ୍ ବୋଲି ମନେ କରୁଥିଲେ, ସେଥିରୁ ତିଳେ ବିଚ୍ୟୁତ ହେବା ତାଙ୍କର ଅଭ୍ୟାସ ନଥିଲା । କିନ୍ତୁ ଏହି ଏକଜିଦିଆ ମନୋଭାବ ଯୋଗୁଁ ସେ କଲିକତାର ଓଡିଆ ଭାଷା-ଭାଷୀଙ୍କର ପ୍ରବଳ ବିକ୍ଷୋଭର ଶିକାର ହୋଇଥିଲେ । ମୋର ଯେତେଦୂର ମନେ ଅଛି, କଲିକତା କଂଗ୍ରେସର ବିଷୟ ନିର୍ବାଚନ ସଭାରେ, ଆମ ଦେଶରେ ଭବିଷ୍ୟତ ଶାସନ ଖସଡ଼ାର ଆଲୋଚନା ବେଳେ ପଣ୍ଡିତ ନୀଳକଣ୍ଠ ଦାସ ଏକ ପ୍ରସ୍ତାବ ଆଗତ କରିବାକୁ ଚାହିଁଥିଲେ ଯେ, ଭାଷା ସୂତ୍ରରେ ପ୍ରଦେଶ ଗଠନ ନୀତି ଅବଲମ୍ବନ କରାଯାଇ ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ କରାଯାଉ । ସେ ଏହି ପ୍ରସ୍ତାବ ଆଗତ କଲାବେଳେ ପଣ୍ଡିତ ମୋତିଲାଲ ତାଙ୍କୁ କହିଥିଲେ ଯେ, ବିଷୟ ନିର୍ବାଚନ ସଭାରେ ଏହି ବିଷୟ ଆଗତ ନ କରି, କଂଗ୍ରେସର ଖୋଲା ଅଧିବେଶନରେ ଏହି ବିଷୟ ଆଗତ କରାଗଲେ, ମୁଁ ସେଥିଲାଗି ସୁବିଧା ଦେବି । କିନ୍ତୁ ପଣ୍ଡିତ ନୀଳକଣ୍ଠ ଯେତେବେଳେ କଂଗ୍ରେସର ଖୋଲା ଅଧିବେଶନରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପ୍ରସ୍ତାବ ଆଗତ କରିବା ପାଇଁ ବସିଲେ, ପଣ୍ଡିତ ମୋତିଲାଲ ତାଙ୍କୁ ଅନୁମତି ଦେଲେ ନାହିଁ । ନୀଳକଣ୍ଠ ବାବୁ କହିଲେ ଯେ ମୁଁ ଏହି ପ୍ରସ୍ତାବ କଂଗ୍ରେସର ଖୋଲା ଅଧିବେଶନରେ ଆଗତ କଲେ, ଆପଣ ଅନୁମତି ଦେବେ ବୋଲି ପ୍ରତିଶ୍ରୁତି ଦେଇଥିଲେ । ଏହା ଶୁଣି ପଣ୍ଡିତ ମୋତିଲାଲ ବିଗିଡ଼ି ଯାଇ କହିଲେ ଯେ, "If the President makes a promise & goes back on it., what penalty can your exact from him?" ଅର୍ଥାତ୍ କଂଗ୍ରେସ ସଭାପତି ଯଦି ପ୍ରତିଶ୍ରୁତି ଦେଇ ପରେ ତାହା ଭଙ୍ଗ କରନ୍ତି, ତୁମେ ତାଙ୍କୁ କି ଦଣ୍ଡ ଦେଇପାରିବ ? ସ୍ପଷ୍ଟତଃ ପଣ୍ଡିତ ମୋତିଲାଲ ନିଜର ବୟସ, ପ୍ରତିପତ୍ତି ଓ ସଭାପତି ପଦର ସୁବିଧା ନେଇ ପଣ୍ଡିତ ନୀଳକଣ୍ଠଙ୍କୁ ଦବାଇ ଦେବାପାଇଁ ଚାହୁଁଥିଲେ । ଓଡ଼ିଶା କଂଗ୍ରେସର

ନେତୃସ୍ଥାନୀୟ ଲୋକ ଦେଖିଲେ ଯେ, କଂଗ୍ରେସ ଅଧିବେଶନରେ ସଭାପତିଙ୍କ ସହିତ ବାଦ, ବିବାଦ କରି ବିଶେଷ କିଛି ଲାଭ ହେବ ନାହିଁ।

ଅବଶ୍ୟ ଯୁକ୍ତି ତର୍କରେ ମୋତିଲାଲଙ୍କ ସହିତ ଟକ୍କର ଦେବା କାଠିକର ପାଠ। ତେଣୁ ବୁଦ୍ଧି ବଳରେ ଯାହା ସାଧନ କରିବା ସମ୍ଭବ ନୁହେଁ, ତାହା ଜନ ବଳରେ ସାଧନ କରିବା ଉଚିତ। କଲିକତାର ବିରାଟ ଓଡ଼ିଆ ଶ୍ରମଜୀବୀ ଦଳ ମୋତିଲାଲଙ୍କ ବିରୋଧରେ ଏକ ବିକ୍ଷୋଭର ଆୟୋଜନ କଲେ। ଏହି ବିକ୍ଷୋଭ ପ୍ରଥମେ ପଣ୍ଡିତ ଜବାହାରଲାଲଙ୍କ ଦୃଷ୍ଟି ଆକର୍ଷଣ କଲା। ସେ ବିକ୍ଷୁବ୍ଧ ଜନତାର ଉଦ୍ୟୋକ୍ତାମାନଙ୍କ ସହ ଆଲୋଚନା କରି ମତ ପ୍ରକାଶ କରିଥିଲେ ଯେ, କଂଗ୍ରେସ ସଭାପତି ଯେପରି ଭାବରେ ପଣ୍ଡିତ ନୀଳକଣ୍ଠଙ୍କୁ ପ୍ରସ୍ତାବ ଆଗତ କରିବା ଲାଗି ଅନୁମତି ଦେଲେ ନାହିଁ, ତାହା ଉଚିତ ହେଲା ନାହିଁ।

ଏହି ବିଷୟ କଂଗ୍ରେସର ନେତୃସ୍ଥାନୀୟ ଲୋକଙ୍କ ଭିତରେ ଆଲୋଚିତ ହେଲା ଏବଂ କଂଗ୍ରେସ ସଭାପତିଙ୍କ ନିର୍ଦ୍ଦେଶକ୍ରମେ ଡାକ୍ତର ପଟ୍ଟାଭି ସିତାରାମାୟା ବିକ୍ଷୁବ୍ଧ ଓଡ଼ିଆ ଜନତାକୁ ଭେଟି ସେମାନଙ୍କ ଆଗରେ ସଭାପତିଙ୍କ ତରଫରୁ ପ୍ରକାଶ କଲେ ଯେ, କଂଗ୍ରେସର ଖୋଲା ଅଧିବେଶନରେ ପଣ୍ଡିତ ନୀଳକଣ୍ଠ ପ୍ରତି ଯେପରି ବ୍ୟବହାର କରାଗଲା, ସେଥିରେ ସେ ଦୁଃଖିତ। ଭବିଷ୍ୟତରେ ପଣ୍ଡିତ ନୀଳକଣ୍ଠ ତାଙ୍କର ପ୍ରସ୍ତାବ ଆଗତ କଲେ, ସେ ତାହା ଆଲୋଚିତ ହେବା ପାଇଁ ଅନୁମତି ଦେବେ। ମୋର ମନେଅଛି ସେତେବେଳେ କଲିକତାରେ ଥିବା ବିଶାଳ ଓଡ଼ିଆ ଜନତାର ଏହା ଏକ ବିଜୟ ଭାବରେ ସ୍ୱୀକୃତ ହୋଇଥିଲା।

କଲିକତା କଂଗ୍ରେସ ଦେଖି ମୋ ମନରେ କଂଗ୍ରେସ ଦେଖିବା ଇଚ୍ଛା ଏତେ ପ୍ରବଳ ହୋଇଥିଲା ଯେ, ମୁଁ ଯେତେବେଳେ ସୁବିଧା ପାଇଲି, ପ୍ରେସ ପ୍ରତିନିଧି ଭାବରେ ଯୋଗଦେଇ ପଣ୍ଡିତ ଜବାହରଲାଲଙ୍କ ସଭାପତିତ୍ୱରେ ୧୯୩୬ ମସିହାରେ ଅନୁଷ୍ଠିତ ଲକ୍ଷ୍ନୌ କଂଗ୍ରେସ ଏବଂ ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ସଭାପତିତ୍ୱରେ ଅନୁଷ୍ଠିତ ତ୍ରିପୁରୀ କଂଗ୍ରେସରେ ଯୋଗ ଦେଇଥିଲି ଏବଂ ତତ୍କାଳୀନ କଂଗ୍ରେସର ନୀତି ଓ ବିଭିନ୍ନ କାର୍ଯ୍ୟକ୍ରମ ସଂପର୍କରେ ମୋର ଏକ ମୋଟାମୋଟି ଧାରଣା ଜନ୍ମି ଥିଲା।

କଲେଜରେ ପଢ଼ିବା ବେଳ ଥିଲା ଏକ ଆନନ୍ଦର ସମୟ। ରେଭେନ୍ସା କଲେଜକୁ ବିଭିନ୍ନ ସମୟରେ ଆମ ଦେଶର ବହୁ ବଡ଼ ବଡ଼ ଲୋକ ଆସୁଥିଲେ। ସେମାନଙ୍କ ଭିତରେ ଥିଲେ ଡକ୍ଟର ରାଧାକ୍ରିଷ୍ଣନ୍, ଡକ୍ଟର ପି.ସି. ରାୟ, ବିଖ୍ୟାତ ମାନବସେବାବ୍ରତୀ ମିଷ୍ଟର ସି.ଏଫ୍. ଏଣ୍ଡ୍ରୁଜ୍ ପ୍ରଭୃତି। ଏମାନଙ୍କ ସହିତ ସମସ୍ତ ରାଜନୀତିକ ଆଲୋଚନାରେ ଯୋଗ ଦେଉଥିଲେ ପଣ୍ଡିତ ଗୋପବନ୍ଧୁ ଦାସ। ପଣ୍ଡିତ ଗୋପବନ୍ଧୁଙ୍କ ପ୍ରତି ଉପରିଲିଖିତ ନେତୃସ୍ଥାନୀୟ ଲୋକମାନଙ୍କର ଯଥେଷ୍ଟ ଶ୍ରଦ୍ଧା ଓ ସମ୍ମାନ ଥିଲା। ପଣ୍ଡିତ ଗୋପବନ୍ଧୁଙ୍କର ଅକାଳ ବିୟୋଗରେ ମୋ ଭଳି କେତେକ ଯୁବକମାନଙ୍କ ମନରେ ଏହି ଧାରଣା ଜନ୍ମିଥିଲା ଯେ, ଓଡ଼ିଶା ବୋଧହୁଏ ନେତୃହୀନ ହୋଇଗଲା।

ଓଡ଼ିଶାରେ ପଣ୍ଡିତ ଓ ବୁଦ୍ଧିଜୀବୀ ଲୋକଙ୍କର ଯେତେ ଅଭାବ ନ ଥିଲା, ସେତେ ଅଭାବ ଥିଲା ଏପରି ହୃଦୟବାନ୍ ଲୋକଙ୍କର, ଯେ କି ଦେଶର ଯୁବକମାନଙ୍କୁ ଦେଶ ସେବା ଧର୍ମରେ ଦୀକ୍ଷିତ କରିପାରିବେ, କିନ୍ତୁ ସମୟ କାହାକୁ ଅପେକ୍ଷା କରେ ନାହିଁ। କଲେଜରେ ପଢ଼ିଲାବେଳେ ମୁଁ ଓଡ଼ିଶାର ବହୁ ନେତୃସ୍ଥାନୀୟ ଲୋକଙ୍କ ଦ୍ୱାରା ଆକୃଷ୍ଟ ହୋଇ ବହୁ ସଭା, ସମ୍ମିଳନୀରେ ଯୋଗଦେଲି। ତୁଳନାତ୍ମକ ଆଲୋଚ଼ନା କରିବା ଅସମୀଚ଼ୀନ, କିନ୍ତୁ ମୁଁ ବରାବର ମନେ କରୁଥିଲି ଯେ ଆମ ଦେଶର ବିଭିନ୍ନ ସମସ୍ୟାର ଆଲୋଚ଼ନାରେ ସ୍ୱର୍ଗତ ନିରଞ୍ଜନ ପଟ୍ଟନାୟକ ମହାଶୟ ଯେପରି ଅଧ୍ୟବସାୟ ଓ ଆନ୍ତରିକତା ଦେଖାଉଥିଲେ, ତାହା ତାଙ୍କର ସମସାମୟିକ ବହୁ ନେତୃସ୍ଥାନୀୟ ଲୋକମାନଙ୍କଠାରେ ଦେଖାଯାଉ ନଥିଲା। ମୋ ଭଳି ଜଣେ ଅଜ୍ଞାତ ଯୁବକ ପ୍ରତି ତାଙ୍କର ସ୍ନେହ ଓ ସହାନୁଭୂତି ଅସୀମ ଥିଲା। ମୁଁ ଯେତେବେଳେ ପ୍ରଥମେ ହିନ୍ଦ୍ ସେବକ ସଂଘର ଆଜୀବନ ସଭ୍ୟ ହେଲି, ସେ ଆନନ୍ଦରେ ମୋତେ କୁଣ୍ଢାଇ ପକାଇଥିଲେ। ଅତି ଅକାଳରେ ମାତ୍ର ୪୪ ବର୍ଷ ବୟସରେ ନିରଞ୍ଜନ ବାବୁଙ୍କର ବିୟୋଗ ହୋଇଥିଲା। କିନ୍ତୁ ସେ ବଞ୍ଚିଥିବା ଯାଏ, କୌଣସି ଜନମଙ୍ଗଳ କାମକୁ ଆଗେଇ ନେବାଲାଗି ମୁଁ ଯେତେବେଳେ ତାଙ୍କର ଦ୍ୱାରସ୍ଥ ହେଉଥିଲି, ସେ ଆନନ୍ଦର ସହିତ ମୋ ସହିତ ସହଯୋଗ କରୁଥିଲେ। ବହୁ ଅଭାବ, ଅସୁବିଧା ଭିତରେ ବି.ଏ. ପାସ୍‌ଟା ହୋଇଗଲା। ତା'ପରେ ଉଚ୍ଚଶିକ୍ଷା ପାଇବା ଲାଗି ପାଟନା ଯିବା ବାମନର ଚନ୍ଦ୍ର ଧରିବା ଭଳି ବୃଥା ପ୍ରୟାସ। ମୁଁ ଅର୍ଥନୀତିରେ ଅନର୍ସ ପାଇ ବି.ଏ. ପାସ୍ କରିଥିଲି ୧୯୩୧ ମସିହାରେ। ଏମ୍.ଏ. ପଢ଼ିବା ପାଇଁ ହେଲେ ଅର୍ଥନୀତି ବିଷୟ ନେଇ ମୋର ଏମ୍.ଏ. ପଢ଼ିବା ଦରକାର। କିନ୍ତୁ ସେତେବେଳେ ରେଭେନ୍‌ସା କଲେଜରେ ଅର୍ଥନୀତିରେ ଏମ୍.ଏ. ପଢ଼ା ଯାଉ ନଥିଲା। ମୁଁ ବି.ଏ. ପାସ୍ ପରେ କଟକରେ ଟ୍ୟୁସନ କରି କିଛି ଟଙ୍କା ସଂଗ୍ରହ କରିବାରେ ଥାଏ। ଏତିକିବେଳେ ମୋର ତଦାନୀନ୍ତନ ସଂସ୍କୃତ ଅଧ୍ୟାପକ ସ୍ୱର୍ଗୀୟ ଲକ୍ଷ୍ମୀକାନ୍ତ ଚୌଧୁରୀ ମତେ ତାଙ୍କ ଘରକୁ ଡାକି କହିଲେ ଯେ ମୁଁ ଛୋଟ ଛୋଟ ଟ୍ୟୁସନ ନ କରି ଯଦି ପୁରୀରେ ତାଙ୍କର ଭିଣୋଇ ରାୟବାହାଦୁର ଭାସ୍କର ଚନ୍ଦ୍ର ମହାପାତ୍ରଙ୍କ ପୁଅମାନଙ୍କୁ ପଢ଼ାଏ, ତାହାହେଲେ ମୁଁ ରହିବା, ଖାଇବା ଛଡ଼ା ମାସକୁ ଟ୧୨୦.୦୦ କରି ପାଇବି। କେବଳ ଗ୍ରୀଷ୍ମାବକାଶ ସମୟରେ ମାସକୁ ଟ୧୨୦.୦୦ ପାଇ ମୁଁ ଏମ୍.ଏ. ଶ୍ରେଣୀରେ ଅନ୍ତତଃ ନାମ ଲେଖାଇପାରିବି।

•

---

***ଜୀବନର ଜୁଆର ଭଟ୍ଟା***, ନାଳନ୍ଦା, କଟକ, ୧୯୯୦

# ରେଭେନ୍‌ସା କଲେଜ

## ବସନ୍ତ କୁମାର ଶତପଥୀ

ରେଭେନ୍‌ସା କଲେଜ ମୋର Alma-mater (ସମସ୍ତଙ୍କର ମାତା)। ରାମଚନ୍ଦ୍ର ଲଙ୍କାରୁ ଯେତେବେଳେ ସୀତାଙ୍କୁ ଧରି ଅଯୋଧ୍ୟାକୁ ଫେରୁଥିଲେ, ସରଜୁ ନଦୀକୁ ବିମାନରୁ ସୀତାଙ୍କୁ ଦେଖାଇ କହିଥିଲେ- "ସେ ଅଂ ମଦିଆ ଜନନୀ ଇବ" ଅର୍ଥାତ୍ ତାହାରି ପାଣି ମୁଁ ପିଇଛି। ତାହାରି ଉତ୍ସଙ୍ଗରେ ମୁଁ ଖେଳିଛି। ଛଅଟି ବର୍ଷ ରହଣି ଭିତରେ ଜୀବନର ଅସଲ ସମୟରେ ରେଭେନ୍‌ସାରେ କଟାଇ ମୁଁ ଧନ୍ୟହୋଇଛି। ଏତେ ପୂତ ଓ ପବିତ୍ର ସେ ଜାଗା ଯେ, ମୁଁ ଗତ ପଚାଶ ବର୍ଷ ଧରି ସେଠାକୁ ଥରୁଟିଏ ଯାଇନାହିଁ। ମୋତେ ଜଣାପଡେ ଯେମିତି ସେଇ ପ୍ରଫେସରଗଣଙ୍କ ପୂତ ପବିତ୍ର ଆତ୍ମା ତା ଭିତରେ ରହିଛନ୍ତି ଏବଂ ମୁଁ ପଶିଗଲେ ସେମାନଙ୍କର ଶାନ୍ତିରେ ବ୍ୟାଘାତଆସିବ। ସେଇ ରେଭେନ୍‌ସା ବିଷୟରେ ମୋ ମୁଣ୍ଡକୁ କିଏ ପୂରେଇ ଦେଇଥିଲା ଯେ, ସାରା ପୃଥିବୀରେ ବୋଧେ ସେଇଟା ବଡ କଲେଜ। ତାର ଯିଏ ଡିଜାଇନ୍ କରିଥିଲା, ସେ କୁଆଡେ ଲକ୍ଷେ ଟଙ୍କା ନେଇଥିଲା ! କି ସିମେଟ୍ରି ! କି ଡିଜାଇନ୍ ! କି ବିସ୍ତିର୍ଣ୍ଣ ପ୍ରାନ୍ତର ! ଭାରତର ସୀମାନ୍ତରେ ଦେବାତ୍ମା ହିମାଳୟ ପରି ମୋ ରେଭେନ୍‌ସା ଛିଡାରହିଛି। ଆଜି ଦୂରରୁ ଦେଖିଦେଲେ ମୁଣ୍ଡ ଆପେ ଆପେ ନଇଁଯାଏ। ପୂର୍ବ ପଶ୍ଚିମ ଦୁଇଟି ଛାତ୍ରାବାସକୁ ସଂଯୋଗ କରୁଛି କଳା ଓ ବିଜ୍ଞାନ ବିଭାଗ। ମଝିରେ କନିକା ଲାଇବ୍ରେରୀ।

ମନେ ପଡିଯାଉଛି- କଲେଜର ତତ୍‌କାଳୀନ ପ୍ରିନିସ୍‌ପାଲ୍ ଡବ୍ଲିୟୁ. ଭି. ଡ୍ୟୁକ୍ (ଉଇଲିୟମ୍ ଭିକ୍ଟର ଡ୍ୟୁକ୍)ଙ୍କ କଥା। ସେ କୁଆଡେ ପ୍ରଥମ ମହାଯୁଦ୍ଧ ସମୟରେ ମେସୋପଟାମିଆଁରେ ବ୍ରିଟିଶ ସରକାର ତରଫରୁ ଯୁଦ୍ଧକରିଥିଲେ। ସେ ଆମକୁ ଇଂଲଣ୍ଡ ଇତିହାସ ପଢାଉଥିଲେ। ଆମେ ବହୁତ ଦିନପରେ ଜାଣିଲୁ ଯେ, ସେ ଇତିହାସ ପଢାଉଛନ୍ତି। ସେ ଏମିତି ଭୋ ଭୋ କରି ଉଚାରଣ କରୁଥିଲେ ଯେ, ତାଙ୍କକଥାରୁ ଗୋଟିଏ ଶବ୍ଦ ବୁଝିପାରୁ ନଥିଲୁ। ମୋ ସାଙ୍ଗମାନେ ବହିପତ୍ର ରଖିଦେଇ ବୋର୍ଡିଂକୁ ଚାଲିଯାଉଥିଲେ ଏବଂ ଘଣ୍ଟାବାଜିଲେ ଫେରୁଥିଲେ। ତା ଭିତରେ ଅନେକଙ୍କର ଭାଲୁକର (ମେଲେରିଆ) ହୋଇ ଯାଉ ଥିଲା। କ'ଣ ପଢାଉଛନ୍ତି ସେମାନେ

ମୋତେ ପଚାରିଲେ, ମୁଁ କିଛି କହିପାରୁ ନଥିଲି । ତାଙ୍କ ସାମନାରେ ମୁଁ ବସିଥାଏ । ତେଣୁ କାଳେ ସେ ବିରକ୍ତ ହେବେ ବୋଲି ମୁଁ ଖସି ପଳାଇ ପାରୁ ନଥିଲି । ତନ୍ମୟହୋଇ ଚାହିଁରହିଥାଏ ତାଙ୍କ ମୁହଁକୁ । ଉପର ମହଲାରେ ଥିବା ତାଙ୍କ ଅଫିସକୁ ସେ ଆସନ୍ତି । ଘୁରି ଘୁରି ଉଠିଥିବା ଗୋଟିଏ ଲୁହା ଷ୍ଟେୟାରକେସ୍ ଦେଇ । କେବଳ ସୁକୃତି ପଟ୍ଟନାୟକ ବୋଲି ଏକ ଦୀର୍ଘକାୟା ସୁଶ୍ରୀ ଏମ୍.ଏ. ପଢୁଥିବା ଛାତ୍ରୀ ସେହି ପାହାଚ ଦେଇ ଆସେ । ପୁଅପିଲା କ୍ୱଚିତ୍ ତାହା ବ୍ୟବହାରକରନ୍ତି । କ୍ଲାସ୍‌କୁ ଆସିବାବେଳେ ପ୍ରଥମେ କଳା ମିଚିମିଚି ଲୋମଶ କ୍ଷୁଦ୍ରକାୟ କୁକୁରଟି ପଶିଆସେ । ତା ପଛେ ପଛେ ଲାଲ୍ ତକ୍‌ତକ୍ ମାଲିକ ଆସନ୍ତି । ତାଙ୍କ ପଛେ ପଛେ ରେଜିଷ୍ଟାର୍ ଧରି ଚପରାଶି ଆସେ । ହାଜିରା ପରେ ଉପସ୍ଥାନ ଖାତା , ଚକ , ଡାଷ୍ଟର ଧରି ଚପରାଶି ଅଫିସକୁ ଫେରିଯାଏ । ହାୟିଡେସ୍କ୍ ତଳେ କୁକୁରଟି ସାହେବଙ୍କ ଗୋଡ ପାଖରେ ଆରାମରେ ସାଙ୍ଗେ ସାଙ୍ଗେ ଶୋଇଯାଏ । ସାହେବ ଆରମ୍ଭ କରିଦିଅନ୍ତି ଭୋ ଭୋ । ପିଲାମାନେ ଶୁଣୁଛନ୍ତି କି ନାହିଁ , ବୁଝୁଛନ୍ତି କି ନାହିଁ , ସେ କଥା ସାହେବ ବୁଝନ୍ତି ନାହିଁ । ପିଲାମାନେ ବି ଜାଣିବାକୁ ଚାହାଁନ୍ତି ନାହିଁ ସାହେବ କ'ଣ ପଢାଉଛନ୍ତି । କେତେ ଦିନ ସାହେବଙ୍କୁ ଶୁଣିବା ପରେ ମୋ କାନ ଭିତରେ ପଶିଗଲା 'Seven wives'। ଜାଣି ପାରିଲି ସାହେବ ରାଜା ଅଷ୍ଟମ ହେନେରୀଙ୍କ ବିଷୟରେ ପଢାଉଛନ୍ତି । ମୋଠୁ ଶୁଣି ପିଲାମାନେ ଜାଣିଲେ କେଉଁ ବିଷୟ ପଢାହେଉଛି ଇତିହାସରୁ । ଘଣ୍ଟା ବାଜିଲା । କୁକୁର ଉଠିବସିଲା ଏବଂ ରାସ୍ତା ଧରିଲା । ପ୍ରିନିସ୍‌ପାଲ୍ ତା ପଛେ ପଛେ ଚାଲିଲେ । ସାଙ୍ଗପିଲାମାନେ ଯେ ଯେଉଁଠି ଥିଲେ ଆସିଗଲେ ।

ପ୍ରିନିସିପାଲ୍ ଭାରି ଡିସିପ୍ଲିନ୍ ମାନନ୍ତି । ଦିନେ ସାହେବ ତାଙ୍କ ଗାଡିରୁ କୁକୁର ସହିତରେ ଓହ୍ଲାଇପଡିଛନ୍ତି । ଦେଖିଦେଲେ , ଗୋଟିଏ ପିଅନ କାନ୍ଥ କଡରେ ବସି ଏକ କରୁଛି । ତା ନାଁ ପଚାରି ନେଇ ସାହେବ ଉପରକୁ ଚାଲିଗଲେ । ଦଶ ମିନିଟ୍ ଭିତରେ ଜଣା ପଡିଲା ଯେ , ସାହେବ ତାଙ୍କୁ ପଚାଶ ଟଙ୍କା ଜୋରିମାନା କରିଛନ୍ତି- "ଫର କମିଟିଙ୍ଗ୍ ନୁଇସେନ୍‌ସ ଇନ୍ ଦି କଲେଜ ପ୍ରେମିସିସ୍"। ସେତେବେଳେ ପଚାଶ ଟଙ୍କାରେ ପନ୍ଦରଶହ ଶେର ଚାଉଳ ମୟୂରଭଞ୍ଜରେ ମିଳୁଥିଲା । ସାହେବ କଠୋର ନୀତିବାଦୀ । ଦଣ୍ଡିତ ପିଅନଟି ପହଞ୍ଚିପାରିଲା ନାହିଁ ସାହେବଙ୍କ ପାଖକୁ । ପ୍ରଫେସର ଆର୍ତ୍ତବାବୁ ପିଅନ ତରଫା ହୋଇ ବହୁତ ଲଢିଲେ ସାହେବଙ୍କ ପାଖରେ । ତାଙ୍କୁ ବୁଝାଇଲେ , ପିଅନର ଆର୍ଥିକ ସ୍ୱଚ୍ଛଳତା ଦୃଷ୍ଟିରୁ ପଚାଶ ଟଙ୍କାର ମୂଲ୍ୟ । ସାହେବ ପଚାଶ ଟଙ୍କାକୁ ପଚିଶ କରିଦେଲେ । ପରେ ପ୍ରଫେସର ଗୁରୁଚରଣ ବାବୁ ଆଉ ଦୁଇ ତିନି ଜଣ ପ୍ରଫେସରଙ୍କୁ ନେଇ ପୁଣି ସାହେବଙ୍କ ପାଖରେ ପହଞ୍ଚିଲେ । ସାହେବ ତଥାପି ଜାଣିପାରିଲେ ନାହିଁ ଏମାନେ କ'ଣ କହୁଛନ୍ତି । ବିରକ୍ତହୋଇ ସାହେବ ତାଙ୍କ ଅର୍ଡର ଚିରିଦେଲେ ।

ସାହେବ ଯେ କେବେ ରେଭେନ୍‌ସା କଲେଜ ଛାଡିଲେ ବା ତାଙ୍କ ଜାଗାରେ କିଏ ଆସିଲେ ମନେପଡୁ ନାହିଁ । ମୋର ଛ ବର୍ଷ ରହଣି ଭିତରେ କେତେବେଳେ ଏଇଚ୍.ଆର୍.ବାଥେଜା ,

କେତେବେଳେ ଶ୍ୟାମଚନ୍ଦ୍ର ତ୍ରୀପାଠୀ, କେତେବେଳେ ପରିଜା ସାହେବ, ବାବା କର୍ତ୍ତାର ସିଂ ବା କେ.ପି. ସିହ୍ନା ପ୍ରିନିସ୍‌ପାଲ୍ ହୋଇଥିଲେ। ବାଥେଜା ସାହେବ ଗେଡା। ଇକୋନୋମିକ୍‌ସ୍ ତାଙ୍କ ପାଠ। ତାଙ୍କ ଦିହଯାକ ଖୁବ୍ ଘଞ୍ଚ ବଡ ବଡ ବାଳ। କିଏ କହୁଥିଲା ସେ ଦିନରେ କୁଆଡେ ତିନିଥର ଖିଅର ହୁଅନ୍ତି। କହ୍ଲିଲତା ବଢିବାଟା ଯେମିତି ଦେଖିହୁଏ, ତାଙ୍କ ଦିହର ଲୋମଗୁଡାକ ଗଜଉଥିବା ବା ବଢୁଥିବା ଯେ କେହି ଦେଖିପାରିବ ଖାଲି ଆଖିରେ। ବିଜ୍ଞାନ ପ୍ରଫେସରମାନଙ୍କୁ ମୁଁ ଭଲ ଜାଣେ ନାହିଁ। ପରିଜା ସାହେବ, ଆଉ ତ୍ରିପାଠୀ ସାହେବ ଦୁଇ ଜଣ I.E.S.। ଦି'ଜଣ ଦିଟା ହୋଷ୍ଟେଲ୍‌ରେ ୱାର୍ଡେନ୍ ଥିଲେ। କଲେଜରେ ଅନ୍ୟ କିଛି ଦର୍ଶନୀୟ୍ ବା ମନୋରଞ୍ଜକ ବ୍ୟକ୍ତିତ୍ୱ ନଥିବାରୁ ଆମେ ପ୍ରଫେସରମାନଙ୍କର ଚାଲିଚଳନ, କଥାବାର୍ତ୍ତା, ଗତିବିଧି, ପୋଷାକପରିଚ୍ଛେଦ ଟିକିନିଖିକରି ଦେଖୁଥିଲୁ। ତାଙ୍କ ଉପରେ କମେଣ୍ଟ କରୁଥିଲୁ। ତାଙ୍କ ବିଷୟ୍‌ରେ କଥାବାର୍ତ୍ତା ହୋଉଥିଲୁ ମଧ୍ୟ। କଦାପି କାହାରି ଉପରେ ଘୃଣାଭାବ ବା ଅସମ୍ମାନ ନଥିଲା, କୁତ୍ସା ମଧ୍ୟ କରୁ ନଥିଲୁ। ଆମେ ମନେମନେ ସମସ୍ତଙ୍କୁ ଉପାସ୍ୟ ଦେବତା ମଣୁଥିଲୁ। ଏଇଠି କହି ରଖୁଚି ଯେ, ଆମେ ଜାଣି ନ ଥିଲୁ ଲେକ୍‌ଚରାର୍ କିଏ, ରିଡାର କିଏ, ପ୍ରଫେସର୍ କିଏ ବା କିଏ କେଉଁ ଶ୍ରେଣୀର। ସମସ୍ତେ ପ୍ରଫେସର। ଦରମା କୁଆଡେ ସେମାନେ ୭୦୦ ଉପରେ ପାଉଥିଲେ। ଟୋକାଟାକଳିଆ ଅଧ୍ୟାପକ କେହି ନଥିଲେ। ଯେଉଁମାନେ ଟୋକାଥିଲେ, ସେମାନେ ବିଲାତ ଫେରନ୍ତା। କିଏ ପିଏଚ୍.ଡି ବା କିଏ ଏମ୍.ଫିଲ୍, ଏଗୁଡା ଜାଣିବାରେ ଆମର ଆଗ୍ରହ ନଥିଲା। ଅଧିକାଂଶ ପ୍ରଫେସର ଏମ୍.ଏ., ଏମ୍.ଏସ୍.ସି. ଫାଷ୍ଟ କ୍ଲାସ ଫାଷ୍ଟ ଗୋଲ୍‌ଡ ମେଡେଲିଷ୍ଟ। ଅଧିକାଂଶ ପାଣ୍ଡିତ୍ୟପୂର୍ଣ୍ଣ। ଜଣେ ଦି ଜଣ ପ୍ରଫେସର ଟିଉସନ୍ କରୁଥିଲେ। ରାଜରାଜୁଡା ବା ଜମିଦାରର ପୁଅ ବା ଭାଇମାନଙ୍କୁ। ସମଗ୍ର ରେଭେନ୍‌ସାରେ ୩-୪ ଜଣ ଟିଉସନ୍ ପଢୁଥିବା ପିଲା ବାହାରିବେ। 'ମାନେ' ବହିର ପ୍ରଚଳନ ନଥିଲା। ପିଲାମାନେ ଲଙ୍ଗ୍ ହ୍ୟାଣ୍ଡରେ ପ୍ରଫେସରଙ୍କର ମୁହଁର ବାଣୀ ଲିପିବଦ୍ଧ କରି ନେଉଥିଲେ। ପରୀକ୍ଷା ବେଳକୁ ଟେକ୍‌ଷ୍ଟ ବୁକ୍ ସହିତ ସେଗୁଡାକ ବ୍ୟବହାର କରୁଥିଲେ। ରାଣୀହାଟ ବୁକ୍ ଏଜେନ୍‌ସି ବୋଲି ଗୋଟିଏ ଛୋଟିଆ ବହି ଦୋକାନ ଥିଲା। ଯେଉଁ ବହି ଦୋକାନ ବା ଛାପାଖାନା ବାଲୁବଜାର ବା ଚୌଧୁରୀ ବଜାରରେ ଥିଲା, ସେଗୁଡାକରେ ପାଞ୍ଜି, ପୁରାଣ, ଆଉ ଛୋଟ ଛୋଟ ଚୁଟୁକି ଓଷାବ୍ରତ ବହି ବିକ୍ରି ହେଉଥିଲା; ଯେଉଁଗୁଡାକ ବୁଲାବିକାଳିମାନେ ଟ୍ରେନ୍‌ରେ ଷ୍ଟେସନ୍‌ରେ, ବିକ୍ରି କରୁଥିଲେ। ଖୁବ୍ କମ୍ ପିଲା ସାଇକେଲ୍‌ରେ ଆସୁଥାନ୍ତି। ଖୁବ୍ କମ୍ ପିଲା ପେଣ୍ଟ୍ ସାର୍ଟ ପିନ୍ଧୁ ଥିଲେ। ଇସ୍ତ୍ରୀକରା ପୋଷାକ ବିରଳଥିଲା। ଖଲିଫା ଦୋକାନ ହାତରେ ଗଣିହେବ।

ରେଭେନ୍‌ସା କଲେଜରେ ଛ ବର୍ଷ ରହଣି କାଳରେ ୮-୧୦ ଜଣ ଝିଅ ପଢୁଥିବାର ମନେପଡୁଛି। ମୁଁ ପଢୁଥିବାବେଳେ ମୋ ଉପର କ୍ଲାସରେ ତିନି ଜଣ ଝିଅ ପଢୁଥିଲେ। ଡ୍ୟୁକ୍

ସାହେବଙ୍କ ଅମଳରେ ଥାର୍ଡଇୟର କ୍ଲାସରେ ଗୋଟିଏ ଡିସିପ୍ଲିନ୍ କେସ୍ ହୋଇଥିଲା। ମୟୁରଭଞ୍ଜ ର ଜଣେ ଡିଷ୍ଟ୍ରିକ୍ ଓ ସେସନ ଜଜ୍‌ଙ୍କ ନାତି କ୍ଲାସ ଚାଲିଥିବା ବେଳେ ଛୋଟ ଛୋଟ କାଗଜ ପୁଟୁଳା ତିଆରି କରି ସେହି ଝିଅମାନଙ୍କ ଦେହକୁ ଫିଙ୍ଗିଥିଲା। ଝିଅମାନେ ସିଧା ଜ୍ୟୁକ୍ ସାହେବଙ୍କ ପାଖକୁ ଚାଲିଗଲେ ଏବଂ ସେହି ମୋଟା ପିଲାଟି ନାଁରେ ଅଭିଯୋଗଆଣିଲେ। ସାହେବ କିଛି ନ ବୁଝି ନ ପଚାରି ପଚାଶ ଟଙ୍କା ସେ ପିଲାକୁ ଜୋରିମାନାକଲେ। ସିଅନକୁ ସିନା ଛାଡ଼ିଦେଲେ, କିନ୍ତୁ ଏ କ୍ଷେତ୍ରରେ ସେ କମା କ୍ଷମା ଦେଲେ ନାହିଁ ଦୋଷୀକୁ। ସେ ପିଲାର ଅଭିଭାବକ ପାଖକୁ ଚିଠିଦେଲେ ଏବଂ ଜୋରିମାନା ପଚାଶ ଟଙ୍କା ଆଦାୟକଲେ। ଇଏ ହୁଏତ ତତ୍‌କାଳୀନ ରେଭେନ୍‌ସା କଲେଜର ଦଣ୍ଡ ବିଧାନ ଇତିହାସରେ ଏକ ରେକର୍ଡ।

ଇତିହାସ, ଲଜିକ୍ ଓ ସଂସ୍କୃତ- ଏଇ ହେଲା ମୋର ଆଇ.ଏ.ରେ ଗ୍ରୁପ ସାବ୍‌ଜେକ୍‌ଟ। ସବୁ ପିଲାଙ୍କ ଭିତରେ ମୁଁ ମେଟ୍ରିକୁଲେସନ୍‌ରେ ଶ୍ରେଷ୍ଠ ବୋଲାଉଥିଲେ ମଧ୍ୟ, ବିଜ୍ଞାନ ଆଡ଼କୁ ଗଲି ନାହିଁ। ସେତେବେଳେ ବିଜ୍ଞାନରେ ଆଦର ବା ଚାହିଦା ନଥିଲା। ଓଡ଼ିଶାରେ ନାଁ ଥିଲା ଇଞ୍ଜିନିୟରିଂ କଲେଜ, ନାଁ ମେଡ଼ିକାଲ କଲେଜ। ମେଡ଼ିକାଲ ସ୍କୁଲଟିଏ ଥିଲା ଏବଂ ତାହାରି ପାଖକୁ ଇଞ୍ଜିନିୟରିଂ ସ୍କୁଲ ଯୋବ୍ରା ଆନିକଟ୍ ପାଖରେ। ବଟାନିକୁ ଆର୍ଟସ୍ ସାବଜେକ୍‌ଟ ଧରାଯାଇ ସଂସ୍କୃତ ବଦଳରେ ପଢ଼ାଯାଉଥିଲା। ମୋର ରୁମ୍‌ମେଟ୍ ମଧୁ ବଟାନି ନେଇଥିଲା। ଏଣ୍ଡ୍ରୋସିୟମ ଓ ଗାୟିନୋସିୟମ୍ କହି ତାକୁ ଆମେ ଚିଡ଼ାଉଥିଲୁ। ଏଇଚ.ଏଲ୍.ଏସ୍ (H.L.S.) ଗ୍ରୁପଟି ହେଲା ଶସ୍ତା ଗ୍ରୁପ ଏବଂ ତାକୁ ରୟେଲ ଗ୍ରୁପ୍ କୁହାଯାଉଥିଲା। କେଉଁ ବିଷୟ ମୁଁ ନେବି, ସେ ବିଷୟ କହିବାପାଇଁ ମୋର କେହି ଉପଦେଷ୍ଟା ନଥିଲେ। ଯାହା ଶସ୍ତା, ସୁବିଧା, ମଜବୁତ୍; ସେଇଟି ମୋର କାମ୍ୟ। ଚାକିରିରେ ଏମାନଙ୍କର ଉପଯୋଗିତା ବା ଆବଶ୍ୟକତା କଥା ଉଠେ ନାହିଁ। ଆଇ.ଏ., ବିଏ. ପାସ୍‌ତ ଯଥେଷ୍ଟ। କଳା କ'ଣ ନା ବିଜ୍ଞାନ କ'ଣ ? ବି.ଏ.ରେ ମୋର ସେମିତି ସଂସ୍କୃତ ଏବଂ ଦର୍ଶନଶାସ୍ତ୍ର ଥିଲା। ଇଂରାଜୀରେ ଅନର୍ସ ଥିଲା। ମୋର ଯେ ଇଂରାଜୀ ଭଲହୁଏ ତା ନୁହେଁ। କିନ୍ତୁ ସଂସ୍କୃତ ପ୍ରତି ମୋର ଭାରି ଆଦର। ସଂସ୍କୃତ କ୍ଲାସରେ ଯୋଗଦେବା ସଙ୍ଗେ ସଙ୍ଗେ ସମସ୍ତଙ୍କ ମୁହଁରୁ ଶୁଣା ଯାଉଥିବା ଶ୍ଳୋକଟିଏ ଶିଖିଲି। ଶ୍ଳୋକଟି ହେଲା -

ଜଗନ୍ନାଥସ୍ୟ ପାଣ୍ଡିତ୍ୟମ୍<br>
ଚାର୍ଣ୍ଣସ୍ୟ ମୁଖ ବିକୃତି।<br>
ଲକ୍ଷ୍ମୀ କାନ୍ତସ୍ୟ ବାଳତ୍ୱମ୍<br>
କାଣୌସନ୍ତି ତ୍ରୟଗୁଣାଃ।।

ଏହା ଏକ ଲାଳିକା ବା parody। ମୂଳ ଶ୍ଳୋକଟି, ଯାହା ଉପରେ ଏହି ଲାଳିକା ଗଢ଼ା ହେଇଥିଲା, ତାହା ହେଲା, "କାଳିଦାସସ୍ୟ ଉପମା"... ଇତ୍ୟାଦି। ଲାଳିକାଟିର ଅର୍ଥ-

ସଂସ୍କୃତରେ ଯେଉଁ ଚାରିଜଣ ପ୍ରଫେସର ଥିଲେ, ସେମାନେ ହେଲେ ଜଗନ୍ନାଥ, ଆର୍ତ୍ତବଲ୍ଲଭ, ଲକ୍ଷ୍ମୀକାନ୍ତ ଏବଂ କାଶୀ ବାବୁ। ମୁଁ ମହାମହୋପାଧ୍ୟାୟ ଜଗନ୍ନାଥ ଶାସ୍ତ୍ରୀଙ୍କୁ ଦେଖିନାହିଁ। ସିଏ କୁଆଡେ ଭାରି ପଣ୍ଡିତ ଥିଲେ। ସଂସ୍କୃତରେ ତାଙ୍କର ଜ୍ଞାନ ଅଗାଧ ଥିଲା। ଆର୍ତ୍ତବାବୁ ଖ୍ୟାତି ଲଭିଥିଲେ, ତାଙ୍କ ମୁଖ ବିକୃତିପାଇଁ। ଲକ୍ଷ୍ମୀକାନ୍ତଙ୍କ ଗଳା, ସ୍ୱର, ବାଳ ସୁଲଭ, ପିଲାଳିଆ। କାଶୀ ବାବୁଙ୍କ ପାଖରେ ପାଣ୍ଡିତ୍ୟ ଥିଲା, ମୁଖ ବିକୃତି ଥିଲା, ବାଳତ୍ୱ ଥିଲା। ତିନି ଗୁଣର ସମାହାର ତାଙ୍କରି ପାଖରେ। ଏ ଶ୍ଲୋକଟି ସଂସ୍କୃତ ପାଠ ହେଉ ନଥିବା କେହି ଜଣେ ପିଲା ବାନ୍ଧିଥିଲା। ଶ୍ଲୋକରେ 'ଚ' ବ୍ୟବହାର ହୁଏ ନାହିଁ। ସେ କିନ୍ତୁ 'ଚ' ଏବଂ 'ଆର୍ତ୍ତ' ବାବୁଙ୍କୁ ଯୋଡି ଚାର୍ତ୍ତସ୍ୟ ଲେଖିଥିଲା। 'ଚ' ଅର୍ଥ 'ଏବଂ'। ପ୍ରଫେସର ଲକ୍ଷ୍ମୀକାନ୍ତଙ୍କର ଗଳା ସ୍ୱର ଚେଁ ଚେଆଁ ଥିଲା। କାଶୀ ବାବୁଙ୍କ ପାଖରେ ତିନି ଗୁଣକାକ ଏକତ୍ର ବିରାଜମାନ କରୁଥିଲା। କାଶୀବାବୁ ବିଭାଗୀୟ ମୁଖ୍ୟ ଥିଲେ। ସଂସ୍କୃତ ଆଉ ଓଡିଆ ଉଭୟ ବିଷୟକୁ ସେତେବେଳେ ଜଣେ ପଢାଉ ଥିଲେ। ଯିଏ ସଂସ୍କୃତ ପ୍ରଫେସର, ସିଏ ଓଡିଆ ପ୍ରଫେସର।

କାଶୀ ବାବୁ ସ୍ଥୂଳକାୟ। ପେଟଟି ଥାକୁଲୁ ଥୁକୁଲୁ, ମୁଣ୍ଡର ଚୂଳବେବାଗିଆ, କ୍ୱଚିତ୍ ପେଣ୍ଟ ପିନ୍ଧନ୍ତି। ଉପର ମହଲାକୁ ପ୍ରାୟ ଉଠିପାରନ୍ତି ନାହିଁ। ତଳେ ଶତର ନମ୍ବର ରୁମ୍‌ଟି ତାଙ୍କରି। ତାଙ୍କର ସବୁ କ୍ଲାସ୍ ସେଇଠି ହୁଏ। ପିଲାମାନେ ଆସନ୍ତି, ଯାଆନ୍ତି, ସେ ତାଙ୍କ ରୁମ୍‌ରେ ବସିଥାନ୍ତି। ପିଅନ ବା ଚପରାଶି ପିଲାମାନଙ୍କ ହାଜିରା ଖାତା ଆଣିଦିଏ ଓ ନେଇଯାଏ। ସେ ଘୋଡା ଗାଡିରେ ଆସନ୍ତି। ଆର୍ତ୍ତବାବୁ, କୃତ୍ତିବାସ ସାମନ୍ତରାୟ (ଇଂରାଜୀ), ଗୁରୁଚରଣ ବାବୁ (କେମେଷ୍ଟ୍ରି) ମଧ୍ୟ ସେହି ଗାଡିରେ ଆସନ୍ତି। ପ୍ରିନ୍‌ସିପାଲ ଡ୍ୟୁକ୍‌ଙ୍କ ଛତା, ବାବା କର୍ତ୍ତାର ସିଂ ଓ ତ୍ରିପାଠୀ ସାହେବଙ୍କ ମଟରଗାଡି ଥିଲା। ସାଇକେଲରେ କୌଣସି ପ୍ରଫେସର ଆସୁ ନଥିଲେ। ରିକ୍‌ସାଗୁଡାକ ହାତଟଣା। ସାଇକେଲ ରିକ୍‌ସା ନଥିଲା। ତାଳଚେର ଓ ଢେଙ୍କାନାଳର ଲୋକେ ଏସବୁ ଯାନ ଟାଣୁଥିଲେ। କାଶୀ ବାବୁଙ୍କର ମଧ୍ୟ ଅଗାଧ ପାଣ୍ଡିତ୍ୟ ଥିଲା। ସେ ସଂସ୍କୃତ ଶ୍ଲୋକ ଏଭଳି ଉଚ୍ଚାରଣ କରୁଥିଲେ ଯେ, ଏହା ଆର୍ଯ୍ୟମାନଙ୍କର ମୁଖ ନିଃସୃତ ପରି ଜଣାଯାଉଥିଲା। ଯାହା ଶୁଣିଲେ ଗଛରୁ ପତ୍ର ଖସିପଡିବ। ସେ ଆଇ.ଏ. କ୍ଲାସ୍‌ରେ କିଛି ପଢାନ୍ତି ନାହିଁ। ବି.ଏ. କ୍ଲାସରେ "ଅଭିଜ୍ଞାନ ଶକୁନ୍ତଳମ୍" ପଢାନ୍ତି। ଏମିତି ସ୍ୱରକରି ପଢାନ୍ତି ଯେ, ଶ୍ଲୋକ ଗୁଡିକ ମୋର ମନେରହିଯାଏ। ସେ ଛାତ୍ରୀ ଆଡକୁ ଚାହାଁନ୍ତି ନାହିଁ। ହାତଟି ଏମିତି ସ୍ଥାନରେ ରଖିଥାନ୍ତି, ଯେମିତି ଝିଅମାନଙ୍କର ମୁହଁ ତାଙ୍କୁ ଦେଖାଯିବ ନାହିଁ। କେବେ ହସନ୍ତି ନାହିଁ। ଯଦି ହସନ୍ତି, ତା ହେଲେ ତାଙ୍କର ଦିହଟିଯାକ ଥର ଥର ହୋଇ କମ୍ପେ। ପଢେଇଲା ବେଳେ ପାଞ୍ଚଟା ଆଙ୍ଗୁଳି ପାଞ୍ଚ କାଗାରେ ରହିଥାଏ। ଗୋଟିକରେ ଶ୍ଲୋକ, ଦ୍ୱିତୀୟରେ ତାର ଅନ୍ୱୟ ବା ଗଦ୍ୟରୂପ, ତୃତୀୟରେ ଇଂରାଜୀ ଅନୁବାଦ, ଚତୁର୍ଥରେ ଟୀକା, ଆଉ ଶେଷରେ ବ୍ୟାକରଣ। ସେ କହନ୍ତି-

"ପଢ଼ିଲାବେଳେ ଏତେ ପରିଶ୍ରମକରି ଆମେ ପାସ୍ କଲୁ, ଆଉ ପଢ଼େଇବା ବେଳେ ଆହୁରି ପରିଶ୍ରମକରିବା କାହିଁକି ?" ସେ ଖୋସାମତି ଭଲପାଆନ୍ତି । ଯେଉଁ ପିଲା ଫେଲ୍ ହୋଇଥାଏ, ସେ ଯଦି ତାଙ୍କର ହଳଦୀ ମାଖିଥିବା ଛୁଆଙ୍କୁ କୁଣ୍ଢେଇ ଗେଲକରେ ଏବଂ କହେ "ତୁ ତ ବାପା ପରି ହେବୁ ।" ସାର୍ ଖୁସି ହୋଇଯାଆନ୍ତି ଏବଂ ତାକୁ ପାସ୍‌କରେଇ ଦିଅନ୍ତି । ଆମେ ଥାର୍ଡଇୟରକୁ ଗଲା ବେଳକୁ ସେ ଗାଡ଼ି କିଣିଲେ । ତାଙ୍କ ପୁଅ ହରି ବାବୁ ଇଂରାଜୀ ଅନର୍ସ ନେଇଥାନ୍ତି । ମୋର ଯେହେତୁ ଇଂରାଜୀ ଅନର୍ସ ଥିଲା, ମୁଁ ତାଙ୍କ ପୁଅକୁ ଇଂରାଜୀ ପାଠରେ ସାହାଯ୍ୟ କରିବି ଭାବି, ସେ ମୋତେ ସର୍ବୋଚ୍ଚ ମାର୍କ ପରୀକ୍ଷାରେ ଦେଇଥାନ୍ତି । ଆମେ ତାଙ୍କୁ ଗାଡ଼ି ବିଷୟରେ ନାନା ପ୍ରଶ୍ନ ପଚାରୁ, ଯଥା- 'ଆପଣଙ୍କ ଗାଡ଼ି ସିଧା ଲଣ୍ଡନରୁ ଆଣିଲେ । କିଏ କହୁଥିଲା ଗାଡ଼ିଟି ଆପଣଙ୍କର ୨୦୦ ମାଇଲ ଗତିରେ ଚାଲେ । ତାର ଦାମ୍ କୁଆଡ଼େ ଦେଢ଼ଲକ୍ଷ ଟଙ୍କା ।' ଏମିତି କେତେ ପ୍ରଶ୍ନ । ସାର୍ କିଛି କହନ୍ତି ନାହିଁ । ମୁରୁକି ହସନ୍ତି ।

କାଶୀବାବୁ ଓ ଆର୍ତ୍ତବାବୁ- ଦୁଇ ଜଣ ଠିକ୍ ଓଲଟା ଚେହେରା ଓ ପ୍ରକୃତି । ଶ୍ଳୋକରେ ଯେଉଁ ମୁଖ ବିକୃତି କଥା କୁହାଯାଇଥିଲା, ତାହା ପ୍ରାୟଶଃ ଠିକ୍ । ଆର୍ତ୍ତବାବୁଙ୍କ ପୋଷାକ ଧୋତି, ପୂରାହାତ ଧଳାସାର୍ଟ, ଧଳା ଓଢ଼ଣୀକୁ ପଇତାପରି ଦେହରେ ସାର୍ଟ ଉପରେ ପକାଇ ଥାନ୍ତି । ଦେହର ରଙ୍ଗ ମାଗୁର ବର୍ଣ୍ଣ । ଲମ୍ବା ଲମ୍ବା ପାହୁଣ୍ଡପକାଇ ଚାଲନ୍ତି । ଆମର ପୋଷାକ ପତ୍ର, ଫେସନ ଏବଂ ଚୁଳ କୁଣ୍ଡାଇବା ଭଙ୍ଗି ଦେଖି କେବେକେବେ ରାଗିଯାଆନ୍ତି ଏବଂ ସାର୍ଟ ଉଠାଇ ପେଟକୁ ଦେଖାନ୍ତି, କହନ୍ତି- "ଏଇ ଦେଖ, ତେଲ ମାଖିମାଖି ଆମର ଦେହର ଚମ ଏମିତି ବୁଢ଼ା କାକୁଡ଼ି ପରି ଫାଟିଯାଇଛି । ଆଉ ତୁମେ ମୁହଁରେ ସାବୁନ୍ ଘସି ଘସି ଖାଲି ବ୍ରଣ ଭରପୂର୍ କରି ସ୍ନୋ, ପୋମେଣ୍ଟମ୍, ପାଉଡର ଲଗାଇ ମୁହଁ ସବୁକୁ କ'ଣ କରିଛ ?" କ୍ଲାସ୍‌ରେ "ଉତ୍ତର ରାମଚରିତ" ପଢ଼ାଇଲା ବେଳେ ବିଭୋର ହୋଇଯା'ନ୍ତି । "ସ୍ୱପ୍ନ ବାସବଦତ୍ତମ୍," "କିରାତାର୍ଜୁନୀୟମ୍" ପଢ଼େଇଲା ବେଳେ ତନ୍ମୟ ହୋଇଯା'ନ୍ତି । ପଢ଼ାଇରେ ତାଙ୍କର ଆନନ୍ଦ । ଓଡ଼ିଆ 'ଶଶିସେଣା' ପଢ଼ାଉଥିଲେ । ପ୍ରାଚୀ ସମିତିରୁ ପ୍ରକାଶିତ 'ଶଶିସେଣା' କାବ୍ୟରୁ ଯେତେବେଳେ ସିଏ ପଢ଼ାନ୍ତି -

ଭ୍ରୂଲତା କି କାମ କମାଣ ଶର ଲୋଚନ ବେନି
ପାଟକଶାଣେ ବସାଇଣ ବିନ୍ଧେ ଅପାଙ୍ଗ ଘେନି ।
ମଳୟ ସମୀର ମନ୍ଦିର ନାସା ଅଟଇ ତାର
ବସନ୍ତ ଆସେ ବିଙ୍ଗସିତ ହୁଏ କି ଶୁକଧର ।

ସେତେବେଳେ ତାଙ୍କର ଦିହର ଲୋମ ଟାଙ୍କୁରିଉଠେ । ଧୋତି ଚାଦର ପକାଇ ସେ କିଲା ପଡ଼ିଆରେ ଫୁଟ୍‌ବଲ୍ ଖେଳର ରେଫ୍‌ରି ମଧ୍ୟ ହୁଅନ୍ତି । ପ୍ରଫେସର ନାରାୟଣ ମିଶ୍ର ମଧ୍ୟ ତାଙ୍କରି

ପରି ରେଫରି ବରାବର ହୁଅନ୍ତି । ଦେଖଣାହାରୀ ଏ ଦୁଇ ଜଣକୁ ଭାରି ଭଲ ପାଆନ୍ତି । ଆମେ ଛାତ୍ରମାନେ ମଧ୍ୟ ଗର୍ବିତହେଉ ଯେ, ଆମର ସାର୍ ଆଜି ରେଫରି । କଲେଜର ଉନ୍ନତି, ଓଡିଆ ସାହିତ୍ୟର ଉନ୍ନତି ଆଦି ବିବିଧ ସମାଜମଙ୍ଗଳ କର୍ମରେ ଆର୍ତ୍ତବାବୁଙ୍କର ମନୋନିବେଶ । ପିଲାମାନଙ୍କର ଉନ୍ନତିରେ ସାହାଯ୍ୟ କରିବାପାଇଁ ସଦା ସର୍ବଦା ସେ ପ୍ରସ୍ତୁତ । ସେ ଇଷ୍ଟ ହଷ୍ଟେଲ୍‌ର ଓ୍ୱାର୍ଡେନ୍ ଥିଲେ । ମୁଁ ହଷ୍ଟେଲ୍‌ରେ ରହିବାପରେ ତାଙ୍କର ବଡ ଫଟୋଟିଏ କମନ୍ ରୁମ୍‌ରେ ଦେଖିଲି । ଖାଲି ଦିହ, କପାଳରେ ଚିତା ଚୈତନ୍ୟ, ଆଗରେ ତାଳପତ୍ର ପୋଥିଖେଦାଟିଏ । ଲକ୍ଷ୍ମୀକାନ୍ତ ଚୌଧୁରୀ ଅନ୍ୟତମ ସଂସ୍କୃତ ତଥା ଓଡିଆ ଅଧ୍ୟାପକ । ତାଙ୍କର ବିଶେଷତ୍ୱ କହିଲେ- ତାଙ୍କର ପିଲାଳିଆ ଚେହେରା, ଆଉ ପ୍ରତି ଶ୍ଳୋକ ପଢେଇବା ଶେଷରେ କପୋତ ଭଳି ହୁଁ ହୁଁ ଶବ୍ଦ କରନ୍ତି । ଯଥା -

"ଅଥାତ୍ମନଃ ଶବ୍ଦ ଗୁଣଂ ଗୁଣଜ୍ଞ ହୁଁ
ପଦଂ ବିମାନେନ ବିଗାହମାନ ହୁଁ"

'ହୁଁ' ଟା ଟିକେ ଲମ୍ବିଯାଏ । ସେ ଆମରି ସମୟରେ ସଂଗୀତ ବିଦ୍ୟାଳୟର ପ୍ରାଣ ପ୍ରତିଷ୍ଠା କରିଥିଲେ । ଆଜି ଯାହା ଲକ୍ଷ୍ମୀକାନ୍ତ ସଙ୍ଗୀତ ମହାବିଦ୍ୟାଳୟ ନାମରେ କଟକରେ ଛିଡା ହୋଇଛି ।

ଇଷ୍ଟହଷ୍ଟେଲରେ ମୁଁ ଛ ବର୍ଷ ରହିଛି । ହାଇସ୍କୁଲରେ ପଢୁଥିବା ବେଳେ କଟକ ଯେତେବେଳେ ଯାଇଥିଲି, ସେତେବେଳେ ସେ ହଷ୍ଟେଲର ପରିବେଶ, ତଥା ଖାଦ୍ୟପାନୀୟ ପ୍ରତି ମୋର ମମତା ଜନ୍ମିଥିଲା । ସେଇଠି ଦୀର୍ଘ ଦିନ ରହି ବାପା-ମା ଘରଦ୍ୱାର ପ୍ରାୟ ଭୁଲିଯାଇଥିଲି । ଏତେ ସୁନ୍ଦର ଖାଦ୍ୟ; ଧନି, କେଶବ, ବେଙ୍ଗ ପ୍ରଭୃତି ପୂଜାରୀ ଏବଂ ପଞ୍ଚୁ, ନାରାୟଣ ଆଦି ପିଅନ, ଚପରାଶି, ଧୋବା, ବାରିକ ସମସ୍ତେ ଜଣେ ଜଣେ ମୋର ଆଦରର ଲୋକ । ଆମେ ସମସ୍ତେ ଯେମିତି ଗୋଟିଏ ବଡ ପରିବାରର ସଭ୍ୟ । ସିକ୍ ରୁମ୍ ଗୋଟିଏ ଥିଲା । କ୍ୱଚିତ୍ ସେଇଠି କେହି ରହନ୍ତି । ସକାଳ ୭ରୁ ୯, ସନ୍ଧ୍ୟା ୭ରୁ ୯ ପାଠ ପଢାବେଳ । ୯ଟା ୧୫ରେ ସମସ୍ତେ ଗାଧାନ୍ତି ପାଇପ୍‌ରେ । ୧୨ଟା ପାଇପ୍ ଥିଲା । ଆଠଟା ସାଓ୍ୱାର ବାଥ୍, ବାକି ଆଠଟା ସାଧାରଣ ପାଇପ୍ । ତା ପରେ ମେସ୍‌ରେ ସମସ୍ତେ ଖାନ୍ତି । ଷୋଳ ଜଣିଆ ଗୋଟିଏ ମେଶ୍ । ସବୁଦିନ ମାଛ । ଶନିବାର ମାଂସ ଯେ ନଖାଏ, ତାର ରସଗୋଲା, ଦିବ୍ୟ ଅନ୍ନ । ସମସ୍ତଙ୍କପାଇଁ ପିତଳ ଥାଳି, ଗିଲାସ, ଗିନା । ହୁରି, ପାଟି, ଚିତ୍କାର କିଛି ନାହିଁ ।

ଦଶଟା ବେଳକୁ କ୍ଲାସ ଆରମ୍ଭ । ୪ଟାରୁ ୬ଟା ଭିତରେ ଜଳଖିଆ । ସକାଳ ଜଳଖିଆରେ ପୁରୀ ଚାରିଟା ଏବଂ ତରକାରୀ । ଉପରଓଳି ଜଳଖିଆରେ ସୁଜି, ମୋହନଭୋଗ ବା କାକରା । ହଷ୍ଟେଲ୍‌ରେ ଥିଲା ମିଠା ଦୋକାନ । ନିଜେ ଇଚ୍ଛାକଲେ, ହାତରୁ ପଇସା ଦେଇ ବେଶି ମିଠା ବି

ଜଣେ ଖାଇପାରେ । ଖେଳ ପଡିଆରେ ଜଣେ ଇଚ୍ଛାକଲେ ଭଲି ଖେଳିପାରିବ । ସକାଳ ଓ ସଞ୍ଜ ଦୁଇଥର ପାଣିଟାଙ୍କି ପାଖ ଜିମ୍ନାସିୟମ୍‌ରେ ଡ୍ରିଲ୍, ଡାମ୍ବେଲ, ରିଙ୍ଗ, ବାର, ଟେନିକ୍ୱାଇଟ୍ ଓ ଅନ୍ୟାନ୍ୟ ଖେଳହୁଏ । ଶନିବାର ଦିନ ସନ୍ଧ୍ୟାବେଳେ ପାଠପଢା ନାହିଁ । ରାତି ୧୦ଟା ପର୍ଯ୍ୟନ୍ତ ଯିଏ ଯୁଆଡେ ଇଚ୍ଛା, ଯାଇପାରେ, ବୁଲିପାରେ । ପରୀକ୍ଷା ପାଖ ହୋଇଆସିଲେ ଖେଳ ଫେଳ ପ୍ରାୟ ବନ୍ଦହୋଇଯାଏ । ଆମେ ତିନି ଚାରି ଜଣ ବୁଲିବାପାଇଁ ଯାଉଁ । ମହାନଦୀ ରେଲ୍‌ପୋଲ ଉପରକୁ । ତଳ ପଠାକୁ ଓହ୍ଲାଇ ଯାଉ କୋଳି ଖାଇବାପାଇଁ । ଶିମୁଳୀ ଫୁଲ ଦେଖୁ । ବଣି ଚଢେଇପଲର କିଚିରିମିଚିର ଶୁଣୁ । ମନେପଡୁଛି । ଦିନକର କଥା । ଯେଉଁଦିନ ଦୁଇଚାରି ଜଣ ରେଲବାୟୀ ଶିକାରୀ ଶିମୁଳୀ ଗଛରେ ବସିଥିବା ଚଢେଇ ପଲକୁ ଲକ୍ଷକରି ବନ୍ଧୁକ ଫୁଟାଇଲେ ଏବଂ ଦୁଇଟା ବଡ ବଡ ବୋରାରେ ମଲା, ଦରମଲା, ଜିଅନ୍ତା ଚଢେଇକୁ ଧରି ଘରକୁ ବାହାରିଗଲେ । ସେ ବଡ କରୁଣ ଦୃଶ୍ୟ । ଯେତେବେଳେ ରେଲ୍‌ଲାଇନ୍‌ରେ ପାହୁଣ୍ଡ ପକେଇ ପକେଇ ଚାଲିଥାଉଁ, ସେତେବେଳେ ପଢାବହିର ସଂସ୍କୃତ ଶ୍ଳୋକ ଏବଂ ତାର ଇଂରାଜୀ ଅନୁବାଦ କରି କରି ଚାଲିଥାଉ । ପଢାଯାଉଥିବା ୭୦-୮୦ ଶ୍ଳୋକ ମୁଖସ୍ଥଥାଏ । କଥାବାର୍ତ୍ତା ଆମର ପ୍ରାୟ ଘରକଥା, ବାପା, ମାଆଙ୍କ କଥାରେ ସୀମିତ । ଅନ୍ୟ କେଉଁ ବିଷୟରେ ବା କଥାବାର୍ତ୍ତା କରିବ ? କେଉଁଦିନ ଫୁଟବଲ ଖେଳ କଥା, ମେଡିକାଲ ସ୍କୁଲ, ଇଞ୍ଜିନିୟରିଂ ସ୍କୁଲ ଆଉ ରେଭେନ୍‌ସା ସହିତରେ ମେଚ୍‌ର ବିବରଣୀ । ଏକ ପାଖରେ କର୍ଜ ପଟ୍ଟନାୟକ । ଆମ ରେଭେନ୍‌ସା ପାଖରେ ବିଳୁ ପଟ୍ଟନାୟକ । ଲମ୍ବା ଚଉଡା ଗୋଡ, ଦୀର୍ଘକାୟ ପତଳା ପିଲାଟି ଏପାଖରୁ କିକ୍‌ମାରିଲେ, ଆରପାଖ ଗୋଲକିପର ପାଖରେ ପହଞ୍ଚେ । ସେମାନେ ଆମର ଗର୍ବ । ଫେଲୁ (ନନ୍ଦନନ୍ଦନ ମହାପାତ୍ର) ବାବୁ ରେଭେନ୍‌ସା କଲେଜ କାହିଁକି, ଓଡିଶାର ଗର୍ବ । 'ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜ ମେମୋରିଆଲ୍ ସିଲଡ୍'ର ବିଜେତା ରେଭେନ୍‌ସା କଲେଜ କେତେ ଦୁର୍ଦ୍ଧର୍ଷ ! ରେଭେନ୍‌ସା କଲେଜ ଦଳ ଯେତେବେଳେ ଟିମ୍‌ଟ୍ରଫି ନେଇ ଟ୍ରେନ୍‌ରେ ଫେରିଲା, ସେତେବେଳେ ଆହତ ହିରୋ ଫେଲୁ ବାବୁଙ୍କୁ ଆମେ ସାରା ରେଭେନ୍‌ସା କଲେଜ ରେଲୱେ ଷ୍ଟେସନରୁ ପାଛୋଟି ଆଣିବାର ଦୃଶ୍ୟ ଏବେ ବି ମନେପଡୁଛି ।

ସିନେମା ଥିଏଟର, ଏସବୁ କିଛି କଟକରେ ନଥିଲା । ଯେତେବେଳେ ରାତି ୧୦ଟା ବାଜିବାକୁ ୫ ମିନିଟ୍ ଥାଏ, ଧୀରେଧୀରେ, ସାରା ହଷ୍ଟେଲ୍‌ର ଆଲୁଅ ଲିଭିଲିଭି ଆସେ ଏବଂ ୧୦ଟା ବାଜିବା ମାତ୍ରେ ଅନ୍ଧକାର । ଷ୍ଟଡି ଆୱାରରେ ସମସ୍ତେ କେରମ୍ ଖେଳନ୍ତି ବା ପିଙ୍ଗ ପାଙ୍ଗ୍ ଖେଳନ୍ତି ।

ଇଂରାଜୀ ଡିପାର୍ଟମେଣ୍ଟର ସର୍ବମୁଖ୍ୟ ହେଲେ ନିରଞ୍ଜନ ନିୟୋଗୀ । ବଙ୍ଗାଳୀ, ଧୋତି, ପଞ୍ଜାବି ପିନ୍ଧନ୍ତି । ନିଶ ଲମ୍ବା ଓ ବହଳିଆ । "ଡେଫୋଡିଲ୍" କବିତାଟି ସେ ଯେତେବେଳେ ପଢାନ୍ତି,

ଆମେ ତାଙ୍କ ଉଚ୍ଚାରଣରେ ମୁଗ୍ଧ ହୋଇଯାଉ । ଏ ମୁଣ୍ଡ ସେ ମୁଣ୍ଡ ସିଏ ଚାଲିଥାନ୍ତି ଏବଂ କବିତାର ତାଳ ସଙ୍ଗେ ତାଳଦେଇ ନାଚୁଥାନ୍ତି, ପଢଉଥାନ୍ତି । ଦେବତା ପରି ଚେହେରା ।

କୃତ୍ତିବାସ ସାମନ୍ତରାୟ ଟିଉଟରିଆଲରେ ଲେଖିବାକୁ ଦିଅନ୍ତି ଏବଂ ଘୁମେଇପଡନ୍ତି । ବିଶ୍ୱେଶ୍ୱର ଚାଟାର୍ଜୀ ପତଳା ଖଦି, ଧୋତି ପଞ୍ଜାବି ପିନ୍ଧନ୍ତି । ସେ ଆମକୁ କେନିଲୱାର୍ଥ ନଭେଲ୍‌ଟି ପଢାଉଥିଲେ । ସକାଳିଆ କ୍ଲାସରେ ଦିନେ ସେ କ୍ଲାସ ଭିତରକୁ ପଶିଆସିଲେ । ମୁଣ୍ଡରୁ ସରସର ହୋଇ ପାଣି ଝରିପଡୁଛି । ଅବି ପଞ୍ଜାବି ଭିଜିଯାଇଛି । ଖାଲି ଦେହ ଦିଶୁଛି (ଗେଞ୍ଜି ନାହିଁ) । ପାଟିରୁ ସବୁବେଳେ ବାହାରୁଛି "Gentlemen ! It is very hot today" । ଦିନେ "Scarecrow" କବିତାଟି ପଢାଉଥିଲେ ଏବଂ ବୁଝେଇବାକୁ ଯାଇ କହିଲେ, "Gentlemen ! You don't know the meaning of scare crow ? My God Scare crow ?" ଓଡିଆରେ ବୁଝେଇବାର ଚେଷ୍ଟାକରନ୍ତି । ନାନା ଚେଷ୍ଟା କରି ଶେଷରେ କହନ୍ତି- "ଗୋଟାଏ କଳା ହାଣ୍ଡିରେ ଚୂନମାରି ଟାଙ୍ଗିଦେବା, କୁଆ ଘଉଡେଇବାପାଇଁ ମକା ବାଡିରେ ଯେଉଁ ହୁରୁଡା ଥାଏ, ସେଇଟାକୁ ସେ କହିବାପାଇଁ ଯାଉଥିଲେ । ସିଏବି ଜଣେ ଫାଷ୍ଟକ୍ଲାସ ଗୋଲ୍‌ଡ୍ ମେଡାଲିଷ୍ଟ । ଆଉ ଜଣେ ଇଂରାଜୀ ଅଧ୍ୟାପକ ଥିଲେ । ସେ ହୁଏତ ଅଣ୍ଡରକ୍ୱାଲିଫାଏଡ୍ ଏବଂ ମାଇନର୍‌ଟି କମ୍ୟୁନିଟି ଥିବାରୁ (ଖ୍ରୀଷ୍ଟିୟାନ୍) ଚାକିରୀ ଦିଆ ହୋଇଥିଲା । ଆମେ ଥାର୍ଡ ଇୟରରେ ପଢୁଥିଲାବେଳେ, ଆସିଲେ କୃପାନାଥ ମିଶ୍ର । ସେ ବିଲାତ ଫେରନ୍ତା, ଓକ୍‌ସଫୋର୍ଡ ୟୁନିଭର୍‌ସିଟିରୁ । ତାଙ୍କୁ ଆମେ K.N. Goalpost ବୋଲି ନାମ ଦେଇଥାଇ । କାରଣ ସେ ଦସ୍ତଖତ ଯେତେବେଳେ କରନ୍ତି କେ ଓ ଏନ୍ (K.&N.)କୁ ବଙ୍କା ବଙ୍କା ଅକ୍ଷରରେ ରଖି ଏବଂ ଏମ୍ ଟାକୁ ସେ ଗୋଲପୋଷ୍ଟ ଆକାରର କରି ଦିଅନ୍ତି । ନିଶ ତାଙ୍କର ହିଟ୍‌ଲରଙ୍କ ପରି । ଥରେ ଟିଉଟରିଆଲ କ୍ଲାସ୍‌ରେ ସେ ଆମକୁ "Substance Writing" ଶିଖାଉଥିଲେ । "It is not growing like a tree" । ମୁଁ ଯାହା ଲେଖିଥିଲି- ତା ତଳେ ସେ ମନ୍ତବ୍ୟ ଦେଇଥିଲେ, "You write in a reminiscent way"। Justice ବୋଲି ଡ୍ରାମାଟି ସିଏ ଅନର୍ସ କ୍ଲାସ୍‌ରେ ପଢାଉଥିଲେ । କ୍ଲାସ୍‌କୁ ଆସିଲେ ଗୋଟିଏ ମଣିଷର ପାଟି ଓ ଜିଭର ମଡେଲ ନେଇ ଉଚ୍ଚାରଣ ଶିଖାଇବାପାଇଁ ଆସୁଥିଲେ । ନେହେରୁ ଯେତେବେଳେ ବ୍ରିଟିସ୍ ଇମ୍ପେରିଆଲିଜିମ୍ (British Imperialism) କୁ ଯେମିତି ଉଚାରଣ କରୁଥିଲେ, ସେ ଠିକ୍ ସେମିତି ଉଚାରଣ୍ ବର୍ଣ୍ଣେ ମର୍ଡେଲ ସାହାଯ୍ୟରେ ବୁଝାଇଥିଲେ । କେଉଁଠୁ କି ଶବ୍ଦ ଆସୁଛି । ତାପରେ ଇଂରାଜୀ ରଙ୍ଗମଞ୍ଚ (English stage) ଗୋଟାଏ ଡ୍ରଇଁ ବୋର୍ଡରେ ଆଙ୍କିଲେ ପିରିୟର୍ଡ ଶେଷ । ତାପରେ ସେ ବଦଳି ହୋଇଗଲେ । ବହିର ପ୍ରଥମ ଧାଡି ମଧ୍ୟ ପଢା ହୋଇପାରିଲା ନାହିଁ ।

କେ.ପି. ସିହ୍ନା ଥିଲେ M.A. Cantab । ସେ ମଧ୍ୟ ବିହାରୀ, ସୌମ୍ୟ ଚେହେରା, ଲମ୍ବା, ଚଉଡା । ସେ ଥିଲେ ଆମର ୱାର୍ଡେନ୍ । ଦ୍ୱିତୀୟ ବାର ବିବାହ କରିଥିଲେ । ଭାରି ସୁନ୍ଦର ଏବଂ

ସ୍ମାର୍ଟ। ତାଙ୍କର ପ୍ରଥମ ପତ୍ନୀଙ୍କ ପୁଅ ବି। ସବୁବେଳେ ସେ ସାହେବି ପୋଷାକରେ ଥାଆନ୍ତି। ଚଷମା ଲଗାନ୍ତି। ଇଂରାଜୀ କହନ୍ତି। ସେ ଆମକୁ ପଢାଉଥିଲେ ଏମ୍.ଏ. କ୍ଲାସ୍‌ରେ KingLear। ଭାରି ସୁନ୍ଦର ତାଙ୍କର ଇଂରାଜୀ ଉଚାରଣ। କ୍ୱାର୍ଡ୍ରାଙ୍ଗୁଲରେ ଯେତେବେଳେ ସେ ଚାଲିଯାନ୍ତି ସିଧା ମୋପାଚୁପା ପାହୁଣ୍ଡ ପକାଇ, ସେତେବେଳେ ଭାରି ସୁନ୍ଦର ଦିଶନ୍ତି। ତାଙ୍କୁ ଦେଖିଲେ ଆପେ ଆପେ ମୁଣ୍ଡ ଲଇଁଯାଏ। ଯେତେବେଳେ ୧୯୩୬ ମସିହା ଏପ୍ରିଲ୍ ପହିଲାରେ ଓଡିଶା ସ୍ୱତନ୍ତ୍ର ପ୍ରଦେଶ ହେଲା, ରେଭେନ୍‌ସା କଲେଜ ଭିତର ପ୍ରାଙ୍ଗଣରେ ନାହିଁ ନଥିବା ସଭାଟିଏ ଅନୁଷ୍ଠିତ ହୋଇଥିଲା। ପାରଳାଖେମୁଣ୍ଡି ମହାରାଜାଙ୍କୁ ସମ୍ବର୍ଦ୍ଧନା ଦେବାପାଇଁ ଅପୂର୍ବ ସମାବେଶ ହୋଇଥିଲା। ସେତିକିବେଳେ ସେ ମୋତେ ଡାକି କହିଲେ ବସନ୍ତ- "ତୁମେ ଗୋଟାଏ କ'ଣ କିଛି ମନୋରଞ୍ଜନର ବ୍ୟବସ୍ଥା କର।" ସେ ଜାଣିଥିଲେ ମୁଁ ହାସ୍ୟରସ ପରିବେଷଣ କରିପାରିବି। ମୁଁ କେଉଁଝରର ବନମାଳୀ ବୋଲି ପିଲାଟିକୁ ସାଙ୍ଗ କଲି। କାଳକ୍ରମେ ସେ ଏସ୍.ପି. ହୋଇଥିଲା। ତାର ନାଲି ପୋଷାକ ଓ ମୋର କଳା ପୋଷାକ ପିନ୍ଧି ଆମେ ଯେଉଁ ପାଲା ଗାଆଣ ପରିବେଷଣ କରିଥିଲୁ, ତାହା ଏକ ବିରାଟ ଦର୍ଶକମଣ୍ଡଳୀକୁ ମୁଗ୍ଧ କରି ଦେଲା। ବୋର୍ଡିଂରୁ ଖଟ କେତେଟା ଟାଣିନେଇ ତାରି ଉପରେ ଆମେ ଛିଡା ହୋଇଗଲୁ। ଗାଁରୁ ଯେଉଁ ଚଢେଇଆ ଚଢେଇଆଣୀ ଗୀତଟା ମଗେଇ ଗାଇଥିଲି; ତାହା ଏହି ପ୍ରକାରର-

"ଶୁଣ ହୋ ଶୁଜନେ ଶୁଣ ହୋ, ମୋର ଚଢେଇଆଣୀ ରୂପଗୁଣ
ସେତ ନୁହେଁ ଢେଙ୍ଗେଇ ବାଙ୍ଗେରୀ ହୋ, ସେ'ତ ଚଳିଥାଏ ଢଳି ଢଳି
ତାର ନାକରେ ନାଇଛି ଗୁଣା ହୋ, ସେ'ତ ତିନି ଟଙ୍କା ତିନି ଅଣା
ତାର କାନରେ ନାଇଛି ଚାପ ହୋ, ଦୂରୁ କରେ ଜକ ଜକ
ତାର ଗୋଡରେ ନାଇଛି ବଳା ହୋ, ଦୂରୁ କହେ ପଳା ପଳା।"

ସେତେବେଳେ ମନୋରଞ୍ଜନ କି ଅବସ୍ଥାରେ ଥିଲା ଏବଂ ଦର୍ଶକମାନେ କିମିତି କଣ ଉପଭୋଗ କରୁଥିଲେ, ତାହା ଏହି ଗୀତରୁ ଜଣାଯିବ। ପାରଳାଖେମୁଣ୍ଡି ମହାରାଜା ଆସିଲେ ନାହିଁ। ବଡ ଦୁଃଖ ଲାଗିଲା। କଲିକତାରୁ ସବୁ କିସମର ଭୋଜନ ସାମଗ୍ରୀ ଆସିଥିଲା। କଲେଜ ପ୍ରାଙ୍ଗଣଟା ଧଳା ଚାଦର ଟେବୁଲରେ ସଜ୍ଜିତ ହୋଇଥିଲା ଏବଂ କେତେ କେତେ ବଡ ବଡ ଲୋକ ଉପସ୍ଥିତ ଥିଲେ। ଯେଉଁ ଆନନ୍ଦ-ଉଲ୍ଲାସର ଦୃଶ୍ୟ ଅନୁଷ୍ଠିତ ହୋଇଥିଲା, ତାହା ଓଡିଶା କମ୍ ଦେଖିଛି।

•

---

***ମନେପଡ଼େ,*** ଶିକ୍ଷାସନ୍ଧାନ, ଭୁବନେଶ୍ୱର, ୨୦୦୮

# ରେଭେନ୍‌ଶ କଲେଜ

## ଜ୍ୟୋତିର୍ମୀନ୍ଦ୍ର ମୋହନ ଯୋଆରଦାର

ରେଭେନ୍‌ଶ କଲେଜର ଆଇ.ଏସ୍‌ସି କ୍ଲାସରେ ଭର୍ତ୍ତି ହେଲି । ଆଇ.ଏ. କ୍ଲାସରେ କେତୋଟି ଝିଅ ଥାନ୍ତି, ଆଇ.ଏସ୍‌ସି.ରେ କେହି ନଥିଲେ । ଝିଅମାନେ ବାରଣ୍ଡାରେ ଛିଡ଼ା ହେଇଥାନ୍ତି, ଅଧ୍ୟାପକ ଆସିଲେ କ୍ଲାସ ଭିତରକୁ ଯାନ୍ତି । ସେତେବେଳେ ଆମ କଲେଜ ବୋଧହୁଏ ଓଡ଼ିଶାରେ ଏକମାତ୍ର କଲେକ, ପିଲାସଂଖ୍ୟା ଶୁଣିଲି ଛଅଶହ । ଭାବିଲି -ଓଃ, କେତେ ପିଲା !

ସ୍କୁଲରେ ଯାହାଙ୍କ ଜ୍ୟାମିତି ବହି ପଢ଼ିଥିଲି, କଲେକକୁ ଆସି ଦେଖିଲି ସେଇ ପ୍ରଫେସର ସାରଦାଚରଣ ଗାଙ୍ଗୁଲି ଆମକୁ ଗଣିତ ପଢ଼ାଉଛନ୍ତି । ଅନ୍ୟ ପ୍ରଫେସର ବି ଥିଲେ । ଗଣିତର କୌଣସି ବିଷୟ ବିଶେଷଭାବରେ ବୁଝାଇବାକୁ ପଡ଼ିଲେ ସାରଦାବାବୁ ଫୁଟବଲକୁ ଆଶ୍ରା କରୁଥିଲେ । Uniform velocity କହିଲେ ବୁଝିବାକୁ ହୁଏ ଯେ a body covers equal distances in equal intervals of time, however small. ସାରଦାବାବୁ କହିଲେ- ତୁମ ବାପା ଅଫିସ ବାହାରିଲା ବେଳେ ଦେଖିଲେ ତୁମେ ପାଠ ପଢୁଛ । କିନ୍ତୁ ସେ ବାହାରି ଯିବା ମାତ୍ରେ ତୁମେ ଫୁଟବଲ ଖେଳିବାକୁ ଆରମ୍ଭ କଲ ଏବଂ ବାପା ଫେରିବା ବେଳ ଜାଣି ଫେର ପଢ଼ିବାକୁ ବସି ଗଲ । ସେ ଭାବିଲେ ତୁମେ ବରାବର Uniform ଭାବରେ ପଢୁଥିଲ । ଏଇଟା ତାଙ୍କର ଭୁଲ ହେଲା, ବାରମ୍ବାର ଆସି ଦେଖିବା ଦରକାର ଏବଂ ଯେତେ ଥର ଆସି ପାରିବେ ସେତେ ଭଲ, ଅର୍ଥାତ୍ time interval ଯେତେ କମାଇ ପାରିବେ ସେତେ ଭଲ ।

ଆମେ ଆଶ୍ଚର୍ଯ୍ୟ ହେଉଥିଲୁ ପ୍ରଫେସର ଗିରିଜାଶଙ୍କର ରାୟଙ୍କର ସ୍ମୃତିଶକ୍ତି ଦେଖିକରି । ସେ Tennysonଙ୍କ କାବ୍ୟ The Passing of Arthur ପଢ଼ାଉଥିଲେ । ଆମେ କେହି ଯଦି ଆଉ କଉ ଦିନ ସେ କାବ୍ୟର କୌଣସି ଦି'ଟା କି ଚାରିଟା ପଦ ଆଉ ଥରେ ବୁଝାଇ ଦେବା ପାଇଁ କହୁଥିଲୁ, ସେ ସାଙ୍ଗେ ସାଙ୍ଗେ ସମସ୍ତ କ୍ଲାସକୁ କହିବେ- "Open at page..." ।

ଇଂରାଜୀର ଅନ୍ୟତମ ଅଧ୍ୟାପକ ପ୍ରଫେସର ନିରଞ୍ଜନ ନିୟୋଗୀ ଆମର English tutorial class ନେଉଥିଲେ । ସେ ପେଣ୍ଟ-କୋଟ ପିନ୍ଧୁ ନଥିଲେ, ଧୋତି ପଞ୍ଜାବି ଥିଲା ତାଙ୍କର

ପୋଷାକ । ଗମ୍ଭୀର ଓ ଅତିଶୟ ମର୍ଯ୍ୟାଦାଶାଳୀ ଥିଲା ତାଙ୍କର ଚାଲିଚଳଣି । ଏଭଳି ଲୋକଙ୍କୁ ବି କଉ ବା କେତେକ ପିଲା ଥରେ ବିବ୍ରତ କରିଥିଲେ । ପ୍ର. ନିୟୋଗୀ ଲେକ୍‌ଚର ଦେବା ପୂର୍ବରୁ lectern ଟାକୁ (ଉଚ୍ଚ ଟେବୁଲ) ଟିକେ ଘୁଞ୍ଚା ଘୁଞ୍ଚି କରି ଠିକ୍ କରି ଦିଅନ୍ତି, ଯେମିତି ଡକ ଡକ ନ ହବ । ପିଲାଏ ସେ lectern ଗୋଡ଼ ତଳେ କେତେ ଗୁଡ଼ିଏ ଚଡ଼ଚଡ଼ି ବାଣ ଖଞ୍ଜି ଥିଲେ । ସେ ଗୁଡ଼ିକ ହଠାତ୍ ଫୁଟିଲା ବେଳକୁ ପ୍ର. ନିୟୋଗୀ ଟିକେ ଅପ୍ରତିଭ ହେଲାପରି ଦେଖାଗଲେ । କିନ୍ତୁ କିଛି ନକହି ଧୀର ଭାବରେ ତାଙ୍କର ଲେକ୍‌ଚର ଆରମ୍ଭ କଲେ ।

ମୋ ପଢ଼ାପଢ଼ି ବେଶ୍ ଚାଲିଥାଏ, କିନ୍ତୁ ପର ବର୍ଷ ୧୯୩୦ ବେଳକୁ ଅସୁବିଧା ଉପୁଜିଲା । ମହାତ୍ମା ଗାନ୍ଧୀଙ୍କ ଆଇନ ଅମାନ୍ୟ ଆନ୍ଦୋଳନରେ ଲୁଣ ମରା ଆରମ୍ଭ ହୋଇଥାଏ । ପୂର୍ବେ ୧୯୨୧ରେ ଅସହଯୋଗ ଆନ୍ଦୋଳନ ବେଳେ ବାବା ତ ହେଡ୍‌ମାଷ୍ଟର ଥାନ୍ତି । ତେଣୁ 'ଛାତ୍ରାଣାଂ ଅଧ୍ୟୟନଂ ତପଃ' କହି ପିଲାମାନଙ୍କ ଦ୍ୱାର ଦ୍ୱାର ବୁଲି ସେମାନଙ୍କୁ ନିବର୍ତ୍ତାଉଥାନ୍ତି । କିନ୍ତୁ ଏବେ ତ ସେ ହେଡ୍‌ମାଷ୍ଟର ନଥାନ୍ତି, ଓକିଲାତି କରୁଥାନ୍ତି, ଛାତ୍ରମାନଙ୍କ ଦାୟିତ୍ୱରୁ ମୁକ୍ତ । ତେଣୁ ସେ ହଠାତ୍ ଏ ଆନ୍ଦୋଳନରେ ଝାସ ଦେଇ କାଠଯୋଡ଼ି ନଈ ବାଲିରେ ଅନ୍ୟାନ୍ୟ ରାଜନୀତିକଙ୍କ ପରି ବକ୍ତୃତା ଦେଲେ, ବୋଧହୁଏ ଏକାଧିକ ଥର ! ମୋର ମା ମଧ୍ୟ ସେ ସଭାରେ ଦେଶାତ୍ମବୋଧକ ଗୀତ ଗାଇଥିଲେ -

"ବଲ ବଲ ବଲ ସବେ
ଶତ ବୀଣା ବେଣୁ ରବେ,
ଭାରତ ଆବାର ଜଗତ ସଭାଏ
ଶ୍ରେଷ୍ଠ ଆସନ ଲବେ ।" ଇତ୍ୟାଦି

ବାବା ଯେମିତି ଏକାବେଳକେ ଭୁଲି ଗଲେ ଯେ ଆମର କେଉଁଠି ହେଲେ ବି କିଛି ମାତ୍ର ସଞ୍ଚିତ ଧନ ନାହିଁ, ତଦୁପରି ଓଡ଼ିଶାରେ ଆମର ଆତ୍ମୀୟବନ୍ଧୁ କେହି ନାହାନ୍ତି । କାଠଯୋଡ଼ି ନଈବାଲି ଲୁଣମରା-ବକ୍ତୃତା ଲାଗି ତାଙ୍କୁ ଦେଢ଼ବର୍ଷର ସଶ୍ରମ କାରାଦଣ୍ଡ ହେଲା । ତାଙ୍କୁ ବିହାରର ହଜାରିବାଗ ଜେଲକୁ ପଠାଗଲା । ଗୋପବନ୍ଧୁ ଚୌଧୁରୀ, ଯଦୁମଣି ମଙ୍ଗରାଜ ଆଦି ଅନ୍ୟାନ୍ୟ ରାଜନୈତିକ ବନ୍ଦୀମାନେ ମଧ୍ୟ ସେଇଠିକି ପଠା ହୋଇଥାନ୍ତି । ମୁଁ ସେତେବେଳକୁ ଅଳ୍ପଦିନ ହେବ ସେକେଣ୍ଡ ଇୟରକୁ ଉଠିଥାଏ, ଆଉ କେତେ ମାସ ପରେ ୟୁନିଭର୍ସିଟିର I.Sc. ପରୀକ୍ଷା । ଏଭଳି ସଙ୍କଟ ସମୟରେ ବାବାଙ୍କର ସମବ୍ୟବସାୟୀ ଓକିଲ ବନ୍ଧୁମାନେ ହିଁ ଆମମାନଙ୍କୁ ଚଳାଇ ନେଲେ । ପ୍ରକୃତରେ ସେଇଟା ଆମର ଏପରି ଏକ ସଙ୍କଟ ସମୟ ବୋଲି ମୁଁ ପ୍ରାୟ ଅନୁଭବ କରିନାହିଁ ମଧ୍ୟ -ସଂସାର ବିଷୟରେ ମୁଁ ଏଡ଼େ ଜ୍ଞାନହୀନ, ଅନ୍ଧ ଥାଏ । ମୋ ପଢ଼ାପଢ଼ି ସ୍ୱାଭାବିକ ଭାବରେ ଚାଲୁଥାଏ । ମୋର ମା ଅନେକ ସମୟରେ ମହିଳା ସ୍ୱାଧୀନତା ସଂଗ୍ରାମୀମାନଙ୍କ ସହିତ ମିଶି ମଦ ଦୋକାନରେ 'ପିକେଟିଂ' କରିବାକୁ ଯାଉଥିଲେ । ଏଣେ ମୁଁ

ମୋର କଲେଜକୁ ଯାଉଥିଲି, ଦୁଆରରେ ଦୁହେଁ ଦୁଇଟି ତାଲା ପକାଉଥିଲୁ- ଗୋଟାକ ଭିତରେ ଆଉ ଗୋଟାକ ଗଳାଇ - ଯେପରିକି ଯେ ଆଗେ ଫେରିବ ସେ ତାଲା ଖୋଲି ଘର ଭିତରକୁ ପଶି ପାରିବ। ବାବାଙ୍କର ସେହି ହିତୈଷୀ ଓ ଉପକାରୀ ବନ୍ଧୁମାନଙ୍କ ଋଣ ଚରିକୃତଜ୍ଞ ଅନ୍ତରରେ ସ୍ମରଣ କରେଁ।

୧୯୩୧ ମସିହାରେ 'ଗାନ୍ଧୀ-ଅରଉଇନ୍ ପ୍ୟାକ୍ଟ' (Gandhi Irwin Pact) ନାମରେ ଖ୍ୟାତ ଗାନ୍ଧୀ ଓ ତଦାନୀନ୍ତନ ବଡ଼ଲାଟ୍ ଲର୍ଡ ଅରଉଇନ୍ (Irwin)ଙ୍କ ମଧ୍ୟରେ ଗୋଟିଏ ଚୁକ୍ତି ଫଳରେ ରାଜନୈତିକ ବନ୍ଦୀମାନେ ସମସ୍ତେ କାରାମୁକ୍ତ ହୋଇ ଘରକୁ ଫେରିଲେ। ବାବା ମଧ୍ୟ ଫେରିଲେ। ସେତେବେଳକୁ ତାଙ୍କର ଜେଲରେ ରହିବାର ଦଶମାସ ହୋଇଥାଏ । ପ୍ରାୟ ବର୍ଷେ ଖଣ୍ଡେ ଏମିତି ଓକିଲାତିରୁ ଅନ୍ତର ହୋଇ ରହିଥିବା ଫଳରେ ତାଙ୍କୁ ନୂଆ କରି ଓକିଲାତି ଆରମ୍ଭ କରିବାକୁ ପଡ଼ିଲା। ତେଣୁ ସ୍ୱାଧୀନତା ସଂଗ୍ରାମ ସହିତ ସକ୍ରିୟ ଯୋଗ ରଖିବା ଆଉ ତାଙ୍କ ପକ୍ଷରେ ସମ୍ଭବ ହେଲା ନାହିଁ।

ଆଇ.ଏସ୍‌ସି. ପାସ୍‌କରି ମୁଁ କଲିକତା ସିଟି କଲେଜରେ ବି.ଏସ୍‌ସି. ପଢ଼ିବାକୁ ଗଲି। ଏହା ପାଇଁ ମୋତେ ୟୁନିଭର୍ସିଟି ପରିବର୍ତ୍ତନ କରିବାକୁ ପଡ଼ିଲା। ପଟନାରୁ କଲିକତା ୟୁନିଭର୍ସିଟି। ଏହାର ଫଳ ମୋ ପାଇଁ ଭଲ ହୋଇ ନାହିଁ ଅନ୍ତତଃ ଚାକିରି କ୍ଷେତ୍ରରେ। କାରଣ ସେତେବେଳକୁ କଲିକତା ଅପେକ୍ଷା ପଟନା ୟୁନିଭର୍ସିଟି ଗ୍ରାଜୁଏଟ୍‌ର ମର୍ଯ୍ୟାଦା ଅଧିକ ଥାଏ। ମୋର କଲିକତାରେ ପଢ଼ିବା ବାହାନାର ପ୍ରଧାନ କାରଣ ରେଭେନ୍‌ସା କଲେଜ ଉପରେ ମୋର ଗୋଟାଏ ପିଲାଳିଆ ରୁଷା। ଘଟଣାଟା କହୁଛି। ଆଇ.ଏସ୍‌ସି. ପରୀକ୍ଷା ଚାଲିଥାଏ। ମୋର ସିଟ୍ ପଡ଼ିଥାଏ ଆମରି କଲେଜ 'ହଲ୍'ରେ। ଅଳ୍ପଦୂରେ ବସିଥିବା ଗୋଟିଏ ସାଙ୍ଗ ପାଇଁ କେମିଷ୍ଟ୍ରି ଅଙ୍କଟିଏ ବ୍ଲଟିଂ ପେପରରେ କଷି ତା ଆଡ଼କୁ ପକାଇ ଦେଲି। ନଇଁ ପଡ଼ି ସେଟାକୁ ଗୋଟାଇଲା ବେଳକୁ ଇଂରାଜୀ ଅଧ୍ୟାପକ ପ୍ରଫେସର କେ.ପି.ସିହ୍ନାଙ୍କୁ ଦୂରରୁ ଦିଶିଗଲା। ସେ ମୋର ସେଇ ସାଙ୍ଗକୁ ହଲ୍‌ରୁ ବାହାର କରି ଦେଲେ। ମୋତେ ଏହାପାଇଁ ସନ୍ଦେହ କଲେ, କିନ୍ତୁ ସୁନିଶ୍ଚିତ ହୋଇ ପାରିଲେ ନାହିଁ ବୋଲି ମୋତେ ବାହାର କଲେ ନାହିଁ। ମୁଁ ବାକି ସବୁଦିନ ସବୁ ପରୀକ୍ଷା ଦେଲି। କିନ୍ତୁ ପରିଶେଷରେ ୟୁନିଭର୍ସିଟି ସେନେଟ୍‌ର ଆଦେଶ ଅନୁସାରେ ମୋ ସାଙ୍ଗ ଦୁଇ ବର୍ଷ ଓ ମୁଁ ବର୍ଷକ ଲାଗି rusticate (ଅଟକ) ହେଲୁ। ଏଇ ମୋର ରାଗ ହେଇଗଲା।

ଅତଏବ ବର୍ଷକ ପରେ ପୁଣି ପରୀକ୍ଷା ଦେଇ ସେକେଣ୍ଡ ଡିଭିଜନରେ ପାସ୍ କଲି। କିନ୍ତୁ ଆଗ ଥର ଗଣିତରେ ୨୦୦ରୁ ୧୬୮ ରହିଥିବା ସ୍ଥଳେ ଏଥର ମାତ୍ର ୧୫୦ ରହିଲା। ଯା ହଉ କଲିକତା Amherst Street ସିଟି କଲେଜରେ ଭର୍ତ୍ତି ହେଲି। (ସେତେବେଳେ ଆଉ କଉଠି ତାର ଶାଖା ନଥିଲା, ପରେ ଏକାଧିକ ଶାଖା), ରହିଲି ମୋର ବିଧବା ବଡ଼ ମାଈଁଙ୍କ ପାଖରେ-

ଡେଫ୍ ଏଣ୍ଡ ଡାମ୍ ସ୍କୁଲର ଅନତିଦୂରେ ଗଡ଼ପାର ରୋଡ଼ରେ। ସେ ରାସ୍ତାଟା ଅପର୍ ସର୍କୁଲର ରୋଡ଼ (ବର୍ତ୍ତମାନ ଆଚାର୍ଯ୍ୟ ପ୍ରଫୁଲ୍ଲଚନ୍ଦ୍ର ରୋଡ଼)ରୁ ପୂର୍ବ ଆଡ଼କୁ ବାହାରିଛି। ତାଙ୍କ ଘରେ ଆଉ ଥିଲେ ତାଙ୍କରି ସାନ ଭାଇ ବାବୁଲ (ଅମଲେନ୍ଦୁ ଘୋଷାଲ୍) - ତାଙ୍କଠାରୁ ଅଠର ବର୍ଷ ସାନ ଏବଂ ମୋରି ବୟସୀ- ତା ଛଡ଼ା ମୋର ସାନ ମାମୁ ଓ ମାଈଁ ତାଙ୍କର ଦୁଇଟି ନିତାନ୍ତ ଶିଶୁ କନ୍ୟାକୁ ଧରି। ମୋର ମଝିଆ ମାମୁ ସେତେବେଳେ ମୋର କଲେଜ ଫିସ୍ ହେରିକା ଦେଉଥାନ୍ତି।

ମୋର ବଡ଼ ମାଈଁ ମିସେସ୍ ପୂର୍ଣ୍ଣିମା ବସାକ୍ ଥିଲେ ଏକ ଆଶ୍ଚର୍ଯ୍ୟ ଋଷିପ୍ରତିମ ମନୁଷ୍ୟ। ନଅ ବର୍ଷର ବିବାହିତ ଜୀବନ ପରେ ମାତ୍ର ତିରିଶ କି ଏକତିରିଶ ବର୍ଷ ବୟସରେ ସ୍ୱାମୀଙ୍କୁ ହରାଇଥିଲେ। ସେ ପୁଣି ନିଃସନ୍ତାନ ଥିଲେ। ନାନା ଗୁଣ ସମ୍ପନ୍ନ ସର୍ବଜନପ୍ରିୟ ମୋର ବଡ଼ ମାମୁ କିନ୍ତୁ ସୁସ୍ୱାସ୍ଥ୍ୟର ଅଧିକାରୀ ନଥିଲେ। ମାତ୍ର ତେତିଶ ବର୍ଷ ବୟସରେ ତାଙ୍କର କାଳ ହୋଇ ଯାଇଥିଲା। ମାଈଁ ତାଙ୍କ ବିବାହ ପୂର୍ବରୁ ବି.ଏ. ପାସ୍ କରି ସାରିଥିଲେ, ବିବାହ ପରେ ବି.ଟି ମଧ୍ୟ ପାସ୍ କରି ବ୍ରାହ୍ମ ବାଳିକା ଶିକ୍ଷାଳୟ ସହିତ ଯୁକ୍ତ ଉଇମେନ୍ସ ଟ୍ରେନିଂ ଇନ୍ସଟିଚ୍ୟୁଶନରେ ପ୍ରିନ୍ସିପାଲ ହୋଇ କର୍ମ କରୁଥିଲେ। ମୋ ମାମୁଙ୍କ ମୃତ୍ୟୁ ପରେ ମାଈଁ ଗୋଟିଏ ବିଶେଷ ସ୍କଲାରଶିପ୍ ପାଇ ବିଲାତ ଗଲେ ଏବଂ ଲଣ୍ଡନ ୟୁନିଭର୍ସିଟିରୁ ଡିପ୍ଲୋମା-ଇନ୍-ଏଡୁକେଶନ ଉପାଧି ଆଣି ପୁନରାୟ ସେଇ ଉଇମେନ୍ସ ଟ୍ରେନିଂ ଇନ୍ଷ୍ଟିଚ୍ୟୁଶନରେ ପ୍ରିନ୍ସିପାଲ ହେଲେ। ସେ ସମୟରେ ଏଭଳି ଯୋଗ୍ୟତା ହାସଲ କରିଥିବା ମହିଳାଙ୍କର ଶିକ୍ଷା କ୍ଷେତ୍ରରେ ବିଶେଷ ଆଦର ଥିଲା। କିନ୍ତୁ ଖୁବ୍ ଉଚ୍ଚ ବେତନର ପ୍ରସ୍ତାବ ପାଇ ମଧ୍ୟ ମାଈଁ ସେ ଇନ୍ଷ୍ଟିଚ୍ୟୁଶନ୍ ଛାଡ଼ି ଯାଇ ନାହାନ୍ତି, କାରଣ ବିଧବାମାନେ ଅନେକ ସମୟରେ ସଂସାରରେ ବଡ଼ ଅସହାୟ ହୋଇଥାନ୍ତି, ସେତେବେଳେ ଟ୍ରେନିଂ ପରୀକ୍ଷା ପାସ୍ ହୋଇଥିଲେ ସେମାନେ କୌଣସି ସ୍କୁଲରେ କର୍ମ ନିଯୁକ୍ତି ପାଇ ଆତ୍ମନିର୍ଭର ହେଇ ପାରନ୍ତି। ବଡ଼ ମାଈଁ ସ୍ୱୟଂ ବିଧବା ବୋଲି ବିଧବାଙ୍କ ଦୁଃଖ ବୁଝୁଥିଲେ।

ସକାଳେ ସେ ସାନ ମାଈଁଙ୍କ ସାଥିରେ ମିଶି ଘର ସମସ୍ତଙ୍କ ପାଇଁ ଚାହା- ଜଳଖିଆର ବନ୍ଦୋବସ୍ତ କରୁଥିଲେ। ତାପରେ ଇନ୍ଷ୍ଟିଚ୍ୟୁଶନର ଛାତ୍ରୀମାନଙ୍କର ଖାତାଦେଖା ଓ ଅନ୍ୟାନ୍ୟ କାମରେ ବ୍ୟାପୃତ ରହୁଥିଲେ, ରୋଷେଇବାସରେ ସାନ ମାଈଁଙ୍କୁ ବିଶେଷ ସାହାଯ୍ୟ କରିପାରୁ ନଥିଲେ। ତେଣୁ ରବିବାର ସେ ରୋଷେଇବାସରେ ଲାଗୁଥିଲେ। ଆଉ ସବୁ ଦିନ ସେ ଭାତ ଖାଇସାରି ଟ୍ରେନିଂ ସ୍କୁଲକୁ ଯିବା ପୂର୍ବରୁ ହାତ ଘଣ୍ଟାଟି ମୁଣ୍ଡ ପାଖରେ ଥୋଇ ପନ୍ଦର ମିନିଟ୍ ଶୋଇ ଯାଉଥିଲେ। ତା'ପରେ ଉଠି ବାହାରି ପଡ଼ୁଥିଲେ। ଥରେ ପଚାରିଲି ଏଇ ପନ୍ଦର ମିନିଟ୍ ଶୋଇ ଲାଭ କଣ। ବଡ଼ ମାଈଁ କହିଲେ, ଲାଭ ଏଇ ଯେ ସ୍କୁଲରେ ଆଉ ଢୁଳ ମାଡ଼ିବ ନାଇଁ।

କଲିକତାରେ ଥିଲାବେଳେ ମୋର ବିଶେଷ ବନ୍ଧୁ ଥିଲା ବଡ଼ ମାଈଁଙ୍କ ସେଇ ସାନ ଭାଇ 'ବାବୁଲ୍'। ଅଠର ବର୍ଷର ସାନ ଭାଇ ହେଇ ଥିବାରୁ ସେ ଟିକେ ଅଳି-ଅଝଟ-ବିଦ୍ରୋହ କରେ,

ଫଳରେ ମୋର ବି ଲାଭ ହୁଏ, ଯଥା- ଶନିବାର ଦିନ ଆମେ କଲେଜରୁ ଫେରି ଜଳଖିଆ ଖାଇବୁ ନାହିଁ, ଚାରୋଟି ଲେଖାଏଁ ପଇସା ନେବୁ। ସେଇଆ ହେଲା। ସେତେବେଳେ ମାତ୍ର ତିନି ପଇସାରେ ଗୋଟଏ ପୂରା ବଡ଼ ଚିଙ୍ଗୁଡ଼ି କଟ୍‌ଲେଟ୍ ମିଳୁଥିଲା। କ୍ରିମ୍‌ରେ ଭର୍ତ୍ତି Happpy Boy ଆଇସ୍‌କ୍ରିମ ଚାରିଅଣା, ଗୋଟିକରେ ପୂରା ପେଟ ଭର୍ତ୍ତି ଜଳଖିଆ। ପରେ ବି.ଏସ୍‌ସି. ପରୀକ୍ଷା ଦେବା ସମୟରେ ଗୋଟିଏ ପେପର ପରୀକ୍ଷା ଦେଇସାରି ଆଉ ଗୋଟାଏ ପେପର ପାଇଁ ବସିବା ପୂର୍ବରୁ ଗୋଟାଏ Happy Boy ହିଁ ଥିଲା ମୋର ଜଳଖିଆ।

କଲିକତା ରାସ୍ତା ନିୟମ କାନୁନ୍ କି ରକମ ଥିଲା କହୁଛି। ସକାଳ ସଞ୍ଜ କଲିକତାର ବଡ଼ ରାସ୍ତାଗୁଡ଼ିକ-ଯଥା ସେଇ ସର୍କୁଲର ରୋଡ଼୍-ହୋକ ପାଇପ୍‌ରେ ଧୁଆ ହଉଥିଲା। ମୁଁ ବେଳେବେଳେ ଛୁଟି ଦିନରେ ସାଇକଲରେ ଦଶ ପନ୍ଦର ମାଇଲ ପର୍ଯ୍ୟନ୍ତ ବୁଲି ଚାଲି-ଯାଉଥିଲି। ଥରେ ସନ୍ଧ୍ୟାବେଳେ ହାଓଡ଼ା ପୋଲ ଉପରେ ଯାଉଥିଲା ବେଳେ ମୋର ସାଇକଲରେ ଲାଇଟ୍ ନଥିଲା ନା ଆଉ କଣ ଦୋଷ ହେଇଥିଲା ମନେ ନାହିଁ, ବ୍ରିଟିଶ୍ ରାଜର ସେଇ ଅତି ସୁସମୟରେ ରାସ୍ତାରେ ଜଗୁଥାନ୍ତି ବିହାରୀ ଭୋଜପୁରୀ ପୋଲିସ, ସେମାନଙ୍କର କୁସ୍ତିଲଢ଼ା ହାତରେ ମୋ ବେକରେ ଏକ ରଦା ମାରି ସେ ମୋର ସାଇକେଲ ଛଡ଼େଇ ନେଇ କେସ୍ ଠୁକି ଦେଲା। ନିର୍ଦ୍ଦିଷ୍ଟ ଦିନରେ ବ୍ୟାଙ୍କଶାଲ (Bankshall) କୋର୍ଟ ହାତରେ ପହଞ୍ଚିଲା ବେଳକୁ ଜଣେ ବ୍ୟବହାରଜୀର୍ଣ୍ଣ ପେଣ୍ଟକୋଟ୍ ପିନ୍ଧିଥିବା ବ୍ୟବହାରଜୀବ ମୋ ପାଇଁ ଲଢ଼ିବେ ବୋଲି ଅତିଶୟ ଜିଗର କରି ମୋ ପାଖରୁ ଗୋଟିଏ ଟଙ୍କା ଆଗତୁରା ନେଇ ନେଲେ-ଏହି ସର୍ତ୍ତରେ ଯେ ମୋର ଜୋରିମାନା ହେଲେ ସେ ଟଙ୍କାଟି ସେ ମୋତେ ଫେରସ୍ତ ଦେବେ, କାରଣ ପୋଲିସ ଅଫିସରୁ ମୋ ସାଇକେଲ ଆଣିବାକୁ ଯିବା ପାଇଁ ମୋର ଆଉ ବସ୍ ଭଡ଼ା ନାହିଁ। କେସ୍ ଡକରା ହେବା ମାତ୍ରେ ସେ ଉଠି 'ଇଓର ଅନାର୍ ସାର୍, ହି ଇଜ୍ ଏ ନିଉ- କମର୍, ସାର୍' କହୁ କହୁ ତେଣେ ଜୋରିମାନା ଅର୍ଡର ହେଇ ରସିଦ୍ ବି କଟା ସରିଲାଣି। ପ୍ରକୃତରେ ଏଇଭଳି 'ପେଟି କେସ୍'ରେ ଅଦାଲତ କୌଣସି ରକମ ଓଜର ଆପତ୍ତି ଶୁଣନ୍ତି ନାହିଁ। ଓକିଲ ମୋର ଟଙ୍କାଟି ଫେରସ୍ତ ଦେଲେ। ତାଙ୍କ ମୁହଁକୁ ଚାହିଁ ମୋତେ ଦୁଃଖ ଲାଗିଲା, କିନ୍ତୁ ମୁଁ ନିରୁପାୟ ଥାଏ।

କଲିକତା କର୍ନୋଆଲିସ୍ ସ୍କୋୟାରରେ (ଏବେ ଅନ୍ୟ ନାମ) 'ହେଦୋ' ବୋଲି ଯେଉଁ ବଡ଼ ପୁଷ୍କରିଣୀ ଅଛି ତା'ର ଦି'ମୁଣ୍ଡରେ ଦି'ଟା ପହଁରାଳି କ୍ଲବ୍ ଥାନ୍ତି Central Swimming Club ଏବଂ National Swimming Association। ମୁଁ ଏଇ ଦ୍ୱିତୀୟଟିରେ ଭର୍ତ୍ତି ହେଇଗଲି। ଉପରଓଳି ପ୍ରାୟ ସେଠି ପହଁରିବା ପାଇଁ ଯାଉଥିଲି, ପ୍ରତିଯୋଗିତାରେ ପ୍ରାଇଜ୍ ବି ପାଇଥିଲି। ସେତେବେଳେ ମୋର ଅଜାଣତ ଭବିଷ୍ୟତ ପତ୍ନୀ ତାଙ୍କ ପିଲା ବୟସରେ ସେଇ 'ହେଦୋ'ରେ ପହଁରା ଶିଖୁଥିଲେ, କିନ୍ତୁ ସେଇ ଆର ମୁଣ୍ଡରେ 'ସେଣ୍ଟ୍ରାଲ'ରେ। ପୋଖରୀଟା

ବିଶାଳ, ତେଣୁ ଦେଖା ହେବା ସମ୍ଭାବନା କମ୍ । ଏକଥା ଅବଶ୍ୟ ମୁଁ ଜାଣିଲି ଚଉଦ ବର୍ଷ ପରେ ! କଟକରେ ବନ୍ୟାସ୍ଫୀତ କାଠଯୋଡ଼ିରେ ତାଙ୍କୁ ସାଥିରେ ନେଇ ପହଁରିଲି ଯେତେବେଳେ ।

ମୋର ପିଲାଳିଆମି ବା ମନୁଆପଣ ବା ହାଲୁକାମିର ଆଉ ଗୋଟିଏ ଦୃଷ୍ଟାନ୍ତ ଏବଂ ମୋ ପାଇଁ କ୍ଷତିକର ଦୃଷ୍ଟାନ୍ତ ହେଲା ବି.ଏସ୍‌ସି. ପରୀକ୍ଷା ବେଳକୁ ମୋର ଅନ୍ୟତମ ପାଠ୍ୟ ବିଷୟ ମାଥେମାଟିକ୍ସ ଅନର୍ସଟାକୁ ହଠାତ୍ ଛାଡ଼ିଦେବା । ଘଟଣା ଏଇ ଯେ ଅଧିକ 'ଆଡ୍ଡା ମାରିବା' ଫଳରେ ମୋର ଲେକ୍‌ଚର ପାର୍ସେଣ୍ଟେଜ୍ କମ୍ ପଡ଼ି ଯାଇଥିବାରୁ ମୋତେ 'ନନ୍-କଲିଜିଏଟ୍' ଗଣ୍ୟ କରାଗଲା ଏବଂ ପରୀକ୍ଷା ଫିସ୍ ଅଧିକ ଦଶ ଟଙ୍କା ଧାର୍ଯ୍ୟ କରାଗଲା । ତେଣେ ଅନର୍ସ ପରୀକ୍ଷା ପାଇଁ ମଧ୍ୟ ଅଧିକ ଫିସ୍ ଦଶ ଟଙ୍କା ଦେବାକୁ ପଡ଼ିବ । କଣ କରାଯିବ ? ମୁଁ ଏଥିରେ ପୂରା 'ଅନୁଦ୍‌ବିଗ୍ନମନାଃ' ହୋଇ ଅନର୍ସଟାକୁ ବାଦ୍ ଦେଇଦେଲି ! ବୟସ ଉଣେଇଶ ପୂରି କୋଡ଼ିଏ ଚାଲିଥାଏ, ବି.ଏସ୍‌ସି. ପାସ୍‌ଟିଏ ହୋଇ ମୋ ପାଠ ପଢ଼ା ସାରି ଦେଲି । ସେଥିରେ ଏପରି 'ବିଗତସ୍ପୃହ' ଯେ ୧୯୩୪ର କାଲକାଟା ୟୁନିଭର୍ସିଟି କନ୍‌ଭୋକେଶନ୍‌କୁ ମୋର ବି.ଏସ୍‌ସି. ସାର୍ଟିଫିକେଟ୍ ଆଣିବା ପାଇଁ ମଧ୍ୟ ଗଲି ନାହିଁ । ମୋର କଲେଜ ପ୍ରିନ୍‌ସିପାଲ ପ୍ର. ରଜନୀକାନ୍ତ ଗୁହ ମହାଶୟ କଲେଜ ତରଫରୁ ଯେଉଁ ପାସ୍ ସାର୍ଟିଫିକେଟ୍ ଦେଲେ ତାହାହିଁ ମୋ ପାଇଁ ଯଥେଷ୍ଟ ହେଲା ।

•

---

*ମନୁଆ*, ସ୍ୱ-ପ୍ରକାଶନ, ଭୁବନେଶ୍ୱର, ୨୦୦୯

# ରେଭେନ୍‌ସା କଲେଜ

## ପୁଲିନ୍ ବିହାରୀ ରାୟ

କଲେଜରେ ନାଁ ଲେଖେଇବା ଦିନଟା ଠିକ୍ ମୋର ମନେ ପଡ଼ୁ ନାହିଁ । କିନ୍ତୁ ୧୯୩୦ ମସିହାରେ କଲେଜରେ ନାଁ ଲେଖେଇଲି । ଘରୁ ଖାଇ ପିଇ ଟଙ୍କା ଧରି ରେଭେନ୍‌ସା କଲେଜକୁ ଗଲି । ସେତେବେଳେ କଲେଜ ଅଫିସ ଥାଏ Arts Block ର ଉପର ମହଲାରେ । ଜଗନ୍ନାଥ ବାବୁ, ସାଧୁ ବାବୁ ଦୁଇଜଣ ବୟସ୍କ କିରାଣି । ସାଧୁ ବାବୁଙ୍କ ପାଖରେ ନାଁ ଲେଖାଇବାକୁ ହବ । ସାଧୁ ବାବୁ ଅତି ଚମତ୍କାର ଲୋକ । ନିଜ ଲୋକ ଭଳି ମନେ ହେଲା । ମୋର ଇଚ୍ଛା ଥିଲା I.Sc.ରେ ନାଁ ଲେଖେଇବି, କିନ୍ତୁ ସାଧୁ ବାବୁଙ୍କ ଠାରୁ ବୁଝିଲି, I.Sc.ରେ ସିଟ୍ ନାହିଁ । ଯଦି I.A. ରେ ନାଁ ଲେଖେଇବି, ତେବେ ନାଁ ଲେଖେଇବା ସମ୍ଭବ ହେବ । ନଚେତ୍ ନାହିଁ । ବଡ଼ ହତାଶ ଲାଗିଲା ଶୁଣି, କଣ କରିବି ? ମୁଁ ପୁଣି ବାବାଙ୍କର P.H.D ଅଫିସକୁ ଦୌଡ଼ିଲି । ବାବାଙ୍କୁ ସବୁ କଥା କହିଲି, ବାବା କହିଲେ, ହଉ ତାହେଲେ I.A. ରେ ନାଁ ଲେଖା । ମୁଁ ପୁଣି ରେଭେନ୍‌ସା କଲେଜକୁ ଗଲି । ସାଧୁବାବୁଙ୍କୁ କହିଲି, ମୁଁ Artsରେ ନାଁ ଲେଖେଇବି । ସାଧୁ ବାବୁ କହିଲେ କଣ ଗ୍ରୁପ୍ ନବ ଠିକ୍ କର । ମୁଁ H.L.B group ଠିକ୍ କଲି ଅର୍ଥାତ୍ ଇତିହାସ, ଲୋଜିକ୍ ଏବଂ ବଟାନି । ଫର୍ମ ଇତ୍ୟାଦି ପୂରଣ କରି, ଯେମିତି ଯାହା କରିବାର କଥା, ସବୁ କରି, ଯେତିକି ଟଙ୍କା ଦରକାର ସବୁ ଦେଇ କଲେକରେ ନାଁ ଲେଖେଇଲି । କିନ୍ତୁ ମନଟା ଟିକିଏ ଅଶାନ୍ତି ବୋଧ ହେଲା କାରଣ ମୋର ଏକାନ୍ତ ଇଚ୍ଛା ଥିଲା I.Sc. ପଢ଼ିବା ପାଇଁ । I.Sc. ପଢ଼ିଥିଲେ ପରେ ମେଡ଼ିକାଲରେ ପଢ଼ିବାର ବାଟ ଥାନ୍ତା । I.A. ପଢ଼ିଲେ ତ ଆଉ ମେଡ଼ିକାଲରେ ପଢ଼ିବା ସମ୍ଭବ ନୁହେଁ । ପୁଣି ଭାବିଲି, ମୂଳରୁ ତ ପାଠ ଛାଡ଼ି ବୁଲୁଥିଲି । ପାଠ ପଢ଼ିବାର ଆଶା ନଥିଲା । ଏପରି ସ୍ଥଳେ I.A.ରେ ନାଁ ଲେଖେଇଲେ ଦୁଃଖ କଣ ? ସମସ୍ତେ କଣ ମେଡ଼ିକାଲରେ ପଢୁଛନ୍ତି ? ଅନେକ ତ ପୁଣି I.A., B.A., M.A., ପଢ଼ି ମଣିଷ ହେଇଛନ୍ତି । ଏଥିରେ ଦୁଃଖ କରିବାର କଣ ଅଛି ? କଲେଜରେ ନାଁ ଲେଖେଇ ସିଧା ପୁଣି ବାବାଙ୍କ ପାଖକୁ ଗଲି । ବାବାଙ୍କୁ କହିଲି, I.A.ରେ ନାଁ ଲେଖେଇଲି । ବାବାଙ୍କର ହାକିମ ମୋତେ ଡାକି, ମୁଁ କି ଗ୍ରୁପ୍ ନେଲି ପଚାରିଲେ । ଭାରି ଖୁସି ହେଲେ । ବାବାଙ୍କ

ଠାରୁ ବିଦାୟ ନେଇ ଘରକୁ ଫେରିଲି । ମୁଁ କଲେଜରେ ନାଁ ଲେଖେଇଲି ଶୁଣି ମା' ଭାରି ଖୁସି ହେଲେ । ମା'ଙ୍କର ଆଉ ଆଶା ନଥିଲା ଯେ ମୁଁ କଲେଜରେ ପଢ଼ିବି । ମା କହିଲେ I.A., B.A., ପଢ଼ିଲେ କ୍ଷତି କଣ ? I.A., B.A., ପଢ଼ି ଓକିଲାତି ପଢ଼, ଭଲ ହବ । ଆମ ଘର ତ ଓକିଲ ଘର ଥିଲା । ଏ କଥା ମା'ଙ୍କର କହିବାର ଉଦ୍ଦେଶ୍ୟ ହେଲା, ତାଙ୍କ ବାପ ଘରେ ଓକିଲ ଥିଲେ, ଆମ ଘରେ ମଧ୍ୟ ଆଗେ ଓକିଲ ଥିଲେ । ମୁଁ ସେମାନଙ୍କ ନାମ ମା'ଙ୍କ ଠାରୁ ଶୁଣିଥିଲି କିନ୍ତୁ ମୋର ଆଉ ମନେ ପଡ଼ୁନି । ମା' ପୁଣି କହିଲେ ହେଇ ତ ଯାନ ଠାକୁରେ (ରାମଶଙ୍କର ରାୟ) ଓକିଲ ହେଇଥିଲେ । ହେଇ ତ ଗିରିକା (ଗିରିଜାଶଙ୍କର ରାୟ) ଓକିଲାତି ପଢ଼ିଲା । I.A.. ପଢ଼ିଲେ ଖରାପ କଣ ?

ତହିଁ ଆରଦିନ ସାଢ଼େ ଦଶଟା ବେଳେ କଲେଜକୁ ଗଲି । କମନ୍ ରୁମ୍‌ରେ ପଶିଲି, କି ଚମତ୍କାର ପରିବେଶ ! କେବଳ ଅଳ୍ପ କେତେ ଜଣକୁ ଛାଡ଼ି ଦେଲେ ଆଉ ସମସ୍ତେ ଅଚିହ୍ନା । ସେତେବେଳେ ତ ଓଡ଼ିଶାରେ ଏତେ କଲେଜ ନଥିଲା ତଥାପି ଅନେକ ପିଲା I.A., I.Sc. ରେ ନାଁ ଲେଖେଇଥାନ୍ତି । ଆଉ କେତେକ ମୋରି ପରି Supplementary matric ପରୀକ୍ଷାରେ ପାସ୍ କରି ନାଁ ଲେଖେଇ ଥାନ୍ତି । ଆମ ସ୍କୁଲରୁ ଫାଇନାଲ୍ ମେଟ୍ରିକ ପରୀକ୍ଷାରେ ପାସ୍ କରି ହରେନ୍ଦ୍ର ନାଥ ରାଉତରାୟ I.Sc.ରେ ଆଗରୁ ନାଁ ଲେଖେଇଥାଏ । ତା'ର ମୋର ଭେଟ ହଉ ନଥାଏ । ଯେଉଁମାନେ Supplementary matric ପରୀକ୍ଷାରେ ପାସ୍ କରି H.L.B. group ନେଉଥାନ୍ତି ମୁଁ ତାଙ୍କର ପିଛା ଧଇଲି । ମୋତେ ଅନେକ Muslim Seminary ର player ବୋଲି ଚିହ୍ନି ଥିଲେ । ବିଶେଷତଃ କଲେଜିଏଟ୍ ସ୍କୁଲ ପିଲାଏ, ଅନ୍ୟାନ୍ୟ ସ୍କୁଲରୁ ପାସ୍ କରି ଆସିଥିବା ପିଲାଙ୍କ ଅପେକ୍ଷା କଲେଜରେ ସେ ବର୍ଷ ତାଙ୍କରି ସଂଖ୍ୟା ବେଶି, ହେଲେ ତାଙ୍କ ସହିତ ମୋର ପରିଚୟ ନଥିଲା । କଲେଜିଏଟ୍ ସ୍କୁଲର କେତେକ player ମଧ୍ୟ ନାଁ ଲେଖେଇଥାନ୍ତି । ତାଙ୍କ ମଧ୍ୟରୁ ମୋର କେବଳ ପରିଚିତ ଥାଏ, ସଦାନନ୍ଦ ବାନାର୍ଜୀ । Muslim player ଙ୍କ ମଧ୍ୟରୁ ମୁଁ ଏକା, ଆଉ କେହି ନାହିଁ । ରେଭେନ୍‌ସା କଲେଜକୁ ଯେ ମୁଁ ଆଜି ନୂଆ ଆସିଛି, ତା ନୁହେଁ, Commemoration Day, exhibition ଇତ୍ୟାଦିରେ ପାଠ ଛାଡ଼ି ବୁଲିଲା ବେଳେ ଅନେକବାର ଆସିଛି । ଏମିତିକି ରେଭେନ୍‌ସା କଲେଜ ତିଆରି ହେଲା ବେଳେ, ଦିନ ଚାରିଟା ବାଜିଲା ପରେ ସାଙ୍ଗସାଥୀଙ୍କ ମେଳରେ ଆସି ଏହାର ଅଧା ଅଧା କାନ୍ଥ ଉଠିଥିବା କାନ୍ଥମାନଙ୍କ ଉପରେ ଛେଳିମାନେ ଯେମିତି ଅଧା କାନ୍ଥ ଉପରେ ଚଢ଼ି ବୁଲନ୍ତି, ସେମିତି କେତେଥର ଚଢ଼ି ବୁଲିଛି, ଡେଇଁଛି । ଉଦ୍ଦେଶ୍ୟ, ଦେଖିବା ରେଭେନ୍‌ସା କଲେଜ କେମିତି ତିଆରି ହଉଛି । ଆଜି ଛାତ୍ର ହିସାବରେ ରେଭେନ୍‌ସା କଲେଜକୁ ଆସିଛି ପାଠ ପଢ଼ିବା ପାଇଁ । ରେଭେନ୍‌ସା କଲେଜରେ ଯେ ଦିନେ ମୁଁ ପାଠ ପଢ଼ିବି, ଏ ତ ମୋର କଳ୍ପନାତୀତ ଘଟଣା । କଲେଜରେ ପ୍ରଥମ ଦିନ

ଯେତେବେଳେ ବଟାନି କ୍ଲାସକୁ ଯାଏ, ଭାରି ଆନନ୍ଦ ଲାଗିଲା । କେତେ ପ୍ରକାର ବୃକ୍ଷ, ଲତା, କେତେ ପ୍ରକାର ଶିକ୍ଷାର ସାମଗ୍ରୀ । ସେଇଠି ଭେଟିଲି ଦେବବ୍ରତ ବାବୁ ପ୍ରଫେସରଙ୍କୁ । ଅନେକ ସାଙ୍ଗସାଥୀ । ମୁଁ ଦେଖିଲି ମୋର ନାଁ ଆଟେଣ୍ଡାନ୍ସ ରେଜିଷ୍ଟରରେ ଉଠି ଯାଇଛି, ସେଇଠି ମୋର ରୋଲ୍ ନମ୍ବର ଜାଣିଲି । ତାପରେ ଇଂରାଜୀ କ୍ଲାସ ଇତ୍ୟାଦିକୁ ଗଲି । ଏଠି ଦିନ ଭିତରେ ମୋଟେ ଦି, ତିନିଟା କ୍ଲାସ, ଗୁରାଏ leisure, ସ୍କୁଲରେ ତ ପଢ଼ିବା ବେଳେ ସାଢ଼େ ଦଶଟାରୁ ଚାରିଟା ଯାଏ କ୍ଲାସ । ଏଠି ଏତେ କମ୍ କ୍ଲାସ ଦେଖି ଅଶାନ୍ତି ବୋଧ ହେଲା । ସ୍କୁଲ ତୁଳନାରେ ଏଠି ସବୁ ବିରାଟ, ଆଡ଼ମ୍ବରବହୁଳ । ମୁଁ ତ ଗରିବ ସ୍କୁଲର ଛାତ୍ର । Muslim Seminaryରେ ପଢ଼ିଲାବେଳେ କ୍ଲାସର ପଛପଟ ଖିଡ଼ିକି ଉପରେ ହନୁମାଙ୍କଡ ଆସି ବସିବାର ଦେଖିଛି । କି ଅପରିଷ୍କାର କ୍ଲାସ୍ ରୁମ୍ ସବୁ । ଏଠି ତ ସବୁ ପରିଷ୍କାର, ପରିଛନ୍ନ, ଚକ୍ ଚକ୍, ଝକ୍ ଝକ୍ । ମୁଁ ଯେତେବେଳେ ରେଭେନ୍ସା କଲେଜରେ ନାଁ ଲେଖାଏ, ସେତେବେଳେ କଲେଜରେ ମୋଟ ଛ'ସାତଶ ପିଲା । ଗୋଟାଏ ଗୋଟାଏ କ୍ଲାସରେ ଅଧା ବେଞ୍ଚ, ଡେସ୍କ ଖାଲି ପଡ଼ିଥାଏ । କ୍ଲାସରୁମ୍ ସବୁ ଯେମିତି ପରିଷ୍କାର, ପରିଛନ୍ନ ପିଲାଏ ମଧ୍ୟ ସେମିତି ସୁନ୍ଦର, ପରିଷ୍କାର, ପରିଛନ୍ନ । କ୍ଲାସକୁ ପଶିଗଲା ବେଳେ ଯେମିତି କେଉଁ ଫୁଲ ବଗିଚାରେ ଫୁଲର ସୌରଭ ଭଳି ନାନା ପ୍ରକାର ସୁଗନ୍ଧରେ ମନଖୁସି ହେଇ ଯାଉଛି । ପିଲାଏ ଯେମିତି, ପ୍ରଫେସରମାନେ ମଧ୍ୟ ସେମିତି ଫୁଟିଲା ଫୁଲ ଭଳି । ବେଶ ପୋଷାକରେ କେଉଁଠି ଟିକିଏ ତ୍ରୁଟି ପାଇବନି । କିନ୍ତୁ ସ୍କୁଲରେ ଅନ୍ୟାନ୍ୟ ବିଷୟରେ ଶିକ୍ଷକମାନଙ୍କ ତୁଳନାରେ ଓଡ଼ିଆ ସାହିତ୍ୟ, ସଂସ୍କୃତ ପ୍ରଫେସରଙ୍କ ବେଶ ପୋଷାକର ଅନେକ ପାର୍ଥକ୍ୟ । ପ୍ୟାଣ୍ଟ, କାମା ଯେମିତି ରୂପ ଯେମିତି, ତା ସାଙ୍ଗକୁ ମୁଣ୍ଡ ପଛ ପଟେ ଗୋଟିଏ ଚୁଟି, ସେଥିରେ ଗୋଟିଏ ଗଣ୍ଠି । କିନ୍ତୁ ପାଠ ପଢ଼େଇବାର ଧାରା ଅନେକ ଉନ୍ନତ ଧରଣର ।

ସେତେବେଳେ ରେଭେନ୍ସା କଲେଜର ପ୍ରିନ୍ସିପାଲ ଗୋରା ଚମଡ଼ାର ଲୋକ । ନାଁ T.C. Orgil । ବାଳୀ କି ଅଙ୍ଗଦ ଭଳି ରୂପ । ଚିଲା ଆଖିରେ ଅନେଇ ଦେଲେ ପିଲାଏ ଅଟକି ଯିବେ । ଏଠି ଚପରାସୀଠୁ ଆରମ୍ଭ କରି କିରାଣି, ଛାତ୍ର, ପ୍ରଫେସର ସମସ୍ତଙ୍କର ଭାରି ଭଦ୍ର ବ୍ୟବହାର, ଶିଷ୍ଟତା ଶିକ୍ଷଣୀୟ । ବଡ଼ ବଡ଼ ବାରଣ୍ଡାରେ ପିଲାଏ କ୍ଲାସ ଶେଷରେ ଯଦି ବାଁ ପଟେ ଧାଡ଼ି ବାନ୍ଧି ଫେରୁଛନ୍ତି ତ ଅନ୍ୟ ପଟେ ଧାଡ଼ି ବାନ୍ଧି ପିଲାଏ ଡାହାଣ ପଟେ କ୍ଲାସକୁ ଚାଲିଛନ୍ତି ସବୁ ଚୁପ୍‌ଚାପ୍, କେବଳ ଗୋଡ଼ର ଶବ୍ଦ ଯାହା ଜଣା ପଡ଼ୁଛି । ହୋ, ହା ନାହିଁ । ଗଣ୍ଡଗୋଳ ନାହିଁ । ସବୁ ନୀରବ, ଗାମ୍ଭୀର୍ଯ୍ୟପୂର୍ଣ୍ଣ, କ୍ଲାସରେ ପାଠ ପଢ଼ା ମଧ୍ୟ ସେମିତି । ପ୍ରଫେସର ଯେ ଆସୁଛନ୍ତି, ତାଙ୍କର ସେ ବକି ଚାଲୁଛନ୍ତି, ବୁଝେଇବାରେ ଲାଗିଛନ୍ତି, ପିଲାଏ କେତେ ଯେ କୁଆଡ଼େ ପଛ ବେଞ୍ଚରୁ ଖସି ପଳେଇଲେଣି । ସେଥିପାଇଁ ଭ୍ରୂକ୍ଷେପ ନାହିଁ । ତାଙ୍କର କର୍ତ୍ତବ୍ୟରେ ସେ ଲାଗିଛନ୍ତି । ମୋତେ କୌଣସି କ୍ଲାସ ଖରାପ ଲାଗୁନଥାଏ, କେବଳ ଇତିହାସ କ୍ଲାସ ଛଡ଼ା । ଆଉ ସବୁଠୁଁ ଭଲ

ଲାଗୁଥାଏ ବଟାନି କ୍ଲାସ ଏବଂ ଓଡ଼ିଆ ସାହିତ୍ୟ କ୍ଲାସ୍ । ଓଡ଼ିଆ ସାହିତ୍ୟ କ୍ଲାସରେ ବେଶି ପିଲା ପଛ ବେଞ୍ଚରୁ ଖସି ପଳାନ୍ତି । ଆର୍ତ୍ତବାବୁଙ୍କ କ୍ଲାସ ବେଶି ଭଲ ଲାଗେ । ସେହି ଚିଲିକା କାବ୍ୟ ପଢ଼ିଥିଲି ମେଟ୍ରିକ କ୍ଲାସରେ । ଏଠି ସେହି ଚିଲିକା କାବ୍ୟ ଆର୍ତ୍ତବାବୁଙ୍କ ମୁହଁରେ ତ ଆହୁରି ରସାଳ ମନେ ହେଲା । ବିଭିନ୍ନ ସାହିତ୍ୟରୁ କେତେ ଉଦାହରଣ , କେତେ reference, କଲେଜକୁ ନ ଆସିଥିଲେ ଏ ସବୁ କାଣନ୍ତି କୁଆଡ଼ୁ ? English class ମଧ୍ୟ ସେମିତି ଭଲ ଲାଗୁଥାଏ । ମୁଁ ସ୍କୁଲର ଶିକ୍ଷକମାନଙ୍କୁ ଦେଖି ଭାବୁଥିଲି , କେଡ଼େ ଉଚ୍ଚ ଶିକ୍ଷିତ ଲୋକ ଏ ! କେତେ ଜ୍ଞାନ ଯାଙ୍କର ! କିନ୍ତୁ କଲେଜକୁ ଆସି ଦେଖିଲି , ତାଙ୍କଠୁଁ ଆହୁରି ଦନ୍ତା ଅଛନ୍ତି ଜ୍ଞାନର ଖଣି , ଯା ପଚାର , ତା କହିଲେ , ଗୋଟାଏ କଥା ପଚାରିଲେ , ଦଶ କଥା ଉତୁଲି ପଡ଼ୁଛି । ତଥାପି କି ସୁନ୍ଦର ବ୍ୟବହାର ! କି ଶାନ୍ତ ପ୍ରକୃତି ! କି ଧୈର୍ଯ୍ୟଶୀଳ !

•

---

*ଅପ୍ରକାଶିତ ଆତ୍ମଜୀବନୀ*ର ଅଂଶବିଶେଷ

# ରେଭେନ୍‌ସା କଲେଜ

## ଗୋପୀନାଥ ମହାନ୍ତି

ଜୁଲାଇ ଚାରି ତାରିଖ ଦିନ କାହ୍ନୁଭାଇ ଓ ମୁଁ କଲେଜ ଯାଇ ପରିଜା ସାହେବଙ୍କ ସଙ୍ଗେ ମୋ ପଢ଼ାପଢ଼ି ବିଷୟରେ ଆଲୋଚନା କରି ଆସିଲୁଁ, ଆଇ.ଏସ୍‌ସି. ପଢ଼ିବି ଓ ବଟାନି ନେବି ସ୍ଥିର ହୋଇଥାଏ । ହଷ୍ଟେଲ୍‌ରେ ରହି ପଢ଼ିଲେ ଭଲ ହେବ ବୋଲି ସ୍ଥିର ହୋଇଥାଏ । କିନ୍ତୁ ଆରମ୍ଭରୁ କଲେଜରେ ନାଁ ଲେଖାଇବାକୁ ପଡ଼ିବ ଟ୪୮ଙ୍କା ଓ ହଷ୍ଟେଲ୍‌ରେ ରହିବାକୁ ଟ୪୦ଙ୍କା, ବହି କିଣିବା ଓ ଖର୍ଚ୍ଚ ଅଲଗା, ଟଙ୍କା ଆସିବ କୁଆଡୁ ? ଅଭାବତ ସମସ୍ତିଙ୍କର ! ଚିଠି ଲେଖା ହେଲା ।

କାହ୍ନୁଭାଇ ଟଙ୍କାକେ ମାସକୁ ଛ' ପଇସା ସୁଧରେ ମୋର କଲେଜରେ ନାଁ ଲେଖା ଟଙ୍କା କରଜ କରି ସଂଗ୍ରହ କଲେ, ଜୁଲାଇ ମାସ ୧୧ ତାରିଖ, ୧୯୩୦ ସାଲ, ରେଭେନ୍‌ସା କଲେଜର ଆଇ.ଏସ୍‌ସି. ପ୍ରଥମ ବର୍ଷର ଶ୍ରେଣୀରେ ମୋ ନାଁ ଲେଖା ହେଲା, ନିଷ୍ପତ୍ତି ହେଲା ଯେ ଟଙ୍କା ଅଭାବରୁ ପୂଜାଯାକେ ମୁଁ ଆଉ ହଷ୍ଟେଲ୍‌ରେ ରହିବା କଥା କଳ୍ପନା କରିପାରିବି ନାହିଁ, ମହମ୍ମଦିଆ ବଜାର ବସାରେ ରହି ଚାଲି ଚାଲି କଲେଜ ଯା ଆସ କରୁଥିବି, ଟଙ୍କା ମିଳିଲେ ବହି କିଣା ହେବ, ସେ ପର୍ଯ୍ୟନ୍ତ କଲେଜରେ ଲେକ୍‌ଚର୍ ଶୁଣୁଥିବି, ଟିପୁଥିବି, ଅନ୍ୟ କାହା ବହିରୁ ଟିକିଏ ଟିକିଏ ଦେଖି ନେଉଥିବି, ସ୍କଲାର୍‌ସିପ୍ ଫଳ ଗେଜେଟ୍‌ରେ ବାହାରି ନ ଥାଏ, ବାହାରିଲା ପରେ ବି ଟଙ୍କା ମିଳୁ ମିଳୁ ଡେରି ହେବ ।

ସେହି ବ୍ୟବସ୍ଥାହିଁ କାର୍ଯ୍ୟକାରୀ ହେଲା ।

ରେଭେନ୍‌ସା କଲେଜରେ ନାଁ ଲେଖା । କାହ୍ନୁଭାଇ ଫର୍ମ ଆଣିଥିଲେ, ତାଙ୍କ ସାଇକଲ ପଛରେ ଠିଆ ହୋଇ ମୁଁ ଯାଇଥିଲି ।

ଚାରିଆଡ଼େ ସତ୍ୟାଗ୍ରହ ଆନ୍ଦୋଳନ ଧୁମ୍‌ଧାମ । ସ୍କୁଲ୍ କଲେଜ ଖୋଲିଥାଏ, ସବୁଠି ସତ୍ୟାଗ୍ରହୀମାନେ ପିକେଟିଂ କରୁଥାନ୍ତି, ପିଲାଙ୍କୁ ଯିବାକୁ ଛାଡୁ ନ ଥାନ୍ତି ।

ଜୁଲାଇ ୧୧ ତାରିଖ ହେଲା । ନାଁ ଲେଖା ଟଙ୍କାତକ ଅତି ଯତ୍ନରେ ଘେନି ଭଗବାନଙ୍କୁ ସ୍ମରଣକରି ପ୍ରାର୍ଥନା କରି ମୁଁ ମହମ୍ମଦିଆ ବଜାର ବସାରୁ ବାହାରିଲି । କାହ୍ନୁଭାଇ ମତେ ସତର୍କ

କରି ଦେଇଥାନ୍ତି, "ହୁସିଆର, ଏ ଟଙ୍କାତକ ହକିଲେ ତୋ କପାଳ ଫାଟିଲା । କଲେଜରେ ନାଁ ନ ଲେଖାଇଲେ ତୋ ଭବିଷ୍ୟତ ବନ୍ଦ ।" ସେ ଗଣ୍ଡିଏ ଖାଇଦେଇ ଅଫିସ୍ ଗଲେ । ସେତେବେଳେ ବୋଧହୁଏ ହାତରେ ଗାନ୍ଧୁଥାନ୍ତି, ପଛେ ଆସିଲା ଗୋଷେୟୀଟିଏ, 'କାହ୍ନୁଆ', ବହୁତଦିନ ରହିଲା ।

ରେଭେନ୍ସା କଲେଜ ପାଖ ହେଲା, ବହୁତ ଲୋକ, ସୁଅ ଛୁଟିଛି । ଫାଟକ ସାମ୍ନାରେ ବହୁତ ଭିଡ଼, ବହୁତ ପାଟି, ନାଲି ପଗଡ଼ି ପିନ୍ଧି ଠେଙ୍ଗା ଧରି ବହୁତ ପୋଲିସ୍, ଖଦଡ଼ ପିନ୍ଧି ବହୁତ କଂଗ୍ରେସ କର୍ମୀ । ବିପୁଳ ଉତ୍ତେଜନା । ମଝିରେ ମଝିରେ ସ୍ଲୋଗାନ୍, ମହାତ୍ମା ଗାନ୍ଧିଜୀ କୟ୍ । ଭାରତ ମାତାକୀ କୟ୍ ! ଆହୁରି କେତେ କ'ଣ । ଆଗରେ ମଣିଷ କାନ୍ଥ, ଆଗକୁ ଯାଇ ହେଉ ନାହିଁ, କ'ଣ ଘଟୁଛି କିଛି ବୋଲି କିଛି ଦିଶୁ ନାହିଁ । କାହିଁ ବାଟ ? କାହିଁ ଫାଟକ ?

ଖାଲି ଶୁଣା କଥା ଯେ ତାକୁ କହୁଛି, ସେ ଯାକୁ କହୁଛି । ଶୁଣା କଥାରୁ କିଛି କିଛି ଅନୁମାନ କଲି, କୁଆଡ଼େ ବଡ଼ ବଡ଼ ନେତାମାନେ ଅଛନ୍ତି, ତାଙ୍କ ଭିତରେ ଶ୍ରୀ ଗୋପବନ୍ଧୁ ଚୌଧୁରୀ, ଶ୍ରୀମତୀ ରମାଦେବୀ, ଶ୍ରୀମତୀ ମାଳତୀଦେବୀ, ଆଉ କେତେ ନାରୀକର୍ମୀ, ପୁରୁଷକର୍ମୀ । ସେମାନେ ପିଲାଙ୍କୁ ନିରସ୍ତ କରୁଛନ୍ତି, "କଲେଜ ଛାଡ଼, କଲେଜରେ ପଢ଼ ନାହିଁ, ଫେରି ଯା, ଦେଶ କାମରେ ଲାଗ ।" କୁଆଡ଼େ ନାରୀକର୍ମୀମାନେ ବାଟରେ ଶୋଇ ପଡୁଛନ୍ତି, କହୁଛନ୍ତି "କଥା ନ ମାନି ଯିବ ଯଦି ତେବେ ତୁମ ମା' ଭଉଣୀମାନଙ୍କ ଦେହକୁ ଗୋଡ଼ରେ ମାଡ଼ି ଚକଟି ଚାଲିଯାଅ ।"

ମୋ ରକ୍ତରେ ନିଆଁ ଜଳିଲାଣି, ଉତ୍ତେଜନାରେ ଥରିଲିଣି । ଭିତରୁ କିଏ ଓଟାରୁଛି ସବୁ ଛାଡ଼ିଦେଇ ସେହି ଆନ୍ଦୋଳନରେ ଝାସଦେବାକୁ । କିନ୍ତୁ ସଙ୍ଗେ ସଙ୍ଗେ ଦିଶିଯାଉଛି ମୋ ପରିବାରର ସମସ୍ତଙ୍କ ମୁହଁ । ମାସକୁ ଛ' ପଇସା ସୁଧରେ ଟଙ୍କା କାହ୍ନୁଭାଇ ସଂଗ୍ରହ କରିଛନ୍ତି କରଜ କରି ମୋ ନାଁ ଲେଖା ହେବ ବୋଲି, ତାଙ୍କ ଦରମା ପଞ୍ଚାନବେ, ସେତିକିରେ ସବୁ । ଧୂଳଭାଇ ଓଭରସିଅରଟିଏ, ପୁଣି ସେଠି ସମସ୍ତେ ଅଛନ୍ତି । ପାଟ୍ନାରେ ଭାଇ ଓ ତାଙ୍କ ପରିବାର । ଗାଁ ଜମିରୁ କିଛି ମିଳେ ନାହିଁ । ଆମେ ସତେ ଯେମିତି ନିତି ମଜୁରିଆ । ସେମାନେ ଆଶା ରଖିଛନ୍ତି ମୁଁ ବି ପାଠ ପଢ଼ିବି, ମୋର ଉଜ୍ଜ୍ୱଳ ହେବ ଭବିଷ୍ୟତ, ମୁଁ ବି କାମରେ ଲାଗିବି । ତା' ପଛଆଡ଼େ ମୋ ପିଲାଦିନର ଦାରିଦ୍ର୍ୟ ଅନୁଭୂତିର ସ୍ମୃତି କେମିତି ମୁଁ ମୋ ପରିବାର ପ୍ରତି ବିଶ୍ୱାସଘାତକତା କରିବି ? ତା'ପରେ ଯିବି କୁଆଡ଼େ ?

ଭାବୁଛି, ଏପାଖ ସେପାଖ ତଉଲୁଛି, ପାଖରେ ଆଉ କେଉଁ ପିଲା ଜଣେ କାହାକୁ କହିଲା "ପଛ ଆଡ଼େ ବାଟ ଅଛିମ, ଛତ୍ରବଜାର ପୋଲ ପଟେ ପାହାଚ ବାଟେ ପାଚିରି ଉପରେ ଚଢ଼ି ଚାଲିଯିବା । ବୁଲିପଡ଼ିଲି, ଦେଖିଲି ସେମାନେ ଲେଉଟି ଚାଲିଲେ । କଲେଜ ଛକରୁ ଛତ୍ରବଜାର ପୋଲ ଆଡ଼କୁ ପଡ଼ିଥିବା ରାସ୍ତାଏ ରାସ୍ତାଏ । ମୁଁ ବି ତାଙ୍କ ପିଛା ଧରିଲି, ଆଗରେ ଆହୁରି ପିଲା ଚାଲିଛନ୍ତି ।

ସେପଟେ ଗହଳି ନାହିଁ, ପିକେଟିଂ ନାହିଁ, ପାଚିରି ଉପରେ ଚଢ଼ି କଲେଜ ପଡ଼ିଆରେ ପଶିବାକୁ ସ୍ଥାନସ୍ଥାନ ପାହାଚ଼ଗୁଡ଼ିଏ । ଆରପାଖେ ବଡ଼ ପଡ଼ିଆ, ପଡ଼ିଆ ମଝିରେ ଚଲା ବାଟ । ଅନେକ ପିଲା ସେହିବାଟ ଧରିଥାନ୍ତି । କଲେକରେ ପହଞ୍ଚିଲି, ନାଁ ଲେଖାହେଲା ।

ପିକେଟିଂ ଚାଲିଲା କିଛି ଦିନ, ଶହେକଣ କଲେଜ ଛାତ୍ର ପଢ଼ାପଢ଼ି ଛାଡ଼ି ସେଥିରେ ମିଶିଥାନ୍ତି ବୋଲି ପିଲାଏ କୁହାକୋହି ହେଉଥାନ୍ତି କଲେକରେ । ଲେକ୍‌ଚର୍ ବି ଆରମ୍ଭ ହୋଇଗଲା ।

ଚାଲି ଚାଲି ଯାଏ ଆସେଁ, ଖାଲି ପାଦ । ପାଦ ତଳଯାକ କାଲଚ଼ଟୁ ପରି କଣା କଣା ହୋଇ ଯାଇଥାଏ, କ'ଣ ଗୋଟାଏ ଏଗ୍‌କିମା (ବିଇଁଚ଼ି) ମୋ ପାଦକୁ ଧରି ପକାଇଲା, ଔଷଧ ଲଗାଇ ଲଗାଇ କେତେ ଦିନରେ ଛାଡ଼ିଲା । ଧରିଲା ସର୍ଦ୍ଦି, କାଶ, ମଝିରେ ମଝିରେ ଜ୍ୱର, ଚାହୁଁଚାହୁଁ ସ୍ୱାସ୍ଥ୍ୟ ନଷ୍ଟ ହେଲା । ବହିପତ୍ର କିଣା ହୋଇନାହିଁ, ଲେକ୍‌ଚର୍ ଶୁଣି ଯାହା ବୁଝେ ଅବା ଖାତାରେ ଟିପେ କଲେକରେ କେତେବେଳେ କାହାଠୁଁ ମାଗି ବହି ଦେଖେଁ । ପଛେ କାହ୍ନୁଭାଇ କାହାଠୁଁ ମାଗି କ'ଣ କ'ଣ ଅଳ୍ପ କେତୋଟି ବହି ଆଣିପାରିଲେ, ଦି'ମାସ ଖଣ୍ଡେ ପରେ କିଣାହେଲା । ବହି ଅଭାବ ବି ମନଦୁଃଖର କାରଣ ହୋଇଥାଏ । ମୁଁ ଯେପରି ଥାଏଁ ଯେପରି ଅବସ୍ଥାରେ ପଢୁଥାଏଁ । ମୋ ସୁନେଲି କଳ୍ପନାରେ ଭବିଷତ୍ୟର କଲେଜ ପଢ଼ାଦିନ ତା' ଆଦୌ ନୁହେଁ । ମନ ଭଲ ରହୁ ନଥାଏ, ବାରମ୍ବାର ଧୂଳଭାଇଙ୍କି ଚିଠି ଲେଖୁଥାଏଁ । ଏସବୁ କଥାର ସୂଚ଼ନା କି ସାରାଂଶ ପାଟନାରୁ ଆସି କଟକରେ କିଣିଥିବା ସାନ ଟିପାଖାତା ବା ଡାଇରିରେ ଲେଖିଥିଲି ବୋଲି ମନେ ପଡୁଛି । ତା'ପରେ ଆଉ ଟିପାଖାତା ବି ନାହିଁ ଏଣିକି ସ୍ମୃତିରୁ ଯାହା ମନେ ପଡ଼ିବ ।

ସାଇକଲ ମୁଁ ଶିଖି ନ ଥାଏ, ସାଇକଲ ବି ମୋର ନ ଥାଏ । ଗୋପାଳପୁରରେ ଧୂଳଭାଇ ଥିଲାବେଳେ ତାଙ୍କ ସାଇକଲ ମାଗିନେଇ ଅଭ୍ୟାସ କରିବା କଥା ମନେ ପଡୁଛି, କଲେକ ଆସିବା ଆଗରୁ ଯେଉଁ ଦି'ମାସ ଥିଲି ସେତେବେଳେ କି ସେହି ବର୍ଷ କେବେ କି ବି.ଏ. ପଢ଼ିଲାବେଳେ କେବେ ଖରାଛୁଟିରେ ତା' ମନେ ନାହିଁ । ସାଇକଲ ଶିଖିବାର ବିଚ଼ିତ୍ର ଅଭିଜ୍ଞତା ମନେ ପଡ଼ିଯାଏ । ପାଟନାରେ ଦେଖିଥିଲି ବଡ଼ଭାଇ ସାଇକଲେର ପିନ୍ ଉପରେ ପାଦ ଦେଇ ହ୍ୟାଣ୍ଡ୍‌ଲକୁ ଧରି ସାଇକଲକୁ ହାତରେ ଆଗକୁ ଗଡ଼ାଇ ଡାହାଣ ଗୋଡ଼ ଟେକି ସିଟ୍‌ରେ ବସିପଡ଼ନ୍ତି, ଆରମ୍ଭ କଲି ସେହି ଉପାୟରେ । ଆଗ ଗୋଟିଏ ପଡ଼ିଆକୁ ସାଇକଲ ନେଲି, ତା'ପରେ "ଧାନ କୁଟ୍" "ଧାନ କୁଟ୍" ଭଙ୍ଗୀରେ ଆରୋହଣ ଚେଷ୍ଟା, ଖଣ୍ଡିଉଡ଼ା, ପତନ, କେତେବେଳେ ସାଇକଲ ଅମଣିଆ ହୋଇ ମାଡ଼ି ଯାଉଛି ଗୋଡ଼ୁ ଗୋଠ ଭିତରକୁ । ଦି' ତିନିଦିନ ଅଭ୍ୟାସ ପରେ ବସିହେଲା । ତା'ପରେ ଖାଲି ସଡ଼କରେ ଦେ ଦଉଡ଼, ଟଳିଟଳି ସାପେଇ ସାପେଇ ସେ ବି ହେଲା ଏକ ପ୍ରକାର । କିନ୍ତୁ ଆଉ ଥରେ, ଯେତେବେଳେ ଅସମାନ ନାଳବନ୍ଧ ଉପରେ ବାଲିକୁଦା ପଟୁ ବାଁ ପାଖ

ବନ୍ଧ ଉପରେ ଆମେ ଆସୁଥାଉଁ, ଆଗରେ ଧୂଳଭାଇ, କାହ୍ନୁଭାଇ, ଆଉ ଦି'ଜଣ କିଏ, ମୁଁ ପଛରେ, ହଠାତ୍ ସାଇକଲଟା ଡାହାଣକୁ ଗଡ଼ିଲା, ମୁଁ କିଛି ଭାବିବା ଆଗରୁ ସାଇକଲ ଓ ମୁଁ ପଡ଼ିଲୁ ନାଳ ଭିତରେ, ସାଇକଲରୁ ଛିଟିକି ମୁଁ ଆହୁରି ବେଶି ପାଣିରେ ପଡ଼ିଲି, ବୁଡ଼ି ଉଠି କୂଳକୁ ଚାଲି ଆସିଲି, ଖୁବ୍ କୌତୁକ ଲାଗିଲା । କଟକ ସହରରେ ସାଇକଲ ଚଢ଼ିଲି ଆଉ ତିନିବରଷ ପରେ ବି.ଏ. ପଢୁଥାଏ, ଏମ୍.ଏ. ପଢ଼ିଲାବେଳେ ନିଜେ ଖଣ୍ଡେ ସେକେଣ୍ଡ ହ୍ୟାଣ୍ଡ ସାଇକଲ୍ କିଣିଲି । ସେସବୁ ପଛ କଥା ।

ସେତେବେଳେ ସାଇକଲରିକ୍ସା ସହରକୁ ଆସି ନଥାଏ, ଆଉ ଦୁଇ ବର୍ଷ ପରେ ହୋଇପାରେ,- ହାତଟଣା ରିକ୍ସା ଆସିଲା, ଅଳ୍ପ, ଭଡ଼ାବେଶି । ଘୋଡ଼ାଗାଡ଼ି ଚାଲୁଥାଏ, ବହୁତ ଭଡ଼ା, ମହମ୍ମଦିଆ ବଜାରରୁ କଲେଜ ଛକ ଗଲେ ସେତେବେଳେ ଟଙ୍କା ମୂଲ୍ୟବାନ ଥିଲାବେଳେ ସୁଦ୍ଧା ପାଞ୍ଚସୁକା କି ଦେଢ଼ଟଙ୍କା ଲାଗନ୍ତା, ଆମ ପକ୍ଷରେ ସେତେ ଖର୍ଚ୍ଚ କରିବା ଅସମ୍ଭବ । ପାଦରେ ଚାଲି ଚାଲି ଯିବାକୁ ପ୍ରାୟ ଚାଳିଶି ମିନିଟ୍ ଲାଗେ । ଡଗ ଡଗ ଚାଲି । ଚିହ୍ନାହେଲାପରେ କେତେବେଳେ କେଉଁ ସାଙ୍ଗପିଲା ତା' ସାଇକଲ ପଛଆଡ଼େ ଠିଆ ହେବାକୁ ଦିଏ ବାଟ କଟିଯାଏ । କ୍ୱଚିତ୍ ଏ ସୌଭାଗ୍ୟ ମିଳେ । 'ନାହିଁ' 'ନାହିଁ'ରେ ସବୁ ସୁମାରି, ତଥାପି କଲେଜ ଜୀବନ, ମନରେ ଆଶାର ଭଣ୍ଡାର, ନିଶ୍ଚିତ ବିଶ୍ୱାସ ଥାଏ, ଆଜି ନାହିଁ, କାଲି ହେବ ।

ଊଣେଇଶ ଶହ ତିରିଶିର କଟକ, ଊଣେଇଶ ଶହ ସତୁରିର ନୁହେଁ, ଅଧା ସହର, ଅଧା ମଫସଲ । ପିଚୁରାସ୍ତା ନୁହେଁ, ନାଲିସଡ଼କ, ଆବ୍ଡା ଖାବ୍ଡା, ଅନେକ ରାସ୍ତା ମାଟିର । ଜନସଂଖ୍ୟା ବୋଧହୁଏ ପଚାଶ ହଜାରରୁ କିଛି ବେଶି । କୋଠା ଅଳ୍ପ, ସେଗୁଡ଼ିକ ପୁରୁଣା, ବେଶି ଭାଗ କୋଠା ଅଣଓଡ଼ିଆ ବ୍ୟବସାୟୀଙ୍କର । ବେଶି ଖାଲି ଚାଳଘର, କାହାର ପକ୍କାକାନ୍ଥ, କାହାର ମାଟିର । ରାସ୍ତା - କର ବଜାର ଓ ବସ୍ତି ଛଡ଼ା ଅନ୍ୟତ୍ର ନିଛାଟିଆ, ସେଠି ଖାଲି ପଡ଼ିଆ, ଖାଲି ଜମି, ପୋଖରୀ, ଦେବଦାରୁ କି ତେନ୍ତୁଳି ଜଙ୍ଗଲ, ନାଗଅଇରି ବଣ, ବହୁତ ଦୂର ଗଲେ ଛାଡ଼ି ଛାଡ଼ିକା କେଉଁ ଘର, ଗୋଟା ଗୋଟା କି ମେଞ୍ଚା ମେଞ୍ଚା ।

ଆମର ମହମ୍ମଦିଆ ବଜାରରୁ ବାହାରିଲେ ଚୌଧୁରୀ ବଜାର ଟପି ଝୋଲା ସାହି ଶେଷଯାକେ ମଝିରେ ମଝିରେ କେଉଁଠି କେଉଁଠି ପୋଖରୀ ଛଡ଼ା ଅନ୍ୟତ୍ର ଗହଳି ବସ୍ତି ଥାଏ, ତା'ପରେ ଫାଙ୍କା ଫାଙ୍କା, ଜଙ୍ଗଲିଆ, ବଡ଼ପୋଖରୀ ଯେଉଁଠି ଦଶହରାକୁ 'କାଳୀୟ ଦଳନ' ମୂର୍ତ୍ତି ହୁଏ, ତା' ସେମୁଣ୍ଡରେ ଦୋଳମୁଣ୍ଡେଇଯାକେ ପୁଣି ବସ୍ତି, ତା'ପରେ ବାଏଁ ଡାହାଣେ ଫାଙ୍କା । ବାଁ ପଟେ, ବକ୍ରକବାଟି ବାଟେ ରାଣୀହାଟଯାକେ ଦି'ପଟେ ଖାଲୁଆ ବିଲ, ବର୍ଷାଦିନେ ଦିଶେ ସମଗ୍ର ପାଟର ଅଂଶବିଶେଷ ପରି । ମଝିରେ ଡିମା ରାସ୍ତାଟି, ବକ୍ରକବାଟିରେ ଗୋଟାଏ କୁଖ୍ୟାତ ମଦ ଦୋକାନ, ସେହି ନିଛାଟିଆ ବାଟରେ ରାଣୀହାଟ ଯାଉଯାଉ ବାଟରେ ଦୁଷ୍ଟଲୋକ କି

ମଦୁଆପଲଙ୍କ ହାବୁଡ଼େ ପଡ଼ି କ୍ଷତିଗ୍ରସ୍ତ ହେବା ଭୟ ଥାଏ, ବିଶେଷତଃ ସଞ୍ଜ ପରେ। ଡାହାଣପଟେ ଛତ୍ରବଜାରକୁ ରାସ୍ତା, ତା'ର ବି ଦି'ପଟେ ଖାଲି ଓ ଖାଲୁଆ, ବିଶେଷତଃ ବାଁ ପଟଟା, ବାଁ ପଟେ ପାଣି ଭିତରେ ଖଣ୍ଡେ ଦୂରରେ ନିଛାଟିଆ ହୋଇ ଠିଆ ହୋଇଥାଏ ଗୋଟାଏ କିମ୍ଭୁତ କିମାକାର ଘର, ସେଇଟା କୁଆଡ଼େ 'ବାରୁଦ କାରଖାନା'। ଆଗକୁ ଗଲେ ରାସ୍ତା ଡାହାଣ କରେ ଗୁଡ଼ାଏ ପରିବା ବାରି ଦିଶେ, ତା'ପରେ ଦି'ଧାଡ଼ି ହୋଇ ଗୁଡ଼ିଏ ଚାଳଘର, ସେଗୁଡ଼ିକ ପରିବା ପେଣ୍ଠ, ତା'ପରେ ଛତ୍ରବଜାର ପୋଲ, ନାଳ ଉପରେ ଅଣଓସାର ପକ୍କା ପୋଲଟିଏ, ଗୋଟିଏ ଟ୍ରକ ଯାଇ ପାରିଲା ଭଳି। ସେଠୁ ମଙ୍ଗଳାବାଗ ଆଡ଼କୁ ନାଳର ଦି'ପାଖଯାକ ଖାଲି କାଗା, ଜଙ୍ଗଲ, ପୋଲରୁ ଓହ୍ଲାଇଲେ ନିଛାଟିଆ ମାଲଗୋଦାମ ବାଟ, ସାମ୍ନାରେ ରେଭେନ୍‌ସା କଲେଜର ପାଚିରି, ଭିତରେ ମସ୍ତବଡ଼ ଘାସ ପଡ଼ିଆ।

ପୂର୍ବକାଳରେ ଘୋଡ଼ା ଦଉଡ଼ ଲାଗି ବ୍ୟବହୃତ ହେଉଥିବା 'ଚକ୍କର୍ ପଡ଼ିଆ'ର ପଶ୍ଚିମ ପଟର ସାମାନ୍ୟ ଅଞ୍ଚଳ ଦଖଲ କରି ରେଭେନ୍‌ସା କଲେଜ ଓ ତା' କୋଠାଗୁଡ଼ିକ ଠିଆ ହୋଇଥାଏ।

ସାମ୍ନାରେ ଦୋମହଲା ଧାଉଡ଼ି ଆର୍ଟସ୍ ବ୍ଲକ୍, ଏବେବି ସେମିତି ଅଛି, ତା' ଡାହାଣପଟେ ଇଷ୍ଟ୍ ହଷ୍ଟେଲ୍। ବାଁପଟେ ୱେଷ୍ଟ୍ ହଷ୍ଟେଲ୍, ପଛ ଧାଡ଼ିରେ ମଝିରେ କନିକା ଲାଇବ୍ରେରି, ତା' ଦୁଇ ପଟେ ଅରାଏ ଅରାଏ ଖୋଲା ପଡ଼ିଆ ଥାଇ ବାଁକୁ କେମିଷ୍ଟ୍ରି ବ୍ଲକ୍, ଡାହାଣକୁ ଫିଜିକ୍‌ସ୍ ବ୍ଲକ୍, ପଶ୍ଚିମ ଛାତ୍ରାବାସର ଲାଗୁ ରେ କେମିଷ୍ଟ୍ରି ଧାଡ଼ି ଟପି ବଟାନି ବିଭାଗ, ସେସବୁ ସେହିପରି ଅଛି। ପୂର୍ବ ଛାତ୍ରାବାସଠୁଁ ଅଳ୍ପଦୂରରେ ଷ୍ଟେସନ୍ ଆଡ଼କୁ ତିନୋଟିଯାକେ ବଡ଼ ବଡ଼ କ୍ୱାଟର୍ସ୍ ଥାଏ, ସେଥିରେ କେତେଜଣ ବଡ଼ ବଡ଼ ଅଧ୍ୟାପକ ଥାଆନ୍ତି, ପଡ଼ିଆ ଭିତରେ ଛତ୍ରବଜାର ଆଡ଼କୁ ଥିବା ପାଚିରିଠୁଁ ଖଣ୍ଡେ ଦୂରରେ ପ୍ରିନ୍‌ସିପାଲ୍‌ଙ୍କ ବଙ୍ଗଳା, ଚାରିପଟ ତାଙ୍କୁ ସମ୍ମାନ ଦେଖାଇ ଖାଲି ପଡ଼ିଥାଏ, ସେଠୁ ପଶ୍ଚିମ ଛାତ୍ରାବାସ ଆଡ଼କୁ ଖଣ୍ଡେ ଛାଡ଼ି ଆଉ କେତୋଟି କ୍ୱାର୍ଟର, ବାକି ସବୁ ଅଧ୍ୟାପକ ସହରରେ ଯେ ଯେଉଁଠି ରହନ୍ତି।

ତଥାପି ସେତେବେଳର ବିରାଟ କୋଠା ବିରାଟ ଅନୁଷ୍ଠାନ ରେଭେନ୍‌ସା କଲେଜ। କଟକ ସହରରେ ସଡ଼କରେ ଥାଏ ମ୍ୟୁନିସିପାଲିଟିର କିରୋସିନି ଲଣ୍ଠଣ, କେଉଁଠି ତା' ବି ନଥାଏ, ସେହି ମିଟିମିଟିକା ଆଲୁଅ ଆଡ଼କୁ ଅବଜ୍ଞାରେ ଅନାଇଁ ଦାଉ ଦାଉ କଳେ ରେଭେନ୍‌ସା କଲେଜ ହଷ୍ଟେଲ୍ ଯୋଡ଼କର ବିଜୁଳି ଆଲୁଅ, ଦୂରରୁ ଅନ୍ଧାର ଭିତରେ ଭାରି ସୁନ୍ଦର ଦିଶେ। ସହରରେ ଘରେ ଘରେ କୂଅ, ଲୋକ କୂଅପାଣି ପିଅନ୍ତି। କିନ୍ତୁ ରେଭେନ୍‌ସା କଲେଜର ନିଜର ବିଜୁଳି ପରି ନିଜର ପାଣିକଳ ଥାଏ। ସହରରେ ବାଲ୍‌ଟି ବା ହାଣ୍ଡି ପାଇଖାନା, କେତେଠି ଛିଣ୍ଡା ଅଖାର ପର୍ଦ୍ଦା ସେପଟେ ମାଟି ଉପରେ ଯୋଡ଼ି ଯୋଡ଼ି ହୋଇ ଇଟା ବା ପଥର। କଲେଜ ହଷ୍ଟେଲ୍‌ମାନଙ୍କରେ

ସେପ୍‌ଟିକ୍ ଲ୍ୟାଟ୍ରିନ୍, ଫ୍ଲସିଂ ସିଷ୍ଟମ୍। ଏସବୁ ଇନ୍ଦ୍ରଜାଲ କାରକାର ଆଶ୍ଚର୍ଯ୍ୟ ଲାଗୁଥାଏ, ପୁଣି ତା' ସହିତ ଏତେ ଗହଳି।

ଘୋଡ଼ାଗାଡ଼ି ଚଢ଼ି ଅଧ୍ୟାପକମାନେ ଆସନ୍ତି, ଛାତ୍ରୀମାନେ ଆସନ୍ତି, ଖୁବ୍ ଅଳ୍ପ ସେମାନେ, ଧନୀ ପିଲାଏ ବି ଘୋଡ଼ାଗାଡ଼ିରେ ଆସନ୍ତି। ଅଳ୍ପ କେତେଖଣ୍ଡ ମଟରଗାଡ଼ି ବି ଆସେ। ଅନ୍ୟମାନେ ସାଇକଲରେ ବା ଚାଲିଚାଲି।

ସମୁଦାୟ ଆଠଶହ ପିଲା ଥିବେ, ଓଡ଼ିଶାର ସେ ଏକମାତ୍ର କଲେଜ, ମତେ ଲାଗୁଥାଏ ଖୁବ୍ ବଡ଼, ଏତେ ପିଲା ! ଅଥଚ ସମସ୍ତେ ମୋର ଅଚିହ୍ନା ଏକା ଦି' ତିନି ଜଣକୁ ଛାଡ଼ି।

ସେମାନଙ୍କର ନିଜ ନିଜର ଅନେକ ଚିହ୍ନା ପିଲା, ନିଜ ସହରର ବା ଅଞ୍ଚଳର ପିଲା। ଖାଲି ବ୍ରିଟିଶ୍ ଓଡ଼ିଶାର ନୁହନ୍ତି, ବିଭିନ୍ନ ଗଡ଼ଜାତର, ସିଂଭୂମ୍ ଖର୍ସୁଆଁ ଷଢ଼େଇକଳାର, ଗଞ୍ଜାମର। ତା' ଛଡ଼ା ଆଇନ ପଢ଼ିବାକୁ ଆନ୍ଧ୍ରଦେଶରୁବି ପିଲାଏ ଆସିଥାନ୍ତି, ଆଇନ୍ ଛାତ୍ରମାନେ ବୟସରେ ବଡ଼ !

ସବୁ ଅଚିହ୍ନା, ସବୁ ନୂଆ ଲାଗୁଥାଏ। ସତେ ଯେମିତି ମୁଁ ହଜି ଯାଉଛି, ଏଠି ମୋର ସ୍ୱତନ୍ତ୍ର ସତ୍ତା ନାହିଁ। ମନେ ପଡୁଥାଏ ମୋର ପୁରୁଣା ହାଇସ୍କୁଲ୍, ପହଞ୍ଚିଗଲେ କେତେ ମୁହଁରେ ହସର ଆଲୁଅ ଜଳି ଉଠେ, ଆପେ ଆପେ ଆତ୍ମୀୟତା, ଆନନ୍ଦ। ଏଠି ମନ ତରଳୁଛି, ହସ ରୋକି ହୋଇଯାଉଛି, ମନେ ମନେ ଚାଲିଛି ଅନୁସନ୍ଧାନ, କ'ଣ ? କିଏ ? କେମିତି ? ପ୍ରକାର ପ୍ରକାର ଚେହେରା ଓ ପୋଷାକ, ଅନେକେ ମୋଠୁଁ ଡେଙ୍ଗା, ଗଢ଼ଣରେ ବଳିଲା ବଳିଲା। କାହାର ସୁଟ୍, ହାତରେ ଘଣ୍ଟା, କାହାର ହାଫ୍ ପ୍ୟାଣ୍ଟ୍ ଅଧାକାମିଜ୍, କାହାର ଲୁଗା କାମିଜ୍। ଘଣ୍ଟା ବାଜେ, ପିଣ୍ଡାରେ ଏପାଖରୁ ସେ ପାଖକୁ ଗହଳି ସୁଅ ଛୁଟେ। ପଢ଼ା ଗୋଟିଏ ବଖରାରେ ନୁହେଁ, ଦୂର ଦୂର ହୋଇ ବିଭିନ୍ନ ବଖରାରେ ବିଭିନ୍ନ ସମୟରେ, ତରତର ଚାଲି, ଦୁମ୍‌ଦୁମ୍ ଜୋତା, ଠେଲାପେଲା। ପଢ଼ାର ବାଗ ବି କି ବିଚିତ୍ର ! ବହି ଧରି ପାଠ ପଢ଼ାଇବା ନୁହେଁ, ଗୋଟାଏ ବକ୍ତୃତା, ବେଳେବେଳେ ବକ୍ତାଙ୍କ ମୁହଁକୁ ବିସ୍ମୟରେ ଚାହିଁ କ'ଣ ଟିକିଏ ଭାବୁ ଭାବୁ ସେ କେତେ କଅଣ କହିଗଲେଣି, କଳାପଟାରେ ଲେଖିଲେଣି, କହି ସାରିଲାପରେ ପୁଣି ଘଣ୍ଟା ବାଜି ସେ କ୍ଲାସ ଭାଙ୍ଗିଲା ପରେ କିଏ କହୁଛି "କ'ଣ କହିଗଲେରେ ଭାଇ ? କାହିଁ ମୁଁ ତ କିଛି ବୁଝିପାରିଲି ନାହିଁ !"ଆଉ କିଏ ବହି ଖୋଲି ଦେଖାଉଛି "ଓଃ ! ଏକାଥରକେ କୋଡ଼ିଏ ପୃଷ୍ଠା ଆଜି ଗଡ଼େଇଦେଲେ !"

ଘରେ କାହ୍ନୁଭାଇ କହନ୍ତି "ଅତି ଶୀଘ୍ର ତତେ ଆରେଇ ଯିବ ଯେ ! ଆଦୌ ଅଡୁଆ ଲାଗିବ ନାହିଁ।"

ବହି ନାହିଁ, ଅଡୁଆ ଏତିକି। ଭାଇ କହନ୍ତି "ଧୈର୍ଯ୍ୟ ଧର୍, ବହି ଆସିବ ଯେ !" ଆସିଲା ବି କିଛି, ଟିକିଏ ଡେରି ହେଉ ପଛେ।

ଏଇଠି ପଢୁଥିଲେ କାହ୍ନୁଭାଇ । ତାଙ୍କ ପୂର୍ବରୁ ଆଇ.ଏ. ପଢ଼ିଥିଲେ ମୋ ସବା ବଡ଼ ଭାଇ, ଏଇ ରେଭେନ୍‌ସା କଲେଜରେ, ସେତେବେଳେ କଲେଜ ଥିଲା ଅନ୍ୟଠି । ପରିବାର ଭିତରେ ଏଇ କଲେଜରେ ପଢ଼ିବା ମଣିଷ ମୁଁ ତୃତୀୟ । ଏଇ ସେ ପ୍ରସିଦ୍ଧ କଲେଜ । କାହ୍ନୁଭାଇଙ୍କଠୁଁ ଶୁଣିଥାଏଁ କେତେ ବିଖ୍ୟାତ ମଣିଷ ଏଇ କଲେଜର ଛାତ୍ର ଥିଲେ ଅଥବା ଅଧ୍ୟାପକ ଥିଲେ । ମନରେ ଖୁବ୍ ଆନନ୍ଦ ଓ ଗର୍ବ ଆସେ, ଆଶା ଓ ବିଶ୍ୱାସ ଆସେ, ମୁଁ ବି କିଛି ହେବି ।

ଉପରେ ପଡ଼ି ଚିହ୍ନା ହେବାକୁ ଆରମ୍ଭ କଲି । ଦିନେ ଆର୍ଟସ୍ ବ୍ଲକ୍ ଆଡୁ ପଶ୍ଚିମ ଛାତ୍ରାବାସ ବାରେଣ୍ଡା ବାଟେ ସାଇନ୍‌ସ ବ୍ଲକ୍ ଆଡ଼େ ଯାଉଛି, ଦେଖିଲି ଜଣଙ୍କୁ । ଗୋଲ ମୁଣ୍ଡ, ବାଙ୍ଗର, ହାଫ୍ ପ୍ୟାଣ୍ଟ୍ ପିନ୍ଧିଥାନ୍ତି, ବୋଧହୁଏ ମୁଁ ତାଙ୍କୁ ଅନାଇଁ ଖୁସିରେ ହସିବାରୁ ସେ ବି ହସିଥିଲେ । ଲାଗିଲା, ନିଶ୍ଚୟ କୌଣସି ଉପର ଶ୍ରେଣୀର ଛାତ୍ର, ଖୁବ୍ ଅମାୟିକତା ! ଚାଲୁଚାଲୁ ଆଳାପ ଆରମ୍ଭ କଲି । ପଚାରିଲି "ଆପଣ କ'ଣ ଏଇ କଲେଜରେ ପଢ଼ନ୍ତି ?"

ସେ ହସିଦେଇ କହିଲେ, 'ହଁ' ।

"ଉପର କ୍ଲାସ୍‌ରେ ନିଶ୍ଚୟ ?"

ପୁଣି ହସି କହିଲେ, 'ହଁ' ।

"ଆପଣଙ୍କର ବି କ'ଣ ସାଇନ୍‌ସ ?"

ସେ କହିଲେ "ହଁ । ଆଉ ତୁମର ?"

"ମୋର ବି ସାଇନ୍‌ସ ।"

"ବାଃ ! କେଡ଼େ ଭଲ ହେଲା ।"

ତା'ର ଘଣ୍ଟାକ ପରେ ବୋଧହୁଏ ଫିଜିକ୍ସ କ୍ଲାସ୍ । ସାମ୍ନା ବେଞ୍ଚ୍‌ରେ ମୁଁ ବସିଥାଏ । ଅଧ୍ୟାପକ ଆସିଲେ । ଥପ୍ କରି ପାଟିତୁଣ୍ଡ ବନ୍ଦ ହୋଇଗଲା । ଆମେ ଠିଆ ହୋଇ ପଡ଼ିଲୁ ।

ସାମ୍ନାରେ ଏ ଅଧ୍ୟାପକ କିଏ ! ଏ ତ ସେହି ! ତାହେଲେ ଏଇ କ'ଣ ବିଖ୍ୟାତ ଅଧ୍ୟାପକ ନାରଣ ମିଶ୍ର, ମୁଁ ତ ତାଙ୍କ ବିଷୟରେ ସହପାଠୀମାନଙ୍କଠୁ କେତେ କଥା ଶୁଣିଥାଏ ! ଶୁଣିଥାଏଁ ସେ ଫିଜିକ୍ସ ବିଦ୍ୟାରେ ଜଣେ ଯୋଗଜନ୍ମା ଜିନିୟସ୍ । ସେ ସିଧା ସଳଖ ଜର୍ମାନ୍ ବହି ପଢ଼ନ୍ତି, ଜର୍ମାନ୍ ବହିବାଟେ ବିଜ୍ଞାନ ସଙ୍ଗେ ତାଙ୍କ କାରବାର । ସେ ଭାରି ଭଲ ପଢ଼ାନ୍ତି, ଶୁଣିଲେ ସବୁ ସନ୍ଦେହ ଦୂର ହୋଇଯାଏ । ସେ ବହୁତ ଖେଳପ୍ରିୟ, ଖେଳୁଆଡ଼ ଛାତ୍ରମାନଙ୍କୁ ଭାରି ଖୁସି ପାଆନ୍ତି । ସେ ବହୁତ ଭାବିପାରନ୍ତି, ସବୁବେଳେ ଗଭୀର ଚିନ୍ତାରେ ମଗ୍ନ । କେତେ କଥା ଶୁଣିଥାଏ ।

ଆଉ ମୁଁ ତାଙ୍କୁ ପଚାରିଲି ଆପଣ କେଉଁ କ୍ଲାସ୍‌ରେ ପଢ଼ନ୍ତି ! ସେ ତ ନିଶ୍ଚୟ ମୋଠୁଁ ପନ୍ଦର କୋଡ଼ିଏ ବର୍ଷ ବଡ଼ ହୋଇଥିବେ ! କ'ଣ ଭାବିଥିବେ ମତେ ସେ !

ଲାଜରେ ମୁହଁ ତଳକୁ କରି ରହିଲି ।

ତହିଁ ଆର ଦିନ ହେବ । ମୁଁ ଲାଇବ୍ରେରିକୁ ଯାଇଥାଏ । ସାମ୍ନାରେ ବାଡ଼ା ସେପାଖେ ଯେଉଁ ଉଚ୍ଚ ମଣ୍ଡପ ତା' ଉପରେ ଲାଇବ୍ରେରିଆନ୍‌ଙ୍କ ପାଖରେ ଅଧ୍ୟାପକ ନାରଣ ମିଶ୍ର ବସିଛନ୍ତି । ହାବୁଡ଼େ ପଡ଼ିଗଲି । ମୁଣ୍ଡକୁ ତଳକୁ ଝୁଙ୍କି ଦେଇ ଦଣ୍ଡବତ କରି ଠିଆ ହେଲି । ସେ ହସୁଥିଲେ । ହସି ହସି ପଚାରିଲେ "ମତେ ଚିହ୍ନିଲ ?"

ଲାଜରେ ମଲି, ତଳକୁ ମୁହଁ କରି କହିଲି "ସା-ଆପଣ-ସେ ହସି ଦେଇ କହିଲେ କିଛି ନାହିଁ । ତୁମେ ଠିକ୍ ପଚାରିଲ, ମୁଁ ବି ଠିକ୍ କହିଲି । ତୁମରି ଭଳିଆ ମୁଁ ବି ଦିନେ ଛାତ୍ର ହୋଇଥିଲି, ମ୍ୟାଟ୍ରିକ୍ ପାସ୍ କରି ଫାଷ୍ଟ୍ ଇଅର୍‌ରେ ପଢୁଥିଲି । ଅଇଛା ତୁମମାନଙ୍କୁ ପଢ଼ାଇଲେ କ'ଣ ହେଲା, ତୁମମାନଙ୍କ ପରି ମୁଁ ବି ଜଣେ ବିଜ୍ଞାନର ଛାତ୍ର, କେବଳ ଛାତ୍ର ହିଁ ।"

ଲାଇବ୍ରେରିଏନ୍ ଦାସବାବୁ ପଚାରିଲେ "କ'ଣ ଏ କଥା !"

ସାର୍ ବୁଝେଇଲେ । ଦୁହେଁ ହସିଲେ । ସାର୍ ମତେ ପ୍ରଶଂସା କଲେ, କହିଲେ "ଭାରି ବୁଦ୍ଧିମାନ୍ ଭାରି ସାଧାସିଧା ପିଲାଟିଏ, ମ୍ୟାଟ୍ରିକ୍‌ରେ ଯେମିତି କରିଛି ଆଶା କରୁଛି ଏଥିରେ ବି ସେମିତି କରିବ । ତୁମେ ଖୁବ୍ ମନ ଦେଇ ପଢ଼, ଯାହା ନ ବୁଝିପାରିବ ମତେ ପଚାରିବ ।"

ଆଉ ପଚାରିବି ! ସାହସ ହୁଏ ନାହିଁ ।

•

---

ସ୍ରୋତସ୍ୱତୀ, ବିଦ୍ୟାପୁରୀ, ୧୯୯୨

# ରେଭେନ୍‌ସା କଲେଜରେ ଅଧ୍ୟୟନ

## କୃଷ୍ଣଚନ୍ଦ୍ର ପାଣିଗ୍ରାହୀ

୧୯୩୧ ମସିହାରୁ କଟକ ରେଭେନ୍‌ସା କଲେଜରେ ଅଧ୍ୟୟନ କରିବାବେଳେ ମୁଁ ଦେଖିଲି ଯେ ଛାତ୍ରମାନଙ୍କ ମଧ୍ୟରେ ଜାତିଧର୍ମର ବିଭେଦ କିଛି ନାହିଁ। ସମସ୍ତ ଜାତିର ପିଲା ଏକତ୍ର ବାସ କରି ଏକତ୍ର ଭୋଜନ କରୁଥିଲେ। ତାଛଡ଼ା ହିନ୍ଦୁ ଛାତ୍ରମାନେ ଖ୍ରୀଷ୍ଟିୟାନ ଓ ମୁସଲମାନମାନଙ୍କଠାରୁ ମଧ୍ୟ ନିର୍ବିକାରରେ ସମସ୍ତ ପ୍ରକାର ଖାଦ୍ୟ ଖାଉଥିଲେ। ମୋ ମନରେ ଜାତିଧର୍ମର ଯେଉଁ ବାଛବିଚାର ଥିଲା, ତାହା ଏହିଠାରେ ସମାଧି ଲାଭ କରିଥିଲା। ରେଭେନ୍‌ସା କଲେଜର ସୁବୃହତ୍ ଉତ୍ତୁଙ୍ଗ ଅଟ୍ଟାଳିକା ଏବଂ ଅଧ୍ୟାପକମାନଙ୍କ ଓ ସ୍ୱଚ୍ଛଳ ଛାତ୍ରମାନଙ୍କ ଅଭିରୁଚିପୂର୍ଣ୍ଣ ବେଶଭୂଷା ଏଠାରେ ଆଭିଜାତ୍ୟପୂର୍ଣ୍ଣ ବାତାବରଣ ସୃଷ୍ଟି କରିଥିଲା। ମାତ୍ର ମୁଁ ସ୍ୱଚ୍ଛଳ ଶ୍ରେଣୀର ଛାତ୍ର ନଥିଲି। ଯେଉଁ କୋଡ଼ିଏ ଟଙ୍କା ବୃତ୍ତି ପାଉଥିଲି, ତାହାକୁ ହିଁ ସମ୍ବଳ କରି ମୋତେ ଚଳିବାକୁ ପଡ଼ୁଥିଲା। ଏଣୁ ବାରିପଦାରୁ ଆସି କଟକ ପହଞ୍ଚିବା ପରେ ଛାତ୍ରଜୀବନର ଯେଉଁ ମହାପରିବର୍ତ୍ତନ ଘଟିଲା, ସେଥିରେ ମୁଁ ବେଶି ପ୍ରଭାବିତ ହୋଇ ନଥିଲି। ଅର୍ଥର ସ୍ୱଳ୍ପତା ହେତୁ ହଷ୍ଟେଲରେ ନ ରହି କୌଣସି ମେସ୍‌ରେ ରହିବା ପାଇଁ ମୁଁ ସ୍ଥିର କରିଥିଲି; ମାତ୍ର ପୂର୍ବଛାତ୍ରାବାସର ତତ୍କାଳୀନ ସୁପରିଣ୍ଟେଣ୍ଡେଣ୍ଟ ଅଧ୍ୟାପକ ଗୁରୁଚରଣ ମହାନ୍ତି ଓ ଆସିଷ୍ଟାଣ୍ଟ ସୁପରିଣ୍ଟେଣ୍ଡେଣ୍ଟ ଅଧ୍ୟାପକ ହରିବନ୍ଧୁ ମହାନ୍ତି ମୋତେ ନାନାଭାବରେ ପ୍ରବର୍ତ୍ତାଇ ପୂର୍ବଛାତ୍ରାବାସରେ ରଖାଇଲେ। ସେତେବେଳେ ଛାତ୍ର ଅଭାବରୁ ଛାତ୍ରାବାସର ଅନେକ ସ୍ଥାନ ଖାଲି ପଡ଼ୁଥିଲା। ଏଣୁ ଭଲ ଛାତ୍ରମାନଙ୍କୁ ପ୍ରବର୍ତ୍ତାଇ ଛାତ୍ରାବାସରେ ସ୍ଥାନଦେବା କର୍ମକର୍ତ୍ତାମାନଙ୍କ କର୍ତ୍ତବ୍ୟ ଥିଲା। ମୁଁ ଏହି ଅଧ୍ୟାପକ ଦ୍ୱୟଙ୍କଠାରେ ଋଣୀ ରହିଛି, କାରଣ ସେମାନଙ୍କ ପ୍ରବର୍ତ୍ତନା ଦ୍ୱାରା ହିଁ ମୁଁ ଛାତ୍ରାବାସରେ ରହି ଶୃଙ୍ଖଳିତ ଜୀବନଯାପନ କରିବାର ସୁବିଧା ପାଇଥିଲି।

ଛାତ୍ରଜୀବନର ଆରମ୍ଭରୁ ଆଜି ପର୍ଯ୍ୟନ୍ତ ମୁଁ ଓଡ଼ିଆ ସାହିତ୍ୟ ସଂସ୍କୃତ ଓ ଇତିହାସକୁ ଅନ୍ତରର ସହିତ ଆଦର କରି ଆସିଛି। ଅନ୍ୟ ବିଷୟମାନଙ୍କ ପ୍ରତି ମୋର ଅବଜ୍ଞା ବା ଅନାଦର ନାହିଁ, କିନ୍ତୁ ଏହି କେତୋଟି ବିଷୟ ମୋର ଅତ୍ୟନ୍ତ ପ୍ରିୟ। ଏଣୁ ମେଟ୍ରିକ୍ୟୁଲେସନ୍ ଠାରୁ ଏମ୍.ଏ.

ପର୍ଯ୍ୟନ୍ତ ଏହି ତିନୋଟି ବିଷୟରେ ବିଶେଷ ଜ୍ଞାନ ଲାଭ କରିବା ପାଇଁ ଏଗୁଡ଼ିକକୁ ହିଁ ବାଛିନେଇଥିଲି। ମେଟ୍ରିକ୍ୟୁଲେସନରେ ମୋର ଏଡ଼ିସନାଲ ବା ଅପ୍‌ସନାଲ ବିଷୟ ଥିଲା ସଂସ୍କୃତ, ଆଇ.ଏ.ରେ ସଂସ୍କୃତ, ଇତିହାସ ଓ ଲଜିକ୍‌କୁ ବାଛି ନେଇଥିଲି ଏବଂ ବି.ଏ.ରେ ମୋର ନିର୍ବାଚିତ ବିଷୟ ଥିଲା ସଂସ୍କୃତ ଓ ଇତିହାସ। ଏଥିପାଇଁ ମୋର ସହପାଠୀମାନେ ମୋତେ ଓ ମୋର ନିର୍ବାଚିତ ବିଷୟମାନଙ୍କୁ ତାଚ୍ଛଲ୍ୟ କରୁଥିଲେ, କିନ୍ତୁ ମୁଁ ଏ ବିଷୟଗୁଡ଼ିକ ପ୍ରତି ସର୍ବସମୟରେ ଓ ସର୍ବାନ୍ତଃକରଣରେ ନିଷ୍ଠା ପ୍ରଦର୍ଶନ କରି ନିଜେ ସୁଖୀ ଥିଲି। ସେତେବେଳେ ରେଭେନ୍‌ସାଭିଏନ୍ ଛଡ଼ା କଲେଜ ଛାତ୍ରାବାସମାନଙ୍କରୁ ଅନ୍ୟ କୌଣସି ପତ୍ରିକା ପ୍ରକାଶିତ ହେଉ ନଥିଲା; ମାତ୍ର ପୂର୍ବଛାତ୍ରାବାସରେ ପ୍ରାଚୀତାରା ସମିତି ନାମକ ଗୋଟିଏ ସାହିତ୍ୟ ସମିତି ଥିଲା ଏବଂ ଜାଗରଣ ନାମକ ଗୋଟିଏ ହାତଲେଖା ପତ୍ରିକା ବାହାରୁଥିଲା। ମୁଁ ଉଭୟ ସହିତ ସହଯୋଗ କରୁଥିଲି। ସମସ୍ତ ତରୁଣ ଯେପରି କବିତା ପ୍ରତି ଆକୃଷ୍ଟ ହୋଇ ପ୍ରଥମେ କବିତା ଲେଖିଥାନ୍ତି, ମୁଁ ମଧ୍ୟ ସେହିପରି ପ୍ରଥମେ କବିତା ଲେଖୁଥିଲି ମାତ୍ର ପରେ ପ୍ରବନ୍ଧ ଓ ଗବେଷଣା ପ୍ରତି ମନୋନିବେଶ କଲି। କଲେଜରେ ଖେଳକସରତ୍ ପ୍ରତି ମୋର ଆଦର ଥିଲା, ମାତ୍ର ମୁଁ ସେଥିରେ ପୂର୍ଣ୍ଣପ୍ରାଣରେ ଯୋଗଦେଉ ନଥିଲି।

ଛାତ୍ରାବାସରେ ଖାଦ୍ୟପେୟର ବ୍ୟବସ୍ଥା ଅତ୍ୟନ୍ତ ଉତ୍ତମ ଥିଲା। ମେସ୍ ଖର୍ଚ୍ଚ ମାସିକ ଦଶଟଙ୍କା ବା ବାରଟଙ୍କା ଦେବାପରେ ଆମ୍ଭମାନଙ୍କୁ ପ୍ରତିଦିନ ଦୁଇଓଳି ଭାତ, ଡାଲି, ତରକାରି, ସନ୍ତୁଳା, ଭଜା, ଖଟା ଓ ମାଛ ଖାଇବାକୁ ମିଳୁଥିଲା। ତା' ଛଡ଼ା ପ୍ରତି ଶନିବାରରେ ଥରେ ମାଂସ ସହିତ ଭୋଜି ଓ ପ୍ରତିମାସରେ ଥରେ ମାଂସ, ପଲାଉ ଇତ୍ୟାଦି ସହିତ ଗୋଟିଏ ବଡ଼ଧରଣର ଭୋଜି ଖାଇବାକୁ ମିଳୁଥିଲା। ଉଭୟ ଛାତ୍ରାବାସରେ ଗୋଟିଏ ଗୋଟିଏ ମିଷ୍ଟାନ୍ନ ଭଣ୍ଡାର ଥିଲା ଓ ଛାତ୍ରାବାସର ଚାକରମାନେ ସେଗୁଡ଼ିକରୁ ପୁରି, ରସଗୋଲା ଇତ୍ୟାଦି ବରାଦ ଅନୁସାରେ ଘେନିଆସି ପିଲାମାନଙ୍କ ଟେବୁଲରେ ଥୋଇ ଦେଉଥିଲେ। ଗୋଟିଏ ବଡ଼ ପୁରିର ଦାମ୍ ଏକ ପଇସା ଓ ଗୋଟିଏ ବଡ଼ ରସଗୋଲାର ଦାମ୍ ଥିଲା ତିନି ପଇସା ବା ଚାରି ପଇସା। ଟଙ୍କାରେ କଟକୀ ସେରରେ ଦଶ ବା ବାର ସେର ସରୁଚାଉଳ ମିଳୁଥିଲା। ମାଛ ଦର ଥିଲା ସେର ପ୍ରତି ଚାରିଅଣାରୁ ଆଠଅଣା ଓ ପରିବାର ଦର ଥିଲା ଦୁଇଅଣାରୁ ଆଠଅଣା। ଆମ୍ଭେମାନେ ମାତ୍ର ୧୦/୧୨ଟଙ୍କା ଦେଇ ଯେଉଁ ଖାଦ୍ୟ ଖାଉଥିଲୁଁ, ତାହା ଆଜି ରାଜକୀୟ ଖାଦ୍ୟ ବୋଲି ବିବେଚିତ ହେବ।

ରେଭେନ୍‌ସା କଲେଜରେ ମୋର ଛାତ୍ରଜୀବନ ଚାରିବର୍ଷ ମଧ୍ୟରେ ଶେଷ ହେଲା। ୧୯୩୫ ମସିହାରେ ଇତିହାସରେ ଅନର୍ସ ସହିତ ବି.ଏ. ପାସ୍ କରିବା ପରେ ଜୀବନ ସଂଗ୍ରାମର ଦ୍ୱିତୀୟ ପର୍ଯ୍ୟାୟ ଆରମ୍ଭ ହେଲା। ଏ ସମୟରେ ଓଡ଼ିଶାରେ ଉଚ୍ଚଶିକ୍ଷାସମ୍ପନ୍ନ ବ୍ୟକ୍ତିମାନଙ୍କ ସଂଖ୍ୟା

ଅଳ୍ପ ଥିଲେ ହେଁ ଏମାନେ ସହଜରେ ଚାକିରି ପାଉ ନଥିଲେ। ଚାକିରି ସଂଖ୍ୟ ଅତ୍ୟନ୍ତ ଅଳ୍ପ ଥିଲା ଏବଂ ଚାକିରି ପାଇବା ବହୁ ଭାଗ୍ୟର କଥା ଥିଲା। ଯେଉଁ ଛାତ୍ରମାନେ କୃତିତ୍ୱ ସହିତ ଏମ୍.ଏ. ବା ଏମ୍.ଏସ୍‌ସି. ପାସ୍ କରୁଥିଲେ, ସେମାନେ କଲେଜ ଲେକ୍‌ଚରର୍ ଚାକିରି କିମ୍ବା ସବ୍‌ଡେପୁଟି ବା ଡେପୁଟି ମାଜିଷ୍ଟ୍ରେଟ ଚାକିରି ପାଇବାର ଆଶା କରୁଥିଲେ; ମାତ୍ର ଏପରି ଚାକିରି ସଂଖ୍ୟା ସ୍ୱଳ୍ପ ଥିଲା। ରେଭେନ୍‌ସା କଲେଜ ଓଡ଼ିଶାର ଏକମାତ୍ର କଲେଜ ଥିଲା ଏବଂ ଏଥିରେ ଗୋଟିଏ ଲେକ୍‌ଚରର୍ ପୋଷ୍ଟ ଖାଲି ହେବା ବହୁ ଭାଗ୍ୟର କଥାଥିଲା। ବ୍ରିଟିଶ ସରକାର ଡେପୁଟି ବା ସବ୍‌ଡେପୁଟି ଚାକିରି ଦେବାବେଳେ ବହୁପ୍ରକାର କଟକଣା କରୁଥିଲେ। ଏହି ସମୟରେ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଯେଉଁ ସ୍ୱଦେଶୀ ଆନ୍ଦୋଳନ ଚାଲିଥିଲା, ସେଥିରେ ଯେଉଁମାନେ କୌଣସି ପ୍ରକାରରେ ସମ୍ପୃକ୍ତ ହେଉଥିଲେ, ସେମାନେ ସରକାରୀ ଚାକିରିରୁ ବଞ୍ଚିତ ହେଉଥିଲେ। ଗଡ଼ଜାତ ଅଞ୍ଚଳର ପିଲାମାନଙ୍କୁ ବ୍ରିଟିଶ୍ ସରକାରଙ୍କ ଚାକିରି ସହଜରେ ମିଳୁନଥିଲା। ଏହି ସବୁ କଟକଣା ମଧ୍ୟରେ ସରକାରୀ ଚାକିରି ପାଇବା ଏକ ବହୁ ଭାଗ୍ୟ ବିଷୟ ଥିବାରୁ ମୋ ସମୟରେ ପିଲାମାନଙ୍କ ଏପରି କି ବିଶ୍ୱବିଦ୍ୟାଳୟର ଶ୍ରେଷ୍ଠ କୃତୀ ଛାତ୍ରମାନଙ୍କ, ସ୍କୁଲ ଶିକ୍ଷକତା କରିବା ହିଁ ଏକମାତ୍ର ପନ୍ଥା ଥିଲା।

•

---

*ମୋ ସମୟର ଓଡ଼ିଶା,*
କିତାବ ମହଲ, କଟକ, ୧୯୭୮

# ରେଭେନ୍ସାରେ ଗୃହ-ପ୍ରବେଶ

## ସଚ୍ଚିଦାନନ୍ଦ ରାଉତରାୟ

୧୯୩୭ ମସିହା ଜୁଲାଇ ଆଡ଼କୁ କଟକ ରେଭେନ୍ସା କଲେଜରେ ତୃତୀୟ-ବାର୍ଷିକ କଳା ଶ୍ରେଣୀରେ ନାମ ଲେଖାଇଲି । ତିଥି ଲଗ୍ନ ଶୁଭ ଥିଲା କି ଅଶୁଭ ଥିଲା ଜାଣେ ନାହିଁ । ମାତ୍ର ଓଡ଼ିଶାର ଏହି ପ୍ରମୁଖ ଶିକ୍ଷାନୁଷ୍ଠାନରେ ମୋର ଯେଉଁ ଦୁଇ ବର୍ଷ ବିତିଥିଲା, ତାହା ଘୋର ଅଶାନ୍ତି, ଆନ୍ଦୋଳନ, ଧର୍ମଘଟ ଏବଂ ଜେଲ୍ ଜୋରିମାନା ଆଦି ଦଣ୍ଡବିଧାନ ଭିତରେହିଁ କଟିଥିଲା । ମୁଁ ଏଠାରୁ ବି.ଏ. ପାସ୍ କରିବା ଯାଏଁ କେବଳ ଝଡ଼ଝଞ୍ଜା ଭିତରେହିଁ କଟାଇଛି ।

ପ୍ରିନ୍ସିପାଲ ତ୍ରିପାଠୀ ସାହେବ ଅଳ୍ପଦିନ ପରେ କାର୍ଯ୍ୟରୁ ଅବସର ନିଅନ୍ତି । ତାଙ୍କ ସ୍ଥାନରେ ପ୍ରିନ୍ସିପାଲ ହୋଇ ଆସନ୍ତି ବିଶିଷ୍ଟ ଶିକ୍ଷାବିତ୍ ପ୍ରଫେସର ଡଃ ପ୍ରାଣକୃଷ୍ଣ ପରିଜା ସାହେବ । ଓଡ଼ିଶାର ପ୍ରାଣକେନ୍ଦ୍ର ଏବଂ ଶିକ୍ଷା ଓ ସଂସ୍କୃତିର ପୀଠସ୍ଥଳୀ କଟକ ନଗରୀରେ ରହିବାର ମୋତେ ସୁଯୋଗ ମିଳେ । ଏଥିପୂର୍ବରୁ ମୁଁ ଅବଶ୍ୟ ଅନେକ ଥର କଟକ ଆସିଛି ଏବଂ କିଛିଦିନ ରହି ଚାଲିଯାଇଛି- ବର୍ତ୍ତମାନ ମୁଁ କଟକରେ କୁଣିଆ ନୁହେଁ; ସେଠାର ଜଣେ ଅଧିବାସୀ । ମୁଁ ବିଦ୍ୟାର୍ଥୀ ଭାବରେହିଁ ରେଭେନ୍ସାରେ ଯୋଗ ଦେଇଥିଲି; ରହୁଥିଲି ତେଲେଙ୍ଗା ବଜାରସ୍ଥିତ ମହୁନୀ ଅପା ବା ଡାକ୍ତର ଜଗନ୍ନାଥ ଦାସଙ୍କ ଘରେ, ଅନ୍ତତଃ କିଛିକାଳ ପାଇଁ । ପରେ ଅନ୍ୟତ୍ର ରହିବାକୁ ପଡ଼େ ।

ସେତେବେଳେ ଡଃ ଜଗନ୍ନାଥ ଦାସ ବାହାରେ କେଉଁଠି ଥିଲେ; ବୋଧହୁଏ, କୋରାପୁଟ ବା ଅନ୍ୟ କେଉଁଠି ସିଭିଲ୍ ସର୍ଜନ ଭାବରେ । ରୋଜ୍ ସାଇକେଲ୍ ନେଇ କଲେଜ ଆସୁଥିଲି । କଟକରେ କିଛିଦିନ ରହିବାଦ୍ୱାରା ମୁଁ ଓଡ଼ିଆ ସଂସ୍କୃତିର ମହାସ୍ରୋତରେ ସାମିଲ୍ ହେବାର ସୁଯୋଗ ପାଇଲି; ଓଡ଼ିଆ ଜୀବନଶୈଳୀ ସହିତ ପରିଚିତ ହେଲି । ମୁଁ ଉଚ୍ଚକୋଟୀର ତଥା ସମ୍ଭ୍ରାନ୍ତ ଓଡ଼ିଆ ପରିବାର ଓ ବହୁ ମେଧାବୀ ଧୀମାନ୍ ଛାତ୍ର ଓ ନାଗରିକଙ୍କ ସଂସ୍ପର୍ଶରେ ଆସିଲି । ମୁଁ ବିଭିନ୍ନ ଶ୍ରେଣୀର ବହୁ ପ୍ରତିଭାବାନ୍ ଲୋକଙ୍କୁ ଭେଟିଲି, ଜାଣିଲି । ବହୁ ଶିଳ୍ପୀ, ଲେଖକ, ସମାଜସେବୀ ଓ କଳାକାର ତଥା ଆଇନଜୀବୀ ଓ ରାଜନୀତିଜ୍ଞମାନଙ୍କ ସମ୍ପର୍କରେ ଆସିଲି । ମୁଁ ଏଥିପୂର୍ବରୁ

କଲିକତା ଏବଂ ବେନାରସରେ ପ୍ରାୟ ତିନିବର୍ଷ ଛାତ୍ରଜୀବନ କଟାଇଥିଲି; ବର୍ତ୍ତମାନ ଓଡ଼ିଶାର ହୃତ୍‌ପିଣ୍ଡ ସ୍ଥଳୀକୁ ଆସିଲି। ମୋର ମନେହେଲା ଓଡ଼ିଶାର ଛାତ୍ର ଓ ବୁଦ୍ଧିଜୀବୀ ଭାରତର କୌଣସି ପ୍ରଦେଶର ଛାତ୍ର ଓ ବୁଦ୍ଧିଜୀବୀଙ୍କ ଠାରୁ ଊଣା ନୁହଁନ୍ତି; ବରଂ ଅନେକ ଦିଗରୁ ସେମାନଙ୍କଠାରୁ ଉଚ୍ଚରେ। ଓଡ଼ିଶାର ଶିଳ୍ପକଳା, ଅନନ୍ୟ ଭାସ୍କର୍ଯ୍ୟ ଏବଂ ଉଚ୍ଚାଙ୍ଗ ସାହିତ୍ୟ, ବିଶେଷ ଭାବରେ ରୀତି-ଯୁଗର ଅମର କୃତି ସାରା ଭାରତରେ ଏବଂ ପୃଥିବୀରେ ମଧ୍ୟ ଅତୁଳନୀୟ। ବହୁ ବୈଦେଶିକ କଳାପ୍ରେମୀ ଓଡ଼ିଶାର ଶିଳ୍ପସ୍ଥାପତ୍ୟକୁ ଭାରତର ଶ୍ରେଷ୍ଠ ରତ୍ନ ବୋଲି କହିଛନ୍ତି; ଯଥା-ଫର୍ଗୁସନ୍।

ମାତ୍ର କେତେକ ବିଦେଶୀ ଐତିହାସିକ ଓଡ଼ିଶାର ନିମକ୍ ଖାଇ ମଧ୍ୟ ଓଡ଼ିଶା ପ୍ରତି ଜାଣିଶୁଣି ଅବିଚାର କରିଛନ୍ତି। ହଣ୍ଟରଙ୍କ ଓଡ଼ିଶା ଇତିହାସରେ ଦେଖୁଁ, ସେ ଓଡ଼ିଆଙ୍କୁ 'ବୋକା' ବା ନିର୍ବୋଧ (ଷ୍ଟୁପିଡ୍) କହିବାକୁ ଛାଡ଼ି ନାହାନ୍ତି। ସେ ବହୁବର୍ଷ ଓଡ଼ିଶାରେ ଚାକିରି କରି ଓଡ଼ିଶାର ଦାନାପାଣିରେ ହୃଷ୍ଟପୁଷ୍ଟ ହୋଇ ଶେଷରେ ତା'ର ପ୍ରତିଦାନ ଦେଇଯାଇଛନ୍ତି ଓଡ଼ିଶାକୁ ଭାରତର 'ବୋଏସିଆ' କହି। ବୋଏସିଆ ଥିଲା ପ୍ରାଚୀନ ଗ୍ରୀସ୍‌ର ଏକ ନିର୍ବୋଧମାନଙ୍କ ବାସସ୍ଥାନ।

ରେଭେନ୍‌ସା କଲେଜ ସେତେବେଳକୁ ପାଟନା ବିଶ୍ୱବିଦ୍ୟାଳୟ ଅଧୀନରେ ଥିଲା। ଓଡ଼ିଶା ବିଶ୍ୱବିଦ୍ୟାଳୟ ହେବାକୁ ଆହୁରି ଛଅ ବର୍ଷ ଅପେକ୍ଷା କରିବାକୁ ପଡ଼ିଥିଲା। ଓଡ଼ିଶାର ସବୁ ସ୍କୁଲ ଓ କଲେଜ ପାଟନା ବିଶ୍ୱବିଦ୍ୟାଳୟ ଦ୍ୱାରା ପରିଚାଳିତ ହେଉଥିଲା।

ମୁଁ ଅର୍ଥଶାସ୍ତ୍ର ଏବଂ ଇତିହାସ ବିଷୟ ନେଇଥିଲି। ଇକୋନୋମିକ୍‌ସ ଅନର୍ସ୍ ମଧ୍ୟ ନେଇଥିଲି। ଏହାଛଡ଼ା ଓଡ଼ିଆ ଓ ଇଂରାଜୀ ତ ବାଧ୍ୟତାମୂଳକ ବିଷୟ ଥିଲା। ସ୍ୱନାମଧନ୍ୟ ଓଡ଼ିଆ ଅଧ୍ୟାପକ ପ୍ରଫେସର ଡଃ ଆର୍ତ୍ତବଲ୍ଲଭ ମହାଂତି ଆମର ଗୋଟିଏ ଓଡ଼ିଆ କ୍ଲାସ୍ ନେଉଥିଲେ। ପ୍ରଫେସର ଡଃ ସଦାଶିବ ମିଶ୍ର ଶେଷ ଆଡ଼କୁ ଆମର ଏକ ଅର୍ଥନୀତି କ୍ଲାସ୍ ନେଉଥିଲେ। ଏ ଦୁଇଜଣ ଶିକ୍ଷକଙ୍କଠାରୁ ଶିକ୍ଷା ପାଇବାର ସୌଭାଗ୍ୟ ମୋର ହୋଇଥିଲା। ଏ ସମ୍ପର୍କରେ କବି ବୈକୁଣ୍ଠନାଥ ପଟ୍ଟନାୟକଙ୍କର ଗୋଟିଏ କଥା ମନେ ପଡ଼େ। ସେ ଥରେ ତାଙ୍କ ଗୁରୁଙ୍କ ସମ୍ବନ୍ଧରେ କହୁଥିଲେ ଯେ, ସେ ସତ୍ୟବାଦୀ ବନବିଦ୍ୟାଳୟରେ ପଢ଼ୁଥିବାବେଳେ ପଣ୍ଡିତ ନୀଳକଂଠ ଦାସ ଥିଲେ ଜଣେ ଶିକ୍ଷକ। ଥରେ କ୍ଲାସ୍‌ରେ ପାଠ ନ କହିପାରିବାରୁ ପଂଡ଼ିତ ନୀଳକଂଠ ତାଙ୍କର ବାଁକାନଟି ମୋଡ଼ି ଦେଇଥିଲେ। ସେତିକି କହି ସେ ଟିକିଏ ଅଟକିଗଲେ। ତା'ପରେ ବାଷ୍ପ ଗଦ୍‌ଗଦ କଣ୍ଠରେ କହିଲେ- ସେ ସିନା ମୋର ବାଁ କାନଟି ମୋଡ଼ି ଦେଇଥିଲେ; ଡାହାଣ କାନଟି ମୋଡ଼ିବାପାଇଁ ଓଡ଼ିଶାର ଆଉ କୌଣସି ଲୋକ ରହିଲେ ନାହିଁ।

ପ୍ରଫେସର ଆର୍ତ୍ତବଲ୍ଲଭ ମହାନ୍ତି ମୋତେ ସବୁବେଳେ ଟିକିଏ ଭିନ୍ନ ଆଖିରେ ଦେଖୁଥିଲେ। ତୁ-ତା ରେ-ରା କରୁଥିଲେ ସିନା; ହେଲେ ତାଙ୍କ ଚାହାଣିରେ ଟିକିଏ ସଂଭ୍ରମର ଚିହ୍ନ ଥିଲା। ସେ

କେବେ ମୋତେ ପଦେ କଟୁକଥା କହି ନାହାନ୍ତି । ଯଦିଚ୍ ମୁଁ ନାନା ରାଜନୀତିକ କାମରେ ମାତି ତାଙ୍କଦିଆ ହୋମ୍‌ଟାସ୍କରେ ବରାବର ଅବହେଳା କରୁଥିଲି ।

**ଆର୍ତ୍ତବାବୁ -**

ପ୍ରଫେସର ଆର୍ତ୍ତବଲ୍ଲଭ ମହାନ୍ତିଙ୍କୁ ସମସ୍ତେ 'ଆର୍ତ୍ତବାବୁ' କହନ୍ତି । ତାଙ୍କ ପରି ଶବ୍ଦପାଗଳ ଲୋକ ମୁଁ ଆଉ କାହାରିକୁ ଦେଖିନି । ଓଡ଼ିଆ ଭାଷାକୁ ସେ ପ୍ରାଣଠାରୁ ଅଧିକ ଭଲ ପାଉଥିଲେ । ସେ ସାରଳା ମହାଭାରତର ଶୁଦ୍ଧ ସଂସ୍କଳନ କରିଯାଇଛନ୍ତି । ଏହାଛଡ଼ା ପ୍ରାଚୀ ସମିତି ସ୍ଥାପନ କରି ବହୁ ଓଡ଼ିଆ କାବ୍ୟ-କବିତା, ଟୀକା ଓ ସୁଦୀର୍ଘ ମୁଖବଂଧ ସହ ପ୍ରକାଶ କରିଯାଇଛନ୍ତି । ଗୋଟିଏ ଓଡ଼ିଆ ଶବ୍ଦ ପାଇଲେ ସେ କୋଟିନିଧି ପାଇଲାପରି ମନେ କରୁଥିଲେ । ସାରଳା ମହାଭାରତରୁ ସେ ଦୈତମାନଙ୍କ ବନ୍ଧୁ ଅର୍ଥରେ ଦୈତାରି ଶବ୍ଦ ବ୍ୟବହାର ହୋଇଥିବା ଦେଖି ଟିକିଏ ଅସୁବିଧାରେ ପଡ଼ିଥିଲେ । ଆଉ କିଏ ହୋଇଥିଲେ ସେ ସାରଳାଦାସ ଭୁଲ ଲେଖିଛନ୍ତି ବୋଲି କହିଥାନ୍ତେ କିମ୍ବା ଶବ୍ଦଟିକୁ ବଦଳାଇ ଦେଇଥାନ୍ତେ । ମାତ୍ର ସେ ଶବ୍ଦଟିକୁ ନ ବଦଳାଇ ଅବିକଳ ସେହିପରି ରଖିଥିଲେ । କେତେବର୍ଷ ପରେ ସେ ବେଦରୁ ଦୈତମାନଙ୍କ ବନ୍ଧୁ ଅର୍ଥରେ ଦୈତାରି ଶବ୍ଦର ପ୍ରୟୋଗ ଦେଖିଲେ । ତାଙ୍କ ଆନନ୍ଦ କହିଲେ ନସରେ । ସେ କ୍ଲାସରେ କହିଲେ, ସାରଳା ଦାସଙ୍କ ସଂସ୍କୃତରେ ନିଶ୍ଚୟ ପାଣ୍ଡିତ୍ୟ ଥିଲା, ତାହା ନ ହେଲେ ସେ ତାଙ୍କ ମହାଭାରତରେ ଯେଉଁ ସବୁ ଶବ୍ଦ ପ୍ରୟୋଗ କରିଛନ୍ତି, ତାହା କରିପାରି ନଥାନ୍ତେ । ମୁଁ ମୋର କେତେକ କବିତାରେ 'ହେର' (ଦେଖିବା ଅର୍ଥରେ) ଏବଂ 'ଶିହରି', 'ଶିହରଣ' ଶବ୍ଦ ବ୍ୟବହାର କରିଥିବାରୁ ମୋତେ କେତେକ ପତ୍ରକାର ଓ ପାଠକ ମୁଁ ଏହା ବଙ୍ଗଳାରୁ ନେଇଛି ବୋଲି ସମାଲୋଚନା କରିଥିଲେ । ମୁଁ ଆର୍ତ୍ତବାବୁଙ୍କୁ ଏ ବିଷୟ ପଚାରିଥିଲି । ସେ ପାଟିକରି କହିଉଠିଲେ 'ହେର' କାହିଁକି ବଙ୍ଗଳା ହେବ । ଏହା ତ ଖାଣ୍ଟି ଓଡ଼ିଆ ଶବ୍ଦ । ପୁରୀରେ ହେରାଗୌରୀ ସାହି ଅଛି । ସେଥିରେ 'ହେର' ଶବ୍ଦ ଦେଖିବା ଅର୍ଥରେ ହିଁ ବ୍ୟବହାର କରାଯାଇଛି । 'ଶିହରି', 'ଶିହରଣ' ଏକ ଖାଣ୍ଟି ଓଡ଼ିଆ ଶବ୍ଦ, ଏହା ବଙ୍ଗଳା କାହିଁକି ହେବ ?

ତାଙ୍କ ପରି ଜଣେ ମନନଶୀଳ ବ୍ୟକ୍ତି ମୁଁ ଖୁବ୍ କମ୍ ଦେଖିଛି । ଓଡ଼ିଆ ଭାଷା ଯେପରି ତାଙ୍କ ପ୍ରାଣର ସର୍ବସ୍ୱ ଥିଲା । ସେ ବହୁ ପ୍ରାଚୀନ କାବ୍ୟ-ଗାଥା- 'ଲାବଣ୍ୟବତୀ', 'ବିଦଗ୍ଧ ଚିନ୍ତାମଣି', 'ବୈଦେହୀଶବିଳାସ', ଯଦୁମଣିଙ୍କ 'ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର' ପ୍ରଭୃତିର ବିଶୁଦ୍ଧ ସଠିକ ସଂସ୍କରଣ ପ୍ରକାଶ କରିଯିବା ସଙ୍ଗେ ସଙ୍ଗେ ଓଡ଼ିଶାରେ ମିଳିଥିବା ଶିଳାଲିପିଗୁଡ଼ିକ ମଧ୍ୟ ସେ ଏକ ସଙ୍କଳନରେ ଫଟୋ-ଚିତ୍ରସହ ପ୍ରକାଶ କରିଯାଇଛନ୍ତି । ଓଡ଼ିଆ ଭାଷାରେ ଇତିହାସ ଲେଖିଥିବା ବିଜୟଚନ୍ଦ୍ର ମଜୁମଦାରଙ୍କ ଉପରେ ସେ ବଡ଼ ଚିଡୁଥିଲେ । ମଜୁମଦାର ତାଙ୍କ ବହିରେ କେତେକ ବିଶିଷ୍ଟ ଓଡ଼ିଆ କାବ୍ୟକୁ ଅଶ୍ଳୀଳତାପୂର୍ଣ୍ଣ ବୋଲି କହିଥିବାରୁ ଆର୍ତ୍ତବାବୁ ତାଙ୍କର ଏକ ବହିର

ମୁଖବନ୍ଧରେ ତାଙ୍କୁ କଠୋର ସମାଲୋଚନା କରିଛନ୍ତି । ତାଙ୍କ ସହିତ ମୋର ଶେଷ ଦେଖା ହୋଇଥିଲା ପରବର୍ତ୍ତୀ କାଳରେ ଏକ ସାହିତ୍ୟ-ସଭାରେ । ମୁଁ ତାଙ୍କୁ ଶ୍ରୀରାମଚନ୍ଦ୍ରଭବନରେ ହେଉଥିବା ଏକ ସାହିତ୍ୟ ସଭାରେ ଭେଟିଥିଲି । ମିଟିଂ ପରେ ତାଙ୍କୁ ମୋ ଗାଡ଼ିରେ ଆଣି ତାଙ୍କ ଘରେ ଛାଡ଼ି ଦେଇ ଆସିଥିଲି । ସେ ଗାଡ଼ିରେ କହୁଥିଲେ ତାଙ୍କର ଆପେଣ୍ଡିସାଇଟିକ୍ ହୋଇଛି ବୋଲି ଡାକ୍ତରମାନେ କହୁଛନ୍ତି ଓ ବେଳେବେଳେ ଭାରି ବିନ୍ଧୁଛି । ମୁଁ ତାଙ୍କୁ କହିଲି, ଆପଣ ଏପରି ଅବସ୍ଥାରେ ମିଟିଂକୁ କାହିଁକି ଆସିଲେ; ବରଂ ଘରେ ବିଶ୍ରାମ ନେବା ଉଚିତ ଥିଲା । ସେ ବେପରୱା ଭାବେ କହିଲେ- "ହଁ ମ, ଯା' ହବାର ଥିବ ହେବ ।" ସେହି ତାଙ୍କ ସଙ୍ଗେ ମୋର ଶେଷଦେଖା ଏବଂ ଶେଷ କଥାବାର୍ତ୍ତା । ଏହାର ତିନି-ଚାରି ଦିନ ପରେ ସେ ଇହଧାମ ତ୍ୟାଗ କରନ୍ତି ।

**ବୀରେନ୍ ମିତ୍ର -**

ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ବୀରେନ୍ ମିତ୍ର ମୋର ସହପାଠୀ ଥିଲା । ମୁଁ ତାକୁ ବୀରେନ୍ ବୋଲି ଡାକୁଥିଲି । ସେ ମୋତେ ସଚ୍ଚି, କେତେବେଳେ 'ଶଳା ସଚ୍ଚି' ବୋଲି ଡାକୁଥିଲା । ବୀରେନ୍ ସେତେବେଳେ ସଂପୂର୍ଣ୍ଣ ସୁସ୍ଥ ଥିଲା । ସାଇକେଲରେ ସବୁଆଡ଼େ ଯିବାଆସିବା କରୁଥିଲା, ଚଲାବୁଲା କରୁଥିଲା । ଅଳ୍ପ କେତେ ବର୍ଷ ପରେ ସେ କୌଣସି ବେମାରିରେ ଛୋଟା ହୋଇଗଲା । ମୁଁ ସେତେବେଳକୁ କଲିକତାରେ ଚାକିରି କରୁଥିଲି । ମୋତେ ପେନ୍‌ସିଲିନ୍ ପଠାଇବାକୁ ସେ ଲେଖିଥିଲା ।

କଟକରେ ପଢ଼ିଲାବେଳେ ରେଭେନ୍‌ସାରେ ସେ ମୋର ତୀବ୍ର ପ୍ରତିଦ୍ୱନ୍ଦ୍ୱୀ ଥିଲା । ମୁଁ ରେଭେନ୍‌ସାକୁ ଆସିବା ଆଗରୁ ସେ ସାରା ରେଭେନ୍‌ସାରେ ପ୍ରତିପତ୍ତି କମାଇ ଆସିଥାଏ । ସବୁଥିରେ ସେହି ଥିଲା କର୍ମକର୍ତ୍ତା - ସେକ୍ରେଟାରୀ, ପ୍ରେସିଡ଼େଣ୍ଟ ଇତ୍ୟାଦି । ତାକୁ ହଟାଇବା ପିଲା କେହି ନଥିଲେ । ମୁଁ ଆସି ତାକୁ ପ୍ରଚଣ୍ଡ ଆଘାତ ଦେଲି ଏବଂ କେତେକ ଅନୁଷ୍ଠାନରୁ ତାହାର ଦଖଲ ହଟାଇଲି । ମୁଁ ରେଭେନ୍‌ସା କଲେଜରେ ଭର୍ତ୍ତି ହେବାର କେତେକ ଦିନ ପରେ ଇକୋନୋମିକ୍‌ସ ସୋସାଇଟିର ସେକ୍ରେଟାରୀ ନିର୍ବାଚନ ହେଲା । ମୁଁ ତାକୁ ବହୁ ଭୋଟ୍‌ରେ ହରାଇ ନିର୍ବାଚିତ ହେଲି । ସେ ହାରିଯାଇ ମୋ ଉପରେ ରକ୍ତଚାଉଳ ଚୋବାଉଥିଲା । ମାତ୍ର ପରେ ପୁଣି ଆମେ ଘନିଷ୍ଠ ସାଙ୍ଗ ହୋଇଗଲୁ ।

**ରେବା ମଲ୍ଲିକ୍ -**

ଆମ କ୍ଲାସ୍‌ରେ ଯେଉଁ ସାତ-ଆଠଜଣ ଛାତ୍ରୀ ପଢୁଥିଲେ, ସେମାନେ ସମସ୍ତେ ମୋତେ ଭୋଟ୍ ଦେଇଥିଲେ । କେତେକ ଛାତ୍ର ମୋତେ ସେମାନଙ୍କ ମଧ୍ୟରୁ ଜଣେ ଦି'ଜଣ ସହପାଠିନୀଙ୍କ ସହିତ ଜଡ଼ାଇ ନାନା ଗୁଜବ ପ୍ରଚାର କଲେ, ମାତ୍ର ସେଥିରେ ମୋର କିଛି କ୍ଷତି ହେଲାନାହିଁ । ମୋର ଅନ୍ୟତମ ସହପାଠିନୀ ରେବା ମଲ୍ଲିକ୍ ସହ ମୋତେ ଜଡ଼ାଇ ସେତେବେଳେ 'ଦେଶକଥା'

ନାମକ ଏକ ଦୈନିକ ଖବରକାଗକରେ ବହୁ କୁତ୍ସାମୂଳକ ଓ ବ୍ୟଙ୍ଗରସପୂର୍ଣ୍ଣ ଲେଖା ପ୍ରକାଶ ପାଉଥାଏ । ଏହାର ସମ୍ପାଦକ ଥାଆନ୍ତି ଲାଲା ନଗେନ୍ଦ୍ର କୁମାର ରାଏ । ସେ ବର୍ଷେ-ଦୁଇବର୍ଷ କାଳ ମୋ ବିରୁଦ୍ଧରେ ଅନବରତ କୁତ୍ସାରଟନା କରିଛନ୍ତି । ସେ କାଗକ ସଞ୍ଜବେଳେ ବାହାରେ । ତାହା ବାହାରିବା ମାତ୍ରକେ ହକରମାନେ 'ଦେଶକଥା' 'ଦେଶକଥା' ଡାକିଲାବେଳେ କଟକର ବହୁ ଲୋକ ତାହା ଆଗ୍ରହରେ କିଣି ପଢୁଥାନ୍ତି ।

ରେବା ମଲ୍ଲିକ୍‌କୁ ମୋ ସଙ୍ଗେ କଡ଼ାଇ ଏପରି ଦୁର୍ନାମ ରଟାଇବା 'ଦେଶକଥା' ପକ୍ଷରେ ଏକ ଅଶାଳୀନ କାର୍ଯ୍ୟ । ସେ ନିରୀହା ଓ ସରଳା ଝିଅଟିକି ବଦନାମ କରି ଲାଲା ନଗେନ୍ କ'ଣ ସାର୍ଥକତା ପାଇଲେ, ତାହା କେବଳ ସେଇ କାଣନ୍ତି । ପ୍ରତିଦିନ କ୍ଲାସରେ ରେବା ସଙ୍ଗେ ଦେଖାହେଲେ ମୋତେ ଭୀଷଣ ଦୁଃଖ ଲାଗେ । ରେବା ସାହସିନୀ ଝିଅ । ସେ କେବଳ ମୋତେ କରୁଣ ଆଖିରେ ବେଳେବେଳେ ଚାହେଁ । ମୁଁ ପ୍ରାୟ୍ ପଛ ବେଞ୍ଚ୍‌ରେ ବସୁଥାଏ । ଝିଅମାନେ ବସୁଥାନ୍ତି ସାମ୍ନାରେ । ସେତେବେଳେ ମୁଁ ଯେଉଁ ଦୁଇଟି କବିତା ଲେଖିଥିଲି, ତାହା ସାରା ଓଡ଼ିଶାରେ ବିଦଗ୍ଧ ପାଠକମହଲରେ ଭୀଷଣ ଆଦୃତ ହୋଇଥିଲା । ସେଥିମଧ୍ୟରୁ ଗୋଟିଏ ହେଉଛି 'ଝଡ଼'; ଯାହା 'ପାଣ୍ଡୁଲିପି'ର ପ୍ରଥମ କବିତା ।

"ଏହି ଯେ ଆସୁଛି ଝଡ଼
 କର ସଖି ତାରେ ନମସ୍କାର
ତା'ପଦେ ପ୍ରଣତି ବାଢ଼େ
 ଗିରି, ବନ, ନଦୀ, ପାରାବାର ।
ଏ ଝଡ଼ ଦେଇଛି ସଖି,
 ତୁମକୁ ଯେ ମୋର ପରିଚୟ୍,
ଭାଙ୍ଗିବାର ମନ୍ତ୍ର ସାଥେ
 ଗଢ଼ିବାର ଭୂମିକା ଅକ୍ଷୟ୍ ।"

ଏ କବିତାଟି ପ୍ରଥମେ 'ସହକାର' ପତ୍ରିକାରେ ୧୯୩୭-୩୮ ମସିହାରେ ପ୍ରକାଶ ପାଇଥିଲା । ଏହା ସାରା ଓଡ଼ିଶାରେ ଏକ କରୁଣ ପ୍ରତିକ୍ରିୟା ସୃଷ୍ଟି କରିଥିଲା ।

ଅନ୍ୟ କବିତାଟି ହେଉଛି - "ହେ ମୋର ନିରପରାଧ ଦେଶ" । ତା'ର ଗୋଟିଏ ପଙ୍‌କ୍ତି ଉଦ୍ଧାର କଲି -

"ମନେପଡ଼େ ଆଜି -
କରୁଣ କପୋତୀ ସମ ଭୟାତୁର ଶତମୁଖରାଜି
ମୋ ପାଇଁ ଯା କଳଙ୍କର ଟିକା

ମୋ ଦେଶେ ନାଇଲା ଦିନେ ସ୍ୱଇଚ୍ଛାରେ ମୁଖ କରି ଫିକା
କିରାତର ଶରେ ବିଦ୍ଧ ହୁଏ ଯଥା ବନର ହରିଣୀ,
ତେସନ ସହିଛି ଦୁଃଖ ମୋହ ପାଇଁ 'ମୋ' ସହପାଠିନୀ
ଲଜ୍ଜାର ତିଳକ
ସ୍ୱେଚ୍ଛାରେ ନେଇଛି ଭାଲେ ନାରୀ ଏକ, ଧିକ୍ ! ଶତ ଧିକ୍ !!"

ମୁଁ ରେବାକୁ ଠିକ୍ ଭଲ ପାଉଥିଲି କି ନାହିଁ ଜାଣେନି; କିନ୍ତୁ ପ୍ରବଳ ଝଡ଼ ଓ ବର୍ଷା ତୋଫାନରେ ଜଣେ ସହଯାତ୍ରୀ ଯେପରି ତା'ର ନିକଟତମ ସହଯାତ୍ରିଣୀ ଆଡ଼କୁ ଟାଣି ହୋଇଯାଏ ଏବଂ ଦୁହେଁ ଦୁହିଁଙ୍କି କଢ଼େଇ ଧରନ୍ତି, ଅବସ୍ଥାଟା ଥିଲା ଅନେକଟା ସେହିପରି । ମନେହେଉଥିଲା, ଗୋଟିଏ ପ୍ରବଳ ଝଞ୍ଜାର ନିଃଶ୍ୱାସରେ ଯେପରି ଦୁଇଟି ଅସହାୟ ନରନାରୀ ପରସ୍ପର ଭିତରେ ଆଶ୍ରୟ ଖୋଜୁଛନ୍ତି ।

ଗୋଟିଏ ବଙ୍ଗାଳୀ ପରିବାରର ଝିଅ ରେବା । ତାହାର ପିତାମାତା ଓ ଭାଇଭଉଣୀଙ୍କ ସହ ସେତେବେଳେ କଟକରେ ରହୁଥାଏ । ମୁଁ କେତେ ଥର ସେମାନଙ୍କ ଘରକୁ ଯାଇଛି; ମାତ୍ର ତାକୁ ଏ ଝଞ୍ଜାର କବଳରୁ ରକ୍ଷା କରିବାର ଶକ୍ତି ମୋର ନଥାଏ ।

କଲେଜ ଛାଡ଼ିବାପରେ କଲିକତାରେ ରେବା ସହିତ ଥରେ ଦି'ଥର ଦେଖା ହୋଇଥିଲା । କେବଳ ଗଭୀର ଦୁଃଖର ଦୀର୍ଘଶ୍ୱାସ ଛଡ଼ା ଆଉ ଆମ ପାଖରେ କିଛି ନ ଥିଲା ପରସ୍ପରକୁ ଦେବାପାଇଁ । ୱେଲିଙ୍ଗଟନ୍ ସ୍କୋୟାର (ପରେ ନାମ ବଦଳି ରାଜା ସୁବୋଧ ମଲ୍ଲିକ୍ ସ୍କୋୟାର)ରେ ଦୀର୍ଘ ସମୟ ବସିରହିଛୁ । ଅଧିକାଂଶ ସମୟ କଟିଛି କେବଳ ନୀରବତା ମଧ୍ୟରେ । ତା' ସଙ୍ଗେ ମୋର ଦେଖା ହୋଇଯାଏ ଅଚାନକ ଫୁଟ୍‌ପାଥ୍‌ରେ । ତା' ପଛରେ କୌଣସି dating ନଥାଏ । ସେଥିପାଇଁ ତାହା ଏତେ ବେଶି ହୃଦୟସ୍ପର୍ଶୀ ।

**କଲେଜ ୟୁନିଅନ୍ ଗଠନପାଇଁ ଧସ୍ତାଧସ୍ତି ଓ ଲିଫ୍‌ଲେଟ୍ ଯୁଦ୍ଧ -**

ସେତେବେଳେ ସବୁ କଲେଜରେ କଲେଜ ୟୁନିଅନ୍ ଗଢ଼ାଯିବ ବୋଲି ନିର୍ଦ୍ଦେଶ ଆସିଥାଏ । ରେଭେନ୍‌ସାରେ କଲେଜ ୟୁନିଅନ୍ ଗଢ଼ାଯିବାର ପ୍ରସ୍ତୁତି ଚାଲିଥାଏ । ସବୁ କଲେଜ ୟୁନିଅନ୍‌ର ପ୍ରିନ୍‌ସପାଲ Ex-Officio ସଭାପତି ରହିବେ ବୋଲି ନିର୍ଦ୍ଦେଶ ଥାଏ । ଆମେ ଏହାକୁ ବିରୋଧ କଲୁ । ବୀରେନ୍ ଏହାକୁ ସମର୍ଥନ କରୁଥାଏ । ଉଭୟ ପକ୍ଷରୁ ଲିଫ୍‌ଲେଟ୍‌ମାନ ପ୍ରକାଶ ପାଇ ଛାତ୍ରମାନଙ୍କ ମଧ୍ୟରେ ଜୋର୍‌ସୋର୍‌ରେ ବଣ୍ଟାଯାଉଥାଏ । ଆମ ପକ୍ଷରୁ ହଳଦିଆ ରଙ୍ଗର ଲିଫ୍‌ଲେଟ୍ ବାହାରୁଥାଏ । ଆମେ କହୁଥାଉ, ପ୍ରିନ୍‌ସିପାଲ୍ ସଭାପତି ରହିଲେ ଆମର ଆପତ୍ତି ନାହିଁ; ମାତ୍ର ସେ ଛାତ୍ରମାନଙ୍କଦ୍ୱାରା ନିର୍ବାଚିତ ହେବା ଦରକାର । Ex-Officio ସଭାପତି ହେବା ଚଳିବ ନାହିଁ । ବୀରେନ୍ ଓ ତା' ସପକ୍ଷ ଲୋକ କହୁଥାନ୍ତି ପ୍ରିନ୍‌ସିପାଲ କିପରି ନିର୍ବାଚନରେ

ଛିଡ଼ା ହେବେ ? ଏହାଦ୍ୱାରା ତାଂକ ମର୍ଯ୍ୟାଦା କ୍ଷୁଣ୍ଣ ହେବ । ଏମାନେ ଆଜି ପ୍ରିନ୍‌ସିପାଲଂକୁ ନିର୍ବାଚିତ କରିବା କଥା କହୁଛଂତି, କାଲି ସେମାନେ ଭଗବାନଂକୁ ନିର୍ବାଚିତ କରିବାପାଇଁ କହିବେ ("Today they want to elect the Principal. Tomorrow they will want to elect God") ଆମେ କହୁଥାଉଁ, ପରିଜା ସାହେବ ଭଲଲୋକ । ସେ କଲେଜ ୟୁନିଅନ୍ ସଭାପତି ହେଲେ କିଛି କ୍ଷତି ନାହିଁ; ମାତ୍ର କାଲି ଅନ୍ୟ ପ୍ରିନ୍‌ସିପାଲ୍ ଆସିବେ । ସେ ଯେ ପରିଜା ସାହେବଙ୍କ ପରି ଭଲଲୋକ ହେବେ, ତା'ର ନିଶ୍ଚିତତା କ'ଣ ? ସେ ହୁଏତ ଜଣେ ଖରାପ ଲୋକ ହୋଇପାରନ୍ତି । ତେଣୁ ଆମେ ପ୍ରିନ୍‌ସିପାଲ କଲେଜ ୟୁନିଅନ୍ ସଭାପତି ଭାବେ ନିର୍ବାଚିତ ହୁଅନ୍ତୁ ବୋଲି ଏକ ନୀତିଗତ ପ୍ରଶ୍ନ ଉଠାଉଛୁ ।

ଏହିପରି ପାଂପ୍ଲେଟ୍ ଯୁଦ୍ଧ ଚାଲିଥାଏ । ଆମ ପାଂପ୍ଲେଟ୍‌ରେ ସ୍ୱାକ୍ଷରକାରୀମାନେ ହେଲେ ମୁଁ, ଅଶୋକ ଦାସ, ବିଜୟଚନ୍ଦ୍ର ଦାସ, ଗଙ୍ଗାଧର ମହାପାତ୍ର, ନୀଳମଣି ରାଉତରାୟ, ବିଭୁଧେନ୍ଦ୍ର ମିଶ୍ର ଓ ସୁରଜମଲ୍ଲ ସାହା । ତାଙ୍କ ପାଂପ୍ଲେଟ୍‌ରେ ଦସ୍ତଖତକାରୀମାନେ ହେଲେ ବୀରେନ୍ ମିତ୍ର ଓ ତା'ର ଆଉ ୨୦-୨୫ ଜଣ ସମର୍ଥକ । ନୀଳମଣି ରାଉତରାୟ, ବିଭୁଧେନ୍ଦ୍ର ମିଶ୍ର ଓ ସୁରଜମଲ୍ଲ ସାହା ମୋ ତଳ କ୍ଲାସ୍‌ରେ ପଢୁଥାନ୍ତି । ଗଙ୍ଗାଧର ମହାପାତ୍ର ଓ ଅଶୋକ ଦାସ ଏବଂ ବିଜୟଚନ୍ଦ୍ର ଦାସ ବି.ଏ. ପାସ୍ କରିସାରି ଆଇନ୍ କ୍ଲାସ୍‌ରେ ପଢୁଥାନ୍ତି । ଆଇନ୍ କ୍ଲାସ୍ ଓ ଏମ୍.ଏ. କ୍ଲାସ୍ ସକାଳବେଳା ବସୁଥାଏ । (ପରେ ଗଙ୍ଗାଧର ମହାପାତ୍ର ଶିକ୍ଷାମନ୍ତ୍ରୀ ହୋଇଥିଲେ, ଅଶୋକ ଦାସ ଆଡ୍‌ଭୋକେଟ୍ ଜେନେରାଲ ହୋଇଥିଲେ, ବିଭୁଧେନ୍ଦ୍ର ମିଶ୍ର କେନ୍ଦ୍ର ରାଷ୍ଟ୍ରମନ୍ତ୍ରୀ ଏବଂ ନୀଳମଣି ରାଉତରାୟ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୋଇଥିଲେ) ।

•

---

**ଉତ୍ତରକକ୍ଷ**, ଗ୍ରନ୍ଥମନ୍ଦିର, କଟକ, ୧୯୯୮

# ଅର୍ଦ୍ଧଶତାବ୍ଦୀ ପୂର୍ବର ରେଭେନ୍‌ସା କଲେଜ

## ଲାଲା ନଗେନ୍ଦ୍ର କୁମାର ରାୟ୍

ଆଜି ରେଭେନ୍‌ସା କଲେଜର ଶତବାର୍ଷିକୀ ଉତ୍ସବ ଅନୁଷ୍ଠିତ ହେବାକୁ ଯାଉଛି... ଅବଶ୍ୟ ଶତାବ୍ଦୀ ପୂରଣ ଦୁଇବର୍ଷ ଗତ ହେବା ପରେ। ଅର୍ଦ୍ଧଶତାବ୍ଦୀ ପୂର୍ବେ ମୁଁ ଏ କଲେଜରେ ଛାତ୍ର ଥିଲି ଏବଂ ସେ ଦିନର କେତେକ ଅଧ୍ୟାପକଙ୍କ ସ୍ମୃତିର ଅବତାରଣା ହେବ ମୋର ଏ ଉତ୍ସବକୁ ଅବଦାନ।

ଆମ ସମୟରେ କଲେଜର ପ୍ରିନ୍‌ସିପାଲ ଥାଆନ୍ତି ମିଷ୍ଟର ଏଚ୍ ଲ୍ୟାମ୍ବାର୍ଟ। ଇତିହାସର ଅଧ୍ୟାପକ ଥାନ୍ତି ମିଷ୍ଟର ରସ୍ ମସୁଦ ଯେ କି ଆଲିଗଡ଼ ବିଶ୍ୱବିଦ୍ୟାଳୟର କୁଳପତି ହୋଇଥିଲେ। କଲେଜର ଅନ୍ୟାନ୍ୟ ଅଧ୍ୟାପକଙ୍କ ମଧ୍ୟରେ ସର୍ବାଧିକ ଖ୍ୟାତିସମ୍ପନ୍ନ ଥିଲେ ରାଏ ବାହାଦୁର ଯୋଗେଶଚ଼ନ୍ଦ୍ର ରାଏ ବିଦ୍ୟାନିଧି। ଉଦ୍ଭିଦ ବିଦ୍ୟା ଛଡ଼ା ଯୋଗେଶବାବୁ ରସାୟନ, ପଦାର୍ଥ ବିଜ୍ଞାନ, ଗଣିତ ଓ ବଙ୍ଗଳା ସାହିତ୍ୟ ତଥା ଇତିହାସରେ ମଧ୍ୟ କ୍ଲାସ୍‌ରେ ପାଠ ପଢ଼ାଉଥାନ୍ତି। ଅନ୍ୟ ଅଧ୍ୟାପକଙ୍କ ମଧ୍ୟରେ ପ୍ରସିଦ୍ଧ ଥିଲେ ଶ୍ରୀ ଗୋପାଳଚ଼ନ୍ଦ୍ର ଗାଙ୍ଗୁଲି ଓ ଶ୍ରୀ ଅମ୍ବିକା ଚରଣ ମିତ୍ର। ଓଡ଼ିଆ ଅଧ୍ୟାପକଙ୍କ ମଧ୍ୟରେ ଥାନ୍ତି ଶ୍ରୀ କାଶୀନାଥ ଦାସ, ମୋହିନୀ ମୋହନ ସେନାପତି ଓ ଆର୍ତ୍ତବଲ୍ଲଭ ମହାନ୍ତି ଯେ କି ବର୍ତ୍ତମାନ କାଳରେ ଓଡ଼ିଆ ସାହିତ୍ୟ ଗବେଷଣାର ମୂଳଭିତ୍ତି ପକାଇ ଅମର ହୋଇଛନ୍ତି।

ଅଧ୍ୟାପକ ଯୋଗେଶଚ଼ନ୍ଦ୍ର ସାଧାରଣ ଭାଷାରେ କହିଲେ- ଜଣେ ମଡ଼ମଡ଼ିଆ ଶ୍ୟାମଳବର୍ଣ୍ଣର ମଝି-ମଝିଆ ଉଚ୍ଚତାର ଲୋକ ଥିଲେ। ତାଙ୍କର ଅଧ୍ୟାପନାର ପୋଷାକପତ୍ର ମଧ୍ୟ ଥିଲା ଅତି ସାଧାରଣ। ଗୋଟିଏ ମଠା ବା ମୁଗା ରେଶମର ମଟକା ପ୍ୟାଣ୍ଟ ଏବଂ ସରେ ସେଇ କନାର ଗଳାବନ୍ଦ କୋଟ ଥିଲା ତାଙ୍କର ସଦାଦିନିଆ ପୋଷାକ। ଆମ ପରି ନୂଆ ଛାତ୍ରଙ୍କ ଆଖିରେ ତାଙ୍କ ଛତାଟି ଥିଲା ସବୁଠାରୁ ଉଲ୍ଲେଖଯୋଗ୍ୟ। ଯୋଗେଶବାବୁ ବଜାରର ସାଧାରଣ କଳା ଛତା ନ କିଣି ଅଲଗା ବରାଦଦିଆ-ବାଘନିଶ ହଲାନା ଖ୍ୟାତ-ଆଲୋକର ସାତରଙ୍ଗିଆ ଛତାଟିଏ ଧରି, ଚାଲି ଚାଲି କ୍ଲାସ୍‌କୁ ଆସନ୍ତି। ତାଙ୍କର ଏ ପ୍ରକାର ଅତି ସାଧାରଣ ରୂପଭେକ ସତ୍ତ୍ୱେ ସେ ଛାତ୍ରମହଲ ବା ଅଧ୍ୟାପକମଣ୍ଡଳୀ ସମସ୍ତଙ୍କ ପାଖରେ ଥାନ୍ତି ସମ୍ମାନ ଆଦର ଓ ପୂଜାର ପାତ୍ର।

ଯୋଗେଶବାବୁଙ୍କର ଖ୍ୟାତି ଆମେ କଟକ ପିଲାଏ ଆମ ସ୍କୁଲ୍ ପାଠ ଦିନରୁ କିଛି କିଛି ଶୁଣିଥାଉ । ଆମ ଭିତରୁ ଯେଉଁ ଛାତ୍ରମାନେ ଉତ୍କଳ ସାହିତ୍ୟ ସମାଜର ସାହିତ୍ୟ ସଭାକୁ ଯିବାକୁ ଅଭ୍ୟସ୍ତ ଥିଲେ ସେମାନେ ତାଙ୍କ ସାହିତ୍ୟ ଆଲୋଚନା ମଧ୍ୟ ଶୁଣିଥାନ୍ତି । ଯୋଗେଶବାବୁ ଓଡ଼ିଆଙ୍କ ପାଖରେ ଅତି ପ୍ରିୟ ହୋଇଥାନ୍ତି ତାଙ୍କର ଅମରକୀର୍ତ୍ତି-ପଠାଣି ସାମନ୍ତ ଅର୍ଥାତ୍ ସାମନ୍ତ ଚନ୍ଦ୍ରଶେଖର ସିଂହଙ୍କର ସିଦ୍ଧାନ୍ତ ଦର୍ପଣ ଛପାଇ ବିଶ୍ୱରେ ପରିଚିତ କରାଇଥିବା କାରଣରୁ । ଆମେ ଶୁଣିଥାଉଁ ଏ ଉଭୟ ମହାପୁରୁଷ କିପରି ଗ୍ରହନକ୍ଷତ୍ରର ଗତିବିଧି ନିର୍ଣ୍ଣୟ କରୁଥିଲେ । ତାହାର ଆଶ୍ଚର୍ଯ୍ୟ ଇତିକଥା । ଅଧ୍ୟାପକ ଯୋଗେଶଚନ୍ଦ୍ର ଗୋଟିଏ ସାଧାରଣ ହାତରେ ଧରିବାଭଳି ଦୂରବୀକ୍ଷଣ ଯନ୍ତ୍ର (Telescope) ସାହାଯ୍ୟରେ ଯେଉଁ ଗ୍ରହର ଅବସ୍ଥିତିକୁ ଗାଣିତିକ ସୂତ୍ରରେ ନିର୍ଣ୍ଣୟ କରି ପଠାଣି ସାମନ୍ତଙ୍କୁ ନ ଦେଖାଇ କାଗଜରେ ଲେଖି ରଖନ୍ତି-ପଠାଣି ସାମନ୍ତ ତାଙ୍କର ବିଖ୍ୟାତ ସ୍ୱହସ୍ତ ନିର୍ମିତ 'ନଳିକା ଯନ୍ତ୍ର' ବା କେତେକ ଛିଦ୍ରବିଶିଷ୍ଟ ଖଣ୍ଡିଏ ବାଉଁଶନଳି ଦ୍ୱାରା ସେ ଗ୍ରହର ଅବସ୍ଥିତି ଠିକଣା କରି ଯୋଗେଶଚନ୍ଦ୍ରଙ୍କୁ କହିଲେ ଦେଖା ଯାଉଥିଲା ଯେ ପାଶ୍ଚାତ୍ୟ ବିଜ୍ଞାନଯନ୍ତ୍ର ଆଗରେ ପ୍ରାଚ୍ୟ ବିଜ୍ଞାନୀଙ୍କର ଘରୋଇ ଯନ୍ତ୍ର ଥରେ ହେଲେ ହାରୁ ନ ଥିଲା । ଯୋଗେଶବାବୁଙ୍କ ଦୂରବୀକ୍ଷଣ ଯନ୍ତ୍ରଟି ଧରି ଥରେ ଚନ୍ଦ୍ରଶେଖର ନିଜେ ଆକାଶର ଗ୍ରହ ନକ୍ଷତ୍ର ଦେଖିଥିଲେ । ପାଶ୍ଚାତ୍ୟ ଯନ୍ତ୍ରଟିର ପ୍ରଥମ ବ୍ୟବହାର ପରେ ଚନ୍ଦ୍ରଶେଖର ସମ୍ପୂର୍ଣ୍ଣ ଭାବବିହ୍ୱଳ ହୋଇପଡ଼ିଲେ । ସେ କହି ପକାଇଲେ- ଯୋଗେଶବାବୁ ଆପଣମାନଙ୍କର ଏ ଯନ୍ତ୍ରଟିର ଅସ୍ତିତ୍ୱ କଥା ଯଦି ମୋତେ ଆଗରୁ ଜଣାଥାନ୍ତା, ତେବେ ମୋର ଦଶବର୍ଷର ପରିଶ୍ରମ ଲାଘବ ହୋଇଯାଇଥାନ୍ତା ।

ଯୋଗେଶଚନ୍ଦ୍ରଙ୍କ ନିକଟରେ ଦୁଇଟି ବର୍ଷ ପାଠ ପଢ଼ିବାର ସୁଯୋଗ ମୁଁ ପାଇଥିଲି । ଉଦ୍ଭିଦ ବିଦ୍ୟା ଶ୍ରେଣୀରେ ପଢ଼ାଇଲାବେଳେ ଯେଉଁ ଦିନ ଯେଉଁ ଗଛ ବା ପତ୍ରଟି ସେ ପିଲାଙ୍କୁ ପଢ଼ାଇବେ ସେ ସମ୍ବନ୍ଧରେ ଇତିହାସ, ଭୂଗୋଳ, ବାଣିଜ୍ୟବିଦ୍ୟା ଆଦି କୌଣସି ଗୋଟିଏ ଦିଗ ହେଲେ ବାଦ ଦେଉ ନଥିଲେ । ଉଦାହରଣସ୍ୱରୂପ ଯେଉଁଦିନ ସେ ଝୋଟ ବିଷୟଟି ପଢ଼ାଇଲେ ସେଦିନର ଅଧ୍ୟାପନାର ଗୋଟିଏ ସଂକ୍ଷିପ୍ତ ଚିତ୍ର ଦେବାର ଲୋଭ ମୁଁ ସମ୍ଭାଳି ପାରୁ ନାହିଁ ।

କ୍ଲାସ୍‌ର ଟେବୁଲ ଉପରେ ପକା ହୋଇଥାଏ ଗୋଟିଏ ସାନ ବିଡ଼ା ଝୋଟ, ନଳିତା ଗଛଟିଏ, ତା'ର ଫୁଲ ଓ ମଞ୍ଜି ଇତ୍ୟାଦି । ଅଧ୍ୟାପକ ଯୋଗେଶଚନ୍ଦ୍ର ଝୋଟବିଡ଼ାଟି ଦେଖାଇ ପଚାରିଲେ- ଏଇଟି କ'ଣ ? ପିଲାଏ ଉତ୍ତର ଦେଲେ- Jute ବା ଝୋଟ । ତାହା ପରେ ଅଧ୍ୟାପକଙ୍କ ଠାରୁ ଆମେ ପ୍ରଥମେ ଶିଖିଲୁ -'Jute ଶବ୍ଦଟା ଇଂରାଜୀ ଭାଷାର ନିଜସ୍ୱ ନୁହେଁ । ଆମ ଦେଶୀୟ ସଂସ୍କୃତ ଶବ୍ଦ, ଜଟା ସାମାନ୍ୟ ରୂପାନ୍ତରିତ ହୋଇ ଝଟା ଅର୍ଥାତ୍ ଅଡୁଆ ବାଳ ଆଦି ଶବ୍ଦରୁ, ପ୍ରଥମ ବାଣିଜ୍ୟ କରିବାକୁ ଆସିଥିବା ସାହେବମାନେ Jute ଶବ୍ଦ ତିଆରି କରିଥିଲେ । ସେ ଆହୁରି ଉଦାହରଣ ଦେଇଥିଲେ ଯେ ଓଡ଼ିଆ ଚିଜ କଲମ ତରାସ ଛୁରିଟିଏ ଦ୍ୱାରା ମାଳୀମାନେ ସାହେବମାନଙ୍କୁ ଆମ୍ବକାଟି ଚାଖିବାକୁ ଦେଉଥିବା ବେଳର ଶବ୍ଦ "ଚାଖୁ-ଚାଖୁରୁ" ଚାକୁ କଥାଟା

ଜନ୍ମଲାଭ କରିଛି । ଝୋଟର ସଂସ୍କୃତ ନାମ ହେଲା - 'ଷଣ' ବା ଓଡ଼ିଆ ଛଣ ଏହା ତାଙ୍କରି ଠାରୁ ପ୍ରଥମେ ଜାଣିଲୁ । ଝୋଟର ସ୍ୱାଭାବିକ ଜନ୍ମସ୍ଥାନ ଯେ ବଙ୍ଗଳା ଓ ଓଡ଼ିଶା; ପୃଥିବୀର ଅନ୍ୟ କୁତ୍ରାପି ଏହା ଜନ୍ମେ ନାହିଁ, ତାହା ବୁଝାଇବା ପରେ ସେ କହିଲେ ଯେ ଝୋଟ ହେଲା ଭାରତର ରପ୍ତାନି ବାଣିଜ୍ୟର ମୂଳଖମ୍ବ । ତହୁଁ ସେ କହିଲାଗିଲେ ଯେ ମିଶର ଓ ପାରସ୍ୟ ଆଦି ପ୍ରାଚୀନ ସଭ୍ୟ ଦେଶମାନଙ୍କର ବହୁ ଐତିହାସିକ କୀର୍ତ୍ତିସହ ଝୋଟ ନିର୍ମିତ ବିଭିନ୍ନ ପଦାର୍ଥ ମିଳିଥିବାରୁ ପ୍ରାଚୀନ ଭାରତ ସହିତ ଏ ଦେଶମାନଙ୍କର ବାଣିଜ୍ୟ ସମ୍ପର୍କ ଥିବାର ଏହା ପ୍ରକୃଷ୍ଟ ପ୍ରମାଣ । ଝୋଟର ଲ୍ୟାଟିନ୍, ଗ୍ରୀକ୍ ଆଦି ନାମ ମଧ୍ୟ ସେ ଆମ୍ଭଙ୍କୁ ଜଣାଇଲେ ।

ଆଉ ଦିନେ ଶିମିଳିଫୁଲଟିଏ ଦେଖାଇ ସେ ପଚାରିଲେ, ଏ ଫୁଲଟି କି ଫୁଲ ଓ ଏହାର ରଙ୍ଗ ଲାଲ କାହିଁକି ? ଏହି ପ୍ରସଙ୍ଗରେ ସେ ସଂସ୍କୃତ ସାହିତ୍ୟର ବିଖ୍ୟାତ ଓ ଅତି ପରିଚିତ କାହାଣୀ, ବିଷ୍ଣୁଶର୍ମା କୃତ ପଞ୍ଚତନ୍ତ୍ରରୁ ଉଦ୍ଧାର କରି ଆରମ୍ଭ କଲେ -"ଅସ୍ତି ଗୋଦାବରୀ ତୀରେ ବିଶାଳ ଶାଳ୍ମଳୀତରୁ" ଇତ୍ୟାଦି । ଶିମିଳି ବା ଶାଳ୍ମଳୀ ହେଲା ଇଂରାଜୀରେ Silk Cotton. ତହୁଁ ସେ ବୁଝାଇଲେ, କୌଣସି ପାଶ୍ଚାତ୍ୟ ଆଗନ୍ତୁକ ଏ ଦେଶର ଶିମିଳି ଫଳର ଚକଚ଼କିଆ ତୁଳା ଦେଖି ନିଜ ଦେଶରେ ଯାଇ କହିଲା - ଭାରତରେ ଏପରି ଗଛ ଅଛି ଯେଉଁଥିରେ ରେଶମ ଫଳେ । ସେଥିପାଇଁ ଇଂରାଜୀ ଭାଷାରେ ଏ ଗଛର ଏପରି ନାମକରଣ ହୋଇଛି । ଏ ଜାତୀୟ ଗଛର ପ୍ରାକୃତିକ ବିଶିଷ୍ଟତା ହେଉଛି ଯେ ଏହା ପତ୍ରବହୁଳ । ତେଣୁ ସେହି ନିଘଞ୍ଚ ପତ୍ର ବହଳ ମଧ୍ୟରେ ଫୁଲ ଫୁଟିଲେ - ଫୁଲଗୁଡ଼ିକ ଲୁଚିଯିବ । କୀଟପତଙ୍ଗ ଦୂରରୁ ତାହା ଦେଖି ପାରିବେ ନାହିଁ । ଗୋଟିଏ ଫୁଲରୁ ପରାଗକେଶର ଅନ୍ୟ ଫୁଲକୁ ନେଇଯାନ୍ତି ମହୁମାଛି ଓ ଭ୍ରମର ଜାତିର କୀଟମାନେ । ଫୁଲଗୁଡ଼ିକ ଯଦି ଲୁଚି ରହେ ତେବେ ଗଛର ବଂଶବୃଦ୍ଧି କାର୍ଯ୍ୟରେ ବାଧା ଆସିବ । ତେଣୁ ପ୍ରାକୃତିକ ବିଧାନରେ ଶିମିଳି ଗଛର ସବୁ ପତ୍ର ଝଡ଼ି ଗଲା ପରେ ସେ ଗଛରେ ଫୁଲ ଫୁଟେ ।

ଯୋଗେଶବାବୁ ଆଉ ଦିନେ ପରୀକ୍ଷାଗାରରେ ପିଲାଙ୍କୁ କେତେକ ଉଦ୍ଭିଦ କଥା ବୁଝାଉଥିଲେ । ହଠାତ୍ କଲେଜରେ ଚହଳ ପଡ଼ିଲା ଯେ ବିଶ୍ୱବିଦ୍ୟାଳୟର ପରିଦର୍ଶକ ହୋଇ ପାଟଣା ବିଜ୍ଞାନ କଲେଜର ଅଧ୍ୟାପକ ଡକ୍ଟର କାଲଡ୍ ଉଏଲ୍ ଆସିଛନ୍ତି । ଯୋଗେଶବାବୁ ଏଥରକୁ ଭ୍ରୂକ୍ଷେପ କଲେ ନାହିଁ । ଉକ୍ତ ସାହେବ ତାଙ୍କ ପାଖକୁ ଲାବୋରେଟରୀକୁ ଆସନ୍ତେ ଯୋଗେଶବାବୁ ତାଙ୍କୁ ନମସ୍କାର କରି ପଚାରିଲେ ମିଷ୍ଟର କାଲଡ୍ ଉଏଲ, "ତୁମେ ଯୋରିଷ ଗଛ ଦେଖିଛ । ସାହେବ ଯୋରିଷର ଏକ ବୁଦା ଗଛ ବୋଲି କହିବାରୁ ଯୋଗେଶବାବୁ କହିଲେ ତୁମେ ଭୁଲ ବୁଝିଛ । ବାଇବେଲ୍‌ରେ ଅଛି ଯୋରିଷ ଗଛରେ ପକ୍ଷୀମାନେ ବସା କରି ଥାଆନ୍ତି । ପ୍ରକୃତରେ ତାହାହିଁ । ଏହି ଗଛ ସ୍ମର୍ଣ୍ଣ ଅଞ୍ଚଳରେ ଏବେ ମଧ୍ୟ ଅଛି । ଆମେ ଯାହାକୁ ଯୋରିଷ କହୁ ତାହା ପ୍ରକୃତରେ ବୋଟାନିରେ ରେପ୍ ବୁଦା । ଏଥିରେ ପ୍ରକୃତ ଯୋରିଷର ଗୁଣ ଶତକଡ଼ା ୧୦ ଭାଗରୁ ବେଶି ନାହିଁ । ଭାରତବର୍ଷରେ କବିରାଜମାନେ ପୂର୍ବେ ଯୋରିଷ ତେଲ ସ୍ମର୍ଣ୍ଣ ମଗାଉଥିଲେ ।" କାଲଡ୍ ଉଏଲ ସାହେବ ଏତିକିରେ କାବୁ ହୋଇ ସେଠାରୁ ପଳାଇଗଲେ । ଗଲାବେଳେ ସେ

ଯୋଗେଶବାବୁଙ୍କୁ ଅତ୍ୟନ୍ତ ଶ୍ରଦ୍ଧା ଭକ୍ତି ଦେଖାଇ ଯାଇଥିଲେ ।

ଆମେ ନାମ ଲେଖାଇଲା ବେଳେ କଲେଜରେ ଦୁଇଜଣ ଆଇ.ଇ.ଏସ୍. ଅଧ୍ୟାପକ ଥିଲେ। ଜଣେ ହେଉଛନ୍ତି ପି.ଓ. ହୁଇଟ୍‌ଲକ୍ ଏବଂ ଅନ୍ୟ ଜଣକ ଇତିହାସ ଅଧ୍ୟାପକ ରସ୍ ମସୁଦ । ସେ ମହାଶୟ ଅତ୍ୟନ୍ତ ପଣ୍ଡିତ ଏବଂ ମହାଭାରତ ବର୍ଣ୍ଣିତ ଦ୍ରୋଣଙ୍କର ଶକଟ ବ୍ୟୂହ ଉପରେ ଏକ ପ୍ରାମାଣିକ ପ୍ରବନ୍ଧ ଫରାସୀ ଓ ଇଟାଲୀର ପତ୍ରିକାରେ ପ୍ରକାଶ କରିଥିଲେ । ତାଙ୍କର ପାଠପଢ଼ା ପ୍ରଣାଳୀ ମଧ୍ୟ ସମ୍ପୂର୍ଣ୍ଣ ମୌଳିକ ଥିଲା । ଘରୋଇ ଶ୍ରେଣୀ ପରୀକ୍ଷାରେ ସେ ସାତଦିନ ପୂର୍ବରୁ ପରୀକ୍ଷାର୍ଥୀଙ୍କୁ ପ୍ରଶ୍ନ କହିଦେଇ ଥିଲେ ଏବଂ ବହି ନେଇ ପରୀକ୍ଷା ଦେବାକୁ ଅନୁମତି ଦେଇଥିଲେ । ତେବେ ସର୍ତ୍ତ କରିଥିଲେ ଉତ୍ତର ମୌଳିକ ଓ ନିଜ ଭାଷାରେ ହେବ ଆଉ ଶତକଡ଼ା ୭୦ ନମ୍ବର ନ ପାଇଲେ ତାହା ଫେଲ୍ ବୋଲି ଧରାଯିବ । ଏପରି ପରୀକ୍ଷାରେ ମୋର ଭାଇ ପ୍ରଥମ ହେଲେ ମଧ୍ୟ ଫେଲ୍ ହୋଇଥିଲେ । କାରଣ ସେ ପଚାଶରୁ ବେଶି ନମ୍ବର ପାଇ ନ ଥିଲେ । ଏଥିରୁ ବୁଝା ଯାଉଛି ଅଧ୍ୟାପକ ମସୁଦ ପରୀକ୍ଷକ ରୂପେ ଅତି କଡ଼ା ଥିଲେ । ସେ ଅତି ଉଦାର ଓ ବଳବାନ୍ ମଧ୍ୟ ଥିଲେ । ଗପ ଛଳରେ ସେ ଇତିହାସର କାହାଣୀମାନ କହୁଥିଲେ । ସେ କଟକରେ ରହିବାକୁ ପସନ୍ଦ ନ କରି ହାଇଦ୍ରାବାଦ ନିଜାମଙ୍କର ଡି.ପି.ଆଇ. ଓ ସେଠାରୁ ଆଲୀଗଡ଼ କଲେଜର ଅଧ୍ୟକ୍ଷ ହୋଇଯାଇଥିଲେ । ଆଜିକାଲି ଦେଶ ସାରା ପରୀକ୍ଷାର ରୂପରେଖ ଓ ଧାରା ନେଇ ନାନାଦି ପ୍ରକାର ଛାତ୍ର ଆନ୍ଦୋଳନ ଭଙ୍ଗା ରୁଜା କାମ ଚାଲିଅଛି ଅଥଚ ୫୦ ବର୍ଷ ପୂର୍ବେ ମସୁଦ ସାହେବ ସ୍ୱେଚ୍ଛାରେ ଛାତ୍ରମାନଙ୍କୁ ସେହି ସୁବିଧା ଦେଇଥିଲେ ।

ଓଡ଼ିଆ ଅଧ୍ୟାପକମାନଙ୍କ ମଧ୍ୟରେ ପ୍ରବୀଣ ଥିଲେ ଶ୍ରୀ ମୋହିନୀ ମୋହନ ସେନାପତି ଓ ଶ୍ରୀ କାଶୀନାଥ ଦାସ । କାଶୀବାବୁ କହୁଥିଲେ ତାଙ୍କର ବୁଦ୍ଧି ବେଗବେଗ । ଏଣୁ ସେ ଜାଣିବା କଥା ପାସୋରି ପକାନ୍ତି । ମୋହିନୀବାବୁ ସବୁବେଳେ ଗୁରୁଗମ୍ଭୀର ଚିନ୍ତାଶୀଳ । ସେ ନାସ୍ତିକବାଦୀ ଏବଂ ନିଟ୍‌ଜେଙ୍କ ଦର୍ଶନରେ ଅନୁପ୍ରାଣିତ ହୋଇ ୨/୩ ଗୋଟି ପ୍ରବନ୍ଧ ଲେଖିଥିଲେ । କ୍ଲାସ୍‌ରେ ସେ ଅନେକ ସମୟରେ ନିଜ ଚିନ୍ତାରେ ବିଭୋର ରହୁଥିଲେ । ଦିନେ ହଠାତ୍ ସେ ପ୍ରଶ୍ନ କଲେ "ତୁମେ ରାମକୃଷ୍ଣ ପରମହଂସ କଅଣ କନିକାରାଜାଙ୍କ ଅପେକ୍ଷା ଅଧିକ ସୁଖୀ ଥିଲେ ?" ସେ ଯୁଗରେ ବେତଧରି ମୋହିନୀବାବୁ ଯଦୁନାଥ ଦାସ ନାମକ ଜଣେ ତୃତୀୟ ବାର୍ଷିକ ଛାତ୍ରକୁ ଭଡ଼ାଭଡ଼ ମାଡ଼ ଦେଇଥିଲେ । ଯଦୁନାଥ ପ୍ରତିକାର ଲୋଡ଼ି କଲେଜରୁ ବିତାଡ଼ିତ ହେଲେ । ସେ ପୋଲିସ୍ ସବ୍-ଇନ୍‌ସପେକ୍ଟର କାମ ଗ୍ରହଣ କରିଥିଲେ ।

ଇଂରେଜୀ ଅଧ୍ୟାପକ ହୁଇଟ୍‌ଲକ୍ ସାହେବ ପ୍ରଥମେ କାର୍ଯ୍ୟରେ ଯୋଗ ଦେଇ ଛାତ୍ରମାନଙ୍କ ପ୍ରତି ବନ୍ଧୁ ଭଳି ବ୍ୟବହାର କରୁଥିଲେ । ମିଲଟନ୍‌ଙ୍କ କବିତା ପଢ଼ାଇଲା ବେଳେ ଆମେ ତାଙ୍କୁ ଅର୍ଥ ପଚାରିଲେ କହୁଥିଲେ ସେ ବହିର ଲେଖାକୁ ଆଉ ସରଳ କରିପାରିବେ ନାହିଁ ।

•

---

***ରେଭେନ୍‌ସା କଲେଜ ଶତବାର୍ଷିକୀ ବିଶେଷାଙ୍କ,*** କଟକ, ୧୯୬୦

# ମୋର କଲେଜ ସ୍ମୃତି

## ନୀଳକଣ୍ଠ ମହାପାତ୍ର

୧୯୧୯ ମସିହାରେ ମାଟ୍ରିକ ପାସ୍ କରି କଲେଜକୁ ଗଲି । ସେତେବେଳେ ଓଡ଼ିଶାରେ କଲେଜ କହିଲେ ରେଭେନ୍‌ସା କଲେଜ ବୁଝାଉଥିଲା । ତାହା କାଠଯୋଡ଼ି କୂଳରେ କିଲଟରୀ କଚେରି ପାଖରେ ଅବସ୍ଥିତ ଥିଲା । ସେହି କଲେଜର କେତେକ ଅଂଶରେ ବର୍ତ୍ତମାନ ଜିଲ୍ଲାଜଜଙ୍କ ଓ ସବ୍‌ଜଜଙ୍କ ଅଦାଲତ ହେଉଅଛି ଏବଂ ଅପର ଅଂଶଟି କଲେଜିଏଟ୍ ସ୍କୁଲ ରୂପେ ବ୍ୟବହୃତ ହେଉଛି ।

ପ୍ରାୟ ବର୍ଷକ ତଳେ - ୧୯୬୯ ମଧ୍ୟଭାଗରେ କାର୍ଯ୍ୟବଶତଃ ମୁଁ ଜଜ୍‌କୋର୍ଟକୁ ଯାଇଥିଲି । ୫୦ ବର୍ଷ ତଳର ସ୍ମୃତି ଜାଗି ଉଠିଲା । ଯେଉଁ ରୁମ୍‌ରେ ଆମର ଜେନେରାଲ କ୍ଲାସ୍ ହେଉଥିଲା ସେଥିରେ ଜଜ୍‌ସାହେବଙ୍କ ନାମ ଲେଖା ପ୍ଲେଟ୍ ମରାଯାଇଛି । ଚପରାସୀ ଜଣେ ବସିଥାଏ, କିନ୍ତୁ ରୁମ୍ ବନ୍ଦ । ଦେଉଳ ଅଛି; ଠାକୁର ନାହାନ୍ତି । ଶୁଣିଲି ହାକିମ ସେଦିନ ଆସି ନାହାନ୍ତି । ମୁଁ ସେଠାରେ ଟିକିଏ ଏ ପାଖ ସେ ପାଖ ହେଉଥିବାର ଦେଖି ଚପରାସୀ ପଚାରିଲା "କାହାକୁ ଖୋଜୁଛନ୍ତି ?" ମୁଁ ହଠାତ୍ କିଛି ଉତ୍ତର ଦେଲି ନାହିଁ । ସେ ବୋଧହୁଏ ଟିକିଏ ବିରକ୍ତ ହୋଇ ମୋ ପାଖକୁ ଆସି ତାହାର ପ୍ରଶ୍ନର ପୁନରାବୃତ୍ତି କଲା । ମୁଁ କହିଲି "ନାହିଁ, କାହାକୁ ଖୋଜୁ ନାହିଁ ।" ସେତେବେଳେ କଟକରେ କ'ଣ ଗୋଟାଏ ଗଣ୍ଡଗୋଳ ହୋଇଥାଏ । ଚପରାସୀ ବିଚରାର ବୋଧହୁଏ କିଛି ଆଶଙ୍କା ହେଲା କି କ'ଣ, ସେ ଯାଇ ଜଣେ ବାବୁଙ୍କୁ ଡାକି ଆଣିଲା । ସେ ପଚାରିବାରୁ ମୁଁ କହିଲି ଯେ ୫୦ ବର୍ଷ ତଳେ ମୁଁ ସେଇ ରୁମ୍‌ରେ ପଢୁଥିଲି । ମନ ହଉଛି ଟିକିଏ ଭିତରକୁ ଯାଇ ଦେଖିବାକୁ । ଭଦ୍ରଲୋକଟି ଟିକିଏ ଚିନ୍ତା କରିଲା ପରେ ଦ୍ୱାର ଖୋଲି ଦେଲେ । ମୁଁ ଭିତରକୁ ଯାଇ ୧୦/୧୨ ମିନିଟ୍ ଚାରିଆଡ଼କୁ ଚାହିଁଲି । କେତେ କଥା ମନେ ପଡ଼ିଗଲା । ମନେପଡ଼ିଲା ଯେଉଁଠାରେ ଉଚ୍ଚ ଟେବୁଲ୍ ପଡ଼ିଥିଲା ଏବଂ ଯେପରି ସେ ଟେବୁଲ୍ ପାଖରେ ଠିଆହୋଇ ଅଧ୍ୟାପକ ରତ୍ନାକର ପତି ବଜ୍ରଗମ୍ଭୀର ସ୍ୱରରେ ଲଜିକ୍ ପଢ଼ାଉଥିଲେ । ଅଧ୍ୟାପକ ଦାସବର୍ମା ଧୀର ମଧୁର ଭାବରେ ଇଂରାଜୀ ପଦ୍ୟ ବୁଝାଉଥିଲେ । ଅଧ୍ୟାପକ ଦୌର୍ଗଦତ୍ତୀ ଅନର୍ଗଳ ସଂସ୍କୃତରେ ବକ୍ତୃତା ଦେଇ ଭଟ୍ଟି କାବ୍ୟର ବ୍ୟାଖ୍ୟା କରୁଥିଲେ ଇତ୍ୟାଦି, ମତେ ଯେପରି

ଦିଶି ଯାଉଥାଏ ସେମାନଙ୍କର ରୂପ ଓ ଶୁଭିଯାଉଥାଏ ତାଙ୍କର ଲେକ୍‌ଚର। ଆମେ ପିଲାଏ ଯେ ଯେଉଁଠି ବସିଥିଲୁ, ତାହା ମଧ୍ୟ ଅଳ୍ପ-ବହୁତ ମନେ ପଡ଼ିଗଲା, କିନ୍ତୁ ହାୟ, ଲେକ୍‌ଚର ଦିଆହେଉଥିବା ସ୍ଥାନରେ ଏବେ ଗୋଟିଏ କାଠଗଡ଼ା ସହିତ କୋର୍ଟ ଠିଆ ହୋଇଛି ଏବଂ ଆମ ବସିବା ଜାଗା ଓକିଲ ମହକିଲଙ୍କ ପାଇଁ ଉଦ୍ଦିଷ୍ଟ ଆସନମାନଙ୍କରେ ପୂର୍ଣ୍ଣ ! କି ଥିଲା ! କି ହେଲା ! ମୁଁ ବୋଧହୁଏ ଟିକିଏ ଭାବପ୍ରବଣ ହୋଇ ସେଠାରେ ବେଶି ସମୟ ଠିଆ ହେବାର ଦେଖି ବାବୁକଣକ "ଚାଲନ୍ତୁ, ଯିବା" ବୋଲି କହିଲେ। ମୁଁ ବାହାରି ଆସିଲି।

ଗତବର୍ଷ କଲେଜିଏଟ୍ ସ୍କୁଲର ପୁରସ୍କାର ବିତରଣୀ ଉତ୍ସବକୁ ଯାଇଥିଲି। ସେ ସ୍କୁଲ ତ ପୂର୍ବ ରେଭେନ୍‌ସା କଲେଜର ଅପର ଅଂଶରେ ହେଉଛି। ଭିତରକୁ ଗଲା ବେଳକୁ ଗୋଟିଏ କ୍ଷୁଦ୍ର ବଗିଚ଼ା ଦେଖିଲି। ଏଇଟି ପୂର୍ବ କଲେଜର ବଟାନିକାଲ କ୍ଷୁଦ୍ର ବଗିଚ଼ା ଦେଖିଲି। ଏଇଟି ପୂର୍ବ କଲେଜର ବଟାନିକାଲ ଗାର୍ଡନର 'ଭଗ୍ନାବଶେଷ', ଯେପରିକି ତାହାର ପ୍ରତିଷ୍ଠାତା ତତ୍‌କାଳୀନ ବୋଟାନି ଅଧ୍ୟାପକ ଯୋଗେଶଚ଼ନ୍ଦ୍ର ରାୟଙ୍କୁ ଝୁରି ଝୁରି କାନ୍ଦୁଛି। ବୃଦ୍ଧ ରାୟଙ୍କର ରଙ୍ଗିନ ଛତାଧରି ଧୀର ପଦଚ଼ାରଣ ଓ ପ୍ରତ୍ୟେକ ବୃକ୍ଷଲତା ପ୍ରତି ଦୈନନ୍ଦିନ ସସ୍ନେହ ଯତ୍ନ ନିଶ୍ଚୟ ତା'ର ମନେ ପଡ଼ିଥିବ। ଆଉ ମନେଥିବ ସୂର୍ଯ୍ୟଘଡ଼ିଟି, ଯାହାକି ତା' ବକ୍ଷରୁ ଅପସାରିତ ହୋଇ କିଛିକାଳ ନୂତନ କଲେଜ ପ୍ରାଙ୍ଗଣକୁ ଶୋଭିତ କରି ଏବେ କୌଣସି ପାଷଣ୍ଡର କରାଳ ଅର୍ଥଲିପ୍‌ସାର ଶିକାର ହୋଇ ଚୂର୍ଣ୍ଣୀଭୂତ ହୋଇଯାଇଛି।

ପ୍ରାଇଜ୍ ଶେଷରେ ଫେରିଲାବେଳକୁ ରାତି। ରିକ୍‌ସା ପାଇଁ ଗେଟ୍ ପାଖରେ ଅପେକ୍ଷା କଲାବେଳେ ଅନତିଦୂରରେ ପାଚ଼ିରି ପାଖରେ ଗୋଟିଏ ସ୍ଥାନ ପ୍ରତି ମୋର ମନ ଆକୃଷ୍ଟ ହେଲା। ଏ କଲେଜରେ ପଢ଼ିଲାବେଳେ ପ୍ରାୟ ପ୍ରତିଦିନ ସେ ସ୍ଥାନକୁ ମୁଁ ଟିକିଏ ଚାହେଁ। ମୁଁ ସ୍କୁଲ ଛାତ୍ର ଥିଲା ବେଳେ ପ୍ରାୟ ୬୦ ବର୍ଷତଳେ ବାର ବର୍ଷ ବା ତନ୍ନିମ୍ନ ବୟସର ସ୍କୁଲଛାତ୍ରମାନଙ୍କୁ ଏଇଠାରେ ବସାଇ ଦିଆଯାଇଥିଲା - ବଡ଼ଲାଟଙ୍କୁ ଦେଖିବାକୁ। ବଡ଼ ପିଲା ଆସିବାକୁ ମନା। ମୁଁ ସେଥି ମଧ୍ୟରେ ଥିଲି। ମଟର କେତେ ଖଣ୍ଡ ଆମ ଆଗଦେଇ କଲେଜ ଗେଟ୍ ଭିତରକୁ ଗଲା। କହୁଥାନ୍ତି ଲର୍ଡହାର୍ଡିଞ୍ଜ ବୋଲି।

ଯାହାହେଉ, ଏ କଲେଜରେ ଦୁଇବର୍ଷ କଟାଇ ଆଇ.ଏ. ପରୀକ୍ଷା ଦେଇ ଗାଁକୁ ଗଲି। ଯଥା ସମୟରେ ଥାର୍ଡ ଇୟରରେ ନାମ ଲେଖାଇବାପାଇଁ ଦରଖାସ୍ତ ଦେଲି। ପ୍ରିନିସ୍‌ପାଲଙ୍କ ଠାରୁ ଯେଉଁ ଚିଠି ମିଳିଲା ସେଥିରେ ଅନ୍ୟାନ୍ୟ ବିଷୟ ମଧ୍ୟରେ ନୂଆ କଲେଜରେ ନାମ ଲେଖାଇବାକୁ ଲେଖାଥିଲା।

ନୂଆ କଲେଜର ନିର୍ମାଣ ମୁଁ ମୂଳରୁ ଦେଖିଛି। ୧୯୧୬ରେ ଏହାର ଭିତ୍ତିସ୍ଥାପନ କଲେ ତତ୍‌କାଳୀନ ବିହାର ଓଡ଼ିଶାର ଗଭର୍ଣ୍ଣର ସାର୍ ଏଡ୍‌ୱାର୍ଡ ଗେଟ୍। ଉତ୍ସବରେ ଦେଖଣାହାରି ସ୍କୁଲପିଲାଙ୍କ ମଧ୍ୟରେ ମୁଁ ଥିଲି। ତା'ପରେ କାମ ଆରମ୍ଭ ହେଲା। ଛୁଟିରେ ଗାଁକୁ ଯିବାପାଇଁ

ଷ୍ଟେସନକୁ ଏଇ ବାଟେ ଯିବାକୁ ପଡ଼େ । ମୁଁ କେତେଥର ଦେଖିଛି ମୂଲିଆ ମିସ୍ତ୍ରି ଲାଗିଥାନ୍ତି ଏବଂ ଯୋଡ଼ିବଳଦ ଯୋଚ୍ଚା ହୋଇ ଚୂନ ଘଣି ପଡୁଥାଏ । ସେତେବେଳକୁ ସିମେଣ୍ଟ କାରବାର କମ୍ ।

ଯାହାହେଉ, ନାଁ ଲେଖେଇବାକୁ ନୂଆ କଲେଜରେ ପହୁଞ୍ଚିଲି । ଏଡ଼େ ବଡ଼ ଘର ପୂର୍ବରୁ ମୁଁ ତ କେବେ ଦେଖି ନ ଥିଲି । ସେ ପ୍ରକାଣ୍ଡ ଅଟ୍ଟାଳିକା ମଧ୍ୟରେ କୁଆଡ଼େ କ'ଣ ଜାଣିବାକୁ ସମୟ ଲାଗିଲା । ସମସ୍ତେ ନୂଆ ପିଲାଙ୍କ ଠାରୁ ମାଷ୍ଟରଙ୍କ ପର୍ଯ୍ୟନ୍ତ । ନାଁ ଲେଖା ହେଲା । ତା'ପରେ ଫଂଖା ଫଂଖା ହୋଇ ଆମେ ପିଲାଏ ସବୁଆଡ଼ ବୁଲିଲୁଁ । ସାଇନ୍‌ସ ବ୍ଲକ୍ ଦୁଇପାଖ ହଷ୍ଟେଲ୍ ବୁଲି ଦେଖୁଥାଉଁ । କେତେକ କ୍ଲାସ୍ ରୁମ୍‌ମାନଙ୍କରେ ବେଞ୍ଚ ଟେବୁଲ ପଡ଼ି ନ ଥାଏ । ପୁରୁଣା କଲେଜରୁ ଜିନିଷପତ୍ର ବଳଦଗାଡ଼ିମାନଙ୍କରେ ବୁହା ଚାଲିଥାଏ । ନୂଆ ଟେବୁଲ୍, ଚୌକି, ଖଟ ସବୁ ମଧ୍ୟ ହଷ୍ଟେଲ୍‌ରେ ପଡୁଥାଏ ।

ମୁଁ ହଷ୍ଟେଲ୍‌ରେ ରହିବାକୁ ଦରଖାସ୍ତ କରିଥିଲି । ପଶ୍ଚିମ ଛାତ୍ରାବାସରେ ରହିବାକୁ ମିଳିଲା । ପୁରୁଣା କଲେଜ ଟାଉନ ଭିତରେ ଥିବାରୁ ଏବଂ ସେଠାକାର ହଷ୍ଟେଲଟି ଛୋଟ ଥିବାରୁ ପ୍ରାୟ ସବୁ ପିଲା ବାହାରେ ରହି ପଢୁଥିଲେ । ନୂଆ କଲେଜ ଟାଉନରୁ ଦୂର । ପ୍ରତିଦିନ ଯିବାଆସିବା ଦୁଃସାଧ୍ୟ । ସୁତରାଂ ଅନେକେ ପ୍ରମାଦ ଗଣିଲେ । ଆସ୍ତେ ଆସ୍ତେ ହଷ୍ଟେଲ୍ ମୁହାଁ ହେଲେ । ମୁଁ ମଧ୍ୟ ଅନ୍ୟ ଉପାୟ ନ ଦେଖି ଜିନିଷପତ୍ର ନେଇ ହଷ୍ଟେଲ୍‌କୁ ଆସିଲି । ଉତ୍ତରପଟ ଉପରମହଲା ସିଙ୍ଗ୍‌ଲ ସିଟେଡ଼ ବ୍ଲକର ଛାତ ପଡୁଥାଏ । କୂଅ ଗୋଟିଏ ଖୋଳା ହୋଇଥାଏ । ମୁଁ ଆସିଲା ଦିନ ସେଥିରେ ପାରାପିଟ ତିଆରି ହେଲା । ମୋଟେ ୧୫/୨୦ ଜଣ ପିଲା ଆସିଥାନ୍ତି । ଅଳ୍ପ କେତୋଟି ରୁମ୍‌ରେ ଥାନ୍ତି । ଯାହାର ଯେଉଁଠି ଇଚ୍ଛା । ବାକି ରୁମ୍‌ଗୁଡ଼ିକ ଖାଲି ପଡ଼ିଥାଏ ।

ମେସ୍ ଦୁଇଟି ଆରମ୍ଭ କରାଗଲା । ରୋଷେଇ ବ୍ଲକ୍‌ଟା ପ୍ରାୟ ଖାଲି । ଆମ ମେସ୍ ଦୁଇଟି ରୁମ୍ ଅଧିକାର କଲା-ଗୋଟିକରେ ରୋଷେଇ, ଆରଟିରେ ଖିଆପିଆ । ଅନେକ ଅସୁବିଧା ଦେଖାଗଲା । ନିକଟରେ ବଜାର ବସି ନ ଥାଏ । ଜଳଖିଆ ଦୋକାନ ନ ଥାଏ । କୁଞ୍ଜ ବେହେରା ନାମକ ଜଣେ ଲୋକ (ଯେ କି ପୁରୁଣା କଲେଜରେ ଖୁଆ ପେଡ଼ା ବିକୁଥିଲେ) ପ୍ରତିଦିନ ଖିରିମୋହନ ଓ ସନ୍ଦେଶ ଆଣି ହଷ୍ଟେଲ୍‌ରେ ବିକିବାକୁ ଆରମ୍ଭ କଲେ । ଅଳ୍ପ ଦିନପରେ ସେ ରୋଷେଇ ବ୍ଲକ୍‌ରେ ଦୁଇଟି ରୁମ୍ ନେଇ ଗୋଟିଏ ଜଳଖିଆ ଦୋକାନ ଖୋଲିଲେ । ଛ'ଟି ପଇସାକୁ ପୁରୀ, ରସଗୋଲା ଓ ତରକାରି ମିଳିଯିବାରୁ ସାଧାରଣବିତ୍ତ ପିଲାମାନଙ୍କର ଅସୁବିଧା ଦୂର ହୋଇଗଲା । ସ୍ଲିପ୍ ଲେଖି ଦେଲେ ବାକିରେ ଜଳଖିଆ ମିଳିଯାଏ । ଅନେକେ ମାସ ଶେଷରେ ପଇସା ଦିଅନ୍ତି ।

ଦିନେ ହଷ୍ଟେଲ୍‌ରେ ଦୁଇଜଣଙ୍କ ମଧ୍ୟରେ ବାଜି ପଡ଼ିଲା, ଯେ ଟଙ୍କାକର ସନ୍ଦେଶ ଖାଇଦବ ସେ ଆରଜଣଙ୍କ ଠାରୁ ପାଞ୍ଚଟଙ୍କା ପାଇବ । ଟଙ୍କାକୁ ଷୋଳଟା ବଡ଼ ବଡ଼ ସନ୍ଦେଶ । ଆଜି ଦିନରେ

ଗୋଟାକ ୫୦ ପଇସାରୁ ବେଶି ହେବ । ଖାଇବା ଆରମ୍ଭ ହେଲା । ଦଶଟା ସନ୍ଦେଶ ସହଜରେ ଚାଲିଗଲା । ତେଣିକି ଖାଇବା ଝିମେଇଲା । ଚଉଦ ବେଳକୁ ଅଇ ଆରମ୍ଭ । ଡାକି ଡାକି କୌଣସିମତେ ପନ୍ଦର ପାର ହେଲା । ବାନ୍ତି ବାହାରିବା ଉପରେ । ଶେଷ ସନ୍ଦେଶଟି ପାଟିରେ ପକାଇ ଏକାଥରକେ ଗିଳିଦେବା ମାତ୍ରେ, ସବୁ ବାହାରି ପଡ଼ିଲା । ଦଳେ କହିଲେ ବାଜି ହାର ହେଲା । ଆଉ ଦଳେ କହିଲେ ଜିତ୍ ହେଲା । ଶେଷରେ ନିଷ୍ପତ୍ତି ହେଲା ଯେ ଶେଷ ସନ୍ଦେଶଟି ପେଟ ଭିତରକୁ ଯିବା ମାତ୍ରେ ଖାଇବା କ୍ରିୟା ସମ୍ପୂର୍ଣ୍ଣ ହେଲା । ସୁତରାଂ ବାଜି ଜିତା ହେଲା ।

ଅଧ୍ୟାପକ ନାରାୟଣ ମିଶ୍ର ଥାନ୍ତି ଆମ ହଷ୍ଟେଲ୍‌ର ଉପରମହଲାର ସୁପରିଣ୍ଟେଣ୍ଡେଣ୍ଟ ଏବଂ ତାଙ୍କ ରହିବା ଘର ଆମ ସିଙ୍ଗଲ୍‌ସିଟ୍ ବ୍ଲକ୍‌କୁ ଲାଗିକରି, ବଡ଼ିସକାଳୁ ତାଙ୍କ ଦୁଇ ବର୍ଷର ପୁଅ (ବର୍ତ୍ତମାନ ମତ୍ସ୍ୟବିଭାଗର ନିର୍ଦ୍ଦେଶକ) ଖାଲି ଦେହରେ ହଷ୍ଟେଲ୍ ବାରଣ୍ଡାରେ ବୁଲେ । ପାଠପଢ଼ାର କଠୋର ବାୟୁମଣ୍ଡଳ ମଧ୍ୟରେ ପିଲାଟିର ଉପସ୍ଥିତି ଟିକିଏ ଆଶ୍ୱସ୍ତି ଆଣେ ।

ପରିଜା ସାହେବ ବିଲାତରୁ ଆସିଲେ ହଷ୍ଟେଲ୍‌ର ଓ୍ୱାର୍ଡନ ହେବେ-ସେଥିଲାଗି ଓ୍ୱାର୍ଡନ କ୍ୱାର୍ଟର ଖାଲି ଥାଏ । ୨/୩ ମାସ ପରେ ସେ ଆସିଲେ । ସେ କାଳର ବିଲାତ ଫେରନ୍ତାଙ୍କୁ ଦେଖିବାକୁ ଆମର ବ୍ୟାକୁଳତା ଆଜି ମନେ ପଡୁଛି । ଦେଖିଲୁ, ପୋଷାକପତ୍ର, କାଇଦା କଟକଣା ସାହେବୀ । ଓଡ଼ିଆ କଥା ଜାକି ଜାକି କହିଲା ପରି ବୋଧ ହେଉଥାଏ । କିନ୍ତୁ ତାଙ୍କର ଆମପ୍ରତି କୌଣସି କର୍କଶତା ନ ଥିଲା । ବରଂ ନାରଣବାବୁଙ୍କ ଗମ୍ଭୀରିଆ ମୁହଁକୁ ଆମେ ଦହସତ୍ କରୁଁ । ଯାହାହେଉ, ଏହି ସମୟରେ ପରିଜାଙ୍କର ବିବାହ ହେଲା । ଆମେ ଆଶା କରିଥିଲୁଁ ହଷ୍ଟେଲ୍‌ରେ ଭୋଜି ମିଳିବ; କିନ୍ତୁ ନିରାଶ ହେଲୁଁ ।

କନିକା ଲାଇବ୍ରେରୀ ଘର ତିଆରି ଚାଲିଥାଏ । ପ୍ରାୟ ବର୍ଷକ ପରେ ସରିଲା । ବଳଦଗାଡ଼ିମାନଙ୍କରେ ବହିସବୁ ପୁରୁଣା କଲେଜରୁ ଆସି ଯଥାସ୍ଥାନରେ ରଖାଯିବାକୁ ବି ଅନେକ ଦିନ ଲାଗିଲା । ଲାଇବ୍ରେରୀୟାନ ଦାମବାବୁ ସବୁ ପିଲାଙ୍କୁ ସ୍ନେହ ଚକ୍ଷୁରେ ଦେଖୁଥାନ୍ତି ଏବଂ ଆମେ ତାଙ୍କୁ ଭକ୍ତି କରୁଁ ।

ଏବେ ୪ ମାସ ତଳେ କାର୍ଯ୍ୟବଶତଃ କନିକା ଲାଇବ୍ରେରୀକୁ ଯାଇଥିଲି । ଆମ କାଳର ଶିଶୁ ପୁସ୍ତକାଳୟଟି ଏବେ ବଡ଼ି ଯୌବନରେ ପଦାର୍ପଣ କଲାଣି । ଢାଞ୍ଚା ବଦଳିଗଲାଣି । କାମସାରି ବାହାରିଲା ବେଳକୁ ହଷ୍ଟେଲ୍ ଆକର୍ଷଣକୁ ଏଡ଼ି ନ ପାରି ସେ ଦିଗରେ ଗଲି । ବାଟରେ ଓ୍ୱାର୍ଡନ କ୍ୱାର୍ଟର । ଯେଉଁଠାରେ ଆମେ ଓ୍ୱାର୍ଡନଙ୍କୁ ଦେଖା କରୁଥିଲୁଁ । ସେ ଘରେ ଦେଖିଲି କ୍ଲାସ୍ । ପଚାରି ବୁଝିଲି ଓ୍ୱାର୍ଡନ ପୋଷ୍ଟ ଉଠିଗଲାଣି । ଆମ ବେଳେ ମଧ୍ୟ ଏହାର ଆବଶ୍ୟକତା ଜଣା ଯାଉନଥିଲା ।

ହଷ୍ଟେଲ୍‌କୁ ଗଲି । ଉପରମହଲାକୁ ଉଠି ଦୀର୍ଘ ଦୁଇବର୍ଷ ଯେଉଁ ସିଙ୍ଗଲ୍‌ସିଟେଡ୍ ରୁମ୍‌ରେ

କଟାଇଥିଲି ତାହା ଆଗରେ ୧୦ ମିନିଟ୍ ପର୍ଯ୍ୟନ୍ତ ଠିଆହୋଇ ସବୁଆଡ଼କୁ ଚାହିଁଲି । ଅନେକ ସ୍ମୃତି ଜାଗି ଉଠିଲା । ତତ୍କାଳୀନ ବନ୍ଧୁ ଓ ସହପାଠୀମାନଙ୍କ କଥା ମନେ ପଡ଼ିଲା । ପ୍ରଧାନ ବାରଣ୍ଡାକୁ ଗଲି । କମନ୍ ରୁମ୍ ପାଖ ରୁମ୍‌ଟି ବିଶେଷ ଭାବରେ ଲକ୍ଷ୍ୟ କଲି । କାଳିଦାସ ରଘୁବଂଶରେ ଗୋଟିଏ ସ୍ଥାନର ଉଲ୍ଲେଖ କରି ଲେଖିଛନ୍ତି ଯେ ସେଠାରୁ ସବୁବେଳେ ମୃଦଙ୍ଗଘୋଷ ଶୁଣାଯାଉଥିଲା । ସେହିପରି ଏଇ ରୁମ୍‌ଟିରେ ସେ ସମୟରେ ପ୍ରାୟ ସର୍ବଦା ଖେଳକୌତୁକ ଚାଲିଥିଲା । ଦିନେ ଦିନେ ତାସ୍ ଖେଳରେ ରାତି ପାହିଯାଏ । ଦିନେ ସୁପରିଣ୍ଟେଣ୍ଡେଣ୍ଟ ରାତି ଅଧିରେ ଏମାନଙ୍କୁ ଧଇଲେ । ଗାଳିଗୁଲଜ କଲେ ।

ଦିନକର କଥା ମନେ ପଡ଼ିଲା । ଗଭର୍ଣ୍ଣର ଆସିଥିଲେ ହଷ୍ଟେଲ୍ ଦେଖିବାକୁ । ହୁକୁମ୍ ଥିଲା ସମସ୍ତେ ନିଜ ନିଜ ରୁମ୍‌ରେ ରହିବେ; କେହି ବାରଣ୍ଡାକୁ ବାହାରିବେ ନାହିଁ । ଆମ ସିଙ୍ଗ୍‌ଲସିଟେଡ୍ ବ୍ଲକ୍ ଆଡ଼କୁ ଗଭର୍ଣ୍ଣର ଯିବେ ନାହିଁ ବୋଲି ଅନୁମାନ କରି ଆମ୍ଭେମାନେ ନିକଟବର୍ତ୍ତୀ ଗୋଟିଏ ବଡ଼ ରୁମ୍‌ରେ ରହି ଗଭର୍ଣ୍ଣରଙ୍କୁ ଦେଖିବାକୁ ଅପେକ୍ଷା କରିଥାଉଁ । ସେ ଆସିଲେ । ଆଗେ ଆଗେ ଅଳ୍ପ ଦୂରରେ ସେ ସମୟର ଦୁର୍ଦ୍ଧାନ୍ତ ପୋଲିସ୍ ସୁପରିଣ୍ଟେଣ୍ଡେଣ୍ଟ ଶ୍ରୀକୃଷ୍ଣ ମହାପାତ୍ର ବୀରପରି ଚାଲିଥାନ୍ତି । ଆମେ ଥିବା ରୁମ୍‌କୁ ଚାହିଁ ଦେଇ ଆଗେଇ ଯାଉ ଯାଉ ହଠାତ୍ ଫେରିପଡ଼ି ଭିତରକୁ ଚାହିଁ ଚାଲିଗଲେ । ଉପରଓଳି କେତେକଣ ପୋଲିସ୍ ଅଫିସର ଆସି କ'ଣ ପଚରାପଚରି କଲେ । ଆମେ ଟିକିଏ ଡରିଗଲୁଁ ।

ବିଜୁଳି ସରବରାହ ସେତେବେଳେ ନ ଥିଲା । ବିଦିଆ ପିଅନ ଗୋଟିଏ ଗୋଟିଏ କାଚ ଲାମ୍ପ୍ ପରିଷ୍କାର କରି ଜଳାଇ ଥୋଇ ଦେଇଯାଏ ଏବଂ ସକାଳୁ ନେଇଯାଏ । ଖିଅରବାଆର କରିବାକୁ ଦୁଇଜଣ ବାରିକ ସକାଳୁ ଆସି ବ୍ୟାଗଧରି ବୁଲନ୍ତି । ବାରଣ୍ଡାରେ ଚୌକି ପକେଇ ବାଳ କାଟନ୍ତି । ତାଙ୍କ ମଧ୍ୟରୁ ରଘୁଆ ଏପର୍ଯ୍ୟନ୍ତ ଅଛି କିନ୍ତୁ ହଷ୍ଟେଲ୍‌କୁ ଯାଉ ନାହିଁ । ଟାଉନରେ ସମୟ ସମୟରେ ଦେଖା ହୁଏ । ତା' ପୁଅ ଚାକିରିବାକିରି କଲେଣି; କିନ୍ତୁ ସେ ତା' ବ୍ୟବସାୟ ଛାଡ଼ି ନାହିଁ ।

ସୁପରିଚିତ ସିଡ଼ି ( Stair Case) ଦେଇ ଓହ୍ଲାଇ ଆସିଲାବେଳେ ଦୁଇଟି ଲୋକ ଦେଖା ହେଲେ । ତାଙ୍କ ଭିତରୁ ଜଣେ ଆମ ମେସ୍‌ରେ କାମ କରୁଥିଲା । ଆରକଣକ ହଷ୍ଟେଲ୍ ମେହେନ୍ତର । ଉଭୟ ବୃଦ୍ଧ ହେଲେ ମଧ୍ୟ କର୍ମଠ ଅଛନ୍ତି । ଦେଖାହେଲା ମାତ୍ରେ ଚିହ୍ନାଚିହ୍ନି ହୋଇ ଆନନ୍ଦିତ ହେଲୁଁ । ଦେଖିଲି ସେମାନେ ଆମ ଖବର ବରାବର ରଖିଛନ୍ତି ।

ପାଣିକଳ ମଧ୍ୟ ସେ ସମୟରେ ନ ଥିଲା । କୂଅ ପାଣିରେ ଗାଧୁଆପାଧୁଆ, ଛୁଟିଦିନମାନଙ୍କରେ ଆମ ହଷ୍ଟେଲ୍‌ର ( ପୂର୍ବପଟ ହଷ୍ଟେଲ୍‌ର ମଧ୍ୟ) ଅନେକ ପିଲା ନିକଟବର୍ତ୍ତୀ ତାଳଦଣ୍ଡା କେନାଲକୁ ଗାଧୋଇ ଯାନ୍ତି । ପୂର୍ଣ୍ଣସଲିଳା ଏ ସ୍ରୋତସ୍ୱିନୀରେ ବୁଡ଼ାବୁଡ଼ି, ପହଁରା, ଗେଲନକଲ ଖୁବ୍ ଉପଭୋଗ୍ୟ ହୁଏ । ଖୁଦୁରୁକୁଣୀ ଓଷାଦିନମାନଙ୍କରେ ବିସର୍ଜିତ ପ୍ରଚୁର ଓ ବହୁ

ବର୍ଣ୍ଣର ହରଗୌରା ଇତ୍ୟାଦି ଫୁଲ ଧାଡ଼ି ଧାଡ଼ି ହୋଇ ସୁଅରେ ଭାସିଯାଉଥିବା ମନସ୍ପର୍ଶୀ ଦୃଶ୍ୟ ଆଜିଯାକେ ପାସୋର ଯାଇ ନାହିଁ ।

ରୋଷେଇ ବ୍ଲକ୍ ଆଡ଼କୁ ଆସିଲି । କମନ୍ ମେସ୍ ଦେଖି ଆମ ସମୟର ପ୍ରାଇଭେଟ୍ ମେସ୍ କଥା ମନେ ପଡ଼ିଲା । ୧୦/୧୫ କଣ ପିଲା ମିଶି ଗୋଟିଏ ଗୋଟିଏ ମେସ୍ କରୁଥିଲେ । ସାଧାରଣତଃ ବାସସ୍ଥାନ ଭେଦରେ ମେସ୍‌ର ନାମକରଣ ହେଉଥିଲା ଯଥା, ବାଙ୍କି ମେସ୍, ପୁରୀ ମେସ୍, ସମ୍ବଲପୁର ମେସ୍ ଇତ୍ୟାଦି । ଯେପରି କୌଣସି ବିଶେଷତ୍ୱ ନ ଥିଲେ, ନାମକରଣ ଅନ୍ୟ ରକମର, ଯେପରିକି ଆମ ମେସ୍‌ର ନାଁ ରଖିଥିଲୁ ଡେମୋକ୍ରାଟିକ୍ ମେସ୍ । କିନ୍ତୁ ଗୋଟିଏ ମେସ୍‌ର ନାମ ଥିଲା Rich Mess । ମୋଟେ ଦୁଇଜଣ ପିଲା, ପୂଝାରୀ ଚାକର ରଖି ଏ ମେସ୍ କରିଥାନ୍ତି । ପ୍ରାୟ ସମସ୍ତେ ଏ କଥାଟାକୁ ନାପସନ୍ଦ କରୁଥାନ୍ତି ।

କଲେଜଟି ସେତେବେଳେ ସମ୍ପୂର୍ଣ୍ଣ ଭାବରେ ପୁଅପିଲାଙ୍କର ଥିଲା । ଝିଅ ଗୋଟିଏ ବୋଲି ନ ଥିଲେ. ନୂଆ ଖୋଲିଥିବା ଝିଅ କଲେଜରୁ ସପ୍ତାହକୁ ଥରେ ଦି'ଥର କେତେକ ପିଲା ଏଠାକୁ ପଢ଼ିବାକୁ ଆସନ୍ତି । ବୋଧହୁଏ ସେଠାରେ ବଟାନି ଇତ୍ୟାଦି କେତେକ ବିଷୟରେ ସୁବିଧା ହୋଇପାରି ନ ଥିବାରୁ ଏଠାକୁ ଆସିବାର ବନ୍ଦୋବସ୍ତ ହୋଇଥାଏ ।

ପ୍ୟାଣ୍ଟପିନ୍ଧିବା ସେତେବେଳେ ମଧ୍ୟ ପିଲାଙ୍କର ଚାଲ୍ ନ ଥିଲା । ସମସ୍ତେ ଧୋତି ପଞ୍ଜାବିଧାରୀ । ଲ' କ୍ଲାସ୍‌ରେ କଣେ ପ୍ୟାଣ୍ଟ୍ ପିନ୍ଧା ସାଙ୍ଗ ପାଇଥିଲି ।

ପ୍ରିନ୍‌ସିପାଲ ଲାମ୍ବର୍ଟସାହେବ ଫାଷ୍ଟ୍ ଇଅରରେ ଆମ ଇଂଲିଶ୍ ଟିଉଟୋରିଆଲରେ ୨/୪ ଥର ପ୍ରେସି (Precis) ପଢ଼ାଇଥିଲେ ଏବଂ ସିଲେବ୍‌ଲ ସମ୍ବନ୍ଧରେ ମଧ୍ୟ କେତେକ କଥା କହିଥିଲେ, ଭଲ ବୁଝାଇ ହେଲା ନାହିଁ । ଅଧ୍ୟାପକମାନଙ୍କ ମଧ୍ୟରେ ୪/୫ ଜଣ ବିଲାତ ଫେରନ୍ତା ଏବଂ ଜଣେ ବିଲାତି ଥିଲେ । ଏମାନେ ଆଇ.ଇ.ଏସ୍. । ସ୍ୱନାମଧନ୍ୟ ଇତିହାସ ଅଧ୍ୟାପକ ଯଦୁନାଥ ସରକାର ଥରେ ଇକନମିକ୍‌ସ ଅଧ୍ୟାପକଙ୍କ ଅନୁପସ୍ଥିତି ଯୋଗୁଁ ଆମ କ୍ଲାସ୍‌କୁ ଆସିଥିଲେ । ଯେଉଁ ପର୍ଯ୍ୟନ୍ତ ପଢ଼ା ହୋଇଥିଲା, ସେହିଠାରୁ ପଢ଼ାଇଲେ । ଆମକୁ ଜଣା ଯାଉଥାଏ ଯେପରିକି ସେ ଇକନମିକ୍‌ସରେ ମଧ୍ୟ ଧୁରନ୍ଧର ।

ଅଧ୍ୟାପକ ନାରାୟଣ ମିଶ୍ର ଖେଳର ତତ୍ତ୍ୱ ନେଉଥିଲେ । ସାଢ଼େ ଚାରିଟାବେଳକୁ ହକି ଫିଲ୍‌ଡରେ ସେ ପ୍ରାୟ ସବୁଦିନେ ଉପସ୍ଥିତ ହୋଇ ପିଲାମାନଙ୍କୁ ଖେଳରେ ଉତ୍ସାହିତ କରିବା ସଙ୍ଗେ ସଙ୍ଗେ ନିଜେ ମଧ୍ୟ ଖେଳନ୍ତି । ତାଙ୍କୁ ଚାଳିଶି ପାଖ ହେଲେ ବି ସେ ଘଣ୍ଟାଏ କାଳ ପୂରା ଦମ୍‌ରେ ଖେଳି ପାରୁଥିଲେ ।

କ୍ଲାସ୍‌ରେ ପ୍ରକ୍‌ସି ପକାଇବା ସେତେବେଳେ ମଧ୍ୟ ଥିଲା । ଥରେ ଅଧ୍ୟାପକ ରତ୍ନାକର ପତିଙ୍କ ଲଜିକ୍ କ୍ଲାସ୍‌ରେ କଣେ ପ୍ରକ୍‌ସି ପକାଇଲାବେଳେ ସେ ଜାଣିପାରିଲେ । କିଏ ପକାଇଲା

ବୋଲି ପଚାରିବାରେ କେହି ମାନିଲେ ନାହିଁ । ତା'ପରେ ସେ ୫ ମିନିଟ୍ ଖଣ୍ଡେ ସତ୍ୟବାଦିତା ଓ ନିର୍ଭୀକତା ସମ୍ବନ୍ଧରେ ବକ୍ତୃତା ଦେଲେ । ଏଥିରେ ଦୋଷୀ ପିଲାଟି ଛାଏଁ ଛାଏଁ ଉଠି ଦୋଷ ସ୍ୱୀକାର କଲା । ରତ୍ନାକର ବାବୁ ତାଙ୍କୁ ସତ୍ୟବାଦିତା ପାଇଁ ପ୍ରଶଂସା କରିବା ସଙ୍ଗେ ସଙ୍ଗେ ଭବିଷ୍ୟତ ପାଇଁ ସାବଧାନ କରିଦେଲେ । ସେହିଦିନଠାରୁ ସେ ପିଲାଟିର ସ୍ୱଭାବରେ ସୁନ୍ଦର ପରିବର୍ତ୍ତନ ଆସିଥିଲା ।

ଇଂରାଜୀ ଅଧ୍ୟାପକ ଗୋପାଳ ଗାଙ୍ଗୁଲି ସେକ୍ସ୍‌ପିଅର ପଢ଼ାଇଲା ବେଳେ ଭାବପ୍ରବଣ ହୋଇ ଅଭିନୟ କଲାପରି ପଢ଼ାନ୍ତି - ସତେ ଯେପରି ସେ ପାର୍ଟ ପ୍ଲେ କରୁଛନ୍ତି । ତାଙ୍କ ପଢ଼ାଇବା ପିଲାମାନଙ୍କର ବେଶ୍ ଚିତ୍ତାକର୍ଷକ ହୁଏ । ଇତିହାସ ଅଧ୍ୟାପକ ନିର୍ମଳ ବାନାର୍ଜି ପଢ଼ାଇବାବେଳେ ଏପାଖ ସେପାଖ ବୁଲି ଅଙ୍ଗଭଙ୍ଗୀ କରି ବକ୍ତୃତା ଦିଅନ୍ତି । ସଂସ୍କୃତ ଅଧ୍ୟାପକ କାଶୀନାଥ ଦାଶ ଜଣେ ବିଶିଷ୍ଟ ପଣ୍ଡିତ । ସେ କେବଳ ଥରେ ପଢ଼ିଦେଲେ ଶ୍ଳୋକଟିଏ ପ୍ରାୟ ବୁଝି ହୋଇଯାଏ । ତାଙ୍କର ଗୋଟାଏ ବଡ଼ ଗୁଣ ଯେ ପ୍ରାୟ ସବୁ ପିଲାଙ୍କୁ ସେ ଭଲଭାବରେ ଜାଣନ୍ତି - ତାଙ୍କ ନାଁ, ଗାଁ, ବନ୍ଧୁବାନ୍ଧବ ପର୍ଯ୍ୟନ୍ତ । କେତେକ ଛାତ୍ର ଅଧ୍ୟାପକମାନଙ୍କ ପଢ଼ାଇବା ପଦ୍ଧତିକୁ ଚମତ୍କାର ଭାବରେ ଅନୁକରଣ କରିପାରିଥିଲେ । ଶ୍ରୀଯୁକ୍ତ ବାମଦେବ ମିଶ୍ର ସେମାନଙ୍କ ମଧ୍ୟରେ ସବୁଠାରୁ ପାରଙ୍ଗମ, ଗୋପାଳବାବୁ, କାଶୀବାବୁ, କୃତ୍ତିବାସବାବୁ ଇତ୍ୟାଦିଙ୍କ ଅନୁକରଣରେ ସେ ସିଦ୍ଧହସ୍ତ । ସେ ଅନ୍ତରାଳରେ କହିଲେ, ଅବିକଳ ସମ୍ପୃକ୍ତ ଅଧ୍ୟାପକ କହୁଥିଲା ପରି ମନେ ହୁଏ । ୫୦ ବର୍ଷ ପରେ ମଧ୍ୟ ବାମଦେବ ବାବୁଙ୍କର ସେ କୃତିତ୍ୱ ଅକ୍ଷୁଣ୍ଣ ରହିଛି ଏବଂ ଅନୁରୋଧ କଲେ ସେ ଆପ୍ୟାୟିତ କରିବାକୁ କୁଣ୍ଠାବୋଧ କରନ୍ତି ନାହିଁ ।

ଥରେ ଆମ ଇକନମିକ୍ସ ପିଲାଙ୍କୁ ଏକ୍ସକର୍ସନରେ ଯିବାକୁ ସୁଯୋଗ ମିଳିଲା । ସେଥର ବୋଧହୁଏ ନୂଆହୋଇ ଏକ୍ସକର୍ସନ ସୁବିଧା ମିଳିଥିଲା ଏବଂ ତାହା କେବଳ ଇକନମିକ୍ସ ପାଇଁ । ନୂଆ ଅଧ୍ୟାପକ ସରୋଜବାବୁଙ୍କ ସଙ୍ଗରେ ଆମେ ଗଲୁଁ - ମୋଟେ ୧୦ ଜଣ । ଓଡ଼ିଶା ବାହାରକୁ ଏଇ ଆମର ପ୍ରଥମ ଯାତ୍ରା । ଖଡ଼ଗ୍‌ପୁର ଜଙ୍କସନ୍ ମଧ୍ୟ ଆମକୁ ଗୋଟିଏ ବଡ଼ ଦର୍ଶନୀୟ ସ୍ଥାନ ପରି ମନେ ହେଲା । ଜାମସେଦ୍‌ପୁର ଇସ୍ପାତ୍ କାରଖାନା ଦେଖି ଚମତ୍କୃତ ହେଲୁଁ । ରାଖା - ତମ୍ବା ଖଣି ମଧ୍ୟ ଦେଖିଲୁଁ, ଭିତରକୁ ଯିବା ଦୁଃସାଧ୍ୟ । ପ୍ରତ୍ୟେକେ ଗୋଟିଏ ଗୋଟିଏ ଜ୍ୱଳନ୍ତ ମହମବତୀ ଧରି ଲୁହାରଡ୍ ତିଆରି ସିଡ଼ିରେ ସାବଧାନତା ସହ ତଳକୁ ଯିବାକୁ ପଡ଼ିଲା । ତଳେ ସୁଡ଼ଙ୍ଗ ମଧ୍ୟରେ କାମ ହେଉଥିବା ଦେଖି ଆଶ୍ଚର୍ଯ୍ୟାନ୍ୱିତ ହେଲୁଁ । ରାଖାରେ କମ୍ପାନୀ ତରଫରୁ ଆମ୍ଭମାନଙ୍କୁ ଗୋଟିଏ ବଡ଼ ଭୋଜି ଦିଆଯାଇଥିଲା । ପରେ କର୍ମ ଜୀବନରେ ଖଡ଼ଗପୁର ପ୍ରାୟ ୧୦୦ ଥର ଯାଇଛି ଏବଂ ଟାଟା ପ୍ରାୟ ୧୨ ଥର କିନ୍ତୁ ସ୍ଥାନଦ୍ୱୟର ସେପରି ବଡ଼ିମା ଆଉ କେବେ ଉପଲବ୍ଧି କରି ନାହିଁ ।

ଏବେ କଟକ ନଗରୀରେ ବିଶେଷତଃ ସେଇ କଲେଜ ନିକଟରେ ମୋର ବାସସ୍ଥାନ ହୋଇଥିବାରୁ ଅନେକ ସମୟରେ କଲେଜ ପାଖ ଦେଇ ଯିବା ଆସିବା କରିବାକୁ ପଡ଼େ। ପ୍ରତିଥର କଲେଜକୁ ଚାହେଁ ଏବଂ ଦେଖି ଆନନ୍ଦିତ ହୁଏ। ସୁବିଧା ଥିଲେ ହଷ୍ଟେଲ୍‌ର ସେଇ ସିଂଗଲ୍ ସିଟେଡ୍ ରୁମ୍‌କୁ ନ ଚାହିଁ ରହିପାରେ ନାହିଁ କଲେଜ ଓ ହଷ୍ଟେଲ୍ ପ୍ରତି ମମତାରେ କୌଣସି ହ୍ରାସ ହୋଇ ନାହିଁ। ବରଂ ବୃଦ୍ଧି ଅନୁଭୂତ ହୋଇଅଛି। ଯେହେତୁ ଏଇ ନୂଆ କଲେଜରେ ଆମର ତିନିପୁରୁଷ ହୋଇଗଲା। ମୁଁ ତ ପଢ଼ିଥିଲି। ତା'ପରେ ମୋ ପୁଅ ପଢ଼ିଲା ଏବଂ ସେଇ ପଶ୍ଚିମ ଛାତ୍ରାବାସରେ ବି ରହିଲା। ଏ ବର୍ଷ ନାତୁଣୀ ନାମ ଲେଖାଇଛି। ଭଗବାନ କରନ୍ତୁ ରେଭେନ୍‌ସା କଲେଜ ଅମର ହେଉ। ଏହାକୁ ଗୋଟିଏ ବିଶ୍ୱବିଦ୍ୟାଳୟରେ ପରିଣତ କରିବାର ପ୍ରସ୍ତାବ ଯଥାଶୀଘ୍ର କାର୍ଯ୍ୟକାରୀ ହେଉ ଏବଂ ଏଥିରୁ ଜ୍ଞାନଲାଭ କରି ଆମ ପିଲାମାନେ ଦେଶ ଓ ଦଶର ମଙ୍ଗଳ କରନ୍ତୁ ଏବଂ କେବଳ ଭାରତରେ ନୁହେଁ, ବିଦେଶରେ ମଧ୍ୟ ଯଶଲାଭ କରନ୍ତୁ। ଏହାର ସୁନାମ ଅବ୍ୟାହତ ରହୁ।

•

---

*ରେଭେନ୍‌ସା କଲେଜ ଶତବାର୍ଷିକୀ ବିଶେଷାଙ୍କ,*
କଟକ, ୧୯୬୦

# ରେଭେନ୍‌ସା କଲେଜ

## ହରିହର ମହାପାତ୍ର

ସେହି ବର୍ଷ (୧୯୨୧ ଜୁଲାଇ) ନୂଆ ହୋଇ ରେଭେନ୍‌ସା କଲେଜ ଚାଉଳିଆଗଞ୍ଜ ଚକ୍ରପଡ଼ିଆରେ ତିଆରି ହୋଇଥିବା ଦ୍ୱିତଳ ବିସ୍ତୃତ କୋଠାକୁ ଆସିଥାଏ । କଲେଜର ଦୁଇମୁଣ୍ଡରେ ଦୁଇ ହଷ୍ଟେଲ । ଫିଜିକ୍ସ, କେମିଷ୍ଟ୍ରି ପାଇଁ ଦୋତାଲା, ବଟାନିକ୍ଲାସ ଓ ଲାଇବ୍ରେରୀ ପାଇଁ ଏକତାଲା କୋଠା । ପ୍ରକାଣ୍ଡ ଖେଳପଡ଼ିଆ । ଦୁଇ ହଷ୍ଟେଲରେ ସୁପରିଣ୍ଟେଣ୍ଡେଣ୍ଟ, ସହକାରୀ ସୁପରିଣ୍ଟେଣ୍ଡେଣ୍ଟ ରହିବା ପାଇଁ କ୍ୱାର୍ଟର୍ସ ଲାଗିରହିଥାଏ । ଦୁଇ ହଷ୍ଟେଲରେ ଦୁଇ ଓ୍ୱାର୍ଡେନଙ୍କ ପାଇଁ ପ୍ରଶସ୍ତ ବାସସ୍ଥାନ । କଟକ ସହରର ସର୍ବବୃହତ୍ କୋଠାଘର ଓଡ଼ିଶାର ଏକମାତ୍ର କଲେଜ ପାଇଁ ତିଆରି ହେବା ଯୁକ୍ତିଯୁକ୍ତ ଥିଲା ।

ମୁଁ ଆସିବା ପରଦିନ କଲେଜକୁ ଗଲି । ଆଇ.ଏ. ଶ୍ରେଣୀ ଓ ଇଷ୍ଟ (ପୂର୍ବପଟ) । ହଷ୍ଟେଲରେ ଏକ ନମ୍ବର ଘରେ ସ୍ଥାନ ମିଳିଲା । ନାମ ଲେଖାଇବା ଓ ହଷ୍ଟେଲ ଘର ମିଳିବା ପାଇଁ ଚାରିଦିନ ବିଳମ୍ବ ହେଲା । ବନବିଦ୍ୟାଳୟ ବୋର୍ଡିଙ୍ଗ ଓ ମେସକୁ ଚାହିଁଲେ, ଆକାଶ ପାତାଳ ପ୍ରଭେଦ । ଏକ ନମ୍ବର ରୁମରେ ପୁରୀ ଜିଲ୍ଲାସ୍କୁଲରୁ ପାସ୍ କରି ଆସିଥିବା ଗୋପାଳଚନ୍ଦ୍ର ଦାସ ଓ ମୁଁ ରହିଲୁ । ଚାଇଁବସାରୁ ଛୁଟିରେ ଆସି ପୁରୀ ଯାଉଥିବାବେଳେ ଗୋପାଳକୁ ଚିହ୍ନିଥିଲି ଏବଂ ତାଙ୍କ ସଙ୍ଗେ ପତ୍ରାଳାପ ରହିଥିଲା । ଆମେ ଦିହେଁ ସଙ୍ଗାତ, ମିତ୍ର, ବଉଳ ବସିଲା ପରି, ହିନା (ଫୁଲ) ବସିଥିଲୁ ଏବଂ ସେହି ନାମରେ ପରସ୍ପରକୁ ଡାକୁଥିଲୁ । ଆମ ହଷ୍ଟେଲର ସୁପରିଣ୍ଟେଣ୍ଡେଣ୍ଟ ଆର୍ତ୍ତବଲ୍ଲଭ ମହାନ୍ତି ସଂସ୍କୃତ ଅଧ୍ୟାପକ । ତାଙ୍କ ସହକାରୀ ଥିଲେ ନାରାୟଣ ମିଶ୍ର, ଫିଜିକ୍ସ ଅଧ୍ୟାପକ । ଓ୍ୱାର୍ଡେନ ଥିଲେ ତ୍ରିପାଠୀ ସାହେବ । ଶ୍ୟାମଚନ୍ଦ୍ର ତ୍ରିପାଠୀ ଆଇ.ଇ.ଏସ୍. ଫିଜିକ୍ସରେ କେମ୍ବ୍ରିଜରୁ ପାସ୍ କରି ଆସିଥାଆନ୍ତି । କେତେମାସ ପରେ ନାରାୟଣ ବାବୁ ଓ୍ୱେଷ୍ଟ (ପଶ୍ଚିମପଟ) ହଷ୍ଟେଲକୁ ସୁପରିଣ୍ଟେଣ୍ଡେଣ୍ଟ ହୋଇ ଯିବାରୁ ତାଙ୍କ ସ୍ଥାନରେ ଲକ୍ଷ୍ମୀକାନ୍ତ ଚୌଧୁରୀ ଆମ ହଷ୍ଟେଲକୁ ଆସିଲେ । ହଷ୍ଟେଲରେ ପ୍ରଥମରୁ କମନ୍ ମେସ୍ ନଥିଲା । କେତେଗୁଡ଼ିଏ ରୁମ୍‌କୁ ନେଇ ଗୋଟିଏ ଗୋଟିଏ ମେସ୍ ଥାଏ । ପ୍ରତି ମେସ୍ ପାଇଁ ଛାତ୍ରଙ୍କ ମଧ୍ୟରୁ ଜଣେ ମ୍ୟାନେଜର ବଛାଯାଆନ୍ତି । ମେସ୍‌ରେ

ଜଣେ ପୂଜାରୀ, ଜଣେ ଚାକର ରହି ମ୍ୟାନେଜରଙ୍କ ବନ୍ଦୋବସ୍ତ ମତେ ଦୁଇବେଳା ଆହାର ଆୟୋଜନ କରନ୍ତି । ପ୍ରତି ମେସ୍‌ରେ ୨୦/୨୫ ଛାତ୍ରଙ୍କର ବ୍ୟବସ୍ଥା ହୁଏ । କୌଣସି କୌଣସି ମେସ୍‌ରେ ଓପରଓଳି ଜଳଖିଆର ବନ୍ଦୋବସ୍ତ ଥାଏ । ଆମ ମେସ୍‌ରେ ତାହା ନଥିଲା । ଛାତ୍ରଙ୍କ ଆର୍ଥିକ ଅବସ୍ଥା ଅନୁଯାୟୀ ମେସ୍‌ର ମାସିକ ଖର୍ଚ୍ଚର ସୀମା ଧାର୍ଯ୍ୟ ରହେ । ସାଧାରଣତଃ ଭାତ, ଡାଲି, ପରିବା ତରକାରି, ସାମୟିକ ମାଛ, ମାସକେ ଥରେ ମାଂସ ମେସରେ ମିଳେ । ମାସକୁ ହାରାହାରି ବାରଟଙ୍କା ଜଣକୁ ପଡ଼ୁଥିଲା । କୌଣସି କୌଣସି ମେସ୍‌ରେ ଖର୍ଚ୍ଚ ୧୭/୧୮ ଟଙ୍କାକୁ ଯାଏ । ସେପରି ମେସ୍ ଆମ ହଷ୍ଟେଲରେ ଦୁଇଟି ଥିଲା । ସମ୍ବଲପୁରରୁ ଆସିଥିବା ଛାତ୍ରମାନେ ଆମ ହଷ୍ଟେଲର ଓପର ମହଲାରେ ରହିଥିଲେ । ସେମାନଙ୍କର ସ୍ୱତନ୍ତ୍ର ମେସ୍ କରିଥିଲେ- ସମ୍ବଲପୁର ମେସ୍ । ପୁରୀରୁ ଯାଇଥିବା ପିଲାଏ ଏକ ମେସ୍ କଲେ ପୁରୀ ମେସ୍ । ମୁଁ ଓ ଗୋପାଳ ସେଥିରେ ନଥିଲୁ । ଆମ ଦୁହିଁଙ୍କ ଛଡ଼ା ପୁରୀ ଜିଲ୍ଲାର ଅନ୍ୟ ଅଧିକାଂଶ ପିଲା ଓପର ମହଲାରେ ରହୁଥିଲେ । ଗୋପାଳ ଓ ମୋର ଜଳଖିଆ ଓ ଅନ୍ୟାନ୍ୟ ଖର୍ଚ୍ଚ ଏକ ସଙ୍ଗେ କରୁଥିଲୁ । ସେତେବେଳେ ଚାରିପଇସାକୁ ଯେଉଁ ରସଗୋଲା ମିଳୁଥିଲା, ଏବେ ତାହା ଏକଟଙ୍କା । ହଷ୍ଟେଲକୁ ଇଲେକ୍‌ଟ୍ରିକ୍ ଲାଇନ ଆସିଲା ତିନିବର୍ଷ ପରେ ।

ନୂଆ ସ୍ଥାନରେ ନୂଆ କୋଠାକୁ କଲେଜ ଆସିଥିବାରୁ ଅଧ୍ୟାପକ, ଛାତ୍ର ସମସ୍ତଙ୍କର ବିପୁଳ ଉତ୍ସାହ । ଲାମର୍ଟ ସାହେବ, ପ୍ରିନ୍‌ସିପାଲ । ପ୍ରଫେସରମାନଙ୍କ ମଧ୍ୟରେ ହୁଇଟଲକ୍ ସାହେବ, ତ୍ରିପାଠୀ ସାହେବ, ବାଓ୍ୱା କର୍ତ୍ତାର ସିଂହ (କେମେଷ୍ଟ୍ରି), କୃତ୍ତିବାସ ସାମନ୍ତରାୟ (ଇଂରାଜୀ), ଶାରଦାକାନ୍ତ ଗାଙ୍ଗୁଲି (ଗଣିତ), କାଶୀନାଥ ଦାସ (ସଂସ୍କୃତ), ବରଦାକାନ୍ତ ଚାଟାର୍ଜୀ (ଇଂରାଜୀ), ଗୋପାଳ ଚନ୍ଦ୍ର ଗାଙ୍ଗୁଲି (ଇଂରାଜୀ), ଯଦୁନାଥ ସରକାର (ଇତିହାସ), ସୁରେଶ ବର୍ଦ୍ଧନ (ଇକ୍‌ନମିକ୍ସ), ମୋହିନୀ ମୋହନ ସେନାପତି (ଦର୍ଶନ) ଥିଲେ । ଅନ୍ୟମାନେ ଥିଲେ ଲେକ୍‌ଚରର୍ ଆଇ.ଇ.ଏସ୍. (Indian Education Services) କୋଡ଼ର ଆଇ.ସି.ଏସ୍. (Indian Civil Service) ପରି ଥିଲା । ସେଥିରେ ପ୍ରିନ୍‌ସିପାଲ, ହୁଇଟ୍‌ଲକ ସାହେବ, ତ୍ରିପାଠୀ ସାହେବ, ବାଓ୍ୱାକର୍ତ୍ତାର ସିଂହ, ଯଦୁନାଥ ସରକାର ଥିଲେ । କେତେମାସ ପରେ ପରିଜା ସାହେବ (ପ୍ରାଣକୃଷ୍ଣ ପରିଜା) କେମ୍ବ୍ରିଜରୁ ବଟାନିରେ ପାସ୍ ଓ ରିସର୍ଚ୍ଚ କରି ଆସି ସେହି କାଡ଼ରରେ ବଟାନିର ଅଧ୍ୟାପକ ହେଲେ । ସେ ସମସ୍ତେ ଥିଲେ ଜଣେ ଜଣେ ଧୁରନ୍ଧର । ପ୍ରାଦେଶିକ କାଡ଼ରରେ ଅନ୍ୟ ପ୍ରଫେସରମାନେ ମଧ୍ୟ କୃତବିଦ୍ୟ ଥିଲେ ନିଜ, ନିଜ ବିଭାଗରେ । ତା ନିମ୍ନକୁ ଲେକ୍‌ଚରରମାନେ । ସେମାନେ ବୟସରେ କନିଷ୍ଠ, ଉତ୍ସାହରେ ଅଧିକ ଅଗ୍ରଗାମୀ । ପିଲାମାନଙ୍କ ସହିତ ତାଙ୍କର ଯୋଗାଯୋଗ ବେଶି ରହୁଥିଲା । ପାଣ୍ଡିତ୍ୟ, ସ୍ନେହଶୀଳତା ଅନୁପାତରେ ଛାତ୍ରମାନେ ଆକୃଷ୍ଟ ହୁଅନ୍ତି ।

କଲେଜରେ ଛାତ୍ରୀ ବା ଶିକ୍ଷୟିତ୍ରୀ କେହି ନ ଥିଲେ । ପରଦା ପ୍ରଥା ପ୍ରଚଳିତ ଥାଏ । କେବଳ ବାଓ୍ୱାକର୍ତ୍ତାର ସିଂହ ବିବାହ ହୋଇ ତାଙ୍କ ସ୍ତ୍ରୀଙ୍କୁ ଆଣିବା ପରେ ବୁଲିଗଲାବେଳେ ତାଙ୍କୁ ସାଙ୍ଗରେ ନେଇ ବାହାରୁଥିଲେ । ସେମାନେ ଶିଖ । କର୍ତ୍ତାର ସିଂହଙ୍କ ମୁଣ୍ଡରେ ପଗଡ଼ି, ମୁହଁରେ ଦାଢ଼ି । ସେ ସସ୍ତ୍ରୀକ କଲେଜ ପରେ ବୁଲି ବାହାରିଲେ ପିଲାଏ ଫୁସ୍‌ଫୁସ୍ ହୋଇ କହନ୍ତି- ଦସ୍ୟୁ ନିଗୃହୀତା ବାଳିକା । ପରିଜା ସାହେବ ଆସି ପଶ୍ଚିମ ହଷ୍ଟେଲରେ ଓ୍ୱାର୍ଡେନ ହେଲେ । ବିବାହ ପରେ ସେଠାରେ ସସ୍ତ୍ରୀକ ରହିଲେ । ତାଙ୍କ ସ୍ତ୍ରୀ ଗଲାବେଳେ ଘୋଡ଼ାଗାଡ଼ିର ଦରଜା ବନ୍ଦ ଥାଏ । ମନେଅଛି, ପ୍ରଥମଥର ତାଙ୍କ ସ୍ତ୍ରୀ ପିଲାଙ୍କ ସାମନାକୁ ବାହାରିଲେ ଯେଉଁଦିନ ସନ୍ଧ୍ୟାରେ କଟକ ଜିଲ୍ଲା ଜଜ୍ ଧାବଲେ ସାହେବ ସସ୍ତ୍ରୀକ କଲେଜ ପ୍ରାଙ୍ଗଣକୁ ଆସି ଛାତ୍ରମାନଙ୍କ ସମାବେଶରେ ଦୂରବୀକ୍ଷଣ ଯନ୍ତ୍ରରେ ଗ୍ରହ, ନକ୍ଷତ୍ର ଦେଖାଉଥାନ୍ତି । ଧାବଲେ ସାହେବ ପରିଜା ସାହେବଙ୍କର ବନ୍ଧୁ, କେମ୍ବ୍ରିଜ ପାସ୍ । ସେ ଲବ୍ଧପ୍ରତିଷ୍ଠ ନେତା ଗୋପାଳକୃଷ୍ଣ ଗୋଖଲେଙ୍କ ଜାମାତା । ପରେ ସେ ପାଟନା ହାଇକୋର୍ଟ ଜଜ୍ ହୋଇ ଅବସର ଗ୍ରହଣ କରି ପୁନାରେ ପରଲୋକଗତ ହେଲେ । ପରଦା କେତେବର୍ଷ ପରେ ଭାଙ୍ଗିଲା । ପରିଜା ସାହେବଙ୍କ ସହଧର୍ମିଣୀ ସୁନ୍ଦରମଣି ପରିଜା ବହୁ ସମାଜ ସେବା କାର୍ଯ୍ୟରେ ରତ ଥାଇ ପ୍ରତିଷ୍ଠା ଅର୍ଜନ କରିଥିଲେ । ମୁଁ ସେ ଦୁହିଁଙ୍କର ସ୍ନେହଭାଜନ ଥିଲି । ମୋ ଜ୍ୟେଷ୍ଠପୁତ୍ର ପ୍ରଭାତକୁମାରର ବ୍ରତୋପନୟନ ବେଳେ ଶ୍ରୀମତୀ ପରିଜା ତାଙ୍କ ଦୁଇକନ୍ୟାଙ୍କୁ ସାଙ୍ଗରେ ନେଇ ଆମ ଗ୍ରାମ ବିଶ୍ୱନାଥପୁରକୁ ଯାଇ ଆମ୍ଭମାନଙ୍କୁ ବାଧିତ କରିଥିଲେ ।

ପରିଜା ସାହେବ ବିଲାତରୁ ଆସି କଲେଜରେ ଯୋଗଦେବା ପରେ ଛାତ୍ରମାନଙ୍କର, ବିଶେଷତଃ ହଷ୍ଟେଲରେ ରହୁଥିବା ଛାତ୍ରମାନଙ୍କର ଆକର୍ଷଣ କେନ୍ଦ୍ର ହୋଇ ଉଠିଲେ । ଫିଜିକ୍ସ ଥିଏଟରରେ ସନ୍ଧ୍ୟାରେ Lantern Lecture ଆରମ୍ଭ କଲେ । ବିଲାତ, କେମ୍ବ୍ରିଜ ସମ୍ବନ୍ଧରେ ଧାରାବାହିକ ବକ୍ତୃତା ପଶ୍ଚିମ ହଷ୍ଟେଲ କମନ୍ ରୁମ୍‌ରେ ରବିବାର ପୂର୍ବାହ୍ଣରେ ଦେଉଥାନ୍ତି । ଅନେକ ଗରିବ ଛାତ୍ର ତାଙ୍କଠାରୁ ଆର୍ଥିକ ସାହାଯ୍ୟ ପାଉଥିଲେ । ସାଧାରଣ ଓ ସାମାଜିକ କାର୍ଯ୍ୟରେ ତାଙ୍କର ଆଗ୍ରହ ଥାଏ । ଅଧିକାଂଶ ପିଲାଙ୍କ ନାମ ତାଙ୍କ ମନରେ ଥାଏ । ଭାରତବର୍ଷ ଓ ବାହାରେ ବୈଜ୍ଞାନିକ କ୍ଷେତ୍ରରେ ତାଙ୍କର ସୁଖ୍ୟାତି ଜନ୍ମିଲା । କଲିକତା, ବନାରସ, ଲକ୍ଷ୍ନୌ, ଏହ୍ଲାବାଦ, ବିଶ୍ୱବିଦ୍ୟାଳୟର ବଟାନିରେ ପରୀକ୍ଷକ ହୋଇ ବାହାରକୁ ଅନେକଥର ଯାଉଥିଲେ । ପାଟନା ବିଶ୍ୱବିଦ୍ୟାଳୟର ସିନେଟ, ସିଣ୍ଡିକେଟ୍ ସଭ୍ୟ ଥାଇ ମୁଖ୍ୟ ଭୂମିକା ଗ୍ରହଣ କରୁଥିଲେ । ଥରେ ସେ ବନାରସ ଯିବା ବାଟରେ ହାଓଡ଼ା ଷ୍ଟେସନରେ ହଠାତ୍ ଅସୁସ୍ଥ ହୋଇପଡ଼ିଲେ । ଅଣ୍ଟାରେ ଏପରି ବ୍ୟଥା ହେଲା ଯେ ଉଠିବା ବା ବସିବା ତ କଷ୍ଟପ୍ରଦ ହେଲା । ମୁଁ ସେ ଦିନ ସକାଳେ ଓକିଲାତି କାର୍ଯ୍ୟରେ ପାଟନା ଯିବାପାଇଁ କଟକରୁ ହାଓଡ଼ାରେ ପହଞ୍ଚି ଦେଖେ ତ ପରିଜା ସାହେବ ଫାଷ୍ଟକ୍ଲାସ ବିଶ୍ରାମାଗାରରେ ଗୋଟିଏ ବେଞ୍ଚରେ ନିର୍ବଦେ ଶୋଇଛନ୍ତି । ପାଖକୁ ଯାଇ ତାଙ୍କ

କଷ୍ଟକଥା ଜାଣିଲି । ସୁଭାଷ ବୋଷଙ୍କ ଭ୍ରାତା ସୁନୀଲ ବୋଷ ଡାକ୍ତର ତାଙ୍କର ବନ୍ଧୁ । ତାଙ୍କୁ ଆଣିବା ପାଇଁ ମୁଁ ଏଲ୍‌ଗ୍ରିନ୍ ରୋଡ଼୍ ଯାଇ ଦେଖା ନ ପାଇ, ଅନ୍ୟ ଜଣେ ଡାକ୍ତରଙ୍କ ପରାମର୍ଶମତେ ଔଷଧ ଆୟୋଜନ କରି, ଔଷଧ ଖାଇବାକୁ ଦେଇ, ଅଣ୍ଟାରେ ମାଲିସ ଔଷଧ ବହୁକ୍ଷଣ ଘଷି, ଗରମପାଣି ସେକ ଦେବାରେ ଦିନ ପ୍ରାୟ ଦୁଇଟାବେଳକୁ ସେ ଅଳ୍ପ ସୁସ୍ଥ ବୋଧକଲେ । ତାଙ୍କୁ ଧରି ଗାଧୁଆ ଘରକୁ ନେଲାବେଳେ ସେ ଅତି କଷ୍ଟ ଅନୁଭବ କରୁଥିଲେ । ଗରମସୁପ୍, ଟୋଷ୍ଟ ଆଣି ଦେବାରେ ସେ ଆହାର କଲେ । କଟକ ଫେରିଯିବା ପାଇଁ ମୁଁ କହିଲି । ମାତ୍ର ସନ୍ଧ୍ୟାବେଳକୁ ସୁସ୍ଥ ଲାଗିବାରୁ ସେ ଟ୍ରେନରେ ବନାରସ ଗଲେ । ସେଠାରୁ ମୋ ପାଇଁ ଦୁଇଗୋଟି ମିନା କାମକରା ପିତଳ ଫୁଲଦାନୀ ଆଣିଥିଲେ । ଏପର୍ଯ୍ୟନ୍ତ ତାହା ଅତୁଲ୍ୟ ଦାତାଙ୍କର ଅମୂଲ୍ୟ ଦାନ ରୂପେ ମୁଁ ସାଇତି ରଖିଛି । ତାଙ୍କ ଶୃଙ୍ଖଳିତ ଜୀବନଧାରା ମତେ ଆକର୍ଷଣ କରିଥିଲା ଯେ ମୁଁ ତାଙ୍କୁ କଲେଜରେ ପଢ଼ିବା କାଳରୁ ଆଦର୍ଶ ରୂପେ ଜ୍ଞାନକରି ଆସିଛି । ଚାନ୍ଦିନୀଚୌକରେ ମୁଁ ଘର ତିଆରି କଲାବେଳେ ଅର୍ଥ ଅନଟନ ହେବାରୁ ତାଙ୍କଠାରୁ ଏକହଜାର ଟଙ୍କା ମାଗିଲା ମାତ୍ରକେ ଧାର ଆଣିଥିଲି । ତାଙ୍କ କନ୍ୟା ବିବାହବେଳେ ତାହା ପରିଶୋଧ କଲି । ପରିଜା ସାହେବ କଲେଜ ପ୍ରିନ୍‌ସିପାଲ ଥାଇ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରଥମ ଭାଇସ୍ ଚାନ୍‌ସେଲର ହେଲେ । ବିଶ୍ୱବିଦ୍ୟାଳୟ ଆରମ୍ଭରୁ ତାଙ୍କ ସହିତ ଦୀର୍ଘକାଳ ସିନେଟ୍, ସିଣ୍ଡିକେଟ୍, ଏକାଡ଼େମିକ୍ କାଉନ୍‌ସିଲରେ କାର୍ଯ୍ୟ କରିବାର ମତେ ଯେ ସୁଯୋଗ ମିଳିଥିଲା ସେଥିରେ ମୁଁ ଆନନ୍ଦ ଓ ସନ୍ତୋଷ ଲାଭ କରିଛି । ମୋ ଉପରେ ତାଙ୍କର ନିର୍ଭରତା ଥିବା ଲକ୍ଷ୍ୟ କରି ମୋ ଦାୟିତ୍ୱ ସମ୍ପାଦନରେ ମୁଁ ସର୍ବଦା ସତର୍କ ଓ ତତ୍ପର ରହୁଥିଲି । ଶ୍ୟାମ ତ୍ରିପାଠୀ ସାହେବ ଥିଲେ ଅନ୍ୟ ପ୍ରକାରର । ତାଙ୍କ ପାଖକୁ କେହି ଗଲେ, ତାଙ୍କ ଉଦାରତାରେ ମୁଗ୍ଧ ହୋଇ ଆସେ । ସେ ଭଗବତ୍ ବିଶ୍ୱାସୀ, ଜ୍ୟୋତିଷରେ ଆସ୍ଥାବାନ୍ । ତାଙ୍କ ପିତା ଚିନ୍ତାମଣି ତ୍ରିପାଠୀ । ପୁରାତନ ସାହିତ୍ୟରେ ପାରଙ୍ଗମ ଥିଲେ । ପୁତ୍ରଙ୍କ ପାଖକୁ ଯେତେବେଳେ ଆସୁଥିଲେ, ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ସଙ୍ଗେ ସାହିତ୍ୟ ଆଲୋଚନାରେ ସମୟ କଟାଉଥିଲେ । ତ୍ରିପାଠୀ ସାହେବଙ୍କ ଚେଷ୍ଟାରେ ମୟୂରଭଞ୍ଜ ମହାରାଜା କଲେଜର ଇଲେକ୍ଟ୍ରିସିଟି ବ୍ୟବସ୍ଥା ପାଇଁ ଏକଲକ୍ଷ ଟଙ୍କା ଦାନ କରିଥିଲେ । ମହାରାଜ ତାଙ୍କର ଘନିଷ୍ଠ ବନ୍ଧୁ ଥିଲେ । ଇୟୁରୋପୀୟ ଉଚ୍ଚ ଅଫିସରମାନଙ୍କ ସଙ୍ଗେ ତ୍ରିପାଠୀ ସାହେବଙ୍କର ଯେପରି ସୌହାର୍ଦ୍ଦ୍ୟ ଥିଲା, ଅନ୍ୟ କାହାରି ନଥିଲା । ସେଥିପାଇଁ ଅନେକ କଥାରେ ଅଲକ୍ଷିତରେ ସେ ସେମାନଙ୍କ ଦ୍ୱାରା ଅନ୍ୟମାନଙ୍କୁ ସାହାଯ୍ୟ କରାଇ ପାରୁଥିଲେ । ଫିଜିକ୍ସ ବିଭାଗର ବହୁ ଉନ୍ନତି ସେ କରାଇ ପାରିଥିଲେ । କଲେଜର ପ୍ରଥମ ଓଡ଼ିଆ ପ୍ରିନ୍‌ସିପାଲ ଏବଂ ଓଡ଼ିଶାର ପ୍ରଥମ ଓଡ଼ିଆ (D.P.I) ଡିରେକ୍ଟର ହେବା ପରେ (U.P.S.C) ଇୟୁନିଅନ ପବ୍ଲିକ୍ସ ସର୍ଭିସ କମିଶନର ମେମ୍ବର ଓ ତାହା ପରେ ରାଜସ୍ଥାନ ପବ୍ଲିକ୍ ସର୍ଭିସ କମିଶନର ଅଧ୍ୟକ୍ଷ ଥିବା ସମୟରେ ୮/୮/୧୯୫୧ରେ

ଜୟପୁରରେ (ରାଜସ୍ଥାନ) ତାଙ୍କରି ହଠାତ୍ ମୃତ୍ୟୁ ଘଟିଲା । ତାଙ୍କ ପୁତ୍ର ନୀଳମଣି ସେତେବେଳେ ଡେପୁଟି ମାଜିଷ୍ଟ୍ରେଟ୍ ଥିଲେ) ସଙ୍ଗରେ ନେଇ ଜୟପୁର ଯାଇ ତାଙ୍କର ଶେଷକ୍ରିୟା ସେଠାରେ ସମ୍ପନ୍ନ କରିବା ପାଇଁ ଡଃ. ବଳଭଦ୍ର ପ୍ରସାଦ, ରାମନାଥନ (I.C.S), ଚିନ୍ତାମଣି ଆଚାର୍ଯ୍ୟ, ବିପିନବିହାରୀ ରାୟ ପ୍ରଭୃତିଙ୍କ ପରାମର୍ଶରେ ମୁଁ (ଓକାଲତି କରୁଥିଲି) ଯାଇଥିଲି । ଦିଲ୍ଲୀରେ ସେତେବେଳେ ହରେକୃଷ୍ଣ ମହତାବ କେନ୍ଦ୍ରମନ୍ତ୍ରୀ ଥିଲେ । ଦିଲ୍ଲୀରୁ ଆମେ ଜୟପୁର ଯିବାପାଇଁ ସେ ମଟରଗାଡ଼ି ବନ୍ଦୋବସ୍ତ କରିଦେବାରୁ ତାଙ୍କ ନିକଟରେ କୃତଜ୍ଞ ହେଲୁ । ଘଟଣାଚକ୍ରରେ କାହା ଉପରେ କେତେବେଳେ କେଉଁ ଦାୟିତ୍ୱ ଆସି ପଡ଼େ, କେହି ଜାଣି ନାହିଁ । ଓଡ଼ିଶାରେ ଉଚ୍ଚଶିକ୍ଷାର ବିସ୍ତାର ପାଇଁ କଲେଜ, ହାଇସ୍କୁଲର ସଂଖ୍ୟା ବଢ଼ିଲା, ତାହା ତ୍ରିପାଠୀ ସାହେବ D.P.I ଥିବା ବେଳର ଦୂରଦୃଷ୍ଟି କାର୍ଯ୍ୟର ଫଳ । ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠାନରେ ତାଙ୍କର ଅବଦାନ ଅତୁଳନୀୟ । ବିଶ୍ୱବିଦ୍ୟାଳୟ ସ୍ଥାପନର ବିଚାର ପାଇଁ କମିଟି ବସିଥିଲା ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ଅଧ୍ୟକ୍ଷତାରେ । ରିପୋର୍ଟ ବାହାରିଲା । ପଣ୍ଡିତ ଗୋଦାବରୀଶ ଶିକ୍ଷାମନ୍ତ୍ରୀ ଥିଲାବେଳେ ଆସେମ୍ବ୍ଲିରେ ସେଥିପାଇଁ ଆଇନ ହେଲା । କିନ୍ତୁ ରାଜାଶାସନାଧୀନ ରାଜ୍ୟ ଗଡ଼ଜାତ ସବୁ ଏହି ବିଶ୍ୱବିଦ୍ୟାଳୟ ସହିତ ସ୍ୱଇଚ୍ଛାରେ ସଂପୃକ୍ତ ନ ହେଲେ, କେବଳ ଓଡ଼ିଶା ପ୍ରଦେଶର ପରିସର ମଧ୍ୟରେ ତାହାର ପରିଚାଳନା ବ୍ୟୟ ତୁଲାଇବାର ସମ୍ଭାବନା ନଥିଲା । ତେଣୁ ମୁଖ୍ୟମନ୍ତ୍ରୀ ପାରଳାଖେମୁଣ୍ଡିର ମହାରାଜାଙ୍କ ଅନୁରୋଧରେ ତ୍ରିପାଠୀ ସାହେବ, ମୟୂରଭଞ୍ଜ, ସୋନପୁର, ବଲାଙ୍ଗୀର, କଳାହାଣ୍ଡିର ମହାରାଜାଙ୍କ ପାଖକୁ ଯାଇ ସେମାନଙ୍କୁ ପ୍ରବର୍ତ୍ତାଇ ସେମାନଙ୍କର ଲିଖିତ ସ୍ୱୀକୃତି ଆଣିଲେ । ତ୍ରିପାଠୀ ସାହେବ ଦୁଇମାସ ଛୁଟିନେଇ ବିଲାତ ଯିବାପାଇଁ ବାହାରିବାର ମାତ୍ର ପୂର୍ବଦିନ ସନ୍ଧ୍ୟାରେ ପାରଳାଖେମୁଣ୍ଡି ମହାରାଜା ତ୍ରିପାଠୀଙ୍କୁ ଡକାଇ ଏହି ଅନୁରୋଧ ଜଣାଇବାରେ, ସେ ବିଲାତଯାତ୍ରା ପରିତ୍ୟାଗ କରି ଏହି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟରେ ଲାଗିଲେ ।

ପରିଜା ସାହେବଙ୍କ, ତ୍ରିପାଠୀ ସାହେବଙ୍କ ପରେ ଛାତ୍ରପ୍ରିୟ ଥିଲେ ଗୋପାଳ ଗାଙ୍ଗୁଲି, ଆର୍ତ୍ତବଲ୍ଲଭ ମହାନ୍ତି, ରତ୍ନାକର ପତି, ସୁରେଶ ବର୍ଦ୍ଧନ ଅଧ୍ୟାପକମାନେ । ଗୋପାଳବାବୁଙ୍କ ସେକ୍ସପିୟର ପଢ଼ାଇବାରେ ତନ୍ମୟତା, ଆର୍ତ୍ତବାବୁଙ୍କର ଯଦୃଚ୍ଛା ଗାଳି, ସୁରେଶବାବୁଙ୍କ ଛାତ୍ରବତ୍ସଳତା, ରତ୍ନାକରବାବୁଙ୍କ ନିଷ୍ଠାପରତା ପିଲାଙ୍କ ମଧ୍ୟରେ ସର୍ବଦା ଆଲୋଚିତ ହେଉଥାଏ । ମହାମହୋପାଧ୍ୟାୟ ଜଗନ୍ନାଥ ମିଶ୍ର, ଇଂରେଜୀ ଅନଭିଜ୍ଞ ଥାଇ ମଧ୍ୟ ସଂସ୍କୃତ ଲେକ୍‌ଚରରେ ଥାଆନ୍ତି । ସରଳ, ଶାନ୍ତ । ତାଙ୍କର କୌଣସି ଅସୁବିଧା ବା ମନକଷ୍ଟ ନହେବା ପାଇଁ ତାଙ୍କ କ୍ଲାସରେ ସମସ୍ତେ ଧୀରସ୍ଥିର ହୋଇ ବସିଥାନ୍ତି । ଗାମ୍ଭୀର୍ଯ୍ୟ ସହ ଦୂରତ୍ୱ ରକ୍ଷାକରି ପଢ଼ାଉଥିଲେ, ଯଦୁନାଥ ସରକାର, ଶାରଦାକାନ୍ତ ଗାଙ୍ଗୁଲି, ବରଦାକାନ୍ତ ଚାଟାର୍ଜୀ । ଲାମ୍ବର୍ଟ ସାହେବ, ହୁଇଟ୍‌ଲକ୍ ସାହେବ ତ ସହଜେ ସାହେବ, ପିଲାଏ ତାଙ୍କ ପାଖକୁ ଭରସି ଯାଇପାରନ୍ତି ନାହିଁ ।

ପରେ ଆଉ ଦୁଇଜଣ ସାହେବ ଆସିଲେ। ଉଷ୍ଟାନ ସ୍ମିଥ (ଇତିହାସ) ଅକ୍‌ଟରଲୋନି (ଇଂରାଜୀ), ସ୍ମିଥ ସବୁବେଳେ ଊର୍ଦ୍ଧ୍ୱମୁଖ, କଥା କହନ୍ତି ଅଳ୍ପ ଓ ଧୀର। ଅକ୍‌ଟରଲୋନି ପ୍ରଗଳ୍‌ଭ। ଶିରାରୁ ଶିରା ବାହାର କରି ଇଂରାଜୀ କବିତା ବୁଝାନ୍ତି। ସେ ଆମ ହଷ୍ଟେଲର ଓ୍ୱାର୍ଡେନ ହେଲେ, ତ୍ରିପାଠୀ ସାହେବ ପାଟନା D.D.P.I ହୋଇଯିବା ପରେ। ମୋ ପ୍ରତି ତାଙ୍କର ପ୍ରସନ୍ନତା କ୍ଲାସରେ, ହଷ୍ଟେଲରେ ଓ ବାହାରେ ପ୍ରକାଶ ପାଉଥିଲା। ଆଉଜଣେ ବିଜ୍ଞ ଅଧ୍ୟାପକ ଆସିଲେ ଭାଡିଜା ସାହେବ। ସିନ୍ଧିଲୋକ। ଇକନମିକ୍‌ସର ସେ ପ୍ରଫେସର। ବିଲାତ ଫେରନ୍ତା ଅଧ୍ୟାପକମାନଙ୍କ ଚଳଣି ଭିନ୍ନ ଥିଲା। ପିଲାଙ୍କ ଖାତିର ସେମାନଙ୍କ ପ୍ରତି ବେଶି। ସବୁ ପ୍ରଫେସର, ଲେକ୍‌ଚରର ପ୍ୟାଣ୍ଟ କୋଟ ପିନ୍ଧି କ୍ଲାସକୁ ଆସନ୍ତି। ଛାତ୍ର ସମସ୍ତେ ଧୋତି, କମିଜ ପିନ୍ଧନ୍ତି। କେବଳ ଜଣେ ଛାତ୍ର ଇଂରାଜୀ ଅଧ୍ୟାପକ ଜନାର୍ଦ୍ଦନ ମହାନ୍ତିଙ୍କ ଶାଳକ ଆସାମ ସିଲଙ୍ଗ ଅଞ୍ଚଳରୁ ଆସିଥାଏ। ସେ ପ୍ୟାଣ୍ଟସାର୍ଟ ପିନ୍ଧେ। ଛାତ୍ରମାନଙ୍କ ମଧ୍ୟରୁ ଅଧିକାଂଶ ନଗ୍ନପାଦ। ଟାଉନ ଭିତରୁ ଯେଉଁମାନେ ଆସନ୍ତି, ତାଙ୍କ ମଧ୍ୟରୁ ଅଳ୍ପ ସାଇକେଲରେ ଆସନ୍ତି। ଅନ୍ୟମାନେ ଚାଲିକରି ଆସନ୍ତି। ଟାଉନରୁ ଆସୁଥିବା ଅଧ୍ୟାପକମାନେ ଭଡ଼ା ଘୋଡ଼ାଗାଡ଼ିରେ ଆସନ୍ତି। ଚାରିଜଣ ଲେଖାଏଁ ଗୋଟିଏ ଗାଡ଼ିରେ ଆସନ୍ତି। ଟାଉନର ଏକମାତ୍ର ଯାନ ଥିଲା ଘୋଡ଼ାଗାଡ଼ି। କେବଳ ସୁକାନ୍ତ ରାଓ (ଫିଜିକ୍ସ) ନିଜେ ନିଜର ଫିଟନ ଗାଡ଼ି ଚଳାଇ ଆସୁଥିଲେ। କିପରି ଓ କାହିଁକି ମୁଁ ସମସ୍ତଙ୍କ ନିକଟରେ ପ୍ରଥମରୁ ଚିହ୍ନଟ ହୋଇଗଲି, କହିପାରିବି ନାହିଁ।

**ନୂତନ ବନ୍ଧୁତ୍ୱ**

କଲେଜ ପ୍ରଥମ ବର୍ଷ କ୍ଲାସରେ ଦିନେ ବୈକୁଣ୍ଠଙ୍କୁ (ବୈକୁଣ୍ଠନାଥ ପଟ୍ଟନାୟକ) ଦେଖିଲି। ସତ୍ୟବାଦୀ ସ୍କୁଲରେ କିଛିକାଳ ସହାଧ୍ୟାୟୀ ଥିଲୁ। ପୂର୍ବ ସଭ୍ୟତା ପୁଣି ଜାଗିଲା। ଅନ୍ନଦାଙ୍କ (ଅନ୍ନଦା ଶଙ୍କର ରାୟ) ସହିତ ତାଙ୍କର ଢେଙ୍କାନାଳ ସ୍କୁଲରୁ ପରିଚୟ ଥାଏ। ଅନ୍ନଦାଙ୍କ ସହିତ ସେ ମୋତେ ନେଇ ଚିହ୍ନାଇ ଦେଲେ। ଅନ୍ନଦାଙ୍କର ପୂର୍ବ ପରିଚିତ କାଳିନ୍ଦୀ (କାଳିନ୍ଦୀ ଚରଣ ପାଣିଗ୍ରାହୀ) ଆମ ହଷ୍ଟେଲରେ ପୁରୀ ମେସ୍‌ରେ ରହୁଥାନ୍ତି। ଅନ୍ନଦାଙ୍କ ଜରିଆରେ ତାଙ୍କ ସହିତ ଜଣାଶୁଣା ହେଲା। ତାପରେ ପରିଚୟ ଶରତ୍‌ଙ୍କ (ଶରତଚନ୍ଦ୍ର ମୁଖାର୍ଜୀ) ସଙ୍ଗେ। କେଉଁ ସୂତ୍ରରେ ତାହା ଘଟିଲା ମନେ ନାହିଁ। ବୋଧହୁଏ ଅନ୍ନଦାଙ୍କ ଯୋଗୁଁ। ଶରତ୍ ଟାଉନରୁ ଯା ଆସ କରୁଥିଲେ। ବୈକୁଣ୍ଠ ରହୁଥିଲେ କଲେଜ ନିକଟବର୍ତ୍ତୀ ରାଣୀହାଟ ପଶୁ ଡାକ୍ତରଖାନା ଅଫିସର ଏକ କ୍ଷୁଦ୍ର କୋଠରୀରେ। ସେଠାରେ ଡାକ୍ତର ତାଙ୍କର ଆତ୍ମୀୟ ଥିଲେ। ଅନ୍ନଦା ହଷ୍ଟେଲରେ। ପାଞ୍ଚଜଣ କିପରି ପରସ୍ପର ପ୍ରତି ଘନିଷ୍ଠ ଭାବରେ ଆକୃଷ୍ଟ ହେଲୁ ମନେ ନାହିଁ। ଇଂରେଜୀ କ୍ଲାସରେ ଏକତ୍ର ହେବାକୁ ହୁଏ। ଗିରିଜା ଶଙ୍କର ରାୟ ଇଂରାଜୀ ଅଧ୍ୟାପକ ଆମମାନଙ୍କର ଅତି ପ୍ରିୟ ଥିଲେ। କେବଳ ପିଲାଙ୍କ ଆବଶ୍ୟକତା ଅନୁଯାୟୀ ସେ ପଢ଼ାଉ ନଥିଲେ। ଅନ୍ୟାନ୍ୟ

ଇଂରେଜୀ, ବଙ୍ଗଳା ବହିର ସଙ୍କେତ ମଧ୍ୟ ଦେଉଥିଲେ। କ୍ଲାସ ବାହାରେ ଆମେ ପାଞ୍ଚଜଣ ଏକାଠି ହେଲେ, ଅନ୍ୟ ବହି, ମାସିକ ପତ୍ରିକା ସମ୍ବନ୍ଧରେ ଆଲୋଚନା ହୁଏ। ପ୍ରତିଦିନ ପ୍ରାୟ ତାହା ଘଟୁଥିଲା। ରବୀନ୍ଦ୍ରନାଥ ଠାକୁର ସେତେବେଳେ ବଙ୍ଗ ସାହିତ୍ୟରେ ସର୍ବଉଜ୍ଜ୍ୱଳ ତାରକା। ରାମାନନ୍ଦ ଚାଟାର୍ଜୀଙ୍କ ସମ୍ପାଦିତ ଇଂରାଜୀ ମାସିକ ପତ୍ରିକା (Modern Review) ମଡ଼ର୍ଣ୍ଣ ରିଭିଉ, ବଙ୍ଗଳା ମାସିକ ପ୍ରବାସୀ ଯୁଗ ପ୍ରବର୍ତ୍ତକ ପରି ହୋଇଥାଏ। ବଙ୍ଗ ସାହିତ୍ୟରେ ରେଭେନସା ତାହା ପୂର୍ବରୁ ଆରମ୍ଭ ହୋଇ ସାରିଥାଏ। ରାଜା ରାମମୋହନ ରାୟ ୧୮୩୩ ସେପ୍‌ଟେମ୍ବର ୨୭ ତାରିଖରେ ପରଲୋକ ଗତ ହୋଇଥିଲେ, କିନ୍ତୁ ସେ ଆରମ୍ଭ କରିଥିବା ସଂସ୍କାର ହାଓ୍ୱା ଅବ୍ୟାହତ ରହିଥାଏ। କେଶବ ଚନ୍ଦ୍ର ସେନ୍, ବଙ୍କିମଚନ୍ଦ୍ର ଚାଟାର୍ଜୀ, ଈଶ୍ୱର ଚନ୍ଦ୍ର ବିଦ୍ୟାସାଗର ପ୍ରଭୃତିଙ୍କର ସ୍ପନ୍ଦନ ଅମଳିନ ଥିଲା। ଶରତ୍ ଚନ୍ଦ୍ର ଚାଟାର୍ଜୀଙ୍କ ଉପନ୍ୟାସ ବଙ୍ଗଳା ସାହିତ୍ୟରେ ନୂତନ ମୋଡ଼ ଦେଉଥିଲା। ଏକ ଯୁବଗୋଷ୍ଠୀ ରବୀନ୍ଦ୍ର ସାହିତ୍ୟ ପ୍ରେରଣାରେ ଆନ୍ତର୍ଜାତିକ ଦୃଷ୍ଟି ସାହିତ୍ୟରେ ପୂରାଉଥିଲେ। ଇଂରେଜୀ ସାହିତ୍ୟରେ ସମସାମୟିକ ସାମାଜିକ ଚେତନାରେ କବି, ଔପନ୍ୟାସିକମାନଙ୍କର ତତ୍ପରତା ପୃଥିବୀକୁ ସବୁ ଦେଶକୁ ପ୍ରଭାବିତ କରୁଥିଲା। ଆମ ମନ ଇଂରେଜୀ ଓ ବଙ୍ଗଳା ସାହିତ୍ୟରେ ଚଞ୍ଚଳ ହେଲା। ନୂତନ ନୂତନ ବହି, ମାସିକ ପତ୍ରିକା ସଂଗ୍ରହ କରିବା କଷ୍ଟକର ହେଲେ ମଧ୍ୟ ସମ୍ଭବ ହେଲା। କାଳିନ୍ଦୀ, ବୈକୁଣ୍ଠ,ଅନ୍ନଦାଙ୍କ କବିତା ଲେଖା ଆରମ୍ଭ ହୋଇଥାଏ। ତାଙ୍କ ସାଙ୍ଗେ ବାଇହୋଇ ମୋର ଖଣ୍ଡିଉଡ଼ା ଚାଲିଥାଏ।

'ଉତ୍କଳ ସାହିତ୍ୟ' ସେତେବେଳର ଓଡ଼ିଶାରେ ସର୍ବପ୍ରଧାନ ମାସିକ ପତ୍ର। ବିଶ୍ୱନାଥ କର ତାହାର ପ୍ରବୀଣ ସମ୍ପାଦକ। ସବୁ ସାହିତ୍ୟରଥୀଙ୍କର ତାହା ମୁଖପତ୍ର ଥିଲା। ଆମେ ଅର୍ବାଚୀନ କଲେଜ ଛାତ୍ର। ସାହିତ୍ୟ କ୍ଷେତ୍ରରେ ପ୍ରବେଶାଧିକାର ଆଦୌ ନଥିଲା। ଦୁଃସାହସର ସହିତ ବିଶ୍ୱନାଥ କରଙ୍କ ଦ୍ୱାରସ୍ଥ ହୋଇ ଆମର ଯତ୍‌କିଞ୍ଚିତ୍ ସାହିତ୍ୟାନୁରାଗ ତାଙ୍କ ନିକଟରେ ନିବେଦନ କରିବାରେ ସେ ଅପ୍ରତ୍ୟାଶିତ ସ୍ନେହ ଓ ଉତ୍ସାହରେ ଆମକୁ ଅନୁପ୍ରାଣିତ କଲେ। ତାଙ୍କ ସହିତ ଯୋଗାଯୋଗ ଆମ ପକ୍ଷରେ ଆନ୍ତର୍ଜାତିକ ପାସ୍‌ପୋର୍ଟ ପରି କାର୍ଯ୍ୟ କଲା। ଆମର ସେତେବେଳେ କି ଆନନ୍ଦ କହି ହେବନାହିଁ। ବିଶ୍ୱନାଥବାବୁ ଅତି ସୁରୁଚିସମ୍ପନ୍ନ ବ୍ୟକ୍ତି। ଓଡ଼ିଶାର ବ୍ରାହ୍ମସମାଜର ଅଧିନାୟକ। ସ୍ତ୍ରୀ ଶିକ୍ଷାରେ ତାଙ୍କ ପରିବାର ଅଗ୍ରଣୀ। ଦୁଇ କନ୍ୟା ନର୍ମଦା, ସୁପ୍ରଭାବ ବି.ଏ. ପାସ୍। ଅନ୍ୟ କନ୍ୟା ପ୍ରତିଭା ଆଇ.ଏ. ପାସ୍। ନର୍ମଦା ବଙ୍ଗ ଦେଶରେ ଜଣେ ମୁନସଫଙ୍କ ସଙ୍ଗେ ବିବାହିତା। ଅନ୍ୟ ଦୁଇକନ୍ୟା ଅବିବାହିତା, ମହିଳା ହାଇସ୍କୁଲରେ ଶିକ୍ଷୟିତ୍ରୀ। ଘରେ ସମ୍ଭ୍ରାନ୍ତବଂଶର ଚାଲିଚଳଣି, ଅନେକଟା ବଙ୍ଗୀୟ ଢାଞ୍ଚାରେ। ରାମାନନ୍ଦ ଚାଟାର୍ଜୀ, ଜ୍ଞାନାଞ୍ଜନ ନିୟୋଗୀ ପ୍ରଭୃତିଙ୍କ ସଙ୍ଗେ ତାଙ୍କର ଘନିଷ୍ଠତା ଥାଏ। ସେ ଆମକୁ ତାଙ୍କ ପରିବାରଭୁକ୍ତ ପରି

ମନେ କଲେ । ଆମ ଲେଖା 'ଉତ୍କଳ ସାହିତ୍ୟ'ରେ ପ୍ରକାଶ ପାଇବା ସଙ୍ଗେ ସଙ୍ଗେ 'ମୁକୁର', 'ସହକାର' ପତ୍ରିକାରେ ମଧ୍ୟ ସ୍ଥାନ ପାଇବାରୁ ମନରେ ଅଧିକ ଉତ୍ସାହ ଜାତ ହେଲା । ଆମେ ସ୍ଥିର କଲୁ ଖଣ୍ଡିଏ ହସ୍ତଲେଖା ସାହିତ୍ୟ ପତ୍ରିକା ଆରମ୍ଭ କରିବାକୁ । ତାହା ହେଲା । ନାମ ମୁଁ ଦେଲି ଅବକାଶ-ଚାରିବନ୍ଧୁଙ୍କ ନାମର ପ୍ରଥମ ଅକ୍ଷରକୁ ନେଇ - ଅ (ଅନ୍ନଦା), ବ (ବୈକୁଣ୍ଠ) କା (କାଳିନ୍ଦୀ), ଶ (ଶରତ) । କେତେମାସ ପରେ ବନ୍ଧୁମାନେ ମୋ ନାମ ବାଦ ପଡ଼ିବାରୁ ପତ୍ରିକାର ନାମ ବଦଳାଇ ଦେଲେ- ''ଶକ୍ତି ସାଧନା'' । ପତ୍ରିକାରେ ଓଡ଼ିଆ ଇଂରାଜୀ, ବଙ୍ଗଳାରେ ଲେଖା ଯାଉଥିଲା । ଆମ ବନ୍ଧୁତ୍ୱର ମିଳିତ ନାମ ଦିଆ ହୋଇଥିଲା Nonsense Club । ଆମର ସେତେବେଳେ ପଢ଼ାହେଉଥିବା କୁପର (Couper)ଙ୍କ ବହିରୁ ବୋଧହୁଏ ସେ ନାମ ଆମ ମନକୁ ଆସିଥିଲା । ହରିଶ୍ଚନ୍ଦ୍ର ବଡ଼ାଳ, ହରିହର ମିଶ୍ର, ଦୁହେଁ ଆମର ସହାପାଠୀ । ହରିଶ ପୂର୍ବପଟେ, ହରି ମିଶ୍ର ପଶ୍ଚିମ ପଟେ ହଷ୍ଟେଲରେ ରହୁଥିଲେ । ସେ ଦୁହିଁଙ୍କ ସଙ୍ଗେ ଆମର ବନ୍ଧୁତା ହେଲା । ହରି ମିଶ୍ରେ ଭିକ୍ଟୋରିଆ ସ୍କୁଲରେ ଶରତର ପରିଚିତ ଥିଲେ । ଆଇ.ଏ. ଦୁଇବର୍ଷ ଆମେ ପାଞ୍ଚବନ୍ଧୁ ଗୋଟିଏ ସଂସ୍କାର ମନୋଭାବରେ ଚିନ୍ତା, ଆଲୋଚନା ଓ ଭବିଷ୍ୟତ କଳ୍ପନାରେ କଟାଇଲୁ ।

ସରଳାଦେବୀ ସେତେବେଳେ ନାରୀ ପ୍ରଗତିର ଅଗ୍ରଦୂତ ଭାବରେ ବାହାରି ଥାଆନ୍ତି । ଆମରି ବୟସର ବିବାହିତା ଝିଅ । ଜମିଦାର ବଂଶର କନ୍ୟା, ଜମିଦାର ବଂଶର ବୋହୂ । ସାଠୋଇ ନୁହନ୍ତି । ବାସୁଦେବ କାନୁନ୍‌ଗୋଙ୍କ ପୁତ୍ରୀ, ବାଳମୁକୁନ୍ଦ କାନୁନ୍‌ଗୋ ମାଜିଷ୍ଟ୍ରେଟଙ୍କର ପାଳିତା । ଚାଟରାର ଭାଗୀରଥି ମହାପାତ୍ରଙ୍କ ପତ୍ନୀ । ସ୍କୁଲରେ ପାଠ ପଢ଼ିନଥିଲେ, କିନ୍ତୁ ବିଦ୍ୱେଷୀ ଓ ସୁଲେଖିକା ହୋଇଥିଲେ । ଓଡ଼ିଆ, ବଙ୍ଗଳାରେ ବହୁପାଠୀ । ସେ ପରଦା ଭାଙ୍ଗି ସମାଜସେବା କରିବା ପାଇଁ କିପରି ଓ କେଉଁଠାରୁ ପ୍ରେରଣା ଓ ସାହସ ପାଇଲେ କେଜାଣି । ତୁମୁଳ ସାମାଜିକ ବିଘ୍ନ ପାରିବାରିକ ବାଧା ଅତିକ୍ରମ କରି କଂଗ୍ରେସ ଆନ୍ଦୋଳନରେ ଭାଗ ନେବାପାଇଁ ବାହାରି ଥାଆନ୍ତି । ଆମର ତାଙ୍କ ସହିତ ପରିଚୟ ଘଟିଲା ସାହିତ୍ୟ ସୂତ୍ରରେ । ବାଖରାବାଦ ବାଳମୁକୁନ୍ଦ କାନୁନ୍‌ଗୋଙ୍କ ଘରେ ରହୁଥାନ୍ତି ସେ । ସଦର କୋଠା ପାଖରେ ଗୋଟିଏ ଚାଳଘର ଖଞ୍ଜା ଥାଏ । ଆମ ପାଞ୍ଚଜଣଙ୍କ ମଧ୍ୟରୁ କେହି କେହି ସେହି ଖଞ୍ଜାକୁ ଯାଇ କଥାବାର୍ତ୍ତା କରୁ । କଲେଜ ଛାଡ଼ିବା ପରେ ବହୁ କ୍ଷେତ୍ରରେ ବହୁ ସମୟରେ ତାଙ୍କ ସହିତ କାର୍ଯ୍ୟ କରିବାର ସୁଯୋଗ ମୁଁ ପାଇଛି । ସାହିତ୍ୟ ଆଭିମୁଖ୍ୟରେ ଆମ୍ଭମାନଙ୍କର ମେଳ ଥିବାରୁ ତାଙ୍କ ସହିତ ବନ୍ଧୁତା ଅଗ୍ରସର ହେଲା ।

ଆଇ.ଏ. ପରୀକ୍ଷାରେ ଅନ୍ନଦା, ଶରତ ପ୍ରଥମ ଡିଭିଜନରେ ପାସ୍ କଲେ, ଅନ୍ୟ ତିନିଜଣଙ୍କର ତୃତୀୟ ଡିଭିଜନ ହେଲା, ସେ ଦୁହେଁ ବି.ଏ. ପଢ଼ିବା ପାଇଁ ପାଟନା କଲେଜକୁ ଗଲେ । ସେହି ସମୟରେ ମସୁଧା ହେଲା, ସମସ୍ତେ ମିଶି ଗୋଟିଏ ଉପନ୍ୟାସ ଲେଖିବା । ଗଳ୍ପର ଖସଡ଼ା ଅନ୍ନଦା, କାଳିନ୍ଦୀ କଲେ । ଭିନ୍ନ ଭିନ୍ନ ଲେଖକଙ୍କଠାରୁ ଖସଡ଼ା ଅନୁଯାୟୀ ଲେଖା ଆଣି

ଉପନ୍ୟାସ ସମ୍ପାଦନର ଭାର କାଳିନ୍ଦୀ ନେଲେ। ବଙ୍ଗଳାରେ ସେହିପରି ଏକ ଉପନ୍ୟାସ ବାହାରିଥାଏ। ଆମର ପ୍ରସ୍ତାବ ବିଶ୍ୱନାଥ କର ମହାଶୟ ଅନୁମୋଦନ କଲେ ଏବଂ ଉଦାରତାର ସହିତ ଉତ୍କଳ ସାହିତ୍ୟରେ ଧାରାବାହିକ ପ୍ରକାଶ କରିବା ପାଇଁ ସମ୍ମତ ହେଲେ। ଆମେ Nonsense Club ବନ୍ଧୁଙ୍କ ଛଡ଼ା, ସରଳାଦେବୀ, ସୁପ୍ରଭା କର, ବୈଷ୍ଣବ ଚରଣ ଦାସ, ମୁରଲୀଧର ମହାନ୍ତି ସେଥିରେ ଅଂଶ ଲେଖା ଦେଲେ। ଓଡ଼ିଆ ସାହିତ୍ୟରେ ଏହି ଅଭିନବ ଉଦ୍ୟମ ଚହଳ ସୃଷ୍ଟି କରିଥିଲା।

ବିଶ୍ୱନାଥବାବୁଙ୍କ ସାହାଯ୍ୟ ନ ପାଇଥିଲେ ଆମେ ତାହା କରିପାରି ନଥାନ୍ତୁ। ବି.ଏ. ପଢ଼ା ଦୁଇବର୍ଷ ମଧ୍ୟରେ ଏହା ଚାଲିଥିଲା। କାଳିନ୍ଦୀ, ବୈକୁଣ୍ଠ, ମୁଁ ରେଭେନ୍ସା କଲେଜରେ ବି.ଏ. ପଢୁଥାଉ। ବନ୍ଧୁତ୍ୱ, ଲେଖାଲେଖି, ଆଲୋଚନା ପୂର୍ବପରି ଅବ୍ୟାହତ ରହିଥାଏ। ସେତେବେଳେ ମୋର କେତେଗୁଡ଼ିଏ କବିତା ବୈକୁଣ୍ଠ ନେଇ 'ମୁକୁର' ପତ୍ରିକାରେ 'ବନଫୁଲ' ଛଦ୍ମନାମରେ ପ୍ରକାଶ କରାଇଥିଲେ।



***ଜୀବନ ଓ ଜୀବିକା,*** ନାଳନ୍ଦା, ୧୯୮୭

# ମୋ ସ୍ମୃତିରେ ରେଭେନ୍‌ସା କଲେଜ

## ନିତ୍ୟାନନ୍ଦ କାନୁନ୍‌ଗୋ

'ରେଭେନ୍‌ସା କଲେଜ ସହ ମୋର ଯେଉଁ ଗଭୀର ଆବେଗିକ ସଂପର୍କ ଅଛି ସେ କଲେଜରେ ଏବେ ପଢୁଥିବା ଛାତ୍ରମାନଙ୍କ ମନରେ ତାହା ଥିବ ବୋଲି ବେଳେବେଳେ ସନ୍ଦେହ ହୁଏ। ମୋର ଦୀର୍ଘ ଜୀବନର ଅନୁଭୂତିକୁ ମନେ ପକାଇଲାବେଳେ ବହୁବାର ଏହି କଲେଜରେ ବିତାଇଥିବା ଆନନ୍ଦର ଦିନଗୁଡ଼ିକ ମନେ ପଡ଼ନ୍ତି। ମୋର ସମସାମୟିକ ବନ୍ଧୁମାନଙ୍କର କ୍ଷେତ୍ରରେ ଏହାହିଁ ଘଟିଥାଏ ବୋଲି ମୁଁ ଜାଣିଛି। ମୁଁ ରେଭେନ୍‌ସା କଲେଜିଏଟ୍ ସ୍କୁଲରେ ନାମ ଲେଖାଇବା ବେଳେ କଲେଜିଏଟ୍ ସ୍କୁଲର ପରିସର ଭିତରେ ଚାଲିଥିଲା। କଲେଜର ପ୍ରିନ୍‌ସିପାଲ୍ ରୋନାଲ୍‌ଡ୍ ଫ୍ଲେମିଙ୍ଗ୍ ଉଇଲିଅମ ଶ - ତାଙ୍କ ପୂରା ନାଁ ମୋର ଏବେବି ମନେ ଅଛି - ଓ କେତେଜଣ ଅଧ୍ୟାପକ ବେଳେବେଳେ ସ୍କୁଲରେ ପଢ଼ାଉଥିଲେ। ସେହି ସମୟରେ କଲେଜରେ ପଢ଼ିବାପାଇଁ ମୋ ଭିତରେ ଥିଲା ଏକ ଅଦମ୍ୟ ଆକାଂକ୍ଷା। କାରଣ ଏହି କଲେଜର ଛାତ୍ରମାନେ କେବଳ ତାଙ୍କ ପରିବାରରେ ନୁହେଁ ଆମେ ରହୁଥିବା କ୍ଷୁଦ୍ର ସହରର ସବୁ କ୍ଷେତ୍ରରେ ପ୍ରଚୁର ସମ୍ମାନର ଅଧିକାରୀ ଥିଲେ। ବିଦ୍ୟାଳୟରେ କଲେଜର କ୍ଲାସ୍ ହେଉ ନାହିଁ। କଲେଜ ଓ ବିଦ୍ୟାଳୟ ମଧ୍ୟରେ ଥିବା ନିବିଡ଼ ଅନ୍ତରଙ୍ଗ ସଂପର୍କ ବି ଆଉ ନାହିଁ। କଲେଜ ଛାତ୍ରମାନଙ୍କ ଉପସ୍ଥିତି ଯୋଗୁଁ ବିଦ୍ୟାଳୟର ଯେଉଁ ଗାରିମା ଥିଲା ତା' ବି ହଜିଯାଇଛି।

ମୁଁ ୧୯୧୪ରେ କଲେଜରେ ନାମ ଲେଖାଇବା ବେଳକୁ ସେଠାରେ ଛାତ୍ର ସଂଖ୍ୟା ଥିଲା ଚାରିଶହ ବା ପାଞ୍ଚଶହ। ସମସ୍ତେ ସମସ୍ତଙ୍କୁ ଜାଣିଥିଲେ। ଉପର ଶ୍ରେଣୀରେ ପଢୁଥିବା ଛାତ୍ର ଏପରିକି ଚତୁର୍ଥ ବର୍ଷର ଛାତ୍ରମାନେ ବି' ତଳ ଶ୍ରେଣୀରେ ପଢୁଥିବା ଛାତ୍ରମାନଙ୍କ ସହ ମିଶୁଥିଲେ। ସେମାନେ ଆମକୁ ଖେଳରେ କିପରି ଭଲ ପ୍ରଦର୍ଶନ କରିପାରିବୁ ଓ ପାଠରେ କିପରି ଭଲ ଫଳ ଦେଖାଇବୁ ସେ ବିଷୟରେ ସାହାଯ୍ୟ କରୁଥିଲେ। ଆମର ଶିକ୍ଷକମାନଙ୍କ ଭିତରେ ଥିଲେ ପ୍ରଥିତଯଶା ବିଦ୍ୱାନ୍ ଯୋଗେଶଚନ୍ଦ୍ର ରାୟ ବିଦ୍ୟାନିଧି, ଇଂରାଜୀ ଅଧ୍ୟାପକ ଗୋପାଳଚନ୍ଦ୍ର ଗାଙ୍ଗୁଲି, ଓ ଦର୍ଶନ ଅଧ୍ୟାପକ ମୋହିନୀ ମୋହନ ସେନାପତି। ଏମାନେ ଥିଲେ ଗୋଟିଏ ଗୋଟିଏ ଅନୁଷ୍ଠାନ।

କଲେଜ ଛାଡ଼ିବାର ପଇଁତିରିଶ ବର୍ଷ ପରେ ମୁଁ ଯୋଗେଶବାବୁଙ୍କୁ ଦେଖା କରିବାକୁ ଯାଇଥିଲି। ତାଙ୍କ ପ୍ରତି ମୋର ଗଭୀର ଶ୍ରଦ୍ଧା ଓ ସମ୍ମାନ ଥିଲା। ମୁଁ ଗଣିତର ଛାତ୍ର ନ ଥିଲି। ଗଣିତ ଅଧ୍ୟାପକ ଶାରଦାବାବୁ ବି ଗମ୍ଭୀର ସ୍ୱଭାବର ଥିଲେ ଓ ଖୁବ୍ କମ୍ କଥା କହୁଥିଲେ। କିନ୍ତୁ

ଛାତ୍ରମାନଙ୍କ ଉପରେ ତାଙ୍କ ନୈତିକ ପ୍ରଭାବ ଏତେ ଗଭୀର ଥିଲା ଯେ ମୋ ପାଇଁ ଏବେ ବି ସେ ପ୍ରେରଣାର ଉତ୍ସ ।

ଆମ ସମୟରେ କୃତ୍ତିବାସ ସାମନ୍ତରାୟ, ଦୁର୍ଗାଚରଣ ଦାସ, ନିର୍ମଳ ବାନାର୍ଜୀ, ରତ୍ନାକର ପତି ଓ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଭଳି କିଛି ଯୁବ ଅଧ୍ୟାପକ କଲେଜରେ ଯୋଗ ଦେଇଥିଲେ । ଛାତ୍ର ଜୀବନରେ ଜଣେ ଫୁଟ୍‌ବଲ୍ ଖେଳାଳି ଭାବରେ ନାଁ କରିଥିବା ଆର୍ତ୍ତବାବୁ ଆମେ କଲେଜରେ ନାଁ ଲେଖାଇବା ପୂର୍ବରୁ ଜଣେ ଯଶସ୍ୱୀ ନାୟକ ଥିଲେ ।

ସବୁ ଶନିବାର ଉପରବେଳା ଆର୍ତ୍ତବାବୁ 'ପ୍ରଥମ ବିଶ୍ୱଯୁଦ୍ଧର ଅଗ୍ରଗତି' ବିଷୟରେ ବକ୍ତୃତା ଦେଉଥିଲେ । ତାଙ୍କ ବକ୍ତୃତା ଏତେ ଚିତ୍ତାକର୍ଷକ ଥିଲା ଯେ ଶ୍ରୋତାମାନଙ୍କ ଦ୍ୱାରା ହଲ୍ ଭର୍ତ୍ତିହୋଇ ଯାଉଥିଲେ । ଯଦିଓ ବକ୍ତୃତା ଶୁଣିବା ବାଧ୍ୟତାମୂଳକ ନ ଥିଲା । ଛାତ୍ରମାନଙ୍କ ଭିତରେ ବୌଦ୍ଧିକ କୌତୂହଳ ସୃଷ୍ଟି କରିବା ଓ ସେମାନଙ୍କୁ ନିଜକୁ ଭଲ ଲାଗୁଥିବା ବିଷୟ ଗୁଡ଼ିକରେ ଜ୍ଞାନ ଅର୍ଜନ କରିବାକୁ ଉତ୍ସାହିତ କରିବା ତାଙ୍କର ଗୋଟିଏ ବିଶେଷ ଗୁଣ ଥିଲା । ତାଙ୍କ ଠାରୁ ପ୍ରେରଣା ପାଇ ମୁଁ ଜୀବବିଜ୍ଞାନ ସମ୍ବନ୍ଧରେ ପଢ଼ାପଢ଼ି କଲେଜ ଛାଡ଼ିବାପରେ ବି କରୁଥିଲି । ସେ କିନ୍ତୁ ଥିଲେ ସଂସ୍କୃତ ଅଧ୍ୟାପକ । ଏହିପରି କଲେଜ ସଂପର୍କିତ ଅନେକ ମଧୁର ସ୍ମୃତିର ଅବତାରଣା ମୁଁ କରିପାରିବି ।

କଲେଜ ନିଜର ସ୍ୱତନ୍ତ୍ର ଅଟ୍ଟାଳିକାକୁ ସ୍ଥାନାନ୍ତରିତ ହେବାପରେ ମୁଁ ଥିଲି ଚତୁର୍ଥ ବର୍ଷର ଛାତ୍ର । ମୁଁ ପଶ୍ଚିମ ଛାତ୍ରାବାସରେ ଆସି ରହିଲି । ଡକ୍ଟର ପରିଜା ଥିଲେ ଏହାର ୱାର୍ଡେନ୍ । ସେ ଛାତ୍ରାବାସର ପ୍ରତ୍ୟେକ କୋଠରିକୁ ପ୍ରତି ଦିନ ଥରେ ବା ଦୁଇଥର ବୁଲି ଯାଉଥିଲେ । ତାଙ୍କ ନିଜ ଘରର ଦ୍ୱାର ସବୁ ଛାତ୍ରଙ୍କ ପାଇଁ ଖୋଲା ରହୁଥିଲା । ଏତେବେଳକୁ କଲେଜର ଛାତ୍ର ସଂଖ୍ୟା ବଢ଼ି ଯାଇଥାଏ ଓ ସମସ୍ତେ ସମସ୍ତଙ୍କୁ ଜାଣିବା ସହଜ ହେଉନଥାଏ । ଆମେ ନିଜ ନିଜ ପସନ୍ଦକୁ ନେଇ ସାଂଗମାନଙ୍କର ଛୋଟ ଛୋଟ ଦଳରେ ଥାଉ । ଇଂରାଜୀ ବା ଓଡ଼ିଆ କବିତା ବା ନାଟକ, ଖେଳ, ଅର୍ଥନୀତି ଆଦିରେ ଆଗ୍ରହକୁ ନେଇ ଏଇ ଦଳ ଗଢ଼ି ଉଠୁଥିଲା । ତଥାପି କଲେଜର ତାରୋଟିଯାକ ବର୍ଷର ଛାତ୍ରମାନଙ୍କ ମଧ୍ୟରୁ ଅନେକଙ୍କୁ ଜାଣିବା ସଂଭବ ହେଉଥିଲା । ସେମାନଙ୍କ ଭିତରୁ ଯେଉଁମାନେ ଏବେବି କହୁଛନ୍ତି ପରସ୍ପର ସହ ସଂପର୍କ ରଖିଛନ୍ତି ଏବଂ କଲେଜରେ ବିତାଇଥିବା ଆନନ୍ଦମୟ ଦିନଗୁଡ଼ିକର ସ୍ମୃତି ଗୋଟିଏ ରଜ୍ଜୁ ଭଳି ଆମକୁ ବାନ୍ଧି ରଖିଛି । ମୋତେ ଯେତେବେଳେ ପଶ୍ଚିମ ଓ ପୂର୍ବ ଛାତ୍ରାବାସର ଉତ୍ସବର ଅତିଥି ଭାବରେ ନିମନ୍ତ୍ରଣ କରାଗଲା ମୋ ଗର୍ବର ସୀମା ରହିଲା ନାହିଁ । ମୁଁ ଆଶା କରୁଛି ମୁଁ ଅବସର ନେବାପରେ ମୋତେ ମୋ କଲେଜର ଛାତ୍ରମାନଙ୍କ ସହ ସମୟ ବିତାଇବାପାଇଁ ପ୍ରଚୁର ସୁଯୋଗ ମିଳିବ ଓ ମୁଁ ସେମାନଙ୍କୁ ଭଲ ଲାଗୁନଥିଲେ ବି ସ୍ମୃତିଚାରଣ କରି ଚାଲୁଥିବି ।

•

---

ଅନୁବାଦ- ଯତୀନ୍ଦ୍ର ନାୟକ

*ରେଭେନ୍‌ସା କଲେଜ ଶତବାର୍ଷିକୀ ବିଶେଷାଙ୍କ,* କଟକ, ୧୯୬୮

# ରେଭେନ୍‌ସା କଲେଜରେ ପାଠପଢ଼ା

## ବେଲା ମୁଖାର୍ଜୀ

ପ୍ରାୟ ଚାଳିଶ ବର୍ଷ ତଳର କଥା । ଠିକ୍ ଭାବରେ କହିଲେ ୧୯୨୯ ମସିହା । ମୁଁ କଳାରେ ଇଣ୍ଟର ମିଡ଼ିଏଟ୍ ପାସ୍ କରିଥାଏ ରେଭେନ୍‌ସା କଲେଜିଏଟ୍ ଗାର୍ଲ୍‌ସ ସ୍କୁଲରୁ । ଏଠାରେ କଲେଜର କ୍ଲାସ୍ ହେଉଥାଏ । ସେ ସମୟରେ କଟକରେ ଝିଅମାନଙ୍କ ପାଇଁ ଡିଗ୍ରୀ କଲେଜ ନ ଥାଏ । ଜଣେ ଛାତ୍ରୀ ଯଦି ଉଚ୍ଚଶିକ୍ଷା ଲାଭ କରିବାକୁ ଚାହୁଁଥିଲା ତାକୁ କଲିକତାର ବେଗୁନ୍ କଲେଜରେ ନାମ ଲେଖାଇବାକୁ ପଡୁଥିଲା ।

ପାରିବାରିକ କାରଣ ପାଇଁ କଟକ ଛାଡ଼ି ବାହାରେ ପଢ଼ିବା ମୋ ପକ୍ଷରେ ସମ୍ଭବ ନଥିଲା । ଶେଷରେ ଡରିଡରି କିଛି ଆତ୍ମୀୟଙ୍କ ଉପଦେଶ ମାନି ରେଭେନ୍‌ସା କଲେଜରେ ନାଁ ଲେଖାଇଲା । କଲେଜ ଥିଲା ଆମ ଘରଠାରୁ ତିନି କିଲୋମିଟର ଦୂରରେ ଓ କଟକରେ ସେ ସମୟରେ ରିକ୍ସାର ପ୍ରଚଳନ ହୋଇନଥିଲା । ତେଣୁ ଗୋଟିଏ ଘୋଡ଼ାଗାଡ଼ି କିଣା ହେଲା ଓ ଜଣେ କଚୁଆନ୍‌କୁ ନିଯୁକ୍ତ କରାଗଲା ।

ତୃତୀୟ ବର୍ଷ କଳାର ଛାତ୍ରୀ ଭାବରେ କଲେଜରେ ଯୋଗ ଦେଲି । ମାସେ ପରେ କୁମାରୀ ବିବାସିନୀ ମହାନ୍ତି ଯେ କି ପରେ ଓଡ଼ିଶାର ସ୍ତ୍ରୀ ଶିକ୍ଷା ବିଭାଗର ସହକାରୀ ନିର୍ଦ୍ଦେଶକ ( Deputy Director) ୧୯୨୯ ମସିହା ପୂର୍ବରୁ କୌଣସି ଛାତ୍ରୀ କଲେଜର କଳା ବିଭାଗରେ ନାମ ଲେଖାଇ ନ ଥିଲେ । ୧୯୨୮ ମସିହାରେ ଜଣେ ଛାତ୍ରୀ ବିଜ୍ଞାନ ବିଭାଗରେ ନାମ ଲେଖାଇଥିଲେ ।

କଲେଜରେ ମୋର ପ୍ରଥମ ଦିନ ମୁଁ ଇଂରାଜୀ ଅଧ୍ୟାପକ ଜନାଥନ ମହାନ୍ତିଙ୍କ କ୍ଲାସରେ ତାଙ୍କ ବକ୍ତୃତା ଶୁଣିବାକୁ ଗଲି । ଶ୍ରେଣୀଗୃହରେ ପଶୁ ପଶୁ ସବୁଆଡୁ ଗୁଞ୍ଜରଣ ଶୁଭିଲା । କିନ୍ତୁ ସମସ୍ତଙ୍କୁ ନିରବ କରାଇ ଅଧ୍ୟାପକ ମହାନ୍ତି ମୋତେ ତାଙ୍କ ଟେବୁଲ୍ ପାଖରେ ବସିବାକୁ କହିଲେ । କଲେଜରେ ପଢ଼ିଥିବା ଦୁଇବର୍ଷ ଭିତରେ ଆମେ ଅଧ୍ୟାପକ ଶ୍ରେଣୀଗୃହରେ ପ୍ରବେଶ କରିବା ପୂର୍ବରୁ କେବେ ଶ୍ରେଣୀଗୃହରେ ପଶୁ ନ ଥିଲୁ । ଆମକୁ କୌଣସି ପ୍ରଶ୍ନ ପଚାରା ଯାଉନଥିଲା ଓ ଆମେ ବି ଏତେ ସଂକୋଚବୋଧ କରୁଥିଲୁ ଯେ ଅଧ୍ୟାପକଙ୍କୁ ପ୍ରଶ୍ନ ପଚାରିବାକୁ ସାହସ

କରୁନଥିଲୁ। ଉପସ୍ଥାନ ନେବାବେଳେ ଅଧ୍ୟାପକ ଆମର ରୋଲ୍ ନମ୍ବର ଡାକୁ ନ ଥିଲେ। ଆମର କେହି ସାଙ୍ଗ ନ ଥିଲେ। ଆମେ କାହାସହ ଗପସପ କରୁନଥିଲୁ। କ୍ଲାସ୍ ହେଉ ନ ଥିବା ସମୟରେ ଆମେ ଲାଇବ୍ରେରିଆନ୍ ଦାମୋଦର ବାବୁଙ୍କ ପାଖରେ ବସୁଥିଲୁ। କେବେକେବେ ଅଧ୍ୟାପକ ଶ୍ୟାମଚନ୍ଦ୍ର ତ୍ରିପାଠୀ କ୍ୱାର୍ଟର୍ସରେ ବସୁଥିଲୁ। ସେ ପରେ ଓଡ଼ିଶାର ଉଚ୍ଚଶିକ୍ଷା ନିର୍ଦ୍ଦେଶକ ହେଲେ।

ରେଭେନ୍ସା କଲେଜର ସବୁ ଛାତ୍ର ଆମକୁ ଜାଣିଥିଲେ। କିନ୍ତୁ ଆଶ୍ଚର୍ଯ୍ୟର କଥା ଆମେ କାହାର ନାଁ ଜାଣିନଥିଲୁ। ଏବେ କଲେଜରେ ପଢୁଥିବା ଛାତ୍ରୀମାନେ ଏକଥା ବିଶ୍ୱାସ କରିପାରିବେ ନାହିଁ। ବହୁ ବର୍ଷପରେ ଆମେ ଜାଣିବାକୁ ପାଇଲୁ ଯେ ପ୍ରତିଷ୍ଠିତ ଓକିଲ ଶ୍ରୀ ଦୀନବନ୍ଧୁ ସାହୁ, ଶ୍ରୀ ବଳଭଦ୍ର ଚୌଧୁରୀ, ଶ୍ରୀ ହେମଚନ୍ଦ୍ର କାନୁନ୍‌ଗୋ, ଓ ଉତ୍କଳ ବିଶ୍ୱ ବିଦ୍ୟାଳୟର କୁଳପତି ଓ ଅନ୍ୟାନ୍ୟ ଅନେକ ସରକାରୀ ଚାକିରି କରି ପ୍ରତିଷ୍ଠା ଲାଭ କରିଥିବା ଅନେକ ବ୍ୟକ୍ତି ଆମର ସହାଧ୍ୟାୟୀ ଥିଲେ।

ଅଧ୍ୟାପକ ନିରଞ୍ଜନ ନିୟୋଗୀ, ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ଓ ଅଧ୍ୟାପକ କନାଥନ ମହାନ୍ତି ଆମର ସୁବିଧା ଅସୁବିଧା କଥା ବୁଝୁଥିଲେ। ସେ ସମୟରେ ଆମେ ଦୁଇଜଣ ଛାତ୍ରୀ ଥିଲୁ। ଛାତ୍ରମାନଙ୍କ ସମୁଦ୍ରରେ ଦୁଇ ବୁନ୍ଦା ପାଣି। ଏବେତ ରେଭେନ୍ସା କଲେଜ ପୁଅମାନଙ୍କ ପାଇଁ ଏକ କଲେଜ ନା ଏକ ମହିଳା ମହାବିଦ୍ୟାଳୟ କହିବା କଷ୍ଟକର।

•

---

ଅନୁବାଦ- ଅଖ୍‌ତାର କମାଲ ଖାନ୍

***ରେଭେନ୍ସା କଲେଜ ଶତବାର୍ଷିକୀ ବିଶେଷାଙ୍କ,***

କଟକ, ୧୯୭୦

# ଅଠତିରିଶ ବର୍ଷ ତଳର କଥା

## ସୁକୃତି ମହାପାତ୍ର

ଦୀର୍ଘ ୩୮ ବର୍ଷ ତଳର କଥା । ୧୯୩୨ ମସିହା । ସେତେବେଳେ ଓଡ଼ିଶାରେ ବାଳିକାମାନଙ୍କ ପାଇଁ ସ୍ୱତନ୍ତ୍ର ଡିଗ୍ରି କଲେଜ ନ ଥିଲା । ରେଭେନ୍‌ସା ବାଳିକାବିଦ୍ୟାଳୟରୁ ଆଇ.ଏ.ପାସ୍ କରି ବି.ଏ. ପଢ଼ିବାପାଇଁ ରେଭେନ୍‌ସା ମହାବିଦ୍ୟାଳୟକୁ ଆସିଥିଲି । ତତ୍‌କାଳୀନ ଅଧ୍ୟକ୍ଷ ଥିଲେ ପ୍ରଫେସର ଡ୍ୟୁକ୍ । ଅଧ୍ୟକ୍ଷଙ୍କ ସହିତ ପ୍ରାୟ ସାକ୍ଷାତ୍ ନ ହେଲେ ମଧ୍ୟ ତାଙ୍କର ଶାସନର ସୁପରିଚାଳନା ଓ ଶୃଙ୍ଖଳା ଆମେ ଅନୁଭବ କରିଥିଲୁ । ବହୁ ଗୁଣୀ ଅଧ୍ୟାପକ ସଂସ୍ପର୍ଶରେ ଆସିବାର ସୁଯୋଗ ପାଇଥିଲୁ । ଆଜିସୁଦ୍ଧା ମନେପଡ଼େ ସେମାନଙ୍କର ଗାମ୍ଭୀର୍ଯ୍ୟପୂର୍ଣ୍ଣ ଅଧ୍ୟାପନା । ସେମାନେ ନିଜକୁ ଯଥାର୍ଥ ଗୁରୁପଦରେ ପ୍ରତିଷ୍ଠିତ କରି ନିଜର ବଳିଷ୍ଠ ବ୍ୟକ୍ତିତ୍ୱର ପରିଚୟ ଦେଇଥିଲେ । ତେଣୁ ସେମାନଙ୍କ ଠାରେ ଆମର ଥିଲା ସ୍ୱତଃପ୍ରବୃତ୍ତ ଭୟ ଓ ଭକ୍ତି ।

ସେତେବେଳେ ବି.ଏ. କ୍ଲାସ୍‌ରେ ଛାତ୍ରୀ ଥିଲୁ ଆମେ ୩ ଜଣ । ଏମ୍.ଏ. ପଢ଼ିବାବେଳେ ୬ ଜଣ ଛାତ୍ରଙ୍କ ମଧ୍ୟରେ ମୁଁ ଥିଲି ଏକମାତ୍ର ଛାତ୍ରୀ । ଏହି ବିରାଟ ଛାତ୍ର ଜନତା ଭିତରେ ଆମେ କେତେଜଣ ଛାତ୍ରୀ ଯେ କିପରି ଚଳପ୍ରଚଳନ କରୁଥିଲୁ ବର୍ତ୍ତମାନର ଛାତ୍ରୀସମାଜ ବୋଧହୁଏ ଧାରଣା କରିପାରିବେ ନାହିଁ । ପ୍ରଫେସର୍ କ୍ଲାସ୍‌ରେ ପ୍ରଶ୍ନ ପଚାରିଲେ ଆମେ ଉତ୍ତର ଦେବାକୁ ସଙ୍କୋଚବୋଧ କରୁଥିଲୁ । ଯେତେବେଳେ କ୍ଲାସ୍ ଶେଷ ହୁଏ ସେତେବେଳେ ସ୍ରୋତପରି ପୁଅପିଲାମାନେ ବାହାରି ଆସନ୍ତି । ଆମେ ସସଂକୋଚରେ କାନ୍ଥକୁ ଆଉଜି ଛିଡ଼ା ହୋଇଯାଉ । ଅସୀମ ସମୁଦ୍ରରେ ଗୋଟାଏ ନୌକାପରି ଆମେ ନିଜକୁ ମନେ କରୁଥିଲୁ । ଶହ ଶହ ପୁଅପିଲାଙ୍କ ମଧ୍ୟରେ ଜଣେ ଝିଅପିଲା ବସିବା ଅବସ୍ଥା ଦେଖିଲେ-ହଂସ ମଧ୍ୟେ ବକ ଯଥା ପ୍ରବାଦ ମନେପଡ଼େ । କିନ୍ତୁ ଏବେ ଯୁଗ କେତେ ବଦଳିଗଲାଣି । କଲେଜରେ ଶହେ ଉପରେ ମଧ୍ୟ ଛାତ୍ରୀସଂଖ୍ୟା-ଏପରିକି ମହିଳା ଅଧ୍ୟାପିକାମାନେ ମଧ୍ୟ ପୁରୁଷ କଲେଜରେ ପଢ଼ାଇବାକୁ ଆରମ୍ଭ କଲେଣି ।

ଅତି ସଂକ୍ଷେପରେ ମୋର କେତୋଟି ଅନୁଭୂତି ବର୍ଣ୍ଣନା କରୁଛି -

ଘୋଡ଼ାଗାଡ଼ିର କବାଟ ଅଳ୍ପ ଫାଙ୍କ ବା ବୁଜା ଅବସ୍ଥାରେ ପ୍ରତିଦିନ କଲେଜକୁ ଯାଉ। ଓହ୍ଲାଇ ସିଧା ଆମ 'ଲେଡ଼ିଜ୍ କମନ୍ ରୁମ୍'ରେ ଯାଇ ବସୁ। ଘଣ୍ଟି ବାଜେ, ଅଧ୍ୟାପକ କ୍ଲାସ୍‌ରେ ନ ପଶିବା ପର୍ଯ୍ୟନ୍ତ ଆମେ କରପଟିଆ ହୋଇ କାନ୍ଥକୁ ଆଉଜି ବାରଣ୍ଡାରେ ଠିଆ ହୋଇଥାଉ। ଅଧ୍ୟାପକଙ୍କ ସହିତ କ୍ଲାସ୍‌ରେ ପଶୁ। ଆମ ପାଇଁ ଖଣ୍ଡିଏ ଡେସ୍କ୍ ପଡ଼ିଥାଏ। ଅଧ୍ୟାପକଙ୍କର ଡାହାଣ ହାତ ଆଡ଼କୁ। ମୋର ପାଠ୍ୟାବସ୍ଥାରେ କ୍ଲାସ୍‌ରେ କେବେ କାହା ସାଙ୍ଗରେ ପାଟିଫିଟାଇଛି ବୋଲି ମନେପଡ଼େ ନାହିଁ। ଦରକାର ପଡ଼ିଲେ ସନ୍ତର୍ପଣରେ କନିକା ଲାଇବ୍ରେରୀକୁ ଯାଇ ଗୋଟିଏ କୋଣରେ ବସୁ। ବୃଦ୍ଧ ଲାଇବ୍ରେରିଆନ୍ ଦାମବାବୁ ସ୍ନେହ ଓ ଦୟାପରବଶ ହୋଇ ଆମ କଥା ବୁଝୁଥିଲେ।

ବି.ଏ. ପଢ଼ିଲାବେଳକୁ ଗୋଟିଏ ଉଲ୍ଲେଖଯୋଗ୍ୟ ବିଷୟ ହେଉଛି ସେତେବେଳର ଜାତୀୟ ଆନ୍ଦୋଳନର ତୁମୂଳ ଉତ୍ତେଜନା। ଶ୍ରୀମତୀ ମାଳତୀ ଦେବୀ କଲେଜ ବାଟ ମୁହଁରେ ପିକେଟିଂ କରୁଥାନ୍ତି। ମନେପଡ଼େ ଅଧ୍ୟାପକଙ୍କର ସାମାନ୍ୟ ଇଙ୍ଗିତରେ ଆମେ ସେଠାରୁ କିପରି ଅପସରି ଯାଇଥିଲୁ। ରାଜନୈତିକ ଆନ୍ଦୋଳନରେ ଯୋଗ ଦେବା ଦୂରର କଥା ପାଠ୍ୟନିର୍ଘଣ୍ଟ ବାହାରେ କଲେଜର କୌଣସି କାମରେ ଆମର ସତ୍ତା ନ ଥିଲା। ଏହିପରି ଭାବରେ ୨ ବର୍ଷ ବି.ଏ. ଓ ୨ ବର୍ଷ ଏମ୍.ଏ. କ୍ଲାସ୍‌ରେ କଟିଲା। ଅଧ୍ୟକ୍ଷ ଡ୍ୟୁକ୍‌ଙ୍କ ବଦଳରେ ପ୍ରଫେସର ବାଥେକା ଅଧ୍ୟକ୍ଷ ହୋଇ ଆସିଲେ। ଏହା ମଧ୍ୟରେ ଦୀର୍ଘ ୩୪ ବର୍ଷ ବିତିଯାଇଛି। ମୋର ଅଧ୍ୟକ୍ଷ ଓ ଅଧ୍ୟାପକମାନଙ୍କ ମଧ୍ୟରୁ ଅନେକେ ଇହଜଗତରେ ଆଉ ନାହାନ୍ତି। ଯେଉଁ ସହପାଠୀମାନେ ସରକାରୀ କର୍ମଚାରୀ ରୂପେ ନିଯୁକ୍ତ ହୋଇଥିଲେ ସେମାନେ କିଏ କିଏ ଅବସର ନେଇ କେଉଁଠାରେ ଅଛନ୍ତି। ଏହି ମହାବିଦ୍ୟାଳୟର ଗୃହ ଓ ଗୃହ ପରିବେଶର କେତେ ପରିବର୍ତ୍ତନ ହୋଇଅଛି। ପ୍ରଗତି ପଥରେ ଆମର ମହାବିଦ୍ୟାଳୟ ଆଗେଇ ଚାଲିଛି। ଆଜି ଏହି ଶତବାର୍ଷିକୀରେ ଜଣେ ପୁରାତନ ଛାତ୍ରୀ ଭାବରେ ମୁଁ ଏହାର ଉତ୍ତରୋତ୍ତର ଶୁଭ କାମନା କରୁଅଛି।

•

*ରେଭେନ୍ସା କଲେଜ ଶତବାର୍ଷିକୀ ବିଶେଷାଙ୍କ,*

କଟକ, ୧୯୭୦

# ରେଭେନ୍‌ସାରେ ଅଧ୍ୟାପନା

## କୁଂଜବିହାରୀ ଦାସ

ବେଲପୁର ମୋତେ ବେଶ୍ ଆରେଇ ଯାଇଥିଲା । ସପ୍ତାହରେ ଦୁଇଥର ଆମେ ହାଟକୁ ଯାଇ ପରିବା ଆଣୁଥିଲି । ଚିହ୍ନା ହୋଇଥିଲେ ମାଛବାଲା , ଦୋକାନୀ , ଅଣ୍ଡାବିକାଳି , ପରିବାବାଲୀ । ଶ୍ରୀନିକେତନ ଗୋଶାଳାରୁ ଆସୁଥିଲା ଦୁଧ । ବେଶ୍ ଗୋଟାଏ ଶଗଡ଼ ଗୋଳାରେ ପଡ଼ି ଯାଇଥିଲା । ସାମାନ୍ୟ ପ୍ରୟାସରେ ସୁରୁଖୁରୁରେ ଚାଲିଥିଲା ।

କଟକରେ ପ୍ରଶସ୍ତ ସରକାରୀ କ୍ୱାର୍ଟର୍; ଅଗଣାରେ ଗୋଟିଏ କଲମୀ ଆମ୍ବ, ବେଲ, ଗଂଗାକାଳିଆ ଲେମ୍ବୁ ଗଛ । ବହୁତ ସୁବିଧା ଥିଲେ ବି ପରିସ୍ଥିତି ସହିତ ଜୀବନକୁ ଖାପ ଖୁଆଇବାକୁ ଦିନାକେତେ ସମୟ ଲାଗିଥିଲା । ଆଣ୍ଠୁଏ କାଦୁଅରେ ଛିଡ଼ାହୋଇ ରହିଥିବା ହାଣ୍ଡି ମିଠା କଖାରୁ, ହାତୀଦାନ୍ତ ମୂଳା , ଭେଣ୍ଡା ବନଉଥିବା ଭେଣ୍ଡି , ନଅରଙ୍ଗକହ୍ନି , ଗଜା କୋଶଳା , ଗଜବନ୍ତଳ ଆଦିରେ ବଜାରୀ କବିତ୍ୱ ଲକ୍ଷ୍ୟ କରୁ କରୁ ମୋ ପରିବା ବ୍ୟାଗଟି ଭିଡ଼ି ନେଇଥିଲା ବୃଷଭ । ହାଟଦଣ୍ଡିଆ ବେତାରେ ହାତ ପୂରାଇ ତୋଳା ନେଲାପରି ସେ ମୁହଁପୂରାଇ ପୁଳାଏ ପୁଳାଏ ନିଏ , ବାଡ଼ିମାଡ଼ ତାକୁ କାଟେନାହିଁ , ସେ ପରିବାବାଲା ପାଣି ରଖିଥାନ୍ତି ପକାନ୍ତି ।

ଦୁଧ ଅଭାବରୁ ଗାଈଟିଏ ପୋଷିଥିଲି । କିଏ ଗେଟ୍ ମେଲାଇଲେ ବାହାରକୁ ଖସିଯାଏ । ପାଞ୍ଚଣଟେ ଧରି ତା' ପିଛାଧରି 'ହ-ହ , ଡ଼ି-ଡ଼ି' କରିବି କିପରି ? କାଞ୍ଜିଆ ଘରେ ପଡ଼ିଲେ ତାକୁ ମୁକୁଳେଇ ଆଣିବା ମୁସ୍କିଲ । ଅତି ଆକ୍ରାନ୍ତ କରିବାକୁ ତାକୁ ଗାଆଁରେ ଛାଡ଼ିଲି । ଦାନାଖିଆ ଗୋରୁ ଭୂଇଁ ଚାଟୁଛି କୋଉଠି ? କିଛିଦିନ ପରେ ପରେ ଦେହରେ କଙ୍କାଳ ଝୁଲିଲା ।

ଗାଆଁରୁ ଗୋଟିଏ ଚାକରାଣୀ ଆଣିଥିଲି- ତଇ-ତଅପୋଇ । ସଂକ୍ଷିପ୍ତରୂପ ବାରିକଟୋକା ସହିତ ଦୋସ୍ତି କରି ସେ ଯାଇ ଉଠିଲା ବାଲିକୁଦାରେ । ନିଦାବିଷ୍ଣୁ ନୋକା ବାରିକ , ତା' ଛୋଟ ଝିଅଟି ଏଡ଼ିକି ଚାଇଁ , ଫୁଲେଇ , ଡବଡ଼ବୀ । ଘୋର ବର୍ଷା ଓ କାଦୁଅରେ ଯାଇ ପୁଲିସ୍ ସାହାଯ୍ୟରେ ତାକୁ ଉଦ୍ଧାର କରି ଆଣିଲି । ପୁଣି ଚଣାଚୂର ବାଲା ସହିତ ତା'ର ଜମିଲା ଦୋସ୍ତି , ହରଣଚ଼ାଳ ! ବହୁକଷ୍ଟରେ ଉଦ୍ଧାର କରି ଏହି ଅଭିଆଡ଼ୀ ଝିଅଟିକି ଗାଆଁରେ ଛାଡ଼ିଦେଇ ଆସିଲି ।

ଏମିତି ଖାଲଢ଼ିପ ରାସ୍ତାରେ ସଂସାର ଚାଲିଲା-କେତେବେଳେ ଅନିଙ୍କଳ ଖସିଲା ତ, କେତେବେଳେ ହୁଗୁଳିଲା ଝାମ। କୋଉ ସଂସାରଟା ବା କେଟରେ ଉଡି ଉଡି ଯାଉଛି ? ସବୁଟି କିଛି ଢ଼େଲାଡିମା, ଖାଲଖମା; କୋଉଠି କାଳି ଅଭାବରୁ ତା' କେଁ କେଁ ଡାକୁଛି।

ଭ୍ରମଣୋପଯୋଗୀ ସ୍ଥାନଟିଏ କାହିଁ ? କଲେଜ ପଡ଼ିଆରେ ଖରାଦିନେ ମରୀଚିକା ନାଚେ, ଝାଞ୍ଜିରେ ଏକାନ୍ତ ଧୂଳଧୂସର ହୁଏ। ବର୍ଷସାରା ପ୍ରାୟ ସବୁକ। କିନ୍ତୁ ଆସ୍ତେ ଆସ୍ତେ ଏହା ସଙ୍କୁଚିତ ହେଉଥିଲା ଲୁହାବଡ଼ ଓ କାଛରେ।

ଅନ୍ଧାରିଆରୁ କୋଡ଼ପୋଛା ପୁଅ ବୁନିକୁ କାନ୍ଧରେ ବସାଇ ବୁଲି ଯାଉଥିବା ବେଳେ ଥୋଇଦେଲା ମାତ୍ରେ କାନ୍ଦି ଉଠୁଥିଲା-ସତେ ଯେପରି ଭୁଇଁଟା ତାତାଲି ପାଦ ଫୋଟକା ହୋଇଯାଉଛି ! ମଝିଆ 'ଟିକି'ର ବୟସ ଚାରିବର୍ଷ, ଟିକିଏ ଅଭିମାନୀ। ବଡ଼ପୁଅ ଗପୁଡ଼ି। ତା' ଆଡ଼କୁ ମନେ ଦେଲେ 'ଟିକି' ରୁଷିବସେ।

ମୁଁ 'ବୁଡ଼ିଆଣୀ' ହୁଏ, ସେମାନଙ୍କ ଦୌଡ଼ ପ୍ରତିଯୋଗିତାରେ। କାକରଭିଜା ପଡ଼ିଆଟି ଝଲମଲ କରେ ଉଇଁଲା ସୂର୍ଯ୍ୟର କିରଣରେ। ପିଲାମାନେ 'ଅଗ୍ନି ଶିଖା', 'ଅଶୋକ', 'କନିଅର' ଫୁଲ ତୋଳି ଆଣନ୍ତି, କେତେବେଳେ ଆଞ୍ଜଳା ଆଞ୍ଜୁଳା କାକରଭିଜା ଗଙ୍ଗଶିଉଳି ଫୁଲ ଗୋଟାଇ ଆଣନ୍ତି।

ପ୍ରାତଃଭ୍ରମଣ ପରେ ମୁଁ ବ୍ୟାଗ୍‌ଟି ଧରି ବଜାରକୁ ଯାଏ; ଟେବୁଲ୍ ପାଖେ ବସିଲାବେଳକୁ ପ୍ରାୟ ବେଳା ନ'ଟା-ତା'ପରେ କ୍ଲାସ୍‌ପଢ଼ା ପ୍ରସ୍ତୁତି, ପରୀକ୍ଷାଖାତା ଦେଖା, ପ୍ରଶ୍ନ ତିଆରି। ପତ୍ରଲେଖା କିମ୍ବା ଟିଉଟୋରିଆଲ୍ ଖାତା ସଂଶୋଧନ। ମଧ୍ୟେ ମଧ୍ୟେ ବଗିଚା କାମ କରେ। କିଛି ଫୁଲଗଛ, ଶାଗପଟଳି, ଟମାଟୋ, ବାଇଗଣ, ଲାଉ। ଅଗଣାରେ ଗୋଟିଏ ବେଲ, ଲେମ୍ବୁ ଓ କଲମି ଆମ୍ବ ଗଛ। କିଏ ଲଗାଇଥିଲା, ଆମେ ଫଳ ଭୋଗ କରୁ। ଯେପରି ଅତୀତର ବହୁ ଉଦ୍‌ଭାବନ ଓ ଆୟୋଜନରେ ବର୍ତ୍ତମାନ ତା'ର ଗରଜ ମେଣ୍ଟାଏ, ବଡ଼ବଡ଼ିଆଙ୍କୁ କୃତଜ୍ଞତା ସହିତ ସ୍ମରଣ କରେ।

ଦିନସାରା ବହୁ ଜଞ୍ଜାଳ ମଧ୍ୟରେ ପ୍ରାୟ ଲେଖାଲେଖି ହୋଇପାରେନାହିଁ। ରାତି ଚାରିଟାରେ ଉଠିବା ମୋର ମାଟ୍ରିକ୍ କାଳର ଅଭ୍ୟାସ। ସେତେବେଳେ ଉଠି ପଢୁଥିଲି। ଏବେ ପଢ଼େ ବା ଲେଖେ। ମୋର ବିଶ୍ୱାସ ପଢ଼ା, ଲେଖା ଏକାବେଳକେ ହୁଏ, ପଢୁ ପଢୁ ଭାବ ଝଲସିଉଠେ, କବିତା ଲେଖାହୁଏ। ଅଧ୍ୟୟନର ଉତ୍ସ ନ ଥିଲେ ଧାରା ଶୁଷ୍କ ହୋଇଯାଏ।

କିଛିଦିନ ପରେ ସବୁ ଖତରେ ପଡ଼ିଯାଏ। ଶାନ୍ତିନିକେତନକୁ ଝୁରି ହେଉଥିବା ମନ ଶାନ୍ତ ହୁଏ। କଲେଜ ପ୍ରାସାଦର ପାରାପିଟ୍‌ରେ ବସି ପାରାମାନେ ବକମ ବକମ କରନ୍ତି। ମହାନଦୀର ବଗପହ୍ଲ କଲେଜ ଆକାଶ ପାରି ହୋଇ ମାଲଗୋଦାମର କକ୍ଷରେ ଆଶ୍ରୟ ଗ୍ରହଣ କରନ୍ତି।

ଦେବଦାରୁ ଧାଡ଼ିରେ ଅନ୍ଧାର ଜମିବା ଆଗରୁ ବିଭିନ୍ନ ଦିଗରୁ ବାଦୁଡ଼ିମାନେ ଆସି ଭିଡ଼ ଜମାନ୍ତି । ଘୂକଳିକା ଓ ବଣିଙ୍କ କୋଳାହଳରେ କଲେଜର ସମ୍ମୁଖ ପ୍ରାଙ୍ଗଣ ପରିପୂର୍ଣ୍ଣ ହୁଏ, ତା'ର ଉପରେ ଧାଡ଼ି ଧାଡ଼ି ହଳଦୀବସନ୍ତି, ଭଦଭଦଳିଆ, କଜଳପାତିଆ । ବର୍ଷାଗମରେ ଖେଳ ପଡ଼ିଆରେ ଚାଲନ୍ତି ଦଳଦଳ ସାଧବବୋହୂ, ଫୁଟିଉଠେ ନେଳୀ, ଧଳା ଘାସଫୁଲ । ଏଇ କ୍ଷୀଣ ପ୍ରକୃତିଶ୍ରୀ ମଧ୍ୟରେ ଶାନ୍ତିନିକେତନର କଦମ୍ବ, ପଲାଶ ଓ ଶାଲ୍ମଳୀ ଶୋଭାକୁ ଭୁଲିବାକୁ ଚେଷ୍ଟା କରେ ।

ତରୁଣ ଛାତ୍ରମହଲ; ତାରୁଣ୍ୟର ଉନ୍ମାଦନାରେ ମାତିବାକୁ ଚିତ୍ତ ବ୍ୟଗ୍ର ହୋଇ ଉଠେ । ରେଭନ୍ସା କଲେଜ ଏ, ଶ୍ରେଷ୍ଠ ଶିକ୍ଷାପୀଠ; ଆଧୁନିକ ଯୁଗର କବି ଓ ନେତାମାନଙ୍କୁ ଏ ନବ ମନ୍ତ୍ରରେ ଦୀକ୍ଷିତ କରିଥିଲା । ଏଠାରୁ ପ୍ରେରଣ ପାଇଥିଲେ ସତ୍ୟବାଦୀ ଯୁଗର ସ୍ରଷ୍ଟା ଗୋପବନ୍ଧୁ, ନୀଳକଣ୍ଠ, ଗୋଦାବରୀଶ, କୃପାସିନ୍ଧୁ, ଆଚାର୍ଯ୍ୟ ହରିହର, କବି ମଧୁସୂଦନ, ନନ୍ଦକିଶୋର, ନାଟ୍ୟକାର ରାମଶଙ୍କର, ସବୁଜ ଯୁଗ ଓ ଆଧୁନିକ ଯୁଗର କବିମାନେ । ଚିତ୍ତ ମୋର ରୋମାଞ୍ଚିତ ହୋଇଉଠେ । ଏଇ ମନ୍ଦିରକୁ ପ୍ରଣାମ କରେ । ଏ ଉତ୍କଳୀୟ ଜୀବନକୁ ଦେଇଛି ଏକ ଅପୂର୍ବ ଗତିଧାରା । ଏ କଲେଜରେ ଅଧ୍ୟାପକ ହେବା ଏକ ସୌଭାଗ୍ୟର ଫଳ ।

କବି, ଗାଳ୍ପିକ, ଔପନ୍ୟାସିକ, ପ୍ରାବନ୍ଧିକ ଛାତ୍ରମାନେ ଆସନ୍ତି । ମୁଁ ସେମାନଙ୍କ ଲେଖା ଦେଖିଦିଏ; ପୁସ୍ତକର ମୁଖବନ୍ଧ ଲେଖିଦିଏ । କାହାକୁ ନିରୁତ୍ସାହିତ କରେନାହିଁ । ବିକାଶଶୀଳ, ସର୍ଜନାକାଂକ୍ଷୀ ତରୁଣ ପ୍ରାଣ କାଳେ ଭଗ୍ନୋଦ୍ୟମ ହେବ । ମୁଁ ତ 'ଶୁନ୍'ରୁ ଆରମ୍ଭ କରି ଯାହି କିଛି ହେଲି । ଆଉ କିଏ କ'ଣ ନହୋଇ ପାରିବ କାହିଁକି ? ନିଜସ୍ୱ କଳନା କରିବା ଶକ୍ତି କାହାର ହୋଇଛି ? ଆତ୍ମାଭିତରେ ସର୍ଜନାତ୍ମାକୁ ଆବିଷ୍କାର କରିବା କ'ଣ ଏଡ଼େ ସହଜ କଥା ?

ସେତେବେଳେ ତ ଛାତ୍ରି ଅଧ୍ୟକ୍ଷଙ୍କୁ ଛୁରି ମାରୁ ନ ଥିଲେ, ଅଧ୍ୟାପକର ଆଖି ଫୁଟାଇ ଦେଉ ନ ଥିଲେ, କିମ୍ବା ତାଙ୍କ ଦୁଆରେ ବମ୍ବା ବାନ୍ଧି ଦେଉ ନ ଥିଲେ । କପିଆ ଥିଲେ; କିନ୍ତୁ ଗାର୍ଡଙ୍କ ଆଖିରେ ଆଙ୍ଗୁଠି ଗେଞ୍ଜି ବହି ନକଲ କରୁ ନଥିଲେ । ସପ୍ରଶଂସ ଛାତ୍ରମହଲରେ ଅଧ୍ୟାପକ ଜୀବନ ବଡ଼ ଆନନ୍ଦପ୍ରଦ ଥିଲା । ଶାନ୍ତିନିକେତନରେ ଅଳ୍ପ ଛାତ୍ରଛାତ୍ରୀ ଥିଲେ । ଏଠି ତ ପୋଖରୀକୂଳରୁ ଆସି ହ୍ରଦକୁ ଭେଟିଲା ପରି ଲାଗିଲା, କିନ୍ତୁ ଚିତ୍ତରେ ଭୀତି ନ ଥିଲା, ଥିଲା ଅସୀମ ପ୍ରୀତି । ତରଙ୍ଗିତ ସେଇ ହ୍ରଦକୁ ଶାନ୍ତ, ସ୍ଥିର ରଖିବା ଲାଗି ଲୋଡ଼ା ବାଗ୍ମିତା, ଜୀବନକୁ ନବୀନ ଗତି ଓ ଦୀକ୍ଷା ଦେବା ଲାଗି ସତ୍‌ସାହସ । ଏଇ ଛାତ୍ରଙ୍କ ଜରିଆରେ ମୁଁ ଜାତିକୁ ଗଢୁଛି ବୋଲି ମନରେ କିପରି ଏକ ପ୍ରେରଣା ଆସୁଥିଲା । ଯେତେ ଛୋଟ କ୍ଲାସ ହେଉ ପଛକେ ରୀତିମତ ପଢା ପ୍ରସ୍ତୁତ କରି ଯିବା ଫଳରେ ମନରେ ଆସୁଥିଲା ଗଭୀର ଆତ୍ମପ୍ରତ୍ୟୟ । ଅଧ୍ୟାପନା ଯେପରି ଶୁଷ୍କ, ନୀରସ ନ ହୁଏ, ସେଥିଲାଗି ଏହାକୁ ଏକ ରମ୍ୟ ରଚନାରେ ପରିଣତ କରୁଥିଲି । ତରୁଣତରୁଣୀ ମହଲର ଚିତ୍ତ ଆନନ୍ଦରେ ଉଦ୍‌ବେଳିତ ହୋଇ ଉଠୁଥିଲେ । ନୂଆ ନୂଆ ବିଷୟ ପଢ଼ି କହିବାକୁ

ସୁଖପ୍ରଦ ବୋଧ ହେଉଥିଲା । ବେଳେ ବେଳେ କହୁଥିଲି ଉତ୍କଳର ଗୌରବଗାଥା; ବର୍ତ୍ତମାନ ସାହିତ୍ୟିକ ଅଧୋଗତିର କଥା ।

ସେ ସମୟରେ ଅଧ୍ୟାପକମହଲରେ ଉଚ୍ଚ ଆଦର୍ଶର ଅଭାବ ମନକୁ ମନ ବାଧୁଥିଲା । ଉଚ୍ଚସ୍ତରର ଗବେଷଣା ବିରଳ, ବହୁ ପଠନ ବା ଭ୍ରମଣର ଲିପ୍‌ସା କାହାକୁ କାହାକୁ ଅଧ୍ୟାପକ ପଦ ଏକ ବୋଝ ପରି ହୋଇଥିଲା, କେବଳ ଜୀବନ ଦାୟରେ ସତେ ଅବା ସେ ତାହା ଗ୍ରହଣ କରିଛନ୍ତି । ଆଇ.ଏ.ଏସ୍.ରେ ଫେଲ୍ ମାରିଛନ୍ତି, ସବ୍‌ଡେପୁଟି ଚାକିରିଟିଏ ମଧ୍ୟ ପାଇ ପାରୁନାହାନ୍ତି । ସବୁ ବୈଫଲ୍ୟର ଅସନ୍ତୋଷ ଅଧ୍ୟାପକଙ୍କର ଦୀର୍ଘଶ୍ୱାସରେ ହିଁ ଫୁଟୁଛି । ରହିବାପାଇଁ କ୍ୱାଟର ନାହିଁ, ସ୍ୱତନ୍ତ୍ର ଭାବେ ବସି ଗବେଷଣା କରିବା ଲାଗି କୋଠରୀ ନାହିଁ ; ସମାଜରେ ପଦମର୍ଯ୍ୟାଦା ଦେବା ଲାଗି ଗାଡ଼ିଟିଏ ନାହିଁ, ଏମିତି କି ଫୋନ୍‌ଟିଏ, ପିଅନ୍‌ଟିଏ ବି ନାହିଁ ।

ଅଧ୍ୟାପକମାନଙ୍କ କମନ୍ ରୁମ୍ ତ ଗୋଟିଏ କୋଳାହଳମୟ ସ୍ଥାନ । କିଏ କେତେ ଟଙ୍କା ପାଇତିଲା, କିଏ କୋଠାବାଡ଼ି ତୋଳିଲା, କାହାର ବା ଉଚ୍ଚ କର୍ତ୍ତାଙ୍କ ସାତିଶୟ ଅନୁଗ୍ରହରେ ପଦୋନ୍ନତି ହେଲା, କାହାର ବା ଏକାନ୍ତ ନିଷ୍ଠା ଓ ଆନ୍ତରିକତା ସତ୍ତ୍ୱେ କିଛି ହେଲାନାହିଁ, ଏ ସଂପର୍କରେ କଥାଭାଷା ହୁଏ, ବେଳେବେଳେ ବଡ଼ ବିରକ୍ତିକର ବୋଧହୁଏ ।

ଦିନେ ପଚାରିଲି-ଅର୍ଥଲାଳସା ଯଦି ଏତେ, ଓକିଲ ବା ଡାକ୍ତର ନ ହୋଇ ଅଧ୍ୟାପକ ହେଲ କାହିଁକି ? କାନତରାଟି ହୋଇଥିଲେ ତ ଆହୁରି ଭଲ ହୋଇଥାନ୍ତା । ପାରାଦ୍ୱୀପରେ କାନତରାଟି ହୋଇ କେତେ ତ ରାତିକେ ହାତୀଏ ଆଣୁଛନ୍ତି । ଏ ଚାକିରିରେ ତ ଉପୁରି ନାହିଁ, କଣାଶୁଣା କଥା । ଆସିଲ କାହିଁକି ? ଅଧ୍ୟାପକ ହେବ ଲେଖିବ ନାହିଁ, ପଢ଼ିବ ନାହିଁ, ଏ କେମିତି କଥା ? ରେଭେନ୍‌ସା କଲେଜ ଭଳି ଗୋଟିଏ ବିରାଟ କଲେଜରୁ ବାହାରି କେତେ ଜଣ ଅନ୍ତର୍ଜାତିକ ପ୍ରତିଷ୍ଠା ଅର୍ଜନ କରିଛନ୍ତି, ଶହେ ବର୍ଷ ମଧ୍ୟରେ ?

ମୁଁ ଶାନ୍ତିନିକେତନରୁ ସଦ୍ୟ ଆସିଥିଲି । ଗବେଷଣାର ବଡ଼ ବଡ଼ ଯୋଜନା ମୋ ମୁଣ୍ଡରେ ଖେଳୁଥିଲା । ସେତେବେଳେ ଅଧ୍ୟାପକ ମହଲର ଜୀବନଯନ୍ତ୍ରଣା ମୋ ହୃଦୟ ଭେଦ କରି ନ ଥିଲା । ମୋର ଏ ଉକ୍ତି ଅଧ୍ୟାପକମହଲର ହାସ୍ୟୋଦ୍ରେକ କରି ଥିଲା । ମାତ୍ର ମୁଁ ଏତିକି ବୁଝି ପାରି ନ ଥିଲି ଯେ ପ୍ରବୃତ୍ତିକୁ ବଳିଦେଇ କେହି ଅଧ୍ୟାପକ ହେବାକୁ ଆସେନାହିଁ । କଲେଜ ଏକ ତପୋବନ ବା ଅଧ୍ୟାପକ ଜଣେ ତପସ୍ୱୀ ନୁହନ୍ତି । ଅନ୍ୟ ସମସ୍ତ ବିଭାଗର ଚାକିରିଆଙ୍କ ପରି ଅଧ୍ୟାପକର ମଧ୍ୟ ଉଚ୍ଚ ହେବାର ଆଶା ଆକାଂଖା ରହିଅଛି । ସେ ଅନ୍ୟମାନଙ୍କ ପରି ସୌଧ ନିର୍ମାଣ କରିବ, ସନ୍ତାନମାନଙ୍କୁ ଉଚ୍ଚଶିକ୍ଷା ଦେବ, କନ୍ୟାମାନଙ୍କୁ ଉପଯୁକ୍ତ ପାତ୍ରରେ ବିଭା ଦେବ । ଖଣ୍ଡିଏ ବହି କିଣିବାକୁ ବିଭବ ନ ଥିବ, ଖଡ଼ା ବଡ଼ି ଥୋଡ଼, ଥୋଡ଼ ବଡ଼ି ଖଡ଼ା ହୋଇ ଜୀବନ

ବିତୁଥିବ, ସମଶିକ୍ଷାସମ୍ପନ୍ନ ବ୍ୟକ୍ତିମାନେ କରୁଣା ଦୃଷ୍ଟିରେ ଦେଖୁଥିବେ । ଏତ ଅସହ୍ୟ ଅବସ୍ଥା । ପ୍ରକୃତରେ କିଛି କହିବା ଆଗରୁ ମୋର ଭାବିବାର ଥିଲା । ଘରଭଡ଼ା ଦେଉଁ ଦେଉଁ ଅଧ୍ୟାପକଙ୍କ ଦରମାର ଏକ ତୃତୀୟାଂଶ ବା ତହିଁରୁ ଅଧିକ ଚାଲିଯାଏ । ଘର ଯେଉଁଠି, ସେଠି ଶିକ୍ଷା ବା ସଂସ୍କୃତିର କି ପରିମଣ୍ଡଳ ଥାଏ ? ଯେଉଁମାନେ ଜାତିକୁ ଗଢ଼ିବେ ସେମାନଙ୍କ ଅବସ୍ଥା ଯଦି ଏପରି, ଜାତିର ଉନ୍ନତି ବା ହେବ କିପରି ?

ସେହି ବର୍ଷ ଦଳେ ଛାତ୍ରଙ୍କୁ ନେଇ ମୁଁ ଦକ୍ଷିଣଭାରତ ଭ୍ରମଣରେ ଯାଇଥିଲି । ରାଜାମାନଙ୍କର ରାଜଧାନୀ ସମୁଦ୍ରତୀରବର୍ତ୍ତୀ ମହାବଳିପୁରମ, ବାଙ୍ଗାଲୋର, ଶ୍ରୀରଙ୍ଗପଟନମ୍, କାବେରୀ ନଦୀବନ୍ଧ ସମୀପବର୍ତ୍ତୀ ବୃନ୍ଦାବନ ଉଦ୍ୟାନ, ନୀଳଗିରି ଓ ପଣ୍ଡିଚେରୀ ପ୍ରଭୃତି ଦେଖିବାର ସୌଭାଗ୍ୟ ଲାଭ କରିଥିଲି ।



---

***ମୋ କାହାଣୀ,*** ଓଡ଼ିଶା ବୁକ୍ ଷ୍ଟୋର, କଟକ, ୧୯୭୬

# ରେଭେନ୍‌ସା କଲେଜ

## ମୁରଲୀଧର ପ୍ରଧାନ

ଓଡ଼ିଶାର ଏକମାତ୍ର ପୂର୍ଣ୍ଣାଙ୍ଗ ରେଭେନ୍‌ସା କଲେଜ । ସାରା ଭାରତରେ ଏକ ପ୍ରଖ୍ୟାତ କଲେଜ । ମହାମନା ରେଭେନ୍‌ସାଙ୍କ ନାମରେ ଏହା ନାମିତ । ୧୮୬୮ ମସିହା ଜାନୁୟାରୀ ୨୦ ତାରିଖରେ କଲେଜର ଗୋଟିଏ ଶ୍ରେଣୀ ଛଅକଣ ପିଲାଙ୍କୁ ନେଇ କଟକ ଜିଲ୍ଲାସ୍କୁଲରେ ଖୋଲିଲା । ୧୮୭୫ ମସିହାରେ ବଙ୍ଗଳା ପ୍ରେସିଡ଼େନ୍‌ସିର ଲେଫ୍‌ଟନାଣ୍ଟ ଗଭର୍ଣ୍ଣର ରିଚାର୍ଡ ଟେମ୍ପଲ ଓଡ଼ିଶା ପରିଦର୍ଶନରେ ଆସିଥିବାବେଳେ କଟକର ବୁଦ୍ଧିଜୀବୀମାନେ ଶିକ୍ଷାପ୍ରସାର ପାଇଁ ତାଙ୍କୁ ଆବେଦନ କରିଥିଲେ । ଓଡ଼ିଶାରେ କଲେଜଟିଏ ହେଉ ଗଭର୍ଣ୍ଣର ଚାହୁଁଥିଲେ । ତେଣୁ ଓଡ଼ିଶାର ତତ୍କାଳୀନ କମିଶନର ରେଭେନ୍‌ସା ସାହେବଙ୍କୁ ଆଶୁ ପଦକ୍ଷେପ ନେବାକୁ ନିର୍ଦ୍ଦେଶ ଦେଲେ । କଟକ ହାଇସ୍କୁଲର ତତ୍କାଳୀନ ପ୍ରଧାନ ଶିକ୍ଷକ ତ୍ୟାଗୀ, କର୍ତ୍ତବ୍ୟପରାୟଣ ସାମୁଏଲ ଏଗର ଏହି ପ୍ରସ୍ତାବିତ କଲେଜର ପ୍ରିନ୍‌ସିପାଲ ପଦରେ ରହିବାପାଇଁ ବଙ୍ଗସରକାରଙ୍କୁ ସୁପାରିସ କରିଥିଲେ । ସେତେବେଳେ ଓଡ଼ିଶାରେ ବଙ୍ଗାଳୀମାନେ ଓଡ଼ିଆଭାଷାକୁ ଲୋପକରିବାକୁ ଚେଷ୍ଟା କରି "ଓଡ଼ିଆ ଏକ ସ୍ୱତନ୍ତ୍ର ଭାଷା ନଏ" କହି ଆନ୍ଦୋଳନ ଚଳାଇଥିଲେ । କାନ୍ତିଲାଲ ଭଟ୍ଟାଚାର୍ଯ୍ୟ ଓ ରାଜେନ୍ଦ୍ରଲାଲ ମିତ୍ର ଏହି ଆନ୍ଦୋଳନର ପୁରୋଭାଗରେ ଥିଲେ । ୧୮୬୬ ମସିହା ନଅଙ୍କ ଦୁର୍ଭିକ୍ଷରୁ ଉତ୍କଳ ଦୀପିକାର ଜନ୍ମ । ଉତ୍କଳ ଦୀପିକାର ସମ୍ପାଦକ ଗୌରୀଶଙ୍କର ରାୟ ଓଡ଼ିଆ ଭାଷା ରକ୍ଷାକରିବା ପାଇଁ ସମ୍ମୁଖ ସମରରେ ଉଭାହେଲେ । ବାଲେଶ୍ୱରର ତତ୍କାଳୀନ କଲେକଟର ବୀମସ୍ ସାହେବ ୧୮୭୦ ମସିହାର ମେ ମାସ ଚଉଦ ତାରିଖରେ ଏସିଆଟିକ ସୋସାଇଟି ଦୃଢ଼ଯୁକ୍ତି ଦେଖାଇ ପ୍ରମାଣ କରିଦେଲେ ଯେ ଓଡ଼ିଆ ଏକ ପ୍ରାଚୀନ ସମୃଦ୍ଧ ଭାଷା । ଏହା ହିନ୍ଦୀ ଓ ବଙ୍ଗଭାଷାଠାରୁ ପ୍ରାଚୀନ । ବଙ୍ଗାଳୀମାନଙ୍କର ମୁହଁ ବନ୍ଦ ହୋଇଗଲା । ବଙ୍ଗାଳୀ-ଓଡ଼ିଆ ଭାଷା ବିବାଦ ଯୋଗୁଁ ରେଭେନ୍‌ସା ସାହେବ କୌଣସି ବଙ୍ଗାଳୀଙ୍କୁ କଟକ କଲେଜରେ ପ୍ରଥମ ପ୍ରିନ୍‌ସିପାଲ ଭାବେ ନିଯୁକ୍ତି ନ ଦେବା ପାଇଁ ବଙ୍ଗ ସରକାରଙ୍କୁ ଲେଖିଲେ । ସାମୁଏଲ ଏଗରଙ୍କୁ ପ୍ରଥମ ପ୍ରିନ୍‌ସିପାଲ ରୂପେ ନିଯୁକ୍ତି ଦେଲେ । ଏଗର ସାହେବ ମାସିକ ତିନିଶହ ପଚାଶ ଟଙ୍କା

ବେତନରେ ଏହି ପଦରେ ରହିଲେ । ୧୮୭୬ ମସିହାରେ ଏଗର ସାହେବ ଡିଗ୍ରୀ କଲେଜରେ ଅଧ୍ୟକ୍ଷ ହେଲେ । ମାତ୍ର ଫଳ ସନ୍ତୋଷଜନକ ନହେଲେ କଲେଜର ସ୍ୱୀକୃତି କାଢ଼ିନିଆଯିବ ବୋଲି ସର୍ତ୍ତ ରହିଥିଲା । ମୟୂରଭଞ୍ଜର ତତ୍କାଳୀନ ମହାରାଜା କୃଷ୍ଣଚନ୍ଦ୍ର ଭଞ୍ଜଦେଓ ୧୮୭୮ ମସିହାରେ କଲେଜ ପାଇଁ ଏକକାଳୀନ କୋଡ଼ିଏ ହଜାର ଟଙ୍କା ଦାନକଲେ ଏବଂ କଲେଜର ନାମ ରେଭେନ୍‌ସାଙ୍କ ନାମରେ ନାମିତ ହେଉ ବୋଲି ପ୍ରସ୍ତାବ ଦେଲେ । ମହାରାଜାଙ୍କ ପ୍ରସ୍ତାବ ସାଦରେ ଗୃହୀତ ହେଲା । ପୁନଃ ୧୯୨୦ ମସିହାରେ ଏହି କଲେଜରେ ଇଂରାଜୀ ଏମ୍.ଏ. ଶ୍ରେଣୀ ଖୋଲିବା ପାଇଁ ସୋନପୁରର ମହାରାଣୀ ପାର୍ବତୀ ଦେବୀ ଏକକାଳୀନ ପଚାଶ ହଜାର ଟଙ୍କା ଦାନକରି ଓଡ଼ିଶାବାସୀଙ୍କର ଚିରସ୍ମରଣୀୟ ହୋଇ ଅଛନ୍ତି । କଲିକତା ବିଶ୍ୱବିଦ୍ୟାଳୟରେ ପାଣ୍ଠିରଖି ଓଡ଼ିଆରେ ଏମ୍.ଏ. ଖୋଲିବାରେ ସୋନପୁରର ଅବଦାନ ଉଲ୍ଲେଖନୀୟ ।

ଏଣେ ରେଭେନ୍‌ସା କଲେଜରେ କେହି ବି.ଏ. ପାସ୍ କରିନପାରିବାରୁ ଏଗର ସାହେବ କଟୁ ସମାଲୋଚନାର ଶରବ୍ୟ ହେଲେ । ମାତ୍ର ୧୮୮୦ ମସିହାରେ ବାବୁ ଦୁର୍ଗାଚରଣ ସାହୁ ରେଭେନ୍‌ସା କଲେଜର ପ୍ରଥମ ଗ୍ରାଜୁଏଟ ହିସାବରେ ଅଧ୍ୟକ୍ଷଙ୍କର ସମ୍ମାନ ରକ୍ଷା କରିବାରୁ ଓଡ଼ିଶାବାସୀଙ୍କ ନିକଟରେ ଅଭିନନ୍ଦନର ପାତ୍ର ହେଲେ । ୧୯୨୦ ମସିହାରେ ଉକ୍ତ କଲେଜର ନୂତନ ସୌଧ ରେଳଷ୍ଟେସନ ନିକଟରେ ନିର୍ମାଣ କରାଗଲା । ଏଗର ସାହେବଙ୍କ ତ୍ୟାଗ ନିଷ୍ଠାବଳରେ କଟକ ଜିଲ୍ଲା ସ୍କୁଲରେ ଯେଉଁ ଚାରୋଟି ୧୮୬୮ ମସିହାରେ ରୋପଣ କରାଯାଇଥିଲା ୧୯୪୧ ମସିହା ବେଳକୁ ତାହା ଏକ ବିରାଟ ବଟବୃକ୍ଷରେ କଟକ ରେଳଷ୍ଟେସନ ପାଖ ଚାଉଳିଆଗଞ୍ଜରେ ଦଣ୍ଡାୟମାନ ହୋଇଛି । ମୁଁ କ'ଣ ସେହି ଐତିହ୍ୟସମ୍ପନ୍ନ ରେଭେନ୍‌ସା ମହାବିଦ୍ୟାଳୟରେ ଅଧ୍ୟୟନ କରିପାରିବି ? ଅହେତୁକ ଭାବନା ମୋ ବାଳୁତ ମନରେ ସର୍ବଦା ଉଙ୍କି ମାରିଲା ।

**ପାଠପଢ଼ା କିପରି ଚାଲିଛି:**

ମୁଁ ପ୍ରତିଦିନ ଖଣ୍ଡାୟତ ଛାତ୍ରାବାସରୁ ପ୍ରାୟ ତିନି କି.ମି. ରାସ୍ତା ପଦବ୍ରଜରେ ଯାତ୍ରାକରେ । କେତେବେଳେ ରାଣୀହାଟ ବାଟେ ତ କେତେବେଳେ ଛତ୍ରବଜାର ବାଟେ ଯିବାକୁ ପଡ଼େ । କଲେଜରେ କାହା ସଙ୍ଗେ ବନ୍ଧୁତା କରିବାପାଇଁ ମୋର ଦମ୍ଭ କି ସାହସ କିଛି ନଥିଲା, ସମସ୍ତେ ଧନୀଘରର ପିଲାପରି ଜଣାଯାଉଥାନ୍ତି । ମୋର ସମସ୍ତେ ବନ୍ଧୁ, କେହି ବନ୍ଧୁ ନୁହଁନ୍ତି । ଛାତ୍ର କମନ୍‌ରୁମରେ ବସିଥିବାବେଳେ ପିଲାମାନେ ନାନା ଭଲମନ୍ଦ କଥା ପକେଇ ହସନ୍ତି, ଆଳାପ କରନ୍ତି । ମାତ୍ର ସେ ସମୟରେ କିପରି ଚଳିବାକୁ ପଡ଼ିବ, ବହିପତ୍ର କେଉଁଠୁ ପାଇବି, ଏହି କଥା ମୁଁ ଭାବୁଥାଏ । ଜୀବନଟା ଦୁର୍ବିସହ ବୋଧ ହେଉଥାଏ । କୌଣସି ଭଲ ବସ୍ତୁ ଦେଖିଲେ ମୋର ପ୍ରେମଭାବ ଆସୁନଥିଲା । ମୁହଁଟା ସବୁବେଳେ ଶୁଷ୍କ ନୀରସ । ଧାନ ଉଁଷୁଆ ହାଣ୍ଡିପରି ।

ରାଜାବଗିଚାରୁ ହରିଜନ (ହାଡ଼ି) ସାହି ଦେଇ ରାସ୍ତାକୁ ଉଠିଗଲାବେଳେ ଖାନନଗର ଶ୍ମଶାନ ପାଖରେ ରାସ୍ତାକୁ ଲାଗି ଗୋଟିଏ ନାଲିଆ କୋଠାପଡ଼େ। ତାହା ଗୋଟିଏ ମଠ ବୋଲି କହନ୍ତି। ସେହି କୋଠାଘରଟି ଛାଡ଼ିଦେଲେ ଛତ୍ରବଜାର ରେଳପଥ ପର୍ଯ୍ୟନ୍ତ ଏକ ପ୍ରକାଣ୍ଡ ଗହ୍ୱର। ମଧୁବାବୁଙ୍କ ଜୋତା କାରଖାନାର ଭଗ୍ନ କୋଠାଟି ମୂକ ସାକ୍ଷୀରୂପେ ଦଣ୍ଡାୟମାନ। ବଜ୍ରକବାଟି ଶେଷମୁଣ୍ଡରେ ରାଣୀହାଟ ଛକ ଆଡ଼କୁ ଗଲାବେଳେ ବାମ ପାଖରେ ଜଣେ ଧନୀ ଗୋପାଳଙ୍କ ଏକମହଲା କୋଠାଘରଟିଏ। ଏବେ ଯେଉଁଠି ସେକେଣ୍ଡାରୀ ବୋର୍ଡ ଅଫିସ୍ ଓ ହାଇସ୍କୁଲ ଅଛି ସେଠାରେ ଏକ ପ୍ରକାଣ୍ଡ ଆମ୍ର କାନନ। ବାମ ଦକ୍ଷିଣ ପାର୍ଶ୍ୱଟା ଜନମାନବଶୂନ୍ୟ ଖାଁ ଖାଁ ଲାଗୁଥାଏ। ସେହି ରାଜପଥର ଉତ୍ତର ପାର୍ଶ୍ୱରେ ଗୋଟିଏ ଗଛମୂଳେ ସନ୍ଧ୍ୟା ଆଗମ ସମୟେ ପାଞ୍ଚ ସାତ ଜଣ ମଦୁଆଙ୍କର ଗହଳି ଜମେ। ସେ ବାଟେ ଏକାକୀ ଗଲାବେଳେ ମୋ ମନରେ ଭୀତି ସଞ୍ଚାର ହୁଏ। ସେତେବେଳେ କଟକ ସହରର ଲୋକସଂଖ୍ୟା ଏକଲକ୍ଷରୁ କମ୍ ଥାଏ। ଏବେ ବାଦାମବାଡ଼ି, ବଜ୍ରକବାଟି ଅଞ୍ଚଳ ସହରର ଜନଗହଳି ଅଞ୍ଚଳରେ ପରିଣତ ହୋଇଛି।

ସେହି ମାର୍ଚ୍ଚ ମାସରେ କଟକ ବିପଦାଞ୍ଚଳ ବୋଲି ଘୋଷିତ ହୋଇଥାଏ। ମୁଖ୍ୟ ଅଫିସଗୁଡ଼ିକ ସମ୍ବଲପୁରକୁ ସ୍ଥାନାନ୍ତରିତ ହେଉଥାଏ। କଟକରୁ ବହୁ ଲୋକ ମଫସଲକୁ (ଯେଉଁମାନଙ୍କ ଘର ମଫସଲରେ) ପଳାଇ ଯାଉଥାନ୍ତି। ମୋ ମନ ଉଦ୍‌ବେଗରେ ପୂର୍ଣ୍ଣ। ମାର୍ଚ୍ଚମାସରୁ ପରୀକ୍ଷା ଶେଷ ହେଲା। ମୁଁ ଦିନ ଗଣୁଥିଲି। ପରୀକ୍ଷା ଶେଷହେବା ସଙ୍ଗେ ସଙ୍ଗେ ଘରକୁ ବାହାରି ପଡ଼ିଲି ପେଡ଼ିପୁଟୁଳା ବାନ୍ଧି। ଏଥିମଧ୍ୟରେ ଜାପାନ ପୂର୍ବାଞ୍ଚଳକୁ ଅକ୍ତିଆର କରିସାରିଲାଣି। କଟକରେ ମଝିରେ ମଝିରେ ସାଇରନ ବାଜି ଉଠୁଥାଏ। ଆକାଶରେ ଚିଲ ଶାଗୁଣା ପରି ଉଡ଼ାଜାହାଜଗୁଡ଼ିକ ଦେଖା ଯାଉଥାନ୍ତି। ମଫସଲକୁ ଲୋକମାନଙ୍କର ଧାଡ଼ି। କଲେଜରେ ନାଁ ଲେଖାଇବାର ବର୍ଷେ ପୂରି ନଥାଏ। କିନ୍ତୁ ମୋତେ ଯୁଗପରି ଲାଗୁଥାଏ। ଶେଷରେ ଗାଁ ମୁହାଁ ହେଲି। ସେତେବଳେ କଲେଜ ପଢୁଆ ପିଲାଙ୍କୁ ଗାଁ ଗହଳିରେ ଭାରି ଖାତିର। ଆମ ଗାଁର ରାଜକିଶୋର ବ୍ୟତୀତ କେହି କଲେଜରେ ପଢ଼ିନଥିଲେ। ସେତେବେଳେ ଉତ୍ତର-ପଶ୍ଚିମ ଓଡ଼ିଶା ପୁରୀ କଟକ ଜିଲ୍ଲା ସମେତ ଗୋଟିଏ ମାତ୍ର କଲେଜ ରେଭେନ୍‌ସା କଲେଜ। କିନ୍ତୁ ସେହି ଗୋଟିଏ ମାତ୍ର କଲେଜରେ ଆଶାଜନକ ଛାତ୍ରଛାତ୍ରୀ ଅଧ୍ୟୟନ କରୁନଥିଲେ। ଅଧ୍ୟାପକଙ୍କ ସଂଖ୍ୟା ବେଶି ନଥିଲା। ପୁଣି ଆଜିକାଲିପରି ରେଭେନ୍‌ସା କଲେଜରେ ସବୁ ବିଷୟରେ ବି.ଏ. ବା ବି.ଏସସି. ନଥିଲା। ଇଂରାଜୀ ବ୍ୟତୀତ ଅନ୍ୟ କୌଣସି ବିଷୟରେ ଏମ୍.ଏ. ନଥିଲା। ଯେଉଁମାନେ ଅନ୍ୟ ବିଷୟରେ ଏମ୍.ଏ କି ଏମ୍.ଏସ୍‌ସି. କରିବାକୁ ଚାହୁଁଥିଲେ ସେମାନେ ପାଟନା କି କଲିକତା ବିଶ୍ୱବିଦ୍ୟାଳୟକୁ ଯାଉଥିଲେ। ଆଜିକାଲି ଉପକୂଳ ଜିଲ୍ଲାମାନଙ୍କରେ ପ୍ରତି ସବଡ଼ିଭିଜନରେ ପନ୍ଦର କି କୋଡ଼ିଏ ବା ତା'ଠାରୁ ଅଧିକ କଲେଜ ଖୋଲିଲାଣି। ପ୍ରତି

ପରିବାରରୁ ଜାତିଧର୍ମ ନିର୍ବିଶେଷରେ ଅଛିକଛିରୁ ପୁଅ ଓ ଝିଅପିଲାମାନେ କଲେଜରେ ପାଠ ପଢ଼ିଲେଣି । ପୁଣି ପାଞ୍ଚଛଅ ମାଇଲ ଦୂରରୁ ସାଇକେଲରେ ପିଲ ମାନେ ଆସୁଅଛନ୍ତି ।

**ଶିକ୍ଷା ପ୍ରସାର :**

ସେତେବେଳେ ଶିକ୍ଷାର ପ୍ରସାର ଏତେ ନଥିଲା । କେବଳ ଧନୀ ଓ ମେଧାବୀ ଛାତ୍ରମାନେ ରେଭେନ୍‌ସା କଲେଜରେ ପଢ଼ିପାରୁଥିଲେ । ଆଜିକାଲିପରି ପଢ଼ିବା ହାଉଆ ବି ନଥିଲା । ସହାୟକ ପୁସ୍ତକ ନଥିଲା । କଲେଜ ଅଧ୍ୟାପକମାନେ ଜ୍ଞାନର ଭଣ୍ଡାର ଥିଲେ । ସେମାନେ ଭାରତ ବିଖ୍ୟାତ ଥିଲେ । ଟିଉସନ କଲେ ସେମାନଙ୍କ ପଦମର୍ଯ୍ୟାଦାରେ ଆଞ୍ଚ ଆସିବ ବୋଲି ସେମାନେ ମନେ କରୁଥିଲେ । ବର୍ତ୍ତମାନ ଟିଉସନ ବେଉସା ହୋଇଛି । ପଢ଼ାର ମାନ କମିକମି ଆସୁଛି । ଆଜିକାଲି ଡକ୍‌ଟରେଟ ପାଉଥିବା ବ୍ୟକ୍ତିଙ୍କ ସଂଖ୍ୟା ବହୁତ । କିନ୍ତୁ କାମର ନୁହଁନ୍ତି । ନାମ ବଡ଼ା, କାମ ଥୋଡ଼ା । ଡକ୍‌ଟରେଟ କରିଦେଲେ ସବୁ ହାସଲ ହୋଇଗଲା ବୋଲି ଭାବୁଛନ୍ତି । କିନ୍ତୁ ସବୁ ଅଧ୍ୟାପକମାନେ ଯେ ଫମ୍ପା ତାହା ନୁହେଁ, ବହୁ ଜ୍ଞାନୀ, ଗୁଣୀ ଅଧ୍ୟାପକ ଅଛନ୍ତି । ସେମାନେ ପୂର୍ବର ଜ୍ଞାନଗର୍ଭା ଅଧ୍ୟାପକମାନଙ୍କ ସହିତ ତୁଳନୀୟ ।

ପ୍ରଖ୍ୟାତ କବି ଶ୍ରୀ ମାୟାଧର ମାନସିଂହ ଡକ୍‌ଟରେଟ କରି ସଦ୍ୟ ଇଂଲଣ୍ଡରୁ ଫେରିଥାନ୍ତି । ବିଶିଷ୍ଟ ବୈଜ୍ଞାନିକ ଡକ୍‌ଟର ପ୍ରାଣକୃଷ୍ଣ ପରିଜା କଲେଜର ଅଧ୍ୟକ୍ଷ ଥା'ନ୍ତି । ସେ ମହାନ୍ ସାରଳାଦାସଙ୍କ ବଂଶଧର ବୋଲି ନିଆଁଖୁଣ୍ଟା କହେ । ଆମର ଅଧ୍ୟାପକ ଥିଲେ ସର୍ବଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି, ଘନଶ୍ୟାମ ଦାସ, ଜନାର୍ଥନ ମହାନ୍ତି, ପି.ଏସ୍.ସୁନ୍ଦରମ୍, ଭି.ଭି. ଜନ୍, ଜଗଦାନନ୍ଦ ମହାନ୍ତି, କୃତ୍ତିବାସ ସାମନ୍ତରାୟ, ବିପିନ ବିହାରୀ ରାୟ, ରତ୍ନାକର ପତି, ଗିରିଜା ଶଙ୍କର ରାୟ, ଡକ୍‌ଟର ବଳଭଦ୍ର ପ୍ରସାଦ, ହରିବନ୍ଧୁ ମହାନ୍ତି, ଗୋଲଖ ବିହାରୀ ବାନାର୍ଜୀ । ଯୁବକ ଅଧ୍ୟାପକଙ୍କ ନାମ ସବୁ କହିନପାରିଲେ ମଧ୍ୟ ସର୍ବଶ୍ରୀ ସଦାଶିବ ମିଶ୍ର, ବଂଶୀଧର ସାମନ୍ତରାୟ, ରମାନାଥ ମହାନ୍ତି, ଦାମୋଦର ମିଶ୍ର, ବାମା ଚରଣ ଦାସ, କୁଞ୍ଜ ବିହାରୀ ତ୍ରିପାଠୀ, ରାମଚନ୍ଦ୍ର ମହାପାତ୍ର ପ୍ରମୁଖ ପଣ୍ଡିତମାନଙ୍କର ନାମ ମୋର ମନେ ପଡ଼ୁଛି । ଗାଳ୍ପିକ ରାଜକିଶୋର ରାୟ ଓ ବୈଦ୍ୟନାଥ ରଥ ସାମୟିକ ଭାବରେ ଅଧ୍ୟାପକ ହୋଇ ଆସନ୍ତି । ଲେକଚର୍‌ମାନଙ୍କର ଦରମା ମାସକୁ ଶହେପଚିଶ ଟଙ୍କା ଥିଲା ଓ ଜଣେ ବି.ଇଡ଼ି. ଶିକ୍ଷକ ପଞ୍ଚଷଠି ଟଙ୍କାରୁ ଚାକିରି ଆରମ୍ଭ କରୁଥିଲେ । ଅଧ୍ୟାପକମାନେ କେହି ଘୋଡ଼ାଗାଡ଼ିରେ, କେହି କାରରେ, କେହି ସାଇକେଲରେ ଆସୁଥିଲେ ।

**କଲେଜ ସୌଧ :**

ରେଭେନ୍‌ସା କଲେଜ ବିଲ୍‌ଡ଼ିଂ ଏକ ମନୋରମ ଦୁଇତଳ ଲୋହିତ ପ୍ରାସାଦ । ଉତ୍ତର ଦିଗରେ କଲେଜର ଆର୍ଟସ୍ ବ୍ଲକ ଓ ହଲ, କମନରୁମ୍, ଅଫିସ ଗୃହ ଓ ଅଧ୍ୟକ୍ଷଙ୍କ ଅଫିସ୍ ଗୃହ ।

ଦୁଇ ପାର୍ଶ୍ୱରେ ପୂର୍ବ ଓ ପଶ୍ଚିମ ଛାତ୍ରାବାସ, ଦକ୍ଷିଣ ଦିଗରେ ବିଜ୍ଞାନ ବିଭାଗର ଚମତ୍କାର ଅଟ୍ଟାଳିକା ଓ ତାର ମଧ୍ୟଭାଗରେ ପ୍ରସିଦ୍ଧ କନିକା ଲାଇବ୍ରେରୀ ବିଲ୍ଡିଂ ବିଦ୍ୟମାନ । ସମଗ୍ର ବିଲ୍ଡିଂର ମଧ୍ୟବର୍ତ୍ତୀ ସୁରମ୍ୟ ପ୍ରାନ୍ତରଟି ସବୁଜ ଘାସଦ୍ୱାରା ଶ୍ୟାମଳିମା ଦେଖାଯାଉଥାଏ ଏବଂ ଉତ୍ତରରୁ ଦକ୍ଷିଣକୁ ଓ ପୂର୍ବରୁ ପଶ୍ଚିମକୁ ଯେଉଁ ସଂକୀର୍ଣ୍ଣ ମାର୍ଜିତ ପଥଟି ରଖାଯାଇଛି ତା'ର ଉଭୟ ପାର୍ଶ୍ୱ ସୁବାସିତ ଓ ଦର୍ଶନୀୟ କାକଟସ୍ ଓ ପୁଷ୍ପଗୁଳ୍ମ ଦ୍ୱାରା ଶୋଭିତ । ସେଠାରେ କିଛି ସମୟ ଦଣ୍ଡାୟମାନ ରହି ପ୍ରାନ୍ତରର ଶୋଭା ସନ୍ଦର୍ଶନ କଲେ ଭାବୁକ ବା ଦର୍ଶନେଚ୍ଛୁ ଶିକ୍ଷାର୍ଥୀର ଭୋକଶୋଷ ମରିଯାଏ, ସେ ଏକ ଅଦୃଶ୍ୟ ରାଇଜରେ ଥିବା ପରି ଜଣାପଡ଼େ । ମାତ୍ର ମୋ ପରି ଅଧମ, ନୀରସ, ଶୁଷ୍କ, ଦାରିଦ୍ର୍ୟ ପ୍ରପୀଡ଼ିତ ବ୍ୟକ୍ତିର ସେ ସୌନ୍ଦର୍ଯ୍ୟକୁ ଟିକିଏ ମାତ୍ର ଉପଭୋଗ କରିବାକୁ ବେଳନାହିଁ, ତେଣୁ କବି ଗାଇଛନ୍ତି- "What is this life if full of care, we have no time to stand and stare."

ଯୁଦ୍ଧର ଘନଘଟା ଯୋଗୁଁ ବାର୍ଷିକ ପରୀକ୍ଷା ମାର୍ଚ୍ଚ ମାସରେ ଶେଷ ହେଲା । କଲେଜ ଗ୍ରୀଷ୍ମାବକାଶ ନିମନ୍ତେ ବନ୍ଦ ରହିଲା । ମୁଁ କାଳବିଳମ୍ବ ନକରି ଗ୍ରାମାଭିମୁଖୀ ହେଲି ।

•

---

*କେତେ ବ୍ୟଥା କେତେ ଗାଥା,*
ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ ୨୦୦୪

# ରେଭେନ୍ସା କଲେଜ

## ବିଷ୍ଣୁଚରଣ ମହାନ୍ତି

ତିନିମାସ ଟ୍ୟୁସନ କଲାପରେ ଜୁଲାଇ ମାସରେ କଲେଜ ଖୋଲିଲା । ଆଇ.ଏ.ରେ ମାସିକ ଦରମା ଛଅଟଙ୍କା । ଉକବାବୁ ମୋର ନାମ ଲେଖା ଖରଚ଼ ଦେଲେ । ନାମଲେଖା ବେଳେ ଫିଜ ପଡ଼ୁଥିଲା ୨ ମାସର ଦରମା ଟ.୧୨.୦୦ ବାଦ ନାମଲେଖା ଫି ଟ.୬.୦୦, ବିଶ୍ୱବିଦ୍ୟାଳୟ ରେଜିଷ୍ଟ୍ରେସନ ଫି ଟ.୨, କଲେଜ ପରୀକ୍ଷା ଫି ଟ.୨, ଖେଳ ପାଇଁ ଟ.୨, କମନ ରୁମ୍ ଓ ମାଗାଜିନ ଟ. ୧, ଚଉଦ ଅଣା (୮୮ ପଇସା), ନାଟ୍ୟ ସଂଘପାଇଁ ଦଶ ଅଣା (୬୨ ପଇସା) ବିଦ୍ୟାର୍ଥୀ ସଂଘ (୮୮ ପଇସା), ଡାକ୍ତରୀ ପରୀକ୍ଷା ଟ.୧, ବିଦ୍ୟାର୍ଥୀମାନେ କଲେଜ ଡାକ୍ତରଖାନାରୁ ଔଷଧ ନେବାକୁ ଫିଜ ଟ.୨, ବାରପଇସା ମୋଟ ତିରିଶ ଟଙ୍କା ପଚ଼ିଶ ପଇସା । କଲେଜର ନିଜ ଡାକ୍ତରଖାନା ରୁମ ନଂ ୧ ଓ ୨ରେ । ସଦ୍ୟ ପାସକରା ଜଣେ MBBS ଡାକ୍ତର ଔଷଧ ଦିଅନ୍ତି, ରୋଗ ପରୀକ୍ଷା କରନ୍ତି । ସେ ମଧ୍ୟ ପ୍ରତିଦିନ ହଷ୍ଟେଲରେ ବୁଲି ଛାତ୍ରମାନଙ୍କର ସ୍ୱାସ୍ଥ୍ୟାବସ୍ଥା ଦେଖନ୍ତି । ମୋର ଲାଇବ୍ରେରୀ ଡିପୋଜିଟ ପାଞ୍ଚଟଙ୍କା ନିଅଣ୍ଟ ପଡ଼ିଲା । ତାଙ୍କଠାରୁ ଚିଠି ନେଇ ପ୍ରିନ୍ସପାଲ ପରିଜା ସାହେବଙ୍କୁ ଦେଲାରୁ ସେ ଉକ୍ତ ଡିପୋଜିଟ ଦେଲେ । ମୋର ପ୍ରଥମ ଶ୍ରେଣୀ ହୋଇ ନ ଥାଏ ତେଣୁ କଲେଜରେ ଫ୍ରିସିଟ୍ ପାଇବା ସମ୍ଭବ ନୁହେଁ । ତାହା ମଧ୍ୟ ଅତି ସୀମିତ । ମୋଟ ଆଇ.ଏ. ଓ ଆଇ.ଏସ୍‌ସି. ପଢୁଥିବା ଛାତ୍ରସଂଖ୍ୟାରୁ ଶତକଡ଼ା ପାଞ୍ଚ ଭାଗରୁ ଏକ ଭାଗ ନିଆଯାଏ । ତାହାର ପ୍ରାୟ ଶତକଡ଼ା ଏକ ଭାଗ ଛାତ୍ର ଦରମା ଛାଡ଼ ପାଆନ୍ତି । ମୋଟ ସେ ବର୍ଷ ଦଶ ବା ଏଗାରଜଣ ପାଇବା ହିସାବ କରାଯାଇଥାଏ ।

କ'ଣ ଅନ୍ୟ ସାହାଯ୍ୟ ମିଳିବ ଏଥିପାଇଁ ମାଆ ମନୋରମା ମତେ ସଂସ୍କୃତ ଅଧ୍ୟାପକ ଓ କଲେଜ ପରିଚାଳନା ସମିତି ସଭ୍ୟ ରାୟ ସାହେବ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ନିକଟକୁ ନେଲେ । ତାଙ୍କର ପାରିବାରିକ ସଂପର୍କ ଥିଲା । ଆର୍ତ୍ତବାବୁ ପ୍ରଥମେ କୃତ୍ରିମ କୋପ ପ୍ରକାଶ କରି ଶେଷରେ ଅଧା ଦରମା ସମାଜସେବା ସାହାଯ୍ୟକାରୀ ସଂସ୍ଥା Social Service Guildରୁ ପାଇବା ବ୍ୟବସ୍ଥା କଲେ । ମୋର କଲେଜ ଦରମା ଛାଡ଼ ହେବା ପର୍ଯ୍ୟନ୍ତ ମତେ ଏହି ସୁବିଧା ମିଳୁଥିଲା ।

ଅଧ୍ୟାପକ ଗୁରୁଚରଣ ମହାନ୍ତିଙ୍କଠାରେ ମୁଁ ଏଥିପାଇଁ ଚିର ଋଣୀ । ଟ୍ୟୁସନରୁ ଦରମାଟା ଦେଇହୁଏ । ମୋର ଅନ୍ୟାନ୍ୟ ନିଜ ଖରଚ ଲୁଗାପଟା ପାଇଁ ଏହି ମାସିକ ତିନିଟଙ୍କା ବହୁତ କାମରେ ଆସୁଥିଲା ।

କଲେଜରେ ନାମ ଲେଖାଇ ଏହାର ଚାକଚକ୍ୟ ଦେଖି ବିଭିନ୍ନ ବିଭାଗ ଲେବୋରେଟିରି ଆଦି ବୁଲି କିଛି ଦିନ ଗଲା । କଲେଜରେ ସେତେବେଳେ ଆଇ.ଏ., ଆଇ.ଏସ୍‌ସି., ବି.ଏ., ବି.ଏସ୍‌ସି., ଇଂରେଜୀରେ ଏମ୍.ଏ. ଓ ସକାଳେ ଆଇନ ଶିକ୍ଷାର ବ୍ୟବସ୍ଥା ଥାଏ । କଳା ବିଭାଗରେ ବାଧ୍ୟତାମୂଳକ ଇଂରାଜୀ ଓ ମାତୃଭାଷା । ଇଚ୍ଛାଧୀନ ଭାବେ ଅର୍ଥନୀତି, ତର୍କଶାସ୍ତ୍ର, ଦର୍ଶନଶାସ୍ତ୍ର, ଇତିହାସ, ଗଣିତ, ଓଡ଼ିଆ ଓ ସଂସ୍କୃତ ଥାଏ । ସେଥିରୁ ତିନୋଟି ବିଷୟ ବାଛିବାକୁ ପଡ଼େ । ବିଜ୍ଞାନ ବିଭାଗରେ ରସାୟନ ପଦାର୍ଥବିଜ୍ଞାନ, ଉଦ୍‌ଭିଦ ବିଜ୍ଞାନ ଥାଏ । ପରେ ଜୀବ ବିଜ୍ଞାନ Zoology ଯୋଗ କରାଗଲା । ଅଧ୍ୟାପକମାନେ ଓଡ଼ିଶାରେ ସୁପରିଚିତ ବ୍ୟକ୍ତି । ଆମେ ସେମାନଙ୍କର ନାମ ଶୁଣିଥାଉ । ସେମାନଙ୍କଠାରୁ ବିଦ୍ୟାଶିକ୍ଷା କରିବାର ସୁଯୋଗ ଏକ ଗୌରବ ଭାବେ ଗ୍ରହଣ କଲୁ ।

ବର୍ତ୍ତମାନ ରେଭେନ୍‌ସା ବିଶ୍ୱବିଦ୍ୟାଳୟ ଦେଖି ସତୁରି ବରଷ ତଳର କଟକ ସହର ମଝିରେ ରେଭେନ୍‌ସା କଲେଜର ଅବସ୍ଥିତି ଓ ଗୁରୁତ୍ୱ କଳ୍ପନା କରିବା କଷ୍ଟ । କଲେଜର ବିରାଟ ଅଟ୍ଟାଳିକା । ୧୯୨୨ରେ ସେଠାକୁ କଲେଜ ଆସିବା ଆଗରୁ ରେଭେନ୍‌ସା କଲେଜିଏଟ ସ୍କୁଲ ପାଖରେ ଥିଲା । ସେଇଠି ଏବେ କଟକର ପୁରୁଣା କଲେଜ ଲେନ । ଉତ୍ତର ଦିଗରୁ ଦୁଇଟି ପ୍ରବେଶ ପଥ, ଗୋଟିକରେ ଛାତ୍ର ଓ ଅଧ୍ୟାପକମାନେ ଆସନ୍ତି । ଅନ୍ୟଟି ଠିକ୍ ସିଧା ବିରାଟ କଲେଜ ହଲର ସାମନାରେ । ହଲରେ ଓଡ଼ିଶା ପ୍ରଦେଶ ଗଠନ ପରେ ବିଧାନସଭା ବସୁଥିଲା । ତା'ର ଅଫିସ ମଧ୍ୟ ସେଠାରେ କାଠର ବିଭାଜନ ତିଆରି କକ୍ଷରେ ଚାଲୁଥାଏ । ଏହି ଫାଟକଟି ପ୍ରାୟ ବନ୍ଦ ଥାଏ । ଉତ୍ତର ଦିଗ ପାଚେରିକୁ ଲାଗି ୩ଗୋଟି ଟେନିସ କୋଟ ଥାଏ । ସହକରେ ତ ଏହା ଏକ ବଡ଼ଲୋକି ଖେଳ । ଦୁଇଗୋଟି ଅଧ୍ୟାପକମାନଙ୍କର, ଗୋଟିଏ ଛାତ୍ରମାନଙ୍କ ପାଇଁ ଉଦିଷ୍ଟ ଥାଏ । ପ୍ରବେଶ ପଥରେ ଆସିଲେ ସିଧା କଲେଜ ଅଫିସ । ଉପର ମହଲାକୁ ଯିବା ସିଢ଼ି ପାଖରେ ଛତା ବ୍ୟାଗ ବର୍ଷାତି ରଖିଯିବାକୁ ବ୍ୟବସ୍ଥା । ପିଅନ ଚୈତନ୍ୟ ଏହାର ଦାୟିତ୍ୱରେ । ଛାତ୍ରମାନଙ୍କର କମନ ରୁମ୍‌ରେ ବିଦ୍ୟାର୍ଥୀମାନଙ୍କ ପାଇଁ କେତେଗୁଡ଼ିଏ ଲକର ଥାଏ । ଆବଶ୍ୟକତା ଓ ବରିଷ୍ଠତା ଦୃଷ୍ଟେ ଏହା ବଣ୍ଟା ଯାଇଥାଏ । ଗୋଟିଏ ମତେ ମିଳିଲା, ଏଥିରେ ନିଜର ବହିପତ୍ର, ପୋଷାକପତ୍ର ରଖି ବିଦ୍ୟାର୍ଥୀମାନେ ଯାଇପାରୁଥିଲେ । ଛାତ୍ରମାନେ ସାଇକେଲରେ ଆସିଲେ ପ୍ରବେଶର ପଶ୍ଚିମ ଦିଗକୁ ସାଇକେଲ ଷ୍ଟାଣ୍ଡ ଥାଏ । ଦୈନିକ ସାଇକେଲ ସଂଖ୍ୟା ଷାଠିଏ ସତୁରୀରୁ ବେଶୀ ନ ଥାଏ । ଅଥଚ କଲେଜର ଛାତ୍ର ସଂଖ୍ୟା ହଜାରେ ଉପରେ । ପୂର୍ବ ପଶ୍ଚିମ ଦୁଇ ଛାତ୍ରାବାସରେ ୩୮୦ ଜଣ ଛାତ୍ରଙ୍କର ରହଣି ବ୍ୟବସ୍ଥା ଥାଏ । ଅଧିକାଂଶ ଛାତ୍ର ପଦଚାରୀ-

ପାଖରେ ଥିବା ମେସ୍‌ମାନଙ୍କରୁ ହେଉ ନ ଦେଲେ ଦଳବଦ୍ଧ ଭାବରେ ଚାଲିଚାଲି କାଫଲା, ଡଗରପଡ଼ା, ଚାନ୍ଦିନୀଚଉକ, ରାଣୀହାଟ ପାଖରୁ ଆସନ୍ତି। ଅଧ୍ୟାପକମାନେ ଘୋଡ଼ାଗାଡ଼ିରେ ଆସନ୍ତି, କାହାର ନିଜର ଥାଏ। କେହି ୨/୪ ଜଣ ଏକାଠି ହୋଇ ଆସନ୍ତି। ଅଧ୍ୟକ୍ଷଙ୍କର ମଟରଗାଡ଼ି ଥାଏ, ଏହା ବାଦ ଗଣିତ ଅଧ୍ୟାପକ ବାମାଚରଣ ଦାସ ଗାଡ଼ିରେ ଆସନ୍ତି। ଛାତ୍ରମାନଙ୍କ ମଧ୍ୟରେ ଜଣେ ମାରୱାଡ଼ୀ ପିଲା ଗଜାନନ ଅଗରୱାଲା ଓ ତଦାନୀନ୍ତନ ଆଇନ ସଚିବ ଶ୍ରୀ କୋଏରୀଙ୍କର ପୁତ୍ର, ମୋଟର ଗାଡ଼ିରେ ବେଳେ ବେଳେ ଆବିର୍ଭୂତ ହୋଇ ସମସ୍ତଙ୍କର ଈର୍ଷା ପାତ୍ର ହୁଅନ୍ତି। କଲେଜ ଅଟ୍ଟାଳିକାର ପ୍ରଥମ ପ୍ରସ୍ତରେ ଆର୍ଟ୍‌ସ ବ୍ଲକ, ଏଠାରେ ସାଧାରଣ ଓ ଟ୍ୟୁଟରିଆ ଶ୍ରେଣୀମାନ ହୁଏ। ଛାତ୍ରମାନଙ୍କର କମନ ରୁମ ତଳ ମହଲାରେ। ପାଖକୁ ଲାଗି ଅଧ୍ୟାପକମାନଙ୍କର। ଛାତ୍ରୀମାନଙ୍କର ଉପରମହଲାରେ ଅଧ୍ୟକ୍ଷଙ୍କ ଅଫିସକୁ ଲାଗି। ସେମାନେ ଯିବାଆସିବା କରିବାକୁ ସେଇ ପାଖରେ ଲୁହାର ଗୋଟିଏ Whirling Staircase ଘୂରା ସିଡ଼ି ଥାଏ। ୨ୟ ପ୍ରସ୍ତରେ ରସାୟନ ଓ ପଦାର୍ଥ ବିଜ୍ଞାନ ବିଭାଗ ପଛକୁ ଉଦ୍ଭିଦ ବିଜ୍ଞାନ ଓ ପ୍ରାଣୀବିଜ୍ଞାନ ବିଭାଗ।

ମଝିରେ ବିରାଟ କନିକା ଲାଇବ୍ରେରୀ। ପଦାର୍ଥ ବିଜ୍ଞାନ ଓ ରସାୟନ ବିଜ୍ଞାନର ନିଜର ପ୍ରୟୋଗଶାଳା ବ୍ୟତୀତ ନିଜର Lecture Theater Gallery ଥାଏ। କଲେଜର ବଡ଼ ବଡ଼ ସଭାମାନ ଏଇଠାରେ ହୁଏ। ଧାଡ଼ି ଧାଡ଼ି ବେଞ୍ଚ ଉପରରୁ ତଳୁ ତାଲୁହୋଇ ଥିବାରୁ ଦେଖିବା ଶୁଣିବା ସୁବିଧାଜନକ ହୁଏ। କଲେଜ ହଲ କେବଳ ବାର୍ଷିକ ନାଟ୍ୟ ଅଭିନୟ ସମୟରେ ମିଳିଥାଏ। ପ୍ରଦେଶ ଗଠନ ପରେ ଓଡ଼ିଶା ବିଧାନ ସଭାର ପ୍ରଥମ ଅଧିବେଶନ ୧୯୩୭ ମସିହା ଜୁଲାଇରେ ଏକ ତାରିଖରେ ଏଠାରେ ହୋଇଥିଲା ଓ ଭୁବନେଶ୍ୱରରେ ନୂତନ ଭାବରେ ହେବା ପର୍ଯ୍ୟନ୍ତ ତାହା ଏହିଠାରେ ବସୁଥିଲା। ବ୍ୟବସ୍ଥାପକ ସଭା ନ ଥିଲେ ମଧ୍ୟ ଓ ଲାଟଶାସନ ୯୩ ଧାରା ଚାଲୁଥିଲେ ବି ସେଠାରେ ଅଫିସ ଥାଏ ଓ ହଲ ବନ୍ଦ ଥାଏ। ଲାଇବ୍ରେରୀର ପାଠାଗାର ଅତି ବିରାଟ, ଛାତ୍ରମାନେ ନିଜର କାର୍ଡ ଦେଖାଇ ବହି ଆଣି ସେଠାରେ ବସି ପଢ଼ିପାରନ୍ତି। ଘରକୁ ମଧ୍ୟ ଶ୍ରେଣୀ ଅନୁସାରେ ଖଣ୍ଡେକରୁ ଦୁଇ ଚାରିଖଣ୍ଡଯାଏ ବହି ନେବାକୁ ଅନୁମତି ମିଳେ। ଜଣେ ଅଧ୍ୟାପକ ଲାଇବ୍ରେରୀ ଦାୟିତ୍ୱରେ ଥାଆନ୍ତି। ସେତେବେଳେ ଲାଇବ୍ରେରୀଆନ୍ ଦାମୋଦର ମିଶ୍ର ବୟସ୍କ ଓ ଅଭିଜ୍ଞ। କେଉଁ ଶ୍ରେଣୀର କେଉଁ ବହି ପଢ଼ିବା ଉପାଦେୟ ତାହା ପରାମର୍ଶ ଦିଅନ୍ତି। ସେତେବେଳେ ଲାଇବ୍ରେରୀରେ ପ୍ରାୟ ୩୦ ହଜାର ବହି ଥାଏ। ଓଡ଼ିଶାରେ ଏହାଠାରୁ ବଡ଼ କୌଣସି ଲାଇବ୍ରେରୀ ନ ଥାଏ। ସକାଳ ସାଢ଼େ ଆଠଟାରୁ ସାଢ଼େ ଚାରିଟାଯାଏ ଲାଇବ୍ରେରୀ ଖୋଲା ରହେ। କନିକାର ରାଜା ଏହି ବିରାଟ ଅଟ୍ଟାଳିକାର ସମସ୍ତ ବ୍ୟୟଭାର ବହନ କରିଥିବାରୁ ଏହା ତାଙ୍କ ନାମରେ କନିକା ଲାଇବ୍ରେରୀ ନାମିତ। ଆର୍ଟ୍‌ସ ବ୍ଲକରୁ ବିଜ୍ଞାନ ବ୍ଲକକୁ ଯିବା ରାସ୍ତାର

ଉଭୟ ପାର୍ଶ୍ୱରେ ସବୁଜ ଘାସ ପଟାଳି ଥାଏ । ଧାଡ଼ିଭାବେ ଫୁଲଗଛ ସବୁ ସମୟରେ ଲାଗିଯାଏ । ମଝିରେ ସୂର୍ଯ୍ୟଘଡ଼ି । ଅଧ୍ୟକ୍ଷ ନିଜେ ଖ୍ୟାତନାମା ଉଦ୍‌ଭିଦବିଦ୍ । ତେଣୁ ସେ ମାଳୀମାନଙ୍କୁ ଯଥୋଚିତ ନିର୍ଦ୍ଦେଶ ନିଜେ ଦେଇଥାନ୍ତି । ଲନ୍ ମଝିରେ ଘାସରେ ଚାଲିବା , ଫୁଲ ଛିଣ୍ଡାଇବା ନିୟମ ବିରୁଦ୍ଧ ଓ ଏଥିପାଇଁ କୋରିମାନା ବ୍ୟବସ୍ଥା ଥାଏ । କଲେଜ ଅଟ୍ଟାଳିକା ଦୁଇ ପ୍ରସ୍ଥ ମଧ୍ୟରେ ପୂର୍ବ ଓ ପଶ୍ଚିମ ଛାତ୍ରାବାସ । ଏଥିରେ ପ୍ରତ୍ୟେକରେ ପ୍ରାୟ ଦୁଇଶ ଛାତ୍ର ରହୁଥାନ୍ତି । ୩୨ ଗୋଟି ଜଣିକିଆ କୋଠରି ଓ ବାକି ସବୁ ଚାରିଜଣିକିଆ । ଯୁଦ୍ଧ ସମୟରେ ଜଣିକିଆ ପ୍ରାୟ ଦୁଇ ଜଣିଆ ହୋଇଗଲା । ପୂର୍ବ ହଷ୍ଟେଲରେ ପ୍ରାୟ ପଶ୍ଚିମ ଓଡ଼ିଶା ଗଡ଼ଜାତ ଓ ଓଡ଼ିଶା ଉପାନ୍ତ ଅଞ୍ଚଳର ଛାତ୍ରମାନେ ରହୁଥାଆନ୍ତି । ଅନ୍ୟଟିରେ ବାରିଆଡ଼ର ଛାତ୍ର ରହନ୍ତି । ଛାତ୍ରାବାସ ଦାୟିତ୍ୱରେ ଜଣେ ଓ୍ୱାର୍ଡେନ ଜଣେ ସୁପରିଟେଣ୍ଡ ଓ ଜଣେ ସହକାରୀ ସୁପରିଟେଣ୍ଡ ଥାଆନ୍ତି । ପୂର୍ବ ହଷ୍ଟେଲର ଓ୍ୱାର୍ଡେନ ଅଧ୍ୟାପକ ପି.ଏସ୍. ସୁନ୍ଦରମ୍ ଓ ପଶ୍ଚିମର ପ୍ରଫେସର ଡକ୍ଟର ବଳଭଦ୍ର ପ୍ରସାଦ । ସେମାନଙ୍କର ବାସସ୍ଥଳି ବ୍ୟତୀତ କିଛି ବାହାର ଘର ଥାଏ । ଓ୍ୱାଡ଼େନ ପଦବୀ ଉଠାଇଦେବା ପରେ ପଶ୍ଚିମ ଓ୍ୱାର୍ଡେନଙ୍କ ବାସ ଘର ନୂଆ ହୋଇ ପ୍ରତିଷ୍ଠିତ ଉତ୍କଳ ବିଶ୍ୱବିଦ୍ୟାଳୟର ଅଫିସ ଭାବେ ବ୍ୟବହାର କରାଯାଇଥିଲା । ଏଥିରୁ ଏହାର ଆୟତନ ଅନୁମାନ କରିହେବ । ହଷ୍ଟେଲରେ ଦି'ବେଳା ଦିବ୍ୟଭୋଜନ । ଅପରାହ୍‌ଣରେ ପୁରି ତରକାରି ଜଳଖିଆ । ଏ ସବୁ ପାଇଁ ଦେୟ ମୋଟ ଅଠର ଟଙ୍କା ପଚାଶ ପଇସା ଥିଲା । ଉପରବେଳା ଜଳଖିଆ ଇଚ୍ଛାଧୀନ ଥିଲା । ନଖାଇଲେ ଏଥିରୁ ଚାରିଟଙ୍କା କମ ଦେବାକୁ ପଡୁଥିଲା । ଦୈନିକ ସକାଳ ନଅଟା ଓ ସନ୍ଧ୍ୟା ନଅଟାରେ ପରିବେଷିତ ଭୋଜନରେ ଭାତ ଡାଲି ସାଦା ତରକାରି ଓ ମାଛ ମିଳୁଥିଲା । ମିଲ୍ ଗୋଟା ପଡୁଥିଲା ୨୦ ପଇସା (ତିନି ଅଣା) ଅପରାହ୍‌ଣ ଜଳଖିଆ ଛ ପଇସା (ଅଣାଏ) ଶନିବାର ମାଂସ ମିଲ୍ ପଚିଶ ପଇସା (ଚାରିଅଣା) ଓ ମାସର ଶେଷ ଶନିବାର ଭୋଜି ମିଲ୍‌ର ମୂଲ୍ୟ ପଚାଶ ପଇସା (ଆଠଅଣା) । କାହାକୁ ଅତିଥି ଭାବରେ ଜଣେ ଅନ୍ତେବାସୀ ଖାଇବାକୁ ନିମନ୍ତ୍ରଣ କଲେ ସାମାନ୍ୟ ଅଧିକ ଏହାଠାରୁ ତାକୁ ଦେବାକୁ ପଡୁଥିଲା । ହଷ୍ଟେଲରେ ରହିବାକୁ ଅତି କମ୍‌ରେ କୋଡ଼ିଏ ଟଙ୍କା ସରକାରୀ ଦେୟ ଥିଲା । ନିଜ ଖରଚ ଅଲଗା ଥିଲା , ମାତ୍ର ଯାହା ସୁବିଧା ମିଳୁଥିଲା ତାହା ତୁଳନାରେ ଏହା ବେଶି ନ ଥିଲା । ପଚିଶଟଙ୍କା ଖରଚ କଲେ ଜଣେ ହଷ୍ଟେଲରେ ରହି ପାରୁଥିଲା । ମାତ୍ର ସେ ହଜିଗଲା ପଇସା ଯୁଗରେ ଖୁବ୍ ଅବସ୍ଥାପନ୍ନ ସରକାରୀ କର୍ମଚାରୀ , ପ୍ରତିଷ୍ଠିତ ଜମିଦାର ବା ବ୍ୟବସାୟୀଙ୍କ ସନ୍ତାନମାନଙ୍କ ବ୍ୟତୀତ ଅନ୍ୟମାନଙ୍କ ପାଇଁ ଏହା ବିଳାସମୟ ଥିଲା । ଆମ ବର୍ଷ ଜିଲ୍ଲା ବୃତ୍ତିଧାରୀମାନଙ୍କ ମଧ୍ୟରୁ ପୁରୀର ଗୋବିନ୍ଦ ତ୍ରିପାଠୀ ଓ ସମ୍ବଲପୁରର ନିତ୍ୟାନନ୍ଦ ଦରଜି ଦଶଟଙ୍କା ବୃତ୍ତିରେ ମିଶାଇବାକୁ ଟ୍ୟୁସନ କରି ଚଳୁଥିଲେ ଓ ସେ ଦୁହେଁ ହଷ୍ଟେଲରେ ରହିପାରୁ ନ ଥିଲେ । ବାହାର ମେସ୍‌ରେ ଥିଲେ । ମୟୂରଭଞ୍ଜର ମହାରାଜା କଲେଜ ପ୍ରତିଷ୍ଠା

ନିମିତ୍ତ ବିପୁଳ ଅର୍ଥଦାନ କରିଥିଲେ ଓ ତାଙ୍କର ପ୍ରସ୍ତାବ ଅନୁସାରେ ୧୮୬୮ ମସିହାରେ କଲେଜ ଶ୍ରେଣୀ ଖୋଲାଯାଇଥିବା ଅନୁଷ୍ଠାନର ନାମ ରେଭେନ୍‌ସା (ଓଡ଼ିଶାର ନ ଅଙ୍କ ଦୁର୍ଭିକ୍ଷ ସମୟର କମିସନରଙ୍କ ନାମାନୁସାରେ) କରାଯାଇଥିଲା । ମହାରାଜା ମୟୂରଭଂଜ ଲକ୍ଷେ ଟଙ୍କା ଦେଲେ । ୧୯୨୫ରେ ସେଥିରେ କଲେଜରେ ବିଦ୍ୟୁତ୍ ବ୍ୟବସ୍ଥା କରାଯାଇଥିଲା । ହଷ୍ଟେଲ ଛାତ୍ରମାନଙ୍କ ପାଇଁ ବିଦ୍ୟୁତ ଓ ପାଣିକଳର ସୁବିଧା ଥାଏ । ଶ୍ରେଣୀମାନଙ୍କରେ ପଙ୍ଖାସବୁ ଦଶହରାଛୁଟି ପରେ ଗରମ ପଡ଼ିବା ପର୍ଯ୍ୟନ୍ତ କାଢ଼ି ନିଆଯାଏ । ଆମ୍ଭେମାନେ ନାମ ଲେଖାଇବା ବେଳକୁ କଲେଜର ହୀରକ ଜୁବୁଲି ୬୦ ବର୍ଷ ପୂର୍ତ୍ତି ୧୯୩୬ ମସିହା ଜାନୁଆରୀରେ ମହା ସମାରୋହରେ ପାଳିତ ହୋଇ ସାରିଥାଏ । କଲେଜ ହତା ମଧ୍ୟରେ ଅଧ୍ୟାପକମାନଙ୍କପାଇଁ ୧୦/୧୨ ଗୋଟି ବାସଗୃହ ଥାଏ । କଲେଜ ସାମନା ଷ୍ଟେସନ ରାସ୍ତାକୁ ମୁହଁ କରି ପୂର୍ବ ହଷ୍ଟେଲ ଉତ୍ତାରେ ଥିବା ଘରଗୁଡ଼ିକ ବଡ଼ । ଏଥିରେ ପୂର୍ବେ ଆଇ.ଇ.ଏସ୍. ଅଫିସର ରହୁଥିଲେ । ପରେ ଆଇ.ସି.ଏସ୍. ଓ ଆଇ.ପି. ଅଫିସର ଆମ୍ଭମାନଙ୍କ ସମୟରେ ରହିଥିବାର ଦେଖାଗଲା । ଅଧ୍ୟାପକ ଡକ୍ଟର ପରଶୁରାମ ମିଶ୍ର କୁଳପତି ହେବା ପରେ ଏଥିରୁ ଗୋଟିକରେ ମଧ୍ୟ ଥିଲେ । ଅନ୍ୟ ବାସସ୍ଥଳିଗୁଡ଼ିକ ତତ୍‌କାଳୀନ ମାଲଗୋଦାମକୁ ଯିବା ରାସ୍ତାର ପଶ୍ଚିମକୁ କଲେଜ ହତାକୁ ଲାଗିକରି । ସେତେବେଳର କଲେଜର ବିରାଟ ପଡ଼ିଆରେ ଏତେଗୁଡ଼ିଏ ଘର ହୋଇ ନ ଥାଏ । କଲେଜ ସମୟ ଅତିକ୍ରାନ୍ତ ହେଲେ ଏଥିରେ ଭଲି ଫୁଟବଲ ହକି ଖେଳ ଅଭ୍ୟାସ କରାଯାଉଥାଏ । ଟେନିସ କୋର୍ଟ କଲେଜ ପ୍ରବେଶପଥ ପାଖରେ ଥାଏ । କ୍ରିକେଟ ସେତେବେଳେ କଟକରେ ପରିଚିତ ଖେଳ ନ ଥାଏ । ପରିକା ସାହେବ ଓ ଅନ୍ୟ ସାହେବଙ୍କ ପିଲାମାନେ ସମୟ ସମୟରେ ଏହା ଅଭ୍ୟାସ କରିବାର ଆମ୍ଭେମାନେ ଦେଖୁ । ସେମାନେ ଓଡ଼ିଶା ବାହାରେ ପଢ଼ୁଥାଆନ୍ତି । କଲେଜର ବାର୍ଷିକ କ୍ରୀଡ଼ା ମଧ୍ୟ ଏହିଠାରେ ହୋଇଥାଏ ।

ଆଇ.ଏ.ରେ ନାମ ଲେଖାଇ ପାଠ୍ୟ ବିଷୟ ନିର୍ବାଚନ କଲି । ବାଧ୍ୟତାମୂଳକ ଇଂରେଜୀ ତିନିଶ ଓ ଓଡ଼ିଆ ଏକଶହ ନମ୍ବରର ଥାଏ । ଏହା ବ୍ୟତୀତ ଆଉ ତିନୋଟି ବିଷୟ ବାଛିବାକୁ ପଡ଼େ । ଗ୍ରୁପମାନ ଏପରି ବଛାଯାଏ ଯେ ତର୍କଶାସ୍ତ୍ର ପ୍ରାୟ ସବୁଥିରେ ମିଶିଥାଏ । ଏଥିରେ ମଧ୍ୟ ବେଶି ନମ୍ବର ବିଶ୍ୱବିଦ୍ୟାଳୟ ପରୀକ୍ଷାରେ ମିଳେ । ତେଣୁ ବେଶି ପିଲା ଏହା ନିଅନ୍ତି । ଶେଷ ପରୀକ୍ଷାରେ ବିଜ୍ଞାନ ଛାତ୍ରମାନେ ବେଶି ନମ୍ବର ରଖନ୍ତି । ସେମାନଙ୍କୁ ମୁକାବିଲା କରିବାକୁ କଳା ଛାତ୍ରମାନେ ଗଣିତ ସଂସ୍କୃତ ଓ ତର୍କଶାସ୍ତ୍ର ଗ୍ରୁପ MLS ନେଇଥାଆନ୍ତି । ଆମ ବର୍ଷର ଦୁଇଜଣ କୃତୀ ଛାତ୍ର ସର୍ବେଶ୍ୱର ଦାସ ଓ ପ୍ରହଲ୍ଲାଦ ରଥ ଏହା ନେଇଥିଲେ । ଆଇ.ଏ., ଆଇ.ଏସ୍‌ସି.ରେ ମିଳିତ ଭାବରେ ବାର୍ଷିକ ପରୀକ୍ଷାରେ ପ୍ରଥମ ହେଉଥିବା ଛାତ୍ର ଡକ୍ଟର ଭୂଷଣଚନ୍ଦ୍ର ଭଟ୍ଟାଚାର୍ଯ୍ୟ ମେମୋରିଆଲ ପ୍ରାଇଜ Bhusan Chandra Bhattacharya Memorial Prize

ପାଇଥାଆନ୍ତି । ୧୯୨୮ ମସିହାରେ କଲେଜର ଜଣେ ପୁରାତନ ଛାତ୍ର ରାୟବାହାଦୁର ଅମୂଲ୍ୟନାଥ ରାୟ୍ ବଙ୍ଗଳାର ଡେପୁଟି ପୋଷ୍ଟ ମାଷ୍ଟର ଜେନେରାଲ ଥିବା ବେଳେ ତାଙ୍କର କଲେଜରେ ପରମ ହିତୈଷୀ ଡକ୍ଟର ଭୂଷଣଚନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କ ନାମରେ ଏହା ପ୍ରତିଷ୍ଠା କରିଥିଲେ । କୃତୀଛାତ୍ର ଏଥିପାଇଁ ଦଶଟଙ୍କା ପଚାଶ ପଇସାର ପୁରସ୍କାର ପାଇଥାଆନ୍ତି । ଏହାଛଡ଼ା କଲେଜରେ ଅନ୍ୟଗୁଡ଼ିଏ ପୁରସ୍କାରର ବ୍ୟବସ୍ଥା ଥାଏ । ଅଧ୍ୟକ୍ଷ ପରିଜା ସାହେବଙ୍କ ଦାନରେ ୧୯୨୮ ଠାରୁ ତାଙ୍କ ପିତା ବିଶ୍ୱନାଥ ପରିଜା ଓ ମାତା ଜୟନ୍ତୀ ଦେବୀଙ୍କ ନାମ ଅନୁସାରେ ବିଶ୍ୱଜୟନ୍ତୀ ପ୍ରାଇଜ ଆଇ.ଏସ୍‌ସି.ରେ ପ୍ରଥମ ହେଉଥିବା ଛାତ୍ରଙ୍କୁ ଟ.୧୭ ପଚାଶ ପଇସା ଦିଆଯାଉଥିଲା । ଆମ ସହପାଠୀ ହରିହର ମିଶ୍ର ୧୯୪୨ରେ ଏହା ପାଇଥିଲେ । ସର୍ବାପେକ୍ଷା ଗୌରବାନ୍ୱିତ ପୁରସ୍କାର ଥିଲା ୧୯୨୭ରୁ ଜାନକୀ ନାଥ ବୋଷ ପୁରସ୍କାର । ଦଶଟଙ୍କା ପଚାଶ ପଇସା ମୂଲ୍ୟର ଏହି ପୁରସ୍କାର କଲେଜର ଶ୍ରେଷ୍ଠ ଛାତ୍ରଙ୍କୁ ଦିଆଯାଉଥିଲା । ପରବର୍ତ୍ତୀ କାଳରେ ଓଡ଼ିଶାରେ ବିଭିନ୍ନ କ୍ଷେତ୍ରରେ ସୁପ୍ରତିଷ୍ଠିତ ଅନେକ ବ୍ୟକ୍ତି ଏହି ପୁରସ୍କାର ପାଇବା ଗୌରବ ଅର୍ଜନ କରିଥିଲେ । ଏହା ଛଡ଼ା ବି.ଏ., ବି.ଏସ୍‌ସି.ରେ ମିଳିତ ଭାବେ ସର୍ବୋଚ୍ଚ ନମ୍ବର ରଖିଥିବା ଛାତ୍ରଙ୍କୁ ଟ.୨୦ ମୂଲ୍ୟର ଉଡ଼ବର୍ଣ୍ଣ ପ୍ରାଇଜ ଦିଆଯାଉଥିଲା । ୧୮୯୯ ମସିହାରେ ବଙ୍ଗଳାର ଲେଫ୍‌ଟନାଣ୍ଟ ଗଭର୍ଣ୍ଣର ସାର ଜନ ଉଡ଼ବର୍ଣ୍ଣଙ୍କ ନାମରେ କଟକର ରାୟବାହାଦୁର ଯୋଗେଶ୍ୱର ଚନ୍ଦ୍ର ଏହା ପ୍ରତିଷ୍ଠା କରିଥିଲେ ।

୧୯୨୭ ମସିହାରେ ମହାମହୋପାଧ୍ୟାୟ ପଣ୍ଡିତ ଜଗନ୍ନାଥ ମିଶ୍ରଙ୍କ ନାମରେ ସତର ଟଙ୍କା ପଚାଶ ପଇସା ପୁରସ୍କାର ଆଇ.ଏ. ବା ବି.ଏ.ରେ ଯିଏ ସଂସ୍କୃତରେ ଶତକଡ଼ା ଷାଠିଏରୁ ଅଧିକ ନମ୍ବର ରଖି ପ୍ରଥମ ହେଉଥିଲେ ତାଙ୍କୁ ମିଳୁଥିଲା । ଏହା ତାଙ୍କ ଛାତ୍ରମାନେ ପ୍ରତିଷ୍ଠା କରିଥିଲେ । ଓଡ଼ିଶା ମହମ୍ମଡାନ ହଷ୍ଟେଲ ଟ୍ରଷ୍ଟ ଫଣ୍ଡ ୧୯୨୮ରେ ସ୍ଥାପନା କରାଯାଇ ଏଥିରୁ ୨ ଜଣ ମୁସଲମାନ ଛାତ୍ରଙ୍କୁ ଏଠାରେ ଆଇ.ଏ., ଆଇ.ଏସ୍‌ସି.ରେ ପ୍ରଥମ ଥାଇ ବି.ଏ., ବି.ଏସ୍‌ସି. ପଢ଼ିଲେ ଟ.୧୫ ଓ ଟ.୧୦ ମାସିକ ଦିଆଯାଉଥିଲା । ଶେଷରେ ବୋଡାସମ୍ବର ସେନାପତି ପୁରସ୍କାର ୧୯୩୪ ମସିହାରେ ପ୍ରତିଷ୍ଠା କରାଯାଇଥିଲା ଓ ଏହା କଲେଜର ଶ୍ରେଷ୍ଠ ବକ୍ତା ପାଉଥିଲେ । ଏହାର ମୂଲ୍ୟ ଟ.୨୧ ଥିଲା । ପ୍ରଥମ ଓଡ଼ିଆ ଆଇ.ସି.ଏସ୍. ନୀଳମଣି ସେନାପତି ସମ୍ବଲପୁରର ଡେପୁଟି କମିସନର ଥିଲେ । ତାଙ୍କର ବଦଳି ସମୟରେ ଜିଲାବାସୀଙ୍କ ପକ୍ଷରୁ ବୋଡାସମ୍ବର ପଦ୍ମପୁରର ଜମିଦାର ଅର୍ଥଦାନ କରି ଏହା ପ୍ରତିଷ୍ଠା କରିଥିଲେ । ପ୍ରଥମେ ବଲାଙ୍ଗିରର ଆଡ଼ଭୋକେଟ ଯୁଧିଷ୍ଠିର ମିଶ୍ର ଏହା ପାଇଥିଲେ, ଅଧ୍ୟାପକ ଡକ୍ଟର ଶ୍ରୀ ରାମଚନ୍ଦ୍ର ଦାସ ଓ ଅଧ୍ୟାପକ ପ୍ରଫୁଲ୍ଲ କୁମାର ପତି, ଏହା କ୍ରମାଗତ ୨ ବର୍ଷ କରି ପାଇଥିଲେ । ଆମ ସମୟରେ ଦୁଇବର୍ଷ ପ୍ରଫୁଲ୍ଲବାବୁ, ୧୯୪୨ରେ, ବିରଞ୍ଚି ନାରାୟଣ ଦାସ (ପରେ ଓ.ଏ.ଏସ୍.) ଓ

୧୯୪୩ରେ ଅଧ୍ୟାପକ ସର୍ବେଶ୍ୱର ଦାସ ଏହା ପାଇଥିଲେ । ବିଶ୍ୱବିଦ୍ୟାଳୟର ଚାନସେଲର ଡିବେଟ କପ ପୂର୍ବରୁ ଏହି ପୁରସ୍କାର ବିଜେତା ଓଡ଼ିଶାରେ ଜଣେ ସୁବକ୍ତା ଭାବରେ ନିଜର ପ୍ରତିଷ୍ଠା ଜାହିର କରି ପାରୁଥିଲେ ।

ଏ ସବୁ ସାମୟିକ ପ୍ରାଇଜ । ଏହା ବାଦ ଆଇ.ଏ. ଓ ବି.ଏ. କଳା ଓ ବିଜ୍ଞାନ ନିମିତ୍ତ କେତେଗୁଡ଼ିଏ ବୃତ୍ତି ମିଳୁଥାଏ । ମେଧାବୀ ଛାତ୍ରମାନେ ଏହା ପାଇଥାଆନ୍ତି । ମାତ୍ର ଏହାର ସଂଖ୍ୟା ସୀମିତ । ପ୍ରଥମ ବର୍ଷ ମାଟ୍ରିକ ପରୀକ୍ଷାରେ ମାସିକ ପଚିଶ ଟଙ୍କା, କୋଡ଼ିଏ ଟଙ୍କା, ପନ୍ଦର ଟଙ୍କା ଓ ଜିଲ୍ଲାର ଦଶଟଙ୍କିଆ ବୃତ୍ତି କଥା ଲେଖିଛି । ଅନୁଗୁଳ ଓଡ଼ିଶା ପ୍ରଦେଶ ଗଠନ ପରେ ଏହାର ଜିଲା ମାନ୍ୟତା ହରାଇଥିଲେ ମଧ୍ୟ ଅନୁଗୁଳ ସବ୍‌ଡିଭିଜନରୁ ଯେ ସର୍ବୋଚ୍ଚ ନମ୍ବର ରଖୁଥିଲେ ତାଙ୍କୁ ଗୋଟିଏ ଦଶଟଙ୍କିଆ ବୃତ୍ତି ମିଳୁଥିଲା । ଏହି ବୃତ୍ତିଗୁଡ଼ିକ କେବଳ ମୋଗଲବନ୍ଦୀ ଓଡ଼ିଶାର ହାଇସ୍କୁଲରୁ ଉତ୍ତୀର୍ଣ୍ଣ ଛାତ୍ରମାନଙ୍କୁ ମିଳୁଥିଲା । ଗଡ଼ଜାତର ପରୀକ୍ଷାର୍ଥୀ ଯେତେ ମେଧାବୀ ହେଲେ ମଧ୍ୟ ଏଥିରୁ ବଞ୍ଚିତ ହେଉଥିଲେ । ମୋର ବାଲ୍ୟବନ୍ଧୁ ସୂର୍ଯ୍ୟକାନ୍ତ ଭବାନିପାଟଣାରୁ ପାସ୍ କରି କଳାହାଣ୍ଡି ମହାରାଜାଙ୍କ ବୃତ୍ତି ପାଇ ପଶ୍ଚିମ ହଷ୍ଟେଲରେ ଅନ୍ତେବାସୀ ଥିଲେ । ଢେଙ୍କାନାଳ ମୟୂରଭଂଜ ଓ ସୋନପୁରର ଛାତ୍ରମାନଙ୍କ ପାଇଁ କେତେଗୁଡ଼ିଏ ବୃତ୍ତି ରହିଥିଲା । ସେହି ଗଡ଼ଜାତ ରାଜ୍ୟରୁ ଛାତ୍ର ନ ଥିଲେ ତାହା ଅନ୍ୟ ଗଡ଼ଜାତର ଅଧିବାସୀ ଛାତ୍ରକୁ ମିଳୁଥିଲା ।

ପୁରୀ ଜିଲ୍ଲାର ଛାତ୍ର ଜଣେ ମାସିକ ପାଞ୍ଚଟଙ୍କା ବେକର ବୃତ୍ତି ପାଉଥିଲେ । ସମ୍ବଲପୁରରୁ ପାସ୍ କରି ଆସୁଥିବା ଛାତ୍ରମାନଙ୍କ ପାଇଁ ଏକକାଳୀନ ବାର୍ଷିକ ଶହେ ଟଙ୍କାର ତିନିଗୋଟି ମାସିକ ସ୍ମୃତି ବୃତ୍ତି ଉପଲବ୍ଧ ଥିଲା । ଏ ବୃତ୍ତି ଓ ପୁରସ୍କାର ସବୁ ବର୍ତ୍ତମାନ ପରିବର୍ତ୍ତିତ ପରିସ୍ଥିତିରେ ଏହାର ଗୁରୁତ୍ୱ ହରାଇ ଅଛି । ପୁରସ୍କାରମାନ ଅଳ୍ପ ମୂଲ୍ୟର ହୋଇଥିବାରୁ ଓ ଏହା ଜମା କରାଯାଇଥିବା ଅର୍ଥର ସୁଧ ଉପରେ ନିର୍ଭର କରୁଥିବାରୁ ମୁଦ୍ରାସ୍ଫୀତି ଫଳରେ ଏହାର ଉପାଦେୟତା ଓ ମର୍ଯ୍ୟାଦା ହ୍ରାସ ପାଇଅଛି । କ୍ରୀଡ଼ାରେ ପାରଦର୍ଶିତା ନିମିତ୍ତ ସେମିତି ଅନେକ କପ୍ ଦିଆଯାଉଥିଲା । ଦଉଡ଼ାରେ ଡିଭଜ କପ୍, ଭଲିରେ ପରିଜା କପ୍, ସନ୍ତରଣରେ ହୀରାଖଣ୍ଡ କପ୍, ଟେନିସରେ ମୋତି କପ୍, ଏହା ମଧ୍ୟରେ ବିଶେଷ ଲୋକପ୍ରିୟ ଥିଲା । ଶ୍ରେଷ୍ଠ ଖେଳାଳି ଚମ୍ପିଅନ କପ୍ ଓ ବିଭିନ୍ନ ଶ୍ରେଣୀ ମଧ୍ୟରେ ଫୁଟବଲରେ ପ୍ରଥମ ପ୍ରିନ୍‌ସପାଲ କପ୍ ଲାଭର ଗୌରବ ଅର୍ଜନ କରୁଥିଲେ ।

ତ୍ରୈମାସିକ Ravenshavian କଲେଜର ମୁଖପତ୍ର । ଛାତ୍ର ଓ ଅଧ୍ୟାପକମାନଙ୍କର ବହୁ ଉପାଦେୟ ପ୍ରବନ୍ଧ କବିତା ଆଦି ଏଥିରେ ପ୍ରକାଶିତ ହୁଏ । ଏହା ବ୍ୟତୀତ ଅଧ୍ୟାପକ ଭି.ଭି.ଜନ ଯୋଗ ଦେଲା ପରେ College Weekly ନାମରେ ଗୋଟିଏ ସାପ୍ତାହିକ ୪/୬ ପୃଷ୍ଠାର ପତ୍ରିକା ପ୍ରତି ଶୁକ୍ରବାର ବାହାର କରୁଥିଲେ । ଏଥିରେ କଲେଜର ବିଭିନ୍ନ ସଂବାଦ ଅଧ୍ୟାପକ ଓ ବିଭିନ୍ନ ସମିତିମାନଙ୍କର କାର୍ଯ୍ୟକଳାପ ବ୍ୟତୀତ କିଛି ହାଲୁକା ରଙ୍ଗରସ ଇଂରାଜୀ ଭାଷାରେ ପ୍ରକାଶ

ପାଉଥିଲା । ଯୁଦ୍ଧ ଘନେଇବା ସହିତ ଛାପାକାଗଜ ଅଭାବ ଓ ଦରବୃଦ୍ଧି ସହିତ ଏହା ବୋଧହୁଏ ବନ୍ଦ ହୋଇଗଲା ।

ସହଜେ ମୁଁ ତ ଟ୍ୟୁସନ କରି ପଢୁଥିଲି । ନିଜର ବହିପତ୍ରର ଅଭାବ । ଯୁଦ୍ଧ ବଜାରରେ କେତେକ ବିଲାତି ଛାପା ବହି ମଧ୍ୟ ଦୁର୍ଲଭ ଥାଏ । ସାଙ୍ଗମାନଙ୍କ ପାଖରୁ ଓ ବିଦ୍ୟାର୍ଥୀ ସଂଘ ଦେଉଥିବା ଧାର ବହି lending libraryରେ ପଢ଼ି କାମ ଚଳାଇବା ଲକ୍ଷ୍ୟରେ ଅର୍ଥନୀତି ଇତିହାସ ଓ ତର୍କଶାସ୍ତ୍ର ନେଲି । ବାଇଧର ଇତିହାସ ଓ ତର୍କଶାସ୍ତ୍ର ନେଇଥାଏ । ଜୟକୃଷ୍ଣ ଅର୍ଥନୀତି ନେଲା । ଆମର ଇଂରେଜୀ ଅଧ୍ୟାପକ କୃତ୍ତିବାସ ସାମନ୍ତରାୟ, କନାଥନ ମହାନ୍ତି, ନାରାୟଣ ମୋହନ ଦେ, ଗିରିଜା ଶଙ୍କର ରାୟ । ବିଭାଗୀୟ ମୁଖ୍ୟ ଅଧ୍ୟାପକ ପି.ଏସ୍. ସୁନ୍ଦରମ୍, ବିଏ ଲଣ୍ଡନ ତଳ ଶ୍ରେଣୀରେ ପଢ଼ାଉ ନ ଥାନ୍ତି । ନୂତନ ହୋଇ ଯୋଗଦାନ କରିବା ଅଧ୍ୟାପକ ଭି.ଭିଜନ ବିଏ ଲଣ୍ଡନ ଆମ୍ଭମାନଙ୍କୁ ନାୟକ Journey's End ଚିତ୍ତାକର୍ଷକ ଭାବେ ପଢ଼ାଇଲେ । ସାଧାରଣ କ୍ଲାସ ଛଡ଼ା ଟ୍ୟୁଟୋରିଆଲ କ୍ଲାସମାନଙ୍କରେ ମଧ୍ୟ ସେମାନେ ଆମ୍ଭମାନଙ୍କର ସନ୍ଦେହ ମୋଚନ କରି ଆମ୍ଭମାନଙ୍କର ରଚନା ସଂଶୋଧନରେ ବିଶେଷ ସହାୟକ ଥାଇ ପରୀକ୍ଷାରେ ଉତ୍ତର ଦେବା କାଇଦା ବତାଉଥିଲେ । ସେତେବେଳେ ଏତେପ୍ରକାର ପ୍ରଶ୍ନ ଉତ୍ତର ଯୁକ୍ତ test paper ମିଳୁ ନ ଥିଲା । Key book ଥାଏ, କଲିକତା ବା ପାଟଣାରେ ଛପା ହୋଇ ଆସେ । ଓଡ଼ିଆରେ ଆର୍ତ୍ତବଲ୍ଲଭ ମହାନ୍ତି, କୁଞ୍ଜବିହାରୀ ତ୍ରିପାଠୀ । ଶେଷ ବର୍ଷ ସବୁଜକବି ବୈକୁଣ୍ଠନାଥ ପଟ୍ଟନାୟକ ଯୋଗ ଦେଲେ ।

ଓଡ଼ିଆ ପଦ୍ୟ ପଢ଼ାଇଲେ । କିଛିଦିନ ପାଇଁ ଡମ୍ବରୁ ଧର ଦାସ ମଧ୍ୟ ଯୋଗ ଦେଲେ । ଓଡ଼ିଆ କ୍ଲାସରେ ବହୁତ ଛାତ୍ର । କଳା ବିଜ୍ଞାନ ମିଶି ଦୁଇ ଶହରୁ ଅଧିକ ଏକାଠି ହୁଅନ୍ତି । ସେମାନଙ୍କର ବିଶୃଙ୍ଖଳ ଆଚରଣ କେବଳ ଅଧ୍ୟାପକ ଆର୍ତ୍ତବଲ୍ଲଭ ଏକା ମୁକାବିଲା କରିପାରୁଥିଲେ । ଓଡ଼ିଆ ସଂସ୍କୃତ ଗୋଟିଏ ବିଭାଗ । ବାଧ୍ୟତାମୂଳକ ଓଡ଼ିଆ କ୍ଲାସ ସପ୍ତାହକେ ଥରେ ଥାଏ । ଅର୍ଥନୀତିରେ ଅଧ୍ୟାପକ ଥିଲେ ଭୈରବ ନାଥ ଭୋହାତର୍ଗୀ B.Sc. (Econ Lond) ପରେ ଦେଶ ସ୍ୱାଧୀନ ହେବାରୁ ସେ ପ୍ରଶାସନିକ ସେବାରେ IAS ନିଯୁକ୍ତିପାଇ ବିହାରରେ କମିସନର ଓ ସାଧାରଣ ଲୋକ ସେବା ଆୟୋଗର ଅଧ୍ୟକ୍ଷ Chairman PSC ଭାବେ ଅବସର ନେଲେ । ବିଭାଗୀୟ ମୁଖ୍ୟ ସୁରେଶଚନ୍ଦ୍ର ବର୍ଦ୍ଧନ ଅଭିଜ୍ଞ । ଛାତ୍ରବତ୍ସଳ ପରିଣତ ବୟସର । ନୂତନ ଭାବେ ଅଧ୍ୟାପକ ହୋଇଥିବା ସଦାଶିବ ମିଶ୍ର ଶ୍ରେଣୀର ଶ୍ରେଷ୍ଠ ଆକର୍ଷଣ ଥାଆନ୍ତି । ତାଙ୍କ ବର୍ଣ୍ଣନାଶୈଳୀ ହେତୁ ଶ୍ରେଣୀରେ ବାହାର ଛାତ୍ରମାନେ ମଧ୍ୟ ଅର୍ଥନୀତିର ତତ୍ତ୍ୱ ଜାଣିବାକୁ ଆସି ବସନ୍ତି । ଇତିହାସରେ ଅଧ୍ୟାପକ ଘନଶ୍ୟାମ ଦାସ । BA (Lond) ଓ ଅଧ୍ୟାପକ ଜଗଦାନନ୍ଦ ମହାନ୍ତି ଯଥାକ୍ରମେ ଇଉରୋପ ଓ ଭାରତ ଇତିହାସ ( ୧୫୨୬ ପର୍ଯ୍ୟନ୍ତ)

ପଢ଼ାନ୍ତି । ତର୍କଶାସ୍ତ୍ରରେ ଅଧ୍ୟାପକ ବିପିନ ବିହାରୀ ରାୟ ବିଭାଗ ମୁଖ୍ୟ । ତାଙ୍କର ଅବସର ନେବା ସମୟ ପାଖେଇ ଥାଏ । ସେ ବେଶି ଦିନ ଛୁଟିରେ ଥାଇ ଆମ୍ଭମାନଙ୍କୁ ପ୍ରାୟ ପଢ଼ାଇ ନାହାନ୍ତି । ଅଧ୍ୟାପକ ରତ୍ନାକର ପତି ଓ ଅଧ୍ୟାପକ ଦାମୋଦର ମିଶ୍ର ଆମ୍ଭମାନଙ୍କୁ ସାଧାରଣ ଶ୍ରେଣୀରେ ପଢ଼ାଇବା ସହିତ ଟ୍ୟୁଟୋରିଆଲ ଶ୍ରେଣୀରେ ସନ୍ଦେହ ମୋଚନ କରନ୍ତି ।

ପରୀକ୍ଷା ଦେବା ପାଇଁ ଜଣେ ଛାତ୍ର ପ୍ରଦତ୍ତ ଲେକଚର ଟ୍ୟୁଟୋରିଆଲ ମଧ୍ୟରୁ ଶତକରା ୭୫ ଭାଗରେ ଯୋଗ ଦେବା ବାଧ୍ୟତାମୂଳକ । ଏହା ନ ହେଲେ ପରୀକ୍ଷାରେ ବସିବାକୁ ଅନୁମତି ମିଳୁ ନ ଥିଲା । ଦଶଭାଗ କମ ଥିଲେ ତାହା condone ମାର୍ଜନା କରାଯାଉଥିଲା । ମାତ୍ର ତାଠାରୁ ବେଶି ଗରହାଜର ଅକ୍ଷମଣୀୟ ଥିଲା । ଶ୍ରେଣୀ ଓ କଲେଜରେ ଶୃଙ୍ଖଳା ରକ୍ଷାରେ ଏହାର ଗୁରୁତର ପ୍ରଭାବ ଥିଲା । ୨ୟ ଓ ୪ର୍ଥ ବର୍ଷ ଶେଷରେ ବିଶ୍ୱବିଦ୍ୟାଳୟ ପରୀକ୍ଷା ହେଉଥିଲା । ଏହା ଫେବୃୟାରୀ ମାସରେ ହେବା ବରଷକ ଆଗରୁ ଜଣାଥାଏ । କଲେଜ କାଲେଣ୍ଡରରେ ଲେଖାଥାଏ । ଆଇ.ଏ. ପାଇଁ ଟ.୩୦, ବି.ଏ.ରେ ପାସ୍ ପାଇଁ ଟ.୪୦ ଓ ଅନର୍ସ ପାଇଁ ଏହି ଫିଜ ପଚାଶ ଟଙ୍କା ଥିଲା । କଳା ଓ ବିଜ୍ଞାନ ଉଭୟ ପାଇଁ ଧାର୍ଯ୍ୟ ଫିଜ ଏକ ଥିଲା । ଏହା ବାଦେ ୧ମ ଓ ୩ୟ ବର୍ଷରେ କଲେଜରେ ଆଭ୍ୟନ୍ତରୀଣ ପରୀକ୍ଷା ହେଉଥିଲା । ୧ମ ବର୍ଷର ଛାତ୍ର ବଡ଼ଦିନ ଛୁଟି ଆଗରୁ ଅର୍ଦ୍ଧବାର୍ଷିକ ପରୀକ୍ଷା ଓ ଅପ୍ରେଲ ମାସରେ ବାର୍ଷିକ ପରୀକ୍ଷା ଦେଇ ୨ୟ ବର୍ଷକୁ ଯାଉଥିଲେ । ୩ୟ ବର୍ଷର ଛାତ୍ରମାନଙ୍କର ସେମିତି ପରୀକ୍ଷା ଥାଏ । ୨ୟ ଓ ୪ର୍ଥ ବର୍ଷର ଛାତ୍ରମାନେ ସେମାନଙ୍କର ପ୍ରିଟେଷ୍ଟ ପରୀକ୍ଷା ପୂଜା ଛୁଟି ଆଗରୁ ଦେଉଥିଲେ ଓ ସେମାନଙ୍କର ଟେଷ୍ଟ ପରୀକ୍ଷା ବଡ଼ ଦିନ ଛୁଟି ଆଗରୁ, ନ ହେଲେ ଜାନୁଆରୀରେ ଦେଉଥିଲେ । ଏହି ପରୀକ୍ଷାର ଖାତା ସବୁ ମୂଲ୍ୟାୟନ ପରେ ଅଧ୍ୟାପକମାନେ ଛାତ୍ରମାନଙ୍କୁ ଫେରାଇ ଦେଉଥିଲେ ଓ ସେମାନେ ସହପାଠୀମାନଙ୍କର ଖାତା ଦେଖି ନିଜର ଦୋଷତ୍ରୁଟି ନିର୍ଣ୍ଣୟ କରି ଦୂର କରିବାକୁ ଉଦ୍ୟତ ଥିଲେ । ୨ୟ ଓ ୪ର୍ଥ ଶ୍ରେଣୀକୁ ପ୍ରମୋସନ ପାଇ ଏହି ପରୀକ୍ଷା ଓ ଟ୍ୟୁଟୋରିଆଲ କ୍ଲାସ୍ ପରୀକ୍ଷାର ନମ୍ବର ମିଶାଇ ଯୋଗ୍ୟତା ନିର୍ଦ୍ଧାରଣ କରାଯାଉଥିଲା । ଏହି ପରୀକ୍ଷା ନ ଦେଲେ ପତ୍ର ପିଛା ଏକ ଟଙ୍କା ଜୋରିମାନା ଦେବାକୁ ପଡୁଥିଲା । ପ୍ରମୋସନ ମଧ୍ୟ ଏଥିପାଇଁ ବନ୍ଦ କରାଯିବାର ବ୍ୟବସ୍ଥା ଥିଲା । ଅଭିଜ୍ଞ ଦୂରଦୃଷ୍ଟି ସଂପନ୍ନ ଶିକ୍ଷାବିଦ୍‌ମାନେ ପରବର୍ତ୍ତୀ କାଳରେ ଏହିସବୁ ପରୀକ୍ଷା ଉଠାଇଦେଲେ ମଧ୍ୟ ଏହାର ଯୌକ୍ତିକତା ପୁରାତନ ଛାତ୍ର ଓ ଅଭିଭାବକମାନଙ୍କର ହୃଦ୍‌ବୋଧ ହେଲା ନାହିଁ । ବର୍ତ୍ତମାନପରି ଶ୍ରେଣୀପାଠ ଛାଡ଼ି ବାହାରେ କଲେଜରେ ଦାଦାଗିରି କରିବାର ସୁଯୋଗ ଏଥିରେ ପ୍ରାୟ ନ ଥିଲା । ଗଣ୍ଡା ଗଣ୍ଡା କୋଚିଂ ସେଣ୍ଟରରେ ଅଧ୍ୟାପକମାନେ ସମାନ୍ତରାଳ କଲେଜ ଚଳାଇ ଅର୍ଥର ଉପାର୍ଜନର ଏହା ବୋଧହୁଏ ପୂର୍ବାଭାସ ଥିଲା । ଟ୍ୟୁଟୋରିଆଲ ଶ୍ରେଣୀମାନ ୧୦/୧୨ ଜଣ ଛାତ୍ରଙ୍କୁ ନେଇ ଗଠିତ ହେତୁ ଏଥିରେ ଅଧ୍ୟାପକ ଓ ଛାତ୍ର ପରସ୍ପରକୁ ଆନ୍ତରିକ ଭାବେ ଜାଣିବାର

ସୁଯୋଗ ମିଳୁଥିଲା । ସେମାନେ ମଧ୍ୟ Home Task ଦେଖିବାବେଳେ ଛାତ୍ରର ସୁବିଧା ଅସୁବିଧା ଜାଣି ତାହା ଅପନୋଦନ ନିମିତ୍ତ ଯତ୍ନଶୀଳ ଥିଲେ । କଲେଜ ହଷ୍ଟେଲରେ ଚାରିଶହ ପିଲା ପ୍ରାୟ ରହୁଥିଲେ । ଛାତ୍ରସଂଖ୍ୟା ପ୍ରାୟ ବାରଶହ । ଅନ୍ୟ ଛାତ୍ରମାନଙ୍କ ପାଇଁ କଟକ ସହରରେ ବିଭିନ୍ନ ମେସ ଓ ବ୍ୟକ୍ତିବିଶେଷଙ୍କର ଘର ପ୍ରଧାନ ଆଶ୍ରୟ ସ୍ଥଳୀ । ଯୁଦ୍ଧ ସମୟରେ ଲୁଗାପଟା, କାଗଜପତ୍ର, କେରୋସିନି, ଚିନି, ଚାଉଳର ଅଭାବ ଏହିମାନେ ବିଶେଷ ଅନୁଭବ କଲେ । ଏହି ସମସ୍ୟାର ସମାଧାନ ନିମିତ୍ତ ସମୁଦାୟ କଟକ ସହରଗୁ କୋଡିଏ ନା କେତୋଟି ଟିଉଟୋରିଆଲ ଡିଭିଜନ Tutorial Division ରେ ବିଭକ୍ତ କରାଯାଇ ଜଣେ ଜଣେ ଅଧ୍ୟାପକଙ୍କୁ ଏହାର ଦାୟିତ୍ୱରେ ରଖାଯାଇଥାଏ । ସେ ସଂପୃକ୍ତ ଅଞ୍ଚଳରେ ରହୁଥିବା ଛାତ୍ରମାନଙ୍କ ସହିତ ବ୍ୟକ୍ତିଗତ ସଂପର୍କ ସ୍ଥାପନ କରି ତାଙ୍କର ସୁବିଧା ଅସୁବିଧା ବୁଝି ଏ ଦିଗରେ ସହାୟକ ଥିଲେ ।

ଏହିପରି ଦାୟିତ୍ୱରେ ଥିବା ଜଣେ ଅଧ୍ୟାପକ ରତ୍ନାକର ପତି । ଆମକୁ ଦର୍ଶନ ଶାସ୍ତ୍ର ଆଇ.ଏ.ରେ ତର୍କଶାସ୍ତ୍ର Logic ପଢ଼ାଉଥିଲେ । ପଢାଇବାବେଳେ ତନ୍ମୟ ହୋଇ ପାରିପାର୍ଶ୍ୱିକ ଅବସ୍ଥା ଭୁଲିଯାଆନ୍ତି । ରାଞ୍ଚିରୁ ଏଠାକୁ ବଦଳି ହୋଇ ଆସିବାବେଳେ ଜଣେ ସାହେବ ଅଧ୍ୟକ୍ଷ TC Orgill I.E.S. । ତାଙ୍କୁ କଲେଜ କୋଷାଧ୍ୟକ୍ଷ Bursar ର ଦାୟିତ୍ୱ ଦେଲେ । ସେ ଏହା ଗ୍ରହଣ କରିବା ପୂର୍ବରୁ ଅଧ୍ୟକ୍ଷଙ୍କୁ ଜଣାଇଦେଲେ ଯେ ସେ ଟଙ୍କା ପଇସା ଛୁଅଁନ୍ତି ନାହିଁ । ସାହେବ ଅଧ୍ୟକ୍ଷ ଏହା ଦାୟିତ୍ୱ ଖସାଇଦେବାର ଏକ ଛଳନା ବୋଲି ଭାବିଲେ । କଲେଜର ମୁଖ୍ୟ କିରାଣି ଜଗନ୍ନାଥ ମିଶ୍ର ତାଙ୍କର ବିଶ୍ୱସ୍ତ । ତାଙ୍କୁ ସେ ନିଜର ମତାମତ ରତ୍ନାକରଙ୍କ ଉପରେ ଏହି ପରିସ୍ଥିତିରେ ଶୁଣାଇଲେ । ଜଗନ୍ନାଥ ମିଶ୍ର ବୁଝାଇ ଦେଲେ ତାଙ୍କ ଦରମା ତାଙ୍କ ତରଫରୁ ସେ ନିଜେ ଗ୍ରହଣ କରନ୍ତି । ନିର୍ଦ୍ଧାରିତ ପରିମାଣ ଅର୍ଥ ତାଙ୍କ ଘରକୁ ପଠାନ୍ତି । ବର୍ଷକରେ ତାଙ୍କର ଦୁଇଯୋଡ଼ା ପାଇଜାମା, ଦୁଇଯୋଡ଼ା ବେକ ଚିପା କୋର୍ଟ, ୪/୬ ଖଣ୍ଡ ଫତେଇ ଓ ସେମିତି କେତେଖଣ୍ଡ ଧୋତି ଗାମୁଛା ସେ କିଣି ନିଅନ୍ତି । ତାଙ୍କର ସଉକ ବିଭିନ୍ନ ବହି କିଣିବା । ବହି ରାଣୀହାଟ ବ୍ରଜବନ୍ଧୁ ମିଶ୍ରଙ୍କ ଉତ୍କଳବୁକ୍ ଏଜେନ୍‌ସିରୁ ସେ ଆଣନ୍ତି ଓ ବିଲ୍ ଦେୟ ଜଗନ୍ନାଥ ମିଶ୍ରେ ଦାଖଲ କରନ୍ତି । ବ୍ରଜବନ୍ଧୁ ମିଶ୍ର ଜଣେ ଜାତୀୟତାବାଦୀ ମାଇନର ସ୍କୁଲ ଶିକ୍ଷକ ଥିଲେ । ଅସହଯୋଗ ଆନ୍ଦୋଳନ ସମୟରେ ଚାକିରି ଛାଡ଼ିଦେଲେ । ଖଦଡ଼ ପିନ୍ଧନ୍ତି । ତାଙ୍କ ବହି ଦୋକାନ କଲେଜର ନିକଟତମ ପୁସ୍ତକ ଭଣ୍ଡାର । କଲେଜ ବହି ବ୍ୟତୀତ ସେ ମହାତ୍ମା ଗାନ୍ଧି ଓ ପଣ୍ଡିତ ଜହରଲାଲ ନେହେରୁଙ୍କ ସମସ୍ତ ରଚନାବଳି ପ୍ରାୟ ବିକ୍ରୟ ପାଇଁ ରଖିଥାଆନ୍ତି । ଫଳରେ ଜାତୀୟତାବାଦୀ ସାହିତ୍ୟ ପ୍ରଚାରରେ ତାଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ଥିଲା । ଅଧ୍ୟାପକ ରତ୍ନାକର ଅନେକ ଛାତ୍ରଙ୍କୁ ସାହାଯ୍ୟ କରନ୍ତି । ସେମାନେ ଜଗନ୍ନାଥ ମିଶ୍ରଙ୍କୁ ଶୁଣାଇ ତାଙ୍କଠାରୁ ନିର୍ଦ୍ଦିଷ୍ଟ ଅର୍ଥ ମାସିକ ବା ଏକକାଳୀନ (ପରୀକ୍ଷା ଫିଜ ଆଦି) ଦେଇଥାଆନ୍ତି । ତାଙ୍କର କୌଣସି ମୁଦ୍ରା ଛୁଇଁବାର ଅବକାଶ ନ ଥାଏ ।

ସାହେବ ଶୁଣି ଆଶ୍ଚର୍ଯ୍ୟ ହେଲେ ଓ ତାଙ୍କୁ ଯଥୋଚିତ ମର୍ଯ୍ୟାଦା ଦେଲେ । ଅନେକ ପିଲାଙ୍କୁ ସେ ଦୁଃସ୍ଥ ଜାଣିଲେ ସାହାଯ୍ୟ କରୁଥିଲେ । ନିଜେ ଏକ ଦୁଃସ୍ଥ ବ୍ରାହ୍ମଣ ପରିବାରରେ ଜନ୍ମ ହୋଇ ବୃତ୍ତିପାଇ ଏମ୍.ଏ. ପର୍ଯ୍ୟନ୍ତ ପଢ଼ିଲେ । ତାଙ୍କର ଚରିତ୍ରବତ୍ତାରେ ପ୍ରଭାବିତ ହୋଇ ସରକାରୀ କର୍ମଚାରୀ ଜାଣି ମଧ୍ୟ ପଣ୍ଡିତ ଗୋପବନ୍ଧୁ ଦାସ ତାଙ୍କୁ ନିଜର ଜାମାତାଭାବେ ବରଣ କରିଥିଲେ । ଆମ ଟିଉଟୋରିଆଲ ଡିଭିଜନର ସେ ଦାୟିତ୍ୱରେ । ମୁଁ ଅବଶ୍ୟ ଜଣଙ୍କ ଘରେ ଥାଏ । ଅସୁବିଧା ମୋର ପ୍ରାୟ ସାମାନ୍ୟ ଥାଏ । ମେସରେ ଥିବା ବିଦ୍ୟାର୍ଥୀମାନେ ନାନା ସମସ୍ୟାର ସମ୍ମୁଖୀନ । ଅଧ୍ୟାପକ ସେହି ମେସରେ ପହଞ୍ଚି ସମସ୍ୟା ସମାଧାନର ସୂତ୍ର ବାହାର କରନ୍ତି । ଦିନେ ଜଣେ ଛାତ୍ର ଅନ୍ତେବାସୀ ନ ଥିବାର ଦେଖି ପ୍ରକୃତରେ ସେ ଟ୍ୟୁସନ କରିବାକୁ ଯାଇଛନ୍ତି ନା ଅନ୍ୟ କୁଆଡେ ତାହା ଯାଞ୍ଚ କରିବାକୁ ବସି ରହିଲେ । ଛାତ୍ର ଫେରିଲେ । ୨ୟ ବାର୍ଷିକ ଛାତ୍ର । ତାଙ୍କର ଆର୍ଥିକ ସ୍ଥିତି ପରିବାରର ଅର୍ଥନୈତିକ ବ୍ୟବସ୍ଥା ଆଦି ଜାଣିବା ପରେ ନିଜେ ମାସକୁ ତାଙ୍କୁ ବର୍ଷ ଶେଷଯାଏ ମାସିକ ଏକ ନିର୍ଦ୍ଦିଷ୍ଟ ଅର୍ଥ ସାହାଯ୍ୟ ପ୍ରତିଶ୍ରୁତି ଦେଲେ ଓ ପ୍ରତି ମାସ ଆରମ୍ଭରେ ଜଗନ୍ନାଥ ମିଶ୍ରଙ୍କଠାରୁ ଏହା ଆଣିବାକୁ ବତାଇଲେ । ତାଙ୍କର ଜୀବନ ପ୍ରକୃତରେ ଥିଲା ଦାର୍ଶନିକର ଦୃଷ୍ଟି । ଅର୍ଥ ଅର୍ଜନ କରାଯାଇଛି ବ୍ୟୟ ନିମିତ୍ତ ଓ ଏହାର ସୁଉପଯୋଗ ଅର୍ଜନର ଆବଶ୍ୟକତା ପ୍ରତିପାଦନ କରିବ ।

ଆଉ ଜଣେ ସେମିତି ତର୍କଶାସ୍ତ୍ରର ଅଧ୍ୟାପକ ଦାମୋଦର ମିଶ୍ର । ସେ ଛାତ୍ରବତ୍ସଳ ଥାଇ ସେମାନଙ୍କର ଚିନ୍ତାଧାରାକୁ ପ୍ରଭାବିତ କରୁଥିଲେ । ସେ ଜଣେ ମେଧାବୀ ଛାତ୍ର ଥିଲେ । କଟକ କଲେଜିଏଟ ସ୍କୁଲ୍, ରେଭେନ୍ସା କଲେଜରେ ପଢ଼ି ଶେଷରେ ପାଟଣାରୁ ଦର୍ଶନଶାସ୍ତ୍ରରେ ଏମ୍.ଏ. ପାସ୍ କରିଥାନ୍ତି । ତାଙ୍କ ସହପାଠୀ ସୋମନାଥ ମିଶ୍ର ୧୯୩୬ ମସିହାରେ ଡେପୁଟି କଲେକ୍ଟର ହେଲେ । ସେ ବହୁ ବିଳମ୍ବରେ ରେଭେନ୍ସା କଲେଜରେ ଦର୍ଶନ ଅଧ୍ୟାପକ ହେଲେ । ସାଧାରଣ ଓ ଟ୍ୟୁଟୋରିଆଲ ଉଭୟତ୍ର ସେ ନିଜ ପାଣ୍ଡିତ୍ୟର ପରିଚୟ ପ୍ରଦାନ କରୁଥିଲେ । ଛୋଟ କ୍ଲାସରେ ସେ ପ୍ରତି ଛାତ୍ରକୁ ଜାଣି ତାକୁ ବ୍ୟକ୍ତିଗତ ମେଧା ବା ଦୋଷଗୁଣର ବିଚାରକରି ପରାମର୍ଶ ଦେଉଥିଲେ । କେଉଁ ପୁସ୍ତକ ଅଧ୍ୟୟନ ଦରକାର, ଭବିଷ୍ୟତ ଜୀବନ ସୁଖମୟ ଓ ଋଦ୍ଧିମନ୍ତ କରିବାକୁ କଣ ଦରକାର ତାହା ସେ ଗ୍ରନ୍ଥକାରମାନଙ୍କ ଲେଖାରୁ ଉଦ୍ଧୃତ କରି ପ୍ରାଞ୍ଜଳ ଭାବରେ ବୁଝାଉଥିଲେ । ମୋର ବି.ଏ.ରେ ଦର୍ଶନ ନ ଥିବାରୁ ମାତ୍ର ୨ ବରଷ ତାଙ୍କର ଛାତ୍ର ଥିଲି । ସେ ପରେ ପାରଳାଖେମୁଣ୍ଡି, ବଲାଙ୍ଗିର, ଭୁବନେଶ୍ୱର ସରକାରୀ କଲେଜରେ ଅଧ୍ୟକ୍ଷ ହୋଇଥିଲେ । କୌଣସି ରାଜନୈତିକ ଚାପରେ କଲେଜର ଛାତ୍ରମାନଙ୍କର ସ୍ୱାର୍ଥ ଯେପରି ବ୍ୟାହତ ନ ହୁଏ ଏଥିପ୍ରତି ସେ ସର୍ବଦା ସଜାଗ ଥିଲେ । ତାଙ୍କ ସମୟରେ ପାରଳାଖେମୁଣ୍ଡିରେ ଓଡ଼ିଆ ତେଲଗୁ ଛାତ୍ର ସଂଘର୍ଷ ସମୟରେ ତାଙ୍କ ବୌଦ୍ଧିକ ନିଷ୍ଠା ଓ ପ୍ରଶାସନିକ ଦକ୍ଷତା ପ୍ରମାଣିତ ହୋଇଥିଲା । ଓଡ଼ିଶା

କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ ସ୍ଥାପିତ ହେବା ପରେ ସେ ଏହାର ପ୍ରଥମ ରେଜିଷ୍ଟ୍ରାର ଥିଲେ। ଦୁଇବର୍ଷ ବୃତ୍ତି ପାଇ ଆମେରିକାରେ ଉଚ୍ଚତର ଶିକ୍ଷା କରି ପରେ କଲମ୍ବୋ ବିଶ୍ୱବିଦ୍ୟାଳୟରୁ ସେ ଡକ୍ଟରେଟ ପାଇଥିଲେ। ମୋର ଏକ ଅଭିଜ୍ଞତା ଉଲ୍ଲେଖଯୋଗ୍ୟ। ସେ ବଲାଙ୍ଗିରରେ ଅଧ୍ୟକ୍ଷ ୧୯୫୩ କି ୫୪ ହେବ, ମୁଁ ଟିଟିଲାଗଡରୁ ବସ୍‌ରେ ବଲାଙ୍ଗିର ଦେଇ କଟକ ଆସୁଥାଏ। ସେଇ ବସରେ ସେ ମଧ୍ୟ ଆସିଲେ। ମୁଁ ତାଙ୍କ ପାଖ ସିଟ୍‌ରେ ବସିଲି।

ପ୍ରଥମ ସାଧାରଣ ନିର୍ବାଚନରେ କେତୋଟି ନିର୍ବାଚନ ଧର୍ତ୍ତବ୍ୟ ଅପରାଧରେ ଅଭିଯୋଗକାରୀଭାବେ ମୋ କୋର୍ଟରେ ଟିଟିଲାଗଡରେ ସେ ସାକ୍ଷ୍ୟ ଦେଇଥାଆନ୍ତି। ଅନ୍ୟ କେହି ହୋଇଥିଲେ ସେ ଅପରାଧକୁ ଦୃଷ୍ଟିକୁ ଆଣି ନ ଥାନ୍ତା। ଏହା ମୋର ମତ। ସେ ଗ୍ରହଣ କଲେ ନାହିଁ। କଥା ପ୍ରସଙ୍ଗରେ ମୁଁ କହିଲି ସେ ନିକର ଏକ ବିରାଟ ପରିବାର ଛାଡି ଦୁଇ ବରଷ ଆମେରିକାରେ ରହି ଡକ୍ଟରେଟ ନ ଆଣି ଆସିବାରୁ ଯିବାର ପ୍ରୟୋଜନୀୟତା ମୁଁ ଦେଖି ପାରିଲି ନାହିଁ। ଏହାର ଉତ୍ତର ସେ ମୋତେ ଦେଲେ ନାହିଁ। ମୋ ସାଙ୍ଗରେ ଗୋଟିଏ ଛୋଟ ବେଡିଂ ଓ ଛୋଟ ସୁଟକେଶ ଥିଲା, ଯାହା ଅତି ସହଜରେ ମୋ ପରି ଜଣେ ସୁସ୍ଥ ସବଳ ଯୁବକ ଗାଡିରୁ ଧରି ଓହ୍ଲାଇ ପାରିଥାନ୍ତା ଓ ପୁଣି ଅନ୍ୟ ଗାଡି ବା ମେରାମଣ୍ଡଳି ରେଲଷ୍ଟେସନରେ ଟ୍ରେନରେ ଚଢ଼ି ପାରିଥାନ୍ତି। ତାଙ୍କର ଦୁଇଟି ବଡ ହାଉରସ୍ୟାକ ବ୍ୟାଗ ଦୁଇ କାନ୍ଧରେ ଥାଏ- ଗାଡିରେ ଚଢ଼ିବା ଓ ଓହ୍ଲେଇବା ବେଳେ। ଆମେ ସକାଳେ କଟକ ରେଲଷ୍ଟେସନରେ ବିଦାୟ ନେଲାବେଳେ ସେ ମୋତେ କୁଲିଖରଚ କେତେ ହେଲା ବୋଲି ପଚାରିଲେ। ତାଙ୍କର ଦୁଇଟି ବ୍ୟାଗ ମତେ ଧରାଇ ଓଜନ ଅନୁମାନ କରିବାକୁ କହିଲେ। ଏହା ଓଜନ ପ୍ରାୟ ମୋର ଦୁଇଟି ଲଗେଜଠାରୁ ବହୁଗୁଣ ବେଶି ଥାଏ। ସେ କୁଲିକୁ ଅପେକ୍ଷା କରୁ ନ ଥାନ୍ତି ବା କିଛି ପଇସା ଖରଚ କରି ନ ଥାଆନ୍ତି। ମତେ ଶୁଣାଇଲେ ତମ ପ୍ରଶ୍ନର ଉତ୍ତର ପାଇଗଲ। ଆମେରିକାରେ ୨ ବରଷ ନ ଥିଲେ ଶ୍ରମର ମୂଲ୍ୟ ଓ ନିଜ କାମ ନିଜେ କରିବା ମୁଁ ଶିଖି ପାରି ନ ଥାନ୍ତି। ତମ ପରି କୁଲି କୁଲି ହେଉଥାଆନ୍ତି। ମୁଁ ଲଜ୍ଜିତ ହେଲି। ସାକ୍ଷାତ୍ ସମୟରେ ପ୍ରତିଥର ସେ ଜଣେ ହିତାକାଂକ୍ଷୀ ଭାବରେ ମୋର ବ୍ୟକ୍ତିଗତ ଓ ବୃତ୍ତିଗତ ସବୁ ଖବର ବୁଝି ଥାଆନ୍ତି।

•

*ଆମ ପାଠପଢ଼ା ସମୟ...,*
ଶିକ୍ଷା ସନ୍ଧାନ, ଭୁବନେଶ୍ୱର, ୨୦୧୧

# କଲେଜ ଜୀବନ

## ଶ୍ରଦ୍ଧାକର ସୂପକାର

ସେ ଯୁଗରେ ସମଗ୍ର ଓଡ଼ିଶା ପାଇଁ ରେଭେନ୍‌ସା କଲେଜ ଏକମାତ୍ର ଉଚ୍ଚ ଶିକ୍ଷାନୁଷ୍ଠାନ ଥିଲା କହିଲେ ଚଳେ । ବ୍ରହ୍ମପୁରର ଖଲ୍ଲିକୋଟ କଲେଜ ପ୍ରଧାନତଃ ଗଞ୍ଜାମ ଓ କୋରାପୁଟ ଜିଲ୍ଲାର ଛାତ୍ରମାନଙ୍କ ଦ୍ୱାରା ପୂର୍ଣ୍ଣ ହେଉଥିଲା । ଓଡ଼ିଶାର ଅତି ଅଳ୍ପସଂଖ୍ୟା ଛାତ୍ର କଲିକତା ବା ପାଟନା କଲେଜକୁ ଉଚ୍ଚଶିକ୍ଷା ପାଇଁ ଯାଉଥିଲେ । ଆମ ପକ୍ଷରେ ରେଭେନ୍‌ସା କଲେଜ ହିଁ ସବୁ ଦୃଷ୍ଟିରୁ ଉପଯୁକ୍ତ ଉଚ୍ଚଶିକ୍ଷାନୁଷ୍ଠାନ ଥିଲା ।

୧୯୩୧ ମସିହା ଜୁନ୍ ମାସ ଶେଷ ସପ୍ତାହରେ ଆମେ କଟକ ରେଭେନ୍‌ସା କଲେଜରେ ନାଆଁ ଲେଖାଇବା ପାଇଁ ସମ୍ବଲପୁର ମେରାମଣ୍ଡଳୀ ରାସ୍ତାରେ ଗୋଟିଏ ଘରୋଇ ବସ୍‌ରେ ବାହାରିଲୁ । ଆମ ସଙ୍ଗେ ଶଶିଭୂଷଣ ଓ ତାରାପ୍ରସାଦ ଯାଉଥିବାରୁ ସେମାନଙ୍କର ପିତାମାନେ ଯଥାକ୍ରମେ ଶ୍ରୀ ବ୍ରଜମୋହନ ପଣ୍ଡା ଓ ଶ୍ରୀ ଶଙ୍କର ପ୍ରସାଦ ମିଶ୍ର ମଧ୍ୟ ଆମ ସାଙ୍ଗରେ ଯାଉଥାନ୍ତି । ଆମେ ସେମାନଙ୍କ ସାଙ୍ଗରେ ଯାଉଥିଲୁ କହିଲେ ଅଧିକ ଯୁକ୍ତିଯୁକ୍ତ ହେବ । ଅଧ୍ୟାପକ ଶ୍ରୀ ଘନଶ୍ୟାମ ଦାସ ମଧ୍ୟ ଆମ ସାଙ୍ଗରେ ଗ୍ରୀଷ୍ମଛୁଟି ପରେ କଲେଜରେ ଯୋଗ ଦେବା ପାଇଁ ଯାଉଥାନ୍ତି । ସେ ସମୟରେ ସମ୍ବଲପୁରଠାରୁ ମେରାମଣ୍ଡଳୀ ରାସ୍ତା ଭଲ ନଥିଲା । ସେ ରାସ୍ତାରେ ବସ୍ ଆଦିର ଚଳ ପ୍ରଚଳ ନିୟମିତ ନଥିଲା । ସାଧାରଣତଃ ଛାତ୍ରମାନେ ସମ୍ବଲପୁରରୁ ଝାରସୁଗୁଡ଼ା ଓ ଖଡ଼୍‌ଗପୁର ଦେଇ କଟକ ଯିବା ଆସିବା କରୁଥିଲେ ଓ ସେଥିପାଇଁ ସମ୍ବଲପୁରରୁ କଟକ ପହଞ୍ଚିବାକୁ ପ୍ରାୟ ଛତିଶ ଘଣ୍ଟା ସମୟ ଲାଗୁଥିଲା ।

ସେତେବେଳକୁ ସମ୍ବଲପୁରରୁ ରେଢ଼ାଖୋଲକୁ ପକ୍କା ରାସ୍ତା ତିଆରି ଚାଲିଥାଏ । ଆମେ ସମ୍ବଲପୁରରୁ ସକାଳେ ବିହାରି ମଧ୍ୟାହ୍ନ ସମୟରେ ଅନୁଗୁଳରେ ପହଞ୍ଚିଲୁଁ । ସେତେବେଳେ ସମ୍ବଲପୁରର ଶ୍ରୀ ନାରାୟଣ ନନ୍ଦ ସେଠାରେ ଡେପୁଟି ମାଜିଷ୍ଟ୍ରେଟ ଥାଆନ୍ତି । ତାଙ୍କରି ଘରେ ମଧ୍ୟାହ୍ନ ଭୋଜନ ପାଇଁ ଓହ୍ଲାଇଲୁଁ । ଶ୍ରୀ ନାରାୟଣ ନନ୍ଦଙ୍କର ଦ୍ୱିତୀୟ ପୁତ୍ର ଦୁର୍ଗାପ୍ରସାଦ ପିଲାଦିନରୁ ଆମର ସହପାଠୀ ଥିଲେ । ମଝିରେ ଅବଶ୍ୟ ବର୍ଷେ ଦୁଇ ବର୍ଷ ପାଇଁ ସେ ବୋଧହୁଏ ଖୋର୍ଦ୍ଧା ହାଇସ୍କୁଲରେ ପଢ଼ିଥିଲେ ।

ମଧ୍ୟାହ୍ନ ଭୋଜନ ସାରି ଅନୁଗୁଳରୁ ମେରାମଣ୍ଡଳୀ ଅଭିମୁଖେ ଯାତ୍ରା କଲୁଁ। ଆଜିକାଲି ପରି ସେତେବେଳେ ମଧ୍ୟ ବୋଧହୁଏ ଦୁଇଟା ବେଳେ ତାଳଚେର ଗାଡ଼ି ମେରାମଣ୍ଡଳୀରେ ପହଞ୍ଚୁଥିଲା । ଅନୁଗୁଳରୁ ମେରାମଣ୍ଡଳୀ ମଧ୍ୟରେ ବସ୍‌ର ଚକ ଖରାପ ହେଲା । ତାଳଚେର-ପୁରୀ ଗାଡ଼ି ମେରାମଣ୍ଡଳୀଠାରେ ପହୁଞ୍ଚିବାର ସମୟ ଆଗତ ପ୍ରାୟ। ଆମ ବସ୍ ଠିକ୍ ସମୟରେ ପହୁଞ୍ଚି ନ ପାରିଲେ ଅଧରାତି ପର୍ଯ୍ୟନ୍ତ ଷ୍ଟେସନରେ ଅପେକ୍ଷା କରିବାକୁ ପଡ଼ିବ । ଚକ ମରାମତି କରିବାକୁ ଡେରି ହେବ । ଏହି ସମୟରେ ବାଟରେ ଯାଉଥିବା ଜଣେ ସଦୟ ବାଟୋଇର ସାଇକେଲ୍ ଧାର ନେଇ ଶ୍ରୀ ଘନଶ୍ୟାମ ଦାସ ମେରାମଣ୍ଡଳୀ ଷ୍ଟେସନକୁ ଧାଇଁଲେ ଟ୍ରେନକୁ ଅନ୍ତତଃ କିଛି ସମୟ ଆମପାଇଁ ଅପେକ୍ଷା କରିବାକୁ । ଅଧ୍ୟାପକ ଦାସ ସଦ୍ୟ (ଅର୍ଥାତ୍ ୩-୪ ବର୍ଷ ମଧ୍ୟରେ) ବିଲାତ ଫେରନ୍ତା ଅଧ୍ୟାପକ । ଆମର ବିଶ୍ୱାସ ଥିଲା ଯେ ତାଙ୍କ ଅନୁରୋଧରେ ଟ୍ରେନ୍ ଚାଳକ କିଛି ସମୟ ପାଇଁ ମେରାମଣ୍ଡଳୀଠାରେ ଗାଡ଼ି ଅଟକାଇ ରଖିବେ ।

ଗାଡ଼ି ମରାମତି କରିବାପାଇଁ ବିଶେଷ ଡେରି ହେଲା ନାହିଁ । ଟ୍ରେନ୍ ଆମ ପାଇଁ ଦଶ ପନ୍ଦର ମିନିଟ୍‌ରୁ ଅଧିକ ସମୟ ଅପେକ୍ଷା କରିନାହିଁ । ତାଳଚେର ପୁରୀ ଗାଡ଼ି ପକ୍ଷରେ ସେ ଯୁଗରେ ସୁଦ୍ଧା ଅଧଘଣ୍ଟାଏ ଡେରି କରିବା ଧର୍ତ୍ତବ୍ୟ ଅପରାଧ ନଥିଲା । ବାଟରେ କେଉଁଠି ଭଲ ଦାନ୍ତକାଠି ବିକ୍ରି ହେଉଥିଲେ ତାହା କିଣିବା ପାଇଁ ତାଳଚେର ଗାଡ଼ି ପକ୍ଷରେ ଅଟକିବା କୌଣସିମତେ ଅସାଧାରଣ କାର୍ଯ୍ୟ ନୁହେଁ । ଆମେ ମେରାମଣ୍ଡଳୀ ଷ୍ଟେସନରେ ପହଞ୍ଚିବା ସଙ୍ଗେ ସଙ୍ଗେ ଗାଡ଼ିରେ ଉଠିଗଲୁ । ସେ ଦିନ ଆମର ଅଭିଭାବକମାନେ ପ୍ରାୟ ସମସ୍ତେ ପ୍ରଥମ ଶ୍ରେଣୀ ଯାତ୍ରୀ ଥିଲେ । ତାହା ତାଳଚେର ଗାଡ଼ି ପକ୍ଷରେ ଏକ ସ୍ମରଣୀୟ ଘଟଣା ଥିଲା । ତେଣୁ ଏପରି ଭି.ଆଇ.ପି ମାନଙ୍କ ପାଇଁ ସାମାନ୍ୟ କେତେ ମିନିଟ୍ ମେରାମଣ୍ଡଳୀରେ ଡେରି ହେବା ସେ ଯୁଗର ଗାଡ଼ି ପକ୍ଷରେ ବରଂ ସ୍ପୃହଣୀୟ ଥିଲା । ଆମର ଟିକେଟମାନ କିଣିବାର ବ୍ୟବସ୍ଥା ଆମର ଅଭିଭାବକମାନେ ଗାର୍ଡସାହେବଙ୍କ ସହିତ କରିଥିଲେ ।

ଆମେ ସେଦିନ ରାତିରେ କଟକରେ ପହୁଞ୍ଚିଲୁଁ । ଅଧ୍ୟାପକ ଘନଶ୍ୟାମ ଦାସ ରେଭେନ୍‌ସା କଲେଜ ପଶ୍ଚିମ ଛାତ୍ରାବାସରେ ସହକାରୀ ସୁପରିଣ୍ଟେଣ୍ଡେଣ୍ଟ୍ ଥିଲେ । ଆମେ ଛାତ୍ରମାନେ ତାହାଙ୍କର ତତ୍ତ୍ୱାବଧାନରେ ପଶ୍ଚିମ ଛାତ୍ରାବାସରେ ରହିବା ପାଇଁ ଯାଇଥାଉ ।

ସେତେବେଳକୁ କଲେଜର ଗ୍ରୀଷ୍ମଛୁଟି ସରି ନଥାଏ । ଛାତ୍ରାବାସ ଖୋଲି ନଥାଏ । ଅଧିକାଂଶ କୋଠରି ଖାଲି ଥାଏ । କୋଠରିମାନଙ୍କରେ ଆଲୁଅ ନଥାଏ । କଳରେ ପାଣି ନଥାଏ । ଝାଡ଼ା ମାଡ଼ିବାରେ ମୁଁ ବହୁତ ଅସୁବିଧାରେ ପଡ଼ିଲି । ନୂଆ ସହର । ନୂଆ ଧରଣର ହଷ୍ଟେଲ । ନୂଆ ରକମର ପାଇଖାନା । ମୋତେ ଭାରି ଅସ୍ୱସ୍ତି ବୋଧ ହେଲା । ସେ ରାତିଟା କୌଣସି ମତେ ଚଳିଗଲା । ତହିଁଆର ଦିନରୁ ଆରମ୍ଭ ହେଲା ଆମାଶୟ ଝାଡ଼ା । ଭାଗ୍ୟକ୍ରମେ କଲେଜ ଖୋଲିବାକୁ

ଆହୁରି ଦୁଇ ଚାରିଦିନ ଡେରି ଥାଏ । କଲେଜ ଖୋଲିବା ସମୟରେ ମୁଁ ଆରୋଗ୍ୟ ଲାଭ କରି ସାରିଥାଏଁ ।

ସେତେବେଳେ ଆମ ଛାତ୍ରାବାସରେ ଶ୍ରୀ ପ୍ରାଣକୃଷ୍ଣ ପରିଜା ଓ୍ୱାର୍ଡେନ ଥାଆନ୍ତି । ସେତେବେଳକୁ ସେ ଡକ୍‌ଟର ଉପାଧି ପାଇ ନଥାନ୍ତି । ଶ୍ରୀ ନାରାୟଣ ମିଶ୍ର ଥାଆନ୍ତି ସୁପରିଣ୍ଟେଣ୍ଡେଣ୍ଟ୍ ।

ଆମେ ପହଞ୍ଚିବା ପରଦିନ ଶ୍ରୀ ବ୍ରଜମୋହନ ପଣ୍ଡା ଓ ଶ୍ରୀ ଶଙ୍କର ପ୍ରସାଦ ମିଶ୍ର ଯାଇ ପରିଜା ସାହେବଙ୍କୁ ସାକ୍ଷାତ୍ କଲେ । ସେମାନେ ପରିଜା ସାହେବଙ୍କର ପୂର୍ବବନ୍ଧୁ ଥିଲେ । ଶ୍ରୀ ପଣ୍ଡା ସେତେବେଳେ ବିହାର ଓଡ଼ିଶା ବିଧାନ ପରିଷଦର ସଭ୍ୟ ଓ ଶ୍ରୀ ମିଶ୍ର ଉକ୍ତ ପରିଷଦର ପୂର୍ବତନ ସଭ୍ୟ । ଶ୍ରୀ ମିଶ୍ର ସମ୍ଭବତଃ ପରିଜା ସାହେବଙ୍କର ସହପାଠୀ ମଧ୍ୟ ଥିଲେ । ଆମ୍ଭେମାନେ ପ୍ରାୟ ଦଶ ବାର ଜଣ ଛାତ୍ର ସମ୍ବଲପୁର ଜିଲ୍ଲାସ୍କୁଲରୁ ଉଚ୍ଚଶିକ୍ଷା ପାଇଁ ଯାଇଥିଲୁଁ । ଅଭିଭାବକମାନଙ୍କର ଉପସ୍ଥିତି ଯୋଗୁଁ ଆମ୍ଭମାନଙ୍କୁ ନାମ ଲେଖାଇବାରେ କୌଣସି ଅସୁବିଧା ହେଲା ନାହିଁ । ସେତେବେଳେ ସମଗ୍ର କଲେଜର ମୋଟ ଛାତ୍ର ଛାତ୍ରୀ ସଂଖ୍ୟା ପାଞ୍ଚଶହରୁ ଊଣା ଥିଲା । ତେଣୁ ଆମ ସଙ୍ଗେ ଅଭିଭାବକମାନେ ଯାଇ ନ ଥିଲେ ମଧ୍ୟ ସେଠାରେ ସ୍ଥାନାଭାବରୁ ବା ଆମ ଅଯୋଗ୍ୟତାରୁ ସେଠାରୁ ବିଫଳ ମନୋରଥ ହୋଇ ଫେରିବାର ସମ୍ଭାବନା ନଥିଲା ।

ସ୍କୁଲ ପାଠ ଶେଷ ହେଲା ପରେ କଲେଜ ପଢ଼ା ଆରମ୍ଭ ହେବା ସଙ୍ଗେ ଭବିଷ୍ୟତ୍ ଜୀବନ ଓ ଜୀବିକା ନିରୂପଣର ସମସ୍ୟା ମନରେ ଜାଗ୍ରତ ହୁଏ । ମୁଁ ଭବିଷ୍ୟତରେ ଚାକିରିପ୍ରାର୍ଥୀ ହେବାର କଳ୍ପନା ପୂର୍ବରୁ ପରିତ୍ୟାଗ କରିଥିଲି । ସେ ସମୟରେ ସମ୍ବଲପୁରରେ ଡାକ୍ତର ଜନାର୍ଦନ ପୂଜାରୀ ଚିକିତ୍ସା ବ୍ୟବସାୟ କରୁଥାନ୍ତି । ତାଙ୍କର ଜୀବିକା ଥିଲା ମୁଖ୍ୟତଃ ଦାତବ୍ୟ ଜନସେବା । ଯେଉଁ ରୋଗୀ ସ୍ୱେଚ୍ଛାରେ ପଇସା ଦିଏ, ତାହା ସେ ନେଉଥିଲେ ଓ ରୋଗୀ ଚିକିତ୍ସାରେ ବହୁ ପରିଶ୍ରମ କରି ପୁଣ୍ୟ ସଞ୍ଚୟ କରୁଥିଲେ ବହୁତ । ତାଙ୍କର ଅର୍ଥ ଉପାର୍ଜନ ପରିବାର ପୋଷଣ ପାଇଁ ପର୍ଯ୍ୟାପ୍ତ ଥିଲା । ସଞ୍ଚୟ କିଛି ନଥିଲା କହିଲେ ଚଳେ ।

ସେ ଅତି ଧର୍ମପରାୟଣ ବ୍ୟକ୍ତି ଥିଲେ । ସେ ଥିଲେ ମୋ ଜୀବନର ଆଦର୍ଶ । ତେଣୁ ମୁଁ ଭବିଷ୍ୟତରେ ଡାକ୍ତର ହେବା ଆଶା ରଖି ବିଜ୍ଞାନ ଶ୍ରେଣୀରେ ନାମ ଲେଖାଇଲି । ସେ ସମୟରେ ବିଜ୍ଞାନ ଶ୍ରେଣୀରେ ଗଣିତ, ପଦାର୍ଥବିଜ୍ଞାନ ଓ ରସାୟନ-ଏହି ତିନୋଟି ବିଷୟ ପଢ଼ା ହେଉଥିଲା । ସମଗ୍ର ପାଟନା ବିଶ୍ୱବିଦ୍ୟାଳୟରେ କେବଳ ରେଭେନ୍‌ସା କଲେଜରେ ଉଦ୍ଭିଦ ବିଦ୍ୟା ଚତୁର୍ଥ ଐଚ୍ଛିକ (optional) ବିଷୟ ଥିଲା । ଏଥିରୁ ଅଧିକ ନମ୍ବର ମିଳୁଥିବାରୁ ସମଗ୍ର ବିଶ୍ୱବିଦ୍ୟାଳୟରେ ରେଭେନ୍‌ସା କଲେଜ ବିଜ୍ଞାନରେ ସର୍ବୋତ୍କୃଷ୍ଟ ଫଳ ଦେଖାଉଥିଲା ଓ ସେଥିପାଇଁ ବିହାରର ମଧ୍ୟ ଖୁବ୍ ଭଲ ଛାତ୍ରମାନେ ଆଇ.ଏସ୍‌ସି. ପଢ଼ିବା ପାଇଁ କଟକ ଆସି ରେଭେନ୍‌ସା କଲେଜରେ ନାମ

ଲେଖାଉଥିଲେ । ବିଶ୍ୱବିଦ୍ୟାଳୟରେ ମେଟ୍ରିକ୍ ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରିଥିବା ଶ୍ରୀ ତାରକନାଥ ଘୋଷ ବିହାରରୁ ଆସି ସେବର୍ଷ ଆମ ସାଙ୍ଗରେ ରେଭେନ୍‌ସା କଲେଜରେ ନାମ ଲେଖାଇଲେ ଓ ପଶ୍ଚିମ ଛାତ୍ରାବାସରେ ରହିଲେ ।

ଏବେ ଯେପରି ସବୁ ଭଲ ଛାତ୍ର ବିଜ୍ଞାନ ଶ୍ରେଣୀରେ ନାମ ଲେଖାଇବାକୁ ଅଧିକ ପସନ୍ଦ କରନ୍ତି, ସେ ଯୁଗରେ ସେପରି ନଥିଲା । କଳା ପାଠରେ ମର୍ଯ୍ୟାଦା ଅଧିକ ଥିଲା କହିଲେ ଚଳେ । ଆମର ସହପାଠୀମାନଙ୍କ ମଧ୍ୟରୁ ରାକାରାମ ଦୁବେ ଓ ସତ୍ୟଗୋପାଳ ନାୟକ କଳା ଶ୍ରେଣୀରେ ନାମ ଲେଖାଇଲେ ।

ଆମର ଅଧ୍ୟାପକମାନଙ୍କର ତରଫରୁ ଅଧ୍ୟାପକ ନାରାୟଣ ମିଶ୍ର ଆଧ୍ୟାପନାରେ ଯେପରି ପ୍ରବୀଣ ଥିଲେ, ଛାତ୍ରାବାସର ତତ୍ତ୍ୱାବଧାରକ (Superintendent) ହିସାବରେ ଛାତ୍ରମାନଙ୍କର ପଢ଼ାଶୁଣା ଓ ସ୍ୱାସ୍ଥ୍ୟ ବିଷୟରେ ସେହିପରି ବିଶେଷ ତତ୍ତ୍ୱ ନେଉଥିଲେ । ସବୁ ଛାତ୍ରାବାସର କର୍ତ୍ତୃପକ୍ଷମାନେ ସକାଳେ ଓ ସନ୍ଧ୍ୟାରେ ସାତଟା ଓ ନଅଟା ବେଳ ମଝିରେ ପିଲାମାନଙ୍କର ପଢ଼ାପଢ଼ି ଠିକ୍ ଚାଲିଛି କି ନାହିଁ ଓ ସେମାନଙ୍କର ଅଭାବ ଅସୁବିଧା ବିଷୟରେ ବୁଝିବାକୁ ବୁଲାବୁଲି କରନ୍ତି । ମାତ୍ର ନାରାୟଣ ବାବୁ ଏ କର୍ତ୍ତବ୍ୟ କାମ ବାହାରେ ଅପରାହ୍ଣ ସାଢ଼େଚାରିଟା ଓ ପାଞ୍ଚଟା ମଧ୍ୟରେ ପ୍ରତିଦିନ ଆଉ ଥରେ ହଷ୍ଟେଲର ସବୁ କୋଠରି ଦେଇ ବୁଲି ଯାଉଥିଲେ ଓ ଯଦି ସେ ସମୟରେ କୌଣସି କୋଠରିରେ ଛାତ୍ରମାନେ ପଢୁଥିବାର ବା ତାସ୍ ବା କେରମ୍ ଆଦି ଖେଳୁଥିବାର ଦେଖୁଥିଲେ, ତେବେ ସେ ସେମାନଙ୍କୁ ଖେଳ ପଡ଼ିଆକୁ ଯାଇ ଖେଳରେ ଯୋଗ ଦେବାକୁ ପ୍ରବର୍ତ୍ତାଉଥିଲେ । ସେ ଟେନିସ୍ ଓ ହକି ଭଲ ଖେଳୁଥିଲେ ଏବଂ କଲେଜ ମ୍ୟାଚ୍‌ମାନଙ୍କରେ ରେଫରି କାମ କରୁଥିଲେ ।

ଥରେ କୌଣସି କାରଣରୁ ବୋଧହୁଏ ଚାଉଳ ଭଲ ମିଳୁ ନଥିବାରୁ ହଷ୍ଟେଲ ମେସ୍‌ରେ ଧର୍ମଘଟ ହେଲା । ପିଲାମାନେ ମେସ୍‌ରେ ଖାଇବା ବନ୍ଦ କଲେ । ଆମେ ମଧ୍ୟ ସେଥିରେ ଯୋଗ ଦେଲୁଁ । ନାରାୟଣ ବାବୁ ମଧ୍ୟ ଘରେ ଖାଇବା ବନ୍ଦ କଲେ । ଧର୍ମଘଟ କରି ଆମେ ମେସ୍‌କୁ ଖାଇବାକୁ ଯାଉ ନଥିଲେ ସୁଦ୍ଧା କଲେଜ୍ ଗେଟ୍ ପାଖରେ ଅନେକ ଜଳଖିଆ ଦୋକାନ ଥିଲା । ସେଠାକୁ ଯାଇ ଆମେ ସମସ୍ତେ ପରଟା, ଭାତ ତରକାରି ଖାଇ ଆସୁଁ । କିନ୍ତୁ ନାରାୟଣବାବୁ ଉପବାସରେ କେତେ ଦିନ ରହିଗଲେ । ଶେଷରେ ତାଙ୍କର କଷ୍ଟ ସହି ନପାରି ଛାତ୍ରମାନେ ଧର୍ମଘଟ ଭାଙ୍ଗିବାକୁ ବାଧ୍ୟ ହେଲେ । ଅବଶ୍ୟ ପିଲାମାନେ ଯାହା ପ୍ରତିକାର ଚାହୁଁଥିଲେ, ତାହା ହୋଇପାରିଲା ।

ପଦାର୍ଥ ବିଦ୍ୟାର ଅଧିକାଂଶ ଅଧ୍ୟାପନା କାର୍ଯ୍ୟ ଶ୍ରୀ ନାରାୟଣ ମିଶ୍ର ଓ ଶ୍ରୀ ହରିବନ୍ଧୁ ମହାନ୍ତି କରୁଥିଲେ । କଲେଜର ଅଧ୍ୟାପନା ପରୀକ୍ଷାମୂଳକ ଥିବା ଯୋଗୁଁ ଖୁବ୍ ଚିତ୍ତାକର୍ଷକ

ହେଉଥିଲା । ଶ୍ରୀ ହରିବନ୍ଧୁ ମହାନ୍ତି ସେତେବେଳେ ପୂର୍ବ ଛାତ୍ରାବାସର ସହକାରୀ ତତ୍ତ୍ୱାବଧାରକ ଥିଲେ । ସେତେବେଳେ ସେ ନୂଆ ହୋଇ ବିଲାତରୁ ଉଚ୍ଚଶିକ୍ଷା ଶେଷକରି ଫେରିଥାନ୍ତି ଓ ପଢ଼ାଇବାରେ ତାଙ୍କର ଯଥେଷ୍ଟ ଦକ୍ଷତା ଆସି ନଥାଏ । ପ୍ରାକ୍‌ଟିକାଲ୍ କ୍ଲାସରେ ଆମେ ଡକ୍‌ଟର ମୋହିତ ମୋହନ ସେନଗୁପ୍ତଙ୍କୁ ଭେଟୁଁ । ସେ କେବଳ ଉଚ୍ଚତର ଶ୍ରେଣୀମାନଙ୍କରେ ଶିକ୍ଷାଦାନ କରୁଥିଲେ, ତେଣୁ ଆମ୍ଭେମାନେ ତାଙ୍କର ପ୍ରକୃତ ପ୍ରତିଭାର ପରିଚୟ ପାଇ ନଥିଲୁଁ ।

ରସାୟନ ବିଜ୍ଞାନରେ ଅଧ୍ୟାପକ ଗୁରୁଚରଣ ମହାନ୍ତିଙ୍କର ଅଧ୍ୟାପନା ଚମତ୍କାର ଥିଲା । ନାଲି ନେଳି ଆଦି ରଙ୍ଗର ରାସାୟନିକ ପଦାର୍ଥ ମିଶାଇ ଇନ୍ଦ୍ରଜାଲ ପରି ପରିସ୍ଥିତି ସୃଷ୍ଟି କରି, ପାଣିରେ ସୋଡ଼ିଅମ୍, ଫସ୍‌ଫରସ୍ ଆଦି ପକାଇ ନିଆଁ ଜାଳି, ସେ ପ୍ରଥମରୁ ଛାତ୍ରମାନଙ୍କର ମନ ରସାୟନ ଶାସ୍ତ୍ର ପ୍ରତି ଆକୃଷ୍ଟ କରୁଥିଲେ ଓ ପରେ ପଢ଼ାପଢ଼ି କାମ ଆରମ୍ଭ କରୁଥିଲେ । ଡକ୍‌ଟର ବଳଭଦ୍ର ପ୍ରସାଦ ଆମ୍ଭମାନଙ୍କୁ ରସାୟନ ଶାସ୍ତ୍ରର ମୌଳିକ ତତ୍ତ୍ୱ ବିଷୟରେ ଶିକ୍ଷା ଦେଉଥିଲେ ଓ ପ୍ରାକ୍‌ଟିକାଲ୍ କ୍ଲାସରେ ଆମର କାର୍ଯ୍ୟରେ ତତ୍ତ୍ୱାବଧାନ କରୁଥିଲେ ।

ଗଣିତ ବିଭାଗରେ ଅଧ୍ୟାପକ ଶାରଦାକାନ୍ତ ଗାଙ୍ଗୁଲି ମୁଖ୍ୟ ଅଧ୍ୟାପକ ଥିଲେ । ସେ ମେଟ୍ରିକ୍ ଶ୍ରେଣୀର ପାଟୀଗଣିତ ପାଠ୍ୟପୁସ୍ତକ ପ୍ରଣୟନ କରିଥିବାରୁ ଛାତ୍ର ମହଲରେ ସୁପରିଚିତ ଥିଲେ । ଅଧ୍ୟାପକ ହରେକୃଷ୍ଣ ଦାସ ଓ ପ୍ରମଥନାଥ ଦେ ଆମକୁ ଗଣିତର ବିଭିନ୍ନ ବିଷୟରେ ଶିକ୍ଷା ଦେଉଥିଲେ । ମୁଁ ଅଳ୍ପ ସମୟ ମଧ୍ୟରେ ଗଣିତ ଅଧ୍ୟାପକମାନଙ୍କର ସୁପରିଚିତ ହେଲି କାରଣ ମୁଁ ଅଳ୍ପ ସମୟ ମଧ୍ୟରେ ଗଣିତ ପ୍ରଶ୍ନଗୁଡ଼ିକର ସମାଧାନ କରିପାରୁଥିଲି ।

ଆମେ ସ୍କୁଲ ଛାତ୍ର ଅବସ୍ଥାରୁ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କର ସୁଖ୍ୟାତି ଶୁଣିଥିଲୁଁ । ସେ ସମୟକୁ ସେ ଗବେଷଣା କରି ପ୍ରାଚ୍ୟ ଗ୍ରନ୍ଥମାଳାର ଅନେକ ଗ୍ରନ୍ଥ ପ୍ରକାଶ କରି ସାରିଥାନ୍ତି । ଅଧ୍ୟାପକ ମହାନ୍ତି ଓ ଅଧ୍ୟାପକ ଲକ୍ଷ୍ମୀକାନ୍ତ ଚୌଧୁରୀ ଆମକୁ ଓଡ଼ିଆ ପଢ଼ାଉଥିଲେ । ସପ୍ତାହରେ କେବଳ ଗୋଟିଏ ପିରିଅଡ୍ ଓଡ଼ିଆ ପଢ଼ାହୁଏ । ସେତେବେଳେ ଓଡ଼ିଆ ଆଇ.ଏ. ବା ବି.ଏ.ରେ ମଧ୍ୟ ଗ୍ରୁପ୍ ସବ୍‌ଜେକ୍‌ଟ ନଥିଲା । ତେଣୁ ଯେଉଁ ଅଧ୍ୟାପକମାନେ ସଂସ୍କୃତ ଅଧ୍ୟାପକ ଥିଲେ, ସେହିମାନେ ସଂସ୍କୃତ ଓ ଓଡ଼ିଆ ଉଭୟ ବିଷୟରେ ଶିକ୍ଷା ଦେଉଥିଲେ । ସେ ପର୍ଯ୍ୟନ୍ତ ବୋଧହୁଏ ଓଡ଼ିଆରେ କେହି ଏମ୍.ଏ. ପାସ୍ କରି ନଥିଲେ । ପାଟନା ବିଶ୍ୱବିଦ୍ୟାଳୟରେ ସଂସ୍କୃତରେ ଏମ୍.ଏ. ଶ୍ରେଣୀ ଥିଲା । ମାତ୍ର ଓଡ଼ିଆ ବା ହିନ୍ଦୀରେ ଏମ୍.ଏ. ଶ୍ରେଣୀ ଖୋଲି ନଥାଏ ।

ଇଂରେଜୀରେ ଅନେକ ଅଧ୍ୟାପକ ଥିଲେ । କାରଣ ସେ ସମୟରେ ଏମ୍.ଏ. କ୍ଲାସ୍ ଥିଲା ଓ ବି.ଏ.ରେ ମଧ୍ୟ ଇଂରେଜୀରେ ଅନର୍ସ ଶ୍ରେଣୀ ଥିଲା । ରେଭେନ୍‌ସା କଲେଜରୁ କେବଳ ଇଂରେଜୀରେ ଏମ୍.ଏ. ଶ୍ରେଣୀ ଥିଲା । ମୋର ମନେ ଅଛି, ୧୯୩୨ ବା ୧୯୩୩ ମସିହାରେ ରେଭେନ୍‌ସା କଲେଜରୁ ଚାରିଜଣ ଏମ୍.ଏ. ପରୀକ୍ଷା ଦେଇଥିଲେ, ମାତ୍ର ଜଣେ ହେଲେ ପାସ୍ କରିପାରିଲେ ନାହିଁ ।

ଇଂରେଜୀ ଅଧ୍ୟାପକମାନଙ୍କ ମଧ୍ୟରୁ ମୁଖ୍ୟ ଅଧ୍ୟାପକ ନିରଞ୍ଜନ ନିୟୋଗୀଙ୍କର ଅଧ୍ୟାପନା ଉଚ୍ଚକୋଟୀର ଥିଲା । ବିଲାତରୁ ଫେରିଥିବା ଶ୍ରୀ କିଶୋରୀ ପ୍ରସାଦ ସିନ୍ହା ସେତେବେଳେ ରେଭେନ୍ସା କଲେଜରେ ଥିଲେ । ଏହା ଛଡ଼ା ଶ୍ରୀ କୃତ୍ତିବାସ ସାମନ୍ତରାୟ ଓ ଶ୍ରୀ ଜନାର୍ଥନ ମହାନ୍ତି ମଧ୍ୟ ଇଂରେଜୀ ବିଭାଗରେ ଅଧ୍ୟାପକ ଥିଲେ । ଅଧ୍ୟକ୍ଷ ଡବ୍ଲୁ.ଭି. ଡିଉକ୍ ଆମକୁ ଇଂରେଜୀ ଗଦ୍ୟ ପଢ଼ାଉଥିଲେ; ମାତ୍ର ସେ କ୍ଲାସରେ କେବଳ ବହିରୁ ପଢ଼ିଦେଇ ତାଙ୍କର ଅଧ୍ୟାପନା କାମ ଶେଷ କରନ୍ତି ।

ଉଦ୍ଭିଦ ବିଜ୍ଞାନର ଶ୍ରୀ ପ୍ରାଣକୃଷ୍ଣ ପରିଜା ମୁଖ୍ୟ ଅଧ୍ୟାପକ ଥିଲେ । ମାତ୍ର ସେ ଆମର କ୍ଲାସ୍ ନିଅନ୍ତି ନାହିଁ । ଅଧ୍ୟାପକ ଦେବବ୍ରତ ମୁଖାର୍ଜୀ ଆମର ଅଧିକାଂଶ କ୍ଲାସ୍ ନେଉଥିଲେ । ଶ୍ରୀ ପରଶୁରାମ ମିଶ୍ର ମଧ୍ୟ ଆମକୁ ବେଶି ପଢ଼ାଇ ନାହାନ୍ତି ।

ସେ ସମୟରେ ଗଞ୍ଜାମ ଓ କୋରାପୁଟ ଓଡ଼ିଶାରେ ମିଶି ନଥିଲା । ସମଗ୍ର ଓଡ଼ିଶାରେ କେବଳ ଗୋଟିଏ ମାତ୍ର କଲେଜ ଥିଲା । ସେଥିପାଇଁ ଓଡ଼ିଶାର ବିଭିନ୍ନ ଜିଲ୍ଲାରୁ ଓ ଗଡ଼ଜାତମାନଙ୍କରୁ ଅଧିକାଂଶ ଛାତ୍ର ରେଭେନ୍ସା କଲେଜରେ ନାମ ଲେଖାଉଥିଲେ ଓ ସେଥିପାଇଁ ଓଡ଼ିଶାର ପ୍ରତ୍ୟେକ ଅଞ୍ଚଳର ଛାତ୍ର ନିଜର ସମବୟସ୍କ ଅନ୍ୟାନ୍ୟ ଅଞ୍ଚଳର ଛାତ୍ରମାନଙ୍କ ସହିତ ପରିଚିତ ହେବାର ସୁଯୋଗ ପାଉଥିଲେ । ଛାତ୍ରୀ ସଂଖ୍ୟା ମୁଷ୍ଟିମେୟ ଥିଲା । ସମଗ୍ର କଲେଜରେ ଛଅ ସାତ ଜଣରୁ ଅଧିକା ଛାତ୍ରୀ ନଥିଲେ । ଓଡ଼ିଶାର ଶିକ୍ଷିତ ସମାଜରେ ଗଣାହେବା ଯେତେ ଛାତ୍ର, ସେମାନେ ପ୍ରାୟ ସମସ୍ତେ ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି ଓଡ଼ିଆ ଅଧ୍ୟାପକ ବା ଶ୍ରୀ କୃତ୍ତିବାସ ସାମନ୍ତରାୟ କିମ୍ବା ଜନାର୍ଥନ ମହାନ୍ତି ଇଂରେଜ ଅଧ୍ୟାପକଙ୍କର ଛାତ୍ର ନିଶ୍ଚୟ ହୋଇଥିବେ । ଆଜିକାଲି ଆଉ ସେ ସୁଯୋଗ ବା ସୁବିଧା ନାହିଁ ।

ଆମ ସାଙ୍ଗରେ ଯେଉଁମାନେ ସେ ବର୍ଷ ନୂଆ କରି କଲେଜରେ ଯୋଗଦେଲେ, ସେମାନଙ୍କ ମଧ୍ୟରୁ ଅନେକ ସମାଜରେ, ଚାକିରି କ୍ଷେତ୍ରରେ, ଶିକ୍ଷା ବିଭାଗ ଆଦିରେ ପରେ ବିଖ୍ୟାତ ହେଲେ । କଟକ ଟ୍ରେନିଂ କଲେଜର ପ୍ରିନ୍ସିପାଲ୍ ହୋଇ ଅବସର ନେଇଥିବା ଶ୍ରୀ ବୈଦ୍ୟନାଥ ରଥ ଆମର ସହପାଠୀ ! ଆମ ସାଙ୍ଗରେ ହଷ୍ଟେଲରେ ରହୁଥିଲେ । ଥରେ ଛାତ୍ରାବାସର ଏକ ଉତ୍ସବରେ ଗୀତ ବୋଲିବାକୁ ଯାଇ ସ୍ନାୟବିକ ଦୁର୍ବଳତା ଯୋଗୁଁ ସେ ବିକୃତ ଗାନ କରି ହାସ୍ୟରୋଳ ସୃଷ୍ଟି କରିଥିଲେ । ତାହା ଥିଲା ତାଙ୍କର ପ୍ରଥମ ପ୍ରଚେଷ୍ଟା । ପଣ୍ଡିତ ନୀଳକଣ୍ଠ ଦାସଙ୍କର ଜ୍ୟେଷ୍ଠ ପୁତ୍ର ଶ୍ରୀ ଅଶୋକ ଦାସ, ବିଶିଷ୍ଟ କମ୍ୟୁନିଷ୍ଟ ନେତା ଶ୍ରୀ ବୈଦ୍ୟନାଥ ରଥ ଓ ତାଳଚେରର ସ୍ୱାଧୀନତା ସଂଗ୍ରାମୀ ନେତା ଶ୍ରୀ ପବିତ୍ର ମୋହନ ପ୍ରଧାନ ମଧ୍ୟ ଆମର ସହପାଠୀ ଓ ଘନିଷ୍ଠ ବନ୍ଧୁ ଥିଲେ । ଅଧ୍ୟାପକ ରାଜକିଶୋର ରାୟ ଆମର ସହପାଠୀ । ସେ ଯୁଗରେ ସେ ସଙ୍ଗୀତ ଓ ଅଭିନୟରେ ନାମ କରିଥିଲେ । ଚାକିରିଆଙ୍କ ମଧ୍ୟରୁ ଶ୍ରୀ ବାଞ୍ଛାନିଧି ଦାଶ, ଶ୍ରୀ ସୋମନାଥ ନନ୍ଦ, ଶ୍ରୀ ଦୀନବନ୍ଧୁ

ମହାପାତ୍ର (ଅର୍ଥ ବିଭାଗ) ଓ ବାମଣ୍ଡାର ସୁରେନ୍ଦ୍ର ନାଥ ଶର୍ମା ଆମର ସହପାଠୀ ଥିଲେ। କଥାକାର ଶ୍ରୀ ଗୋପିନାଥ ମହାନ୍ତି, ହାଇକୋର୍ଟ ଚିଫ୍ ଜଷ୍ଟିସ୍ ଶ୍ରୀ ଗତିକୃଷ୍ଣ ମିଶ୍ର, ଆଇ.ଏ.ଏସ୍. ଅଫିସର ଶ୍ରୀ ଭବକୃଷ୍ଣ ମହାନ୍ତି, ସ୍ୱାସ୍ଥ୍ୟ ବିଭାଗର ଡିରେକ୍ଟର ଡାକ୍ତର ଘନଶ୍ୟାମ ମହାପାତ୍ର, ଡାକ୍ତର ରଘୁନାଥ ସାହୁ, ମୁଖ୍ୟ ବିଚାରପତି ଶ୍ରୀ ସୁକାନ୍ତ କିଶୋର ରାୟ ଆଦି ବହୁ ଲବ୍ଧପ୍ରତିଷ୍ଠ ବ୍ୟକ୍ତି ଆମର ସହପାଠୀ ନ ହେଲେ ମଧ୍ୟ ଆମର ସମସାମୟିକ ଛାତ୍ର ଥିଲେ।

ଆମ ସମୟର ବିଶ୍ୱବିଦ୍ୟାଳୟର ଶ୍ରେଷ୍ଠ ଛାତ୍ର ଶ୍ରୀ ତାରକନାଥ ଘୋଷ କଟକ ଆସି ପଶ୍ଚିମ ଛାତ୍ରାବାସରେ ରହୁଥିବା କଥା ମୁଁ ପୂର୍ବରୁ କହିଛି। ସେ ଯେପରି ମେଧାବୀ ଛାତ୍ର ଥିଲେ, ସେହିପରି ପରିଶ୍ରମୀ ଥିଲେ। ପରୀକ୍ଷା ସମୟରେ ସେ ରାତିରୁ ଉଠି ପଢ଼ାପଢ଼ି କରନ୍ତି। ଅନ୍ୟମାନେ ମଧ୍ୟ କରନ୍ତି। ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ। କିନ୍ତୁ ଠିକ୍ ସମୟରେ ରାତିରେ ଉଠିବା ପାଇଁ ସେ ଏକ ଅଭିନବ ପନ୍ଥା ଅନୁସରଣ କରୁଥିଲେ। ଦିନେ ହୁଏତ ତାଙ୍କର ରାତି ସାଢ଼େ ଚାରିଟାରୁ ଉଠିବାର ଇଚ୍ଛା ହେବ ଓ ତହିଁ ଆରଦିନ ସାଢ଼େ ତିନିଟାରୁ ଉଠିବାର ଇଚ୍ଛା ହେବ। କେବଳ ଏଲାର୍ମ୍ ଘଡ଼ି ଉପରେ ସେ ନିର୍ଭର କରୁନଥିଲେ। ଏଲାର୍ମ୍ ଘଡ଼ିରେ ଉଠିବା ସମୟ ନିର୍ଦ୍ଦିଷ୍ଟ କରିଦେଇ, ଯେଉଁଦିନ ରାତିରେ ଚଞ୍ଚଳ ଉଠିବାର କଥା, ସେ ଦିନ ଶୋଇଲା ବେଳେ ଗ୍ଲାସରେ ମାପି ବେଶି ପାଣି ପିଉଥିଲେ। ଫଳତଃ ଏଲାର୍ମ୍ ଘଡ଼ି ବାକି ବନ୍ଦ ହୋଇଗଲେ ସୁଦ୍ଧା ପ୍ରକୃତିର ନିର୍ଦ୍ଦେଶରେ ତାଙ୍କୁ ବାଧ୍ୟ ହୋଇ ଉଠିବାକୁ ପଡ଼ୁଥିଲା।

ଶ୍ରୀ ଘୋଷଙ୍କର ପ୍ରତିଯୋଗୀ ଥିଲି ମୁଁ। କିନ୍ତୁ ତାଙ୍କ ପରି ପରିଶ୍ରମ କରିବା ମୋ ପକ୍ଷରେ ପ୍ରାୟ ଅସମ୍ଭବ ଥିଲା। ରାତି ଦଶଟା ପରେ ଜାଗି ରହି ପାଠ ପଢ଼ିବା ବା ସକାଳ ସାଢ଼େ ଚାରିଟା ପୂର୍ବରୁ ଉଠିବା ମୋର ଅଭ୍ୟାସବିରୁଦ୍ଧ ଥିଲା। ଏହାଛଡ଼ା ମୋର ସାଙ୍ଗ ଥିଲେ ଅନେକ। ଶ୍ରୀ ତାରକନାଥ ଘୋଷ ଥିଲେ ନିଃସଙ୍ଗ। ପରେ ସେ ପୋଲିସ ବିଭାଗରେ ଅତି ଉଚ୍ଚ ଚାକିରି କଲେ। ଖରା ଛୁଟିରେ ପଢ଼ାପଢ଼ି କରିବା ସେ ଯୁଗରେ ଓ ଏବେ ମଧ୍ୟ ଖୁବ୍ କଷ୍ଟକର। ସମ୍ବଲପୁର ସହରରେ ସେ ଯୁଗରେ ଏତେ ଗରମ ହେଉଥିଲା ଯେ ଦିନ ବାରଟାରୁ ଚାରିଟା ପର୍ଯ୍ୟନ୍ତ ମନୋଯୋଗ ସହିତ ପଢ଼ାପଢ଼ି କରିବା ପ୍ରାୟ ଅସମ୍ଭବ ଥିଲା। ତେଣୁ ତାରକନାଥଙ୍କ ସହିତ ମୋର ପ୍ରତିଯୋଗିତା ଅସମାନ ଥିଲା। କିନ୍ତୁ ମୁଁ ଚେଷ୍ଟାରେ ତ୍ରୁଟି କରି ନାହିଁ।

ପ୍ରତିବର୍ଷ ନାଟକ ହୁଏ। ଗୋଟିଏ ବର୍ଷ-ବୋଧହୁଏ ଆମର ପ୍ରଥମ ବର୍ଷ- ଖାରବେଳ ନାଟକ ରେଭେନ୍ସା କଲେଜ ହଲରେ ଛାତ୍ରମାନଙ୍କ ଦ୍ୱାରା ଅଭିନୀତ ହେଉଥାଏ। ନାଟକର ଏକ ଚରିତ୍ର-ଅପ୍ରତିହତ। ସତ୍ୟ ଗୋପାଳଙ୍କୁ ଏ ଭୂମିକାରେ ଅଭିନୟ କରିବାକୁ ଦିଆ ଯାଇଥାଏ। ଅପ୍ରତିହତ ବୀର ଯୋଦ୍ଧା।। ସତ୍ୟଗୋପାଳ ବିରାଟ ନିଶ ଧରି ମଞ୍ଚରେ ଅବତୀର୍ଣ୍ଣ ହେଲେ। ହେଣ୍ଡବିଲରେ ଭୁଲରେ ଛପା ହୋଇଥାଏ ଅପ୍ରତିହତ୍ତ। ଦର୍ଶକମାନେ ମୂଳରୁ ତାଙ୍କୁ ଦେଖି

ହସିବାକୁ ଆରମ୍ଭ କଲେ- ଅପ୍ରତିହତ୍ ବୋଲି ପାଟି ତୁଣ୍ଡ କଲେ। କିନ୍ତୁ ସତ୍ୟଗୋପାଳ ଧୈର୍ଯ୍ୟ ହରାଇଲେ ନାହିଁ। ସେତେବେଳେ ପଛଘୁଞ୍ଚାର ପ୍ରଶ୍ନ ନଥିଲା ବା ବେଶଭୂଷା ପରିବର୍ତ୍ତନର ମଧ୍ୟ ପ୍ରଶ୍ନ ନ ଥିଲା। ଆରମ୍ଭରୁ ଶେଷ ଦୃଶ୍ୟ ପର୍ଯ୍ୟନ୍ତ ପ୍ରତ୍ୟେକ ଥର ସେ ବାହାରିଲା କ୍ଷଣି ପରିହାସର ପାତ୍ର ହେଉଥିଲେ-ଅତି ନିର୍ମମ ଭାବରେ। ତଥାପି ସେ ସେହି ରାତିରେ କିମ୍ବା ତହିଁ ପରେ କେବେ କାହାରି ପ୍ରତି ବିରକ୍ତ ହୋଇ ନାହାନ୍ତି। ଅନ୍ୟ କେହି ହୋଇଥିଲେ ହୁଏତ ମାନସିକ ଭାରସାମ୍ୟ ହରାଇଥାନ୍ତା।

ରେଭେନ୍‌ସା କଲେଜରେ ସେ ସମୟରେ ପ୍ରତିବର୍ଷ ବାର୍ଷିକ ଉତ୍ସବ ହେଉଥିଲା ଓ ଏହି ଉପଲକ୍ଷେ ବାହାରୁ ଜଣେ ବିଶିଷ୍ଟ ବ୍ୟକ୍ତିଙ୍କୁ ମୁଖ୍ୟ ଅତିଥି ରୂପେ ଡକା ଯାଉଥିଲା। ୧୯୩୨ ମସିହା ଜାନୁୟାରୀ ମାସର ବାର୍ଷିକ ଉତ୍ସବରେ ମୁଖ୍ୟ ଅତିଥି ରୂପେ ଡକ୍‌ଟର ଚନ୍ଦ୍ରଶେଖର ଭେଙ୍କଟରମଣଙ୍କୁ ଡକା ଯାଇଥିଲା। ସେ ତହିଁର ପ୍ରାୟ ବର୍ଷେ ପୂର୍ବରୁ ନିଜର ଉଦ୍ଭାବନ ଯୋଗୁଁ ପଦାର୍ଥ ବିଦ୍ୟାରେ ନୋବେଲ ପୁରସ୍କାର ପାଇଥାନ୍ତି। ଭାରତବର୍ଷର ସର୍ବପ୍ରଥମ ବୈଜ୍ଞାନିକ ନୋବେଲ ପ୍ରାଇଜ ଅପେକ୍ଷାକୃତ ଅଳ୍ପ ବୟସରେ ପାଇଥିବାରୁ ସେ ସର୍ବତ୍ର ପ୍ରଶଂସିତ ହୋଇଥିଲେ। ମୁଖ୍ୟ ଅତିଥିରୂପେ ବକ୍ତୃତା ଦେବାର ପରବର୍ତ୍ତୀ ଦିନ ତାଙ୍କୁ ତାଙ୍କର ପୁରସ୍କାର ଓ ଉଦ୍ଭାବନର ବିଷୟବସ୍ତୁ ରମଣ ରଶ୍ମି ଉପରେ ବକ୍ତୃତା ଦେବାକୁ ଅନୁରୋଧ କରାଗଲା। କଲେଜର ପଦାର୍ଥ ବିଜ୍ଞାନ ବକ୍ତୃତାଳୟରେ ସେ ଅପରାହ୍‌ଣରେ ବକ୍ତୃତା ଦେଲେ ପ୍ରାୟ ଅଧଘଣ୍ଟା। ଆମେ ତାଙ୍କ ବକ୍ତୃତାର ବିନ୍ଦୁ ବିସର୍ଗ ବୁଝିପାରିଲୁ ନାହିଁ। ଉପସ୍ଥିତ ଶ୍ରୋତୃମଣ୍ଡଳୀରୁ ଅଧିକାଂଶ ଲୋକ ବିଶେଷ କିଛି ବୁଝିପାରିଲେ ନାହିଁ ବୋଲି ମୋର ଧାରଣା ହେଲା।

ମୁଁ ପୂର୍ବରୁ ଭଲ ଛାତ୍ର ଥିବାରୁ ଓ କଲେଜରେ ମଧ୍ୟ ଭଲ ପଢୁଥିବାରୁ ବିଜ୍ଞାନ ଅଧ୍ୟାପକମାନେ ମୋତେ ଚିହ୍ନିଥିଲେ, ଭଲ ପାଉଥିଲେ ଓ ସାହାଯ୍ୟ କରୁଥିଲେ। ମାତ୍ର ଏହି ଦୁଇବର୍ଷରେ ମୋର ଗୋଟିଏ ପ୍ରଧାନ ଦୁର୍ବଳତା ଜଣାପଡ଼ିଲା। ଲେଖା ପଢ଼ାରେ ମୁଁ ଯେତେ କୁଶଳ ଥିଲି, ପ୍ରାକ୍‌ଟିକାଲ୍ କାମରେ ମୁଁ ସେତିକି ଅକୁଶଳ ଥିଲି। ଏଥିପାଇଁ ମୋର ସ୍ନାୟବିକ ଦୁର୍ବଳତା ଦାୟୀ। କାଚ ଟିଉବ୍ ବଙ୍କା କରିବାରେ ମଧ୍ୟ ମୁଁ କଳାକୌଶଳ ଦେଖାଇ ପାରୁନଥିଲି। ଏଥିପାଇଁ ମୁଁ ଅଧ୍ୟାପକମାନଙ୍କଠାରୁ ବିଶେଷତଃ ଡକ୍‌ଟର ବଳଭଦ୍ର ପ୍ରସାଦଙ୍କଠାରୁ ସ୍ନେହମୟ ଭର୍ତ୍ସନା ଅନେକ ଥର ଶୁଣିଛି; ମାତ୍ର ମୋର କର୍ମପଟୁତା ବୃଦ୍ଧି ନ ହୋଇ ବରଂ ହ୍ରାସ ହେଉଥାଏ।

ଏହି ଅକୁଶଳତାର ପରିଣାମ ଶେଷ ପରୀକ୍ଷାରେ ଏକ ସଙ୍କଟ ସୃଷ୍ଟି କଲା। କେମିଷ୍ଟ୍ରି ପ୍ରାକ୍‌ଟିକାଲ୍ ପରୀକ୍ଷାରେ ଟାଇଟ୍ରେଶନ୍ ପ୍ରଶ୍ନ ପଡ଼ିଥାଏ। ମୁଁ ରାସାୟନିକ ଦ୍ରବ୍ୟମାନ ଭଲ ଭାବରେ ନ ମିଶାଇ ପରୀକ୍ଷା ଫଳ ଲେଖିବା ଆରମ୍ଭ କରିଦେଲି। ବାହାର କଲେଜରୁ ଆସିଥିବା ଅଧ୍ୟାପକ ସେ ଫଳରେ ଦସ୍ତଖତ ଦେଇଦେଲେ। ଠିକ୍ ତା ପରେ ମୁଁ ନିଜର ବିରାଟ ଭୁଲ୍ ବୁଝି ପାରିଲି।

ଦୋଷ ସ୍ୱୀକାର କରି ଅଧ୍ୟାପକମାନଙ୍କୁ କଥାଟି ସଫାକରି ବୁଝାଇ ଦେଇଥିଲେ ଭଲ ହୋଇଥାନ୍ତା । କିନ୍ତୁ ସେପରି କଲେ ବାହାର ଅଧ୍ୟାପକ ଫେଲ୍ କରିଦେବେ ଭାବି ମୁଁ ଆଉ କିଛି କହିଲି ନାହିଁ । ସେ ଆଡ଼େ ରାସାୟନିକ ଦ୍ରବ୍ୟମାନ ଭଲ ଭାବରେ ମିଶାଇ ପୁଣି ମିଶ୍ରିତ ଦ୍ରବ୍ୟର ଅମ୍ଳତା ମାପିବା ଆରମ୍ଭ କଲି । ପୂର୍ବଫଳ ଓ ଏ ଫଳରେ ଅନେକ ପାର୍ଥକ୍ୟ ଦେଖାଗଲା । ମୋ ମନରେ ଭବିଷ୍ୟତ୍ ବିଷୟ ଘୋର ସନ୍ଦେହ ଉପୁଜିଲା । ତଥାପି ଗାଳି ଖାଇବା ଭୟରେ ଅଧ୍ୟାପକ ଡକ୍ଟର ପ୍ରସାଦଙ୍କୁ ମଧ୍ୟ ମୋର ଏହି ବିରାଟ ଭ୍ରାନ୍ତି ବିଷୟରେ କିଛି ନ କହି ଖାତା ଦେଇ ଚାଲି ଆସିଲି ।

ଏହାର ପରିଣାମ ସଙ୍କଟଜନକ ହେଲା । ମୁଁ ପଦାର୍ଥ ବିଦ୍ୟାରେ ଖୁବ୍ ଭଲ କରିଥିଲି । ଅନ୍ୟାନ୍ୟ ବିଷୟରେ ମଧ୍ୟ ଭଲ କରିଥିଲି । ମୋଟ ଶତକଡ଼ା ତେସ୍ତରୀ ନମ୍ବର ପାଇଲି ପରୀକ୍ଷାରେ । ମାତ୍ର ରସାୟନ ଶାସ୍ତ୍ର ପ୍ରାକ୍‌ଟିକାଲରେ ପାସ୍ ମାର୍କ କୋଡ଼ିଏ ନମ୍ବରରୁ ଦୁଇ ନମ୍ବର ଊଣା ପଡ଼ିଗଲା । ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ମୋତେ ଫେଲ୍ କରାଇଲେ ନାହିଁ । ଦୁଇ ନମ୍ବର ଅଧିକ ଦେଇ ମୋତେ ପାସ୍ କରାଇଦେଲେ । ଫଳରେ ମୁଁ ବିଶ୍ୱବିଦ୍ୟାଳୟରେ ବିଜ୍ଞାନ ବିଭାଗରେ ଦ୍ୱିତୀୟ ସ୍ଥାନ ଅଧିକାର କରି ପାସ୍ କଲି । ଶ୍ରୀ ତାରକନାଥ ଘୋଷ ପ୍ରଥମ ସ୍ଥାନ ଅଧିକାର କରିଥିଲେ ।

୧୯୩୩ ଆଇ.ଏ. ପରୀକ୍ଷାରେ ଆମ ସାଙ୍ଗ ଶ୍ରୀ ରାଜାରାମ ଦୁବେ ସମଗ୍ର ବିଶ୍ୱବିଦ୍ୟାଳୟରେ ଦ୍ୱିତୀୟ ସ୍ଥାନ ଅଧିକାର କଲେ । ରାଜାରାମ କଲେଜ ଛାତ୍ରାବାସରେ ରହୁ ନଥିଲେ । ସେ ରକ୍ଷଣଶୀଳ ଲରିଆ ବ୍ରାହ୍ମଣ ପରିବାରର ପିଲା । ସେ ତାଙ୍କର ବଂଶୀୟ ଭାଇ ଶ୍ରୀ ଜଗଦୀଶ ତେଓ୍ୱାରୀଙ୍କ ସହିତ ରାଣୀହାଟରେ ଗୋଟିଏ ଛୋଟ ଭଡ଼ାଘରେ ରହୁଥିଲେ । ରୋଷେଇ ବାସ ପାଇଁ ସେମାନଙ୍କ ସହିତ ଥାଆନ୍ତି, ରାଜାରାମଙ୍କର ବାପାଙ୍କ ପିଉସୀ, ଯାହାଙ୍କୁ କି ଆମେ ସମସ୍ତେ ଫୁ ଫୁ ବୋଲି ଡାକୁଁ ।

୧୯୩୩ ମସିହାରେ ପାଟନା ହାଇକୋର୍ଟର ବିଚାରପତି ଶ୍ରୀ ମେକ୍‌ଫର୍‌ସନ୍ ବିଶ୍ୱବିଦ୍ୟାଳୟର କୁଳପତି ଥିଲେ । ସେ ବର୍ଷ ପାସ୍ ସଂଖ୍ୟା ସବୁଠାରୁ ଊଣା ଥିଲା । ଶତକଡ଼ା ବତିଶ ଭାଗ ଛାତ୍ର ଛାତ୍ରୀ ପାସ୍ କଲେ । ଏପରି ବିଷୟ ପରିସ୍ଥିତିରେ ମୁଁ ଫେଲ୍ ନ ହୋଇ ସର୍ବୋଚ୍ଚ ବୃତ୍ତିଧାରୀ ହୋଇ ପାରିଥିବାରୁ ନିଜକୁ ଭାଗ୍ୟବାନ୍ ମନେକଲି ।

୧୯୩୩ ମସିହାରେ ଆଇ.ଏସ୍‌ସି. ପରୀକ୍ଷା ଦେଇ ସାରିବା ପରେ ମୁଁ ସଂସ୍କୃତରେ ଶାସ୍ତ୍ରୀ ଉପାଧିରେ ଦ୍ୱିତୀୟ ଖଣ୍ଡ ପରୀକ୍ଷା ଦେବା ପାଇଁ ପଢ଼ାପଢ଼ି ଆରମ୍ଭ କଲି । ଏହା ପୂର୍ବରୁ ୧୯୩୦ ମସିହାରେ ପ୍ରଥମ ଖଣ୍ଡ ପାସ୍ କରିଥିଲି । ସେ ସମୟରେ ଉପାଧି ପରୀକ୍ଷାମାନ ବଲାଙ୍ଗୀରରେ ହେଉଥାଏ । ମୁଁ ୧୯୩୦ ମସିହାରେ ଯେତେବେଳେ ପ୍ରଥମ ଥର ପାଇଁ ବଲାଙ୍ଗୀର ଯାଏଁ ପରୀକ୍ଷା

ଦେବା ପାଇଁ । ସେଠାରେ ରାଜସ୍ୱମନ୍ତ୍ରୀ ଶ୍ରୀ ଲକ୍ଷ୍ମଣ ସାହାଣୀଙ୍କ ଘରେ ରହିଥିଲି । ସେତେବେଳେ ପାଟନା ରାଜ୍ୟ କୋର୍ଟ ଅଫ୍ ୱାର୍ଡସ ଅଧୀନରେ । ଭାବୀ ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେବ ସେତେବେଳେ ନାବାଳକ ଥିଲେ । ମନ୍ତ୍ରୀମାନଙ୍କର କ୍ଷମତା ବ୍ୟାପକ ଥିଲା । ସେତେବେଳେ ବୋଧହୁଏ ଶୈଳଶ୍ରୀ ରାଜପ୍ରାସାଦ ନିର୍ମାଣ କାର୍ଯ୍ୟ ଚାଲିଥାଏ । ବଲାଙ୍ଗୀର ସହରଟି ଛୋଟ ଥିଲେ ମଧ୍ୟ ସେଠାରେ ସଂସ୍କୃତ କଲେଜ ଥିଲା ଓ ତାହା ପଶ୍ଚିମ ଓଡ଼ିଶାର ଏକମାତ୍ର ଉଚ୍ଚ ସଂସ୍କୃତ ପରୀକ୍ଷାର କେନ୍ଦ୍ର ଥିଲା ।

ଶ୍ରୀ ଲକ୍ଷ୍ମଣ ସାହାଣୀ ସମ୍ବଲପୁରର ଲୋକ । ତାଙ୍କର ସାନଭାଇ ଶ୍ରୀ ପରଶୁରାମ ସାହାଣୀ ମୋର ବାପାଙ୍କର ପଢ଼ାସାଙ୍ଗ ଥିଲେ । ତେଣୁ ଶ୍ରୀ ଲକ୍ଷ୍ମଣ ସାହାଣୀଙ୍କର ସାଙ୍ଗରେ ବାପାଙ୍କର ଭଲ ପରିଚୟ ଥିଲା ।

୧୯୩୦ ଓ ୧୯୩୩ ମସିହା ମଧ୍ୟରେ ତିନିବର୍ଷ ମୁଁ ମେଟ୍ରିକ୍ ଓ ଆଇ.ଏସ୍‌ସି. ପରୀକ୍ଷା ପାଇଁ ଭଲ ଭାବରେ ପଢ଼ାପଢ଼ି କରିବା ଲାଗି ସଂସ୍କୃତ ପଢ଼ା ପ୍ରାୟ ଛାଡ଼ି ଦେଇଥିଲି । ପ୍ରତିଯୋଗିତାମୂଳକ ପଢ଼ା ୧୯୩୩ ମସିହାରେ ସରିଗଲା ପରେ ସଂସ୍କୃତ ପରୀକ୍ଷା ପାଇଁ ପ୍ରସ୍ତୁତ ହୋଇ ବଲାଙ୍ଗୀରରେ ପହୁଞ୍ଚିଲି ପରୀକ୍ଷାରେ ଦୁଇଦିନ ପୂର୍ବରୁ ।

ସେଠାରେ ଖବର ପାଇଲି ଯେ, ଏ ତିନିବର୍ଷ ମଧ୍ୟରେ ଉପାଧି ଦ୍ୱିତୀୟ ଖଣ୍ଡ ପାଠ୍ୟକ୍ରମରେ କେତେ ପରିବର୍ତ୍ତନ ହୋଇଯାଇଛି । ମୁଁ ସେଠାରେ ପଣ୍ଡିତଙ୍କଠାରୁ ବହି ମାଗିଆଣି ଦିନେ ପଢ଼ାପଢ଼ି କଲି । ପରୀକ୍ଷା ଦେଲାପରେ ଫଳାଫଳ ବିଷୟରେ ମନରେ ଘୋର ଆଶଙ୍କା ଜାତ ହେଲା । କିନ୍ତୁ ଭାଗ୍ୟବଶତଃ ସେ ବର୍ଷ ମୁଁ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ସାହିତ୍ୟ ଶାସ୍ତ୍ରୀ ଉପାଧି ଲାଭକଲି । ଧ୍ୱନ୍ୟାଲୋକ ଭଳି କଠିନ ଶାସ୍ତ୍ର ସେଥିରେ ପାଠ୍ୟ ଥିଲା । ମାତ୍ର ସଂସ୍କୃତ କାବ୍ୟ, ନାଟକ, ଅଳଙ୍କାର, ଛନ୍ଦ ଆଦି ବିଷୟରେ ମୋର ସେ ସମୟରେ ବିଶେଷ ଆଗ୍ରହ ଥିବାରୁ, ବୋଧହୁଏ ପରୀକ୍ଷକଦ୍ୱୟ ମୋ ଲେଖାରେ ସନ୍ତୁଷ୍ଟ ହୋଇଥିବେ ।

୧୯୩୩ ମସିହାରେ ମୋର ଭଉଣୀ ଜାନକୀ ଶାଶୂ ଘରକୁ ଗଲା । ତାର ସ୍ୱାମୀ ହେଉଛନ୍ତି ଲରମ୍ବାର ଶ୍ରୀ ବ୍ରହ୍ମାଣଙ୍କର ପଣ୍ଡା - ଶ୍ରୀ ବ୍ରଜମୋହନ ପଣ୍ଡାଙ୍କର ପୁତୁରା । ମୋର ଭଉଣୀର ବିବାହ ମୋର ବିବାହର ବର୍ଷେ ପୂର୍ବରୁ ହୋଇ ସାରିଥିଲା । ଏ ବର୍ଷ ତାର ଦୂର୍ବାକ୍ଷତ ହେଲା । ସେତେବେଳେ ବ୍ରହ୍ମାଣଙ୍କର ରେଭେନ୍‌ସା କଲେଜର ଛାତ୍ର ।

ସେହି ବର୍ଷ ମୋର ମାଉସୀଙ୍କର ପ୍ରଥମ ସନ୍ତାନ ସ୍ନେହଲତାର ଜନ୍ମ ।

ମେଟ୍ରିକ୍ ପରୀକ୍ଷା ପରେ ଯେପରି ଜୀବନର ଏକ ବିଶେଷ ଘଟଣା ଘଟିଥିଲା, ଆଇ.ଏସ୍‌ସି. ପରୀକ୍ଷା ପରେ ସେହିପରି ମୋ ଜୀବନର ଏକ ବିଶେଷ ଘଟଣା ଘଟିଲା ।

ମୁଁ ମହାନଦୀ କୂଳରେ ବାସ କରୁଥିଲେ ମଧ୍ୟ ଅଳ୍ପ ଅଳ୍ପ ପହଁରା ଶିଖିଥିଲି । ମୋର ବିଶେଷ ଦକ୍ଷତା ନଥିଲା । ମହାନଦୀରେ ଗୋଟିଏ ଘାଟ ପାଖରେ ଥିବା ଆଉ ଗୋଟିଏ ଘାଟକୁ ପହଁରି

ଯିବାକୁ ବାହାରିଲି ଆଷାଢ଼ ମାସର ପ୍ରଥମ ବଢ଼ିରେ। ମାତ୍ର ବାଟରେ ପିନ୍ଧିବା ଲୁଗା ଢିଲା ହୋଇଗଲା। ମୁଁ ସେ ଲୁଗା ସମ୍ଭାଳିବାକୁ ଚେଷ୍ଟା କଲାବେଳେ ପ୍ରାୟ ବୁଡ଼ିଯିବା ଅବସ୍ଥାକୁ ଆସିଗଲି। ଭାଗ୍ୟକ୍ରମେ ମୁଁ ସେତେବେଳେ ଅନ୍ୟ ଘାଟ ପାଖରେ ପହୁଞ୍ଚି ଯାଇଥାଏ। ସେତେବେଳେ ସେଠାରେ ଗାଧୋଉଥିବା ମୋର ଜଣେ ସମବୟସ୍କ ବନ୍ଧୁ ଶ୍ରୀ ରାସବିହାରୀ ପଣ୍ଡା ମୋତେ ଘାଟକୁ ଟାଣିନେଲେ। ମୁଁ ରକ୍ଷା ପାଇଗଲି। କିନ୍ତୁ ଏହା ଫଳରେ ମୋର ସାହସ ବହୁତ କମିଗଲା। ଏ ଖବର ପାଇ ମୋର ଗୁରୁଜନମାନେ ମୋତେ ତିରସ୍କାର କଲେ।

ସେ ଦିନର ଘଟଣାରେ ଆଜି ମନେ ହୁଏ, ମୁଁ ଯଦି ସେ ଦିନ ବୁଡ଼ି ମରିଥାନ୍ତି, ତାହାହେଲେ କଣ ହୋଇଥାନ୍ତା ? ମୋର ସ୍ତ୍ରୀ, ଯେ କି ଆଠ ବର୍ଷ ବୟସରେ ମୋର ପାଣିଗ୍ରହଣ କରିଥଲେ, ସେ ସାରା ଜୀବନ ବାଳବିଧବା ରୂପେ ହାହାକାର କରିଥାନ୍ତେ। ଏ କଳ୍ପନା ଫଳରେ କୌଣସି ସାହସିକ କାର୍ଯ୍ୟ କରିବାକୁ ମନହୁଏ ନାହିଁ। ମୁଁ ମରି ଯାଇଥିଲେ ବାପାଙ୍କ ମନରେ କେତେକ ଆଘାତ ଲାଗିଥାନ୍ତା, ସେ କଥା ମଧ୍ୟ ଭାବେଁ। ସେ ଅପୁତ୍ରକ ହୋଇଥାନ୍ତେ। ଏପରି ସାମାନ୍ୟ ଘଟନାରେ ମନୁଷ୍ୟର ଜୀବନରେ ବିପର୍ଯ୍ୟୟ ଆସେ। ସେହି ଦିନଠାରୁ ମୁଁ ପହଁରା ଛାଡ଼ିଦେଲି କହିଲେ ଚଳେ। ପାଞ୍ଚବର୍ଷ ପୂର୍ବରୁ ଏପରି ଦୁର୍ଘଟନା ଘଟିଥିଲେ ହୁଏତ ମୁଁ ଅଧିକ ଦକ୍ଷତା ଲାଭ କରିବା ପାଇଁ ଆଗ୍ରହୀ ହୋଇଥାନ୍ତି।

(୨)

୧୯୩୩ ମସିହା ଆଇ.ଏସ୍‌ସି. ପରୀକ୍ଷାରେ ବିଶେଷ କୃତିତ୍ୱ ସହିତ ମୋର ବିଫଳତା ଓ ଦୁର୍ବଳତା ମଧ୍ୟ ମୁଁ ସ୍ପଷ୍ଟ ଭାବରେ ଅନୁଭବ କରିପାରିଲି। ପ୍ରାକ୍‌ଟିକାଲ୍ କାମ ଅନେକ ଚେଷ୍ଟା କରି ସୁଦ୍ଧା ଭଲ ଭାବରେ କରିପାରିଲି ନାହିଁ। ଏହି ଦୁର୍ବଳତା ବା ଅକ୍ଷମତା ଥାଇ, ଯଦି ମୁଁ ଡାକ୍ତରି ପଢ଼ିବାକୁ ଯାଏଁ ତେବେ ସେଠାରେ ତ ଆହୁରି କଠିନ କାମ କରିବାକୁ ହେବ। ଚକ୍ଷୁରେ ଅସ୍ତ୍ରଚିକିତ୍ସା ଆଦି ସୂକ୍ଷ୍ମ କାର୍ଯ୍ୟ ହେଲେ, ସେଥିରେ ଯେ ମୁଁ ବାରବାର ଅକୃତକାର୍ଯ୍ୟ ହେବି, ଏହି ଆଶଙ୍କା ମୋ ମନରେ ବର୍ଷାକାଳର ମେଘପରି ଘେରିଥାଏ। ଛଅ ବର୍ଷ ଡାକ୍ତରି ପାଠ। ମଝିରୁ ପଛଘୁଞ୍ଚା ଦେଲେ ଅନେକ ଅର୍ଥ, ଅନେକ ବୟସର ଅପବ୍ୟୟ ହେବ। ସେଥିପାଇଁ ମୁଁ ବହୁତ ଭାବି ଚିନ୍ତି, ସେ ବର୍ଷ ଡାକ୍ତରି ପଢ଼ିବାକୁ ପାଟଣା ନ ଯାଇ କିମ୍ବା ବି.ଏସ୍‌ସି. ନ ପଢ଼ି କଳା ଶ୍ରେଣୀରେ ଅଧ୍ୟୟନ କରିବାକୁ ସ୍ଥିର କଲି। ଗଣିତ ଶାସ୍ତ୍ରରେ ଅନର୍ସ ନେଲେ ଉଚ୍ଚ ନମ୍ବର ମିଳିବାର ସମ୍ଭାବନା ଥାଏ। ତେଣୁ ଗଣିତ ଅନର୍ସ ସହିତ ସଂସ୍କୃତକୁ ଦ୍ୱିତୀୟ ପାଠ୍ୟ ବିଷୟ ନେଇ ବି.ଏ.ଶ୍ରେଣୀରେ ନାମ ଲେଖାଇଲି।

ମୋର ବିଜ୍ଞାନ ଅଧ୍ୟାପକମାନେ ଏଥିରେ ଖୁସି ହୋଇ ନ ଥିବେ, ବରଂ ଆଶ୍ଚର୍ଯ୍ୟାନ୍ୱିତ ହୋଇଥିବେ। ଡକ୍‌ଟର ବଳଭଦ୍ର ପ୍ରସାଦ ମୋତେ ଖୁବ୍ ଭଲପାଉଥିଲେ। ବୋଧହୁଏ ମୋର

ପାଠକୁ ଲକ୍ଷ୍ୟ କରି ପରେ ସେ କୁଆଡ଼େ ନୂଆ ବିଜ୍ଞାନ ଛାତ୍ରଙ୍କୁ ଶ୍ରେଣୀରେ କହିଲେ- ମୁଁ ଜଣେ ଭଲ ଛାତ୍ରକୁ ଦୁଇ ବର୍ଷକାଳ ଗ୍ଲାସଟିଉବ ବଙ୍କା କରିବା କାମ ଶିଖାଇବାକୁ ଚେଷ୍ଟା କଲି । ମାତ୍ର ଶେଷରେ ଅକୃତକାର୍ଯ୍ୟ ହେଲି ।

ସେ ସମୟରେ ମୋ ପକ୍ଷରେ ଭବିଷ୍ୟତ୍ ଜୀବନ ଓ ଜୀବିକା ପାଇଁ, ଶିକ୍ଷାଗତ ପ୍ରସ୍ତୁତିର ପରିସର ଅତି ସଙ୍କୀର୍ଣ୍ଣ ଥିଲା । ଭବିଷ୍ୟତରେ ଅଧ୍ୟାପକ ବା ଶିକ୍ଷକ ହେବାର କଳ୍ପନା ସୁଦ୍ଧା ମୁଁ କରିନାହିଁ । ସେ ଯୁଗରେ ବେସରକାରୀ କଲେଜ ନଥିଲା । ସରକାରୀ ଚାକିରି ପାଇଁ ମୋର ଯୋଗ୍ୟତା ମଧ୍ୟ ନଥିଲା-ସରକାରୀ ଦୃଷ୍ଟିକୋଣରୁ ମୋଠାରେ ଯଥେଷ୍ଟ କଳଙ୍କ ଥିଲା । ସେ ଯୁଗରେ ମୁଁ କଳ୍ପନା ସୁଦ୍ଧା କରି ନ ଥିଲି ଯେ ମୁଁ ଭବିଷ୍ୟତରେ କେବେ ଲୋକପ୍ରତିନିଧି ହୋଇ ପାରିବି । ସେ ସମୟରେ ରାଜନୀତିର ଅର୍ଥ ଥିଲା, ଆନ୍ଦୋଳନ, ଜେଲଦଣ୍ଡ, ପ୍ରାଣଦାନ, ମାଡ଼, ଆର୍ଥିକ ଦୁର୍ଗତି ଆଦି । ତ୍ୟାଗର ପୁରସ୍କାର ଯେ କେବେ ପ୍ରତିନିଧି ପଦ ବା ମନ୍ତ୍ରୀପଦ ହୋଇପାରେ, ତାହା କଳ୍ପନା କରିବାର ଅବକାଶ ନଥିଲା । ଅନ୍ତତଃ ମୋ ପକ୍ଷରେ । ସେ ସମୟରେ ସମ୍ବଲପୁର ଜିଲ୍ଲାରୁ ବିହାର ଓଡ଼ିଶା କାଉନ୍‌ସିଲ୍‌କୁ ପ୍ରତିନିଧି ଥିଲେ କେବଳ ଜଣେ ମାତ୍ର । ସାରା ଓଡ଼ିଶାରୁ କେନ୍ଦ୍ର ଏସେମ୍ବ୍ଲିକୁ ମାତ୍ର ଦୁଇଜଣ ପ୍ରତିନିଧି ଥିଲେ । ତେଣୁ ସେ ସମୟରେ ମୋର ସର୍ବୋଚ୍ଚ ଆକାଂକ୍ଷା ଥିଲା ପାସ୍ କଲା ପରେ ଓକିଲାତି କରିବା-କାରଣ ସେଇଟା ଥିଲା ସ୍ୱାଧୀନ ପେସା । ରାଜନୈତିକି ନେତାମାନଙ୍କ ମଧ୍ୟରୁ ଅଧିକାଂଶ ଥିଲେ ଓକିଲ । ଶ୍ରୀ ଚନ୍ଦ୍ରଶେଖର ବେହେରା ଓ ଶ୍ରୀ ଭଗୀରଥ ମିଶ୍ରଙ୍କ ଭଳିଆ ଲୋକେ ଓକିଲାତି କରି ଦେଶସେବା ମଧ୍ୟ କରୁଥିଲେ । ସେହିମାନେ ତେଣୁ ମୋ ପକ୍ଷରେ ନୂତନ ଆଦର୍ଶ ହେଲେ । ଓକିଲାତି ପାଇଁ କଳା ଅଧ୍ୟୟନ ବିଶେଷ ସହାୟକ । ବିଶେଷତଃ ଭଲ ଇଂରେଜୀ ଜ୍ଞାନ ଦରକାର ମନେକରି ମୁଁ କଳା ଶ୍ରେଣୀରେ ନାମ ଲେଖାଇଲି ।

୧୯୩୧ ମସିହାରେ ଆମେ ଅନେକ ଛାତ୍ର ପଶ୍ଚିମ ଛାତ୍ରାବାସରେ ରହିଥିଲୁଁ । କିନ୍ତୁ ପୂର୍ବ ଛାତ୍ରାବାସ ସମ୍ବଲପୁରୀ ଓ ଗଡ଼ଜାତି ଛାତ୍ରମାନଙ୍କର ପାରମ୍ପରିକ ନିବାସ ଓ ସେଠାରେ ସମ୍ବଲପୁରିଆମାନଙ୍କର କିଛି କିଛି ପ୍ରଭାବ ଓ ସଂହତି ମଧ୍ୟ ଥାଏ । ୧୯୩୩ ମସିହାରେ ଆମେ ସମସ୍ତେ ପୂର୍ବ ଛାତ୍ରାବାସକୁ ଚାଲି ଆସିଲୁ । ଏହି ସମୟରେ ଶ୍ରୀ ପରଶୁରାମ ମିଶ୍ର ପୂର୍ବ ଛାତ୍ରାବାସର ତତ୍ତ୍ୱାବଧାରକ ଥିଲେ । ସେ ସ୍କୁଲ ପଢ଼ା ସମୟରେ ମୋର ବାପାଙ୍କ ସହପାଠୀ ଥିଲେ ଓ ମୋତେ ଭଲ ଭାବରେ ଜାଣିଥିଲେ । ସେ ଉଦ୍ଭିଦ ବିଦ୍ୟାରେ ଆମର ପ୍ରାକଟିକାଲ କ୍ଲାସ ନେଉଥିଲେ । ଉଦ୍ଭିଦ ବିଦ୍ୟାରେ ଛାତ୍ରମାନଙ୍କୁ ଅଣୁବୀକ୍ଷଣ ଯନ୍ତ୍ର ପାଇଁ ଉଦ୍ଭିଦର କାଣ୍ଡ, ଶାଖା ଆଦିର ଅତି ପତଳା ଖଣ୍ଡମାନ କାଟିବାକୁ ପଡ଼େ । ମୋର ଖଣ୍ଡମାନ ଅଣୁବୀକ୍ଷଣ ଯନ୍ତ୍ର ପାଇଁ ମୋଟା ହୋଇଯାଏ । ଥରେ ପରଶୁରାମ ବାବୁ ମୋର ଏହି ଅକୁଶଳତା ଲକ୍ଷ୍ୟ କରି କହିଥିଲେ- ତୁମର

ଏହି ଖଣ୍ଡମାନ ମେସର ଆଳୁଭଜା ପରି । ସେ ଯୁଗରେ ମେସର ସୂପକାରମାନେ ଯେତେ ପତଳା ଆଳୁଖଣ୍ଡ ଭଜା ପାଇଁ କାଟୁଥିଲେ, ମୁଁ ସେମାନଙ୍କ ସହିତ ତୁଳନୀୟ ନ ଥିଲି ।

ଡକ୍ଟର ବାବା କର୍ତ୍ତାର ସିଂହ ରସାୟନ ବିଭାଗର ମୁଖ୍ୟ ଥିଲେ ଓ ଆମ ଛାତ୍ରାବାସର ଓ୍ୱାର୍ଡେନ ଥିଲେ । ଇଂରେଜୀ ଅଧ୍ୟାପକ ଶ୍ରୀ କୃପାନାଥ ମିଶ୍ର ଆମର ସହକାରୀ ସୁପରିଣ୍ଟେଣ୍ଡେଣ୍ଟ୍ ଥିଲେ ।

୧୯୩୩ ମସିହା ଅଗଷ୍ଟ ମାସରେ ମହାନଦୀ ଓ ତହିଁର ଶାଖାନଦୀମାନଙ୍କରେ ପ୍ରବଳ ବନ୍ୟା ହେଲା । ସେତେବେଳେ କଲେଜରୁ ସ୍ୱେଚ୍ଛାସେବକମାନେ ବାହାରି କଟକର କାଠଯୋଡ଼ି ବନ୍ଧରେ ବାଲିବସ୍ତା ପକାଇବା ଓ ବନ୍ଧ ଜଗିବା କାର୍ଯ୍ୟ କରୁଥିଲେ । ସେ ସମୟରେ ମୁଁ ଶ୍ରୀ ରାଜକୃଷ୍ଣ ବୋଷଙ୍କୁ ସେଠାରେ କାମ କରାଉଥିବାର ଦେଖିଛି ।

ବନ୍ୟା ଫଳରେ ମଫସଲ ଅଞ୍ଚଳରେ ଭୀଷଣ କ୍ଷତି ହେବାର ଖବର ଆସିଲା । ପୂର୍ବ ଛାତ୍ରାବାସ ତରଫରୁ ଏକ ରିଲିଫ୍ ଦଳ ଆମ ସୁପରିଣ୍ଟେଣ୍ଡେଣ୍ଟ ଶ୍ରୀ ପରଶୁରାମ ମିଶ୍ରଙ୍କ ନେତୃତ୍ୱରେ ବାହରିଲୁଁ । ସ୍ୱେଚ୍ଛାସେବୀମାନେ ହେଲେ ଶ୍ରୀ ମାନଭଞ୍ଜନ ବହିଦାର, ଶ୍ରୀ ରାଜେନ୍ଦ୍ର ପଣ୍ଡା, ଶ୍ରୀ ଦୁର୍ଗାପ୍ରସାଦ ନନ୍ଦ, ଶ୍ରୀ ଦାଶରଥି ବେହେରା ଓ ମୁଁ । ଆମେ ତୃତୀୟ ଓ ଦ୍ୱିତୀୟ ବାର୍ଷିକ ଶ୍ରେଣୀର ଛାତ୍ର । ଜଗତ୍‌ସିଂହପୁର ଓ ଦେବୀଦୋଳ ଅଞ୍ଚଳର ବହୁ ଅଂଶରେ ପାଣି ମାଡ଼ିଥାଏ ।

ଉପକୂଳ ଅଞ୍ଚଳରେ ବନ୍ୟାର ବିଭୀଷିକା ଦେଖିବାର ମୋର ପ୍ରବଳ ଆଗ୍ରହ ଥିଲା । ସେତେବେଳେ ମୋ ପାଖରେ ଗୋଟିଏ ଛୋଟ କ୍ୟାମେରା ଥିଲା । ମୁଁ ସ୍କୁଲରେ ପଢୁଥିଲା ବେଳେ ଆଗରୁ ଫଟୋ ଉଠାଇବା କାମ ସାମାନ୍ୟ ଭାବେ ଶିଖିଥିଲି । ବନ୍ୟା ଦେଖି ରିଲିଫ୍ କାର୍ଯ୍ୟ ଶେଷ କରିବା ପରେ ସେ ବିଷୟରେ କିଛି ଲେଖିବାର ମଧ୍ୟ ଇଚ୍ଛା ହେଲା । ଆମେ ଦେବୀଦୋଳ ଓ ଜଗତ୍‌ସିଂହପୁର ଅଞ୍ଚଳରେ ଡଙ୍ଗାମାନଙ୍କରେ ବୁଲି ପାଞ୍ଚ ଛଅ ଦିନ ରିଲିଫ୍ ଚାଉଳ ବାଣ୍ଟିଲୁଁ । ସେତେବେଳେ ଦେବୀଦୋଳରେ ମୋର ଶ୍ୱଶୁରଙ୍କ ବଡ଼ଭାଇ ଶ୍ରୀ ପ୍ରସନ୍ନ କୁମାର ପୂଜାରୀ ସବ-ରେଜିଷ୍ଟ୍ରାର୍ ରୂପେ କାମ କରୁଥିଲେ । ଆମେ ଆଗରୁ ସେଟା ନ ଜାଣି ତାଙ୍କ ଘରେ ପହୁଞ୍ଚିବାରୁ ସେ ଖୁସି ହୋଇ ଆମର ଆତିଥ୍ୟ ସତ୍କାର କଲେ ।

ପାଣି ଧୀରେ ଧୀରେ କମିଆସିଲା । ଶେଷ ଦିନ ଆମେ ଜଗତ୍‌ସିଂହପୁର ଫେରି ଦେଓ୍ୱାନ ବାହାଦୁର ଶ୍ରୀକୃଷ୍ଣ ମହାପାତ୍ରଙ୍କ ପୁଅ ନୀଲୁ ବାବୁଙ୍କ ଘରେ ପହୁଞ୍ଚିଲୁଁ । ନୀଲୁ ବାବୁଙ୍କର ଭାଇ ଫେଲୁବାବୁ ଓରଫ ନନ୍ଦନନ୍ଦନ ମହାପାତ୍ର ଆମର ସହପାଠୀ ଥିଲେ ଓ ଭଲ ଫୁଟବଲ ଖେଳୁଥିଲେ ।

ଯେଉଁ ଦିନ ଜଗତ୍‌ସିଂହପୁର କଟକ ଫେରିବାରେ କଥା, ସେଦିନ ସକାଳେ ନୀଲୁବାବୁଙ୍କ ପୋଖରୀକୁ ଆମେ ଗାଧୋଇବାକୁ ଗଲୁଁ । ଅନ୍ୟ ସମସ୍ତେ ପହଁରିବା ଆରମ୍ଭ କଲେ । ମୁଁ ମଧ୍ୟ

ସାହସ କରି ବେଶି ପାଣିକୁ ଧସାଇ ପଶିଲି । କିନ୍ତୁ ଅଳ୍ପ ସମୟରେ ଥକି ଗଲି ଓ ଡରିଯାଇ ବୁଡ଼ିଯିବା ଉପରେ ଥିଲି । ମାତ୍ର ମୋର ସାଙ୍ଗମାନେ ମୋତେ ଧରି ନେଲେ । ଭଲ ଭାବରେ ପହଁରା ନ ଜାଣି ଏପରି ବିପଦସଙ୍କୁଳ ବନ୍ୟା ଅଞ୍ଚଳକୁ ମୁଁ ବନ୍ୟା ସାହାଯ୍ୟ ପାଇଁ ଆସିଥିବାରୁ ଶ୍ରୀ ପରଶୁରାମ ମିଶ୍ର ମୋତେ ଖୁବ୍ ଭର୍ତ୍ସନା କଲେ । ସାଙ୍ଗମାନେ ପରିହାସ କଲେ ।

ମୁଁ ସେ ବର୍ଷ ପଢ଼ାପଢ଼ି ଭଲ କରିଥିଲି । ଅନର୍ସ କ୍ଲାସରେ ଅଧ୍ୟାପକମାନେ ମୋ ଉପରେ ସନ୍ତୁଷ୍ଟ ଥିଲେ । କିନ୍ତୁ ପରୀକ୍ଷାବେଳେ ଦେଖାଗଲା ଯେ ସେ ବର୍ଷର ଦୁଇଥର ପରୀକ୍ଷାରେ ମୋର ଆଶାନୁରୂପ ଫଳ ହେଲା ନାହିଁ ।

ବସ୍ତୁତଃ ୧୯୩୩ ମସିହାରେ ମୋର ଛାତ୍ରଜୀବନର ଏକ ଅତିଚାର କାଳ ଥିଲା । ସେହି ବର୍ଷରୁ ମୁଁ ଆଉ ଉପରକୁ ନ ଉଠି ତଳକୁ ଖସିବାକୁ ଆରମ୍ଭ କଲି । ଦୈବ ଯୋଗରେ ବିଶ୍ୱାସ କରୁଥିବା ଲୋକେ କହିବେ ମୋ ଉପରେ ଦୁଷ୍ଟଗ୍ରହର ପ୍ରଭାବ ଆରମ୍ଭ ହେଉଥିଲା । ହର୍ଲିକ୍ସ ବିଜ୍ଞାପନ ଦାତା କହିବେ, ସେହି ସମୟରେ ଯଦି ମୁଁ ହର୍ଲିକ୍ସ ପିଇବା ଆରମ୍ଭ କରିଥାନ୍ତି, ତେବେ ମୋର ମାନସିକ ଶକ୍ତି ଅପଚୟର କ୍ଷତିପୂରଣ ହୋଇଥାନ୍ତା । ସେହିଟା ବୋଧହୁଏ ଥିଲା ଯୌବନର ପ୍ରଭାବ । ମୋର ସମସ୍ତ ସଂଯମପରାୟଣତା ସତ୍ତ୍ୱେ ପଢ଼ାବେଳେ ଅନ୍ୟମନସ୍କତା ଦେଖାଯାଉଥିଲା । ପାଠରେ ପୂର୍ଣ୍ଣ ମନୋଯୋଗର ଶକ୍ତି ବୋଧହୁଏ ଊଣା ପଡ଼ି ଆସୁଥିଲା । ଅଥବା ଘରୋଇ ଅଶାନ୍ତିର ପ୍ରଭାବ ପରୋକ୍ଷ ଭାବରେ ମୋର ମନ ଉପରେ ପଡୁଥିଲା ।

୧୯୩୪ ମସିହା ଜାନୁୟାରୀ ୧୫ ତାରିଖ । ସମୟ ହୋଇଥାଏ ପ୍ରାୟ ଦୁଇଟା । ରେଭେନ୍ସା କଲେଜର ଉପର ମହଲାରେ ତୃତୀୟ ବାର୍ଷିକ କଳା ଶ୍ରେଣୀରେ ଆମକୁ ଅଧ୍ୟାପକ କିଶୋରୀ ପ୍ରସାଦ ସିନ୍ହା ଇଂରେଜୀ ଲେକ୍‌ଚର ଦେଉଥାନ୍ତି । ଏପରି ସମୟରେ ଘରଟି ଟିକିଏ ଦୋହଲିବାର ଜଣା ପଡ଼ିଲା । ବାହାରୁ ପାଟି ହେଲା, ଭୂମିକମ୍ପ, ଭୂମିକମ୍ପ, ବାହାରି ଆସ । କ୍ଲାସରୁ ପ୍ରାୟ ସମସ୍ତେ ଉଠି ବାହାରିଗଲେ । ମହିଳା ଛାତ୍ରୀ କୁମାରୀ ପ୍ରେମଲତା ବେହେରା ଉଠିଲେ ନାହିଁ । ମୁଁ ପଛ ବେଞ୍ଚରେ ବସିଥିଲି । ମୁଁ ମଧ୍ୟ ଉଠିଲି ନାହିଁ । କଥା କଣ ! ବୋଲି ପ୍ରଶ୍ନ କଲି । ଉତ୍ତର ଦେବା ପାଇଁ କେହି ନଥିଲେ । ସେ ସମୟରେ ଉପସ୍ଥିତ ବା ସମ୍ଭାବ୍ୟ ବିପଦ ବିଷୟରେ ମୋର କୌଣସି ଧାରଣା ନ ଥିଲା । ଭୂମିକମ୍ପ ପ୍ରକୃତିର ଏକ ସାମାନ୍ୟ କୁତୁକୁତୁ ଥଟ୍ଟା ପରି ନିରାପଦ ବୋଲି ମୋର ଧାରଣା ଥିଲା । ମୁଁ କ୍ଲାସରୁ ବାହାରି ବାରଣ୍ଡାରେ ଠିଆ ହେଲି । ସେତେବେଳେ କଲେଜର ପ୍ରାୟ ସମସ୍ତେ କଲେଜର ମଝି ପଡ଼ିଆରେ । ଅଳ୍ପ କେତେ ସମୟ ପରେ ଅଧ୍ୟାପକ ଓ ଛାତ୍ରମାନେ କ୍ଲାସକୁ ଫେରି ଆସିଲେ । ନିୟମିତ ଭାବରେ ପଢ଼ାପଢ଼ି ପୁଣି ଚାଲିଲା । ଏତେ ସାମାନ୍ୟ ବିଷୟରେ ଏତେ ଆତଙ୍କିତ ହେବାର ଉଚିତ ନ ଥିଲା ବୋଲି ମୁଁ ଭାବିଲି ।

ତହିଁ ଆରଦିନ ସକାଳେ ଖବର କାଗଜ ଦେଖିଲା ବେଳକୁ ହୁଲସ୍ଥୁଲ୍ କାଣ୍ଡ । ବିହାରର

ବିସ୍ତୀର୍ଣ୍ଣ ଅଞ୍ଚଳରେ ଭୂମିକମ୍ପର ବ୍ୟାପକ ଧ୍ୱଂସଲୀଳାର କରୁଣ କାହାଣୀ ଖବର କାଗଜରେ ବାହାରି ଥାଏ । ପୂର୍ବଦିନ ୨ଟା ୧୩ ମିନିଟ୍ ତ୍ରିବେଣୀ ଅମାବାସ୍ୟା ଉତ୍ସବ ଦିନ ଏକ ଭୟାନକ ଶବ୍ଦ ସହିତ ଭୂମିକମ୍ପ ଆରମ୍ଭ ହେଲା । ମୁଜାଫରପୁର, ମୁଙ୍ଗେର ଓ ଦରଭଙ୍ଗା ସହର ଛାରଖାର ହୋଇଗଲା । ଅନ୍ୟାନ୍ୟ ସହର ଓ ମଫସଲ ଅଞ୍ଚଳରେ ମଧ୍ୟ ପ୍ରଭୂତ କ୍ଷତି ହୋଇଥାଏ । ମାଟି ଫାଟି ଯାଇଥାଏ, ବହୁତ ଲୋକ ଓ ଗାଈଗୋରୁ ମରିଥାନ୍ତି ଓ ସମ୍ପତ୍ତି ବାଡ଼ି ନଷ୍ଟ ହୋଇଥାଏ । କ୍ଷତିର ପୂର୍ଣ୍ଣ ବିବରଣୀ ପ୍ରକାଶ ପାଇବାକୁ ଅଳ୍ପ କେତେ ଦିନ ଲାଗିଲା । ସେଠାରେ ଭୂମିକମ୍ପ ସାହାଯ୍ୟ ପାଣ୍ଠି ଖୋଲାଗଲା ଓ ସ୍ୱେଚ୍ଛାସେବକମାନେ ବିପନ୍ନ ଅଞ୍ଚଳକୁ ଯାଇ ଭଙ୍ଗାଘର ଭିତରୁ ଲୋକମାନଙ୍କୁ ଉଦ୍ଧାର କରିବାର ଚେଷ୍ଟା କଲେ । ଏହି ଭୂମିକମ୍ପରେ ଉତ୍ତର ବିହାର ଓ ନେପାଳର ବହୁ ସହସ୍ର ଲୋକ ମଲେ ଓ କୋଟି କୋଟି ଟଙ୍କାର ସମ୍ପତ୍ତି ନଷ୍ଟ ହେଲା ।

ଏହିସବୁ ଲୋମହର୍ଷଣ ଖବର ବାହାରିଲା ପରେ କଟକ ସହରରେ ମଧ୍ୟ ଆତଙ୍କ ଓ ଆଶଙ୍କା ଦେଖାଗଲା । ପୂର୍ବଦିନ ପରି ପୁଣି ଭୂମିକମ୍ପର ଆଶଙ୍କା କରି ଆମେ ବରାବର ସତର୍କ ରହିଲୁଁ । ଛାତ୍ରାବାସର ଉପର ମହଲାରେ ଆମେ ଯେଉଁମାନେ ରହୁଥିଲୁଁ, ସେମାନେ ରାତିରେ ବିଛଣାପତ୍ର ତଳକୁ ଆଣି କଲେଜକୁ ଯାଉଥିବା ହଷ୍ଟେଲ ବାରଣ୍ଡାରେ ଶୋଇଲୁଁ । ସେ ବର୍ଷ ପ୍ରବଳ ଶୀତ ହେଉଥାଏ । ତଥାପି ଆମେ ବାରଣ୍ଡାରେ କମ୍ବଳ ଘୋଡ଼ି ହୋଇ ଶୋଉଁ । ଦୈବ ଯୋଗକୁ ସେତେବେଳେ କଟକରେ ଗୋଟିଏ ବିବାହ ଲଗ୍ନ ଥାଏ । ଅଧରାତିରେ ଅନେକ ବାଣ ଫୁଟେ । ଏତେ ଗୁଡ଼ିଏ ବାଣ ଏକା ସଙ୍ଗେ ଫୁଟିଲେ ଯେଉଁ ଶବ୍ଦ ହୁଏ, ଆମେ ସେ ଶବ୍ଦରେ ଚମକି ଉଠି ପଡ଼ି, ଭୂମିକମ୍ପର ଘଡ଼ଘଡ଼ି ଶବ୍ଦ ଭାବି, ଦୌଡ଼ି କଲେଜ ପଡ଼ିଆ ଆଡ଼କୁ ଧାଇଁଯାଉଁ । ଏପରି ଦୁଇ ତିନିଥର ପଳାଇବାର ମୋର ମନେ ଅଛି ।

ଆମର ଓ୍ୱାର୍ଡେନ ଡକ୍ଟର ବାବା କର୍ତ୍ତାର ସିଂହ ଜଣେ ବିଶିଷ୍ଟ ବୈଜ୍ଞାନିକ । ନିଜ ନିଜର କୋଠରି ଛାଡ଼ି ଆତଙ୍କରେ ବାରଣ୍ଡାକୁ ଯାଇ ଆମର ଶୋଇବା କାମକୁ ସେ ମୋଟେ ପସନ୍ଦ କରନ୍ତି ନାହିଁ । ସେ ଆସି ଆମକୁ ଅନେକ ବୁଝାନ୍ତି, କଟକ ତ ଦାକ୍ଷିଣାତ୍ୟ ମାଳଭୂମିର ଏକ ଅଂଶ, ହିମାଳୟର ଭୂମିକମ୍ପ ଅଞ୍ଚଳରୁ ବହୁତ ଦୂରରେ । ଏଠାରେ ଭୂମି ଅତି ଶକ୍ତ । ଭୂମିକମ୍ପର ସମ୍ଭାବନା ଅତି କମ୍ । ଭୂମିକମ୍ପ ହେଲେ ମଧ୍ୟ ବିହାର ପରି ଧ୍ୱଂସଲୀଳା ଏଠାରେ ଅକଳ୍ପନୀୟ ।

ଏହିପରି ସେ ଆମକୁ ଅନେକ ଥର ବୁଝାଇଲେ । କିନ୍ତୁ ଆମର ଭୟ ଦୂର ହେଲା ନାହିଁ । ଆମେ ପ୍ରାୟ ଏକ ସପ୍ତାହ କାଳ ଭୂମିକମ୍ପ ଭୟରେ ବାରଣ୍ଡାରେ ଶୋଇଲୁଁ । ଧୀରେ ଧୀରେ ଚାରିଆଡ଼େ ଆତଙ୍କ କମିଗଲା । ଆମେ ନିଜ ନିଜ କୋଠରିରେ ରାତିରେ ଶୋଇଲୁଁ ।

ମୁଁ ସ୍କୁଲରେ ପଢୁଥିବା ଦିନରୁ ଭଲ ଲେଖାଲେଖି କରୁଥିଲି । ତୃତୀୟ ବାର୍ଷିକ ଶ୍ରେଣୀରେ ପଢୁଥିଲାବେଳେ ପୂର୍ବ ଛାତ୍ରାବାସର ହସ୍ତଲିଖିତ ପତ୍ରିକା ଜାଗରଣର ସମ୍ପାଦକ ଥିଲି ।

ଜଗତ୍‌ସିଂହପୁର ଅଞ୍ଚଳର ବନ୍ୟା ସାହାଯ୍ୟ କାହାଣୀ ବିଷୟରେ ଏକ ପ୍ରବନ୍ଧ ଲେଖି ସେଥିରେ ମୋ ନିଜଦ୍ୱାରା ଉଠାଯାଇଥିବା କେତେ ଫଟୋ ସହିତ ସେହି ପତ୍ରିକାରେ ପ୍ରକାଶ କଲି। ଏହା ତଦାନୀନ୍ତନ ଅଧ୍ୟକ୍ଷ ମିଷ୍ଟର୍. ଡବ୍ଲୁ.ଡ଼ି.ଡିଉକ୍ ଆଦିଙ୍କଠାରୁ ଉଚ୍ଚ ପ୍ରଶଂସା ଲାଭ କଲା।

ମୁଁ ଆଇ.ଏସ୍‌ସି. ପରୀକ୍ଷା ପରେ କଳାବିଭାଗକୁ ପରିବର୍ତ୍ତନ କରିଥିବାରୁ କଳା ବିଭାଗରେ ଏକ ବିଷୟରେ ଆଇ.ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାର କଥା ରେଗୁଲେସ୍‌ନରେ ଥିଲା। ମୁଁ ସଂସ୍କୃତରେ ଶାସ୍ତ୍ରୀ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିବାରୁ ମୁଁ ଯଦି ପାଟନା ବିଶ୍ୱବିଦ୍ୟାଳୟ ସିଣ୍ଡିକେଟ୍‌କୁ ଦରଖାସ୍ତ ଦେଇ ଏ ପ୍ରକାର ପରୀକ୍ଷାରୁ ଅବ୍ୟାହତି ନେବା ପାଇଁ ଅନୁରୋଧ କରିଥାନ୍ତି, ତେବେ ମୋତେ ବୋଧହୁଏ ଅବ୍ୟାହତି ମିଳିଥାନ୍ତା। ମାତ୍ର ମୁଁ ତାହା ନ କରି ଅଧିକ ଜ୍ଞାନ ଅର୍ଜନ କରିବା ପାଇଁ ତୃତୀୟ ବାର୍ଷିକ ଶ୍ରେଣୀରେ ଅଧ୍ୟୟନ କରୁଥିବା ସମୟରେ ଆଇ.ଏ.ଶ୍ରେଣୀର ଲଜିକ୍ ବା ତର୍କଶାସ୍ତ୍ରର ବକ୍ତୃତାମାନ ଶୁଣେ। ବର୍ଷଶେଷରେ ୧୯୩୪ ମସିହାର ସପ୍ଲିମେଣ୍ଟାରୀ ପରୀକ୍ଷାରେ ଲଜିକ୍‌ରେ ଆଇ.ଏ. ପରୀକ୍ଷା ଦେଇ କୃତକାର୍ଯ୍ୟ ହେଲି।

୧୯୩୪ ମସିହା ବାର୍ଷିକ ପରୀକ୍ଷା ଶେଷ ହେଲା ପରେ ମୁଁ ସଂସ୍କୃତ ଉପାଧିର ତୃତୀୟ ଖଣ୍ଡ ପାଇଁ ମଧ୍ୟ ପ୍ରସ୍ତୁତ ହେଲି ଓ ସେହି ବର୍ଷ ପାସ୍ କଲି।

୧୯୩୪ ମସିହାରେ ଗ୍ରୀଷ୍ମକାଳରେ ମହାତ୍ମା ଗାନ୍ଧି ସମ୍ବଲପୁରକୁ ଆସିଲେ। ଏହା ପୂର୍ବରୁ ଥରେ ୧୯୨୮ ମସିହାରେ ସେ ସମ୍ବଲପୁରକୁ ଆସି ଶ୍ରୀ ଚନ୍ଦ୍ରଶେଖର ବେହେରାଙ୍କ ଗୃହରେ ସସ୍ତ୍ରୀକ ରହିଥିଲେ।

୧୯୩୪ ମସିହାରେ ସେ ହରିଜନ ଆନ୍ଦୋଳନ ସମ୍ପର୍କରେ ସମ୍ବଲପୁରକୁ ଆସିଲେ। ସେ ସମଗ୍ର ଦେଶରୁ ଅସ୍ପୃଶ୍ୟତା ବ୍ୟାଧି ଦୂର କରିବା ପାଇଁ ପ୍ରଚାର କଲେ। ହରିଜନ ପତ୍ରିକାଟି ଏହାର କେତେ ମାସ ପୂର୍ବରୁ ପ୍ରଥମ ହୋଇ ପ୍ରକାଶ ପାଇଲା। ହରିଜନ ଆନ୍ଦୋଳନ ବେଳେ ମହାତ୍ମା ଗାନ୍ଧି ପ୍ରାୟ ସବୁଆଡ଼େ ରକ୍ଷଣଶୀଳ ହିନ୍ଦୁମାନଙ୍କଠାରୁ ପ୍ରବଳ ବିରୋଧର ସମ୍ମୁଖୀନ ହେଉଥିଲେ। ସମ୍ବଲପୁରରେ ମହାନଦୀ ବାଲିରେ ଏକ ବିରାଟ ସଭାରେ ମହାତ୍ମା ଗାନ୍ଧି ଅସ୍ପୃଶ୍ୟତାର କଳଙ୍କ ବିଷୟରେ ଭାଷଣ ଦେଇଥିଲେ ଓ ହରିଜନ ପାଣ୍ଠିକୁ ଚାନ୍ଦା ସଭାସ୍ଥଳରେ ସଂଗ୍ରହ କରିଥିଲେ। ସେହି ସମୟରେ ଜଣେ ରକ୍ଷଣଶୀଳ ବ୍ରାହ୍ମଣ ତାଙ୍କ ସଭାରେ ଗଣ୍ଡଗୋଳ କରିବାକୁ ଚେଷ୍ଟା କଲେ।

୧୯୩୪ ମସିହା ପୂର୍ବରୁ ସମ୍ବଲପୁରରେ ହରିଜନମାନଙ୍କ ପାଇଁ ଅଲଗା ସ୍କୁଲ ଥିଲା। ମାତ୍ର ସେ ସମୟରୁ ହରିଜନ ସ୍କୁଲ ଉଠିଯାଇ ହରିଜନ ପିଲାମାନେ ସାଧାରଣ ବିଦ୍ୟାଳୟରେ ପଢ଼ିବାକୁ ଆରମ୍ଭ କଲେ। ହରିଜନ ସେବକ ସଂଘ ତରଫରୁ ସମ୍ବଲପୁରର ରୋଡ଼ଷ୍ଟେସନ ପାଖରେ ଥିବା ଆମର ଖମାର ଘରଠାରେ ଏକ ହରିଜନ ହଷ୍ଟେଲ ସ୍ଥାପିତ ହେଲା। ଶ୍ରୀ ନୃସିଂହ ଗୁରୁ ଏହି ଛାତ୍ରମାନଙ୍କର ସବୁ ବିଷୟ ବୁଝୁଥିଲେ।

ସେ ସମୟରେ ମୁଁ କତେକଣ ହରିଜନ ଛାତ୍ରଙ୍କୁ ଅବୈତନିକ ଘରୋଇ ଶିକ୍ଷକ ରୂପେ ମୋର ଅବସର ସମୟରେ (ସମ୍ବଲପୁରରେ ରହୁଥିବା ବେଳେ) ଶିକ୍ଷା ଦେଉଥିଲି।

ମହାତ୍ମାଗାନ୍ଧିଙ୍କର ଦୂରଦର୍ଶିତା ତାଙ୍କୁ ଏ ଦେଶର ଅଦ୍ୱିତୀୟ ନେତା କଲା। ସେ ହରିଜନ ଆନ୍ଦୋଳନ ବେଳେ ବହୁ ଲୋକଙ୍କର ତୀବ୍ର ବିରୋଧ ଓ ବିକ୍ଷୋଭର ସମ୍ମୁଖୀନ ହେଲେ; ମାତ୍ର ନିଜ ଲକ୍ଷ୍ୟପଥରୁ ମୁହୂର୍ତ୍ତକ ପାଇଁ ବିଚଳିତ ହୋଇ ନଥିଲେ।

ଅମୃତଲାଲ ଠକ୍‌କର୍ ବା ଠକ୍‌କରବାପା ହରିଜନ ସେବକ ସଂଘର ସଭାପତି ଥିଲେ। ସେ ବୋଧହୁଏ ଥରେ ସମ୍ବଲପୁରକୁ ହରିଜନ କାମରେ ଆସିଥିଲେ।

୧୯୩୪ ମସିହା ଜୁନ୍ ମାସରେ ମୋର ଦୂର୍ବାକ୍ଷତ ହେଲା। ମୋର ଶାଶୂ ଶ୍ୱଶୁର ମଫସଲ ଅଞ୍ଚଳରେ ତବଡ଼ାବାହାଲରେ ରହୁଥିଲେ। ମୋର ସ୍ତ୍ରୀ ସମ୍ବଲପୁର ସହରରେ ଆମ ଘର ପାଖରେ ମୋର ଅଜାଶ୍ୱଶୁର ଶ୍ୟାମସୁନ୍ଦର ପଣ୍ଡାଙ୍କ ଘରେ ରହୁଥିଲେ। ମୋର ଅଜାଶ୍ୱଶୁର ୧୯୩୦ ମସିହାରେ ଇହଧାମ ତ୍ୟାଗ କଲେ ଓ ତାଙ୍କର ବିଧବା ପତ୍ନୀ ଶ୍ରୀମତୀ ରେବତୀ ପଣ୍ଡିଆଣୀ ମୋର ସ୍ତ୍ରୀଙ୍କର ଅଭିଭାବିକା ଥିଲେ। ସେ ଯଥାଶୀଘ୍ର ନାତୁଣୀକୁ ଶାଶୂଘରକୁ ପଠାଇବା ପାଇଁ ଆଗ୍ରହାନ୍ୱିତ ଥିଲେ। ଏହା ସେ ଯୁଗରେ ଅତି ସ୍ୱାଭାବିକ ଥିଲା ସେତେବେଳକୁ ମୋର ସ୍ତ୍ରୀଙ୍କର ବୟସ ଚଉଦ ବର୍ଷ। ସେ ବର୍ଷ ୨୯ ଜୁନ୍ ୧୯୩୪ରେ ମୋର ବନ୍ଦାପନା ଉତ୍ସବ ହେଲା।

ସେତେବେଳେ ମୋର ତୃତୀୟ ବାର୍ଷିକ କଲେଜ ପାଠ ସରିଥାଏ। ବୟସ ମୋର ଉଣେଇଶ ବର୍ଷ। ମୋର ସ୍ତ୍ରୀ ମଧ୍ୟ ବାଳିକା କହିଲେ ଚଳେ। ସଂସାରର ଅଭିଜ୍ଞତା ଆମର ମୋଟେ ନ ଥିଲା। ତଥାପି ସେହିଦିନଠାରୁ ଆମେ ସ୍ୱାମୀ ସ୍ତ୍ରୀ ରୂପେ ରହିଲୁଁ।

ସମସ୍ତଙ୍କ ପକ୍ଷେ ମଧୁଶଯ୍ୟା ରାତି ଏକ ଅବିସ୍ମରଣୀୟ ରାତ୍ରି। ସେ ରାତିରେ ମୋ ମନରେ ଏକ ଅଜ୍ଞାତ ଆନନ୍ଦ ସହିତ ଲଜ୍ଜା ବହୁ ପରିମାଣରେ ମିଶିଥିଲା। ମୁଁ ସେ ସମୟରେ କବିତା ଲେଖାଲେଖି କରୁଥାଏଁ। ସେ ରାତିର ଅନୁଭୂତି ବିଷୟରେ ମୁଁ ଗୋଟିଏ କବିତା ଲେଖିଥିଲି।

ମଧୁଚନ୍ଦ୍ରିକା ଅଳ୍ପଦିନ ସ୍ଥାୟୀ ହେଲା। ଚାରି ଛଅ ଦିନ ପରେ କଲେଜ ପଢ଼ାରେ ଯୋଗ ଦେବା ପାଇଁ ମୋତେ କଟକ ଯିବାକୁ ପଡ଼ିଲା।

ସେତେବେଳେ ବର୍ଷାର ଆରମ୍ଭ। ଚାରିବର୍ଷ ପୂର୍ବେ ମେଘଦୂତ ପଢ଼ିଥିଲି। ଏବେ ମେଘଦୂତର ବିରହବେଦନାର ପ୍ରକୃତ ମର୍ମ ବୁଝିବାର ବେଳ ଆସିଗଲା। ପାଠ ପଢ଼ାର ଦାୟିତ୍ୱ ଓ ଗୃହୀର କର୍ତ୍ତବ୍ୟ ମଧ୍ୟରେ ଭାରସାମ୍ୟ ରକ୍ଷା କରିବା କଷ୍ଟକର। ପଢ଼ାପଢ଼ିରେ ମୋର ଅନ୍ୟମନସ୍କତା ବୋଧହୁଏ ବଢ଼ିବାକୁ ଲାଗିଲା। ଗଣିତ ଅଧ୍ୟାପକମାନେ ଅନର୍ସ ବିଷୟରେ ମୋର ପଢ଼ାପଢ଼ିରେ ଅସନ୍ତୁଷ୍ଟ ଥିଲେ କାରଣ ସେମାନେ ମୋତେ ଖୁବ୍ ଭଲ ପାଉଥିଲେ ଓ ମୋ ଉପରେ ବିଶେଷ ଆଶା ରଖିଥିଲେ।

ସେତେବେଳେ ଗଣିତ ଅନର୍ସ ଶ୍ରେଣୀରେ ଆମେ ତିନିଜଣ ଛାତ୍ର ଥାଉଁ। ମୋ ଛଡ଼ା ଶ୍ରୀ ସୁଧାନିଧି ସାମନ୍ତରାୟ ଓ ଶ୍ରୀ ଅଲି ୟୁସୁଫ୍ ମଧ୍ୟ ଏ ବିଷୟ ପଢୁଥାନ୍ତି। ଅଲି ୟୁସୁଫ୍ ପରେ ଏମ୍.ଏସ୍‌ସି. ପାସ୍ କରି ପାକିସ୍ତାନରେ ଚାକିରି କରିବାକୁ ଚାଲିଗଲେ। ସୁଧାନିଧି ବାବୁ ଓଡ଼ିଶା ସରକାରଙ୍କ ଅଧୀନରେ ଉଚ୍ଚ ଚାକିରି ପାଇଲେ।

ସେ ବର୍ଷର ଆଉ ଏକ ଘଟନା ଅଧ୍ୟାପକମାନଙ୍କର ଅସନ୍ତୋଷର କାରଣ ହେଲା।

ମୁଁ ଖେଳାଖେଳିରେ ବେଶି ଯୋଗ ଦିଏ ନାହିଁ। ପ୍ରତିଦିନ ନିୟମିତ ଭାବରେ ଅନ୍ତତଃ ପାଞ୍ଚଘଣ୍ଟା ପଢ଼ିବା ମୋର ଅଭ୍ୟାସ ଥିଲା। ମାତ୍ର ସେ ବର୍ଷର ହଷ୍ଟେଲ କେରମ୍ ପ୍ରତିଯୋଗିତାରେ ମୋ ନାଆଁଟି ଦେଇଦେଲି। ଏହା ପୂର୍ବରୁ ମୁଁ ସ୍କୁଲରେ ପଢୁଥିଲା ବେଳେ କେରମ୍ ଖେଳ ସାମାନ୍ୟ ଅଭ୍ୟାସ କରିଥିଲି। ସମ୍ବଲପୁରରେ ଖରାଦିନ ଦି'ପହରରେ ଅସହ୍ୟ ଖରା ହୁଏ। ଘରୁ ବାହାରି ହୁଏ ନାହି। ପଢ଼ାପଢ଼ି ମଧ୍ୟ ସେତେବେଳେ ହୁଏ ନାହିଁ। ତେଣୁ ଆମ ପାଖ ଘରେ କେରମ୍ ଖେଳରେ ମୁଁ କେବେ କେବେ ସ୍ଥାନ ପୂରଣ ପାଇଁ ଯୋଗ ଦେଉଥିଲି। ସେହି ଅଭ୍ୟାସ ପୂର୍ବରୁ ଥିବାରୁ ମୁଁ ସେ ବର୍ଷ ପ୍ରତିଯୋଗିତାରେ ଭାଗ ନେଲି। ଦୁର୍ଭାଗ୍ୟବଶତଃ ବା ସୌଭାଗ୍ୟବଶତଃ ପ୍ରଥମ ରାଉଣ୍ଡରେ ମୋର ପ୍ରତିଯୋଗୀ ଥିଲେ ପୂର୍ବ ବର୍ଷର ହଷ୍ଟେଲର କେରମ୍ ଚେମ୍ପିୟନ୍ ଶ୍ରୀ (ପରେ ଡାକ୍ତର) ଯଶୋବନ୍ତ ମହାନ୍ତି। ମୋର ହାରିବାର କଥା। ଦୁଇ ଘଣ୍ଟାରେ ମୋର ପ୍ରତିଯୋଗିତାର ପୂର୍ଣ୍ଣଚ୍ଛେଦ ପଡ଼ିଥାନ୍ତା। କିନ୍ତୁ ସେ ଦିନ ସନ୍ଧ୍ୟାରେ ବୋଧହୁଏ ମୁଁ ଖୁବ୍ ଭଲ ଖେଳିଥିଲି ଓ ବୋଧହୁଏ ଶ୍ରୀ ମହାନ୍ତିଙ୍କର ଯୋଗ ଭଲ ନଥିଲା। ମୁଁ ଜିତିଗଲି। ମୁଁ ରାତାରାତି ହଷ୍ଟେଲ-ବିଖ୍ୟାତ ହେଲି। ପୂର୍ବ ଚମ୍ପିୟନ୍‌ଙ୍କ ସହିତ ଖେଳିଥିବାରୁ ଆଉ ମାତ୍ର ଗୋଟିଏ ରାଉଣ୍ଡ ଖେଳ ଥିଲା। ସେଥିରେ ହାରିଲି। କିନ୍ତୁ ମାତ୍ର ଦୁଇ ବାଜି ଖେଳି ମୁଁ ଦ୍ୱିତୀୟ ପୁରସ୍କାର ପାଇବାର କୃତିତ୍ୱ ଲାଭକଲି।

ଏ ପୁରସ୍କାରଟି ମୋ ପକ୍ଷରେ ଥିଲା ତିରସ୍କାର। ହଷ୍ଟେଲ ପୁରସ୍କାର ବିତରଣ ଦିନ ବାହାରିଆ ବିଶିଷ୍ଟ ଭଦ୍ରଲୋକମାନଙ୍କୁ ନିମନ୍ତ୍ରଣ କରାଯାଏ। ଆମର ଗଣିତ ଅଧ୍ୟାପକମାନେ ମଧ୍ୟ ନିମନ୍ତ୍ରିତ ହୋଇ ଆସିଥିଲେ। ମୁଁ ଯେତେବେଳେ କେରମ୍ ପ୍ରତିଯୋଗିତାରେ ଦ୍ୱିତୀୟ ସ୍ଥାନ ଅଧିକାର କରିଥିବାରୁ ଗୋଟିଏ ପିତ୍ତଳର ବଂଶୀ ଓ ଅନ୍ୟ କେତେ ଜିନିଷ ପୁରସ୍କାର ପାଇଲି, ସମସ୍ତେ ଅବଶ୍ୟ ସେତେବେଳେ କରତାଳି ଦେଲେ। କିନ୍ତୁ ତହିଁ ଆରଦିନ ଗଣିତର ମୁଖ୍ୟ ଅଧ୍ୟାପକ ଶ୍ରୀଯୁକ୍ତ ଶାରଦାକାନ୍ତ ଗାଙ୍ଗୁଲି ଅନର୍ସ କ୍ଲାସରେ କହିଲେ, ତୁମେ ଖେଳାବୁଲାରେ ବେଶି ମନ ଦେଉଛ, ତେଣୁ ତୁମର ପଢ଼ାଶୁଣା ଭଲ ହେଉନାହିଁ।

ଏହା ତାଙ୍କର ଧାରଣା ଥିଲା, କିନ୍ତୁ ମୁଁ ପାଠ ଲୋକସାନ କରି ଖେଳରେ ଅଯଥା ସମୟ ନଷ୍ଟ କରି ନଥିଲି। ମାତ୍ର ସେତେବେଳେ କୌଣସି କୈଫିୟତ୍ ଦେବାର ବା ଆତ୍ମସମର୍ଥନ କରିବାର ଉପାୟ ନ ଥିଲା।

ସେ ସମୟରେ ପୂର୍ବ ଛାତ୍ରାବାସରେ ସମ୍ବଲପୁରୀ ଛାତ୍ରମାନଙ୍କର ସଂଖ୍ୟାଗରିଷ୍ଠତା ଯୋଗୁଁ ପ୍ରାଧାନ୍ୟ ଥିଲା । ସମ୍ବଲପୁରୀ ସଂଜ୍ଞାରେ ବଲାଙ୍ଗିର, ସୁନ୍ଦରଗଡ଼, ବାମଣ୍ଡା, ରେଢ଼ାଖୋଲ ଆଦି ଗଡ଼ଜାତ ଅଞ୍ଚଳର ଛାତ୍ରମାନେ ମଧ୍ୟ ଅନ୍ତର୍ଭୁକ୍ତ । ଅନ୍ୟ ଛାତ୍ରମାନଙ୍କ ସହିତ ସମ୍ବଲପୁରୀ ଛାତ୍ରମାନଙ୍କର ଅନେକ ବିଷୟରେ ପ୍ରତିଯୋଗିତା ହୁଏ ଓ କେବେ କେବେ ସଂଘର୍ଷ ମଧ୍ୟ ହୁଏ । ମୋର ମନେଅଛି, ୧୯୩୪ ଜୁଲାଇ ମାସରେ ଯେତେବେଳେ ହଷ୍ଟେଲର ସେକ୍ରେଟେରୀ, ମେସ୍ ସେକ୍ରେଟେରୀ ଆଦି ବିଭିନ୍ନ ପଦ ପାଇଁ ଭୋଟ ହୁଏ, ସେତେବେଳେ ଆମ ସମ୍ବଲପୁରୀ ଦଳ ସବୁ ସ୍ଥାନ ଦଖଲ କରିଗଲେ । ଶ୍ରୀ ବସନ୍ତ କୁମାର ଶତପଥୀ ମୟୂରଭଞ୍ଜର ଛାତ୍ର-ଆମଠାରୁ ବର୍ଷେ ପଛରେ ପଢୁଥାନ୍ତି । ଉପକୂଳ ଅଞ୍ଚଳର ଗଡ଼ଜାତରୁ ଆସିଥିବାରୁ ଭୋଟରେ ଜିଣିବା ତାଙ୍କ ପକ୍ଷରେ କଠିନ ଥିଲା । କୌଣସି ପଦବୀ ପାଇଁ ସେ ନିଜର ନାମ ପ୍ରସ୍ତାବ କରି ଏକ ହାସ୍ୟରୋଳ ସୃଷ୍ଟି କଲେ । ସେ ନିଜ ନାମ ପ୍ରସ୍ତାବ କଲା ପରେ, ତାଙ୍କର ପ୍ରତିଦ୍ୱନ୍ଦ୍ୱୀ ଆଉ କେହି ବାହାରିଲେ ନାହିଁ ଓ ସେ ନିର୍ଦ୍ୱନ୍ଦ୍ୱରେ ନିର୍ବାଚିତ ହେଲେ ।

ସଂସ୍କୃତ ବିଭାଗରେ ତିନି ଜଣ ଅଧ୍ୟାପକ ଥିଲେ । ସେମାନଙ୍କ ମଧ୍ୟରୁ ଶ୍ରୀଯୁକ୍ତ ଆର୍ତ୍ତବଲ୍ଲଭ ମହାନ୍ତିଙ୍କର ନାମ ଆମେ ସ୍କୁଲ ପଢ଼ା ଅବସ୍ଥାରୁ ଜାଣିଥିଲୁ । ସେ ଓ ଶ୍ରୀ ଲକ୍ଷ୍ମୀକାନ୍ତ ଚୌଧୁରୀ ପୂର୍ବରୁ ଆମକୁ ଆଇ.ଏସ୍‌ସି.ରେ ଓଡ଼ିଆ ପଢ଼ାଉଥିଲେ । ଶ୍ରୀଯୁକ୍ତ କାଶୀନାଥ ଦାସ ବୋଧହୁଏ ସମଗ୍ର କଲେଜରେ ଜଣେ ଅବିସ୍ମରଣୀୟ ଅଧ୍ୟାପକ ଥିଲେ । ତାଙ୍କ ନାମକୁ କେନ୍ଦ୍ର କରି ଅନେକ କିମ୍ବଦନ୍ତୀ ଗଢ଼ିଉଠିଥିଲା । ସେଥିପାଇଁ ତାଙ୍କର ପ୍ରସାଦ ଲାଭ କରିବା ପାଇଁ ବହୁ ଛାତ୍ର ତୋଷାମୋଦର ଆଶ୍ରୟ ନେଉଥିଲେ । ତାଙ୍କୁ ପ୍ରସନ୍ନ କରି ପାରୁଥିଲେ । ଲକ୍ଷ୍ମୀକାନ୍ତ ବାବୁଙ୍କର ସଙ୍ଗୀତରେ ଗଭୀର ଅନୁରାଗ ଥିଲା । ଆମେ ପଢୁଥିବା ବେଳେ ସେ ୧୯୩୩ ବା ୧୯୩୪ ମସିହାରେ ଅଳ୍ପ ବୟସରେ ଟାଇଫଏଡ୍ ରୋଗରେ ପ୍ରାଣ ହରାଇଲେ । ତାଙ୍କର ମୃତ୍ୟୁ ପରେ କଟକ ସହରରେ ଲକ୍ଷ୍ମୀକାନ୍ତ ସଙ୍ଗୀତ ବିଦ୍ୟାଳୟ ନାମକ ଏକ ଅନୁଷ୍ଠାନ ପ୍ରତିଷ୍ଠିତ ହେଲା ।

ଦର୍ଶନ ଓ ତର୍କଶାସ୍ତ୍ର ବିଭାଗର ଅଧ୍ୟାପକ ମୋହିନୀମୋହନ ସେନାପତି ଓ ଅଧ୍ୟାପକ ବିପିନ ବିହାରୀ ରାୟଙ୍କର ନାମ ଉଲ୍ଲେଖଯୋଗ୍ୟ । ବିପିନ ବାବୁ ଆମ୍ଭମାନଙ୍କୁ ତର୍କଶାସ୍ତ୍ର ପଢ଼ାଉଥିଲେ ।

ସେ ଯୁଗରେ ମୋଟରଗାଡ଼ିର ପ୍ରଚଳନ ଆରମ୍ଭ ହୋଇ ନ ଥାଏ । ଆମର ବରିଷ୍ଠ ଅଧ୍ୟାପକମାନେ ସାଧାରଣତଃ ଘୋଡ଼ାଗାଡ଼ିରେ କଲେଜକୁ ଆସନ୍ତି । ଗୋଟିଏ ଗୋଟିଏ ଗାଡ଼ିରେ ଦୁଇଟି ଲେଖାଏଁ ଗଧଠାରୁ ଟିକିଏ ଉଚ୍ଚ ଘୋଡ଼ା । ସେ ପ୍ରକାର ଘୋଡ଼ାଗାଡ଼ି ସେ ସମୟରେ କଟକ ସହରରେ ବୋଧହୁଏ ଆଭିଜାତ୍ୟର ପରିଚାୟକ ଥିଲା ।

ଅଧ୍ୟାପକମାନଙ୍କର କମନ୍‌ରୁମରେ ଅବସର ସମୟରେ ଅଧ୍ୟାପକମାନେ ପଶାଖେଳ

ହୁଏ । ସେତେବେଳେ ସୁଦ୍ଧା ତାହା ଆମକୁ ମୋଟେ ଭଲ ଲାଗୁ ନଥିଲା । ଅବଶ୍ୟ ସେତେବେଳେ ପରିଜା ସାହେବ ଏକ ବିଶିଷ୍ଟ ବୈଜ୍ଞାନିକରୂପେ ଗବେଷଣା ଜଗତରେ ଖ୍ୟାତିଲାଭ କରିଥିଲେ । ରସାୟନ ଓ ପଦାର୍ଥ ବିଜ୍ଞାନର ବିଜ୍ଞାନାଗାରମାନଙ୍କରେ ଗବେଷଣା ଚାଲୁଥାଏ । ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ପ୍ରାଚୀଗ୍ରନ୍ଥମାଳା ସଙ୍କଳନ କରି ଅନେକ ଗବେଷଣାତ୍ମକ ଲେଖା ଲେଖୁଥିଲେ ।

୧୯୩୫ ମସିହାରେ ବି.ଏ. ଅନର୍ସ ପରୀକ୍ଷା ଦେବା ସମୟରେ ମୁଁ ଏକ ଗୁରୁତର ଦୁର୍ଯୋଗର ସମ୍ମୁଖୀନ ହେଲି । ମୁଁ ସେ ସମୟରେ ପୂର୍ବ ଛାତ୍ରାବାସରେ ଜଣକିଆ କୋଠରିରେ ଥାଏଁ । ଭଲ ଭାବରେ ପଢ଼ିପାରିବି ବୋଲି ଭାବି, ପରୀକ୍ଷାର କିଛିଦିନ ପୂର୍ବରୁ କୋଠରିରେ ବିଜୁଳି ବଲ୍‌ବଟି ବଦଳାଇ ଏକ ଉଜ୍ଜ୍ୱଳ ବଲ୍‌ବ ଖଞ୍ଜିଲି । କିନ୍ତୁ ହିତେ ବିପରୀତ ହେଲା ପରିଣାମ କ୍ଷତିକାରକ ହେଲା । ପରୀକ୍ଷାର ଦିନେ ଦୁଇଦିନ ପୂର୍ବରୁ ମୁଣ୍ଡର ପଛପଟରେ ଭୟଙ୍କର ବ୍ୟଥା ଅନୁଭବ କଲି । ଦିନରାତି ଭୀଷଣ ଅସ୍ୱସ୍ତି ବୋଧକଲି । ଏହାସତ୍ତ୍ୱେ ମୁଁ ପରୀକ୍ଷାରେ ବସିଲି । କିନ୍ତୁ ଅନର୍ସ ପରୀକ୍ଷା ପ୍ରଶ୍ନର ଉତ୍ତରମାନ ସ୍ଥିର କରିପାରିଲି ନାହିଁ । ଏ ବ୍ୟାଥା ଯେ ଚକ୍ଷୁଦୋଷର ଲକ୍ଷଣ ଓ ଚକ୍ଷୁ ପରୀକ୍ଷା କରି ଚଷମା ସଙ୍ଗେ ସଙ୍ଗେ ବ୍ୟବହାର କରିଥିଲେ ହୁଏତ ଯନ୍ତ୍ରଣାର ଉପଶମ ହୋଇଥାନ୍ତା-ଏ ଧାରଣା ମୁଁ କରିପାରିଲି ନାହିଁ । ଏହା ଅତିରିକ୍ତ ପରିଶ୍ରମର ଫଳ; ଏଣୁ ଏହା ସ୍ୱାଭାବିକ ବୋଲି ଭାବି ଡାକ୍ତରମାନଙ୍କର ପରାମର୍ଶ ମଧ୍ୟ ନେଲି ନାହିଁ ବା କୌଣସି ପ୍ରତିଷେଧ ବା ପ୍ରତିକାର ବ୍ୟବସ୍ଥା କଲି ନାହିଁ । ଫଳରେ ଅନର୍ସ କଟୁଁ କଟୁଁ ରହିଗଲା ଅର୍ଥାତ୍ ଫଳ ଅତି ଅସନ୍ତୋଷଜନକ ହେଲା ।

ମୁଁ ଦୁଃଖିତ ହେଲି, ମାତ୍ର ବିଚଳିତ ହୋଇ ନଥିଲି । ଶ୍ରମର ଫଳ ପାଇଲି ନାହିଁ । ବୋଧହୁଏ ଏକ ଗୃହସ୍ଥର ବୋଝ ବୋହି, ଅଧ୍ୟୟନରେ ସଫଳ ହେବା ମୋ ପକ୍ଷରେ ସେତେବେଳେ ସମ୍ଭବ ନଥିଲା । ଗଣିତରେ ଅଧିକ ନମ୍ବର ପାଇବା ସମ୍ଭବ ବୋଲି ମୁଁ ଗଣିତରେ ଅନର୍ସ ନେଇଥିଲି । ମାତ୍ର ଭଲ ନମ୍ବର ପାଇବା ତ ଦୂରର କଥା, ଫାଷ୍ଟକ୍ଲାସ୍ ମଧ୍ୟ ପାଇପାରିଲି ନାହିଁ ।

ମୋର ଅନ୍ୟ ବାଲ୍ୟବନ୍ଧୁମାନଙ୍କ ମଧ୍ୟରୁ ରାଜାରାମ ବି.ଏ. ଅର୍ଥନୀତିରେ ଅନର୍ସ ସହିତ ଭଲ ପାସ୍ କଲେ । ସେ ଥରେମାତ୍ର ଆଇ.ଏସ୍‌ସି ପରୀକ୍ଷା ଦେଲେ, ମାତ୍ର ସେଥିରେ ଭଲ କରିପାରିଲେ ନାହିଁ । ଶଶିଭୂଷଣ ଆଇ.ଏସ୍‌ସି. ପାସ୍ କଲା ପରେ କଲିକତାକୁ ଯାଇ ସେଠାରେ ବି.ଏସ୍‌ସି. ଓ ଓକିଲାତି ପଢ଼ିଲେ । ତାରାପ୍ରସାଦଙ୍କର ପିତା ବ୍ୟବସାୟୀ ଥିଲେ । ତାରାପ୍ରସାଦ ଆଇ.ଏସ୍‌ସି. ପରେ ଧାନବାଦ ସ୍କୁଲ ଅଫ୍ ମାଇନସ୍‌କୁ ଭୂତତ୍ତ୍ୱ ଶିକ୍ଷାପାଇଁ ଗଲେ । ଏ ଦୁଇ ବନ୍ଧୁ ଆଇ.ଏସ୍‌ସି. ପରୀକ୍ଷାରେ ପ୍ରଥମଶ୍ରେଣୀ ପାଇ ନଥିଲେ ସୁଦ୍ଧା ଭଲ କରିଥିଲେ । ସତ୍ୟଗୋପାଳ ଆମ ସଙ୍ଗେ ବି.ଏ. ପଢ଼ିଲେ-ବୋଧହୁଏ ଇତିହାସ ଓ ସଂସ୍କୃତ ନେଇ । ସେ କଲେଜରେ ସାଧାରଣ ଛାତ୍ର ଥିଲେ । ମାତ୍ର ସାହିତ୍ୟରେ ତାଙ୍କର ବେଶ୍ ଆଗ୍ରହ ଥିଲା ।

ମୁଁ ଓକିଲ ହେବାକୁ ନିକର କୀବିକାର ଆଦର୍ଶ ବାଛି ନେଇଥିଲି । ତହିଁର ପ୍ରସ୍ତୁତି ସ୍ୱରୂପ ମୁଁ କଲେଜର ସବୁ ତର୍କସଭାରେ ଯୋଗ ଦେଉଥିଲି । ଭବିଷ୍ୟତରେ ଭଲ ସ୍ୱାଧୀନତା ସଂଗ୍ରାମୀ ହେବାର ଲକ୍ଷଣମାନ ଶ୍ରୀ ପବିତ୍ରମୋହନ ପ୍ରଧାନଙ୍କଠାରେ ମଧ୍ୟ ଥିଲା । ସେ ମଧ୍ୟ ତର୍କସଭାମାନଙ୍କରେ ଯୋଗ ଦେଉଥିଲେ । ସାଧାରଣ ଜ୍ଞାନରେ ମଧ୍ୟ ମୁଁ ଟିକିଏ ଅସାଧାରଣ ଥିଲି ।

ସେ ଯୁଗରେ ପଢ଼ାଖର୍ଚ୍ଚ କମ୍ ଥିଲା । ମାସିକ ଚାଳିଶ ଟଙ୍କାରେ ଅଧିକାଂଶ ଛାତ୍ର ହଷ୍ଟେଲରେ ରହି ଚଳି ଯାଉଥିଲେ । ବାହାରେ ମେସ୍ ଆଦିରେ ରହିଲେ ଖର୍ଚ୍ଚ ଆହୁରି କମ୍ ପଡ଼ୁଥିଲା । ମୁଁ ଆଇ.ଏସ୍‌ସି.ରେ ମାସିକ କୋଡ଼ିଏ ଟଙ୍କା ଲେଖାଏଁ ଓ ବି.ଏ. ପଢ଼ିଲାବେଳେ ପ୍ରାଦେଶିକ ବୃତ୍ତି ମାସିକ ପଚାଶ ଟଙ୍କା ଲେଖାଏଁ ପାଉଥିଲି । ସେଥିପାଇଁ ଘରୁ ଅଳ୍ପଖର୍ଚ୍ଚ ନେବାକୁ ପଡ଼ୁଥିଲା । ଅବଶ୍ୟ ସେ ସମୟରେ ମାସିକ ଚାଳିଶ ଟଙ୍କା ପିଲାଙ୍କ ପଢ଼ାପାଇଁ ଯୋଗାଇବା ସାଧାରଣ ଚାଷୀଙ୍କ ପକ୍ଷେ ସହଜ ନଥିଲା ।

୧୯୩୫ ମସିହାରେ ମୁଁ ସଂସ୍କୃତର ଶେଷ ପରୀକ୍ଷା ଦେବାପାଇଁ ବଲାଙ୍ଗିର ଗଲି । ଶେଷ ପରୀକ୍ଷାରେ ଅଳଙ୍କାର ଓ କାବ୍ୟ ଉପରେ ପ୍ରବନ୍ଧ ଲେଖିବାକୁ ପଡ଼େ । ମୋର ପ୍ରବନ୍ଧଟି ଭଲ ହୋଇଥଲା ବୋଲି ମୋର ବିଶ୍ୱାସ । ସେ ବର୍ଷ ମୁଁ ପାସ୍‌କରି 'ସାହିତ୍ୟାଚାର୍ଯ୍ୟ' ଉପାଧି ଲାଭକଲି । ନିୟମିତ କଲେଜ ପାଠ ପଢ଼ି ବି.ଏ. ପାସ୍ କରିବା ସଙ୍ଗେ ସଙ୍ଗେ ଏଥର ସଂସ୍କୃତ ପରୀକ୍ଷାମାନଙ୍କରେ ଉତ୍ତୀର୍ଣ୍ଣ ହୋଇ ସର୍ବୋଚ୍ଚ ଉପାଧି ଲାଭ କରିବା ସେ ସମୟରେ ଥିଲା ଏକ ଅସାଧାରଣ କୃତିତ୍ୱ ।

ମୋର ଯୌବନର ଉନ୍ମେଷ ହୋଇଛି କଟକରେ । ମୋର ଛାତ୍ରାଜୀବନରେ କୃତିତ୍ୱର ସର୍ବୋଚ୍ଚ ସୀମାକୁ ମୁଁ ପହୁଞ୍ଚି ପାରିଥିଲି କଟକରେ । ଛାତ୍ରଜୀବନର ସେ ଚାରି ବର୍ଷର ସ୍ମୃତି ମୋ ପକ୍ଷରେ ଏକ ଅମୂଲ୍ୟ ସମ୍ପଦ । ମହାନଦୀ ଓ କାଠଯୋଡ଼ି ଯେପରି ଦୁଇ ବାହୁରେ ଏ ନଗରକୁ ଆଲିଙ୍ଗନ କରି ରହିଛନ୍ତି-ଏହାକୁ ରକ୍ଷା କରିଛନ୍ତି, ଏହାକୁ ସମୃଦ୍ଧ କରିଛନ୍ତି । କେତେବେଳେ ସହରଟି ଏ ଆଲିଙ୍ଗନରେ ରୁଦ୍ଧଶ୍ୱାସ ହୁଏ-ମାତ୍ର କ୍ଷଣକ ପାଇଁ । କଟକର ଇତିହାସ ବହୁ ଶତାବ୍ଦୀ ଧରି ଓଡ଼ିଶାର ଇତିହାସକୁ ପ୍ରଭାବିତ କରି ଆସିଛି ।

କଟକର ଇତିହାସରେ ଉତ୍‌ଥାନ ପତନ ପରି ମୋ ଜୀବନରେ ମଧ୍ୟ କେତେ ଉତ୍‌ଥାନ ପତନ ହୋଇଛି । ମୁଁ କଟକରେ ପଢୁଥିଲା ବେଳେ କଟକର ଐତିହାସିକ ଦୁର୍ଗ ଭାଙ୍ଗିରୁଜି ଯାଇଥିଲା । କଟକ ଥିଲା ଏକ ପ୍ରଦେଶର ଏକ ଡିଭିଜନର ପ୍ରଧାନ ସହର । ବାବନ ବଜାର ତେପନ ଗଳିରେ ବହୁତଳ ଗୃହ ନଥିଲା । ସେଟା ଥିଲା ସମ୍ଭବତଃ ଭାରତବର୍ଷର ଏକ ବୃହତ୍ ଗ୍ରାମ । ଏହାର ବହୁବର୍ଷ ପରେ କଟକର ବହୁ ଉନ୍ନତି ହେଲା ପରେ ମଧ୍ୟ ପ୍ରସିଦ୍ଧ ଉପନ୍ୟାସକାର

ସୁରେନ୍ଦ୍ର ମହାନ୍ତି ଅତି ସ୍ନେହରେ କଟକକୁ ଭାରତର ସବୁଠାରୁ ବଡ଼ ଗାଆଁ ବୋଲି ବର୍ଣ୍ଣନା କରିଥିଲେ । ଉଚ୍ଚତର ଶିକ୍ଷାର ପର୍ଯ୍ୟାପ୍ତ ସୁବିଧା ଥିଲେ ହୁଏତ କଟକରେ ମୋର ଛାତ୍ରଜୀବନ ଚାରିବର୍ଷରେ ଶେଷ ହୋଇ ନଥାନ୍ତା ।

ସେତେବେଳେ କଟକରେ କେବଳ ଇଂରେଜୀରେ ଏମ୍.ଏ.ପଢ଼ା ହେଉଥିଲା । ମାତ୍ର ପାଟନା କଲେଜର ତୁଳନାରେ ପରୀକ୍ଷା ଫଳାଫଳ ଭଲ ହେଉନଥିଲା । ଓଡ଼ିଶାର ଅନେକ ପିଲା ସେଥିପାଇଁ ଉଚ୍ଚତର ଶିକ୍ଷା ପାଇଁ ପାଟନାକୁ ଯାଉଥିଲେ ।

ସମ୍ବଲପୁରରୁ ସେ ସମୟରେ ରେଳବାଟେ କଟକକୁ ଯିବାକୁ ପଡ଼ୁଥିଲା । ସମ୍ବଲପୁରରୁ କଟକର ଦୂରତ୍ୱ ଓ ପାଟନାର ଦୂରତ୍ୱ ମଧ୍ୟରେ ବିଶେଷ ପାର୍ଥକ୍ୟ ନଥିଲା । ବରଂ ସେତେବେଳେ ସମ୍ବଲପୁରରୁ କଟକକୁ ଛାତ୍ର ରିହାତିରେ ଟିକେଟ୍ ପାଞ୍ଚଟଙ୍କା ପଡ଼ୁଥିବା ସ୍ଥଳେ, ସମ୍ବଲପୁରରୁ ପାଟନାକୁ ଟିକେଟ୍ ପଡ଼ୁଥିଲା ସାଢ଼େ ଚାରିଟଙ୍କା ମାତ୍ର ।

ମୁଁ ସ୍ନାତକୋତ୍ତର ଶିକ୍ଷାପାଇଁ ପାଟନାକୁ ଯିବାକୁ ସ୍ଥିର କଲି । ଓକିଲାତି କରିବା ମୋର ଜୀବନର ଲକ୍ଷ୍ୟ ଥିଲା, ଓକିଲାତିରେ ଇଂରେଜୀ ଭାଷାରେ ଦକ୍ଷତା ବିଶେଷ ପ୍ରୟୋଜନୀୟ ଥିବାରୁ ମୁଁ ଇଂରେଜୀରେ ଏମ୍.ଏ. ପଢ଼ିବା ପାଇଁ ସ୍ଥିର କଲି ।



---

*ମଧ୍ୟମ ପୁରୁଷ*, କଟକ ଲେଖକ ସହଯୋଗ ସମିତି ଲିଃ.,
କଟକ, ୧୯୮୨

# ରେଭେନ୍‌ସା କଲେଜରେ ଅଧ୍ୟୟନ

## କହ୍ନେଇ ଚରଣ ସ୍ୱାଇଁ

ପାଟନା ବିଶ୍ୱବିଦ୍ୟାଳୟରୁ ମାଟ୍ରିକ ପରୀକ୍ଷା ଫଳ ପ୍ରକାଶ ପାଇଲା ଜୁନ୍ ମାସରେ । ଖବର କାଗଜରୁ ଦେଖିଲି ମୁଁ ପ୍ରଥମ ଶ୍ରେଣୀରେ ରେଭେନ୍‌ସା କଲେଜିଏଟ୍ ସ୍କୁଲରୁ ମାଟ୍ରିକ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଛି । ବୃତ୍ତି ତ ନିଶ୍ଚୟ ମିଳିବ, ତେବେ କେତେ ଟଙ୍କିଆ ବୃତ୍ତି ମିଳିବ ତାହା ଜଣା ପଡ଼ି ନଥାଏ । ବୃତ୍ତିଫଳ ବାହାରିବାକୁ ଆଉ କିଛି ସମୟ ଲାଗିବ । କିନ୍ତୁ ଏଣେ ଜୁଲାଇ ମାସ ପ୍ରଥମ ସପ୍ତାହରେ କଲେଜରେ ନାମ ଲେଖାଇବା କଥା । ନାମଲେଖା ପାଇଁ ଅନ୍ତତଃ ୫୦/୬୦ ଟଙ୍କା ପଡ଼ିବ; ପୁଣି କଲେଜ ହଷ୍ଟେଲ୍‌ରେ ରହିବା କଥା ତ ସ୍ୱପ୍ନ, କେଉଁଠି ମେସ୍‌ରେ ରହି ପଡ଼ିବାକୁ ହେବ । ପ୍ରଥମ କଥା ହେଲା ନାମଲେଖା ପାଇଁ ପଇସା ଆସିବ କେଉଁଠୁ ?

ଶୁଣିବାକୁ ପାଇଲି ସେ ସମୟରେ ରେଭେନ୍‌ସା କଲେଜର ବଟାନୀ ଅଧ୍ୟାପକ ଡକ୍ଟର ପ୍ରାଣକୃଷ୍ଣ ପରିଜା ବହୁ ଦରିଦ୍ର ଓ ମେଧାବୀ ଛାତ୍ରମାନଙ୍କୁ ସାହାଯ୍ୟ ଦେଉଥିଲେ ଓ ଏହି ବଦାନ୍ୟତା ପାଇଁ ତାଙ୍କ ନାମ ସାରା ଓଡ଼ିଶାରେ ପ୍ରସିଦ୍ଧି ଲାଭ କରିଥିଲା । ମୁଁ ଦିନେ ସମସ୍ତ ସାହସ ସଂଚୟ କରି ପରିଜା ସାହେବଙ୍କ ନିକଟକୁ ଯାଇ ମୋର ଆର୍ଥିକ ଅବସ୍ଥା କଥା କୁହନ୍ତେ ସେ ମୋତେ ହସି ହସି ଅତି ସ୍ନେହର ସହିତ ପଚାରିଲେ, "ତୁମେ କେଉଁ ଶ୍ରେଣୀରେ ପାସ୍ କରିଛ ?" ମୁଁ ସଙ୍ଗେ ସଙ୍ଗେ ଉତ୍ତର ଦେଲି, "ପ୍ରଥମ ଶ୍ରେଣୀରେ ।" "ତାହେଲେ ତୁମର ଆଉ ଅସୁବିଧା କ'ଣ ? ବୃତ୍ତି ନ ନିଶ୍ଚୟ ପାଇବ । କଲେଜରେ ଶୀଘ୍ର ନାମ ଲେଖାଇଦିଅ ।" ମୁଁ ଅତି ନମ୍ର ଓ ବିନୀତ ଭାବରେ ଉତ୍ତର ଦେଲି, "ସାର୍, ନାମ ଲେଖାଇପାରିବା ପାଇଁ ମୋ ପାଖରେ ପଇସା ନାହିଁ, ମୋର ଆର୍ଥିକ ଅବସ୍ଥା ଆଦୌ ସ୍ୱଚ୍ଛଳ ନୁହେଁ । ତେଣୁ ଆପଣଙ୍କ ଠାରୁ କିଛି ସାହାଯ୍ୟ ଆଶାରେ ଆସିଛି ।" ସେ ଆଉ କିଛି ନ କରି ମୋତେ ସଙ୍ଗେ ସଙ୍ଗେ ୧୦ଟି ଟଙ୍କା ବଢ଼ାଇ ଦେଇ କହିଲେ, "ଯାଅ, ଆଉ କିଛି ଟଙ୍କା ଯୋଗାଡ଼ କରି ନାମ ଲେଖାଇଦିଅ । ବୃତ୍ତି ଫଳ ବାହାରିଲେ ତୁମର କଲେଜର ପଶ୍ଚିମ ଛାତ୍ରାବାସରେ ରହିବାର ବନ୍ଦୋବସ୍ତ ମୁଁ କରିଦେବି ।" ପ୍ରକାଶ ଥାଉକି ପରିଜାସାହେବ ସେତେବେଳେ ପଶ୍ଚିମ ଛାତ୍ରାବାସର ତତ୍ତ୍ୱାବଧାରକ ଥିଲେ । ତାଙ୍କ ଠାରୁ

୧୦ଟଙ୍କା ପାଇ ଏବଂ ଆଉ କିଛି ପଇସା ଯୋଗାଡ଼ କରି ରେଭେନ୍‌ସା କଲେଜରେ ପ୍ରଥମ ବାର୍ଷିକ କଳାରେ ବାଧ୍ୟତାମୂଳକ ଇଂରାଜୀ ଓ ଓଡ଼ିଆ ସହିତ ଗଣିତ, ଲଜିକ୍ ଓ ସଂସ୍କୃତ ବିଷୟ - ଏହି ତିନୋଟି ଅତିରିକ୍ତ ବିଷୟ ସହିତ ନାମ ଲେଖାଇଥିଲି। ପରିଜାସାହେବଙ୍କର ଅନୁଗ୍ରହ ଓ ସାହାଯ୍ୟରେ କଲେକରେ ପଶ୍ଚିମ ଛାତ୍ରାବାସରେ ରହିଲି। ମୋର ବହୁଦିନର ସ୍ୱପ୍ନ 'କଲେଜ ପଢ଼ା' ଆଦି ସଫଳ ହେଲା।

ସେତେବେଳେ ଛାତ୍ରାବାସରେ କ, ଖ, ଗ ଏହିପରି ତିନିପ୍ରକାର ମେସ୍ ଥାଏ। 'କ' ଶ୍ରେଣୀ ମେସ୍‌ରେ ସମୃଦ୍ଧିସମ୍ପନ୍ନ ଧନୀକ ଶ୍ରେଣୀର ଛାତ୍ରମାନେ ଓ 'ଖ' ଶ୍ରେଣୀ ମେସ୍‌ରେ ମଧ୍ୟବିତ୍ତ ପରିବାରର ଛାତ୍ରମାନେ ରହୁଥିଲେ। ଯେଉଁମାନଙ୍କର ଆର୍ଥିକ ଅବସ୍ଥା ଦୟନୀୟ ଓ ଅସ୍ୱଚ୍ଛଳ, ସେମାନେ 'ଗ' ଶ୍ରେଣୀ ମେସ୍‌ରେ ରହୁଥିଲେ। ମୋର ମାସକୁ କେବଳ ଖାଇବା ଖର୍ଚ୍ଚ ଛଅ ଟଙ୍କା କୋଡ଼ିଏ ପଇସା ପଡୁଥିଲା। ଛାତ୍ରାବାସରେ ଜଳଖିଆ ଖର୍ଚ୍ଚ ସ୍ୱତନ୍ତ୍ର। ଏହିପରି ସମୁଦାୟ ଖର୍ଚ୍ଚ ମାସିକ ପନ୍ଦର ଟଙ୍କା ମଧ୍ୟରେ ପଡୁଥିଲା। ମୁଁ ତ ପନ୍ଦର ଟଙ୍କା ଲେଖାଏଁ ବୃତ୍ତି ପାଉଥିଲି, ତା'ଛଡ଼ା ଆମ ମ୍ୟାନେଜର ମୋତେ ମାସିକ ପାଞ୍ଚ ଟଙ୍କା ଲେଖାଏଁ ବୃତ୍ତି ଦେଉଥିଲେ। ଏଇ କୋଡ଼ିଏ ଟଙ୍କାରେ ମୋର ହଷ୍ଟେଲ୍‌ର ସମସ୍ତ ଖର୍ଚ୍ଚ ଚଳିଯାଇ ସାମାନ୍ୟ ବଳୁଥିଲା। ସେଥିରେ ଛୁଟିରେ ଘରକୁ ଯିବା ଓ ଆସିବା, କେବେ କିପରି ଲୁଗାପଟା ଖଣ୍ଡେ କରିବା ଇତ୍ୟାଦି ହାତଖର୍ଚ୍ଚ ଚଳି ଯାଉଥିଲା। ଏ କଥା ଆଜିକାଲି କାହାଣୀ ଭଳି ମନେ ହେଉଥିବ। ମୋର ଗୋଟିଏ ଛୋଟ ନାତୁଣୀ ପାଇଁ ଏବେ ପ୍ରତି ମାସରେ ପ୍ରାୟ ହଜାରେ ଟଙ୍କା ଲେଖାଏଁ ଖର୍ଚ୍ଚ କରିବାକୁ ପଡୁଛି। ବାସ୍ତବିକ୍ ସେକାଳ ଓ ଏକାଳ ମଧ୍ୟରେ କେତେ ପ୍ରଭେଦ।

ସେତେବେଳେ ପଶ୍ଚିମ ଛାତ୍ରାବାସରେ ଶତ୍ରୁଘ୍ନ ନାଥ, ମନମୋହନ ମିଶ୍ର, ଦିବାକର ଶତପଥୀ ପ୍ରଭୃତି ମୋର ସହପାଠୀ ଥିଲେ। ଯା' ଭିତରେ ମୋର କେତେ ସହପାଠୀ ମରିଗଲେଣି। କିନ୍ତୁ ସେମାନେ ସମସ୍ତେ ଅତି ଆନନ୍ଦରେ ଓ ଗୋଟିଏ ପରିବାରରେ ରହିବା ଭଳି ଛାତ୍ରାବାସରେ ସମୟ ଅତିବାହିତ କରୁଥିଲେ। ଆମର ସେତେବେଳର ତତ୍ତ୍ୱାବଧାରକ ଥିଲେ ଅର୍ଥନୀତି ଅଧ୍ୟାପକ ବି.ଏନ୍. ରୋସ୍‌ତୋଗୀ, ଯେ ପରବର୍ତ୍ତୀ ସମୟରେ ବାଲେଶ୍ୱର କଲେକର ଅଧ୍ୟକ୍ଷ ହୋଇଥିଲେ। ସେତେବେଳେ ମୁଁ ବାଲେଶ୍ୱର ଜିଲ୍ଲା ସ୍କୁଲର ଶିକ୍ଷକ ଥିଲି ଏବଂ ତାଙ୍କ ଅଧୀନରେ ଚାକିରି କରିବାର ସୁଯୋଗ ପାଇଥିଲି। ପ୍ରାଣକୃଷ୍ଣ ପରିଜା ପଶ୍ଚିମ ଛାତ୍ରାବାସର ମୁଖ୍ୟ ତତ୍ତ୍ୱାବଧାରକ ବା ଓ୍ୱାର୍ଡେନ ଥିଲେ। ତାଙ୍କପରି ସ୍ନେହପ୍ରବଣ ଓ ଛାତ୍ରବତ୍ସଳ ତତ୍ତ୍ୱାବଧାରକ ଆଜିକାଲି ବିରଳ। ସେ ଛାତ୍ରାବାସର ପ୍ରତ୍ୟେକ ରୁମ୍‌କୁ ଯାଇ ଛାତ୍ରମାନଙ୍କର ବ୍ୟକ୍ତିଗତ ସୁବିଧା ଅସୁବିଧା ପଚାରି ବୁଝୁଥିଲେ ଓ ଦରିଦ୍ର ଛାତ୍ରମାନଙ୍କୁ ସାହାଯ୍ୟ କରୁଥିଲେ। ଛାତ୍ରାବାସରେ ରହଣି କାଳ ଅତ୍ୟନ୍ତ ଆନନ୍ଦଦାୟକ ଥିଲା।

୧୯୩୪ ମସିହାରୁ ୧୯୩୮ ମସିହା ପର୍ଯ୍ୟନ୍ତ ଦୀର୍ଘ ୪ ବର୍ଷ କାଳ ରେଭେନ୍ସା କଲେଜରେ ଅଧ୍ୟୟନ ଓ ପଶ୍ଚିମ ଛାତ୍ରାବାସରେ ରହଣି। ୧୯୩୬ ମସିହାରେ ପାଟନା ବିଶ୍ୱବିଦ୍ୟାଳୟ ତତ୍ତ୍ୱାବଧାନରେ ଆଇ.ଏ., ଆଇ.ଏସ୍‌ସି. ଓ ଆଇ.କମ୍. ପରୀକ୍ଷା ଅନୁଷ୍ଠିତ ହୋଇଥିଲା। ମୁଁ ସେହି ପରୀକ୍ଷାରେ ଅର୍ଥାତ୍ ଆଇ.ଏ.ରେ ଦ୍ୱିତୀୟ ଶ୍ରେଣୀ ପାଇ ମଧ୍ୟ ବୃତ୍ତି ଲାଭ କରିଥିଲି ଓ ସମଗ୍ର ବିଶ୍ୱବିଦ୍ୟାଳୟରେ ସଂସ୍କୃତରେ ପ୍ରଥମ ସ୍ଥାନ ଅଧିକାର କରିଥିବା ହେତୁ ଜଗନ୍ନାଥ ମହାମହୋପାଧ୍ୟାୟ ପୁରସ୍କାର ଲାଭ କରିଥିଲି। ଆଇ.ଏ. ପରୀକ୍ଷା ପରେ ମୁଁ ଏହି ରେଭେନ୍ସା କଲେଜରେ ବି.ଏ. ପଢ଼ିଲି। ବି.ଏ.ରେ ମୋର ବିଷୟ ଥିଲା ଇଂରାଜୀ ଅନର୍ସ, ଗଣିତ ଓ ସଂସ୍କୃତ। ସେତେବେଳେ ଖୁବ୍ କମ୍ ସଂଖ୍ୟକ ଛାତ୍ର ଇଂରାଜୀ ଅନର୍ସ ନେଇ ପଢ଼ୁଥିଲେ। ମୋ ସହିତ ବିଭୂତିଭୂଷଣ ତ୍ରିପାଠୀ ଏବଂ ମନମୋହନ ମିଶ୍ର ମଧ୍ୟ ଇଂରାଜୀ ଅନର୍ସ ନେଇଥିଲେ। ୧୯୩୮ ମସିହାରେ ଅନୁଷ୍ଠିତ ବି.ଏ. ପରୀକ୍ଷାରେ ଆମେ ୩ ଜଣ ଦ୍ୱିତୀୟ ଶ୍ରେଣୀ ଇଂରାଜୀ ଅନର୍ସରେ କୃତକାର୍ଯ୍ୟ ହେଲୁ। ମୋର ଯେତେଦୂର ମନେ ଅଛି ସେହି ବର୍ଷ ୭ ଜଣ ମାତ୍ର ଛାତ୍ର ବିହାର ଓଡ଼ିଶାରୁ ପାଟନା ବିଶ୍ୱବିଦ୍ୟାଳୟରୁ ଇଂରାଜୀ ଅନର୍ସରେ ପାସ୍ କରିଥିଲେ ଏବଂ କେହି ପ୍ରଥମ ଶ୍ରେଣୀ ପାଇ ନଥିଲେ। ଆଜିକାଲି ଶହ ଶହ ପିଲା ଇଂରାଜୀ ଅନର୍ସରେ ପାସ୍ କରୁଛନ୍ତି ଓ କେହି କେହି ପ୍ରଥମ ଶ୍ରେଣୀ ମଧ୍ୟ ପାଉଛନ୍ତି। ସେ କାଳରେ ଉତ୍ତର ଓଡ଼ିଶାରେ ରେଭେନ୍ସା କଲେଜ, ଦକ୍ଷିଣ ଓଡ଼ିଶାରେ ପାରଳାଖେମୁଣ୍ଡି କଲେଜ ଏହିପରି ଦୁଇଟି ମାତ୍ର କଲେଜ ଥିଲା। ଆଜି ତ ଛତୁ ଫୁଟିବା ଭଳି ଗାଁ ଗାଁରେ କଲେଜ, ହଜାର ହଜାର ପିଲା ପଢ଼ୁଛନ୍ତି। ବାସ୍ତବିକ୍ ସେ କାଳ ଓ ଏ କାଳ ମଧ୍ୟରେ କି ପ୍ରଭେଦ।

ବି.ଏ. ପରୀକ୍ଷା ଫଳ ପ୍ରକାଶନ ପରେ ମୁଁ ଆନନ୍ଦରେ ଆତ୍ମହରା ହୋଇପଡ଼ିଲି। ମୋର ବହୁ ବନ୍ଧୁ ଓ ହିତୈଷୀମାନେ ମୋର ଶୁଭକାମନା କରି ବଧାଇ ଜଣାଇଲେ। ବି.ଏ. ପରୀକ୍ଷା ଫଳ ପ୍ରକାଶ ପରେ ମୁଁ ଗାଆଁକୁ ଗଲି। ସେତେବେଳେ ଆମ ସେହି ପଟ୍ଟାମୁଣ୍ଡାଇ ଅଞ୍ଚଳର କୃତ୍ତିବାସ ସାମନ୍ତରାୟ କଲିକତା ବିଶ୍ୱବିଦ୍ୟାଳୟରୁ ଇଂରାଜୀ ଏମ୍.ଏ. ପାସ୍ କରି ରେଭେନ୍ସା କଲେଜରେ ଅଧ୍ୟାପକ ଥିଲେ। ପଟ୍ଟାମୁଣ୍ଡାଇ ପୋଲ ପାଖ ମହାଜନ ସାହିରେ କୃପାସିନ୍ଧୁ ପଣ୍ଡା ନାମକ ଜଣେ ବ୍ୟକ୍ତି ବି.ଏ. ପାସ୍ କରିଥିଲେ, କିନ୍ତୁ ସେ କୌଣସି ଚାକିରି କରି ନଥିଲେ। ମୁଁ ହେଉଛି ୩ୟ ବ୍ୟକ୍ତି ଯେ କି ଆମର ସେହି ଧୋୟା ଅଞ୍ଚଳରୁ ବି.ଏ. ପାସ୍ କରିଥିଲି। ମୋର ପାସ୍ ଖବର ଶୁଣି ମୋ ବାପା, ବୋଉ ଆନନ୍ଦରେ ଅଶ୍ରୁବର୍ଷଣ କରି ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କଲେ ଜିପରି ପୁଅ ଗୋଟିଏ ଚାକିରି କରି କିଛି ପଇସା ରୋଜଗାର କରି ଘରର ଅବସ୍ଥା ବଦଳାଉ।

•

***ଆତ୍ମଜୀବନୀ***, ଶ୍ରଦ୍ଧାଞ୍ଜଳି ସଂଖ୍ୟା, ୨୦୧୦

# ମୋ କଲେଜ କଥା

## ବନମାଳୀ ବାବୁ

୧୯୩୫ରେ ମୁଁ ରେଭେନ୍‌ସା କଲେଜକୁ ଗଲି ଏବଂ ୧୯୪୧ ପର୍ଯ୍ୟନ୍ତ ପଢ଼ିଲି । ଅଧିକାଂଶ ଅଧ୍ୟାପକ ବିଦେଶରୁ ଶିକ୍ଷିତ ହୋଇ ଫେରିଥିଲେ ଏବଂ ନିଜ ନିଜ ବିଷୟରେ ଅଧ୍ୟାପନାରେ ସୁଖ୍ୟାତି ଅର୍ଜନ କରିପାରିଥିଲେ । ମୋର ଅଧ୍ୟାପକ ଥିଲେ ପ୍ରିୟନାଥ ଦେ, କାଶୀନାଥ ଦାଶ, ଆର୍ତ୍ତବଲ୍ଲଭ ମହାନ୍ତି, ଲକ୍ଷ୍ମୀକାନ୍ତ ଚୌଧୁରୀ, କିଶୋରୀ ପ୍ରସନ୍ନ ସିହ୍ନା, ଘନଶ୍ୟାମ ଦାଶ, ପର୍ଶୁରାମ ମିଶ୍ର, ନାରାୟଣ ମିଶ୍ର, ଶ୍ୟାମାଚରଣ ତ୍ରିପାଠୀ, ଡକ୍‌ଟର ପରିଜା, ଏଚ୍.ଆର୍.ବାଥେଜା, ମୋହିନୀମୋହନ ସେନାପତି, ନିୟୋଗୀ, କୃପାନାଥ ମିଶ୍ର, ବିପିନ ବିହାରୀ ରାୟ, ଗିରିଜା ଦେ, ବଳଭଦ୍ର ପ୍ରସାଦ ପ୍ରମୁଖ । ସେହିପରି ମୋର ଆଇନ ଅଧ୍ୟାପକଙ୍କ ମଧ୍ୟରେ ପ୍ରସିଦ୍ଧ ଥିଲେ ଜଷ୍ଟିସ୍ ହରିହର ମହାପାତ୍ର, ଭଟ୍ଟାଚାର୍ଯ୍ୟ ଓ ବେନର୍ଜୀ । ମୁଁ ଉଭୟ ପ୍ରିଲିମିନେରୀ ଓ ଫାଇନାଲ "ଲ" ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରିଥିଲି । ପରୀକ୍ଷା ଖାତାରେ ମୋର ଉତ୍ତର ପରୀକ୍ଷକ ମାନଙ୍କୁ ଏପରି ସନ୍ତୁଷ୍ଟ କରିପାରିଥିଲା ଯେ ସେମାନେ ମୋତେ ପ୍ରତ୍ୟେକ ବିଷୟରେ ଶତକଡ଼ା ନବେ ନମ୍ବର ଦେବାକୁ ମଧ୍ୟ କୁଣ୍ଠାବୋଧ କରିନଥିଲେ । ମୋର କେତେ ଜଣ କଲେଜ ସାଥୀ ସହପାଠୀ ହେଲେ ବି.ବି. ତ୍ରିପାଠୀ ଆଇ.ଏ.ଏସ୍., ଆର୍.କେ ପାଢ଼ୀ ଆ.ପି.ଏସ୍, ଦାମୋଦର ଛୋଟରାୟ ଆଇ.ପି.ଏସ୍., ପ୍ୟାରୀମୋହନ ସାମନ୍ତରାୟ, ଆଇ.ଏ.ଏସ୍, ଗୋପାଳ ଦାଶ, ଆଇ.ଏ.ଏସ୍., ଶ୍ରୀ ପାଲାଜୀ ଆଇ.ପି.ଏସ୍., ଜଷ୍ଟିସ ସଚ୍ଚିଦାନନ୍ଦ ଆଚାର୍ଯ୍ୟ, ବୀରେନ୍ ମିତ୍ର (ମୁଖ୍ୟମନ୍ତ୍ରୀ) ସାଙ୍ଗକୁ ବିମ୍ବାଧର ପଣ୍ଡା, ଲଳିତ ପତି, ବିନୋଦ ନାୟକ, ରାମସ୍ୱାମୀ ସେନାପତି, ଭୁବନେଶ୍ୱର ବେହେରା, ପୂର୍ଣ୍ଣଚନ୍ଦ୍ର ମିଶ୍ର ଏବଂ ବିନୋଦ ନନ୍ଦ ପ୍ରମୁଖ ।

ମୋର ଘନିଷ୍ଠ ବନ୍ଧୁମାନଙ୍କ ଭିତରେ ଥିଲେ ମୁରଲୀଧର ପୂଜାରୀ, ଜଣେ ଅସାମାନ୍ୟ ଭଦ୍ରଲୋକ । ଶିଶୁପରି ସରଳ ତାଙ୍କର ହୃଦୟ । ତାଙ୍କ ମନରେ କାହାରି ପ୍ରତି ବିଦ୍ୱେଷ ନ ଥିଲା । ଅଠେଇଶ ବର୍ଷତଳେ ତାଙ୍କର ବିୟୋଗ ପର୍ଯ୍ୟନ୍ତ ସେ ମୋର ପ୍ରିୟତମ ବନ୍ଧୁ ହୋଇ ରହିଥିଲେ । ଡାକ୍ତର ଜନାର୍ଦ୍ଦନ ପୂଜାରୀଙ୍କ ଭାଇ ପ୍ରସନ୍ନ କୁମାର ପୂଜାରୀଙ୍କ ପୁଅ ଥିଲେ । ବନ୍ଧୁ ମୁରଲୀ ପୂଜାରୀର ମଧୁର ସ୍ମୃତି ସଦା ସତେଜ ହୋଇ ରହିଛି ।

ମୁଁ ଇଷ୍ଟ ହଷ୍ଟେଲରେ ରହୁଥିଲି । ଆମେ ପଶ୍ଚିମ ଓଡ଼ିଶା, ସିଂହଭୂମ, ଷଢ଼େଇକେଲା ଏବଂ ଗଞ୍ଜାମର ଛାତ୍ରମାନେ ଓଡ଼ିଶାର ସାଂସ୍କୃତିକ ରାଜଧାନୀ କଟକକୁ ବହୁତ ସମ୍ମାନ କରୁଥିଲୁଁ । କଟକର ସମସ୍ତ ବିଶିଷ୍ଟ ଲୋକଙ୍କ ଘରକୁ ଯାଇ ବ୍ୟକ୍ତିଗତ ଭାବରେ ଆମର ସମ୍ମାନ ଜଣାଉଥିଲୁ ।

ଆମେ ବାରବାଟୀ, ଚୌଦ୍ୱାରସ୍ଥିତ ଲକ୍ଷ୍ମୀନାରାୟଣ ସାହୁଙ୍କ ବାସଭବନ ମଧୁସୂଦନ ଦାସଙ୍କ ପରିତ୍ୟକ୍ତ ଉତ୍କଳ ଟେନେରୀ, ଉତ୍କଳମଣିଙ୍କ ସତ୍ୟବାଦୀ ପ୍ରେସ୍, ଭିକାରୀ ଚରଣ ପଟ୍ଟନାୟକ, ଗୋପାଳ ଚନ୍ଦ୍ର ପ୍ରହରାଜ, ବ୍ରଜସୁନ୍ଦର ଦାଶ ଏବଂ ତାଙ୍କର ମୁକୁର ପ୍ରେସ୍ ଓ ବିଶ୍ୱନାଥ କର ପ୍ରମୁଖଙ୍କ ଘରକୁ ଯାଇ ଓଡ଼ିଶାର ଏହି ବରପୁତ୍ର ମାନଙ୍କ ମହାନତା ସ୍ମରଣ କରିବାବେଳେ ଆମର ଆଖି ଓଦା ହୋଇଯାଉଥିଲା ।

ଓଡ଼ିଶାର ପ୍ରାଚୀନ ଗୌରବ, କଳା, ସ୍ଥାପତ୍ୟ, ସାଧବପୁଅ ଦରିଆପାରିକୁ ଯାଇ ବାଣିଜ୍ୟ କରି ଉପନିବେଶ ସ୍ଥାପନ, ଦକ୍ଷିଣ ଏସିଆ ଆଜିବି ଯେଉଁଠି ଓଡ଼ିଆ ଭାଷାର ସତ୍ତା ବିଦ୍ୟାମାନ ସେ ସବୁ ଆମର ଯୁବକମାନଙ୍କୁ ଆକର୍ଷିତ କରୁଥିଲା । ବନ୍ୟା ସମୟରେ ଡକ୍ଟର ପର୍ଶୁରାମ ମିଶ୍ରଙ୍କ ନେତୃତ୍ୱରେ କଟକ ଜିଲ୍ଲାର ବନ୍ୟାଅଞ୍ଚଳକୁ ଡଙ୍ଗାରେ ଯାଇ ରିଲିଫ୍ କାର୍ଯ୍ୟରେ ଲାଗିଯାଇଥିଲୁ । ବର୍ଷ ବର୍ଷ ଧରି ଏହି କଠିନ କାର୍ଯ୍ୟକରି ଆମେ ଓଡ଼ିଶା ସରକାରଙ୍କ ପାଖରୁ ପୁରସ୍କୃତ ମଧ୍ୟ ହେଉଥିଲୁ ।

୧୯୩୬ରେ ରେଭେନ୍ସା କଲେଜ ତା'ର ରୌପ୍ୟ ଜୟନ୍ତୀ ପାଳନ କଲା । ବହୁ ସରକାରୀ, ବେସରକାରୀ ବ୍ୟକ୍ତିଙ୍କ ବ୍ୟତୀତ ଅନେକ ପୁରାତନ ଛାତ୍ର ମଧ୍ୟ ଏହି ଉତ୍ସବରେ ଯୋଗ ଦେଇଥିଲେ । ମୁଖ୍ୟ ଅତିଥି ଭାବରେ ଯୋଗ ଦେଇଥିଲେ ପାଟନା ହାଇକୋର୍ଟର ମୁଖ୍ୟ ବିଚାରପତି ଶ୍ରୀ କୁର୍ଟନି ଟେରେଲ୍। କଲେଜ ଗେଟରେ ରେଭେନ୍ସା ଦୀର୍ଘଜୀବୀ ହେଉ ଫଳକ ସମେତ ସମସ୍ତ କୋଠାକୁ ସଜ୍ଜିତ କରାଯାଇଥିଲା । ସେ ଦୃଶ୍ୟ ଆକର୍ଷଣୀୟ ହୋଇଥିଲା । କଲେଜର ଛାତ୍ର ଭାବରେ ଆମେମାନେ ଏବେମଧ୍ୟ ଗର୍ବ ଅନୁଭବ କରୁଅଛୁ । ପଣ୍ଡିତ ଜବାହାରଲାଲ ନେହେରୁ ଯେତେବେଳେ କଟକ ଆସିଲେ, କଲେଜ କର୍ତ୍ତୃପକ୍ଷ ଏବଂ ସରକାରଙ୍କ ବାରଣ ନିର୍ଦ୍ଦେଶ - କଲେଜ ଛାତ୍ରମାନେ କ୍ଲାସ୍ ଛାଡ଼ି ଶୋଭାଯାତ୍ରାରେ ତୁଳସୀପୁର ଯାତ୍ରା ପଡ଼ିଆକୁ ଯାଇଥିଲେ । ଯେଉଁଠାରେ କି ଏକ ସଭାର ଆୟୋଜନ କରାଯାଇଥିଲା । ବ୍ରିଟିଶ ସରକାରଙ୍କ ସବୁପ୍ରକାର ବାଧା ଓ କଡ଼ା - ବନ୍ଦୋବସ୍ତ ସତ୍ତ୍ୱେ ପଣ୍ଡିତ ନେହେରୁଙ୍କ ସଭାରେ ବହୁ ଜନସମାଗମ ହୋଇଥିଲା । ସେଦିନ ପଣ୍ଡିତଜୀ ଭାଷଣ ଶେଷ କରିବାକୁ ଯାଇ ଯୁବ ସମ୍ପ୍ରଦାୟ ଉଦ୍ଦେଶ୍ୟରେ ଯେଉଁ କଥା କହିଥିଲେ, "ଯେତେ ପ୍ରତିବନ୍ଧକ-ପଛେ ବିଭ୍ରାନ୍ତ ହୁଅନାହିଁ । ("Whatever may befall, do not alter")

ଏପ୍ରିଲ ପହିଲା ୧୯୩୬ରେ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ଉଦ୍ଘାଟିତ ହେଲା । ପୂର୍ବ ଛାତ୍ରାବାସ ସନ୍ନିକଟବର୍ତ୍ତୀ ରେଭେନ୍ସା କଲେଜ ହଲରେ ଓଡ଼ିଶା ବିଧାନସଭା ବସିଲା । ଆମେ ପ୍ରାୟ ପ୍ରତିଦିନ ସଭ୍ୟମାନଙ୍କୁ ଭେଟୁଥିଲୁଁ । ଏହି ସଭ୍ୟମାନେ ପ୍ରତ୍ୟେକ ନିଜ ନିଜ କ୍ଷେତ୍ରରେ ମହାନ୍ ଥିଲେ । •

---

***ମୋ ନିଜକଥା***, ସ୍ୱ-ପ୍ରକାଶନ, ସମ୍ବଲପୁର

# ରେଭେନ୍ସା କଲେଜ

## ବିଦ୍ୟାଧର ମିଶ୍ର

ପ୍ରବେଶିକା ପରୀକ୍ଷାପର ଉଚ୍ଚଶିକ୍ଷାପାଇଁ ରେଭେନ୍ସା କଲେଜ ଓଡ଼ିଆ ଡିଭିଜନର ଏକମାତ୍ର କଲେଜ ଥିଲା । ୧୯୩୬ ମସିହା ପର୍ଯ୍ୟନ୍ତ ଗଞ୍ଜାମ ଓ କୋରାପୁଟ ଜିଲ୍ଲା ମାନ୍ଦ୍ରାଜ ପ୍ରେସିଡେନ୍ସି ଅଧୀନରେ ଥିବାରୁ, ପାରଳାଖେମୁଣ୍ଡି ଏବଂ ଖଲିକୋଟ କଲେଜ ଆନ୍ଧ୍ର ବିଶ୍ୱବିଦ୍ୟାଳୟ ଅଧୀନରେ ଥିଲା । ରେଭେନ୍ସା କଲେଜ ୧୮୬୮ ମସିହାରେ ରେଭେନ୍ସା କଲେଜିଏଟ୍ ସ୍କୁଲ ଗୃହରେ ଆରମ୍ଭ ହୋଇଥିଲା । ସେ ବର୍ଷ ଜାନୁଆରୀ ମାସରେ ଏଫ୍.ଏ. କ୍ଲାସ୍‌ରେ ପ୍ରଥମେ ନାମ ଲେଖା ହୋଇଥିଲା । ନୀଳକଣ୍ଠ ଦାସ, ଗୋଦାବରୀଶ ମିଶ୍ର ପ୍ରଭୃତିଙ୍କ ଲେଖାରୁ ଜଣାଯାଏ ଯେ ୧୯୧୦ ମସିହା ପର୍ଯ୍ୟନ୍ତ ଅତି ଅଳ୍ପସଂଖ୍ୟକ ଛାତ୍ର କଲେଜରେ ନାମ ଲେଖାଉଥିଲେ । କଲିକତା ବିଶ୍ୱବିଦ୍ୟାଳୟ ଅଧୀନରେ ୧୯୧୦/ ୧୨ ମସିହା ପର୍ଯ୍ୟନ୍ତ ଗଡ଼ଜାତ ରାଜ୍ୟ ସମେତ ଓଡ଼ିଶାରୁ ଶହେ ଦୁଇଶହରୁ ଅଧିକ ପିଲା ପ୍ରବେଶିକା ପରୀକ୍ଷା ଦେଉ ନ ଥିଲେ । ରେଭେନ୍ସା କଲେଜରେ ବି .ଏସ୍‌ସି. ଓ ଏମ୍.ଏ. ପ୍ରଭୃତି ଡିଗ୍ରୀପାଇଁ ପଢ଼ିବାର ସୁବିଧା ନଥିଲା । ସେଥିପାଇଁ ଛାତ୍ରମାନଙ୍କୁ କଲିକତା ଯିବାକୁ ପଡୁଥିଲା । କଲେଜ ଓ ସ୍କୁଲ ହଷ୍ଟେଲ୍ ମିଶି କରି ଆଜିକାଲିର କଲେଜିଏଟ୍ ସ୍କୁଲ ଛାତ୍ରାବାସ ଗୃହରେ ଥିଲା । ସେହି ଛାତ୍ରାବାସରେ ଗୋପବନ୍ଧୁ ଦାସ, ଆଚାର୍ଯ୍ୟ ହରିହର, ନୀଳକଣ୍ଠ ଦାସ, ଭରତ ନାୟକ ପ୍ରଭୃତି ସେ ସମୟର ଓଡ଼ିଆ ଛାତ୍ରମାନେ ରହି କଲେଜରେ ପଢୁଥିଲେ । ରେଭେନ୍ସା କଲେଜିଏଟ୍ ସ୍କୁଲ ହତାରେ କଲେଜ ୧୮୬୮ରୁ ୧୯୨୧ ମସିହା ପର୍ଯ୍ୟନ୍ତ ପ୍ରାୟ ୫୩ ବର୍ଷ କାର୍ଯ୍ୟ କରିଥିଲା ।

ପ୍ରଥମ ମହାଯୁଦ୍ଧ ପରେ, କଟକର ଚାଉଳିଆଗଞ୍ଜଠାରେ କଲେଜ ପାଇଁ ନୂଆ ଘର ତିଆରି ହେଲା ଏବଂ ୧୯୨୧ ମସିହାରେ ରେଭେନ୍ସା କଲେଜ ଚାଉଳିଆଗଞ୍ଜସ୍ଥିତ ନୂତନ ଗୃହକୁ ଉଠିଆସିଲା । ନୂତନ କଲେଜ ଗୃହରେ ପର୍ଯ୍ୟାୟକ୍ରମେ ବି.ଏସ୍‌ସି., ଇଂରାଜୀରେ ଏମ୍.ଏ. ଶ୍ରେଣୀମାନ ଏବଂ ଆଇନ ଶ୍ରେଣୀ ପ୍ରଭୃତି ଖୋଲିଲା । ଛାତ୍ରାବାସମାନଙ୍କର ମେସ୍ ସବୁ ବର୍ତ୍ତମାନ ରହିଥିବା ପଦ୍ଧତିରେ ସଂଗଠିତ ହେଲା । ୧୯୩୬ ମସିହା ଜୁଲାଇ ମାସରେ ଆମେ ଆଇ.ଏ.

କ୍ଲାସ୍‌ରେ ନାମ ଲେଖାଇଲାବେଳକୁ କଲେଜ ନୂତନ ଗୃହରେ ମାତ୍ର ୧୫ ବର୍ଷ କାର୍ଯ୍ୟ କରିଥିଲା । ଆମେ ପଢ଼ିଲାବେଳେ କଲେଜରେ ସର୍ବମୋଟ ପ୍ରାୟ ୫୦୦ ଛାତ୍ରଛାତ୍ରୀ ଥିଲେ । ମାତ୍ର କଲେଜ ଓ ଛାତ୍ରାବାସ ସବୁ ସୁସଂଗଠିତ ହୋଇଥିଲା ଏବଂ ଛାତ୍ରମାନେ ଶୃଙ୍ଖଳିତ ଜୀବନ ଯାପନ କରୁଥିଲେ । ସେତେବେଳେ କଲେଜରେ ବି.ଏ., ବି.ଏସ୍‌ସି. ସ୍ତରରେ ସବୁ ବିଷୟରେ ଅନର୍ସ କ୍ଲାସ୍ ଥିଲା, କେବଳ ଇଂରାଜୀରେ ଏମ୍.ଏ. କ୍ଲାସ୍ ଥିଲା । ଲ କଲେଜ ସେହି କଲେଜରେ ହେଉଥିଲା ଏବଂ ସେଥିରେ ଏକଶହରୁ ଅଧିକ ପିଲା ନଥିଲେ । ଓଡ଼ିଶାରେ ବିଶ୍ୱବିଦ୍ୟାଳୟ ନ ଥିଲା । ଓଡ଼ିଶାର ହାଇସ୍କୁଲ ଓ କଲେଜ ସବୁ ପାଟନା ବିଶ୍ୱବିଦ୍ୟାଳୟ ଅଧୀନରେ ଥିଲା । ଇଂରାଜୀ ବ୍ୟତୀତ ଅନ୍ୟ କଳା ଓ ବିଜ୍ଞାନ ବିଷୟରେ ଏମ୍.ଏ. ପଢିବାପାଇଁ ସାଧାରଣତଃ ପିଲାମାନେ ପାଟନା ଯାଉଥିଲେ । କେତେତ ପିଲା ମଧ୍ୟ କଲିକତା, ଆଲାହାବାଦ ଓ ବନାରସ ବିଶ୍ୱବିଦ୍ୟାଳୟମାନଙ୍କୁ ଯାଉଥିଲେ । ଇଞ୍ଜିନିଅରିଂ ଓ ମେଡ଼ିକାଲ କଲେଜମାନଙ୍କରେ ପଢ଼ିବାପାଇଁ ଛାତ୍ରମାନେ ପାଟନା ଯାଉଥିଲେ । କୃଷି, ପଶୁଚିକିତ୍ସା ପ୍ରଭୃତି ବିଷୟରେ ପଢ଼ିବାପାଇଁ ପିଲାମାନେ ଭାରତର ଅନ୍ୟ ପ୍ରଦେଶମାନଙ୍କରେ ବିଭିନ୍ନ ସହରମାନଙ୍କରେ ଥିବା କଲେଜମାନଙ୍କୁ ଯାଉଥିଲେ । ଏ ସମସ୍ତ ବିଷୟରେ ବାହାର ପ୍ରଦେଶମାନଙ୍କୁ ପଢ଼ିବାକୁ ଯାଉଥିବା ପିଲାମାନଙ୍କର ସଂଖ୍ୟା ଅତି ଅଳ୍ପ ଥିଲା ।

ମୁଁ ୧୯୩୬ ମସିହା ଜୁଲାଇ ମାସରୁ ୧୯୪୦ ମସିହା ଫେବୃଆରୀ ମାସରେ ବି.ଏ. ପରୀକ୍ଷା ଶେଷ ପର୍ଯ୍ୟନ୍ତ ଚାରିବର୍ଷ ରେଭେନ୍‌ସା କଲେଜରେ ଆଇ.ଏ. ଓ ବି.ଏ. ପଢ଼ିଥିଲି । ୧୯୩୬ ମସିହା ଜୁଲାଇ ମାସରୁ ପୂଜାଛୁଟି ଶେଷ ପର୍ଯ୍ୟନ୍ତ ହଷ୍ଟେଲରେ ନ ଥିଲି । ସେ ବର୍ଷ ଅକ୍ଟୋବର ମାସରୁ ୧୯୪୦ ମସିହା ଫେବୃଆରୀ ମାସରେ ବି.ଏ. ପରୀକ୍ଷା ଶେଷଯାଏ କଲେଜର ପୂର୍ବ ଛାତ୍ରାବାସରେ ରହିଥିଲି । ଆମେ ଆଇ.ଏ, କ୍ଲାସ୍‌ରେ ନାମ ଲେଖାଇଲାବେଳକୁ ଶ୍ୟାମଚନ୍ଦ୍ର ତ୍ରିପାଠୀ ପ୍ରିନ୍‌ସିପାଲ ଥିଲେ, ପ୍ରାଣକୃଷ୍ଣ ପରିଜା ପଶ୍ଚିମ ଛାତ୍ରାବାସରେ ଏବଂ ଇଂରାଜୀ ଅଧ୍ୟାପକ କେ.ପି. ସିହ୍ନା ପୂର୍ବ ଛାତ୍ରାବାସରେ ଓ୍ୱାର୍ଡେନ୍ ଥିଲେ । ଶ୍ୟାମଚନ୍ଦ୍ର ତ୍ରିପାଠୀ ଏବଂ ପ୍ରାଣକୃଷ୍ଣ ପରିଜା ବିଲାତରୁ ଫେରି ରେଭେନ୍‌ସା କଲେଜରେ ପ୍ରଫେସର ହେବା ଦିନଠାରୁ ଓଡ଼ିଶାରେ ସମସ୍ତେ ସେମାନଙ୍କୁ ତ୍ରିପାଠୀ ସାହେବ ଓ ପରିଜାସାହେବ ବୋଲି କହୁଥିଲେ । ସେ ଦୁଇଜଣ ବ୍ୟକ୍ତି ତାଙ୍କ ଜୀବଦଶା ମଧ୍ୟରେ ଓଡିଶାର ଶିକ୍ଷା ବିଭାଗର କର୍ଣ୍ଣଧାର ଥିଲେ । ତ୍ରିପାଠୀ ସାହେବ ରେଭେନ୍‌ସା କଲେଜର ପ୍ରଥମ ଓଡ଼ିଆ ପ୍ରିନ୍‌ସିପାଲ ଏବଂ ପରିଜା ସାହେବ ଦ୍ୱିତୀୟ ଓଡ଼ିଆ ପ୍ରିନ୍‌ସିପାଲ ଥିଲେ । ତା' ପୂର୍ବରୁ ସାଧାରଣତଃ ଗୋରା ସାହେବମାନେ କଲେଜର ପ୍ରିନ୍‌ସିପାଲ ଥିଲେ ।

କଲେକରେ ଆମେ ଯୋଗଦେବାର ପ୍ରଥମ ବର୍ଷରେ ତ୍ରିପାଠୀ ସାହେବ ଛଅମାସ ପାଇଁ ମୟୂରଭଞ୍ଜ ମହାରାଜାଙ୍କ ସହିତ ସମ୍ରାଟ୍ ଅଷ୍ଟମ ଏଡ୍‌ଓ୍ୱାର୍ଡଙ୍କ ଅଭିଷେକ ଉତ୍ସବରେ ଯୋଗ ଦେବାପାଇଁ ବିଲାତ ଯାଇଥିଲେ । ତାଙ୍କ ସ୍ଥାନରେ ପରିଜା ପ୍ରିନ୍‌ସିପାଲ ହୋଇଥିଲେ । ତ୍ରିପାଠୀ

ବିଲାତରୁ ଫେରି ପୁଣି ପ୍ରିନ୍‌ସିପାଲ ହେଲେ ଏବଂ ପରିଜା ପୂର୍ବପରି ବଟାନି ପ୍ରଫେସର ଓ ପଶ୍ଚିମ ଛାତ୍ରାବାସର ଓ୍ୱାର୍ଡେନ୍ ରହିଲେ। ୧୯୩୮ ମସିହାରେ ଆମେ ତୃତୀୟ ବାର୍ଷିକ ଶ୍ରେଣୀରେ ପଢୁଥିବାବେଳେ ତ୍ରିପାଠୀ ସାହେବ ଓଡ଼ିଶାର ଡି.ପି. ଆଇ. ହୋଇଗଲେ। ସେ ହେଉଛନ୍ତି ଓଡ଼ିଶାର ପ୍ରଥମ ଓଡ଼ିଆ ଡି.ପି.ଆଇ.। ତ୍ରିପାଠୀ ଡି.ପି.ଆଇ. ହେଲାପରେ ପରିଜା କଲେଜର ସ୍ଥାୟୀ ପ୍ରିନ୍‌ସିପାଲ ହେଲେ। ୧୯୪୦ ମସିହାରେ ଆମ୍ଭେମାନେ କଲେଜ ଛାଡ଼ିବା ପର୍ଯ୍ୟନ୍ତ ପରିଜା ପ୍ରିନ୍‌ସିପାଲ ଓ ତ୍ରିପାଠୀ ଡି.ପି.ଆଇ. ଥିଲେ। ବସ୍ତୁତଃ ସେହି ପ୍ରିନ୍‌ସିପାଲ ହୋଇ ପରିଜା ୧୯୪୫ ମସିହାରେ ଅବସର ଗ୍ରହଣ କଲେ। ଅବସର ପରେ ସେ ଅଳ୍ପ କାଳ କୃଷି ବିଭାଗର ଡାଇରେକ୍ଟର ହୋଇଥିଲେ। ସେ ଶିକ୍ଷା ବିଭାଗର ଡାଇରେକ୍ଟର ହୋଇପାରି ନାହାନ୍ତି। କାରଣ ତ୍ରିପାଠୀ ତାଙ୍କଠାରୁ ବୟସରେ ସାନ ଥିଲେ ଏବଂ ସେ ୧୯୪୮ ମସିହା ପର୍ଯ୍ୟନ୍ତ ଡି.ପି.ଆଇ. ଥିଲେ। ସେ କାଳର ରେଭେନ୍‌ସା କଲେଜର ପ୍ରିନ୍‌ସିପାଲ ଏବଂ ଡି.ପି.ଆଇ. ଆଜିକାଲିର ପ୍ରିନ୍‌ସିପାଲ ଓ ଡି.ପି.ଆଇ.ଙ୍କ ପରି ହୀନବଳ ନ ଥିଲେ। ସେମାନେ ପ୍ରବଳ ପ୍ରତାପୀ ଏବଂ ଶିକ୍ଷା ବିଭାଗର ସର୍ବେସର୍ବା ଥିଲେ। ବିଲାତରୁ ଉଚ୍ଚଶିକ୍ଷା ପାଇ ସେମାନେ ଭାରତୀୟ ଶିକ୍ଷା ସେବା (ଆଇ.ଇ.ଏସ୍) ଚାକିରିରେ ଯୋଗ ଦେଇଥିଲେ, ମୋଟା ଦରମା ପାଇ କଲେଜର ବଡ଼ ବଡ଼ ଘରମାନଙ୍କରେ ରହୁଥିଲେ। ଶିକ୍ଷା ବିଭାଗରେ ସେମାନଙ୍କର କଥା ବେଦର ଗାର ଥିଲା ଏବଂ ପୂରା ବିହାର ଓଡ଼ିଶା ପ୍ରଦେଶର ଶିକ୍ଷା ବିଭାଗରେ ସେମାନଙ୍କର ଖ୍ୟାତି ଓ ଅଖଣ୍ଡ କ୍ଷମତା ଥିଲା। ଛାତ୍ର ଓ ଶିକ୍ଷକମାନେ ସେମାନଙ୍କ ପାଖକୁ ଯିବାକୁ ଭୟ କରୁଥିଲେ। ଆଜିକାଲିର ସ୍ୱାଧୀନ ଭାରତରେ ବହୁ କଲେଜ, ବିଶ୍ୱବିଦ୍ୟାଳୟ, ବହୁ ଉଚ୍ଚଶିକ୍ଷିତ ଅଧ୍ୟାପକ, ଗଣତାନ୍ତ୍ରିକ ଶାସନ ସଙ୍ଗଠନ, ମନ୍ତ୍ରୀ ଓ ବିଧାନସଭା ସଭ୍ୟଙ୍କ କ୍ଷମତା, ଛାତ୍ରସଂଘ, ଛାତ୍ରମାନଙ୍କର ଉଚ୍ଛୃଙ୍ଖଳତା, ସାଧାରଣ ଲୋକମାନଙ୍କର ଚେତନା ପରିପ୍ରେକ୍ଷୀରେ ସେ କ୍ଷମତା ଚୂର୍ଣ୍ଣ ହୋଇଯାଇଛି।

କଲେଜରେ ଆମର ପ୍ରଥମ ବର୍ଷରେ ପରିଜା ପଶ୍ଚିମ ଛାତ୍ରାବାସରେ ଓ କେ.ପି.ସିହ୍ନା ପୂର୍ବ ଛାତ୍ରାବାସରେ ଓ୍ୱାର୍ଡେନ୍ ଥିଲେ। ପରେ କେ.ପି.ସିହ୍ନା ବିହାରକୁ ବଦଳି ହୋଇଯିବାରୁ ଏବଂ ପରିଜା ପ୍ରିନ୍‌ସିପାଲ ହୋଇଯିବାରୁ ପି.ଏସ୍. ସୁନ୍ଦରମ୍ ପୂର୍ବ ଛାତ୍ରାବାସର ଓ ବଳଭଦ୍ର ପ୍ରସାଦ ପଶ୍ଚିମ ଛାତ୍ରାବାସର ଓ୍ୱାର୍ଡେନ ହୋଇଥିଲେ। ମୋର ମନେ ହେଉଛି ଯେ, ୧୯୩୬ ମସିହାରୁ ୧୯୪୦ ମସିହା ପର୍ଯ୍ୟନ୍ତ ଆମେ ସେ କଲେଜରେ ପଢୁଥିଲାବେଳେ କଲେଜ ଅତ୍ୟନ୍ତ ସୁସଙ୍ଗଠିତ ଓ ଶୃଙ୍ଖଳିତ ଭାବରେ ଚାଲିଥିଲା। ଶ୍ରେଣୀମାନଙ୍କରେ ପଢ଼ାପଢ଼ି ନିୟମିତ ଭାବରେ ହେଉଥିଲା ଏବଂ ପରୀକ୍ଷାମାନ ନିର୍ଦ୍ଧାରିତ ସମୟରେ ହେଉଥିଲା। ଛାତ୍ର ଓ ଅଧ୍ୟାପକ ସମସ୍ତେ ପ୍ରିନ୍‌ସିପାଲଙ୍କୁ ଭୟ କରୁଥିଲେ। ଛାତ୍ରାବାସମାନଙ୍କରେ ଓ୍ୱାର୍ଡେନ୍ ଓ ସୁପରିଣ୍ଟେଣ୍ଡେଣ୍ଟମାନେ ଛାତ୍ରମାନଙ୍କ ଉପରେ କଡ଼ା ନଜର ରଖିଥିଲେ। ସେମାନେ ପ୍ରତିଦିନ ହଷ୍ଟେଲର ସବୁଆଡ଼େ ବୁଲି ହଷ୍ଟେଲର

ପରିଷ୍କାରପରିଚ୍ଛନ୍ନତା ଏବଂ ପଢ଼ିବା ଘଣ୍ଟାମାନଙ୍କରେ ପିଲାମାନେ କିପରି ସୁବିଧାରେ ପଢୁଥିଲେ, ତାହା ଦେଖୁଥିଲେ। ସୁପରିଣ୍ଟେଣ୍ଡେଣ୍ଟମାନେ ପ୍ରତିଦିନ ସକାଳେ ଛାତ୍ରମାନଙ୍କର ଉପସ୍ଥାନ ନେଉଥିଲେ। ମେସ୍‌ଗୁଡ଼ିକ ନିୟମିତ ଭାବରେ ଚାଲିଥିଲା ଏବଂ ଖାଇବା ପିଇବାର ମାନ ଉଚ୍ଚ ଥିଲା। ପିଲାମାନେ ହଷ୍ଟେଲର ସୁପରିଣ୍ଟେଣ୍ଡେଣ୍ଟ ଓ କଲେଜର ଅଧ୍ୟାପକମାନଙ୍କର କଥା ମାନୁଥିଲେ ଏବଂ ସେମାନଙ୍କୁ ଭୟ କରୁଥିଲେ। ହଷ୍ଟେଲ ଓ ମେସ୍‌ମାନଙ୍କରେ ବହୁ ଚାକର ପୂଝାରୀ ଥିଲେ। ସେମାନେ ସମସ୍ତେ ୱାର୍ଡେନ୍ ଓ ସୁପରିଣ୍ଟେଣ୍ଡେଣ୍ଟଙ୍କୁ ଡରି ନିୟମିତ ଭାବରେ ନିଜ ନିଜର କାମ କରୁଥିଲେ। ହଷ୍ଟେଲର କମନ୍‌ରୁମ୍, ପ୍ରାର୍ଥନା ହଲ୍, ମେସ୍‌ରୁମ୍ ପ୍ରଭୃତି ବହୁ ସୁବିଧା ଥିଲା। ଆମ୍ଭେମାନେ ହଷ୍ଟେଲ୍‌ରେ ଅତି ସୁଖରେ ଚଳୁଥିଲୁ। ହଷ୍ଟେଲ୍‌ମାନଙ୍କରେ ଜୀବନଧାରଣ ମାନ ଆମ ଘରମାନଙ୍କର ଜୀବନଧାରଣ ମାନଠାରୁ ଢେର୍ ଉଚ୍ଚରେ ଥିଲା।

ସାହେବମାନେ ମଧ୍ୟ ପ୍ରିନ୍‌ସିପାଲ ଥିବାବେଳୁ କଲେଜରେ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟ ରୀତିରେ ଅନେକ ଅନ୍ୟ ସୁବିଧା ଥିଲା। କଲେଜ କୋଠା ସମ୍ମୁଖରେ ଚାରିଟା ଟେନିସ୍ କୋର୍ଟ ଥିଲା। ଯୁବକ ପ୍ରଫେସର ଏବଂ କେତେକ ଖେଳପ୍ରିୟ ଧନୀ ଘରର ପିଲା ପ୍ରଫେସରମାନଙ୍କର ସହ ଟେନିସ୍ ଖେଳୁଥିଲେ। କଲେଜର କଳା ଓ ବିଜ୍ଞାନ ବିଭାଗମାନଙ୍କର କୋଠାମାନଙ୍କ ମଧ୍ୟରେ, ଲାଇବ୍ରେରୀକୁ ଏବଂ ପୂର୍ବ ଓ ପଶ୍ଚିମ ଛାତ୍ରାବାସକୁ ସିମେଣ୍ଟର ରାସ୍ତା ଥାଇ ସୁପରିଚାଳିତ ଘାସପଡ଼ିଆ ଓ ବଗିଚା ଥିଲା। କଲେଜ ହତାର ଶେଷ ଭାଗରେ ଦକ୍ଷିଣ, ପୂର୍ବ ଓ ପଶ୍ଚିମ ଦିଗରେ ପ୍ରଫେସରମାନଙ୍କର ରହିବାଘର ତିଆରି ହୋଇଥିଲା। କଲେଜର ସାଇନ୍‌ସ୍ ବ୍ଲକ୍ ଓ ପ୍ରଫେସରମାନଙ୍କର ରହିବାଘର ମଧ୍ୟରେ ଗୋଟିଏ ବଡ଼ ଖେଳ ପଡ଼ିଆ ଥିଲା। ସେଥିରେ ପ୍ରତିଦିନ ଫୁଟବଲ୍, ଭଲି, ବାସ୍କେଟବଲ୍ ପ୍ରଭୃତି ଖେଳ ହେଉଥିଲା। ଆମ ସମୟରେ ଏବଂ ତା' ପୂର୍ବରୁ ତାଳଦଣ୍ଡା କେନାଲରେ ନୌକାଚାଳନା ଶିଖିବା ପାଇଁ କଲେଜରେ ଗୋଟିଏ ବୋଟ୍ କ୍ଲବ ଥିଲା। ସେଥିରେ ଦୁଇ ତିନିଟା ବୋଟ୍ ଥିଲା। କଲେଜର ଆର୍ଟସ୍ ଓ ସାଇନ୍‌ସ ବ୍ଲକ୍ ମଧ୍ୟରେ କନିକା ଲାଇବ୍ରେରୀ ଥିଲା। ସେଥିରେ ଆମ ସମୟରେ ଦାମୋଦର ମିଶ୍ର ନାମରେ ଜଣେ ଅତ୍ୟନ୍ତ କର୍ତ୍ତବ୍ୟନିଷ୍ଠ ଲାଇବ୍ରେରିଆନ୍ ଥିଲେ। କଲେଜରେ ଓ ହଷ୍ଟେଲମାନଙ୍କରେ ବକ୍ତୃତା ଓ ରଚନା ପ୍ରତିଯୋଗିତାମାନ ନିୟମିତ ରୂପେ ହେଉଥିଲା। ପ୍ରତିବର୍ଷ ବିଭିନ୍ନ ହଷ୍ଟେଲରେ ବାର୍ଷିକ ଉତ୍ସବମାନ ହେଉଥିଲା ଏବଂ କଲେଜ କମ୍ମେମୋରେସନ୍ ଉତ୍ସବ ହେଉଥିଲା। କମ୍ମେମୋରେସନ୍ ବେଳେ ଦୁଇଦିନ ଆର୍ଟସ୍ ଓ ସାଇନ୍‌ସ ବିଭାଗମାନଙ୍କରେ ପ୍ରଦର୍ଶନୀ ହେଉଥିଲା। କଟକ ସହରର ବହୁଲୋକ ସେଗୁଡ଼ିକୁ ଦେଖିବାକୁ ଆସୁଥିଲେ। କଲେଜରେ ପିଲା ଅଳ୍ପ ଥିଲେ। ପାଣି, ବିଜୁଳି ଆଲୁଅ, ଖାଇବା ମେସ୍, ଖେଳପଡ଼ିଆ, କମନ୍ ରୁମ୍ ପ୍ରଭୃତି ପିଲାମାନଙ୍କର ଚଳିବାର ସମସ୍ତ ସୁବିଧା ଥିଲା। ମୋଟାମୋଟି କଲେଜଟି ଗୋଟିଏ ଆଦର୍ଶ ଅନୁଷ୍ଠାନ ରୂପେ ଚାଲୁଥିଲା।

୧୯୨୧ ମସିହାଠାରୁ ୧୯୪୦ ମସିହା ପର୍ଯ୍ୟନ୍ତ ସେ କଲେଜରେ ପଢ଼ିଥିବା ସବୁ ଲୋକଙ୍କର ଏହି ଧାରଣା । ବିହାର-ଓଡ଼ିଶା ପ୍ରଦେଶର ଓଡ଼ିଶା ଡିଭିଜନରେ ସେ କଲେଜ ଏକମାତ୍ର ପ୍ରଥମ ଶ୍ରେଣୀ କଲେଜ ଥିଲା । କଲେଜ କହିଲେ ଲୋକମାନେ ରେଭେନ୍‌ସା କଲେଜ ବୋଲି ବୁଝୁଥିଲେ । ବସ୍ତୁତଃ ଊନବିଂଶ ଶତାବ୍ଦୀର ଶେଷ ଭାଗରୁ ବିଂଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ଓଡ଼ିଶାରେ ଯେଉଁମାନେ ଉଚ୍ଚଶିକ୍ଷା ପାଇଛନ୍ତି, ସେମାନେ ସେହି ରେଭେନ୍‌ସା କଲେଜରେ ପଢ଼ିଥିଲେ । ପଚାଶ ବର୍ଷ ପରେ ଆଜି ମଧ୍ୟ ରେଭେନ୍‌ସା କଲେଜରେ ସେ କୋଠାବାଡ଼ି ଅଛି । କେତେକ ଅଧିକ ବିଜ୍ଞାନ ବିଭାଗର ପକ୍‌କା ଘର ତିଆରି ହୋଇଛି ଏବଂ ଅଧ୍ୟାପକମାନଙ୍କର ବାସଗୃହ ପାଇଁ ଅନେକ ଆକ୍‌ବେଷ୍ଟସ୍‌ର ଘର ତିଆରି ହୋଇଛି । ଯୁଦ୍ଧବେଳେ ଅସ୍ଥାୟୀ ଘର ରୂପେ ସେଗୁଡ଼ିକ ତିଆରି ହୋଇଥିଲା । ପଚାଶ ବର୍ଷ ପରେ ସେଗୁଡ଼ିକ ସ୍ଥାୟୀ ଘର ରୂପେ ରହିଛି । କଲେଜର ମୂଳ ଗୃହଗୁଡ଼ିକ ଯାହାକି ସାତ ଆଠ ଶହ ପିଲାଙ୍କ ପାଇଁ ନିର୍ମିତ ହୋଇଥିଲା, ସେଥିରେ ବର୍ତ୍ତମାନ ପାଞ୍ଚ ହଜାର ପିଲା ପଢୁଛନ୍ତି । ଘରଗୁଡ଼ିକର ସୁଚାରୁ ରକ୍ଷଣାବେକ୍ଷଣ ଅଭାବରୁ କଲେଜ ଭବନ ଶ୍ରୀହୀନ ହୋଇଛି । ପୂର୍ବର ଟେନିସ୍ ଖେଳ ଓ ବୋଟକ୍ଲବ୍ ନାହିଁ କି ଲାଇବ୍ରେରୀ ସମ୍ମୁଖର ଲନ୍‌ର ଶୋଭା ନାହିଁ । ଆଜିକାଲିର କଲେଜ ବାତାବରଣ ଦେଖିଲେ, "କି ଥିଲା ଏ ରାଜ୍ୟ କି ହୋଇଛି ଆଜ" ଭାବନା ମନରେ ଜାଗ୍ରତ ହେଉଛି ।

ସ୍ଥୂଳତଃ ବିଂଶ ଶତାବ୍ଦୀର ଆରମ୍ଭରୁ ୧୯୪୦ ମସିହା ପର୍ଯ୍ୟନ୍ତ ଓଡିଶାରେ ଶିକ୍ଷା ସଙ୍ଗଠନ ଏହିପରି ଥିଲା । ଗାଁମାନଙ୍କରେ ପ୍ରାଥମିକ ସ୍କୁଲ, ସେଥିରେ ପଢ଼ା ପ୍ରଣାଳୀ ଅନେକାଂଶରେ ପୂର୍ବତନ ଚାଟଶାଳୀମାନଙ୍କରେ ଅବଧାନମାନଙ୍କ ଶିକ୍ଷାପ୍ରଣାଳୀ ପରି ଥିଲା । ଥାନା ମହକୁମାମାନଙ୍କରେ ମାଇନର ସ୍କୁଲ, ପ୍ରାଥମିକ ସ୍କୁଲମାନଙ୍କରୁ ଅତି ଅଳ୍ପ ପିଲା, ସାଧାରଣତଃ ଦୁଇ ତିନି ଜଣ ମାଇନର ସ୍କୁଲକୁ ପଢ଼ିବାକୁ ଯାଉଥିଲେ । ପ୍ରତି ଜିଲ୍ଲା ଓ ସବ୍‌ଡିଭିଜନ ମହକୁମାମାନଙ୍କରେ ହାଇସ୍କୁଲ ଥିଲା । ପ୍ରତି ମାଇନର ସ୍କୁଲରୁ ଦୁଇ ଚାରି ଜଣ ପିଲା ହାଇସ୍କୁଲକୁ ପଢ଼ିବାକୁ ଆସୁଥିଲେ । ଆମ କଟକ ଜିଲ୍ଲାରେ କଟକ ସହରରେ ପାଞ୍ଚଟା ହାଇସ୍କୁଲ ଏବଂ କେନ୍ଦ୍ରାପଡ଼ା, ଯାଜପୁର, କୁଜଙ୍ଗ ଓ ବାଙ୍କିରେ ହାଇସ୍କୁଲ ଥିଲା । ଓଡ଼ିଶା ଡିଭିଜନରେ ରେଭେନ୍‌ସା କଲେଜ ଏକମାତ୍ର କଲେଜ ଥିଲା । ପ୍ରତି ହାଇସ୍କୁଲର ମାଟ୍ରିକୁଲେଶନ ପାସ୍ କରିଥିବା ଦଶଜଣରୁ କମ୍ ପିଲା କଲେଜକୁ ପଢ଼ିବାକୁ ଆସୁଥିଲେ । ମୋର ମନେ ଅଛି ଯେ, ମୁଁ ପଢୁଥିବା ପ୍ରାଥମିକ ସ୍କୁଲରୁ ମୋ ବର୍ଷ ମୁଁ ଏକା ମାଇନର ସ୍କୁଲରେ ପଢ଼ିବାକୁ ଯାଇଥିଲି । ମୋ ପୂର୍ବବର୍ଷ କେହି ଯାଇ ନଥିଲେ ଓ ପରବର୍ଷ, ମଧ୍ୟ କେହି ଯାଇ ନଥିଲେ । ସେହିପରି ମୁଁ ପଢୁଥିବା ମାଇନର ସ୍କୁଲରୁ ଆମବର୍ଷ କେବଳ ଆମ ଦୁଇଜଣ ପିଲା ହାଇସ୍କୁଲରେ ପଢ଼ିବାକୁ ଯାଇଥିଲୁ । ମୁଁ କଟକ ଆସିଥିଲି । ଅନ୍ୟ ଜଣେ କୁଜଙ୍ଗ ପଢ଼ିବାକୁ ଯାଇଥିଲା । ସେହି ଦୁଇଜଣ ପିଲା ହାଇସ୍କୁଲରୁ ପାସ୍ କରି

କଲେଜରେ ନାମ ଲେଖାଇଥିଲୁ । ମୁଁ ବୃତ୍ତି ପାଇ ହଷ୍ଟେଲରେ ରହିଥିଲି । ସେ ବାହାରେ ରହି ଟ୍ୟୁସନ କରି ପାଠ ପଢୁଥିଲା । କଟକ ହାଇସ୍କୁଲମାନଙ୍କରୁ ଅନେକ ପିଲା କଲେଜରେ ପଢ଼ିବାକୁ ଆସୁଥିଲେ କାରଣ ସେମାନେ କଟକରେ ରହିଲା ପିଲା କିମ୍ବା ମଫସଲର ଧନୀଘର ବା ବୃତ୍ତି ପାଇଥିବା ପିଲା । ତା'ପରେ ଓଡ଼ିଶାର ଅନ୍ୟ କିଲ୍ଲାମାନଙ୍କରୁ ଏବଂ ଗଡ଼ଜାତ ହାଇସ୍କୁଲମାନଙ୍କରୁ ପାସ୍ କରି ଅଳ୍ପ ସଂଖ୍ୟକ ପିଲା କଲେକରେ ନାମ ଲେଖାଉଥିଲେ । ସ୍କୁଲମାନଙ୍କରୁ ଛାଣିହୋଇ ପିଲାମାନେ କଲେକରେ ପଢ଼ିବାକୁ ଆସୁଥିଲେ । ସେମାନେ ଧନୀଘର ପିଲା, ସହରରେ ଚାକିରି କରିଥିବା ଲୋକଙ୍କ ପିଲା କିମ୍ବା ଛାତ୍ରବୃତ୍ତି ପାଇଥିବା ଗରିବ ପରିବାରର ପିଲା ଥିଲେ । ମାଟ୍ରିକୁଲେଶନ୍ ପାଶ୍ କରୁଥିବା ପିଲାଙ୍କ ସଂଖ୍ୟା କମ୍ ଥିଲା ଏବଂ ସେଥିରୁ ଅତି ଅଳ୍ପ ପିଲା କଲେଜରେ ନାମ ଲେଖାଉଥିଲେ । ଆମ ସମୟରେ ରେଭେନ୍ସା କଲେକରେ ମୋଟେ ପାଞ୍ଚଶହ ପାଖାପାଖି ପିଲା ଥିଲେ । ଏହା ମଧ୍ୟ ବିଚିତ୍ର ଯେ, କଲେଜରୁ ଆଇ.ଏ. ଓ ବି.ଏ. ପାସ୍ କରିଥିବା ବହୁ ପିଲା କୌଣସି ଚାକିରି ନ ପାଇ କର୍ମସଂସ୍ଥାନପାଇଁ ଏଣେତେଣେ ଯାଉଥିଲେ ଏବଂ ସାଧାରଣ ଚାକିରିଟିଏ ପାଇଁ ବହୁକାଳ ଅପେକ୍ଷା କରିବାକୁ ପଡୁଥିଲା । ଚାକିରି ମଧ୍ୟରେ ଅଳ୍ପ କେତେଟା କିରାଣି ଓ ସ୍କୁଲ ଶିକ୍ଷକ, ଚାରି ପାଞ୍ଚଜଣ ସବ୍‌ଡେପୁଟି, ଦୁଇ ଚାରିଜଣ ସବ୍‌ରେଜିଷ୍ଟ୍ରାର, ଜଣେ ଦୁଇଜଣ କଲେଜ ଲେକ୍‌ଚରର ଚାକିରି ଥିଲା । ପ୍ରାଦେଶିକ ସାଧାରଣ ଚାକିରି ମଧ୍ୟରେ ସବ୍‌ଡେପୁଟି ଲେକ୍‌ଚରର ବଡ଼ ଚାକିରି ଥିଲା । ଆଧୁନିକ ଶିକ୍ଷା ଏବଂ ନୂତନ ଚିନ୍ତାଧାରା ଅତି ମନ୍ଥର ଗତିରେ ସମାଜ ମଧ୍ୟରେ ପ୍ରବେଶ କରୁଥିଲା । ୧୯୨୦ ମସିହାଠାରୁ ୧୯୪୦ ମସିହା ମଧ୍ୟରେ ଘଟୁଥିବା ରାଜନୈତିକ ବିପ୍ଲବ ଏହି ପରିବର୍ତ୍ତନକୁ ତ୍ୱରାନ୍ୱିତ କରୁଥିଲା ।

•

---

*ବିଂଶ ଶତାବ୍ଦୀର ଓଡ଼ିଶା-ମୋ ଅନୁଭୂତି,*
ବିଦ୍ୟାପୁରୀ, କଟକ, ୧୯୯୬

# ରେଭେନ୍‌ସା କଲେଜ

## ରାଧାନାଥ ରଥ

ସ୍କୁଲରେ ପଢ଼ିବା ସମୟରେ ନାନା ପ୍ରକାର କଳ୍ପନା ଜଳ୍ପନା, ଧର୍ମଗତ ରାଜନୈତିକ କ୍ରିୟାକଳାପ, ଭାବଗତ ଉଦ୍‌ବେଳନ ମଧ୍ୟରେ ପାଠରେ ଯେତିକି ସମୟ ବିନିଯୋଗ ହୋଇପାରିଲା ସେତିକିରେ କୌଣସି ମତେ ଉଚ୍ଚ ଦ୍ୱିତୀୟ ଶ୍ରେଣୀରେ ମାଟ୍ରିକ୍ ପାସ୍ କଲି ଏବଂ ରେଭେନ୍‌ସା କଲେଜରେ ଆଇ.ଏ.ରେ ନାମ ଲେଖାଇଲି। ସେତେବେଳେ କଳାରେ ଦୁଇଟି ବିଷୟ ଗ୍ରୁପ୍ ଥାଏ। ଇତିହାସ, ତର୍କଶାସ୍ତ୍ର, ସଂସ୍କୃତ କିମ୍ବା ଅଙ୍କ ତର୍କଶାସ୍ତ୍ର ସଂସ୍କୃତ। କଳାରେ ଆଉ କୌଣସି ବିଷୟବସ୍ତୁ ପଢ଼ା ହେଉନଥାଏ। ଏପରିକି ଓଡ଼ିଆ ମଧ୍ୟ ନୁହେଁ। ଅଙ୍କ ତ ସ୍କୁଲରେ ଛାଡ଼ି ଦେଇଥିଲି। ଅଙ୍କ ନଥିଲେ ସେତେବେଳେ ବିଜ୍ଞାନ ପଢ଼ା ସମ୍ଭବ ହେଉନଥିଲା। ଭବିଷ୍ୟତରେ ଡାକ୍ତର ହେବା ସ୍ୱପ୍ନ ମଉଳିଗଲା। ତେଣୁ ଇତିହାସ, ତର୍କଶାସ୍ତ୍ର ଓ ସଂସ୍କୃତ ନେବାକୁ ବାଧ୍ୟ ହେଲି। ଇଂରାଜୀ ଓ ଦର୍ଶନ ବିଭାଗର ଅଧ୍ୟାପକମାନେ ପ୍ରାୟ ଭଲ ଥିଲେ କିନ୍ତୁ ଅନ୍ୟାନ୍ୟ ଅଧ୍ୟାପକଙ୍କର ପାଠ ପଢ଼ାଇବା ଢଙ୍ଗ ସେପରି ସୁଖକର ନଥିଲା। ଆଗକାଳରେ କଲେଜରେ ଖୁବ୍ ଭଲ ପଢ଼ା ହେଉଥଲା ବୋଲି ଯେଉଁ ଧାରଣା ଅଛି ତାହା ଠିକ୍ ନୁହେଁ। ଜଣେ ପୁରୁଣା ଅଧ୍ୟାପକ ତ କିଛି ପାଠ ପଢ଼ାଉ ନଥିଲେ ଏବଂ କହୁଥିଲେ ଯେ ସେ ପଢ଼ିଛନ୍ତି ବୋଲି ଦରମା ପାଉଛନ୍ତି ପଢ଼ାଇବା ପାଇଁ ନୁହେଁ। ଏଣୁ ଇଣ୍ଟରମିଡ଼ିଏଟ୍ କଲେଜ ଶିକ୍ଷା ମୋତେ ଖୁବ୍ ବେଶି ଅନୁପ୍ରାଣିତ କରିପାରିନଥିଲା।

ରେଭେନ୍‌ସା କଲେଜରେ ଏତେ ଖ୍ୟାତି ଥିଲା ଯେ ସେ କଲେଜର ଛାତ୍ର ହେବା ବଡ଼ ଗର୍ବର କଥା। ସାରା ଓଡ଼ିଶାରେ ତାହା ଏକମାତ୍ର କଲେଜ ଥିଲା। ମୁଁ ପଶ୍ଚିମ ଛାତ୍ରାବାସରେ ରହିଲି। କାରଣ ସହରିଆ ଓ ଉପକୂଳ ଅଞ୍ଚଳରେ ରହୁଥିବା ପିଲାଏ ପଶ୍ଚିମ ଛାତ୍ରାବାସରେ ସେତେବେଳେ ସମ୍ବଲପୁର ଓ ଗଡ଼ଜାତର ପିଲାମାନେ ପୂର୍ବ ଛାତ୍ରାବାସରେ ରହୁଥିବାର ଗୋଟିଏ ପରମ୍ପରା ରହି ଆସିଥିଲା। ଆମ ଛାତ୍ରାବାସର ଓ୍ୟାଡ଼େନ୍ ଥିଲେ ଅଧ୍ୟାପକ ପ୍ରାଣକୃଷ୍ଣ ପରିଜା ଏବଂ ତା'ପରେ ଆସିଲେ ଅଧ୍ୟାପକ ବଳଭଦ୍ର ପ୍ରସାଦ। ସୁପରିନ୍‌ଟେଣ୍ଡେଣ୍ଟ ଅଧ୍ୟାପକ ନାରାୟଣ ମିଶ୍ର ଓ

ସହକାରୀ ସୁପରିନ୍‌ଟେଣ୍ଡେଣ୍ଟ ଅଧ୍ୟାପକ ରୋହତ୍‌ଗୀ । ହଷ୍ଟେଲରେ ସବୁ କ୍ଲାସର ପିଲାଏ ରହୁଥିଲେ। ଏମ୍.ଏ. ଓ ଆଇନ୍ କ୍ଲାସରୁ ଆରମ୍ଭ କରି ପ୍ରଥମ ବାର୍ଷିକ ଛାତ୍ର ପର୍ଯ୍ୟନ୍ତ । ତେଣୁ ପଚିଶ ଛବିଶ ବର୍ଷର ଛାତ୍ରମାନେ ମଧ୍ୟ ଆମ ସାଙ୍ଗରେ ରହୁଥିଲେ। ଏମାନେ ଲମ୍ବା ଲମ୍ବା ପଞ୍ଜାବି ପିନ୍ଧି ଅନେକ ସମୟରେ ଷ୍ଟାଇଲ୍‌ରେ ବାଡ଼ିଧରି ବୁଲି ବାହାରନ୍ତି । ପ୍ରଥମେ ଯାଇଥିବା ନୂଆ ପିଲାମାନେ ସେମାନଙ୍କୁ ଭୟ ଓ ସମ୍ମାନର ସହ ଦେଖୁଥିଲେ।

ହଷ୍ଟେଲରେ ଆମ ଭିତରେ ଗୋଟିଏ ନୂଆ ବନ୍ଧୁ ଦଳ ଗଢ଼ିଉଠିଲା । ଆମେ ସବୁ କବିତା, ସାହିତ୍ୟ ଓ ସଂଗୀତ ଚର୍ଚ୍ଚାରେ ଲାଗିଗଲୁ। ରବି ଠାକୁରଙ୍କ ଲେଖା ଅଧିକାଂଶ ସମୟରେ ଆଲୋଚିତ ହେଉଥିଲା । ଇଂରାଜୀ ଲେଖକଙ୍କ ଭିତରୁ ବର୍ଣ୍ଣଡ଼ଶ ଆମର ସବୁଠୁ ପ୍ରିୟ। ତା' ସହିତ ଟମାସ୍ ହାର୍ଡି, ସେଲି, କିଟ୍‌ସ, ବାଇରନ୍‌ଙ୍କ ପରି ରୋମାଣ୍ଟିକ୍ କବିମାନଙ୍କ ଲେଖା ଆମକୁ ଆକୃଷ୍ଟ କରିଥିଲା । ଓଡ଼ିଶାର ମାୟାଧର ମାନସିଂହ, କାଳିନ୍ଦୀଚରଣ ପାଣିଗ୍ରାହୀ, ଅନନ୍ତ ପଟ୍ଟନାୟକ, ଶରତ ମୁଖାର୍ଜୀ, ସଚ୍ଚି ରାଉତରାୟ ମଧ୍ୟ ଆମର ପ୍ରିୟ କବି । କିଛି ଉପର ଶ୍ରେଣୀ ପିଲା ମଧ୍ୟ ଏଥିରେ ଯୋଗ ଦିଅନ୍ତି ।

ଆମର ପୋଷାକ ମଧ୍ୟ ବଦଳିଗଲା । ପାଠପଢ଼ାରେ ବିଶେଷ ଆଗ୍ରହ ନଥାଇ ସାହିତ୍ୟ ଓ ପୋଷାକରେ ଆଗ୍ରହ ବଢ଼ିଲା । ମୋର ଓ ଆଉଜଣେ ବନ୍ଧୁଙ୍କର ଧୋତି ଜଣେ ହଷ୍ଟେଲ ଚାକର ବାଉଁଶ ପାତିଆରେ ମୋଡ଼ିମୋଡ଼ି କୁଞ୍ଚି କରି ଆମକୁ ଦିଏ । ସାହିତ୍ୟରେ ଆଗ୍ରହୀ କି ନା ତେଣୁ ମୁଁ କବିସମ୍ରାଟ୍ ଟ୍ରେଡ୍ ମାର୍କର ଗୋଟିଏ ପ୍ରକାର ଉତ୍ତମ ଧରଣର ଧୋତି ପିନ୍ଧୁଥିଲି। ଏହା ସବୁଠୁ ବେଶି ଦାମ୍ ଥିଲା । ଦେଢ଼ଟଙ୍କା ବା ଟଙ୍କାଏ ଛଅଣା ଗୋଟି । ସେତେବେଳକାର ଦାମ୍ ତୁଳନାରେ ନିଶ୍ଚୟ ବେଶି । ଗୋଟାଏ ବଡ଼ ରସଗୋଲା ଦାମ୍ ତିନିପଇସା ଥାଏ ଯାହାର ଦାମ୍ ବର୍ତ୍ତମାନ ପାଞ୍ଚଟଙ୍କା । ହଷ୍ଟେଲ ଖାଇବା ଖର୍ଚ୍ଚ ମାସକୁ ଏଗାର ଟଙ୍କା ପଡ଼େ। ସେଥିରେ ଦୁଇଥର ଖାଇବା ସହିତ ଗୋଟିଏ ଥର ଜଳଖିଆ ମିଳେ ।

ସେତେବେଳେ କବି ସଚ୍ଚି ରାଉତରାୟଙ୍କ ସହିତ କଲେଜ କମନ ରୁମ୍‌ରେ ଦେଖାହୁଏ । ସେ କଲିକତାରୁ ଆସି ରେଭେନ୍‌ସା କଲେଜରେ ଯୋଗ ଦେଇଥାନ୍ତି । ତାଙ୍କ ସହିତ କଥାବାର୍ତ୍ତା କରିବା ଗୋଟିଏ ଗର୍ବର କଥା ଥିଲା ।

ଏହି ସମୟରେ ଆମେ କେତେଜଣ ମିଶି ଗୋଟିଏ ଉଚ୍ଚଧରଣର ମାସିକ ସାହିତ୍ୟ ପତ୍ରିକା ପ୍ରକାଶ କରିବାକୁ ଯୋଜନା କଲୁ । ସଚ୍ଚି ରାଉତରାୟ ଏହାର ସଂପାଦକ ହେଲେ । ଉପେନ୍ଦ୍ର ସାମଲ ଏହାର ପରିଚାଳକ । ଆମେମାନେ ବିଭିନ୍ନ ଲେଖକଙ୍କ ପାଖକୁ ଯାଇ ଲେଖା ସଂଗ୍ରହରେ ଲାଗିପଡ଼ିଲୁ । ଏହି ଅବସରରେ ଓଡ଼ିଶାର ତତ୍କାଳୀନ ସବୁଜ ସାହିତ୍ୟର ମହାରଥୀମାନଙ୍କ ସହିତ ପରିଚୟ ହୋଇଥିଲା । ଛାତ୍ରବତ୍ସଳ ବୈକୁଣ୍ଠନାଥ ପଟ୍ଟନାୟକଙ୍କ ସହିତ ଏହି ସମୟରେ ବନ୍ଧୁତା ଜୀବନସାରା ରହିଯାଇଥିଲା । ଯେତେଦୂର ମନେହେଉଛି, ଏହି ପତ୍ରିକାର, ସାତ-

ଆଠଟି ସଂଖ୍ୟା ବାହାରିଥିଲା । ତା'ପରେ ଆମେମାନେ ଚାରିଆଡ଼େ ଛିନଛତ୍ର ହୋଇଗଲୁ । ଆଉ ପତ୍ରିକା ବାହାରିପାରିଲା ନାହିଁ । ବର୍ତ୍ତମାନ ସୁଦ୍ଧା ସଚ୍ଚି ରାଉତରାୟଙ୍କର ପତ୍ରିକା ବିଷୟରେ ମନେଅଛି ।

ସାହିତ୍ୟ ଚର୍ଚ୍ଚା ସାଙ୍ଗକୁ ରାତିରେ କେନାଲ୍‌ରେ ନୌକାବିହାର ଆମର ଗୋଟିଏ ଆମୋଦକର ଓ ଉପଭୋଗ୍ୟ ଅନୁଭୂତି । ଶ୍ରୀଯୁକ୍ତ ଶ୍ୟାମାଚରଣ ତ୍ରିପାଠୀ ପ୍ରିନ୍‌ସପାଲ୍ କିଛିଦିନ ଥିଲେ । ସେ କଲେଜ ପିଲାମାନଙ୍କ ପାଇଁ ତିନୋଟି ଲମ୍ବା ଲମ୍ବା ଷ୍ଟାଇଲ୍‌ର ଡଙ୍ଗା ମଗାଇ ଦେଇଥିଲେ । ତା'ପାଇଁ ପଶ୍ଚିମ ଛାତ୍ରାବାସର ପଶ୍ଚିମପଟ କେନାଲରେ ଗୋଟିଏ ବୋଟ୍‌କ୍ଲବ୍ ହୋଇଥାଏ । ସେଥିରେ ଆମେମାନେ ଥିଲୁ ସ୍ଥାୟୀ ସଦସ୍ୟ । ଅପରାହ୍ନରେ ଡଙ୍ଗା ଚଲାଉ, କିନ୍ତୁ ଥରେ ଥରେ ଜହ୍ନ ପକ୍ଷ ରାତିରେ ଲୁଚି ଲୁଚି ଡଙ୍ଗାକୁ ଧରି ବିଦ୍ୟାଧରପୁର ଫାର୍ମ ପର୍ଯ୍ୟନ୍ତ ନେଇଯାଉ । ସେଠାରେ ଆଖୁ ଖାଉ ଏବଂ ଭୋର୍‌ରୁ ଫେରୁ । ନିର୍ଜନ ଜହ୍ନପକ୍ଷ ରାତିରେ କେନାଲ୍‌ରେ ଡଙ୍ଗା ବାହି ଯିବା ଆମକୁ ବହୁତ ଭଲ ଲାଗୁଥିଲା । ଶରତ ଚାଟାର୍ଜୀଙ୍କ ଉପନ୍ୟାସ 'ଶ୍ରୀକାନ୍ତ'ରେ ଏପରି ଅନୁଭୂତି ବର୍ଣ୍ଣିତ ହୋଇଥିଲା । ଆମେ ଯେପରି ଶ୍ରୀକାନ୍ତ ପରି ଉପନ୍ୟାସର ନାୟକ ! ଥରେ ଚୌଦ୍ୱାରରେ ଉପର ପଟ ଗୋଟିଏ ସ୍ଥାନରୁ ଡାହାଣୀ ନିଆଁ ବାହାରି ବହୁବାଟ ଯାଏ ବୋଲି ଶୁଣି ଆମେ କେତେଜଣ ରାତିରେ ଲୁଚି ଡଙ୍ଗା ଧରି ଗଲୁ ଏହି ଡାହାଣୀ ନିଆଁକୁ ଗୋଡ଼ାଇବା ପାଇଁ । ରାତିସାରା ଗୋଟାଏ ମଶାଣିରେ ବସି ଗୀତ ଗାଇବା ଆରମ୍ଭ ହେଲା । ଅବଶ୍ୟ ଶେଷ ପର୍ଯ୍ୟନ୍ତ ଡାହାଣୀ ନିଆଁ ଆମ ଆଗକୁ ଆସିଲା ନାହିଁ । ଏସବୁ ବଡ଼ ଅଦ୍ଭୁତ ଅନୁଭୂତି । ଭଲ ପଢୁଥିବା ପିଲାଙ୍କର ଏହା କଳ୍ପନାର ବାହାରେ । ଗୀତ, ସାହିତ୍ୟ, ଡଙ୍ଗାଚଲା ପ୍ରଭୃତିରେ ମତ୍ତ ରହୁଥିବା ପିଲାଙ୍କର ଯାହା ପଢ଼ା ହେଉଥିବ ସହଜରେ ଅନୁମେୟ ।

ରାଜନୀତିଗତ କାର୍ଯ୍ୟକଳାପରେ ମୋର ଆଗ୍ରହ ଏକଦମ୍ କମି ଆସୁଥିଲା । ଆତଙ୍କବାଦ ଆନ୍ଦୋଳନ ଦବିଗଲା । ସତ୍ୟାଗ୍ରହରେ ବିଶ୍ୱାସ ମୋର ଖୁବ୍ ବେଶି ଦୃଢ଼ ନଥିଲା । ତେଣୁ ରାଜନୀତିରେ ଗୋଟିଏ ଦ୍ୱନ୍ଦ୍ୱାତ୍ମକ ମାନସିକ ଅବସ୍ଥା ଥିଲା ।

ସେତେବେଳକୁ ଓଡ଼ିଶାରେ ବିଶେଷତଃ, ରେଭେନ୍‌ସା କଲେଜ ଏବଂ କଟକ ମେଡ଼ିକାଲ କଲେଜରେ ଛାତ୍ର ଅଶାନ୍ତି ପ୍ରଚଣ୍ଡ ଭାବରେ ଦେଖାଦେଇଥିଲା । ରାଜନୀତି ବ୍ୟତୀତ ଯେ କୌଣସି ଆଳରେ ମଧ୍ୟ କଲେଜ ବଂଦ ଆଂଦୋଳନ ଆରମ୍ଭ ହୋଇଯାଉଥିଲା- ସେତେବେଳେ ଛାତ୍ରନେତା ବୀରେନ୍ ମିତ୍ର, ଅଶୋକ ଦାଶ, ବିଭୁଧେନ୍ଦୁ ମିଶ୍ର, ବୈଦ୍ୟନାଥ ରଥ, ମନମୋହନ ମିଶ୍ର ପ୍ରମୁଖ କଲେଜରେ ବିଭିନ୍ନ କ୍ଲାସର ଛାତ୍ର ଥିଲେ । ଆଇନ କ୍ଲାସ ସବୁ ରେଭେନ୍‌ସା କଲେଜରେ ହେଉଥିବାରୁ ଏମାନଙ୍କ ଭିତରୁ ଅଧିକାଂଶ ଆଇନ ପଢୁଥିଲେ । ଏହି ରାଜନୈତିକ ଆନ୍ଦୋଳନର ମୁଁ ଜଣେ ନିଷ୍କ୍ରିୟ ଦର୍ଶକ ମାତ୍ର ଥିଲି । ସାହିତ୍ୟ ସଂଗୀତ ଚର୍ଚ୍ଚା ଥିଲା ଆମ କେତେଜଣଙ୍କର ପ୍ରଧାନ

କାର୍ଯ୍ୟ । ମୁଁ ମଧ୍ୟ କିଛିଦିନ ହାରମୋନିୟମ୍ ଧରି ଗୀତ ଶିଖିବାକୁ ଆରମ୍ଭ କରିଥିଲି । ତୁବି ତାବଲା ଶିଖୁଥିଲି ।

ଆଉ ଗୋଟିଏ ବଡ଼ ଗୁରୁତ୍ୱପୂର୍ଣ୍ଣ ଅନୁଭୂତି ଏ ସମୟରେ ଦେଖା ଦେଇଥିବା ଯାହା କି ଭବିଷ୍ୟତରେ ମୋର ଧର୍ମଗତ ଅଭ୍ୟାସକୁ ପୂରା ବଦଳାଇ ଦେଲା । ମୁଁ ତ ପିଲାଦିନୁ ବହୁତ ବେଶି ଧର୍ମଗତ କାର୍ଯ୍ୟକଳାପରେ ବୁଡ଼ିରହିଥିଲି, ଘଣ୍ଟା ଘଣ୍ଟା ଧରି ଜପତପ କରୁଥିଲି, ଶ୍ରୀକୃଷ୍ଣଙ୍କୁ ସଖା ହିସାବରେ ଧ୍ୟାନ କରୁଥିଲି, ମଝି ମଝିରେ ମଧ୍ୟରାତ୍ରିରେ ଦିଗ୍‌ମଣ୍ଡଳ ଉପରେ ବାଳକୃଷ୍ଣଙ୍କର ଚେହେରା ଦେଖି ପାରୁଥିଲି, ବହିରେ ଲେଖାଥିବା ଶିହରଣ ମୋ ଦେହରେ ଦେଖାଯାଉଥିବା ଇତ୍ୟାଦି ଇତ୍ୟାଦି । କିନ୍ତୁ ଏହି ସମୟରେ କୌଣସି ନିର୍ଦ୍ଦିଷ୍ଟ କାରଣ ନଥାଇ ମଧ୍ୟ ମନରେ ସନ୍ଦେହ ଜାତ ହେଲା ଯେ ମୁଁ ଯାହା କରୁଛି ସେଥିରେ କିଛି ସତ୍ୟତା ଅଛି ନା ବହିରେ ଅଛି ଓ ଲୋକମାନେ କରୁଛନ୍ତି ବୋଲି ମୁଁ କରୁଛି ଏବଂ ଅନ୍ୟମାନଙ୍କଠାରୁ ଶୁଣି ଶୁଣି ସେ ପ୍ରକାର ଅନୁଭୂତି ମୋର ହେଉଛି । ଥରେ ସନ୍ଦେହ ହେଲା ପରେ ମୁଁ ଆଉ ସରଳ ଭାବରେ ପ୍ରାର୍ଥନା କରିପାରିଲି ନାହିଁ ।

ଅନେକ ସମୟରେ ବିପଦ ଆପଦ ପଡ଼ିଲେ ଏବଂ ଠାକୁର ତୁମକଥା ନ ଶୁଣିଲେ ବୋଲି ହୃଦ୍‌ବୋଧ ହେଲେ ମଣିଷ ବିରକ୍ତ ହୋଇ ଠାକୁର ପୂଜା ଛାଡ଼ିଦିଏ । ପର ଜୀବନରେ ମୋତେ ଜଣେ ବିଶିଷ୍ଟ ଭଦ୍ରବ୍ୟକ୍ତି କହୁଥିଲେ ଯେ ସେ ବହୁତ ବେଶି ଠାକୁରାଣୀ ଭକ୍ତ ଥିଲେ । ଥରେ ତାଙ୍କର ଜଣେ ଆତ୍ମୀୟ ଭୟଙ୍କର ରୋଗରେ ପୀଡ଼ିତ ହୋଇପଡ଼ିଲେ । ସେଦିନ ରାତି ତାଙ୍କ ଘରେ ବହୁବର୍ଷ ଧରି ପୂଜା ପାଉଥିବା ଇଷ୍ଟଦେବତା ଠାକୁରାଣୀଙ୍କ ମୂର୍ତ୍ତି ପାଖରେ ସେ ବସି ପୂଜା କଲେ । କିନ୍ତୁ ତାଙ୍କର ସେ ଆତ୍ମୀୟ ମରିଗଲା ପରେ ସେ ଏତେ ବେଶି ବିଦ୍ରୋହୀ ହୋଇଗଲେ ଯେ ଠାକୁରାଣୀ ମୂର୍ତ୍ତିକୁ ମହାନଦୀରେ ଫୋପାଡ଼ି ଦେଇଥିଲେ । ମୋଠାରେ କିନ୍ତୁ ଈଶ୍ୱର ବିଶ୍ୱାସ ନେଇ ଏପରି କୌଣସି ବ୍ୟର୍ଥତା ବା ବିଦ୍ରୋହ ଦେଖା ଦେଇନଥିଲା । କେବଳ ବୌଦ୍ଧିକ ସଂଶୟ ଆସିଲା । ଅନ୍ୟମାନଙ୍କର ଗତାନୁଗତିକ କଥାରେ ମୁଁ ଖାଲି ଭାସି ଚାଲିଛି ନା ଏଥିରେ କୌଣସି ଯାଥାର୍ଥ୍ୟ ରହିଛି । ଏହି ବିରାଟ ସନ୍ଦେହ ମୋର ସାରା ବ୍ୟକ୍ତିତ୍ୱକୁ ମନ୍ଥି ପକାଇଲା । ଫଳରେ ଏହି ଦୁଇବର୍ଷ କାଳ ମୁଁ ଆଉ ଜପତପ କରିପାରିଲି ନାହିଁ । ମୋର ବୌଦ୍ଧିକ ଓ ଧର୍ମଗତ ଜଗତରେ ଏହା ଗୋଟିଏ ବିରାଟ ପରିବର୍ତ୍ତନ ଆଣିଦେବାର ପ୍ରଥମ ସୂଚନା ଥିଲା ।

ଏହି ଦୁଇବର୍ଷ ଭିତରେ ସାହିତ୍ୟ ଆଲୋଚନା, ଜହ୍ନ ରାତିରେ ଡଙ୍ଗା ଚଲାଇବା, ରାତିରେ କଲେଜ ପଡ଼ିଆରେ ବୁଲିବା, ଉଦିତ ଅସ୍ତମିତ ଜହ୍ନ ପାଇଁ ପ୍ରତୀକ୍ଷା କରି ବସିବା ସହିତ ରାଜନୀତି ଓ ଧର୍ମଗତ ସଂଶୟରେ ପ୍ରବଳ ଭାବରେ ଦ୍ୱନ୍ଦ୍ୱାଭିମୁଖୀ ହୋଇ ସମୟ ସ୍ରୋତରେ ମୁଁ ଦିଗହୀନ ଲକ୍ଷ୍ୟହୀନ ନୌକା ପରି କେବଳ ଭାସି ଚାଲିଲି । ଏ ସମୟରେ କୌଣସି ସଫଳତା କିମ୍ବା ବ୍ୟର୍ଥତା

ମଧ୍ୟ ନଥିଲା । ଗନ୍ତବ୍ୟ ପଥରେ କୌଣସି ଦିଗ ନିର୍ଦ୍ଦେଶକ ଦିଗନ୍ତ ନଥିଲା । କଳ୍ପନାବିଳାସୀ ନ୍ୟୂନ ମନୋଭାବାପନ୍ନ ବ୍ୟକ୍ତି ଜୀବନରେ ବୋଧହୁଏ ଏ ପ୍ରକାର ନିଷ୍ଫଳ ଓ ସଂଶୟଗତ ସମୟ ଆସେ । ଏହା ହୁଏତ ଭବିଷ୍ୟତ ଜୀବନ ଦର୍ଶନର ନୂତନ ଆଦର୍ଶ ଓ ସଂକଳ୍ପ ପାଇଁ ଦରକାର ହୁଏ । ତଥାକଥିତ ମାନସିକ ଶୂନ୍ୟତା ଭିତରୁ ନୂତନ ଦିଗ୍‌ଦର୍ଶନର ସନ୍ଧାନ ମିଳେ । ଜୀବନର ବାଟ ଅଲଗା ହୋଇଯାଏ । ନୂତନ ଭାବରେ ବ୍ୟକ୍ତିତ୍ୱର ଆତ୍ମଦର୍ଶନ ହୁଏ ।

ଆଇ.ଏ. ପରୀକ୍ଷାର କିଛିଦିନ ପୂର୍ବରୁ ମନରେ ହଠାତ୍ ଭୟ, ଉତ୍କଣ୍ଠା ଓ ଉଦ୍‌ବିଗ୍ନତା ଦେଖାଦେଲା । ମୋତେ ରାତିରେ ନିଦ ହେଲାନାହିଁ । ନିଦ୍ରାହୀନତା ଯୋଗୁଁ ଶାରୀରିକ ଦୁର୍ବଳତା ଏବଂ ମାନସିକ ଉଦ୍‌ବିଗ୍ନତା ଭିତରେ କୌଣସିମତେ ଆଇ.ଏ. ପରୀକ୍ଷା ଦେଇଦେଲି । ମୋର କେତେକ ଅନ୍ତରଙ୍ଗ ସାହିତ୍ୟ ସାଥୀ ଭୟରେ ପରୀକ୍ଷା ଦେଲେନାହିଁ । ସେମାନଙ୍କ ଭିତରୁ କେତେକ ମଧ୍ୟ ଜୀବନସାରା ଆଉ ପରୀକ୍ଷା ଦେଇନାହାନ୍ତି । ଆଉ କେତେଜଣ ଦେଇଥିଲେ, ଫେଲ୍ ବି ହେଲେ । ସେମାନଙ୍କ ଭିତରୁ କେବଳ ମୁଁ କୌଣସିମତେ ପାସ୍ କରିଗଲି । ପରୀକ୍ଷାରେ ନିଶ୍ଚିତ ଭାବରେ ଫେଲ୍ ହେବି ଭାବି ମୁଁ ଖରା ଛୁଟିରେ ଭାଇନାଙ୍କ ପାଖକୁ ନ ଯାଇ କଟକରେ ଗୋଟିଏ ଭଡ଼ାଘରେ ନାନୀ, ଖୁଡ଼ୀ ଓ ମୋର କକେଇପୁଅ ଭାଇ ପୁରୁଷୋତ୍ତମ ଭାଇନାଙ୍କୁ ନେଇ ରହିଲି ।

ପରୀକ୍ଷା ପର ପର ଦୁଇମାସର ଅବସ୍ଥା ଅତି ବିଚିତ୍ର ଥିଲା । ମୁଁ ଦିନସାକ ଘରେ ଶୁଏ । ସନ୍ଧ୍ୟା ପରେ ଖାଇସାରି କାଠଯୋଡ଼ି ନଦୀର ମଝି ବାଲିରେ ବୋହିଯାଉଥିବା ପାଣିଧାର କୂଳେ କୂଳେ ଚାଲେ । ପ୍ରାୟ ରାତିସାରା ଏହିପରି ବାଲିରେ ବହୁବାଟ ବୁଲେ । କେତେବେଳେ ଛୋଟିଆ ଡଙ୍ଗାଟିଏ ଦେଖିଲେ ସେଥିରେ ଯାଇ ବସେ । ପାଣି ଭିତରେ ବୁଡ଼ି ବସିବାରେ କେତେ ସମୟ କଟିଯାଏ ମଝି ମଝିରେ ଗୀତ ଗାଏ । ଚନ୍ଦ୍ର ଉଦୟ ଓ ଅସ୍ତ ଦେଖେ । ଚନ୍ଦ୍ରାସ୍ତ ବେଳେ ମୋର ବିରାଟ ଲମ୍ବାଛାଇ କାଠଯୋଡ଼ି ବାଲିରେ ଥିବା ବିଭିନ୍ନ ଆକାରର ବାଲିକୁଦର ଛାଇ ଭିତରେ ବୁଲୁଥିବାର ଚିତ୍ର ଦେଖିବାରେ ଆନନ୍ଦ ପାଏ । ଥରେ ପାଣିଧାର ପାଖରେ ଗୋଟିଏ ଲମ୍ବା ଓ ଚୌଡ଼ା ଛାଇ ଦେଖାଗଲା । ପାଖକୁ ଗଲା ପରେ ଦେଖିଲି ଗୋଟିଏ ଯୁବକର ମୋଟା ମୋଟା ହାତ ଗୋଡ଼ ଓ ଚୌଡ଼ା ଛାତିଥିବା ଶବଟିଏ ପଡ଼ିଛି । ଭୟ ନିଶ୍ଚୟ ହେଲା କିନ୍ତୁ ଉପାୟ ନଥିଲା । ଆଗ ସମୟରେ ଯେତେଟା ଭୟ ହୋଇଥାଆନ୍ତା ସେତେଟା ଭୟ କାହିଁକି ହୋଇ ନଥିଲା । ଭଗବତ୍ ବିଶ୍ୱାସ କମିଯିବା ସହିତ ଭୂତଭୟ ମଧ୍ୟ ଯେମିତି କମି ଆସୁଥିଲା ।

ସେହି କେତେଦିନର ଅନୁଭୂତି ବହୁତ ଅଦ୍ଭୁତ ଥିଲା ମୋ ପକ୍ଷରେ । ମୁଁ ଯେପରି କ'ଣ ଖୋଜୁଥିଲି । ଦିନର ଗୋଳମାଳିଆ ସମୟରେ ଯେପରି ଏହା ସମ୍ଭବ ନଥିଲା । ନିର୍ଜନ ରାତିର ମୋଲାୟମ ଶୂନ୍ୟତା ଭିତରେ ଖୋଜିବାରେ ଆନନ୍ଦ ଥିଲା । କ'ଣ ଖୋଜୁଥିଲି ତା'ର ଚେତନା ମଧ୍ୟ ମୋର ନଥିଲା । ଉଦ୍ଦେଶ୍ୟବିହୀନ, ଲକ୍ଷ୍ୟହୀନ ଏ ସନ୍ଧାନ । ଏଥିରେ ଦୁଃଖ, ବ୍ୟର୍ଥତା କି

ନିର୍ଦ୍ଦିଷ୍ଟ ଆନନ୍ଦ ମଧ୍ୟ ନଥିଲା । ଅନ୍ଧାର ରାତିରେ ତାରକାର କ୍ଷୀଣ ଆଲୋକରେ କିମ୍ବା ଜ୍ୟୋତ୍ସ୍ନାଭରା ଦୀପ୍ତିରେ, ଦିଗନ୍ତବ୍ୟାପୀ ବାଲୁକାର ଆସ୍ତରଣ ଉପରେ ଏକୁଟିଆ ଚାଲିବାର କ'ଣ ଉଦ୍ଦେଶ୍ୟ ଥିଲା କେଜାଣି । ଜନହୀନ ନିର୍ଜନ ରାତିରେ ଯେପରି ପ୍ରକୃତିର କେବଳ ନୀରବ ନିଶ୍ଚଳ ସ୍ଥିତି ଉପଲବ୍ଧ କରିହୁଏ ମୋର ସେହିପରି କେବଳ ଏକ ଅସ୍ତିତ୍ୱ ଥିଲା । ମନ ଗହୀରର କୌଣସି ଉଚ୍ଚାଟ ନଥିଲା- Pulsated at a point like a trembling distant star in the midst of infinite existance.

ପରୀକ୍ଷା ଫଳ ବାହାରିବାର କିଛିଦିନ ପରେ ଏପରି ଏକ ନିରୋଳା ରାତିର ଶେଷ ଭାଗରେ ମୋ ମନରେ ଗୋଟିଏ ଆଲୋଡ଼ନ ସୃଷ୍ଟି ହୋଇଥିଲା । ମୁଁ ସାଙ୍ଗେ ସାଙ୍ଗେ ଘରକୁ ଫେରି ସେହି ରାତିରେ ପାଟଣା କଲେଜର ପ୍ରିନ୍‌ସପାଲଙ୍କ ପାଖକୁ ଗୋଟିଏ ଚିଠି ଲେଖିଲି ଏବଂ ଭୋର୍‌ରେ ତାକୁ ଡାକରେ ପକାଇ ଆସିଲି । ତାଙ୍କର ନାମ ମୋତେ ଜଣା ନଥିଲା । କେବଳ ପ୍ରିନ୍‌ସପାଲ ପାଟନା କଲେଜର ଠିକଣା । ମନେ ମନେ ଠିକ୍ କଲି ଯେ ମୁଁ ଆଉ କଟକରେ ପଢ଼ିବି ନାହିଁ । ସେ ଚିଠିରେ କ'ଣ ଲେଖିଥିଲି ମୋର ମନେନାହିଁ । ଆଜି ପର୍ଯ୍ୟନ୍ତ କେବଳ ଗୋଟିଏ ଧାଡ଼ି ମନେଅଛି- The sword of democleus is hanging over me.

ତା'ପରେ ରେଭେନ୍‌ସା କଲେଜକୁ ଗଲି ଟ୍ରାନ୍‌ସଫର ସାର୍ଟିଫିକେଟ ଆଣିବା ପାଇଁ । ଡ଼ ବଳଭଦ୍ର ପ୍ରସାଦ ପ୍ରିନ୍‌ସପାଲ ଚାର୍ଜରେ ଥାନ୍ତି । ସେ ମୋତେ ବହୁତ ବୁଝାଇ କହିଥିଲେ ଟ୍ରାନ୍‌ସଫର ନ ହେବାପାଇଁ । କାରଣ ସେ ନିଶ୍ଚିନ୍ତ ଥିଲେ ଯେ ପାଟଣା କଲେଜର ସ୍ନାତକ ଶ୍ରେଣୀରେ ପ୍ରଥମ ଶ୍ରେଣୀରେ ପାସ୍ ନ କରିଥିବା ଓଡ଼ିଆ ପିଲାଙ୍କୁ ବିଲ୍‌କୁଲ ଜାଗା ମିଳିବ ନାହିଁ । ତା'ଛଡ଼ା ମୁଁ ଯେପରି ଭାବରେ ଖାଲି ଗୋଟିଏ ଚିଠି ଲେଖି ଦେଇଛି ସେଥିରେ ସ୍ଥାନ ପାଇବା ଅସମ୍ଭବ ବୋଲି କହିଲେ । ସେତେବେଳକୁ ପାଟଣା କଲେଜରେ ନାମ ଲେଖାଇବା ପାଇଁ ଆଉ ମାତ୍ର ଥାଏ ପନ୍ଦର ଦିନ ଅଥଚ ମୋ ପାଖକୁ କୌଣସି ଖବର ଆସି ନଥାଏ । ମୁଁ କିନ୍ତୁ ତାଙ୍କ କଥା ନମାନି କିଦ୍ କରି କଲେଜ ଛାଡ଼ିବା ସାର୍ଟିଫିକେଟ ଯୋଗାଡ଼ କଲି ଏବଂ ପାଟଣା କଲେଜ ପ୍ରିନ୍‌ସପାଲଙ୍କ ପାଖକୁ ପଠାଇଦେଲି । ମୋର ଦୃଢ଼ ସଂକଳ୍ପ ଥିଲା ଯେ ଯାହା ହେଲେ ବି ମୁଁ ଆଉ କଟକରେ ପଢ଼ିବି ନାହିଁ । ଏପ୍ରକାର ଅବାସ୍ତବ ସଂକଳ୍ପ ଯେ ମୋର କିପରି ହେଲା ମୁଁ ଭାବିପାରୁନାହିଁ ।

•

---

***ଆତ୍ମଜୀବନୀ ଚରିତ,*** ପ୍ରଫେସର ଡଃ ରାଧାନାଥ ରଥ ଗ୍ରନ୍ଥାବଳୀ,
୧ମ ଭାଗ, କାହାଣୀ, ୨୦୦୪

# ଛାତ୍ରମାନଙ୍କର ଗଣତାନ୍ତ୍ରିକ ଅଧିକାର ଜାହିର

## ନୀଳମଣି ରାଉତରାୟ

କଲେଜ ନିର୍ବାଚନରେ ଗଣତାନ୍ତ୍ରିକ ଅଧିକାରପାଇଁ ଆନ୍ଦୋଳନ ଏକ ସାମାନ୍ୟ ଘଟଣା ହେଲେ ମଧ୍ୟ ଖୁବ୍ ସରଗରମ୍ ହୋଇ ଉଠିଥିଲା । ପୂର୍ବରୁ କଲେଜରେ ଛାତ୍ର ଇଉନିୟନ୍ ପିଲାମାନଙ୍କର ମତଦ୍ୱାରା ଗଠିତ ହେବାର ସୁବିଧା ସୁଯୋଗ ଦିଆଯାଉନଥିଲା । ରେଭେନ୍ସା କଲେଜ ଛାତ୍ର ଇଉନିୟନ୍‌ର ସଭାପତି ହେଉଥିଲେ କଲେଜର ଅଧ୍ୟକ୍ଷ । ଛାତ୍ରମାନେ କଲେଜ ଇଉନିୟନ୍ କାର୍ଯ୍ୟ ତୁଲାଇ ପାରିବେ ନାହିଁ ବୋଲି ଅଧ୍ୟକ୍ଷ ପରିଜା ସାହେବଙ୍କର ଦୃଢ଼ ଧାରଣା ଥିଲା । ତେଣୁ ଛାତ୍ର ଇଉନିୟନ୍ ପାଇଁ ଜଣେ ଛାତ୍ରଙ୍କୁ ସଭାପତି ନିର୍ବାଚିତ କରିବାକୁ ଯେତେବେଳେ ଛାତ୍ରମାନେ ଦାବି କଲେ, ଅଧ୍ୟକ୍ଷ ପରିଜା ସାହେବ ତାହା ଅଗ୍ରାହ୍ୟ କରି ଦେଇଥିଲେ । ଓଡ଼ିଶାରେ ଛାତ୍ର ଅଶାନ୍ତି ଏବଂ ବିଶେଷ କରି ରେଭେନ୍ସା କଲେଜରେ ଛାତ୍ର, ଅଧ୍ୟକ୍ଷ ତଥା ଅଧ୍ୟାପକଙ୍କ ସଂପର୍କ ବିଷୟରେ ଓଡ଼ିଶା ବ୍ୟବସ୍ଥାସଭାରେ ୧୯୩୮ ଓ ୧୯୩୯ ମସିହା ବଜେଟ୍ ଅଧିବେଶନମାନଙ୍କରେ ବହୁତ ଆଲୋଚନା ଓ ଆଲୋଡ଼ନ ସୃଷ୍ଟି ହୋଇଥିଲା । ବିଧାୟକ ପ୍ୟାରୀଶଙ୍କର ରାୟ, ପ୍ରାଣନାଥ ପଟ୍ଟନାୟକ, ମୋହନ ଦାସ, ଲୋକନାଥ ମିଶ୍ର ପ୍ରମୁଖ ରେଭେନ୍ସା କଲେଜର ଅଧ୍ୟକ୍ଷ ଓ କେତେକ ଅଧ୍ୟାପକଙ୍କ ରକ୍ଷଣଶୀଳ ତଥା ହାକିମି ମିଜାଜ୍‌ର କଠୋର ସମାଲୋଚନା କରିଥିଲେ । ଛାତ୍ରମାନଙ୍କର ବ୍ୟକ୍ତିଗତ ସ୍ୱାଧୀନତାରେ ହସ୍ତକ୍ଷେପ କରି ସେମାନଙ୍କୁ ନାନାପ୍ରକାର ଅସୁବିଧାରେ ପକାଯାଉଛି ବୋଲି ଅଭିଯୋଗ କରିଥିଲେ । ଛାତ୍ରମାନଙ୍କ ଧର୍ମଘଟ ଓ ଅନଶନ ଧର୍ମଘଟ ବିଷୟ ମଧ୍ୟ ବ୍ୟବସ୍ଥାସଭାରେ ଆଲୋଚିତ ହୋଇଥିଲା । ଏଜୁକେଶନ୍ କୋଡ୍‌ର ପରିବର୍ତ୍ତନ ପାଇଁ ଦାବି କରାଯାଇଥିଲା । ଛାତ୍ରମାନଙ୍କୁ ତାଙ୍କ ନିଜ ଅନୁଷ୍ଠାନ ଗଢ଼ିବା ଅଧିକାରରୁ ବଞ୍ଚିତ କରାଯାଇଥିବାରୁ ସେମାନେ ତା'ର କଠୋର ସମାଲୋଚନା କରିଥିଲେ । ବ୍ୟବସ୍ଥାସଭାର ଏହି ସଦସ୍ୟମାନଙ୍କ ସହିତ ମୋର ପରିଚୟ ଥିଲା । ଛାତ୍ର ଅଶାନ୍ତି ଓ ରେଭେନ୍ସା କଲେଜ ପରିସ୍ଥିତି ସମ୍ପର୍କୀୟ ସମସ୍ତ ସମ୍ବାଦ ମୁଁ ସେମାନଙ୍କୁ ଯୋଗାଇ ଦେଉଥିଲି ।

୧୯୩୮ ମସିହାର କଥା । ଆମ ଓଡ଼ିଶା ପ୍ରଦେଶରେ ଶିକ୍ଷାନୁଷ୍ଠାନମାନଙ୍କରେ ଅନ୍ଧାରୁଆ ଶାସନ ଓ ମେରୀରାୟ ନୀତି ପ୍ରଚଳିତ ଥିଲା । ଛାତ୍ର ସମସ୍ୟା ପ୍ରତି ରେଭେନ୍ସା କଲେଜର ଅଧ୍ୟକ୍ଷ ଓ ଅଧ୍ୟାପକମାନଙ୍କର କୌଣସି ସହାନୁଭୂତି ନଥିଲା ଭଳି ଜଣାପଡୁଥାଏ । କୌଣସି ବିଷୟରେ ଛାତ୍ରମାନଙ୍କର କିଛି ସ୍ୱାଧୀନତା ନଥିଲା । ଛାତ୍ରମାନେ ଅଧ୍ୟାପକମାନଙ୍କୁ ଭୟ

କରୁଥିଲେ, କାରଣ ଅଧ୍ୟକ୍ଷ ତଥା ଅଧ୍ୟାପକମାନଙ୍କୁ ଅସନ୍ତୁଷ୍ଟ କଲେ ସରକାରୀ ଚାକିରି ପାଇବାରେ ନିଶ୍ଚୟ ଅସୁବିଧା ଉପୁଜିବ ବୋଲି ସେମାନଙ୍କର ଧାରଣା ଥିଲା । ତେଣୁ ଅନେକ ସମୟରେ ସରକାରୀ-ଚାକିରି-ପ୍ରୟାସୀ ଛାତ୍ରମାନେ ଅଧ୍ୟକ୍ଷ ଓ ଅଧ୍ୟାପକମାନଙ୍କୁ ଅହେତୁକ ଆନୁଗତ୍ୟ ପ୍ରଦର୍ଶନ କରିଥାଆନ୍ତି । ସଂଗଠିତ ଛାତ୍ର ଆନ୍ଦୋଳନଦ୍ୱାରା ଛାତ୍ରମାନଙ୍କର ଏତାଦୃଶ ଭୂତଭୟର ହୀନମନ୍ୟତା ଦୂର ହୋଇଥିଲା ଏବଂ ଅଧ୍ୟାପକମାନଙ୍କର ଦୃଷ୍ଟିକୋଣ ମଧ୍ୟ ବଦଳିଥିଲା । ବହୁ ଆନ୍ଦୋଳନ ଓ ସଂଘର୍ଷ ପରେ ରେଭେନ୍‌ସା କଲେଜ ଛାତ୍ର ଇଉନିୟନ୍ ଏକ ଗଣତାନ୍ତ୍ରିକ ଅନୁଷ୍ଠାନରୂପେ ସ୍ୱୀକୃତି ହାସଲ କରିଥିଲା । କିନ୍ତୁ ଏଥିପାଇଁ ସଂଗ୍ରାମ ଅତି ସହଜସାଧ୍ୟ ହୋଇନଥିଲା । ବହୁ ଛାତ୍ରଙ୍କ ଅନେକ ଅସୁବିଧା ଭୋଗ କରିବାକୁ ପଡ଼ିଥିଲା । ଛାତ୍ର ଧର୍ମଘଟ ମଧ୍ୟ ହୋଇଥିଲା । ସେତେବେଳର ଛାତ୍ର ଆନ୍ଦୋଳନର ଲକ୍ଷ୍ୟ ସଂପର୍କରେ ଏଠାରେ ଦୁଇପଦ କହି ରଖେ । ଏକ ବିଶାଳକାୟ ଛାୟାପ୍ରଦ ବଟବୃକ୍ଷର ସାମାନ୍ୟ ଚେର ତଥା ଓହଳ ଯେଉଁ କ୍ଷୁଦ୍ର ହେଲେ ମଧ୍ୟ ବୃକ୍ଷକାୟାକୁ ସମ୍ପ୍ରସାରିତ ଓ ଦୃଢ଼ୀଭୂତ କରିବାପାଇଁ ସେଗୁଡ଼ିକହିଁ ଭୂମିରୁ ଶକ୍ତି ସଂଗ୍ରହ କରି ବୃକ୍ଷକୁ ଯୋଗାନ୍ତି ଏବଂ ଭୂମି ଉପରେ ଦୃଢ଼ ସ୍ତମ୍ଭସଦୃଶ ତାହାକୁ ଧରି ରଖନ୍ତି । ସେହିପରି ବିରାଟ ଜାତୀୟ ସଂଗ୍ରାମରେ ଛାତ୍ର ଆନ୍ଦୋଳନର ଭୂମିକା । ଛାତ୍ର, ଶ୍ରମିକ ଓ କୃଷକମାନଙ୍କର ଛୋଟ ଛୋଟ ଗଣତାନ୍ତ୍ରିକ ଅଧିକାରକୁ ସାବ୍ୟସ୍ତ କରିବାପାଇଁ ଦେଶରେ ସ୍ଥାନେ ସ୍ଥାନେ ଯେଉଁ ଆନ୍ଦୋଳନ ହେଉଥାଏ ତାହା ସଂକୁଚିତ ଦୃଷ୍ଟିକୋଣରୁ ଯେଉଁ ସାମାନ୍ୟ ବୋଧ ହେଲେ ମଧ୍ୟ ଏକ ବିଶାଳ ତଥା ଜାତୀୟ ଆନ୍ଦୋଳନ ଗଢ଼ିତୋଳିବା ପାଇଁ ଏସବୁ ଥିଲା ବଳିଷ୍ଠ ପରିପୂରକ ଓ ପରିପୋଷକ । ତେଣୁ ବାହାରକୁ ଯାହା ଛାତ୍ର ଓ ଅଧ୍ୟକ୍ଷ, ଶ୍ରମିକ ଓ ମାଲିକ, କୃଷକ ଓ ଜମିଦାରଙ୍କ ମଧ୍ୟରେ ସଂଘର୍ଷ ଭଳି ଜଣାପଡ଼େ ତାହା ଏକ ଅବାସ୍ତବ ସଂକୀର୍ଣ୍ଣ ବିଚାର । ବହୁକାଳର ନିଃସହାୟତା ଓ ଅବସାଦକୁ ଅତିକ୍ରାନ୍ତ କରି ଆମ ସ୍ୱପ୍ନର ଭାରତ ଓ ଭବିଷ୍ୟତ ଗଢ଼ିତୋଳିବା ନିମନ୍ତେ ଏସବୁ ଆନ୍ଦୋଳନାତ୍ମକ କାର୍ଯ୍ୟ ଥିଲା ଜାଗରଣ ଓ ଶକ୍ତି ସଂଚୟର ପ୍ରକୃଷ୍ଟ ମାର୍ଗ । ମୁଁ ଏହି ଦୃଷ୍ଟିଭଙ୍ଗୀ ନେଇ ଅଗ୍ରସର ହେଉଥିଲି । ଅଧ୍ୟକ୍ଷ ପରିଜା ସାହେବଙ୍କର ଏକ ଭ୍ରାନ୍ତ ଧାରଣା ଥିଲା । ସେ ବୁଝିଥିଲେ ଯେ ସେ ନିଜେ ଅଧ୍ୟକ୍ଷ ଭାବରେ ସଭାପତି ରହି କଲେଜ ଛାତ୍ର ଇଉନିୟନ୍ ସମସ୍ତ ଦାୟିତ୍ୱ ତୁଲାଇବା ଅଧିକାଂଶ ଛାତ୍ରଙ୍କର ଇଛା; ମାତ୍ର ମୁଷ୍ଟିମେୟ ଛାତ୍ର ନିର୍ବାଚନ ପଦ୍ଧତିରେ ଜଣେ ଛାତ୍ରକୁ ସଭାପତି ଭାବରେ ବାଛିବାପାଇଁ ଆନ୍ଦୋଳନ କରୁଛନ୍ତି । ସାମାନ୍ୟ କେତେଜଣ ଛାତ୍ର ପାଟିତୁଣ୍ଡ କରି ଜୋର୍‌ଜବରଦସ୍ତ ଭାବରେ ଅନ୍ୟମାନଙ୍କ ଉପରେ ସେମାନଙ୍କର ମତକୁ ଲଦିଦେବାକୁ ଚାହୁଁଛନ୍ତି ବୋଲି ସେ ବିଚାରିଲେ । ତେଣୁ ଗଣତାନ୍ତ୍ରିକ ରୀତିରେ ଛାତ୍ର ଇଉନିୟନ୍ ଗଠନର ପ୍ରସ୍ତାବକୁ ସେ ପ୍ରତ୍ୟାଖ୍ୟାନ କରି ଦେଇଥିଲେ । ଫଳରେ କଲେଜରେ ଛାତ୍ର ଧର୍ମଘଟ ଆରମ୍ଭ ହୋଇଗଲା । ଛାତ୍ରମାନେ ବାରମ୍ବାର ଦାବି କରିଥିଲେ ଯେ ଗଣତାନ୍ତ୍ରିକ ଭିତ୍ତିରେ ଛାତ୍ର ଇଉନିୟନ୍ ସଭାପତି ଓ ଅନ୍ୟାନ୍ୟ କର୍ମକର୍ତ୍ତା ନିର୍ବାଚିତ ହୁଅନ୍ତୁ । ସେ

କଥା ହୋଇପାରିବ ନାହିଁ ବୋଲି ଜିଦ୍ ଧରି ବସିଲେ ପରିଜା ସାହେବ । କଲେଜ ଅଚଳ ହୋଇଗଲା । ସାମାନ୍ୟ କେତେ ଜଣ ଛାତ୍ରଛାତ୍ରୀ ଶ୍ରେଣୀ ଦୁଆରେ ପିକେଟିଂ କରୁଥିବା ଛାତ୍ରମାନଙ୍କୁ ଡେଇଁଯାଇ ଶ୍ରେଣୀରେ ଯୋଗ ଦେଇଥିଲେ । ମୁଁ ପିକେଟିଂ କରୁଥାଏ । ମୋତେ ଦୁଇଜଣ ଛାତ୍ରୀ ଡେଇଁଯାଇ କ୍ଲାସ୍‌ରେ ଯୋଗ ଦେଲେ । ସେଇ ଦୁଇଜଣ ଛାତ୍ରୀ ଥିଲେ ଦୁଇ ଅଧ୍ୟାପକଙ୍କ ସହଧର୍ମିଣୀ । ଯେଉଁ ଦୁଇ ତିନି ଜଣ ଛାତ୍ର ଡେଇଁଯାଇ କ୍ଲାସ୍‌ରେ ଯୋଗ ଦେଇଥିଲେ ସେମାନଙ୍କ ମଧ୍ୟରେ ଥିଲେ ଜଣେ କୃତବିଦ୍ୟ ଛାତ୍ର ସ୍ୱର୍ଗୀୟ ରାମକୃଷ୍ଣ ପାଢ଼ୀ । ପରେ ସେ ଆଇ.ପି.ଏସ୍. ପାହ୍ୟାରେ ଆମ ରାଜ୍ୟର ପୋଲିସ୍ ଆଇ.ଜି. ପର୍ଯ୍ୟନ୍ତ ଉଠିଥିଲେ । ତାଙ୍କର ଅକାଳ ମୃତ୍ୟୁରେ ମୁଁ ଦୁଃଖିତ ହୋଇପଡ଼ିଥିଲି । ଆମ ରାଜ୍ୟ ବାହାର କ୍ୟାଡ଼ରରେ ତାଙ୍କ ପୁଅ ଆଇ.ଏ.ଅସ୍. ଚାକିରି କରୁଥିଲେ । ପରିବାରର ସୁବିଧା ପାଇଁ ତାଙ୍କୁ ଓଡ଼ିଶା କ୍ୟାଡ଼ରକୁ ବଦଳି କରି ଆଣିବାକୁ ମୁଁ ଉଦ୍ୟମ କରିଥିଲି ।

କିଛିଦିନ ଧର୍ମଘଟ ଚାଲିଲା ପରେ ସମାଧାନର ଗୋଟିଏ ମଧ୍ୟମ ପନ୍ଥା ବାହାର କରାଯାଇଥିଲା । ଛାତ୍ରମାନେ ପ୍ରକୃତରେ କଲେଜ ଇଉନିୟନ୍‌ର ସଭାପତିରୂପେ ଅଧ୍ୟକ୍ଷଙ୍କୁ ଚାହାନ୍ତି ନା ଜଣେ ଛାତ୍ରକୁ ନିର୍ବାଚିତ କରିବାକୁ ଚାହାନ୍ତି, ତାହା ଭୋଟଦ୍ୱାରା ସାବ୍ୟସ୍ତ କରିବାକୁ ସ୍ଥିର ହେଲା । ପରିଜା ସାହେବଙ୍କର ବଦ୍ଧମୂଳ ଧାରଣା ଥିଲା ଯେ ପିଲାମାନେ ତାଙ୍କ ସପକ୍ଷରେ ହିଁ ମତ ଦେବେ । ସମାଧାନ ପାଇଁ ମୁଁ, ମୋର ସାଥୀ ମନମୋହନ  ମିଶ୍ର, ବିଜୟ ଦାସ ଓ ସଚ୍ଚି ରାଉତରାୟ ପ୍ରଭୃତି ପରିଜା ସାହେବଙ୍କ ସହ ଆଲୋଚନା କରୁଥିବା ବେଳେ ସେହି ଧାରଣା ହେତୁ ସେ ଦୃଢ଼ତାର ସହିତ କହିଥିଲେ ଯେ ସାଧାରଣ ଭାବରେ ଛାତ୍ରମାନଙ୍କର ସମର୍ଥନ ଧର୍ମଘଟକାରୀ ଛାତ୍ରମାନଙ୍କର ସପକ୍ଷରେ ନାହିଁ; ମାତ୍ର ମୁଷ୍ଟିମେୟ ଛାତ୍ର ବିଭ୍ରାନ୍ତିକର ପରିସ୍ଥିତି ସୃଷ୍ଟି କରୁଛନ୍ତି । ସେ ଆହୁରି କହିଥିଲେ ଯେ ବହୁ ଛାତ୍ର ତାଙ୍କୁ ଦେଖାକରି ସେମାନଙ୍କର ଏ ପ୍ରକାର ମତାମତ ତାଙ୍କୁ ଜଣାଇ ଦେଇଛନ୍ତି । ସେ ଆମକୁ ଆହ୍ୱାନ ଦେଲା ଭଳି ଏ କଥାଟା କହିଥିଲେ । ମୁଁ ହଠାତ୍ ତାଙ୍କ ଆହ୍ୱାନକୁ ଗ୍ରହଣ କରିନେଇ କହିଥିଲି ଯେ ତାହା ଯଦି ପ୍ରକୃତ ଅବସ୍ଥା ଏବଂ ଅଧିକାଂଶ ଛାତ୍ର ଯଦି ଅଧ୍ୟକ୍ଷଙ୍କ କଥା ଗ୍ରହଣ କରୁଛନ୍ତି ତାହେଲେ ଆମେ ଆମର ଦାବି ପ୍ରତ୍ୟାହାର କରିନେବୁ । ପ୍ରଶ୍ନ ଉଠିଲା, ଛାତ୍ରମାନଙ୍କର ଏ ପ୍ରକାର ମତ ଜାଣିବାର ଉପାୟ କ'ଣ ? ତେଣୁ ମଧ୍ୟମ ପନ୍ଥାର ସୂଚନା ଦିଆଯାଇଥିଲା - କେବଳ ମତ ଜାଣିବାପାଇଁ ଭୋଟ ନିଆଯାଉ, ସଭାପତି ନିର୍ବାଚନ ପାଇଁ ନୁହେଁ ।

**ଡକ୍ଟର ପରିଜାଙ୍କ ପରୀକ୍ଷା**

ବର୍ତ୍ତମାନ କି ନିକଟ ଭବିଷ୍ୟତରେ, କେବେ ଓ କେଉଁ ଉପାୟରେ ଭୋଟ ନିଆଯିବ ସେକଥା ଆଲୋଚନା କରାଯାଇଥିଲା । ଚବିଶ ଘଣ୍ଟା ମଧ୍ୟରେ ଛାତ୍ରମାନଙ୍କର ମତ ଜାଣିବାପାଇଁ ଭୋଟ ନିଆଯାଉ ବୋଲି ଆମ ପକ୍ଷରୁ ପ୍ରସ୍ତାବ ଦିଆଯାଇଥିଲା । ମାତ୍ର ପରିଜାସାହେବ ସେଥିରେ ରାଜି

ହୋଇନଥିଲେ । ସେ କହିଥିଲେ ଯେ ଧର୍ମଘଟ ହେତୁ ଭୟଭୀତ ହୋଇ ବହୁ ଛାତ୍ର ହଷ୍ଟେଲରେ ନରହି ତାଙ୍କୁ କହି ଘରକୁ ଚାଲିଯାଇଛନ୍ତି , ତେଣୁ ମତ ଦେବାପାଇଁ ସେମାନେ ଘରୁ ଫେରିଆସିବା ଆବଶ୍ୟକ । ସାତ ଦିନ ବ୍ୟବଧାନରେ ଗୋଟିଏ ଦିନ ସ୍ଥିର ହେଲା । ଛାତ୍ରମାନଙ୍କ ମଧ୍ୟରେ ଖୁବ୍ ଜୋର୍‌ସୋର୍‌ରେ ପ୍ରଚାର ଆରମ୍ଭ ହୋଇଯାଇଥିଲା । ହଷ୍ଟେଲ୍ ତଥା କଲେଜ ବାହାରେ ରହୁଥିବା ଛାତ୍ରମାନଙ୍କୁ କିପରି ଭାବରେ ସଂଗଠିତ କରାଯିବ ତା 'ର ଦାୟିତ୍ୱ ବିଭିନ୍ନ ଛାତ୍ରନେତାମାନଙ୍କ ଉପରେ ନ୍ୟସ୍ତ କରାଯାଇଥିଲା । ରେଭେନ୍‌ସା କଲେଜର ଦିବାଧ୍ୟାୟୀ ଆସୋସିଏସନ୍‌ର ସେତେବେଳେ ସଭାପତି ଥିଲେ ମୋର ସହପାଠୀ ବୀରେନ୍ଦ୍ର ମୋହନ ପଟ୍ଟନାୟକ । ହଷ୍ଟେଲ ବାହାରେ ରହୁଥିବା ଛାତ୍ରମାନଙ୍କୁ ଆମ ମତ ପ୍ରତି ଆକୃଷ୍ଟ କରିବାରେ ସେ ସାହାଯ୍ୟ କରିଥିଲେ । ପୂର୍ବ ଛାତ୍ରାବାସରେ ରହୁଥିବା ପିଲାମାନଙ୍କୁ ଆମ ମତଦ୍ୱାରା ପ୍ରଭାବିତ କରି ସଂଗଠିତ କରିବାର ଦାୟିତ୍ୱ ମୁଁ ନେଇଥିଲି । ଛାତ୍ରସଂଘର ସବୁ ବନ୍ଧୁମାନେ ପିଲାମାନଙ୍କୁ ବୁଝାଇ ଭୋଟପାଇଁ ପ୍ରସ୍ତୁତ କରାଇଥିଲେ । ଗଣତନ୍ତ୍ର ଓ ନାଗରିକ ସ୍ୱାଧୀନତା ତଥା ଛାତ୍ରଙ୍କର ଅଧିକାରକୁ ଦାବି ସମ୍ବନ୍ଧରେ ନାନାପ୍ରକାର ଧ୍ୱନିରେ କଲେଜର ବାୟୁମଣ୍ଡଳ ସରଗରମ୍ ହୋଇଉଠିଥିଲା । ଦିନେ ଦୁଇଦିନ ପ୍ରଚାର ଚାଲିବା ପରେ ଦେଖାଗଲା ଯେ ପ୍ରସ୍ତାବ ସପକ୍ଷରେ ଓ ବିପକ୍ଷରେ ଦୁଇଟି ନିର୍ଦ୍ଦିଷ୍ଟ ଗୋଷ୍ଠୀ ଅଣ୍ଟାଭିଡ଼ି ବାହାରି ପଡ଼ିଥିଲେ । ଅଧ୍ୟକ୍ଷଙ୍କ ମତକୁ ଖୋଲାଖୋଲି ଭାବେ ସମର୍ଥନ କରିବାପାଇଁ ଯେଉଁ ଛାତ୍ରଦଳଟି ବାହାରି ପଡ଼ିଲେ ସେମାନଙ୍କର ନେତୃତ୍ୱ ନେଇଥିଲେ ବୀରେନ୍ ମିତ୍ର । ବୀରେନ୍‌ବାବୁଙ୍କ ସହିତ ପରେ ମୋର ବିଶେଷ ଘନିଷ୍ଠତା ହୋଇଥିଲା । ସେ ଆମ ରାଜ୍ୟର ମୁଖ୍ୟମନ୍ତ୍ରୀ ହୋଇଥିଲେ । ବୀରେନ୍‌ବାବୁ ଆଉ ନାହାନ୍ତି । କିନ୍ତୁ ତାଙ୍କ କାର୍ଯ୍ୟକଳାପରେ ନାନା ଘଟଣା ଏବଂ ତାଙ୍କ ମୋ ମଧ୍ୟରେ ଘନିଷ୍ଠ ବନ୍ଧୁତ୍ୱର ସ୍ୱାଭାବିକ ସ୍ନେହସୌହାର୍ଦ୍ଦ୍ୟ , ରାଗରୋଷ , ତିକ୍ତମଧୁର ଓ କରୁଣ ଅନୁଭୂତିର ବହୁ ସ୍ମୃତି ମୋ ହୃଦୟରେ ଗଭୀର ରେଖାପାତ କରିଛି । ବୀରେନ୍‌ବାବୁଙ୍କର ଭୂମିକାରେ ପ୍ରଥମ ଅବସ୍ଥାରେ ବିଶେଷ ଗଣତନ୍ତ୍ର ପ୍ରେମ ବା ସ୍ୱଦେଶାନୁରାଗ ଲକ୍ଷ୍ୟ କରାଯାଇନଥିଲା । ସେ ଅଧ୍ୟକ୍ଷ ପରିଜାସାହେବଙ୍କର ଖୁବ୍ ବିଶ୍ୱସ୍ତ ଥିଲେ । ବୀରେନ୍‌ବାବୁଙ୍କ ସହିତ ମୋର ସେତେବେଳେ ବିଶେଷ ଆତ୍ମୀୟତା ନଥିଲା । ଅସ୍ୱାଭାବିକ ଓ ଅତର୍କିତ ଅବସ୍ଥାରେ ମୋର ତାଙ୍କ ସହିତ ପ୍ରଥମ ପରିଚୟ ହେଲା । ଓଡ଼ିଶା ବିଧାନସଭାର କୌଣସି ସ୍ୱତନ୍ତ୍ର ସଭାଗୃହ ନଥିବାରୁ ସେତେବେଳେ ବିଧାନସଭା ଅଧିବେଶନ ରେଭେନ୍‌ସା କଲେଜ ହଲ୍‌ରେ ହେଉଥାଏ । ଦିନେ ମଧ୍ୟାହ୍ନ ଭୋଜନ ପାଇଁ ଅଧିବେଶନ ମୁଲତବୀ ରହିଥାଏ । ମୁଁ ଦର୍ଶକ ଗ୍ୟାଲେରୀରେ ଛିଡ଼ାହୋଇ ଜଣେ ବନ୍ଧୁଙ୍କ ସହିତ କଥାବାର୍ତ୍ତା କରୁଛି , ଏହି ସମୟରେ କେହି ଜଣେ ମୋ ପଛଆଡ଼ୁ ଆସି ମୋ ଗର୍ଦ୍ଦନୀ ଉପରେ ଗୋଟିଏ ପ୍ରଚଣ୍ଡ ମୁଷ୍ଟି ପ୍ରହାର କରିଥିଲେ । ମୋତେ ଭୀଷଣ କଷ୍ଟ ହେଲା ଏବଂ ସେ ଯୁବକ ଉପରେ ମୁଁ ଭୟଙ୍କର ବିରକ୍ତ ହୋଇଥିଲି । କିନ୍ତୁ ସେ ଖୁବ୍ ହସି ହସି ଜୋର୍‌ରେ ପାଟିକରି କହିଲେ, "ମୁଁ ତୋତେ ଜାଣେ , ଅନନ୍ତ ପଟ୍ଟନାୟକ

ତୋ ବିଷୟରେ ବହୁତ ଭଲ କଥା ମୋତେ କହିଛି ।'' ଅନନ୍ତବାବୁ ଥିଲେ ଆମର ଛାତ୍ରନେତା, ତେଣୁ ସେତିକିରେ ମୋର ବିରକ୍ତି ସରିଗଲା । ତା'ପରେ କିଛି ସମୟ ବୀରେନ୍‌ବାବୁଙ୍କ ସହ କଥାବାର୍ତ୍ତା ହୋଇ ବିଦାୟ ନେଲି । ଏହା ପରେ ମଧ୍ୟ ମୋର ତାଙ୍କ ସହିତ ସମ୍ପର୍କଟା ବିଶେଷ ଭାବରେ ଗଢ଼ି ଉଠିପାରିନଥିଲା ।

ଅଧ୍ୟକ୍ଷ ପରିଜା ସାହେବଙ୍କ ସହିତ ବୀରେନ୍‌ବାବୁ ଭଲ ସମ୍ପର୍କ ରଖୁଥିଲେ । ଅନେକ ସମୟରେ ସେ ପରିଜା ସାହେବଙ୍କ ଘରକୁ ଯାଉଥିବାର ପିଲାମାନେ ଦେଖୁଥିଲେ । ବର୍ତ୍ତମାନ ପୂରାଦମ୍‌ରେ ଅଧ୍ୟକ୍ଷ ବୀରେନ୍‌ବାବୁଙ୍କୁ ଆମ ବିରୁଦ୍ଧରେ ଲଗାଇ ଦେଇଥିଲେ । ବୀରେନ୍‌ବାବୁଙ୍କର ଗୋଟିଏ ଭଲ ଗୁଣ ଥିଲା, ସେ ଥିଲେ ମେଳାପୀ ଓ ସଙ୍ଗପ୍ରିୟ । ତାଙ୍କର ଏତାଦୃଶ ଗୁଣ ହୋଇଥିଲା ଆମର କାଳ । ସେ ସଦାବେଳେ ଦଳେ ଛାତ୍ରଙ୍କୁ ଧରି ବୁଲୁଥାଆନ୍ତି । କଲେଜ ଛକରେ ଥିବା ମଦନା ମିଠେଇ ଦୋକାନ ଓ କୁଞ୍ଜିଆ ପାନ ଦୋକାନ ଥିଲା ବୀରେନ୍‌ବାବୁଙ୍କ ଆଡ୍‌ଡାସ୍ଥଳୀ । ତାଙ୍କ ସାଙ୍ଗକୁ ଜୁଟିଥାଆନ୍ତି ପରିଜାସାହେବଙ୍କର ଆଉ ଜଣେ ଅଣଛାତ୍ର ସ୍ତାବକ ସ୍ୱର୍ଗୀୟ ରଘୁ ରାଉତ । କଥାକଥାକେ ସେ ହାତ ଉଠାଉଥିଲେ; ତେଣୁ ତାଙ୍କୁ ଅନେକ ଭୟ କରନ୍ତି । ଅନେକ ତାଙ୍କ ଆଚରଣକୁ ଅଶିଷ୍ଟ ମନେ କରୁଥିଲେ । ତା'ଛଡା ତାଙ୍କର 'ସତକଥା' ନାମରେ ଗୋଟିଏ ଛୋଟ ପାକ୍ଷିକ ପତ୍ରିକା ଥାଏ । ଏହା ନିୟମିତ ଭାବରେ ପ୍ରକାଶ ପାଏନାହିଁ; ମାତ୍ର କୌଣସି ସ୍ୱତନ୍ତ୍ର ଅବସ୍ଥା ଉପୁଜିଲେ ଖଣ୍ଡିଏ କାଗଜ ବାହାରିପଡ଼େ । ପରିଜାସାହେବଙ୍କର ସୁନାମ ଓ ଆମ୍ଭମାନଙ୍କର ଦୁର୍ନାମ ଏହି ପତ୍ରିକାରେ ପ୍ରକାଶ ପାଉଥିଲା । ବୀରେନ୍‌ବାବୁ ଓ ରଘୁ ରାଉତ ଉଭୟ କଲେଜ ହଷ୍ଟେଲ୍ ଭିତରେ ବୁଲି ଛାତ୍ରମାନଙ୍କୁ ଆମ ବିରୁଦ୍ଧରେ ମତାଇବାରେ ଲାଗିଯାଇଥିଲେ । କଲେଜ ଛାତ୍ରମାନଙ୍କ ବ୍ୟାପାରରେ କଲେଜ ପରିସର ଭିତରେ ବାହାରର ଲୋକେ କାହିଁକି ହସ୍ତକ୍ଷେପ କରୁଛନ୍ତି ବୋଲି ଆମେମାନେ ଅଭିଯୋଗ କରି ଅଧ୍ୟକ୍ଷଙ୍କ ଦୃଷ୍ଟି ଆକର୍ଷଣ କଲୁ । କିନ୍ତୁ ସେ ପ୍ରକାର କାର୍ଯ୍ୟ ଅଧ୍ୟକ୍ଷଙ୍କ ଇଙ୍ଗିତରେ ହେଉଥିବାରୁ ସେ ଆମ କଥାକୁ କର୍ଣ୍ଣପାତ କଲେନାହିଁ । କଲେଜ ହତା ଭିତରେ ଅଧ୍ୟକ୍ଷ ପରିଜା ସାହେବଙ୍କ କ୍ୱାର୍ଟର ଥିଲା ଛତ୍ରବକାର ପୋଲ ପାଖରେ । କିଏ ସବୁ ପରିଜାସାହେବଙ୍କର ଘରକୁ ଯାଉଥିଲେ ତା'ର ରିପୋର୍ଟ ସଂଗ୍ରହ କରିବା ଉଦ୍ଦେଶ୍ୟରେ ଆମେ ଜଣେ ଛାତ୍ରକୁ ସେହି ପୋଲ ପାଖରେ ବସାଇଥାଉଁ । ପ୍ରତିଦିନ ରାତିରେ ବୀରେନ୍‌ବାବୁ ଓ ରଘୁ ରାଉତ ପରିଜାସାହେବଙ୍କ ଘରକୁ ଯିବାର ଖବର ଆମକୁ ମିଳୁଥାଏ । ଅଧ୍ୟକ୍ଷଙ୍କର ସେମାନଙ୍କ ସହିତ ସମ୍ପର୍କ ଓ ଚକ୍ରାନ୍ତକୁ ଛାତ୍ରମାନେ ବରଦାସ୍ତ କରିପାରିନଥିଲେ । ସେଥିପାଇଁ ଦିନେ ଅଧ୍ୟକ୍ଷଙ୍କ ଘର ଘେରାଉ ହୋଇଥିଲା । ବିପକ୍ଷ ଗୋଷ୍ଠୀର ଏପ୍ରକାର ପ୍ରସ୍ତୁତି ଦେଖି ଆମେମାନେ ଉପସ୍ଥିତ ସମସ୍ୟାର ଭବିଷ୍ୟତ ଫଳାଫଳ ବିଷୟରେ ସନ୍ଦିହାନ ହୋଇପଡ଼ିଥିଲୁ । ମନେହେଉଥାଏ, ବଳ କଷାକଷିରେ ଛାତ୍ରମାନେ ହୁଏତ ପ୍ରାୟ ସମାନ ସମାନ ଭାବରେ ବିଭକ୍ତ ହେବେ ।

ବଳ କଷାକଷିର ନିର୍ଦ୍ଦିଷ୍ଟ ଦିନ ଆସିଗଲା । କଲେଜର ଫିଜିକ୍ସ ଲେକ୍‌ଚର୍ ଥିଏଟର୍‌ରେ ପିଲାମାନେ ଏକତ୍ର ହେବେ, ସପକ୍ଷ ବା ବିପକ୍ଷରେ ହାତ ଉଠାଇ ସେମାନଙ୍କର ମତ ଦେବେ । ଅଧ୍ୟକ୍ଷ ପରିଜାସାହେବ ନିଜେ ଏହି ମତ ସଂଗ୍ରହ କାର୍ଯ୍ୟ ପରିଚାଳନା କରିବେ ବୋଲି ଜଣାପଡିଲା । ଏକଥା ଶୁଣିଲା କ୍ଷଣି ଆମମାନଙ୍କ ମୁଣ୍ଡରେ ବଜ୍ରପାତ ହୋଇଥିଲା । ଆମେ ଭାବିଲୁ ସବୁ କଥା ସରିଗଲା, ଭୟ୍‌ରୁ ଛାତ୍ରମାନେ କଦାପି ଅଧ୍ୟକ୍ଷଙ୍କ ଆଗରେ ତାଙ୍କ ମତ ବିରୁଦ୍ଧରେ ହାତ ଉଠାଇବେ ନାହିଁ । ସଙ୍ଗେ ସଙ୍ଗେ ଛାତ୍ରମାନଙ୍କର ଗୋଟିଏ ଜରୁରୀ ସଭା ଆହୂତ ହେଲା । ଛାତ୍ରମାନଙ୍କର ମତ ଗ୍ରହଣ କାର୍ଯ୍ୟରେ ନିରପେକ୍ଷତା ଅବଲମ୍ବନ କରିବାପାଇଁ ପ୍ରସ୍ତାବ କରାଯାଇଥିଲା । ପରିଜାସାହେବ ମତସଂଗ୍ରହକାର୍ଯ୍ୟ ପରିଚାଳନା କଲେ ନିରପେକ୍ଷତା ଅସମ୍ଭବ ବୋଲି ପ୍ରସ୍ତାବରେ କୁହାଯାଇଥିଲା । ଏଥିରେ ପରିଜାସାହେବ ବଡ଼ ଅସୁବିଧାରେ ପଡ଼ିଗଲେ । ଶେଷରେ ସ୍ଥିରହେଲା ଯେ ଇଂରାଜୀ ଅଧ୍ୟାପକ ନିରଞ୍ଜନ ନିୟୋଗୀ ହେବେ ପରିଚାଳକ । ସେ ଜଣେ ସମ୍ମାନାସ୍ପଦ ଅଧ୍ୟାପକ ଥିଲେ । ତାଙ୍କର ନିରପେକ୍ଷତା ବିଷୟରେ କାହାରି କିଛି କହିବାର ନଥିଲା । ବିପୁଳ ଉତ୍ତେଜନା ଭିତରେ ଛାତ୍ରମାନେ ଏକତ୍ରିତ ହେଲେ ଫିଜିକ୍ସ ଲେକ୍‌ଚର୍ ଥିଏଟର୍‌ରେ । ଅଧ୍ୟାପକ ନିୟୋଗୀ ମହାଶୟ ଆସନରେ ଉପବିଷ୍ଟ । ତାଙ୍କ ସମ୍ମୁଖରେ ବହୁସଂଖ୍ୟକ ଛାତ୍ରଙ୍କର ସମାବେଶ । ପ୍ରଶ୍ନ ଥିଲା, କଲେଜ ଇଉନିୟନ୍‌ର ସଭାପତି ପୂର୍ବପରି ଅଧ୍ୟକ୍ଷ ନହୋଇ ଜଣେ ନିର୍ବାଚିତ ଛାତ୍ର ହୁଅନ୍ତୁ । ପ୍ରଥମେ ପ୍ରସ୍ତାବ ସପକ୍ଷରେ ଥିବା ଛାତ୍ରମାନେ ହାତ ଉଠାଇବାପାଇଁ ନିର୍ଦ୍ଦେଶ ଦିଆଗଲା । ହାତ ଉଠିଲା ଏବଂ ତାହା ଗଣାଗଲା । ତା'ପରେ ପ୍ରସ୍ତାବ ବିପକ୍ଷବାଦୀମାନେ ହାତ ଉଠାଇଲେ । ତାହା ମଧ୍ୟ ଗଣାଗଲା । ମାତ୍ର ଚାରୋଟି ଅଧିକ ଭୋଟ୍‌ରେ ଆମେମାନେ ଜୟଲାଭ କଲୁ । ଛାତ୍ର ଇଉନିୟନ୍ ଛାତ୍ରମତଦ୍ୱାରା ପରିଚାଳିତ ହେବାର ସ୍ୱାଧୀନତା ପାଇଲା । ଏଣିକି ରେଭେନ୍‌ସା କଲେଜ ଇଉନିୟନ୍ ସଭାପତି କଲେଜର ଅଧ୍ୟକ୍ଷ ନହୋଇ ଜଣେ ଛାତ୍ର ନିର୍ବାଚନ ହେବା କଥା ଚୂଡ଼ାନ୍ତ ନିଷ୍ପତ୍ତି ହୋଇଗଲା । ଆଜିକାଲି ବିଶ୍ୱବିଦ୍ୟାଳୟ ସିନେଟ୍‌କୁ ଛାତ୍ର ପ୍ରତିନିଧି ମନୋନୀତ ହେଉଛନ୍ତି । ସିନେଟ୍‌ରେ ନିର୍ବାଚିତ ଛାତ୍ର ପ୍ରତିନିଧି ରହିବାପାଇଁ ଦୃଢ଼ ଦାବି ହେଲାଣି । ଦିନେ ଆମକୁ ଛାତ୍ରମାନଙ୍କର ସମ୍ପୂର୍ଣ୍ଣ ନିଜସ୍ୱ କଲେଜ ଇଉନିୟନ୍‌ର ସଭାପତି ନିର୍ବାଚନ କରିବାର ଗଣତାନ୍ତ୍ରିକ ଅଧିକାର ସାବ୍ୟସ୍ତ କରିବାକୁ ଏପରି ଲଢ଼େଇ କରିବାକୁ ପଡ଼ିଥିଲା ବୋଲି ଆଜି ହୁଏତ ବିଶ୍ୱାସ କରିହେବନି । ଏହି ଲଢ଼େଇରେ ଆମକୁ ସଂଗଠନ ଶକ୍ତିର କଠୋର ପରୀକ୍ଷା ଦେବାକୁ ପଡ଼ିଥିଲା । ଅଧ୍ୟକ୍ଷ ଡକ୍ଟର ପରିଜା ମଧ୍ୟ ନିଜର ଅବାଧ ରକ୍ଷଣଶୀଳ ନୀତିର ପରିଣତି ପରୀକ୍ଷା କରିବାର ସୁଯୋଗ ପାଇଥିଲେ । ଏହାପରେ ପ୍ରଥମ ଥରପାଇଁ ଛାତ୍ରନେତା ଶ୍ରୀ ମନମୋହନ ମିଶ୍ର ରେଭେନ୍‌ସା କଲେଜ ଇଉନିୟନ୍‌ର ସଭାପତିରୂପେ ଛାତ୍ରମାନଙ୍କ ଦ୍ୱାରା ନିର୍ବାଚିତ ହୋଇଥିଲେ ।

•

---

***ସ୍ମୃତି ଓ ଅନୁଭୂତି***, ଗ୍ରନ୍ଥ ମନ୍ଦିର, କଟକ, ୨୦୦୧

# କଲେଜପଢ଼ା ଆରମ୍ଭ

## ଉଦୟନାଥ ରଥ

ରେଭେନ୍‌ସା କଲେଜରେ ବି.ଏ. ଅନର୍ସରେ ନାମ ଲେଖାଇଲି। ମାୟାଧର ମାନସିଂହ ବିଶ୍ୱବିଦ୍ୟାଳୟରେ ତୃତୀୟ ସ୍ଥାନ ଅଧିକାର କରି ପଚିଶ ଟଙ୍କା ମଧ୍ୟ ବୃତ୍ତି ପାଇଥିଲେ। ରତ୍ନାକର ଷଡ଼ଙ୍ଗୀ ମଧ୍ୟ ବୃତ୍ତି ପାଇ ବି.ଏସ୍‌ସି. ଅନର୍ସରେ ପଢ଼ିଲେ। ମୁଁ ନେଲି ଅର୍ଥନୀତିରେ ଅନର୍ସ, ରତ୍ନାକର ଗଣିତରେ ଏବଂ ମାନସିଂହ ଇଂରେଜୀରେ। ମାୟାଧର ଓ ରତ୍ନାକରଙ୍କୁ ଅନର୍ସ ବାଛିବାରେ କିଛି କଷ୍ଟ ହେଲାନାହିଁ। କାରଣ ସେ ହେଉଛି ତାଙ୍କର ପ୍ରିୟ ବିଷୟ। ମୋର କିନ୍ତୁ ପ୍ରିୟ ବିଷୟ ବୋଲି କିଛି କେବେ ନଥିଲା। ପିଲାଦିନୁ ବୃତ୍ତି ଉପରେ ନିର୍ଭର କରୁଥିବାରୁ ସବୁ ବିଷୟକୁ ସମାନ ଦୃଷ୍ଟି ଦେଉଥିଲି। ଗଣିତ ସବୁଠାରୁ ସହଜ ଲାଗୁଥିଲା। ଇଂରେଜୀ ଭାଷା ପ୍ରତି ବଡ଼ ଆଗ୍ରହ ଥିଲା। ଯେତେବେଳେ ଅର୍ଥନୀତି ଏକ ନୂଆ ପାଠ, ବି.ଏ.ରେ ଆରମ୍ଭ ହୁଏ। ଗଣିତ ନେଲେ ପ୍ରଥମ ଶ୍ରେଣୀ ଥୁଆ। ଇଂରେଜୀ ନେଲେ ଏ ବିଷୟରେ ଆଗରୁ ମୂଳଦୁଆ ଅଛି। କିନ୍ତୁ ଅର୍ଥନୀତି ଭଳିଆ ନୂଆ ବିଷୟରେ କଣ ହେବ ଅନ୍ଧାର ଦିଶୁଥାଏ। ମାୟାଧର, ରତ୍ନାକର ଓ ମୁଁ ତିନିହିଁଙ୍କର ସ୍ନାତକୋତ୍ତର ବୃତ୍ତି ଉପରେ ଏମ୍.ଏ. ପଢ଼ା ନିର୍ଭର କରୁଥିଲା ଏବଂ ଗୋଟିଏ ବିଷୟରେ ଗୋଟିଏ ଛଡ଼ା ବେଶି ବୃତ୍ତି ମିଳିବାର ବ୍ୟବସ୍ଥା ନଥିଲା। ସେମାନେ ସେମାନଙ୍କର ପ୍ରିୟ ବସ୍ତୁ ଇଂରେଜୀ ଓ ଗଣିତ ନେଇଯିବାରୁ ମୋତେ ବାଧ୍ୟ ହୋଇ ଅର୍ଥନୀତି ନେବାକୁ ପଡ଼ିଲା; କିନ୍ତୁ ମୋର ଚିର ପରିଚିତ ଗଣିତକୁ ଦ୍ୱିତୀୟ ବିଷୟ କରି ରଖିଲି। ତଦ୍ୱାରା ମୋର ବିଶେଷ ଉପକାର ହେଲା। ବି.ଏ.ରେ ଅର୍ଥନୀତି ଅନର୍ସରେ ବିଶ୍ୱବିଦ୍ୟାଳୟରେ ପ୍ରଥମ ସ୍ଥାନ ଅଧିକାର କଲି ଏବଂ ଗଣିତ ଯୋଗୁଁ ବି.ଏ., ବି.ଏସ୍‌ସି.ରେ ସବୁଠାରୁ ବେଶି ମାର୍କ ରଖି ସର୍ବୋତ୍କୃଷ୍ଟ ଡିଗ୍ରୀଧାରୀର ସ୍ୱର୍ଣ୍ଣପଦକ ପାଇଲି। ମାୟାଧର, ରତ୍ନାକର ଓ ମୁଁ ସ୍ନାତକୋତ୍ତର ବୃତ୍ତି ପାଇଲୁ।

ବି.ଏ. ପଢ଼ିଲା ସମୟର କେତୋଟି ଘଟଣା ଏଠାରେ ଉଲ୍ଲେଖଯୋଗ୍ୟ। ମୋର ବନ୍ଧୁ ଚଣ୍ଡେଶ୍ୱର ମିଶ୍ର ଯେ ଦର୍ଶନଶାସ୍ତ୍ର ଅନର୍ସରେ ନାମ ଲେଖାଇଥାନ୍ତି, ସେ ଏବଂ ଆଉ କେତେକ ବନ୍ଧୁ ମୋତେ ଉପଦେଶ ଦେଲେ ଆଇ.ଏ.ରେ ଯେତେବେଳେ ବିଶ୍ୱବିଦ୍ୟାଳୟରେ ପ୍ରଥମ ହୋଇଛି

ମୋର ପାଟନା କଲେଜରେ ପଢ଼ିବା କଥା। ମୁଁ ମଧ୍ୟ ଯିବା ସକାଶେ ଉତ୍କଣ୍ଠିତ ଥିଲି। ସିଟ୍ ସକାଶେ ଦରଖାସ୍ତ ଲେଖାଗଲା, ସିଟ୍ ମଧ୍ୟ ମିଳିଗଲା। ରେଭେନ୍ସା କଲେଜରେ ଅର୍ଥନୀତିରେ ସେତେବେଳେ ଭଲ ପ୍ରଫେସର କେହି ନଥିଲେ। ଭାଟେସା ସାହେବ ପାଟନା ଚାଲିଯାଇଥିଲେ। ତାଙ୍କ ସ୍ଥାନରେ ଗୋରଖନାଥ ସିନ୍ହା ନାମରେ ଯେଉଁ ପ୍ରଫେସର ଆସିଥିଲେ ସେ ଅବଶ୍ୟ ଅକ୍ସଫୋର୍ଡର ଉଚ୍ଚ ଉପାଧିଧାରୀ ଥିଲେ; କିନ୍ତୁ ନୂଆ ଲୋକ, ପଢ଼ାପଢ଼ିରେ ବିଶେଷ ଅନୁଭୂତି ବା ଆଗ୍ରହ ନଥିଲା। ଅର୍ଥାଭାବରୁ ପାଟନା ଯାଇପାରିଲି ନାହିଁ। ତେବେ ପାଟନା କଲେଜରେ ବିଶ୍ୱବିଦ୍ୟାଳୟରେ ପ୍ରଥମ ସ୍ଥାନ ଅଧିକାରୀଙ୍କୁ ଛାତ୍ରାବାସରେ ତୃତୀୟ ବର୍ଷରେ ମଧ୍ୟ ଜଣିକିଆ କମରା ଦେଉଥିବାରୁ ମୋତେ ମଧ୍ୟ ଗୋଟିଏ ଜଣକିଆ କମରା ମିଳିଲା। କିନ୍ତୁ ମୁଁ ନାମ ଲେଖାଇଲା ପରେ ବହୁତ ଧନ୍ଦି ହେଲି। ପ୍ରଫେସରଙ୍କଠାରୁ ବେଶି ଦିଗ୍‌ଦର୍ଶନ ନାହିଁ; ନିଜେ ଧନ୍ଦି ହୋଇ ଯାହା ପଢ଼ିବା କଥା ଅନ୍ଧାର ଘରେ ବାଡ଼ି ବୁଲାଇଲା ପରି। ଋଷିପ୍ରତିମ, ଶାନ୍ତିପ୍ରତୀକ ଡକ୍‌ଟର ପ୍ରାଣକୃଷ୍ଣ ପରିଜା ଆମର ଓ୍ୱାର୍ଡେନ ଥାନ୍ତି। ସେ ପ୍ରତିଦିନ ଥରେ ଛାତ୍ରାବାସ ବୁଲିଯାନ୍ତି। ତାଙ୍କ ଶୃଙ୍ଖଳାଚେତନା ଯୋଗୁଁ ପିଲାମାନେ ଥରହର। ଧୀର, ଶାନ୍ତ, ସହାନୁଭୂତିଶୀଳ; କିନ୍ତୁ କର୍ତ୍ତବ୍ୟ ପାଳନରେ ଏବଂ ଶୃଙ୍ଖଳା ରକ୍ଷାରେ ଅଟଳ ମେରୁ। ଥରେ କିନ୍ତୁ ପିଲାମାନେ ତାଙ୍କ ଇଚ୍ଛା ପୂର୍ଣ୍ଣ କରିବାରେ ଅବାଧ୍ୟ ହୋଇଥିଲେ ଏବଂ ସେଥିରେ ମୁଁ ମଧ୍ୟ କିଛି ଭାଗ ନେଇଥିଲି। ବାଞ୍ଛା ଗୁଡ଼ିଆ ନାମରେ ଜଣେ ଗୁଡ଼ିଆ ଛାତ୍ରାବାସ ପଛରେ ମେସ୍ ପାଖରେ ରସଗୋଲା ଦୋକାନ କରିଥାଏ। ପିଲାମାନେ ତାଠାରୁ ଧାରରେ ରସଗୋଲା ଖାଇ ବହୁତ ଋଣୀ ହୋଇଯାନ୍ତି ଏବଂ ଟଙ୍କା ଆସିଲାକ୍ଷଣି ସେ ଧାରଣା ଦେଇ ଅସୁଲ କରିନିଏ; ଏଣେ କଲେଜ ଦରମା ଏବଂ ମେସ୍‌ଖର୍ଚ୍ଚ। ଦେବାକୁ ପଇସା ରହେନାହିଁ। ତେଣୁ ପିଲାମାନେ ଦିନେ ମନସ୍ଥ କଲେ ଯେ ବାଞ୍ଛାଗୁଡ଼ିଆଠାରୁ ଆଉ ଖାଇବେ ନାହିଁ। ସକାଳୁ ବାଞ୍ଛା ବହୁତ ଜିନିଷ ତିଆରି କରି ରଖିଛି, କେହି ହେଲେ ପିଲା ଗଲେ ନାହିଁ। ସେ ଓ୍ୱାର୍ଡେନଙ୍କ ପାଖରେ କହିଥିବ। ଓ୍ୱାର୍ଡେନ ଆସି ପିଲାମାନଙ୍କୁ ପଚାରିଲେ। ମୁଁ ଜଣେ prefect ବା ବଡ଼ ଚାଟ ହିସାବରେ ମୋତେ ମଧ୍ୟ ପଚାରିଲେ। ମୁଁ କହିଲି, ମୁଁ କଣ କରିବି, ମୁଁ ନାଚାର, ପିଲାମାନେ ତ ଖାଉନାହାନ୍ତି। ସେଥିରେ ପରିଜା ସାହେବ ବିରକ୍ତ ହେଲେ; କିନ୍ତୁ କଣ କରିବେ ? ପିଲାମାନେ ଖାଇଲେ ନାହିଁ। ଆଉ କେତେ ଦିନ ପରେ ବାଞ୍ଛାଗୁଡ଼ିଆ ଛାତ୍ରାବାସ ଛାଡ଼ି ବାହାରେ ରହିଲା। ଏଥିରେ ମୋର କିଛି ଲାଭକ୍ଷତି ନଥିଲା; କାରଣ ମୋର ବାଞ୍ଛାଗୁଡ଼ିଆ ପାଖକୁ ଯିବାର ସମ୍ବଳ ନଥିଲା। ମୁଁ ମେସରେ ସକାଳେ ସଞ୍ଜ ବେଳା ପେଟପୂରା ଠୁଙ୍କିଦିଏ; ଗୁଡ଼ିଆ ପାଖକୁ ଯିବାର ବିଳାସ ନଥାଏ। ଅନ୍ୟ ବଡ଼ଲୋକ ପିଲାମାନେ ବାଞ୍ଛାପାଖେ ଠୁଙ୍କି ମେସରେ କମ୍ ଖାନ୍ତି। ତେଣୁ ପୂଜାରୀ ସେମାନଙ୍କୁ ଭଲ ପାଏ ଏବଂ ମୋପରି ପିଲା ପୂରା ପେଟେ ଖାଇଲାବେଳେ ସେ ହତାଶ ଦୃଷ୍ଟି ପକାଏ।

କଲେଜରେ ପଢ଼ିଲାବେଳେ ପ୍ରଫେସର ଆର୍ତ୍ତବନ୍ଧୁ ମହାନ୍ତି, ଲକ୍ଷ୍ମୀକାନ୍ତ ଚୌଧୁରୀ, ସାରଦା ଗାଙ୍ଗୁଲି, କୃପାସିନ୍ଧୁ ସାମନ୍ତରାୟ, ଗିରିଜାଶଙ୍କର ରାୟ ଓ ରତ୍ନାକର ପତିଙ୍କ ପ୍ରିୟ ଛାତ୍ର ଥିଲି। ଲକ୍ଷ୍ମୀକାନ୍ତ ବାବୁ ମାସକ ସକାଶେ ତାଙ୍କ କ୍ୱାର୍ଟରରେ ରହୁଥିବା ତାଙ୍କ ଭଗ୍ନୀପତି ସୁନାମଧନ୍ୟ ଶିଳ୍ପପତି ଭାସ୍କର ମହାପାତ୍ରଙ୍କ ପିଲାମାନଙ୍କ ପାଇଁ ଗୋଟିଏ ଟିଉସନ ଠିକ୍ କରିଦେଇ ଥିଲେ। ଏଥିରୁ ତିରିଶ ଟଙ୍କା ପାଇ ଭଲ ଯୋତା ହଳେ ଓ ସାର୍ଟଟେ କିଣିଲି। ଟଙ୍କାକୁ ଲୋଭ କଲେ ପଢ଼ାପଢ଼ିରେ ଖରାପ ହେବ ବୋଲି ଟିଉସନକୁ ଛାଡ଼ିଦେଲି। ଏ ମହାଶୟଙ୍କ ମୋ ପ୍ରତି ଅପାର କରୁଣା। ଯେମିତି ଡେପୁଟି କଲେକ୍ଟର ଚାକିରି ଆରମ୍ଭ କରି କଟକରେ ରହୁଥାଏ ସେ ମୋତେ ତାଙ୍କ ଭାଣିଜୀ ଯେ କି ଭବିଷ୍ୟତରେ ମୋର ପ୍ରିୟ ବନ୍ଧୁ କାଶୀନାଥ ମିଶ୍ରଙ୍କ ସହଧର୍ମିଣୀ ହେଲେ, ତାକୁ ବି.ଏ.ର ଅର୍ଥନୀତି ପଢ଼ାଇବାକୁ ଅନୁରୋଧ କରିଥିଲେ। କିଛିଦିନ ପଢ଼ାଇଲି। କିନ୍ତୁ ନୂତନ ଚାକିରିରେ ସଞ୍ଜବେଳଟା ଏପରି ଆବଦ୍ଧ ଭାବରେ କଟାଇବାକୁ ଇଚ୍ଛା ନ ହେବାରୁ ମୁଁ ବେଶିଦିନ ତାଙ୍କର ଅନୁରୋଧ ରକ୍ଷାକରି ପାରିଲି ନାହିଁ।

ବି.ଏ. ପଢ଼ିଲାବେଳେ ହରିବାବୁ, ପିଲାମାନେ ଯାହାଙ୍କୁ ହରି ଥିଟା ବୋଲି ଡାକନ୍ତି, ଜଣେ ଗଣିତ ଅଧ୍ୟାପକ ଥାନ୍ତି। ସେ ବଡ଼ ଭଦ୍ର ଏବଂ ଆନ୍ତରିକତାପୂର୍ଣ୍ଣ। ତାଙ୍କର ସରଳ ଓ ପୁରୁଣାକାଳିଆ ଢଙ୍ଗର ସୁଯୋଗ ପିଲାମାନେ ନେବାକୁ ଚେଷ୍ଟା କରନ୍ତି। ସେ କହନ୍ତି ଯେ କଲିକତାରେ ପଢ଼ିଲାବେଳେ ଚୌରଙ୍ଗୀରେ ଥିଲେ; କିନ୍ତୁ ଚୌରଙ୍ଗୀ ବାହାରକୁ କେଉଁଆଡ଼େ ଯାଇନାହାନ୍ତି ଏବଂ ପଚାଶ ରିମ୍ କାଗଜ ଖାଲି ଗଣିତ ଅଭ୍ୟାସ କରିବାରେ ବ୍ୟବହାର କରିଥିଲେ। ପିଲାମାନେ ଏକଥା ନେଇ ଥଟ୍ଟା କରନ୍ତି। ସେ ସାଇକେଲରେ କଲେଜକୁ ଆସନ୍ତି। ପିଲାମାନେ ବାଟରେ କିଏ ଦଣ୍ଡବତ କଲେ ସେ ସାଇକେଲରୁ ଓହ୍ଲାଇ ପ୍ରତିଦଣ୍ଡବତ କରନ୍ତି। କାରଣ ସାଇକେଲରେ ତାଙ୍କ ଆସ୍ଥାନ ଟଳଟଳ ହେଉଥାଏ ଏବଂ ଗୋଟିଏ ହାତରେ ଯଦି ପ୍ରତିଦଣ୍ଡବତ କରିବେ, ତେବେ ପଡ଼ିଯିବେ। ସେ ତେଣୁ ସବୁ ପିଲାମାନଙ୍କୁ କ୍ଲାସରେ କହିଥାନ୍ତି "If you want to do me, do me in the class, not on the road." ଏହି କଥା ନେଇ ପିଲାମାନେ ବହୁତ ହସନ୍ତି। ତାଙ୍କୁ ପ୍ରମୋଶନ ନ ମିଳିବାରୁ ସେ ବଡ଼ ମନବ୍ୟସ୍ତରେ ଥାନ୍ତି। କିନ୍ତୁ ତାଙ୍କ ମନ ସବୁବେଳେ ପିଲାମାନଙ୍କର କିପରି ଉନ୍ନତି ହେବ ସେଥିରେ ଥାଏ। ସେ ଥଟ୍ଟାରେ, ଉପହାସରେ ବିଚଳିତ ହୁଅନ୍ତି ନାହିଁ। ଯେପରି ଜଣାପଡ଼େ କିଛି ଗୋଟାଏ ଦୁଃଖ ତାଙ୍କୁ ସବୁବେଳେ ଡାଙ୍କିରଖିଛି।

ଥରେ ଆମେ ବି.ଏ. ଛାତ୍ରମାନେ ପ୍ରଫେସର ଘନଶ୍ୟାମ ଦାସଙ୍କ ତତ୍ତ୍ୱାବଧାନରେ ଦିଲ୍ଲୀ ଭ୍ରମଣରେ ଯାଇଥିଲୁ। ସେତେବେଳେ ଘନଶ୍ୟାମ ବାବୁ ନୂଆ ହୋଇ ବିଲାତରୁ ଫେରି ଇତିହାସ ଅଧ୍ୟାପକଭାବେ ଯୋଗ ଦେଇଥାନ୍ତି। ଭାରି କଡ଼ା। ଦିଲ୍ଲୀରୁ ଇନ୍ଦ୍ରପ୍ରସ୍ଥ ଯିବାକୁ ଆମମାନଙ୍କ

ସକାଶେ ଦୁଇଟି ବସ୍ ବନ୍ଦୋବସ୍ତ ହୋଇଥାଏ । ଦୈବାତ୍ ଆମ ବସ୍‌ଟି ଆଗରେ ଚାଲିଗଲା; ତାଙ୍କ ବସ୍‌ଟି ପଛରେ ଆସିଲା । ଇନ୍ଦ୍ରପ୍ରସ୍ଥରେ ପହଞ୍ଚି ସେ ଆମ ଉପରେ ବହୁତ ଚିଡ଼ିଲେ । ମୁଁ ତାହା ସମ୍ଭାଳିପାରିଲି ନାହିଁ । ମୁଁ କହିଲି ଆମେ ପିଲା ହୋଇନାହୁଁ, ଆଉ ଦୁଇବର୍ଷ ପରେ ଏମ୍.ଏ. ପାସ୍ କଲେ ଆପଣଙ୍କ ସଙ୍ଗେ ସମାନ ହେବୁ । ଆପଣଙ୍କର ଏବଂ ଆମମାନଙ୍କର ବ୍ୟବଧାନ କେବଳ ମାତ୍ର ଦୁଇ ବରଷ । ଆପଣ ଆମମାନଙ୍କୁ ଏପରି ହୀନଦୃଷ୍ଟିରେ କାହିଁକି ଦେଖୁଛନ୍ତି ? ଆମେ ଫେରିଗଲେ ପ୍ରିନ୍‌ସିପାଲଙ୍କ ପାଖେ ଅଭିଯୋଗ କରିବୁ । ଏଥିରେ ତାଙ୍କର ରାଗ ଥଣ୍ଡା ପଡ଼ିଗଲା । ସେ କ୍ଷଣରାଗୀ, ରାଗ ପରେ ବଡ଼ ନରମ । ସେଦିନ ରାତିରେ ସେ ତାଙ୍କ ଖର୍ଚ୍ଚାରେ ଆମକୁ ଖାଇବକୁ ଦେଲେ । ତାଙ୍କର ଏ ମହାନୁଭବତା ଆମକୁ ମୁଗ୍ଧ କରିଦେଇଥିଲା ।

•

---

*ସଂସ୍କାର ପଥେ,* ଗ୍ରନ୍ଥ ମନ୍ଦିର, ୧୯୭୨

# ରେଭେନ୍‌ସା କଲେଜରେ ଯୋଗଦାନ

## ସୁରେନ୍ଦ୍ର ମହାନ୍ତି

ବାପା ମୋତେ ତାଙ୍କ କଷ୍ଟସଞ୍ଚିତ ପାଣ୍ଠିରୁ ଆଉ ଷାଠିଏଟି ଟଙ୍କା ଦେଇ ରେଭେନ୍‌ସା କଲେଜର ଏଡ୍‌ମିଶନ୍ ପାଇଁ ପଠାଇଦେଲେ । ମୁଁ ୧୯୩୯ ସାଲ ଜୁଲାଇ ମାସରେ ରେଭେନ୍‌ସା କଲେଜରେ ଆଇ.ଏ. କ୍ଲାସ୍‌ରେ ଯୋଗ ଦେଲି । ମୋର ବିଷୟ ରହିଲା ଅର୍ଥନୀତି, ଇତିହାସ ଓ ଓଡ଼ିଆ । ସେତେବେଳେ ଏହାକୁ 'ରୟାଲ୍ ଗ୍ରୁପ୍' ବୋଲି କୁହାଯାଉଥିଲା । କାରଣ ଅନୁଜ୍ଜ୍ୱଳ ଛାତ୍ରମାନେ ଏହି 'ଗ୍ରୁପିଙ୍ଗ୍' ନେଉଥିଲେ । ମୁଁ ବା ଆଉ କେଉଁ ଉଜ୍ଜ୍ୱଳ ଛାତ୍ର ?

କଟକ ସହରର ଚେହେରା ସେତେବେଳେ କେତେଗୁଡ଼ିଏ ବସ୍ତି ବା ପଡ଼ାର ସମଷ୍ଟି... ସେଥିରେ ପୁଣି ବାଉନ ବଜାର ତେପନ ଗଳି । ରାସ୍ତା ସବୁ ତଥାପି ପିଚୁ ହୋଇ ନ ଥାଏ; ନାଲିଆ ଧୂଳିଆ ସହର । ଷ୍ଟେସନଠାରୁ ପ୍ରଧାନ ରାସ୍ତାଟା କେବଳ କିଛି କିଛି ପିଚୁ ହୋଇଥାଏ । ଗୋଟାଏ ବାସି ଲୁଗା ପିନ୍ଧି ବାହାରୁ ଘଣ୍ଟାଏ ବୁଲି ଆସିଲେ ନାଲିଧୂଳିରେ ଲୁଗାଟା ଗେରୁଆ ଦିଶେ । ସେଥିପାଇଁ ସେତେବେଳେ ଗାଁ ଗହଳରେ ଗୋଟାଏ ଧମକ ଥିଲା, ମୁଁ ତୋତେ ନାଲିମାଟି ମଡ଼େଇଦେବି । ଅର୍ଥାତ୍, କଟକରେ ମୋକଦମା କରି ତୋତେ କଚ୍ଚେରିକୁ ଟାଣିବି । ଏବର ହାଇକୋର୍ଟଠାରୁ ବକ୍‌ସିବଜାର ପର୍ଯ୍ୟନ୍ତ ରାସ୍ତା ଦୁଇକଡ଼ରେ ଯାହା ବଜାର । ତା' ନ ହେଲେ ଏଠି ସେଠି ଛଡ଼ାଛଡ଼ିରେ କାଁ ଭାଁ ଦୋକାନ ବଜାର ସବୁ ରହିଥାଏ । କେବଳ କ୍ୟାଣ୍ଟନମେଣ୍ଟ୍ ରୋଡ୍‌ଟି ଥିଲା ବେଶ୍ ପ୍ରଶସ୍ତ ଓ ପରିଚ୍ଛନ୍ନ । ତା'ର ଦୁଇକଡ଼ରେ ଚାଳଛପର ବଙ୍ଗଳାସବୁ ଲନ୍ ଓ ଫୁଲବଗିଚ଼ା ଭିତରେ ଦିଶୁଥିଲେ ଖଣ୍ଡେ ଖଣ୍ଡେ ପିକ୍‌ଚର ପୋଷ୍ଟକାର୍ଡ ପରି । ସେଇ ବଙ୍ଗଳାମାନଙ୍କରେ ରହୁଥିଲେ ସେତେବେଳର ଗୋରାସାହେବମାନେ । ସର୍ବସାଧାରଣଙ୍କ ପାଇଁ ତାହା ଥିଲା ନିଷିଦ୍ଧ ଅଞ୍ଚଳ । ସିଏ ଥିଲା ଭିନ୍ନ ଏକ କଟକ । କ୍ୟାଣ୍ଟନମେଣ୍ଟ୍ ରୋଡ୍ ଶେଷ ହୋଇଥିଲା ଠିକ୍ ବାରବାଟୀ ଦୁର୍ଗର ପ୍ରବେଶ ଦ୍ୱାରରେ । ତା' ଭିତରେ କଟକ କ୍ଲବ-ସେଇ ଗୋରାସାହେବମାନଙ୍କର । ଭାରତୀୟ ଅଫିସରମାନେ ସେଠାକୁ ଯାଇ ନ ଥିଲେ କିମ୍ବା ତାହା ଥିଲା ସେମାନଙ୍କ ପାଇଁ ନିଷିଦ୍ଧ । କ୍ୟାଣ୍ଟନମେଣ୍ଟ୍ ରୋଡ଼ ଛକଠାରୁ ଷ୍ଟେସନ ପର୍ଯ୍ୟନ୍ତ ରାସ୍ତାର

ଦୁଇକଡ଼ରେ ଅଧିକାଂଶ ଜାଗାରେ ଗଉଡ଼ଗୋବିନ୍ଦ ବଣୁଆ ଗଛ, ବାଉଁଶ ବଣ ଆଉ ପଚ଼ା ପୋଖରୀ। ମୋଟର କାର୍ କାଁ ଭାଁ ଗୋଟିଏ ଆଖିରେ ପଡ଼େ। ରାସ୍ତାମାନଙ୍କରେ ସେତେବେଳେ ବଗିଗାଡ଼ିର ହିଁ ପ୍ରଭୁତ୍ୱ। କଚୁଆନ୍‌ମାନେ ବେପରୁଆ ଭାବରେ ଗାଡ଼ି ଛୁଟାଉଥିବାବେଳେ ପଥଚ଼ାରୀ ଜନତାଙ୍କୁ ହୁରୁଡ଼ାଇ ଦେବାପାଇଁ ଲମ୍ବା ଚାବୁକ୍ ହଲାଇ ଚିତ୍‌କାର କରନ୍ତି, ହଟୋ ହଟୋ-ହଟ୍‌ଯାଓ। ରାସ୍ତାଟା ଯେପରି ଏକା ସେଇମାନଙ୍କର। ତାଆରି ଭିତରେ ହାତଟଣା ରିକ୍‌ସା ଚାଲେ ଟିଣି ଟିଣି ଘଣ୍ଟି ବଜାଇ। ରିକ୍‌ସାବାଲାର ଦେହ ରିକ୍‌ସା ଦଣ୍ଡା ଉପରେ ଅଣ୍ଟାଠାରୁ ମୁଣ୍ଡ ପର୍ଯ୍ୟନ୍ତ ଗୋଟାଏ ସ୍ଥୂଳକୋଣ ଆକାରରେ ବାଙ୍କି ରହିଥାଏ। ଏଇ ହାତଟଣା ରିକ୍‌ସା ସେତେବେଳେ ଥିଲା ସାଧାରଣ ଲୋକଙ୍କ ପାଇଁ ଏକମାତ୍ର ଯାନ। ଗୌରୀଶଙ୍କର ପାର୍କଠାରୁ ଷ୍ଟେସନ ପର୍ଯ୍ୟନ୍ତ ହାତଟଣା ରିକ୍‌ସାରେ ଭଡ଼ା ପଡୁଥିଲା ପୁରୁଣା ତିନିଅଣା। ଏହାଛଡ଼ା ତାଟିବନ୍ଧା ଶଗଡ଼ ମଧ୍ୟ ରାସ୍ତାରେ ବିରଳ ନ ଥିଲା। କଟକ ଇଲେକ୍‌ଟ୍ରିସିଟି କମ୍ପାନୀର ଡି.ସି. ଆଲୁଅ କେବଳ ବଜାର ଅଞ୍ଚଳ ଛାଡ଼ିଦେଲେ ସହରରେ ଅନ୍ୟତ୍ର ଥିଲା କ୍ୱଚ଼ିତ୍। ଅଣ ଓସାରୀ ରାସ୍ତା ଓ ଗଳିମାନଙ୍କର କଡ଼ରେ ମ୍ୟୁନିସିପାଲିଟିର ଦୁକୁଦୁକିଆ କିରୋସିନି ଲେମ୍ପ ମାନ କିଛି ସମୟ ପାଇଁ ଜଳି ହିକା ମାରି ମାରି ଦପ୍‌ଦପ୍ ହୋଇ ନିଭି ଯାଉଥିଲା। ଏଇ ଥିଲା ସେଦିନର କଟକ ସହର।

ତଥାପି ମୋ ପାଇଁ କଟକର ବାତାବରଣରେ ଥିଲା ପ୍ରବଳ ଉତ୍ତେଜନା। ଅନୁଶାସନ-ନିୟନ୍ତ୍ରିତ ଏକ ପରିବେଶର ସୀମାବଦ୍ଧତା ଭିତରୁ ଏଠାରେ ମୋତେ ମିଳିଥିଲା ଯେପରି ଅବାରିତ ମୁକ୍ତି। ମେସ୍‌ରେ ଅବଶ୍ୟ ଥିଲେ ଜଣେ ଲୋକାଲ୍ ଗାର୍ଜନ। ମାତ୍ର ତାହା କେବଳ ନାମକା ବାସ୍ତେ। କଟକକୁ ଆସି ମୋତେ ଲାଗିଲା ମୁଁ ଯେପରି ଗୋଟିଏ ପଞ୍ଜୁରିରୁ ଫିଟି ଆସି ଡେଣା ମେଲି ଦେଇଛି ମୁକ୍ତ ଆକାଶରେ। ଏଠାରେ କିନ୍ତୁ ଜୀବନକୁ ଉପଭୋଗ କରିବା ପାଇଁ ବି ପ୍ରଚୁର ଅର୍ଥ ଆବଶ୍ୟକ। ସିନେମା, ହୋଟେଲ୍, ଚା' ଦୋକାନ, ଷ୍ଟେସନ ସବୁଠାରୁ ପଇସା ଦରକାର। କିନ୍ତୁ ବାପା ମୋତେ ମାସକୁ ଦେଉଥିଲେ ହିସାବକଷି କୋଡ଼ିଏଟି ଟଙ୍କା। ଏଥିରେ ସେତେବେଳର ପରିସ୍ଥିତିରେ ସ୍ୱାଚ୍ଛନ୍ଦ୍ୟରେ ନ ହେଉ ପଛେ ଜଣେ ଛାତ୍ର ପକ୍ଷରେ କଷ୍ଟେମଷ୍ଟେ ଚଳିବା ଅସମ୍ଭବ ନଥିଲା। କିନ୍ତୁ ଏହା ମୋତେ ଆଦୌ କୁଳାଉ ନଥିଲା। ଧାର, ହାତଉଧାରି, ମେସ୍ ବନ୍ଦ, କଲେଜରୁ ନାଆଁକଟା ଏ ସବୁତ ଲାଗି ରହିଥାଏ। ଅବସ୍ଥା ଅତି ସାଂଘାତିକ ହେଲେ ବୋଉ ପାଖରୁ କିଛି ଟଙ୍କା ମାଗିକରି ଆଣେ। ନ ଦେଲେ ଚୋରାଇ ନିଏ। ଥରେ ତା'ର ଗୋଟାଏ ଧନିଆଫାଳିଆ ସୁନାହାର ଆଣି କଟକରେ ବିକ୍ରିକରି ଦେଇଥିଲି। ବୋଉ ମୁଁ ହାର ଚୋରି କରିଥିବା, ମଝିଆ ଭାଇ କ୍ଷୀରଠାରୁ ଜାଣିଲା। କିନ୍ତୁ ବାପାଙ୍କୁ କହିଲା ନାହିଁ। ବାପା ଥରେ ସେ ହାରକଥା ବୋଉକୁ ପଚ଼ାରିବାରୁ ତାଙ୍କୁ ବାଆଁରେଇ ଦେଲା, "ମୋ ବଡ଼ବୋହୂ ପାଇଁ ସେ ହାରକୁ ରଖିଛି।" ବୋଉ କଥା ଶୁଣି ମୋ ମୁଣ୍ଡ ଲଜ୍ଜା ଓ ଅନୁଶୋଚ଼ନାରେ ନଇଁ ପଡ଼ିଲା। ଆଜି ପୁଷ୍ଟା ସେ ଗ୍ଲାନି ମୁଁ ଭୁଲିନାହିଁ !

ଚଳ୍‌ତି ଭାଷାରେ ଚରିତ୍ର କହିଲେ ଯାହା ବୁଝାଏ ତାହା ମୋର ଆଦୌ ନ ଥିଲା । କାରଣ ପିଲାଦିନୁ ଏକ ଅନୁଶାସନବଦ୍ଧ ସମାଜର ସବୁ ଚଳ୍‌ତି ମୂଲ୍ୟବୋଧକୁ ମୁଁ ଉପେକ୍ଷା କରି ଆସିଛି । ସତ କହିବା ଉଚିତ ବୋଲି ଦଳେ ମିଥ୍ୟାବାଦୀଙ୍କ ଦାବିର ଉତ୍ତରରେ ମୁଁ ପିଲାଦିନେ ଅନେକ ମିଛ କହୁଥିଲି । ବାପା ମୋ ହସ୍ତାକ୍ଷରକୁ ଭଲ କରିବା ପାଇଁ ଦୁଇ ଆଙ୍ଗୁଠି ଭିତରେ ପେନ୍‌ସିଲ୍ ରଖି ଚାପୁଆଣି ଦେବାର ପ୍ରତିବାଦରେ ମୁଁ ଆରାମରେ ବିଡ଼ି ଟାଣି ନାକବାଟେ ଧୂଆଁ ବାହାର କରୁଥିଲି । ମୁଁ ତେଣୁ ସେଇ ମାଇନର ସ୍କୁଲରେ ପଢ଼ିବା ଦିନୁ ବିଡ଼ିଟଣା ଆରମ୍ଭ କରି ଦେଇଥିଲି । ପାଠକମାନେ ହୁଏତ ସ୍ତବ୍‌ଧ ହୋଇଯିବେ , ମୁଁ ଦଶମ ଶ୍ରେଣୀରେ ପଢ଼ିଲାବେଳୁ ସୁଦ୍ଧା ଏଇ ଚରିତ୍ରବାନ୍‌ମାନଙ୍କ ଦାଉରେ ଖଜୁରି ଗଛରୁ ତାଡ଼ି ଓହ୍ଲାଇ ଆଣି କେତେଥର ପିଇଛି । ମୋଟାମୋଟି ଭାବରେ ପ୍ରଚଳିତ ଅର୍ଥରେ ମୁଁ ଚରିତ୍ରହୀନ ଥିଲି ବୋଲି କୁହାଯାଇପାରେ । ମୋ ନିକଟରେ ମୋ ଚରିତ୍ର ସଂଜ୍ଞା ସେଇ ଆଦ୍ୟ ଯୌବନରୁ ସ୍ୱତନ୍ତ୍ର । ମୁଁ କହେଁ , ପାଣିର ଚରିତ୍ର ହେଲା ସେ ବୋହିଯିବ । ତାକୁ ପଥର ସୁଦ୍ଧା ରୋକିପାରିବ ନାହିଁ । ନିଆଁର ଚରିତ୍ର ହେଲା ସେ ଜାଳିଦେବ । ତାକୁ ସୃଷ୍ଟିର ଅଣଚାଶ ପବନ ସୁଦ୍ଧା ନିଭାଇ ପାରିବ ନାହିଁ । ପବନର ଧର୍ମ ହେଲା ସେ ଝିଙ୍କାର ଦେଇ ଝଞ୍ଜାପରି ବୋହିଯିବ ତାକୁ କେହି ରୋକି ପାରିବ ନାହିଁ । ସ୍ୱଧର୍ମ ପାଳନ ହେଲା ପ୍ରକୃତ ଚରିତ୍ର । ଯିଏ ସ୍ୱଧର୍ମ ଭୁଲି କେବଳ ଉପଚାରରେ ଚିତା ତିଳକ କାଟି ବୁଲିଲା , ସମାଜ ପ୍ରତି ତା 'ର କର୍ତ୍ତବ୍ୟ ନ କଲା , ମୁଁ କହେ ସେଇ ହେଉଛି ପ୍ରକୃତରେ ଚରିତ୍ରହୀନ । ମୋ ସାଙ୍ଗରେ ଯେଉଁମାନେ ଛାତ୍ରାବସ୍ଥାରେ 'ଗୁଡ୍ କଣ୍ଡକ୍ଟ' ପୁରସ୍କାରମାନ ପାଉଥିଲେ , ମୁଁ ଜାଣିଥିଲି ମୁଁ ଥିଲି ସେମାନଙ୍କଠାରୁ ଯଥେଷ୍ଟ ବେଶି ଚରିତ୍ରବାନ୍ । କାରଣ ସେମାନଙ୍କ ପରି ଛୋଟ ଛୋଟ କଥାରେ ମୁଁ ମିଛ କହୁ ନ ଥିଲି । ମୋ ଜୀବନର ଯଦି କୌଣସି ବାଣୀ ଥାଏ , ତା ' ହେଲେ ତା ' ହେଉଛି ଅନୁଶାସନର ଦଣ୍ଡ ଦେଖାଇ ନିଗ୍ରହୀତ କରି ପିଲାମାନଙ୍କୁ ବଢ଼ାଅ ନାହିଁ । ସେମାନଙ୍କ ପାଇଁ କେଉଁଟା ଭଲ , କେଉଁଟା ମନ୍ଦ , ତାହା ସେମାନଙ୍କ ବିଚାରଶକ୍ତିକୁ ଆବେଦନ କରି ବୁଝାଅ । ଏପରିକି ସବୁ ବୁଝିଲା ପରେ କେଉଁଟା କର୍ତ୍ତବ୍ୟ ଓ କେଉଁଟା ଅକର୍ତ୍ତବ୍ୟ , ତାହା ସ୍ଥିର କରିବାର ଦାୟିତ୍ୱ ମଧ୍ୟ ତାଙ୍କ ଉପରେ ଛାଡ଼ିଦିଅ । ମୋର ମନେହୁଏ , ନିଜନିଜର ପ୍ରକୃତି ଅନୁସାରେ ଜୀବନର ରାସ୍ତା ବାଛି ନିଅନ୍ତୁ । ଗୀତାରେ ମଧ୍ୟ ଠିକ୍ ଏଇକଥା ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ବୁଝାଇଛନ୍ତି :

ସଦୃଶଂ ଚେଷ୍ଟତେ ସ୍ୱସ୍ୟାଃ ପ୍ରତେର୍ଜ୍ଞାନବାନପି ।
ପ୍ରକୃତିଂ ୟାନ୍ତି ଭୂତାନି ନିଗ୍ରହଃ କିଂ କରିଷ୍ୟତି ।। ୩୩/ ୩

ମୁଁ ତ ଥିଲି ସ୍କୁଲପାଠର ବିରୋଧୀ । କାରଣ ଏଇ ପାଠ ପାଇଁ ମୋର ଅରକ୍ଷିତ ପିଠି ଉପରେ ଅନେକ ଅତ୍ୟାଚାର ହୋଇଯାଇଛି । ମୁଁ ତେଣୁ କଲେଜରେ ସ୍ୱାଭାବିକ ଭାବରେ ପାଠଛଡ଼ା ଆଉ ସବୁ ପଢ଼ିଲି । କ୍ଲାସ୍‌ରେ 'ପ୍ରକ୍‌ସି' ଯୋଗାଡ଼ ହୋଇ ପାରିଲେ ତ ଭଲ । ନୋହିଲେ

ରୋଲ୍‌କର ବେଳେ କିଛି ସମୟ ରହି ମୁଁ ପଳାଇ ଆସୁଥିଲି କନିକା ଲାଇବ୍ରେରୀକୁ । ରେଭେନ୍‌ସା କଲେଜର କ୍ଲାସ୍‌ରୁମ୍ ଅପେକ୍ଷା ଏଇ କନିକା ଲାଇବ୍ରେରୀ ଓ ସହରର ରାସ୍ତା ମୋ ପାଇଁ ଥିଲା ପ୍ରକୃତ ବିଶ୍ୱବିଦ୍ୟାଳୟ । ସେତେବେଳେ ଆଇ.ଏ. କ୍ଲାସ୍‌ରେ ମାତ୍ର ଦୁଇଜଣ ଛାତ୍ରୀ ପଢୁଥିଲେ । ସେମାନଙ୍କୁ ଘେରି ଦଳେ ଛାତ୍ର ମତ୍ତ ମୟୂର ପରି ପୁଚ୍ଛତୋଳି ନାଚ୍‌ନ୍ତି । ମୁଁ କିଛିଦିନ ମଧ୍ୟ ସେମାନଙ୍କ ମାଳଞ୍ଚର ମାଳାକାର ହୋଇଥିଲି । ମାତ୍ର ମୋତେ ଏ ସବୁ ବଡ଼ 'ଅନ୍-ଇଣ୍ଟେରେଷ୍ଟିଙ୍ଗ୍'(uninteresting) ଲାଗିଲା । ମୁଁ ଏହା ବିରୁଦ୍ଧରେ ମଧ୍ୟ ବିଦ୍ରୋହ କଲି । କିଛିଦିନ ନାରୀବିଦ୍ୱେଷୀ ହୋଇଗଲି ।

ସେତେବେଳେ ଆମ ଇଂରାଜୀ ଲେକ୍‌ଚରର ବା ଅଧ୍ୟାପକମାନେ ସେକ୍‌ସପିଅରଙ୍କ 'Mid-Summer Night's Dream' ବା ମାଥ୍ୟୁ ଆର୍ ନଲ୍‌ଡଙ୍କ 'ସୋରବ ଆଣ୍ଡ ରୋସ୍ତମ୍' ବା କେଉଁ ଔପନ୍ୟାସିକଙ୍କ 'ଲୋର୍‌ନାଡୁନ୍' ଉପନ୍ୟାସକୁ କ୍ଲାସ୍‌ରେ ପଢ଼ାଇବାକୁ ଯାଇ ସେସବୁକୁ ଏପରି ତିକ୍ତ କରି ଦେଉଥିଲେ ଯେ ମୁଁ ଷ୍ଟେସନରେ ହୁଇଲାର୍ ବହି ଦୋକାନରୁ ଇଂରାଜୀ ଡିଟେକ୍ଟିଭ୍ ଉପନ୍ୟାସ ସବୁ ଆଣି କ୍ଲାସ୍‌ର ପଛ ବେଞ୍ଚରେ ବସି ପଢୁଥିଲି । ଓଡ଼ିଆ କ୍ଲାସ୍‌ରେ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ଆଖିବୁଜି ଯେପରି ତଦ୍‌ଗତ ଭାବରେ ପଞ୍ଚସଖା ସାହିତ୍ୟର ଇଡ଼ା-ପିଙ୍ଗଳା-ସୁଷୁମ୍ନା ଇତ୍ୟାଦି ବୁଝାଉଥିଲେ ତାହା ମୋତେ ଓଡ଼ିଆ ସାହିତ୍ୟ ପ୍ରତି ସମ୍ପୂର୍ଣ୍ଣ ବିମୁଖ କରିଦେଇଥିଲା । ଡକ୍ଟର ସଦାଶିବ ମିଶ୍ର ଥିଲେ ଆମର ଇକନମିକ୍‌ସର ଅଧ୍ୟାପକ । ସେ ପଢ଼ାଉଥିଲେ ଥିଓରୀ ପେପର । ତାଙ୍କରି କ୍ଲାସଟିରେ ମୁଁ ବରାବର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଯୋଗ ଦେଉଥିଲି । ଇକନମିକ୍‌ସ ବିଷୟଟି ମୋ ପକ୍ଷରେ ଥିଲା ସମ୍ପୂର୍ଣ୍ଣ ନୂଆ । ତେଣୁ ଏଥିରେ ଥିଲା ମୋର ପ୍ରବଳ ଆଗ୍ରହ । ସଦାଶିବ ବାବୁ କ୍ଲାସ୍‌ରେ ଦିନେ ବୁଝାଉଥିଲେ Theory of Equi-Marginal Returns । ଏ ତତ୍ତ୍ୱଟି ହେଲା ଜିନିଷର କିଣାବିକା ଓ ତାହାର ମୂଲ୍ୟତତ୍ତ୍ୱ । ଉଦାହରଣସ୍ୱରୂପ ବାଟା ଜୋତାର ଦାମ ରଖାଯାଏ ଟ୯.୯୦ ପଇସା, କିନ୍ତୁ ଦଶଟଙ୍କା ନୁହେଁ । କାହିଁକି ? ଏଇ ତତ୍ତ୍ୱ ଅନୁସାରେ ଜୋତା କିଣାଳି ପକେଟରୁ ଟ୧୦.୦୦ କାଢ଼ିବାକୁ କୁଣ୍ଠୁ କୁଣ୍ଠୁ ହୁଏ । ଦଶଟଙ୍କା ବିନିମୟରେ ଜୋତା କିଣି ସେ ଯେଉଁ ସନ୍ତୋଷ ପାଇବ, ତା' ହୁଏତ ଟ.୧୦.୦୦ର ସମକକ୍ଷ ନୁହେଁ । ସେଥିପାଇଁ ଟ.୯.୯୦ ପଇସା ରଖିଲେ ତା' ମନରେ ସେପରି କୁଣ୍ଠୁ କୁଣ୍ଠୁ ରହିବ ନାହିଁ । ଦ୍ରବ୍ୟମୂଲ୍ୟ ଆତ୍ମସନ୍ତୋଷ ସହିତ ସମୀକୃତ ହେବାରେ ପ୍ରକୃତ ମୂଲ୍ୟ ନିର୍ଦ୍ଧାରିତ ହୋଇଥାଏ । ଏ ତତ୍ତ୍ୱ ଅନୁସାରେ ବହୁତ ହିସାବକିତାବ କରି ଖର୍ଚ୍ଚ କରିବା କଥା । କେତେ ଲାଭ ମିଳିବ, ସବୁ ଖର୍ଚ୍ଚ ତାହାହିଁ ନିୟମକ ହେବା ଆବଶ୍ୟକ । ମୁଁ ତ କ୍ଲାସ୍‌ରେ ପଚାରି ନାହିଁ । କିନ୍ତୁ ମୋର ବେହିସାବୀ ମନକୁ ଏ ତତ୍ତ୍ୱ ଆଦୌ ପାଉ ନ ଥିଲା । ମନୁଷ୍ୟ କଅଣ ସବୁବେଳେ ହିସାବୀ ? ହିସାବର ସୀମାବଦ୍ଧତା ଭିତରେ ଜୀବନକୁ ସେ କଅଣ କେବେ ଉପଭୋଗ କରିପାରିବ ? ଏହି ତତ୍ତ୍ୱ

ବିରୁଦ୍ଧରେ ମୁଁ ବିଦ୍ରୋହ ଘୋଷଣା କରି କେତେବର୍ଷ ପରେ ଲେଖିଥିଲି ମୋର ଆଦ୍ୟଦିନର ଗଳ୍ପ 'ମଣିଷ ଓ ଅର୍ଥନୀତି'।

ସେତେବେଳେ ଗଗନପବନରେ ଥିଲା ସାହିତ୍ୟ। ଆଜି ଅବଶ୍ୟ ସାହିତ୍ୟନାମରେ ବହୁ ସଂଗଠନ, ବହୁ ସଭା, ବହୁ ଆଲୋଚନା ଚକ୍ର, ବହୁ ଗୋଷ୍ଠୀ, ବହୁ ପତ୍ରିକା, ବହୁ ଲେଖକ ଓ କବି। ସବୁ ଅଛି, କିନ୍ତୁ ସେ ସାହିତ୍ୟପ୍ରୀତି ନାହିଁ କିମ୍ବା ସତ୍-ସାହିତ୍ୟ ପାଇଁ ସେ ବାତାବରଣ ନାହିଁ। ସେ ଦିନ ଥିଲା ଜାତୀୟ ସଂଗ୍ରାମର ସ୍ପନ୍ଦନ। ପୁଣି ଜୀବନରେ ମଧ୍ୟ ଏକ ହିଲ୍ଲୋଳ। ସେ ଦିନ ମଳୟ ବହୁଥିଲା, ସେଥିପାଇଁ ବାଉଁଶ ଗଛରେ ସୁଦ୍ଧା ପତ୍ର-ପଲ୍ଲବ କଅଁଳୁଥିଲା। ଆଜି କିନ୍ତୁ ତୁଚ୍ଛତା, କ୍ଷୁଦ୍ରତା ଓ ଅସାହିତ୍ୟିକତାର 'ଲୁ'ରେ ସବୁ ଜଳିଯାଉଛି। ସେତେବେଳେ ବୋଧହୁଏ ମୁଁ ସେକେଣ୍ଡ୍-ଇୟରର ଛାତ୍ର। ଗୋପୀନାଥ ମହାନ୍ତି ସେତେବେଳେ ଓଡ଼ିଆ ସାହିତ୍ୟରେ ଏତେଟା ପରିଚିତ ନୁହନ୍ତି। 'ପାଟପାଣି' ଶୀର୍ଷକ ତାଙ୍କର ଗୋଟିଏ ଗଳ୍ପ 'ସହକାର'ରେ ପ୍ରକାଶ ପାଇଥାଏ। ସେ କେତେଦିନ ମୁଁ ଯେଉଁ ମେସ୍‌କୁ ଚା' ଦୋକାନକୁ ଯାଇଛି ସବୁଠି ଶୁଣିଛି, 'ପାଟପାଣି', ପଢ଼ିଲଣି ? ଦିନେ ଖବରକାଗଜରେ ମାୟାଧର ମାନସିଂଙ୍କର ସଦ୍ୟପ୍ରକାଶିତ କବିତା ବହି 'ପୁଷ୍ପିତା'ର ବିଜ୍ଞାପନ ବାହାରିଥିଲା। ଯା'ର ପ୍ରକାଶକ ବୋଧହୁଏ ଥିଲେ 'ପୋଥିଘର', ଚୌଧୁରୀ ବଜାରର ଗୋଟିଏ ବହିଦୋକାନ (ନାଆଁଟା ଠିକ୍ ମନେପଡୁନାହିଁ)। ଗୁରୁପ୍ରସାଦ ମହାନ୍ତି ସେତେବେଳେ ଥିଲେ ମୋର ସତୀର୍ଥ ଓ ସହପାଠୀ। କାଲି କିଏ କବି ମାନସିଂଙ୍କର ପୁଷ୍ପିତାର ପ୍ରଥମ କପି କିଣିପାରିବ, ସେଥିପାଇଁ ଆମ ଦୁହିଁଙ୍କ ଭିତରେ ବାଜି ଲାଗିଗଲା। ତାପରଦିନ ସକାଳ ନଅଟା ବେଳେ ସାଇକେଲ ଧରି ମୁଁ ବହିଦୋକାନ ପାଖରେ ପହଞ୍ଚିବା ବେଳକୁ ଦେଖେ ଗୁରୁପ୍ରସାଦ ଛିଡ଼ା ହୋଇଛନ୍ତି ସାଇକେଲ ଧରି। ଦୋକାନ ଫିଟିବାକୁ ତଥାପି ଡେରି। ମୁଁ ନିଶ୍ଚିତ ଭାବରେ କହିପାରେ, ଆଜି ସାହିତ୍ୟର ଏଇ ପ୍ରବଦ୍ଧମାନ କାଳରେ ଏପରି ସାହିତ୍ୟପ୍ରୀତି, ଏପରି ବାତୁଳତା ମିଳିବ ନାହିଁ।

ସେତେବେଳେ ଯେଉଁମାନେ ଥିଲେ ପ୍ରତିଷ୍ଠିତ ସାହିତ୍ୟିକ-କାଳିନ୍ଦୀ ପାଣିଗ୍ରାହୀ, ବୈକୁଣ୍ଠନାଥ ପଟ୍ଟନାୟକ, କାହ୍ନୁଚରଣ ମହାନ୍ତି, ଗୋପୀନାଥ ମହାନ୍ତି, ରାଜକିଶୋର ରାୟ, ମାୟାଧର ମାନସିଂହ, ଗୋଦାବରୀଶ ମହାପାତ୍ର, ସଚ୍ଚି ରାଉତରାୟ ପ୍ରମୁଖ। ସମସ୍ତଙ୍କୁ ଯାଇ ଦୂରରୁ ଥରେ ଥରେ ଦେଖିବା ପାଇଁ ମୋର ଥିଲା ପ୍ରବଳ ଆଗ୍ରହ। ମୁଁ ଜଣେ ଅନାମଧେୟ ଛାତ୍ର ଥିବାରୁ ସେମାନଙ୍କ ପାଖକୁ ଯିବାକୁ ତ ଭରସେ ନାହିଁ; ଦୂରରୁ ଯାଇ ଥରେ ଦେଖିଲେଇ ଯଥେଷ୍ଟ। ଏମାନେ ମୋ ଭାଷାର କବି ଓ ଲେଖକ। ସେମାନେ ମୋର ଜାତୀୟ ମାନସିକତାକୁ ସମୃଦ୍ଧ କରୁଛନ୍ତି। ମୁଁ ଯେଉଁ ଭାଷାରେ କହୁଛି, ସେ ଭାଷାକୁ ଅଧିକ ପ୍ରକାଶକ୍ଷମ ଓ ଶକ୍ତିଶାଳୀ କରୁଛନ୍ତି।

ଏମାନେ ସବୁ ଥିଲେ ମୋ ଦୃଷ୍ଟିରେ ଜଣେ ଜଣେ ତୀର୍ଥଙ୍କର । ଭାବିଲେ ପ୍ରେରଣା ମିଳୁଥିଲା । ଆଜି କିନ୍ତୁ ମୁଁ ନିଶ୍ଚିତ ଭାବରେ କହିପାରେ ସେ ପରିବେଶ ଏବେ ନାହିଁ ।

ଥରେ କିନ୍ତୁ ସାହିତ୍ୟିକମାନଙ୍କ ସଂପର୍କରେ ମୋର ମୋହଭଙ୍ଗ ଘଟିଲା । 'ଭାଗବତ ଟୁଙ୍ଗୀ' ଓ 'ବାଇମାହାନ୍ତି ପାଞ୍ଜି' ପଢ଼ିବା ଦିନୁ ମୁଁ ଗୋପାଳ ପ୍ରହରାଜଙ୍କ ପ୍ରତି ଆକୃଷ୍ଟ ଥିଲି । ସିଏ ସେତେବେଳକୁ ଭାଷାକୋଷ ପ୍ରଣେତା ଭାବରେ ଭାରି ପ୍ରସିଦ୍ଧ । ସହଜେ ପୁଣି ବଡ଼ ଓକିଲ । ତଙ୍କ ପାଖକୁ ଯିବାପାଇଁ ଭରସିପାରୁ ନଥିଲି ।

ଦିନେ ଗୌରୀଶଙ୍କର ପାର୍କରେ ପାଞ୍ଚଟାବେଳେ ଏକୁଟିଆ ବସିଛି । ଦେଖିଲି ଦୁଇଜଣ ପୋଲିସ୍ କନଷ୍ଟେବଳ ଆସି ସେଇ ପାର୍କର ଗୋଟିଏ ବେଞ୍ଚ ଉପରେ ବସିଥିବା ଜଣେ ଲୋକକୁ ଟଣାଟଣି କରୁଛନ୍ତି । ସେ କିନ୍ତୁ ପ୍ରତିରୋଧ କରୁଛି । ମୁଁ ସେ ବେଞ୍ଚ ପାଖକୁ ଉଠି ଆସିଲି । ଲୋକଟି ପିନ୍ଧିଥିଲା ଅଧାମଇଳା, ଆଣ୍ଠୁତଳକୁ ଲମ୍ବିଥିବା ଖଣ୍ଡେ ଧୋତି ଆଉ ଖଣ୍ଡେ ହାଫ୍‌ସାର୍ଟ, କାଖତଳେ ଗାମୁଛାରେ ବନ୍ଧା ଗୋଟେ ଛୋଟ ପୁଟୁଳି । ମୋତେ ଦେଖି ସେ ଲୋକଟି ଆତୁର ଭାବରେ କହିଲା, ''ବାବୁ ମୋତେ ରକ୍ଷାକର । ପୋଲିସ ଧରି ନେଉଛି ।'' ମୁଁ ପଚାରିଲି, ''ତୁମେମାନେ କାହିଁକି ୟା' ଉପରେ ଜୁଲମ କରୁଛ ?'' ଜଣେ ପୋଲିସ୍ କନେଷ୍ଟବଳ ଘାଗଡ଼ା ଗଳାରେ ଉତ୍ତର ଦେଲା, ''ତୁମର କଅଣ ଅଛି ? ଏଇଟା ଚୋରି କରିଛି । ଆମେ ଥାନାକୁ ନେବୁ ।'' ମୁଁ ଆହୁରି ଚଡ଼ା ଗଳାରେ ପଚାରିଲି, ''ପ୍ରମାଣ କଅଣ ?'' ସେମାନେ ମୋ ପ୍ରତି ଭ୍ରୂକ୍ଷେପ କରନ୍ତେ ବା କାହିଁକି ? ଲୋକଟାକୁ ଭିଡ଼ିଭିଡ଼ି ଟାଣି ଲାଲ୍‌ବାଗ ଥାନାକୁ ନେଇଗଲେ । ମୁଁ ସେମାନଙ୍କ ପଛେ ପଛେ ସାଇକେଲ ଗଡ଼ାଇ ଆସୁଛି-ନିମଚୌଡ଼ି ଛକ ପାଖରେ ଭାବିଲି ମୁଁ ଯିବି ଗୋପାଳ ପ୍ରହରାଜଙ୍କ ପାଖକୁ । ଏଇ ପାଖରେ ତ ତାଙ୍କର ଘର । ସେ ଜଣେ ଲେଖକ, ପୁଣି ସହଜେ ତ ସେ ଜଣେ ବଡ଼ ଓକିଲ । ସେ ନିଶ୍ଚୟ ଏ ଅରକ୍ଷ ଲୋକଟାର ସାହା ହେବେ । ସାହିତ୍ୟିକମାନଙ୍କ ସଂପର୍କରେ ମୋ ମନରେ ଏ ପ୍ରକାର ଧାରଣାର ମଧ୍ୟ ଗୋଟାଏ କାରଣ ଥିଲା । ମାଇନର କ୍ଲାସ୍‌ରେ ମଧୁସୂଦନ ରାଓଙ୍କର 'ସୀତା ବନବାସ' ପଦ୍ୟଟି କ୍ଲାସ୍‌ରେ ପଢ଼ାଇବା ବେଳେ ଆନନ୍ଦ ପଣ୍ଡିତେ ବାଲ୍ମୀକି ଓ ପ୍ରଥମ କାବ୍ୟ ରାମାୟଣର କଥା କହୁଥିଲେ । ବାଲ୍ମୀକି କୁଆଡ଼େ ବ୍ୟାଧର ଶରରେ ନିହତ ଗୋଟିଏ କ୍ରୌଞ୍ଚପକ୍ଷୀର ବିୟୋଗରେ କ୍ରୌଞ୍ଚୀର ବିଳାପରେ ଏତେ ବିଗଳିତ ହୋଇ ଉଠିଥିଲେ ଯେ ସେଦିନ ତାଙ୍କର ଗଭୀରତମ ଅନ୍ତରରୁ ଉଚ୍ଚାରିତ ହୋଇଥିଲା ପ୍ରଥମ ଶ୍ଳୋକ- ''ମା' ନିଷାଦ ପ୍ରତିଷ୍ଠାଂ ତ୍ୱମଗମଃ ଶାଶତୀଃ ସମାଃ । ଯତ୍ କ୍ରୌଞ୍ଚମିଥୁନା ଦେବମବଧୀଃ କାମମୋହିତମ୍ ।'' ଆଜି ମଧ୍ୟ ମୁଁ ବିଶ୍ୱାସ କରେ ସାହିତ୍ୟିକକୁ ସଂବେଦନଶୀଳ ହେବା ପାଇଁ ପଡ଼ିବ । ମନୁଷ୍ୟ ଯେତେ ଅଧଃପତିତ ହେଉନା କାହିଁକି ତା'ର ମଧ୍ୟ ଗୋଟାଏ ବକ୍ତବ୍ୟ ଅଛି । ସେ ବକ୍ତବ୍ୟକୁ ବୁଝିବା ପାଇଁ ପଡ଼ିବ ଓ ତାହାକୁ ସମ୍ମାନ ଦେବାକୁ ପଡ଼ିବ ।

ଗୋପାଳ ପ୍ରହରାଜ ମୁଁ ପହଞ୍ଚିବା ବେଳକୁ ତାଙ୍କ ବୈଠକଖାନାରେ ଖଣ୍ଡିଏ ଚୌକି ଉପରେ ବଡ଼ ବିଷଣ୍ଣ ଭାବରେ ବସିଥିଲେ । ତାଙ୍କର ଗୋଟିଏ ପାଦ ଗୋଦରେ ଫୁଲିଥିଲା । ସେ ମୋତେ ମୋର ପରିଚୟ ଜିଜ୍ଞାସା କରନ୍ତେ ମୁଁ ତାଙ୍କର ସେଇ ଗୋଦର ପାଦଟି ଧରି ତଳେ ଲୋଟି ପଡ଼ିଲି ଓ କହିଲି, "ଆଜ୍ଞା ସେ ନିରୀହ ଲୋକଟାକୁ ପୋଲିସବାଲା ଲାଲବାଗ ଥାନାକୁ ଭିଡ଼ି ଆଣିଛନ୍ତି । ଆପଣ ଟିକେ ଥାନାକୁ ଚାଲନ୍ତୁ, ତାକୁ ମୁକୁଳାଇ ଦେବେ ।" ପ୍ରହରାଜ ମହାଶୟ ମୋ କଥା ଶୁଣି ମୋତେ ମାଛି ଆଡ଼େଇଦେବା ପରି କହିଲେ, "ପଳା, ପଳା । ସେଇଟା ଚୋରଟାଏ । ପୋଲିସ୍ ତାକୁ ଧରି ନେଇଛି, ଠିକ୍ କରିଛି ।" ମୁଁ ରୁଷ୍ଟ କଣ୍ଠରେ ପଚାରିଲି, "ଆପଣ ଏଇଠି ବସି କିପରି ଜାଣିଲେ ଲୋକଟା ଚୋର ବୋଲି ?" ତାଙ୍କର ସେଇ ଏକ ଉତ୍ତର, ପଳା-ପଳା । ମୁଁ ତ ଚାଲିଆସିଲି, କିନ୍ତୁ ଲେଖକମାନଙ୍କ ସଂପର୍କରେ ମୋ ମନର ଯେଉଁ ଭାବମୂର୍ତ୍ତିଟି ମୁଁ ଏତେଦିନ ସାଇତି ରଖିଥିଲି, ତା' ଯେପରି ଚୀନା କଣ୍ଢେଇପରି ଚୂନ୍‌ଚୂନ୍ ହୋଇ ତଳେ ଭାଙ୍ଗି ପଡ଼ିଲା ।

•

---

*ପଥ ଓ ପୃଥିବୀ,* ଇଷ୍ଟର୍ଣ୍ଣ ମିଡ଼ିଆ, ଭୁବନେଶ୍ୱର, ୧୯୮୬

# ଲଣ୍ଠନରୁ ବିଜୁଳିବତୀ

## ଗଂଗାଧର ରଥ

ମ୍ୟାଟ୍ରିକ୍ୟୁଲେସନ ପରୀକ୍ଷାରେ ସ୍କଲାରସିପ୍ ପାଇଥିବା ହେତୁ ରେଭେନ୍‌ସା କଲେଜରେ ସିଟ୍ ମିଳିବାରେ ଅସୁବିଧା ହେଲା ନାହିଁ । ପଶ୍ଚିମ ଛାତ୍ରାବାସରେ ମଧ୍ୟ ସିଟ୍ ମିଳିଲା । ସେତେବେଳେ ଡକ୍‌ଟର ପ୍ରାଣକୃଷ୍ଣ ପରିଜା କଲେଜର ଅଧ୍ୟକ୍ଷ । କେମିଷ୍ଟ୍ରି ଅଧ୍ୟାପକ ଡକ୍‌ଟର ବଳଭଦ୍ର ପ୍ରସାଦ ପଶ୍ଚିମ ଛାତ୍ରାବାସର ଓ୍ୱାର୍ଡେନ ଏବଂ ଗଣିତ ଅଧ୍ୟାପକ ବାମାଚରଣ ଦାସ ତତ୍ତ୍ୱାବଧାରକ ଓ ଇତିହାସ ବିଭାଗର ଲେକ୍‌ଚରର ଜଗଦାନନ୍ଦ ମହାନ୍ତି ତାଙ୍କର ସହକାରୀ । ନୂଆ ପୁରୁଣା ଛାତ୍ରଙ୍କ ମେଳାରେ ଛାତ୍ରାବାସ କଂପମାନ । ମନେହେଲା ମୁଁ ଯେପରି ହଠାତ୍ ଗୋଟାଏ ନୂଆ ପୁରରେ ପ୍ରବେଶ କରିଛି । ଲଣ୍ଠନ ଆଲୁଅରୁ ବିଜୁଳିବତୀ ପର୍ଯ୍ୟନ୍ତ ଅଗ୍ରଗତି ନିଶ୍ଚୟ ଏକ ବୈପ୍ଳବିକ ପରିବର୍ତ୍ତନ । ପ୍ରଗତିର ସେ ହାଓ୍ୱାରେ ଅନେକେ ପାଦ ସ୍ଥିର ରଖି ପାରୁନଥାନ୍ତି । କଲେଜ ପିଲାଙ୍କର ବେଶଭୂଷା, ରଙ୍ଗ ଢଙ୍ଗ, ଚାଲିଚଳଣି ଥିଲା ସଂପୂର୍ଣ୍ଣ ଭିନ୍ନ । ବାପ ମା' ଓ ଅଭିଭାବକଙ୍କ ନିୟନ୍ତ୍ରଣରୁ ମୁକ୍ତ ହୋଇ, ପଟେକରେ ପଇସା ପଡ଼ିଲେ, ହଠାତ୍ ଉଡ଼ିବାକୁ ଆରମ୍ଭ କରନ୍ତି । ଅଣ୍ଡାରୁ ସଦ୍ୟ ମୁକ୍ତି ଲାଭ କରିଥିବା ଚଢ଼େଇ ଛୁଆ ଦେହରେ ଯେପରି ନୂଆ ପର ଲାଗିଛି ।

ଯେଉଁମାନେ ସରକାରୀ ବୃତ୍ତି ବା ସାହାଯ୍ୟ ଇତ୍ୟାଦି ପାଇ ପଢ଼ନ୍ତି, ସେ ଶ୍ରେଣୀର ପିଲାଙ୍କୁ ବାଦ୍ ଦେଲେ, ସାଧାରଣତଃ ଅବସ୍ଥାପନ୍ନ ଓ ସଂଭ୍ରାନ୍ତ ଶ୍ରେଣୀର ପିଲାମାନେ ଓଡ଼ିଶାର ଏକମାତ୍ର ଡିଗ୍ରୀ କଲେଜରେ ଅଧ୍ୟୟନ କରନ୍ତି । କଲେଜ ଛକରେ ଥିବା ସୁପ୍ରସିଦ୍ଧ ମାଡ୍ରାସ ହୋଟେଲ, ମଦନା ମିଠା ଦୋକାନ ଓ କୁଞ୍ଜ ପାନ ଦୋକାନ ଥିଲା ଛାତ୍ରମାନଙ୍କର ଆଡ୍ଡାସ୍ଥଳୀ । ଅନେକେ ଷ୍ଟେସନ ବସିର ମିଆଁ କ୍ୟାଣ୍ଟିନ୍‌ରେ ମଧ୍ୟ ଜୁଟନ୍ତି । ସିଲ୍‌କ ପଞ୍ଜାବି ଓ ଧୋତି ସାଙ୍ଗକୁ ହଳେ କାନ୍‌ପୁରୀ ଚପଲ ଥିଲେ, ଫେସନର ସର୍ବୋଚ୍ଚ ସୀମାରେ ପହଞ୍ଚିବା ପରି ମନେ କରାଯାଏ । ଆମ ପରି କେତେଜଣ ଖଦଡ଼ ଧୋତି ଓ ପଞ୍ଜାବି ପିନ୍ଧୁ । ରାଜା ଜମିଦାର ସନ୍ତାନ ବା ଦକ୍ଷିଣ ଓଡ଼ିଶାର ମୁଷ୍ଟିମେୟ ଛାତ୍ରଙ୍କୁ ବାଦ୍ ଦେଲେ ଟ୍ରାଉଜର ପ୍ରାୟ କେହି ପିନ୍ଧୁ ନଥିଲେ । ପ୍ରଥମ ବାର୍ଷିକ ଶ୍ରେଣୀରେ ଝିଅ ଛାତ୍ରଙ୍କ ସଂଖ୍ୟା ଥିଲା ମାତ୍ର ତିନି ଜଣ । ସୁଟ, ଟାଇ କେବଳ ଅଧ୍ୟକ୍ଷ ଓ ଅଧ୍ୟାପକମାନଙ୍କର ପରିଧାନ ଥିଲା ।

ପୂର୍ବ ଓ ପଶ୍ଚିମ ଛାତ୍ରାବାସରେ ଖାଇବା ଚାର୍ଜ ଥିଲା ମାସିକ ଛ' ଟଙ୍କା ଆଠଅଣା । ସେଥିରେ ସକାଳ ଓଳି ଅରୁଆ ଭାତ, ମାଛ, ସାଦା ତରକାରି, ଭଜା ଓ ଖଟା । ରାତି ଖାଇବା ଅନୁରୂପ । ଭାତ ସହିତ ରୋଟି ଓ ମାଛ ବଦଳରେ ମାଂସ । ମାସ ଶେଷ ଶନିବାର ରାତିରେ ଭୋଜି ଭାତ ହୁଏ । ମାସକୁ ଆଉ ଦୁଇ ଟଙ୍କା ଦେଲେ ଉପରବେଳା ଚାରିଟା ପୁରୀ ତରକାରୀ ବା ଚାରିଟା ସିଙ୍ଗଡ଼ା ଜଳଖିଆ ଦିଆଯାଏ । ଏପରି ମୋଟ ଖାଇବା ଖର୍ଚ୍ଚ ମାସିକ ଆଠଟଙ୍କା ଆଠଅଣା । ସକାଳେ ଯେଉଁମାନେ ଜଳଖିଆ ଚାହାଁନ୍ତି, ଓ୍ୱାର୍ଡବଏ ମାଡ୍ରାସ ହୋଟେଲରୁ ଉପମା ବା ଇଡ୍‌ଲୀ ଆଣି ଯୋଗାଇ ଦିଏ । ସେ ବାବତ ସେ ହାରାହାରି ମାସକୁ ଦୁଇଟଙ୍କା ନିଏ । ଏବେ ମାସିକ ତିନିଶହ ଟଙ୍କା ଦେଲେ ମଧ୍ୟ ହଷ୍ଟେଲ ମାନଙ୍କରେ ଏ ପ୍ରକାରର ଖାଇବା ମିଳୁ ନାହିଁ । ମୋର ମନେ ଅଛି, କଟକ ମାଲଗୋଦାମର ସୁପ୍ରସିଦ୍ଧ ବ୍ୟବସାୟୀ ସ୍ୱର୍ଗୀୟ ବଂଶୀଧର ମହାନ୍ତି ପ୍ରତିଦିନ ପଶ୍ଚିମ ଛାତ୍ରାବାସକୁ ଚାଉଳ ଡାଲି ଆଦି ଯୋଗାଇ ଦେଉଥାନ୍ତି । ପ୍ରାୟ ପାଞ୍ଚଟାରୁ ଛଟା ମଧ୍ୟରେ ମେସ ମ୍ୟାନେଜରଙ୍କ ବାରଣ୍ଡାରେ ତାଙ୍କ ସହିତ ଦେଖା ହୁଏ ।

ପାଠପଢ଼ା ପ୍ରତି କଲେଜ ଛାତ୍ରଙ୍କର ମନୋଭାବ ଦେଖି ବିସ୍ମୟ ଲାଗେ । ସ୍କୁଲରେ ଗୋଟାଏ ପିରିଅଡ୍ ମଧ୍ୟ ଛୁଟି ନଥାଏ । ଅଧଘଣ୍ଟାଏ ଖେଳଛୁଟିକୁ ବାଦ୍‌ଦେଲେ, ସାଢ଼େ ଦଶଟାରୁ ଚାରିଟା ପର୍ଯ୍ୟନ୍ତ ବେଦମ୍ ପାଠପଢ଼ା । କଲେକିଏଟ୍ ସ୍କୁଲ ଜୀବନର ଚାରିବର୍ଷ ମଧ୍ୟରେ କେବେ ଦିନେ କୌଣସି କ୍ଲାସ ସସ୍‌ପେଣ୍ଡ ହେବାର ମନେ ପଡୁ ନାହିଁ । ଅଥଚ କଲେଜରେ କ୍ଲାସ ସଂଖ୍ୟା ଥିଲା ଯଥେଷ୍ଟ କମ୍- ବିଶ୍ରାମ ବେଶି । ତଦୁପରି ପାଠପଢ଼ା ତଦାରଖ କରିବାକୁ କେହି ନାହିଁ । ଅନେକ ଛାତ୍ର, ସବୁ କ୍ଲାସରେ ଯୋଗ ଦିଅନ୍ତି ନାହିଁ । ଅନେକେ ପ୍ରକ୍ସିର ବ୍ୟବସ୍ଥା କରି କ୍ଲାସରୁ ଅନୁପସ୍ଥିତ ରହନ୍ତି । କେତେକ କ୍ଲାସରେ ଗୋଳମାଳ କରିବା ଓ ମୁଷ୍ଟିମେୟ ଝିଅ ଛାତ୍ରଙ୍କ ପ୍ରତି ଥଟ୍ଟା ପରିହାସ କରିବାରେ ସମୟ କଟାନ୍ତି । ପାଠପଢ଼ା ପ୍ରତି ନିଜେ ଧ୍ୟାନ ନ ଦେଲେ, ତତ୍ତ୍ୱାବଧାନ ଥିଲା ଶୂନ୍ ।

କିନ୍ତୁ ଏ ବାହ୍ୟିକ ଆଡ଼ମ୍ବର, ବେଶଭୂଷା ଓ ଚାକଚକ୍ୟ ମୋ ପରି କେତେକ ଛାତ୍ରଙ୍କୁ ଆଦୌ ସ୍ପର୍ଶ କରିନଥିଲା । ଏ ସବୁକୁ ଆମେ ପ୍ରହସନ ମନେ କରୁଥିଲୁ । ଇନ୍ଦ୍ରଜାଲରେ ମୋହଗ୍ରସ୍ତ ହେବାର ବ୍ୟାଧି ମୋର ନଥିଲା । ହାଇସ୍କୁଲରେ ଯେଉଁ ପାଦ ପାଠ ପଢ଼ିବା ପାଇଁ ଦିନ ପରେ ଦିନ ଅନ୍ତତଃ ଛ' ସାତ ମାଇଲ ଚାଲିବାକୁ ଅଭ୍ୟସ୍ତ, ସେ ପାଦ ସହଜରେ ଖସି ଯାଏନାହିଁ ।

କଲେଜରେ ପ୍ରବେଶ କରିବାର ଅଳ୍ପ ଦିନ ମଧ୍ୟରେ, ପରେ ପରେ ଦୁଇଟି ଘଟଣା ଘଟିଲା, ଯେଉଁଥିରେ ମୁଁ ଅତ୍ୟନ୍ତ ମର୍ମାହତ ହୋଇଥିଲି । ସେହି ସମୟରେ ଭାଗୁ ମାମୁ (ଭଗବତୀ ପାଣିଗ୍ରାହୀ) ତାଙ୍କ ପରିବାର ସହିତ ରାଣୀହାଟ ନାଳକୂଳ ନାଇଡୁ ହତାରେ ଛୋଟ ବଡ଼ ଦୁଇଟି କୋଠରି ବିଶିଷ୍ଟ ଗୋଟିଏ ଘରେ ରହୁଥାନ୍ତି । ପାଖାପାଖି ଆଉ ଗୋଟିଏ ଘରେ ବୋଧହୁଏ ବୈଦ୍ୟନାଥ ରଥ ଓ ବିଜୟ ଚନ୍ଦ୍ର ଦାସ ରହୁଥାନ୍ତି । ଦିନେ ମୁଁ କଲେଜରେ ଶୁଣିଲି, ନାଇଡୁ ହତାକୁ

ପୋଲିସ ଘେରାଉ କରିଛନ୍ତି । ତୁରନ୍ତ ସେଠାକୁ ଯାଇ ଦେଖେ, ଭାଗୁ ମାମୁଙ୍କ ଘର ତଲାସି ଚାଲିଚି । ଦୂରରୁ କେହି ଜଣେ ସେଠୁ ଚାଲିଯିବା ପାଇଁ ମତେ ଠାରି ଦେଲା । ସେଠାରୁ ଚାଲି ଆସି ଅଳ୍ପ ଦୂରରେ ଛାତ୍ରନେତା ଅଶୋକ ଦାସ ରହୁଥିବା ବାରଣ୍ଡାରେ ଠିଆ ହୋଇ ରହିଲି । ପ୍ରାୟ ଘଣ୍ଟାକ ପରେ ଇନ୍‌ସପେକ୍‌ଟର ଗଙ୍ଗାଧର ଦ୍ୱିବେଦୀ ଓ ଅନ୍ୟ କେତେକଣ ପୋଲିସ ଅଫିସର କେତେକ କାଗଜ ପତ୍ର ଜବତ କଲେ ଓ ଭଗବତୀ ପାଣିଗ୍ରାହୀ, ବୈଦ୍ୟନାଥ ରଥ ଓ ବିଜୟ ଚନ୍ଦ୍ର ଦାସଙ୍କୁ ଗିରଫ କରିନେଲେ । ସେ ଦିନ ସରକାର ଓ ତାଙ୍କ ପୋଲିସ ବିରୁଦ୍ଧରେ ରାଗ, ବିଦ୍ୱେଷ ଓ ଘୃଣାରେ ଅନ୍ତର ଭରି ଉଠିଲା । ମୁଁ ଦିନ ତିନିଟା ବେଳେ ହଷ୍ଟେଲରେ ପହଞ୍ଚି ଶୋଇଗଲି । ରାତିରେ ଖାଇବା ପାଇଁ ମଧ୍ୟ ଉଠି ନାହିଁ । ସବୁ ଦୁଃଖ କଷ୍ଟ ଭୁଲିଯିବା ପାଇଁ ନିଦ୍ରାହିଁ ମୋର ପ୍ରଧାନ ଔଷଧ ଏବଂ ସେ ଔଷଧ ବ୍ୟବହାର କରିବାକୁ ମୁଁ କେବେ କୁଣ୍ଠିତ ହୁଏନାହିଁ । ପରେ ଖବର କାଗଜରୁ ପଢ଼ିଲି ଏମାନଙ୍କ ସହିତ ଶରତ ପଟ୍ଟନାୟକ, ଅନନ୍ତ ପଟ୍ଟନାୟକ, ଗୁରୁଚରଣ ପଟ୍ଟନାୟକ, ଦୁର୍ଗା ଚରଣ ମହାନ୍ତି ଓ ନୀଳଗିରିର ପ୍ରଜାମଣ୍ଡଳ ନେତା ବନମାଳୀ ଦାସଙ୍କୁ ମଧ୍ୟ ଜେଲକୁ ନିଆଯାଇଛି । କଲେଜ ଛକ ସାମନା ଗୁକୁରାଟୀ କ୍ୱାର୍ଟର ସିଲଭର ହାଉସରେ ରହୁଥିବା ରାମକୃଷ୍ଣ ପତି ଓ କଲେଜ ଛାତ୍ର ରାମଚନ୍ଦ୍ର ମିଶ୍ରଙ୍କୁ ମଧ୍ୟ ଗିରଫ କରାଯାଇଛି । ବେଆଇନ ଘୋଷିତ କମ୍ୟୁନିଷ୍ଟ ଦଳର ସଭ୍ୟ ଥିବା ଅଭିଯୋଗରେ ଏମାନଙ୍କ ବିରୁଦ୍ଧରେ ଏକ ଷଡ଼ଯନ୍ତ୍ର ମୋକଦମା ଦାଏର ହେଲା । ଦୁଇତିନି ଦିନ ପରେ ପ୍ରମାଣ ଅଭାବରେ ରାମକୃଷ୍ଣ ପତି ଓ ରାମଚନ୍ଦ୍ର ମିଶ୍ର ଖଲାସ ହେଲେ ।

ଜୁଲାଇ ଶେଷ କିମ୍ବା ଅଗଷ୍ଟ ପ୍ରଥମ ସପ୍ତାହରେ କଲେଜ ଛାତ୍ରମାନଙ୍କର ଏକ ସାଧାରଣ ସଭା ହେଲା । ସଭା ଆହ୍ୱାନ କରିଥିଲେ ପ୍ରିନ୍‌ସିପାଲ ପରିଜା । ସଭାଗୃହ ଅଧ୍ୟାପକ ଓ ଛାତ୍ରମାନଙ୍କର ସମାବେଶରେ ଭରପୂର । ପରିଜା ସାହେବ ଇଂରାଜୀରେ ତାଙ୍କର ଲିଖିତ ଭାଷଣ ପାଠ କଲେ । ରାଜନୀତିରେ ଭାଗ ନେଇ ଛାତ୍ରମାନେ କିପରି ନିଜର ଭବିଷ୍ୟତ ନଷ୍ଟ କରୁଛନ୍ତି, ଏହାହିଁ ଥିଲା ଭାଷଣର ମୁଖ୍ୟ ବିଷୟବସ୍ତୁ । ସେତେବେଳେ ରାଜନୀତି ଅର୍ଥ ବ୍ରିଟିଶ ସାମ୍ରାଜ୍ୟବାଦ ବିରୋଧୀ ସ୍ୱାଧୀନତା ସଂଗ୍ରାମ । ଅଥଚ ଏହି ସଂଗ୍ରାମରୁ ନିବୃତ୍ତ ହେବା ପାଇଁ ସେ ଛାତ୍ରମାନଙ୍କୁ ଉପଦେଶ ଦେଉଥିଲେ । ତାଙ୍କ ଭାଷଣରେ ଆଉ ଗୋଟିଏ ଧମକ ଥିଲା ଏବଂ ସେ ଧାଡ଼ିଟି ମୋର ସ୍ପଷ୍ଟ ମନେ ଅଛି । ବୋଧହୁଏ ତିନି ଚାରି ମାସ ପୂର୍ବର ପରୀକ୍ଷା ବର୍ଜନ ଆନ୍ଦୋଳନକୁ ନଜରରେ ରଖି ପ୍ରିନ୍‌ସିପାଲ କହିଲେ, ତୁମ୍ଭେମାନେ ଏହି କଲେଜର ପଥର କାନ୍ଥରେ ମୁଣ୍ଡ ପିଟି ମୁଣ୍ଡ ଫଟାଇ ଦେଇପାର, କିନ୍ତୁ ଶକ୍ତିଶାଳୀ ବ୍ରିଟିଶ ସରକାରଙ୍କୁ ଭାଙ୍ଗି ଦେଇପାରିବ ନାହିଁ । ଭାରତର ଜଣେ ଖ୍ୟାତିସଂପନ୍ନ ଉଦ୍ଭିଦ ବିଜ୍ଞାନୀଙ୍କ ଠାରୁ ଏ ପ୍ରକାର ମନ୍ତବ୍ୟ ଶୁଣି ଆମେ ସ୍ତମ୍ଭୀଭୂତ ହୋଇଗଲୁ । ସ୍ୱାଧୀନତା-ପ୍ରୟାସୀଙ୍କ ବିରୁଦ୍ଧରେ ତାଙ୍କର ଏ ଉଦ୍‌ଗୀରଣ ଶୁଣି ଲଜ୍ଜାରେ ମୁଣ୍ଡ ତଳକୁ

ହୋଇଗଲା । ଏ ଧମକରେ ଅବଶ୍ୟ ଆମେ କେତେ ଜଣ ଆଦୌ ଭୟଭୀତ ହୋଇ ନଥିଲୁ ଏବଂ ମାତ୍ର ସାତଟି ବର୍ଷ ପରେ ପରିଜା ସାହେବଙ୍କର ଏ ମତାମତ ମିଥ୍ୟା ବୋଲି ପ୍ରମାଣିତ ହେଲା । ୧୯୪୭ ଅଗଷ୍ଟ ପନ୍ଦର ତାରିଖରେ ବ୍ରିଟିଶ ସରକାର କ୍ଷମତାରୁ ବିତାଡ଼ିତ ହେଲେ, ଶକ୍ତିଶାଳୀ ବ୍ରିଟିଶ ସାମ୍ରାଜ୍ୟ ଭାଙ୍ଗି ପଡ଼ିଲା ।

ଏହି ସମୟରେ ପଶ୍ଚିମ ଛାତ୍ରାବାସ ୟୁନିଅନର କର୍ମକର୍ତ୍ତା ନିର୍ବାଚନ ହେଲା । ସେକ୍ରେଟାରୀ ପଦ ପାଇଁ ଷଷ୍ଠ ବାର୍ଷିକ ଶ୍ରେଣୀର ଛାତ୍ର କୈଳାଶ ଚନ୍ଦ୍ର ମହାନ୍ତି ପ୍ରାର୍ଥୀ ଥିଲେ । ମୋର ସହପାଠୀ ଯାମିନୀ, ଦ୍ୱିତୀୟ ବାର୍ଷିକ ଛାତ୍ର ଖୋର୍ଦ୍ଧାର ଫକୀର ପଟ୍ଟନାୟକ, ତୃତୀୟ ବାର୍ଷିକ ଶ୍ରେଣୀର କୃଷ୍ଣ ପ୍ରସାଦ ପଟ୍ଟନାୟକ ପ୍ରମୁଖ ସ୍ଥିର କଲେ ଯେ ଜଏଣ୍ଟ ଜେନେରାଲ ସେକ୍ରେଟାରୀ ପଦ ପାଇଁ ମୁଁ ପ୍ରତିଦ୍ୱନ୍ଦ୍ୱିତା କରିବି । ମୋର ପ୍ରତିଦ୍ୱନ୍ଦ୍ୱୀ ହେଲେ ତୃତୀୟ ବାର୍ଷିକ (କଳା) ଶ୍ରେଣୀର ଜଣେ ଅନ୍ତେବାସୀ । ମୁଁ ବହୁ ଅଧିକ ଭୋଟରେ ନିର୍ବାଚିତ ହେଲି । ପ୍ରଥମ ବାର୍ଷିକ ଶ୍ରେଣୀର ଜଣେ ଛାତ୍ର ନିର୍ବାଚନରେ ଜିତିବା ପଶ୍ଚିମ ଛାତ୍ରାବାସ ଇତିହାସରେ ପ୍ରଥମ । ଯାହାହେଉ, ହଷ୍ଟେଲର ଜଏଣ୍ଟ ଜେନେରାଲ ସେକ୍ରେଟାରୀ ନିର୍ବାଚିତ ହେବା ପରେ, ସେହି ସୂତ୍ରରେ ଓ୍ୱାର୍ଡେନ ଡକ୍ଟର ବଳଭଦ୍ର ପ୍ରସାଦ ଓ ଅନ୍ୟ ଅଧ୍ୟାପକମାନଙ୍କ ସହିତ ସିଧାସଳଖ ପରିଚୟ ହେଲା ।

ନବାଗତ ହଷ୍ଟେଲ ଛାତ୍ରମାନଙ୍କୁ ସମ୍ବର୍ଦ୍ଧନା କରିବା ପାଇଁ ପଶ୍ଚିମ ଛାତ୍ରାବାସ କମନରୁମରେ ଏକ ସଭା ହେଲା । ସେକ୍ରେଟାରୀ କୈଳାଶ ବାବୁ ପାଞ୍ଚ ମିନିଟ୍ ମଧ୍ୟରେ ତାଙ୍କର ଭାଷଣ ଶେଷ କଲେ । ସେ ଦିନ ସଭାରେ ରେଭେନ୍ସା କଲେଜରେ ମୋର ପ୍ରଥମ ଭାଷଣ । ମୋ ବକ୍ତୃତାରେ ସ୍ୱାଧୀନତା ସଂଗ୍ରାମର ପଟ୍ଟଭୂମିରେ ନୂତନ ରାଜନୈତିକ ଚିନ୍ତାଧାରା ଓ ଆଦର୍ଶବାଦ ବିଶେଷତଃ ମାର୍କ୍ସବାଦ ସଂପର୍କରେ ଅଧିକ ଅଧ୍ୟୟନ ଓ ମନୋନିବେଶ ପାଇଁ ଗୁରୁତ୍ୱ ଦେଇଥିଲି । ସେ କାଳରେ କଲେଜରେ ସବୁ ଆଲୋଚନା ଓ ବକ୍ତୃତା ଇଂରାଜୀରେ କରାଯାଉଥିଲା । ମୋର ଅଧଘଣ୍ଟିଆ ବିରାମହୀନ ବକ୍ତୃତା ପରେ ପିଲାମାନେ ଘନଘନ କରତାଳି ଦେଇଥିଲେ । କିନ୍ତୁ ପୂର୍ବ ଛାତ୍ରାବାସର ଓ୍ୱାର୍ଡେନ ଅଧ୍ୟାପକ ସୁନ୍ଦରମ୍ ଓ ଆମ ଛାତ୍ରାବାସର ତତ୍ତ୍ୱାବଧାରକଙ୍କ ମୁହଁରେ ଫୁଟି ଉଠୁଥିଲା ବିରକ୍ତିକର ପ୍ରତିଛବି । ମୁଁ ଆଶଙ୍କା କଲି ଯେ ସେମାନେ ମୋ ଉପରେ ଭୀଷଣ ଅସନ୍ତୁଷ୍ଟ ହୋଇଛନ୍ତି । କିନ୍ତୁ ଅନୁଷ୍ଠାନ ଶେଷ ହେବା ପରେ ଡକ୍ଟର ବଳଭଦ୍ର ପ୍ରସାଦ ମତେ ଅଭିନନ୍ଦନ ଜଣାଇଥିଲେ । ଡକ୍ଟର ପ୍ରସାଦ ଯେ ଭିନ୍ନ ମନୋବୃତ୍ତିର ମଣିଷ ଥିଲେ, ସେ କଥା ମୁଁ ସେତେବେଳେ ଜାଣି ନଥିଲି ।

ପରୀକ୍ଷା ବର୍ଜନ ଆନ୍ଦୋଳନରେ ରେଭେନ୍ସା କଲେଜ ୟୁନିଅନ ସଭାପତିଙ୍କର କଲେଜରୁ ବହିଷ୍କାର ପରେ, ବନମାଳୀ ପଟ୍ଟନାୟକ (ପରେ ପ୍ରଦେଶ କଂଗ୍ରେସ କମିଟିର ସଭାପତି ଓ ଶିକ୍ଷାମନ୍ତ୍ରୀ) କଲେଜ ୟୁନିଅନର ନୂତନ ସଭାପତି ନିର୍ବାଚିତ ହୋଇଥିଲେ । ସେ ଛାତ୍ରାବସ୍ଥାରୁ

ଦେଶସେବା ଓ ରାଜନୀତି ପ୍ରତି ଆକୃଷ୍ଟ ଥିଲେ । କଲେଜ ୟୁନିଅନ ଦ୍ୱାରା ଆୟୋଜିତ ବିତର୍କ ସଭାରେ ମୁଁ ନିୟମିତ ଅଂଶ ଗ୍ରହଣ କରୁଥିଲି । ସେହି ସୂତ୍ରରେ ପଟ୍ଟନାୟକଙ୍କ ସହିତ ପରିଚୟ ହୋଇଥିଲା । ଏହି ପରିଚୟ ପରେ ଘନିଷ୍ଠ ବନ୍ଧୁତାରେ ପରିଣତ ହେଲା । ପରବର୍ଷ ସେ ଛାତ୍ରସଂଘର ସାଧାରଣ ସଂପାଦକ ନିର୍ବାଚିତ ହୋଇଥିଲେ । ରାଜନୈତିକ ମତଭେଦ ହେତୁ ତାଙ୍କ ସହିତ କେତେଥର ବିବାଦ ହୋଇଛି । ନିର୍ବାଚନ ମୋକଦ୍ଦମାରେ ମୁଁ ତାଙ୍କ ବିରୁଦ୍ଧରେ ଓକିଲାତି କରିଛି । କିନ୍ତୁ ୧୯୪୦ରୁ ଗଢ଼ି ଉଠିଥିବା ବ୍ୟକ୍ତିଗତ ସଂପର୍କ ଶେଷ ପର୍ଯ୍ୟନ୍ତ ଅକ୍ଷୁଣ୍ଣ ରହିଥିଲା । ଦଶବର୍ଷ ତଳେ ହୃଦ୍‌ଯନ୍ତ୍ରକ୍ରିୟା ବନ୍ଦ ହୋଇ ସେ ସଂସାରରୁ ବିଦାୟ ନେଇଛନ୍ତି । କିନ୍ତୁ ତାଙ୍କର ହସ ହସ ମୁହଁ ଏବେ ମଧ୍ୟ ଆଖି ଆଗରେ ନାଚିଯାଏ ।

ସ୍ୱାଧୀନତା ଆନ୍ଦୋଳନ ସହିତ ସଂପୃକ୍ତ ଛାତ୍ରମାନଙ୍କୁ କଲେଜ କର୍ତ୍ତୃପକ୍ଷ କିପରି ହଇରାଣ ହରକତ୍ କରୁଥିଲେ, ତାର ବହୁ ଦୃଷ୍ଟାନ୍ତ ଅଛି । ନିଜ ଅଭିଜ୍ଞତାରୁ ଗୋଟିଏ ଘଟଣା ଉଲ୍ଲେଖ କରୁଛି । ଅଗଷ୍ଟ ମାସରେ କଲେଜ ଅଫିସ ଫ୍ରି ଷ୍ଟୁଡ଼େଣ୍ଟସିପ୍ ପାଇଁ ଛାତ୍ରମାନଙ୍କଠାରୁ ଦରଖାସ୍ତ ଆହ୍ୱାନ କଲେ । ଏ ସୁବିଧା ପାଇବା ପାଇଁ ମୁଁ ନିର୍ଦ୍ଧାରିତ ସମସ୍ତ ସର୍ତ୍ତ ପୂରଣ କରୁଥିଲି ଏବଂ ଦରଖାସ୍ତ ମଧ୍ୟ ଦେଲି । ଡକ୍‌ଟର ପ୍ରସାଦ ସର୍ବବରିଷ୍ଠ ଅଧ୍ୟାପକ ଭାବରେ ଦରଖାସ୍ତକାରୀମାନଙ୍କୁ ସାକ୍ଷାତ୍ କରୁଥିଲେ । ନିରୂପିତ ଦିନ ମୁଁ ଯେତେବେଳେ ଡକ୍‌ଟର ପ୍ରସାଦଙ୍କ ଅଫିସରେ ଉପସ୍ଥିତ ହେଲି, ସେ ମୋତେ କୌଣସି ପ୍ରଶ୍ନ ନ ପଚାରି ସିଧା ସଳଖ କହିଲେ, ମୁଁ ତ ସ୍କଲାରସିପ ପାଇଛି, ଫ୍ରି ଷ୍ଟୁଡ଼େଣ୍ଟସିପ ପାଇବାରେ କୌଣସି ଅସୁବିଧା ନାହିଁ । ତାଙ୍କର ନିର୍ଭର ଆଶ୍ୱାସନା ଶୁଣି ମୋର କଲେଜିଏଟ୍ ସ୍କୁଲର ପୂର୍ବତନ ହେଡ୍‌ମାଷ୍ଟର ବିଶ୍ୱମ୍ଭର ମିଶ୍ରଙ୍କ କଥା ମନେ ପଡ଼ିଲା । ୧୯୩୬ ଜାନୁଆରୀ ଦୁଇ ତାରିଖରେ ସେ ମୋତେ ଠିକ୍ ଏହିପରି କହିଥିଲେ । ଏହି ସାକ୍ଷାତ୍‌କାରରେ ପ୍ରାୟ ତିନି ସପ୍ତାହ ପରେ ଫ୍ରିଷ୍ଟୁଡ଼େଣ୍ଟସିପ ତାଲିକା ନୋଟିସ ବୋର୍ଡରେ ବାହାରିଲା । ତାଲିକାରେ ମୋ ନାମଟା ନ ଥିଲା । ମୁଁ ଟିକିଏ ବିବ୍ରତ ହେଲି । କେହି କେହି ସହପାଠୀ କହିଲେ, ଛାତ୍ରସଂଘ ସହିତ ସଂପୃକ୍ତ ଥିବାରୁ ମୋତେ ଏ ସୁବିଧା ମିଳିନାହିଁ । ମୁଁ ଏ କଥା ବିଶ୍ୱାସ କରିପାରିଲି ନାହିଁ । ମାତ୍ର ଦୁଇ ମାସ ହେବ ମୁଁ କଲେଜରେ ଯୋଗ ଦେଇଛି । ଏ ମଧ୍ୟରେ କଲେଜରେ କୌଣସି ଆନ୍ଦୋଳନ ବା ସଂଘର୍ଷ ହୋଇନାହିଁ । ଆମ ପରି ପିଲାଙ୍କର ନାମ ସଂଗ୍ରହ କରିବା ପାଇଁ ପ୍ରିନ୍‌ସିପାଲଙ୍କର ଗୁପ୍ତଚର ନଥିବେ, ହୁଏତ ମୋର ନାମ ତାଙ୍କୁ ଜଣାନଥିବ । ଯାହାହେଉ, ଏ ବିଷୟରେ ଅଧିକ ଚର୍ଚ୍ଚା ନ କରି ମୁଁ ଚୁପ୍‌ଚାପ୍ ରହିଲି ।

ତାଲିକା ପ୍ରକାଶିତ ହେବାର ତିନି ଚାରି ଦିନ ପରେ ପଶ୍ଚିମ ଛାତ୍ରାବାସର କିରାଣି ସାଧୁଚରଣ କାନୁନ୍‌ଗୋ ମୋତେ ଡାକି ପଠାଇଲେ । ସାଧୁବାବୁ କଲେଜର କିରାଣି, ତା ସହିତ ହଷ୍ଟେଲ ଦାୟିତ୍ୱରେ ମଧ୍ୟ ଥାଆନ୍ତି । ସେ ଅତି ସଚ୍ଚୋଟ ଲୋକ ଓ ସମସ୍ତଙ୍କର ତାଙ୍କ ଉପରେ

ଅଗାଧ ବିଶ୍ୱାସ । କିଛି ଉପକ୍ରମଣିକା ନ କରି ସେ ସିଧା ମତେ ଅଠର ଟଙ୍କା ବଢ଼େଇ ଦେଇ କହିଲେ, ଏ ତୁମର ଜୁନ, ଜୁଲାଇ, ଅଗଷ୍ଟ ମାସର କଲେଜ ଦରମା । ମୁଁ ଏହାର ତାତ୍ପର୍ଯ୍ୟ ବୁଝି ପାରିଲି ନାହିଁ । ପଚାରିବାକୁ ଆରମ୍ଭ କରିବା ମାତ୍ରେ, ସେ କହିଲେ, ଡକ୍ଟର ପ୍ରସାଦ ଏ ଟଙ୍କାଟା ଦେଇଛନ୍ତି । ପ୍ରତି ମାସ ଆରମ୍ଭରେ ଟଙ୍କାଟା ମୋଠାରୁ ନେଇଯିବ । ମୋର ଅବସ୍ଥା ସେପରି ଅଚଳ ନଥିଲା । ପରନ୍ତୁ କୌଣସି ପ୍ରକାରର ବ୍ୟକ୍ତିଗତ ସାହାଯ୍ୟ ଗ୍ରହଣ କରିବାକୁ ମୁଁ ଅନିଚ୍ଛୁକ ଥିଲି । ଦିନେ ସାହସ ବାନ୍ଧି ଡକ୍ଟର ପ୍ରସାଦଙ୍କୁ ଦେଖା କରିବାକୁ ଗଲି । ଏ ପ୍ରଶ୍ନ ଉତ୍‌ଥାପନ କରିବା ମାତ୍ରେ ସେ ମତେ ଅଧିକ ଆଗେଇବାକୁ ସୁଯୋଗ ନ ଦେଇ କେବଳ ଏତିକି କହିଲେ, ମନରେ ଗ୍ଲାନି ରହିବା ଉଚିତ ନୁହେଁ । ଦରମା ଟଙ୍କାଟା ପ୍ରତି ମାସରେ ସାଧୁ ବାବୁଙ୍କ ଠାରୁ ନେଇ ନେବ । ମନେ ହେଲା, ତାଙ୍କର ଯେପରି ଅନେକ କିଛି କହିବାକୁ ଅଛି, ଅଥଚ ସେ ନୀରବ ରହିବାକୁ ନିଷ୍ପତ୍ତି କରିଛନ୍ତି । ମୁଁ ଅଧିକ କିଛି ନ କହି, ନମସ୍କାର କରି ଫେରି ଆସିଲି ।

ସତକୁ ସତ ତାଙ୍କର ଅନେକ କିଛି କହିବାର ଥିଲା ଏବଂ ତାହା ମୁଁ ଶୁଣିଲି ଦୀର୍ଘ ପାଞ୍ଚ ବର୍ଷ ପରେ । ୧୯୪୨ ମସିହାରେ ଆଇ.ଏ. ପାସ୍ କରିବା ପରେ ମୁଁ କଲେଜ ଛାଡ଼ିଥିଲି । ପୁଣି ୧୯୪୫ ମସିହାରେ ବନ୍ଧୁ ଜେଲ ଫେରନ୍ତା ବନ୍ଧୁଙ୍କ ସହ ମୁଁ ତୃତୀୟ ବାର୍ଷିକ ଶ୍ରେଣୀରେ ନାମ ଲେଖାଇଲି, ଅନର୍ସ ନେଲି ଅର୍ଥନୀତିରେ । ସେ ବର୍ଷ ମୁଁ ବିଦ୍ୟାର୍ଥୀ ସଂଘର ସେକ୍ରେଟାରୀ ନିର୍ବାଚିତ ହୋଇଥାଏ । କଲେଜର ଅନ୍ୟ କେତେକ ଅନୁଷ୍ଠାନ ସହ ମଧ୍ୟ ସଂପୃକ୍ତ ଥାଏ । ପରିଜା ସାହେବ କୃଷି ବିଭାଗର ଡାଇରେକ୍ଟର ପଦ ଗ୍ରହଣ କରିଥାନ୍ତି ଏବଂ ତାଙ୍କ ସ୍ଥାନରେ ଓଡ଼ିଶାର ସ୍କୁଲ ବିଭାଗର ଇନ୍‌ସପେକ୍ଟର ଶ୍ରୀ ସଚ୍ଚି ରାୟ ରେଭେନ୍‌ସା କଲେଜର ଅଧ୍ୟକ୍ଷ । କଲେଜ ୟୁନିଅନର ସମ୍ବିଧାନ ରଚନା କରିବା ପାଇଁ ଏକ କମିଟି ଗଠିତ ହୋଇଥାଏ । ଏହି କମିଟିର ଚେୟାରମ୍ୟାନ କଲେଜ ୟୁନିଅନର ଆଡ୍‌ଭାଇଜର ଡକ୍ଟର ବଳଭଦ୍ର ପ୍ରସାଦ ଓ ମୋ ସମେତ ଅନ୍ୟ କେତେକ ଛାତ୍ର ସଦସ୍ୟ ଥାଆନ୍ତି । ଥରେ ବିଦ୍ୟାର୍ଥୀ ସଂଘ ଅଫିସରେ ଏହି କମିଟିର ବୈଠକ ଡକା ହୋଇଥାଏ । ଅନ୍ୟ ସଦସ୍ୟମାନେ ଆସିବା ପୂର୍ବରୁ ଘଟଣାଚକ୍ରରେ ମୁଁ ଓ ଡକ୍ଟର ପ୍ରସାଦ ସେ ଘରେ ଅପେକ୍ଷା କରିଥିଲୁ । ପ୍ରସାଦ ସାହେବ ପ୍ରସଙ୍ଗକ୍ରମେ ପାଞ୍ଚ ବର୍ଷ ତଳର ସେହି ପୁରୁଣା କଥା ଉତ୍‌ଥାପନ କଲେ । ସେ ଓଡ଼ିଆରେ ଆରମ୍ଭ କଲେ ଗଙ୍ଗାଧର, ତୁମର ମନେ ଥିବ, ୧୯୪୦ ମସିହାରେ ତୁମକୁ ଫ୍ରି ଷ୍ଟୁଡେଣ୍ଟସିପ ଦିଆଯିବ ବୋଲି ମୁଁ ନିର୍ଭର ପ୍ରତିଶ୍ରୁତି ଦେଇଥିଲି । ତୁମ କ୍ଲାସ ପାଇଁ ପ୍ରସ୍ତୁତ ସୁପାରିସ ତାଲିକାରେ ତୁମ ନାମ ପ୍ରଥମ ସ୍ଥାନରେ ଥିଲା । ଫାଇଲ ଯେତେବେଳେ ପ୍ରିନ୍‌ସିପାଲଙ୍କ ପାଖରୁ ଫେରିଲା, ମୁଁ ଦେଖିଲି ତୁମ ନାମଟା ନାହିଁ ।

ମୁଁ ବ୍ୟଗ୍ର ହୋଇ ପଚାରିଲି, କଣ ହେଲା ? ଡକ୍ଟର ପ୍ରସାଦ କହି ଚାଲିଲେ, ମୁଁ ଭାବିଲି ନାମଟା ବୋଧହୁଏ ଭୁଲରେ କଟି ଯାଇଛି । ଫାଇଲ ଧରି ମୁଁ ପ୍ରିନ୍‌ସିପାଲଙ୍କ ସହିତ ଆଲୋଚନା କଲି । ପ୍ରିନ୍‌ସିପାଲ ପରିଜା କହିଲେ, ଯେଉଁମାନେ ସରକାର ବିରୁଦ୍ଧରେ କାର୍ଯ୍ୟ କରୁଛନ୍ତି,

ସେମାନେ ସାହାଯ୍ୟ ପାଇବେ କାହିଁକି ? ସେଥିପାଇଁ ତୁମେ ସେ ସୁବିଧାରୁ ବଞ୍ଚିତ ହୋଇଥିଲ... ?

ସେ ଦିନ ମୁଁ ବୁଝିଲି ଡକ୍ଟର ପ୍ରସାଦ କାହିଁକି ଦୁଇବର୍ଷ ଧରି ସାଧୁବାବୁଙ୍କ ଜରିଆରେ ମୋ ଦରମା ଟଙ୍କା ଦେଉଥିଲେ । ସେ ଦିନ ବୁଝିପାରିଲି ତତ୍କାଳୀନ ପ୍ରିନ୍‌ସିପାଲ ପୋଲିସ ଗୁପ୍ତଚର ଜରିଆରେ ସ୍ୱାଧୀନତା ସଂଗ୍ରାମ ସହିତ ଜଡ଼ିତ ଛାତ୍ରମାନଙ୍କର ଗୁପ୍ତ ପଞ୍ଜିକା ରଖୁଥିଲେ କି ନାହିଁ । ସେ ଦିନ ଅନୁଭବ କଲି ଦୁଇଜଣ ନମସ୍ୟ ଅଧ୍ୟାପକଙ୍କ ମଧ୍ୟରେ ପାର୍ଥକ୍ୟ । ଜଣେ ସରକାରୀ ଚାକିରିରେ ବନ୍ଧନ ଭିତରେ ରହି ମଧ୍ୟ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଅଯାଚିତ ସାହାଯ୍ୟ କରୁଥିଲେ । ଅନ୍ୟ ଜଣେ ଅନ୍ୟାୟ ଭାବରେ ସେମାନଙ୍କର କ୍ଷତି ସାଧନ କରିପାରିଲେ ସନ୍ତୋଷ ଲାଭ କରୁଥିଲେ ।

ବାସ୍ତବିକ୍ ଡକ୍ଟର ପ୍ରସାଦଙ୍କ ପରି ସ୍ୱାଧୀନଚେତା ସଚ୍ଚା ଦେଶଭକ୍ତ ଅଧ୍ୟାପକ ବିରଳ । ୧୯୩୨ ସିହାରେ ସେ ଜର୍ମାନୀରେ ପଢୁଥିବା ସମୟରେ କମ୍ୟୁନିଷ୍ଟ ଶ୍ରମିକ ଦଳ ଉପରେ ହିଟଲର ନାଜୀ ବାହିନୀର ଅତ୍ୟାଚାର ନିଜ ଆଖିରେ ଦେଖିଥିଲି । କମ୍ୟୁନିଷ୍ଟମାନଙ୍କର ସଂଖ୍ୟାଗରିଷ୍ଠ ସମର୍ଥନ ଧ୍ୱଂସ କରିବା ଲାଗି ହିଟଲର ଖୋଲାଖୋଲି ସଂତ୍ରାସବାଦର ଆଶ୍ରୟ ନେଇଥିଲେ । ସେହିଦିନଠାରୁ ସେ ଥିଲେ ସମାଜବାଦୀର ପୃଷ୍ଠପୋଷକ । ସେ କୌଣସି ଦଳର ସଭ୍ୟ ନଥିଲେ, କିନ୍ତୁ ଜୟ ପ୍ରକାଶ ନାରାୟଣ ଥିଲେ ତାଙ୍କର ବ୍ୟକ୍ତିଗତ ବନ୍ଧୁ । ୧୯୩୯ ମସିହାରେ ଜୟ ପ୍ରକାଶ କଟକ ଆସିଥିବା ସମୟରେ ତାଙ୍କର ଅତିଥି ହୋଇଥିଲେ । ସେଥିପାଇଁ ସରକାରଙ୍କ ତରଫରୁ ତାଙ୍କ ବିରୁଦ୍ଧରେ ଗୋଟିଏ ଅନୁସନ୍ଧାନ କରାହୋଇଥିଲା । ୧୯୪୨ ପରେ ରେଭେନ୍‌ସା କଲେଜ ଛାତ୍ର ଓ ପୋଲିସ ମଧ୍ୟରେ ଯେତେବେଳେ ଯେଉଁଠି ସଂଘର୍ଷର ସମ୍ଭାବନା ଦେଖା ଦେଇଛି, ଡକ୍ଟର ପ୍ରସାଦ ଛାତ୍ର ଓ ପୋଲିସ ମଧ୍ୟରେ ସର୍ବଂସହା ପାହାଡ଼ ପରି ଠିଆହୋଇ ଲାଠି ଗୁଳିର ପ୍ରୟୋଗ କରାଇ ଦେଇ ନାହାନ୍ତି । ୧୯୪୬ ମସିହାରେ ୟୁନିଅନ ଜ୍ୟାକ୍ ଆନ୍ଦୋଳନ ବେଳେ କଲେଜ ଛକରୁ ଗୋଟିଏ ଶୋଭାଯାତ୍ରା ବାହାରିଲା । ବହୁ ଝିଅ ମଧ୍ୟ ଶୋଭାଯାତ୍ରାରେ ଯୋଗ ଦେଇଥାନ୍ତି । ପୋଲିସ ଲାଠି ଚଳାଇବାକୁ ଉଦ୍ୟତ । ଡକ୍ଟର ପ୍ରସାଦ ଶୋଭାଯାତ୍ରାକାରୀଙ୍କ ପାଖେ ପାଖେ ଚାଲିଲେ । ତାଙ୍କ ଉପସ୍ଥିତିରେ ଲାଠି ଅଚଳ ହେଲା । ରସାୟନ ବିଭାଗର ଅଧ୍ୟାପକ ଭାବରେ ଗବେଷଣାରେ ଅଧିକ ସମୟ ଦେବା ପାଇଁ ସେ ଅଧ୍ୟକ୍ଷ ପଦ ଗ୍ରହଣ କରିନଥିଲେ । ଦେଶ ସ୍ୱାଧୀନ ହେବାପରେ ଶିକ୍ଷା ବିଭାଗର ନିର୍ଦ୍ଦେଶକ ଭାବରେ ସରକାରୀ ଚାକିରିରୁ ଅବସର ନେଲେ ।

•

---

***ଭୁଲିନାହିଁ***, ଅଳକା ପ୍ରକାଶନୀ, କଟକ, ୧୯୯୪

# ରେଭେନ୍‌ସା କଲେଜରେ ମୋର ଯୋଗଦାନ

## ବିବୁଧେନ୍ଦ୍ର ମିଶ୍ର

୧୯୩୬ ମସିହାରେ ଓଡ଼ିଶା ସ୍ୱତନ୍ତ୍ର-ପ୍ରଦେଶ ହେଲା । ସେହି ବର୍ଷ ମୁଁ ମାଟ୍ରିକୁଲେସନ ପାସ୍ କଲି । ସେତେବେଳକୁ ରେଭେନ୍‌ସା କଲେଜ ଓଡ଼ିଶାର ଏକମାତ୍ର ଡିଗ୍ରୀ କଲେଜ ଏବଂ ତାହା ପାଟଣା ବିଶ୍ୱବିଦ୍ୟାଳୟର ଅଧୀନସ୍ଥ ଥିଲା । ଖଲ୍ଲିକୋଟ, ପାରଳାଖେମୁଣ୍ଡି ଓ ରେଭେନ୍‌ସା ବାଳିକା ବିଦ୍ୟାଳୟରେ ଆଇ.ଏ. ପର୍ଯ୍ୟନ୍ତ ପାଠ୍ୟକ୍ରମ ଥିଲା । ସଜିଭାଇନା କଲିକତାରୁ ଆଇ.ଏ. ପାସ୍ କରି ଆସିଥାନ୍ତି । ଆମେ ତିନିଭାଇ ରେଭେନ୍‌ସା କଲେଜରେ ଯୋଗଦେବୁ ବୋଲି ନନା ସ୍ଥିର କରିଥାନ୍ତି । ବୋଉ ମୋତେ ଛାଡ଼ିବାକୁ ନାରାଜ- କେମିତି ଖାଇବି ବୋଲି ତା'ର ଚିନ୍ତା । ସବୁବେଳେ କାନ୍ଦ କାନ୍ଦ ମୁହଁ । ମୋ ମାମୁ ରମେଶ ଚନ୍ଦ୍ର ମିଶ୍ର ପୁରୀ ଆସିଥିଲେ । କିପରି ଗୁଣ୍ଡା ବଳି ଖାଇବାକୁ ହୁଏ ମୋତେ ଶିଖାଇଲେ । ସର୍ତ୍ତ ହେଲା ଯେ ପ୍ରତି ଶନିବାର ଦିନ ପୁରୀ ଯିବି- ଶେଷରେ ବହୁତ କଷ୍ଟରେ ବୋଉ ରାଜିହେଲା ।

ଆମେ ତିନିଭାଇ ପଶ୍ଚିମ-ଛାତ୍ରାବାସରେ ରହିଲୁ । ବହୁବର୍ଷ ତଳ କଥା । ୪ ବର୍ଷର ଛାତ୍ରାବାସର ସାଥୀମାନଙ୍କ ମଧ୍ୟରୁ କେତେ ନାଁ ମନେପଡୁଛି, କେତେ ନାହିଁ ।

ଆମ ପରି ଆଉ ତିନିଭାଇ ଥିଲେ । ଭଦ୍ରକର ମନୀନ୍ଦ୍ର, ଜ୍ଞାନେନ୍ଦ୍ର ଓ ମହେନ୍ଦ୍ର କୁମାର ରାଉତ ଏବଂ ପୁରୀର ମହେଶ୍ୱର, ବିଶ୍ୱେଶ୍ୱର ଓ ସର୍ବେଶ୍ୱର ଦାସ । ଦୁଇଭାଇଙ୍କ ସଂଖ୍ୟା କିଛି କମ୍ ନୁହେଁ । ସେମାନେ ହେଲେ- ସମ୍ବଲପୁରର ଲଳିତକୁମାର ଓ ପ୍ରଫୁଲ୍ଲକୁମାର ପତି, ଅଶ୍ୱିନୀକୁମାର ଓ ବିଚିତ୍ରାନନ୍ଦ ପୂଜାରୀ, ବାରିପଦାର ସୀତାକାନ୍ତ ଓ କାମିନୀକାନ୍ତ ପଟ୍ଟନାୟକ, ଭଦ୍ରକର ନିର୍ମଳ ଓ ଅଖିଳ ଦେ, ଯାଜପୁରର ନିକୁଞ୍ଜ ବିହାରୀ ଓ ରାସ ବିହାରୀ ପଟ୍ଟନାୟକ, ପୁରୀର ଶ୍ରୀପାଳ ଓ ଜୟପାଳ ଜୀ, ନୀଳମଣି ଓ କୁଳମଣି ପଣ୍ଡା, କଳାହାଣ୍ଡିର ଶ୍ରୀଧର ଓ ବଳରାମ ପାଟଯୋଶୀ । ଅନ୍ୟ ଅନ୍ତେବାସୀଗଣ ହେଲେ- ଶରତ ଚନ୍ଦ୍ର ପରିଜା, ଭବକୃଷ୍ଣ ମହାନ୍ତି, ନୀଳମଣି ମହାନ୍ତି, ସୁନୀଲ ଘୋଷ, ଗଙ୍ଗାଧର ମହାପାତ୍ର, ଭୁବନାନନ୍ଦ ପଟ୍ଟନାୟକ, ପଦ୍ମନାଭ ସାହୁ, ବ୍ରଜମୋହନ ପଣ୍ଡା, ନାରାୟଣ ଚାନ୍ଦ, ଉମାକାନ୍ତ ମିଶ୍ର, ବସନ୍ତ କୁମାର ମହାନ୍ତି, ପ୍ରଫୁଲ୍ଲ କୁମାର ପଟ୍ଟନାୟକ,

ମନମୋହନ ମିଶ୍ର, ପୂର୍ଣ୍ଣଚନ୍ଦ୍ର ମହାନ୍ତି, ଉଦୟନାଥ ମହାନ୍ତି, ଭାସ୍କର ରଥ, ବିଧୁଭୂଷଣ ଦାସ, ଗୋବିନ୍ଦ ଚନ୍ଦ୍ର ମିଶ୍ର, ଗିରିଜା ଶଙ୍କର ବହିଦାର, ବିଭୂତି ଭୂଷଣ ତ୍ରିପାଠୀ, କୁଞ୍ଜ ବିହାରୀ ପଣ୍ଡା, ଶ୍ରୀରାମଚନ୍ଦ୍ର ଦାସ, ଇନ୍ଦୁଭୂଷଣ ମିଶ୍ର, ଉଦୟନାଥ ମିଶ୍ର, ମନମୋହନ ମିଶ୍ର, ଶ୍ରୀନିବାସ ମିଶ୍ର, ଶତ୍ରୁଘ୍ନ ନାଥ, ଭୁବନେଶ୍ୱର ବେହେରା, ଦାମୋଦର ଛୋଟରାୟ, ରାମକୃଷ୍ଣ ପାଢ଼ୀ, ଶ୍ରୀରାମଚନ୍ଦ୍ର ମହାନ୍ତି, ରାମଚନ୍ଦ୍ର ପଟ୍ଟନାୟକ, ରଘୁନାଥ ଦାସ, ଅଦ୍ୱୈତ କୁମାର ଦାସ, ବସନ୍ତ ବଳ, ରତିକାନ୍ତ ପାଢ଼ୀ, ଗୋବିନ୍ଦଚନ୍ଦ୍ର ମିଶ୍ର, ମହମ୍ମଦ ହ୍ୟାଫିକ, ଉପେନ୍ଦ୍ର ସାମଲ, ଗୋବିନ୍ଦ ରଥ, ପର୍ଶୁରାମ ପଟ୍ଟନାୟକ, ସୁରକ୍ମଲ ସାହା, ଗଣେଶ୍ୱର ମିଶ୍ର, ରାମହରି ରଥ, ଫକୀର ଚରଣ ଦାସ, ଦୁର୍ଗା ଚରଣ ମହାନ୍ତି, କୃଷ୍ଣ ପଟ୍ଟନାୟକ, ସୁଧାଂଶୁ ମୋହନ ପଟ୍ଟନାୟକ, ହରିହର ମିଶ୍ର, ଯଦୁମଣି ଦାସ, ଯାମିନୀ ମୋହନ ଦାସ, ବଳରାମ ମିଶ୍ର, ଶଶିଭୂଷଣ ମହାନ୍ତି, ମନମୋହନ ପଟ୍ଟନାୟକ, ଭୁବନାନନ୍ଦ ପଟ୍ଟନାୟକ, ସାମସୁଲ ହୋଦା ପ୍ରଭୃତି ।

ମୁଁ ଛାତ୍ରାବାସରେ ରହିଲାବେଳକୁ ଅଧ୍ୟାପକ ପ୍ରାଣକୃଷ୍ଣ ପରିଜା ଓ୍ୱାର୍ଡେନ୍ ଥିଲେ- ସୁପରିନ୍‌ଟେଣ୍ଡେଣ୍ଟ ଅଧ୍ୟାପକ ପର୍ଶୁରାମ ମିଶ୍ର ଓ ତାଙ୍କ ସହକାରୀ ଥିଲେ ଅଧ୍ୟାପକ ବି.ଏନ୍. ରୋହତ୍‌ଗୀ । କେତେମାସ ପରେ ପରିଜା ସାହେବ କଲେଜର ଅଧ୍ୟକ୍ଷ ହେଲା ପରେ ଅଧ୍ୟାପକ ବଳଭଦ୍ର ପ୍ରସାଦ ଓ୍ୱାର୍ଡେନ୍ ହେଲେ । ପରେ ଅଧ୍ୟାପକ ଘନଶ୍ୟାମ ଦାସ ସୁପରିନ୍‌ଟେଣ୍ଡେଣ୍ଟ ହେଲେ । ଛାତ୍ରାବାସର ସାଧାରଣ ସଂପାଦକ ଥିଲେ ଶରତ୍ ଚନ୍ଦ୍ର ପରିଜା ଓ ତାଙ୍କ ପରେ ଗଙ୍ଗାଧର ମହାପାତ୍ର ।

ଛାତ୍ରାବାସରେ ଡିବେଟିଂ ସୋସାଇଟି ଥିଲା । ପୂର୍ବ ଛାତ୍ରାବାସର ବନ୍ଧୁଗଣ ମଧ୍ୟ ସେଥିରେ ଯୋଗ ଦେଉଥିଲେ । ଆଇ.ସି.ଏସ୍. ଅଫିସର ଡିକ୍ସନ୍ ସାହେବ ଦୁଇ ଛାତ୍ରାବାସକୁ ଦୁଇଟି 'ପିଙ୍ଗ୍‌ପଙ୍ଗ୍' ଟେବୁଲ ଉପହାର ଦେଇଥିଲେ । ସବୁ ଖେଳ ଭିତରୁ ତାହା ଥିଲା ମୋର ପ୍ରିୟ । ୧୯୩୯-୪୦ ମସିହାରେ ମୁଁ ଚମ୍ପିଆନ ହୋଇଥିଲି । ବ୍ରିଜ ଓ କ୍ୟାରମ୍ ଖେଳରେ ମଧ୍ୟ ବହୁ ଛାତ୍ର ଭାଗ ନେଉଥିଲେ । ଫୁଟବଲ, ହକି, ଟେନିସ୍, ବ୍ୟାଡ଼ମିଣ୍ଟନ, ଭଲିବଲ- ଯିଏ ଯାହା ଖେଳିବ ।

ଛାତ୍ରାବାସରୁ 'ଉର୍ମି' ନାମକ ଏକ ତ୍ରୈମାସିକ ହାତଲେଖା ପତ୍ରିକା ପ୍ରକାଶିତ ହେଉଥିଲା । ବାର୍ଷିକ ବଜେଟ୍ ୨୦ ଟଙ୍କା । ମୁଁ ତା'ର ସଂପାଦକ ଥିଲାବେଳେ ଛପା ହେବାର ବ୍ୟବସ୍ଥା କରିଥିଲି ।

ଦୟାନିଧି ମିଶ୍ର ଥିଲେ ମେସ୍-ମ୍ୟାନେଜର । ସବୁବେଳେ ରୋଷେଇଘର ବସି ଗୁଡିକର ଖାଦ୍ୟର ବରାଦ୍ କରୁଥିଲେ । ଭାଇନାଙ୍କ ଜୟଜୟକାରରେ ଖୁସି ହୋଇ ସେ ଅଧିକା କିଛିକାଳ ଛାତ୍ର ହୋଇ ରହିଗଲେ ।

ଏମାନଙ୍କ ମଧ୍ୟରୁ ଅନେକେ ପରବର୍ତ୍ତୀ ସମୟରେ ଓଡ଼ିଶାର ରାଜନୀତିକ, ସାଂସ୍କୃତିକ, କଳା, ଶାସନ, ଶିକ୍ଷା ପ୍ରଭୃତି କ୍ଷେତ୍ରରେ ପ୍ରତିଷ୍ଠା ଲାଭ କରିଥିଲେ । କେତେ ଗଲେଣି, ଯିଏ ଅଛନ୍ତି

ସେ କେଉଁଠି ? ବହୁତ ସମୟରେ ମନେପଡ଼େ ସେଦିନର ମୁହଁ । ସବୁ ଆଖିଆଗରେ ନାଚିଯାଏ, ପରସ୍ପର ସହିତ ସାକ୍ଷାତ୍ ପାଇଁ ମନ ଚଞ୍ଚଳ ହୁଏ । ଏମିତି ଆଜିକାଲି ହୋଇ ଦିନ ଗଡ଼ିଯାଏ ।

**କଲେଜ ଜୀବନର କେତେକ ସ୍ମୃତି**

କଲେଜ ଅଧ୍ୟକ୍ଷ ଶ୍ୟାମାପଦ ତ୍ରିପାଠୀ ଅତି ଉଦାର ପ୍ରକୃତିର ଓ ଛାତ୍ରବତ୍ସଳ ଥିଲେ । ଛାତ୍ରଙ୍କ ଚିତ୍ତବିନୋଦନ ନିମନ୍ତେ ସେ ତାଳଦଣ୍ଡା କେନାଲରେ ୨-୩ଟି ମଟରବୋଟର ବ୍ୟବସ୍ଥା କରିଥିଲେ । ଆମେ ସେଥିରେ ବାଲିଯାତ୍ରା ପଡ଼ିଆକୁ ମଧ୍ୟ ଯାଇଛୁ । ମଟରବୋଟ ଯୋଗୁଁ ରାତିରେ ଡେରିରେ ଫେରିବାରୁ ପ୍ରଫେସର ରୋହତ୍‌ଗୀ ବଡ଼ ରାଗିଲେ । ଏତଦ୍ୱାରା ଛାତ୍ରାବାସର ନିୟମ ଓ ଶୃଙ୍ଖଳା ଭଂଗ ହେଉଛି ବୋଲି ଅଭିଯୋଗ କଲେ । ସବୁଠୁ ମୋ ଉପରେ ବେଶି ବିରକ୍ତ, ମୁଁ ମୁହେଁ ମୁହେଁ ଜବାବ ଦେଉଛି ବୋଲି । ମୁଁ ସବୁ ଗୋଳମାଳର ମୂଳ ବୋଲି ମତେ ଧମକ ଦେଲେ । ତାଙ୍କ ଭୟରେ ମୁଁ ଅର୍ଥଶାସ୍ତ୍ର କ୍ଲାସ୍‌ରେ ଯୋଗ ଦେଲି ନାହିଁ । ପରେ ସେ ଆଇ.ଏ.ଏସ୍. ଅଫିସର ହୋଇ ବିହାର ଚାଲିଗଲେ । ବହୁବର୍ଷ ପରେ ମୁଁ କେନ୍ଦ୍ର ମନ୍ତ୍ରୀ ଥିବା ସମୟରେ ପାଟଣା ଯାଇଥିଲି । ସେ ଥିଲେ ପାଟଣାର କମିସନର୍ । ମୋତେ ସାଙ୍ଗରେ ନେବାକୁ ରେଳଷ୍ଟେସନକୁ ଆସିଥିଲେ । ଭାରି ଖୁସୀ, କେତେ ଆଦର, ମୁଁ ତାଙ୍କ ଛାତ୍ର ବୋଲି ସମସ୍ତଙ୍କୁ ଚିହ୍ନାଇଦେଲେ । ପୁଣି ରେଳଷ୍ଟେସନକୁ ଆସିଥିଲେ ମୋତେ ଛାଡ଼ିବାପାଇଁ । ତା'ପରେ ତାଙ୍କ ସହିତ ଆଉ ମୋର ଦେଖା ହୋଇନି । 'ସାର୍' ଚାଲିଗଲେ ବୋଲି ପରେ ଖବର ପାଇଲି ।

ରେଭେନ୍‌ସା କଲେଜରେ ଇଂରେଜୀ-ବିଭାଗର ଅଧ୍ୟାପକଗଣ ହେଲେ କେ.ପି. ସିହ୍ନା, ନିରଞ୍ଜନ ନିୟୋଗୀ, କୃତ୍ତିବାସ ସାମନ୍ତରାୟ, ଯନାଥନ ମହାନ୍ତି, ଗିରିଜା ଶଙ୍କର ରାୟ, ନାରାୟଣ ଦେ, ପି.ଏସ୍. ସୁନ୍ଦରମ୍; ରସାୟନ ବିଭାଗରେ ବଳଭଦ୍ର ପ୍ରସାଦ, ଲୋକନାଥ ମିଶ୍ର, ଗୁରୁଚରଣ ମହାନ୍ତି; ପଦାର୍ଥ ବିଜ୍ଞାନରେ ନାରାୟଣ ମିଶ୍ର, ବ୍ରହ୍ମାନନ୍ଦ ମିଶ୍ର; ଦର୍ଶନ ବିଭାଗରେ ବିପିନ ବିହାରୀ ରାୟ, ରତ୍ନାକର ପତି; ଅର୍ଥଶାସ୍ତ୍ର ବିଭାଗରେ ବି.ଏନ୍. ରୋହତ୍‌ଗୀ, ସଦାଶିବ ମିଶ୍ର; ଇତିହାସ ବିଭାଗରେ ନିର୍ମଳ ଚନ୍ଦ୍ର ବାନାର୍ଜୀ, ଘନଶ୍ୟାମ ଦାସ, ଜଗଦାନନ୍ଦ ମହାନ୍ତି; ଉଦ୍ଭିଦ ବିଜ୍ଞାନରେ ପର୍ଶୁରାମ ମିଶ୍ର, ବଂଶୀଧର ସାମନ୍ତରାୟ, ଚନ୍ଦ୍ରମୋହନ ବସ୍ତିଆ; ସଂସ୍କୃତ ଓ ଓଡିଆ ବିଭାଗରେ କାଶୀନାଥ ଦାସ, ଆର୍ତ୍ତବଲ୍ଲଭ ମହାନ୍ତି, ଲକ୍ଷ୍ମୀକାନ୍ତ ଚୌଧୁରୀ, କୁଞ୍ଜବିହାରୀ ତ୍ରିପାଠୀ; ଗଣିତ ବିଭାଗରେ ହରେକୃଷ୍ଣ ଦାସ, ବାମାଚରଣ ଦାସ ଓ ରମାକାନ୍ତ ମହାନ୍ତି । ଏହା ପୂର୍ଣ୍ଣାଙ୍ଗ ତାଲିକା ନୁହେଁ, ଯେତିକି ନାମ ମନେପଡ଼ିଲା ।

ଅଧ୍ୟାପକ ନିୟୋଗୀ ଧୋତି-ପଂଜାବି ପିନ୍ଧୁଥିଲେ । ସେ ଅତି ଗମ୍ଭୀର ପ୍ରକୃତିର ଲୋକ ଥିଲେ । ଛାତ୍ରମାନଙ୍କୁ 'Gentlemen' ବୋଲି ସଂବୋଧନ କରୁଥିଲେ । ଥରେ ଦୀପାବଳି ଉତ୍ସବ ସମୟରେ କେହି ତାଙ୍କ ଚଉକିତଳେ ଚଡ଼ଚଡ଼ି ରଖିଦେଇଥିଲା । ସେ ବସିଲା ବେଳକୁ ତାହା

ଫୁଟିଲା । ସେ କିଛି କହିଲେ ନାହିଁ, ଆଖିରେ ଲୁହ । ନିଜେ କାନ୍ଦି ସମସ୍ତଙ୍କୁ କନ୍ଦାଇଦେଲେ । ସବୁ ଛାତ୍ର ଛିଡ଼ାହୋଇ କ୍ଷମାପ୍ରାର୍ଥନା କଲେ ।

ଅଧ୍ୟାପକ କୃତ୍ତିବାସ ସାମନ୍ତରାୟଙ୍କ ପ୍ରଥମ ଦିନର ଉପଦେଶ ଆଜିଯାଏ ମନରେ ଗାର ହୋଇ ରହିଛି- "ମୁଁ ପଢ଼ାଇବାକୁ ଆସି ନାହିଁ, ଭଲ ଛାତ୍ର ନିଶ୍ଚୟ ଭଲ କରିବେ, କେବଳ ପାସ୍ ନମ୍ବର ରଖିବାକୁ ଚାହୁଁଥିବା ଛାତ୍ରମାନଙ୍କ ପାଇଁ ବହୁ ଶସ୍ତା ନୋଟ-ବହି ମିଳୁଛି । ମୋତେ ଦେଖ, ଭଲ ପଢ଼ିଲେ ମୋ ପରି ହେବ ।"

ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି "First year students are my servants" ବୋଲି ଉପହାସରେ କହୁଥିଲେ । ପ୍ରାଚୀନ ଓଡ଼ିଆ-ସାହିତ୍ୟର ପୁନରୁଦ୍ଧାର କ୍ଷେତ୍ରରେ ତାଙ୍କ ଦାନ ଅତୁଳନୀୟ । ସେ ଓଡ଼ିଆ ଶବ୍ଦର ଅର୍ଥକୁ ଇଂରେଜୀ ଭାଷାରେ ତର୍ଜମା କରୁଥିଲେ । 'ମୁଦୁସୁଲି' ଶବ୍ଦର ଅର୍ଥକୁ ଦିନେ ବୁଝାଇ କହିଲେ- "I have ransacked all the literature of the world but I have not come across such a word 'ମୁଦୁସୁଲି'- ମୃଦୁହାସିନୀ, ମନ୍ଦହାସିନୀ- Whenever a guest enters the house, she entertains him with a smile on her lips"- 'ମୁଦୁସୁଲି' । କହିଲାବେଳେ ଆଖି ବନ୍ଦ, ଉଚ୍ଚସ୍ୱର ।

କବି ଦାନ୍ତେଙ୍କ ସହିତ କବି ଦୀନକୃଷ୍ଣଙ୍କ ତୁଳନା କିପରି କରାଯାଇପାରେ ବୋଲି ପ୍ରଶ୍ନର ଉତ୍ତରରେ ମନମୋହନ ମିଶ୍ର କହିଲେ ଯେ ଉଭୟଙ୍କ ନାମର ପ୍ରଥମ ଅକ୍ଷର 'ଦ' ଓ ଉଭୟେ ପ୍ରେମକରି ବିତାଡ଼ିତ ହୋଇଥିଲେ । ପିଲା ଭଲ ପଢୁଛି ବୋଲି ଅଧ୍ୟାପକ ଖୁସି ହୋଇଯାଇଥିଲେ ।

ପରବର୍ତ୍ତୀ ସମୟରେ ମୁଁ ଉତ୍କଳ ବିଶ୍ୱବିଦ୍ୟାଳୟର ସିନେଟ୍, ସିଣ୍ଡିକେଟ ଓ ଏକାଡେମିକ୍ କାଉନ୍‌ସିଲ୍‌ର ସଭ୍ୟ ଥିଲି । ଅଧ୍ୟାପକ ମହାନ୍ତି ସିନେଟ୍ ସଭ୍ୟ ଥିଲେ । ରାଜ୍ୟର ଦୁଇଜଣ ବିଶିଷ୍ଟ ବ୍ୟକ୍ତିଙ୍କୁ ସମ୍ମାନସୂଚକ 'ଡକ୍ଟରେଟ୍' ଉପାଧି ପ୍ରଦାନ ନିମନ୍ତେ ସିଣ୍ଡିକେଟର ଏକ ପ୍ରସ୍ତାବ ସିନେଟ୍‌ର ବିଚାର ନିମନ୍ତେ ଆସିଲା । ସିଣ୍ଡିକେଟ୍‌ର ଏଜେଣ୍ଡାରେ ନ ଥାଇ ଓ ସିଣ୍ଡିକେଟର ବୈଠକ ସମାପ୍ତି ପରେ ଏପରି ପ୍ରସ୍ତାବ କିପରି ଗୃହୀତ ହେଲା ବୋଲି ମୁଁ ପ୍ରଶ୍ନ ଉତ୍‌ଥାପନ କରିଥିଲି । ସଭା ସରିଲା ପରେ ମୁଁ ବାରଣ୍ଡାକୁ ଆସି ଦେଖିଲି ଯେ ଅଧ୍ୟାପକ ମହାନ୍ତିଙ୍କ ସମେତ ଅନ୍ୟ କେତେଜ ସଭ୍ୟ ସେଇ ବିଷୟରେ ଆଲୋଚନା କରୁଛନ୍ତି । ମୁଁ ଏପରି ପ୍ରଶ୍ନ ଉଠାଇବା ଅନୁଚିତ ଥିଲା ବୋଲି ଅଧ୍ୟାପକ ମହାନ୍ତି ମୋତେ କହିଲେ । ଗତବର୍ଷ ସେ 'ଡକ୍ଟରେଟ୍' ଉପାଧି ପାଇଲାବେଳେ ମୁଁ ଆପତ୍ତି କରିଥିଲି କି ବୋଲି ତାଙ୍କୁ ପଚାରିଲି । ସେ ହସି ମୋ ପିଠି ଥାପୁଡ଼ାଇଥିଲେ ।

ସେ ଥିଲେ ଚେହେରାରେ ରୁକ୍ଷ, ହୃଦୟରେ କୋମଳ । ତାଙ୍କ ଅବସରଗ୍ରହଣ ପରେ ବହୁଥର ତାଙ୍କ ଘରକୁ ଯାଇଛି । ବହୁ ବିଷୟରେ ଆଲୋଚନା କରିଛି । ସେ ଖୁସୀ ହୋଇଛନ୍ତି, ମୋର ଶୁଭ-କାମନା କରିଛନ୍ତି । ତାଙ୍କ ମୃତ୍ୟୁରେ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏକ ଝଲକର ଅବସାନ ହେଲା ।

ଅଧ୍ୟାପକ ଲକ୍ଷ୍ମୀକାନ୍ତ ଚୌଧୁରୀ ସଂଗୀତପ୍ରେମୀ ଥିଲେ। ଉତ୍କଳ ସଂଗୀତ ସମାଜ ପ୍ରତିଷ୍ଠା ତାଙ୍କ ଅବଦାନ ଏବଂ ତାଙ୍କ ସ୍ମୃତି ବହନ କରି ଏଯାଏ ଚାଲିଛି।

ଦକ୍ଷ ଅଧ୍ୟାପକ ଭାବେ ଗିରିଜା ଶଂକର ରାୟଙ୍କ ସୁଖ୍ୟାତି ଥିଲା। ସେ ଓଡ଼ିଆରେ ବହୁତ ପ୍ରବନ୍ଧ ଲେଖିଛନ୍ତି। ସେ ଅତି ଭୋଜନପ୍ରିୟ ଥିଲେ। କଲେଜରୁ ଫେରିବା ସଙ୍ଗେ ସଙ୍ଗେ ତାଙ୍କ ଘରପାଖ 'ଦେ' ହୋଟେଲକୁ ଯାଉଥିଲେ। ହୋଟେଲ ପରିଚାଳନା ପାଇଁ ସେ ଯେଉଁ ଅର୍ଥ ଋଣ ଦେଇଥିଲେ, ସୁଧ ହିସାବରେ ଏ ଭୋଜନ ଥିଲା ତାଙ୍କର ପ୍ରାପ୍ୟ। ବହୁ ସଂପତ୍ତି କରିଥିଲେ। 'ଏସବୁ କିଛି ରହିବ ନାହିଁ, ତୁମେ ଦେଖିବ' ବୋଲି ମୋତେ ଥରେ କହିଥିଲେ। ସେ ଚାଲିଗଲେ, ସତକୁସତ ସମ୍ପତ୍ତି କିଛି ରହିଲା ନାହିଁ।

ଅଧ୍ୟାପକ ବିପିନ ବିହାରୀ ରାୟ ଓଡ଼ିଆରେ ବହୁତ ସୁଚିଂତିତ ପ୍ରବନ୍ଧ ଲେଖୁଥିଲେ। ନୀଳକଣ୍ଠ ଦାସ ଓ ଗୋଦାବରୀଶ ମିଶ୍ରଙ୍କ ସହିତ ତାଙ୍କର ଘନିଷ୍ଠ ସଂପର୍କ ଥିଲା। କାୟସ୍ଥ ହୋଇଥିଲେ ମଧ୍ୟ ତାଙ୍କର ବ୍ରାହ୍ମଣ-ପ୍ରୀତି ପ୍ରବଳ ଥିଲା। ପୁରୀ ଗଲେ ଆମ ଘରେ ଅତିଥି ହେଉଥିଲେ। ପୁରୀ ବ୍ରାହ୍ମଣ-ସମିତିକୁ ଦଶହଜାର ଟଙ୍କା ଦାନ କରିଥିଲେ। ବହୁ ଦରିଦ୍ର ମେଧାବୀ ଛାତ୍ରଙ୍କୁ ଉଚ୍ଚଶିକ୍ଷା ନିମନ୍ତେ ସେ ଅର୍ଥ ସାହାଯ୍ୟ କରୁଥିଲେ।

ଥରେ କଲେଜ ଛାତ୍ର ଧର୍ମଘଟ ସମୟରେ ସେ କ୍ଲାସକୁ ନ ଯିବାରୁ ଅଧ୍ୟକ୍ଷ ତାଙ୍କୁ କୈଫିୟତ ମାଗିଥିଲେ। ସେ ଥିଲେ ଛାତ୍ର-ବତ୍ସଳ ଗୁରୁ। ମୋର ପୁତ୍ରସମ ଛାତ୍ରଗଣ କ୍ଲାସ-ଦ୍ୱାରଦେଶକୁ ଅବରୁଦ୍ଧ କରିଥିବାରୁ କ୍ଲାସକୁ ଯିବାର ପ୍ରଶ୍ନ ଉଠୁ ନାହିଁ ବୋଲି ସେ ଉତ୍ତର ଦେଇଥିଲେ।

ମୁଁ ଦର୍ଶନ-ଶାସ୍ତ୍ରର ଛାତ୍ର ଥିଲି। ତାଙ୍କ ଘରକୁ ବହୁଥର ଯାଇଛି। ଆରାମ ଚଉକିରେ ବସିଥିବେ, ଧୀରେ କଥା କହୁଥିବେ, ଖଣ୍ଡେ ବିଡ଼ି ଲଗାଇବାକୁ ଗୋଟିଏ ଦିଆସିଲି ସରୁଥିବ। କିଛି ନ ଖୁଆଇ ଛାଡ଼ିବେ ନାହିଁ।

୧୯୪୫ ମସିହା ଶେଷଭାଗରେ ବ୍ରହ୍ମପୁର ଜେଲ୍‌ରୁ ଖଲାସ ହୋଇ ତାଙ୍କୁ ସାକ୍ଷାତ୍ କରିବାକୁ ଯାଇଥିଲି। ସେତେବେଳକୁ ସେ ଅସୁସ୍ଥ, ଆଖିକୁ ଭଲ ଦିଶୁନଥିଲା। ମୋ ସ୍ୱରରୁ ମୋତେ ଚିହ୍ନିଲେ, ଭାରି ଖୁସୀ ହେଲେ। ପ୍ରାୟ ଦୁଇଘଣ୍ଟାକାଳ ତାଙ୍କ ଜୀବନର ଅନୁଭୂତି କଥା କହିଲେ। ସେ ଥିଲା ତାଙ୍କ ସହିତ ମୋର ଶେଷ ସାକ୍ଷାତ।

ଅଧ୍ୟାପକ ଘନଶ୍ୟାମ ଦାସଙ୍କର ଉଜ୍ଜ୍ୱଳ ଚେହେରା। ଇଂରେଜୀ ଭାଷାରେ ଦକ୍ଷତା ଥିଲା। ମୁଁ ଇତିହାସ ଛାତ୍ର ଥିଲି। ସେ ମତେ ଖୁବ୍ ସୁଖ ପାଉଥିଲେ। ୧୯୪୦ ମସିହା ବିଶ୍ୱବିଦ୍ୟାଳୟ ପରୀକ୍ଷା ବର୍ଜନ ଆନ୍ଦୋଳନ ବେଳେ ସେ ପଶ୍ଚିମ ଛାତ୍ରାବାସର ସୁପରିନ୍‌ଟେଣ୍ଡେଟ ଥିଲେ। ଫେବୃଆରୀ ୨୬ ତାରିଖରେ ପରୀକ୍ଷା - ୨୫ ତାରିଖ ସଂଧ୍ୟାରେ ଅନ୍ତେବାସୀଗଣ ଛାତ୍ରାବାସ

ଛାଡ଼ି ଚାଲିଯିବା ସମୟରେ କମନ୍-ରୁମ୍ ଟେବୁଲ ଉପରେ ସେ ନିସ୍ତବ୍ଧ ହୋଇ ବସିଥିଲେ। ମୁଁ ତାଙ୍କୁ ବିଦାୟ-ନମସ୍କାର କଲାବେଳେ ମୋତେ ତାଙ୍କ ଛାତିରେ ଜାକି ପିଲାପରି କାନ୍ଦିଲେ। ସେ ଦୃଶ୍ୟ ମୋ ଆଖି ଆଗରେ ନାଚିଯାଉଛି।

ପରବର୍ତ୍ତୀ ସମୟରେ ଆମେ ଦୁହେଁ ଉତ୍କଳ ବିଶ୍ୱବିଦ୍ୟାଳୟର ସିଣ୍ଡିକେଟ୍ ସଭ୍ୟ ଥିଲୁ। ଭୁବନେଶ୍ୱରରେ ବୌଦ୍ଧ-କୀର୍ତ୍ତି ଆବିଷ୍କାର କରିବା ଦାୟିତ୍ୱ ସିଣ୍ଡିକେଟ୍ ତାଙ୍କୁ ଅର୍ପଣ କରିଥିଲେ। ଖନନ କାର୍ଯ୍ୟର ଅଗ୍ରଗତି ଦେଖିବାପାଇଁ ଦିନେ ସବୁ ସିଣ୍ଡିକେଟ୍ ସଭ୍ୟ ଭୁବନେଶ୍ୱର ଯାଇଥିଲୁ। ତଳେ ଗୋଟିଏ କୋଚଟ-କଳା ତଂବା ପଡ଼ିଥିଲା। ତାହା ବାରଶହ ଶତାବ୍ଦୀର ମୁଦ୍ରା ବୋଲି ସେ କହିଲାବେଳେ ଦଶମ ଶତାବ୍ଦୀର ବୋଲି ମୁଁ କହିବାରେ 'ଉପଯୁକ୍ତ ଶିକ୍ଷକଙ୍କର ଉପଯୁକ୍ତ ଛାତ୍ର' ବୋଲି କୁଳପତି ପରିଜା ସାହେବ ହସହସ ମୁହଁରେ ମନ୍ତବ୍ୟ ଦେଇଥିଲେ।

୧୯୫୭ ମସିହାରେ ସେ ଅଧ୍ୟାପକ ପଦରୁ ସ୍ୱଇଚ୍ଛାରେ ଅବସର ଗ୍ରହଣ କରି ସାଧାରଣ ନିର୍ବାଚନରେ ସମ୍ବଲପୁର-ବଲାଙ୍ଗୀର ଲୋକସଭା ନିର୍ବାଚନମଣ୍ଡଳୀରୁ କଂଗ୍ରେସ ପ୍ରାର୍ଥୀ ହୋଇଥିଲେ। ଗଣତନ୍ତ୍ର-ପରିଷଦର ପ୍ରାର୍ଥୀ ଶ୍ରଦ୍ଧାକର ସୁପକାରଙ୍କ ଦ୍ୱାରା ସେ ପରାଜିତ ହେଲେ। ସମ୍ବଲପୁର ଅଞ୍ଚଳରୁ ସେ ଅଧିକ ଭୋଟ ପାଇଥିଲେ।

୧୯୫୮ ମସିହାରେ ମୁଁ ଦ୍ୱିତୀୟଥର ପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟର ସିଣ୍ଡିକେଟ୍ ସଭ୍ୟ ପଦପାଇଁ ପ୍ରାର୍ଥୀ ହେଲାବେଳେ ତାଙ୍କ ଘରକୁ ଯାଇଥିଲି। ସେତେବେଳକୁ ସେ ରୁଗ୍ଣ, ଭଲଭାବେ ଚିହ୍ନୁ ନ ଥିଲେ ବା କହିପାରୁନଥିଲେ। ମୋ ନାଁ ଶୁଣି ମୋତେ ଆଶୀର୍ବାଦ କରିଥିଲେ। ମୋ ସହିତ ତାଙ୍କର ତାହା ଶେଷ ଦେଖା। ଜୀବନରେ ଯାହା ପାଇବାର କଥା, ତାହା ପାଇନଥିବା ଦୁଃଖ ତାଙ୍କୁ ବଡ଼ ବାଧିଥିଲା।

ଅଧ୍ୟାପକ ପର୍ଶୁରାମ ମିଶ୍ର- ଶାନ୍ତ, ଧୀର, ଉଦାର ଓ ସ୍ନେହୀ। ସେ ମୋର ସୁପରିନ୍‌ଟେଣ୍ଡେଣ୍ଟ୍ ଥିଲେ। ପରବର୍ତ୍ତୀ ସମୟରେ ସେ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଥିଲାବେଳେ ମୁଁ ସିଣ୍ଡିକେଟ୍-ସଭ୍ୟ ଥିଲି। ସେ କେବେ ରାଗିବାର ମୁଁ ଦେଖି ନାହିଁ। ଥରେ ସିଣ୍ଡିକେଟ୍ ସଭାରେ ମୁଁ ନାନା ବିଷୟରେ ପ୍ରଶ୍ନ ଉତ୍‌ଥାପନ କରିବାରେ ସେ ବିବ୍ରତ ହୋଇ ଚଉକିରୁ ଉଠିଗଲେ। କହିଲେ- ବିବୁଧେନ୍ଦ୍ର, ତୁମ ଯୋଗୁଁ ମୁଁ ଇସ୍ତଫା ଦେଇଦେବି। ମୁଁ ଚୁପ୍ ରହିଲି। ପରେ ସେ ସଂବଲପୁର ବିଶ୍ୱବିଦ୍ୟାଳୟର କୁଳପତି ହେଲା ପରେ ମୁଁ ତାଙ୍କୁ ଦୁଇଥର ଦେଖା କରିବାକୁ ଯାଇଥିଲି।

ଅଧ୍ୟାପକ ବଳଭଦ୍ର ପ୍ରସାଦଙ୍କ କଥା। ସେ ଥିଲେ ସ୍ୱାଧୀନତା ପ୍ରେମୀ, ସବୁବେଳେ ଖଦଡ଼ ପିନ୍ଧୁଥିଲେ। ବହୁ କଂଗ୍ରେସ ନେତାଙ୍କ ସହିତ ତାଙ୍କର ସୁସଂପର୍କ ଥିଲା। ଆମେ ଛାତ୍ରାବାସରେ ଥିଲାବେଳେ ବିପ୍ଳବୀ ଜୟପ୍ରକାଶ ନାରାୟଣ ତାଙ୍କର ଅତିଥି ହୋଇଥିଲେ। ଆମକୁ ସେ ତାଙ୍କ

ସହିତ ପରିଚିତ କରାଇ ଦେଇଥିଲେ । ମୋତେ ଖୁବ୍ ସୁଖ ପାଉଥିଲେ, ନିଜ ସାନଭାଇ ପରି ବ୍ୟବହାର କରୁଥିଲେ, ଦୁଃଖରେ ସାନ୍ତ୍ୱନା ଦେଉଥିଲେ, ଅଭାବରେ ସାହାଯ୍ୟ କରୁଥିଲେ, ସ୍ୱାଧୀନତା ସଂଗ୍ରାମରେ ମୋର ଯୋଗଦାନକୁ ପ୍ରୋତ୍ସାହିତ କରୁଥିଲେ । ପରେ, ତାଙ୍କ ସହିତ ବିଶ୍ୱବିଦ୍ୟାଳୟର ସିନେଟ୍, ସିଣ୍ଡିକେଟ୍ ଓ ଏକାଡେମିକ୍ କାଉନ୍‌ସିଲର ସଭ୍ୟରୂପେ ମୁଁ କାର୍ଯ୍ୟ କରିଛି । ବୈଠକ ପୂର୍ବରୁ ବହୁ ସମସ୍ୟା ବିଷୟରେ ସେ ମୋର ମତାମତ ଲୋଡ଼ିଛନ୍ତି । ପରେ ସେ ପାଟଣା ଓ ଆହ୍ଲାବାଦ ବିଶ୍ୱବିଦ୍ୟାଳୟର କୁଳପତି ଦାୟିତ୍ୱ ତୁଲାଇଥିଲେ ।

ମୁଁ କେନ୍ଦ୍ର-ମନ୍ତ୍ରୀ ଥିଲାବେଳେ ଆହ୍ଲାବାଦ ଯାଇଥିଲି । ଶୁଣିଲି, ନିଜକୁ 'ଓଡ଼ିଆ' ବୋଲି ସବୁଠି ସେ ନିଜର ପରିଚୟ ଦେଇଛନ୍ତି । ମୋତେ ବିଶ୍ୱବିଦ୍ୟାଳୟକୁ ଡାକିଥିଲେ । ମୁଁ ପହଞ୍ଚିଲାବେଳକୁ ଅଫିସ ଦୁଆରମୁହଁରେ ଅନ୍ୟମାନଙ୍କ ସହିତ ସେ ଉପସ୍ଥିତ । ସେ ମୋ ମଟରଗାଡ଼ି ଦୁଆର ଖୋଲିବାରୁ ବ୍ୟସ୍ତ ହୋଇ- 'ଏ କ'ଣ କରୁଛନ୍ତି ସାର୍' ବୋଲି ମୁଁ କହିଲି । 'ତୁମେ ଆମର ଅତିଥି' ବୋଲି ହସି ହସି ସେ ଉତ୍ତର ଦେଇଥିଲେ । ସେ ଥିଲେ ବିହାରୀ, କିନ୍ତୁ ଓଡ଼ିଶା ଥିଲା ତାଙ୍କ ଜୀବନର ଦୀର୍ଘ ସମୟର କର୍ମଭୂମି । ଶେଷଜୀବନରେ ଭୁବନେଶ୍ୱରରେ ସେ ଅବସ୍ଥାନ କରୁଥିଲେ । ସାନଭାଇ ମହେନ୍ଦ୍ର ରାଉତଙ୍କଠାରୁ ତାଙ୍କ ମୃତ୍ୟୁସଂବାଦ ପାଇ ବଡ଼ ବ୍ୟଥିତ ହୋଇଥିଲି- ମୋର ଜଣେ ବଡ଼ଭାଇ ଓ ଗୁରୁଜନ ଚାଲିଗଲେ ।

ରେଭେନ୍‌ସା କଲେଜର ପୁରାତନ ଛାତ୍ର ସଂଘର ବାର୍ଷିକ ଅଧିବେଶନ ହେଉଥିଲା । ଏହା ଥିଲା ପୁରାତନ ଓ ବର୍ତ୍ତମାନର ଛାତ୍ରଙ୍କ ମିଳନପୀଠ । ଏକ୍‌ଜିବିସନ୍, ମୀନାବଜାର ଏହି ତିନିଦିନିଆ ଉତ୍ସବର ଅଂଶବିଶେଷ ଥିଲା । ଅଧ୍ୟାପକ ନିର୍ମଳଚନ୍ଦ୍ର ମୁଖାର୍ଜୀ ଥିଲେ ଏହି ଆସୋସିଏସନର ପ୍ରାଣ । କେମିତି ହେବ, କ'ଣ ହେବ, ଯୋଜନା ବର୍ଷଟାଯାକ କରୁଥିଲେ । ମନେଅଛି, ୧୯୪୦ ମସିହା ଅଧିବେଶନରେ ଭାଷଣ ଦେଇଥିଲେ, କଂଗ୍ରେସ-ନେତ୍ରୀ କୋକିଳକଂଠୀ ଶ୍ରୀମତୀ ସରୋଜିନୀ ନାୟଡୁ । ସେ ଭାଷଣ ଥିଲା କବିତାର-ଉତ୍ସ । ସଂଧ୍ୟାବେଳେ ଏକ ଏକାଂକିକା ନାଟକ ପ୍ରଦର୍ଶିତ ହୋଇଥିଲା । ମୁଁ ସେଥିରେ ଅଭିନୟ କରିଥିଲି । 'ଜୀବନର ରଙ୍ଗମଞ୍ଚରେ ତୁମେ ସଫଳ ହୁଅ' ବୋଲି ଅଧ୍ୟାପକ ଗୁରୁଚରଣ ମହାନ୍ତିଙ୍କ ସେଦିନର ଆଶୀର୍ବାଦ ମୁଁ ଭୁଲି ନାହିଁ ।

**ରେଭେନ୍‌ସା କଲେଜ ଧର୍ମଘଟ**

ଜାନୁଆରୀ ୨୬, ୧୯୪୦ । ସ୍ୱାଧୀନତା ଦିବସ । ଜାତୀୟ ପତାକା ତଳେ ସମବେତ ଗୋଟାଏ ଜାତି ନିଜ ରକ୍ତ ତିଳକ ପିନ୍ଧି ପୁଣି ଶପଥ ନେବ-ପଥନିର୍ଣ୍ଣୟ ହୋଇସାରିଛି, ତାର ବିଶ୍ରାମ ନାହିଁ, ଭୂକ୍ଷେପ ନାହିଁ, ହୁଏତ ସେ ବିଜୟ ହାସଲ କରିବ ନଚେତ୍ ସେହି ଉଦ୍ୟମରେ ପ୍ରାଣବଳି ଦେଇ ଦେଶମାତୃକାକୁ ଗାଢ଼ ଆଲିଙ୍ଗନରେ ଶେଷ ଚୁମ୍ବନ ଦେଇଯିବ, ଯେଉଁ ମଶାଣି ଭୂଇଁରୁ ଜନ୍ମଲାଭ କରିବେ କାର୍ତ୍ତବୀର୍ଯ୍ୟ ବୀରପୁରୁଷଗଣ ।

ସମଗ୍ର ବିଶ୍ୱର ସ୍ୱାଧୀନତା ପାଇଁ ଯୁଦ୍ଧ ହେଉଛି ବୋଲି କୁହାଯାଉଛି- ତଥାପି ଭାରତ ପରାଧୀନ ହୋଇ ରହିଛି । ସତେ ଯେମିତି ବିଶ୍ୱ ବାହାରେ ତାର ଅବସ୍ଥିତି । ପୁଣି ଦେଶର ଇଚ୍ଛା ବିରୋଧରେ, ଇଂରେଜ ଶାସକବର୍ଗ ଜବରଦସ୍ତି ଭାରତକୁ ଯୁଦ୍ଧରେ ପୂରାଇ ଦେଇଛନ୍ତି । ପ୍ରତିବାଦ ସ୍ୱରୂପ ବିଭିନ୍ନ ପ୍ରଦେଶର କଂଗ୍ରେସ ମନ୍ତ୍ରିମଣ୍ଡଳଗୁଡ଼ିକ ଇସ୍ତଫା ଦେଇଛନ୍ତି । ଶେଷ ସ୍ୱାଧୀନତା ସଂଗ୍ରାମ ପାଇଁ ଦେଶ ଅସ୍ଥିର ହୋଇଉଠିଛି । ଏହି ପରିପ୍ରେକ୍ଷୀରେ 'ସ୍ୱାଧୀନତା ଦିବସ' ।

ସେତେବେଳେ ପାଟଣା ବିଶ୍ୱବିଦ୍ୟାଳୟର ଛାତ୍ର । ମୁଁ ପଶ୍ଚିମ ଛାତ୍ରାବାସରେ ଥାଏ । ସେହି ବର୍ଷ ମୋର ବି.ଏ. ପରୀକ୍ଷା ଦେବା କଥା । ପରୀକ୍ଷା ହେବ ଠିକ୍ ମାସକ ପରେ- ଫେବୃଆରୀ ୨୬ ତାରିଖରେ ।

ସେତେବେଳେ ସମଗ୍ର ଦେଶରେ ଛାତ୍ରମାନଙ୍କର ଏକମାତ୍ର ଅନୁଷ୍ଠାନ ଥିଲା 'ଛାତ୍ର ଫେଡେରେସନ' । ଓଡ଼ିଶାରେ ସଂଗଠନ ଖୁବ୍ ଟାଣ ହୋଇଯାଇଥାଏ । ୧୯୩୯ରେ ମେଡ଼ିକାଲ ସ୍କୁଲ ଛାତ୍ରଙ୍କ ଦାବି ଉପରେ କଂଗ୍ରେସ ସରକାରଙ୍କ ବିରୋଧରେ ସତ୍ୟାଗ୍ରହ ଆନ୍ଦୋଳନରେ ଜୟୀ ହେବା ପରେ ଆମ ଭିତରେ ଥାଏ ନାହିଁନଥିବା ଏକତା ଓ ଦୃଢ଼ତା ।

କଲେଜ ଭିତରେ ଜାତୀୟ ପତାକା ଉଡ଼ାଇ ବିଧିବଦ୍ଧ ଭାବେ ସ୍ୱାଧୀନତା ଦିବସ ପାଳନ କରିବାପାଇଁ ମୁଁ ଓ ମୋର ସହପାଠୀ ନୀଳମଣି ରାଉତରାୟ ପ୍ରିନ୍‌ସିପାଲ ପରିଜା ସାହେବଙ୍କ ଅନୁମତି ମାଗିଲୁ । ନୀଳମଣି ପୂର୍ବ ଛାତ୍ରାବାସରେ ରହୁଥାଏ । ସେ କହିଲେ- ମୋତେ ଅନୁମତି ମାଗିଲେ ମୁଁ ଦେଇପାରିବି ନାହିଁ- ମୋତେ ନ ପଚାରି ଯାହା ଭାବୁଛ କର ।

ଅନୁମତି ମାଗିବାର ପ୍ରୟୋଜନ ନ ଥିଲା । ଅନୁମତି ନ ମିଳିଲେ ମଧ୍ୟ ଆମେ କରିଥାନ୍ତୁ । ଦେଶର ସ୍ୱାଧୀନତା ସଂଗ୍ରାମ ସହିତ ଜଡ଼ିତ ଛାତ୍ରର ଭବିଷ୍ୟତ ଓ ଜୀବନର ସାର୍ଥକତା ପ୍ରବଳ ଉଦ୍ଦୀପନା ଭିତରେ ସ୍ୱାଧୀନତା ଦିବସ ପାଳିତ ହେଲା । କଲେଜରେ ଜାତୀୟ ପତାକା ଉଡ଼ିଲା । ପ୍ରତୀକ ଧର୍ମଘଟ କରି ଛାତ୍ରମାନେ ଟେନିସପଡ଼ିଆରେ ସଭା କଲେ । ପୁଣି ସନ୍ଧ୍ୟାରେ ଟାଉନ୍‌ହଲ୍‌କୁ ଶୋଭାଯାତ୍ରା ଓ ସେଠି ସଭା ।

ଫେବୃଆରୀ ୩ ତାରିଖ । ରେଭେନ୍‌ସା କଲେଜ ପୁରାତନ ଛାତ୍ର ସଂସଦର ବାର୍ଷିକ ଅଧିବେଶନରେ ମୁଖ୍ୟ ଅତିଥିରୂପେ ଶ୍ରୀମତୀ ସରୋଜିନୀ ନାଇଡୁ ଆସିଥାନ୍ତି । ରେଭେନ୍‌ସା କଲେଜ ଇଉନିୟନ ପକ୍ଷରୁ ଆମେ ତାଙ୍କୁ ସଂବର୍ଦ୍ଧନା ଜଣାଇଥିଲୁ । ତାର କିଛିଦିନ ପୂର୍ବରୁ ବନମାଳୀ ପଟ୍ଟନାୟକ ଇଉନିୟନର ସଭାପତି ରୂପେ ନିର୍ବାଚିତ ହୋଇଥାଆନ୍ତି । ମୁଁ ଓ ସୁରଜମଲ୍ଲ ସାହା ଯଥାକ୍ରମେ ତାର ପ୍ରସ୍ତାବକ ଓ ସମର୍ଥକ ଥିଲୁ । ନୀଳମଣି ପସନ୍ଦ କରିନଥିଲା ସତ, କିନ୍ତୁ ସେଥିଯୋଗୁଁ ଆମ ଭିତରେ କୌଣସି ବିଭେଦ ସୃଷ୍ଟି ହୋଇନଥିଲା । ପୁଣି ସେହି ସଂଧ୍ୟାରେ ଆମେ ମୁଖ୍ୟ ଅତିଥିଙ୍କ ସମ୍ମାନାର୍ଥେ ଗୋଟିଏ ହାସ୍ୟରସପୂର୍ଣ୍ଣ ଏକାଙ୍କିକା ଅଭିନୟ କରିଥିଲୁ- ମୁଁ ନାୟକ

ଓ ନାୟିକା ଭୂମିକାରେ ସୁନୀଲକାନ୍ତି ଘୋଷ। ଖୁବ୍ ଲୋକପ୍ରିୟ ହୋଇଥିଲା। ପ୍ରଫେସର ଗୁରୁଚରଣ ମହାନ୍ତି ପ୍ରଶଂସା କରୁ କରୁ ଆଶୀର୍ବାଦ ଦେଇ କହିଲେ- ଜୀବନ ରଙ୍ଗମଞ୍ଚରେ ତୁମର ସଫଳତା କାମନା କରୁଛି।

ଶ୍ରୀମତୀ ସରୋଜିନୀ ଦେବୀଙ୍କର ତିନୋଟି ଭାଷଣ ମୁଁ ସେଦିନ ଶୁଣିଲି। 'ଭାରତର କୋକିଳ' ନାମରେ ସେ ପରିଚିତ ଥିଲେ। କୋକିଳ କଣ୍ଠରେ ପୁଣି ବିପ୍ଳବର ସ୍ୱର, ଅଗ୍ନିର ଝଙ୍କାର, ଆତ୍ମତ୍ୟାଗର ଆଗ୍ନେୟଗିରି ବିସ୍ଫୋରଣ। ଏମିତି ଶୁଣି ନ ଥିଲି କେବେ ବି ଆଜିଯାଏ ଶୁଣିନି।

ଫେବୃଆରୀ ୧୬ ତାରିଖ, ଦିନ ପ୍ରାୟ ତିନିଟା ହେବ। କଲେଜ ବାରଣ୍ଡାରେ ପରିଜା ସାହେବଙ୍କ ସହିତ ଦେଖାହେଲା। ଆମ ପରିବାରର ସମସ୍ତଙ୍କୁ ସେ ଜାଣିଥିଲେ। ନନାଙ୍କ ସହିତ ତାଙ୍କର ଭଲ ସଂପର୍କ ଥିଲା। ପରୀକ୍ଷାପାଇଁ କିପରି ପ୍ରସ୍ତୁତି ହୋଇଛି ବୋଲି ପଚାରିଲେ। କିଛି ସମୟ କଥାବାର୍ତ୍ତା ପରେ ମୁଁ ହଷ୍ଟେଲକୁ ଫେରିଲି।

ତାର ଘଣ୍ଟାକ ପର କଥା। ହଷ୍ଟେଲରେ ମୁଁ ପିଙ୍ଗପଙ୍ଗ ଖେଳୁଛି। ପ୍ରିନ୍‌ସପାଲଙ୍କ ଅଫିସରୁ ପିଅନ୍ ବୁକ୍‌ରେ ଚିଠି ପହଞ୍ଚିଲା। ପାଟଣା ବିଶ୍ୱବିଦ୍ୟାଳୟର ସିଣ୍ଡିକେଟ୍‌ର ନିଷ୍ପତ୍ତି ମୋତେ ଜଣାଇ ଦିଆଗଲା। ପ୍ରିନ୍‌ସପାଲଙ୍କ ବିନାନୁମତିରେ କଲେଜ ହତା ଭିତରେ ଜାତୀୟ ପତାକା ଉଡ଼ାଇ ମୁଁ ମସ୍ତବଡ଼ ଦୋଷ କରିଛି, ସେଥିପାଇଁ ପ୍ରିନ୍‌ସିପାଲଙ୍କ ସନ୍ତୋଷଜନକ ହେଲାଭଳି କ୍ଷମା ନ ମାଗିଲେ ଓ ଟ୨୫.୦୦ ଜୋରିମାନା ନ ଦେଲେ, ଆସନ୍ତା ବି.ଏ. ପରୀକ୍ଷା ଦେଇପାରିବି ନାହିଁ। ପିଅନ୍‌ବୁକ୍‌ରେ ନୀଳମଣିର ନାଁ ବି ଦେଖିଲି। ବୁଝିବାକୁ ବାକି ରହିଲା ନାହିଁ।

ପରିଜା ସାହେବଙ୍କ ସହିତ ଘଣ୍ଟାକ ତଳେ ଦେଖାହୋଇଥିଲା ଅଥଚ ସେ କିଛି କହିଲେ ନାହିଁ। ଅବାକ୍ ଲାଗିଲା। ନୀଳମଣି ସହିତ କଥାବାର୍ତ୍ତା କରିବାପାଇଁ ମୁଁ ପୂର୍ବ ଛାତ୍ରାବାସ ଆଡ଼େ ଧାଇଁଲା ବେଳକୁ ନୀଳମଣି ଏ ପଟକୁ ଦୌଡ଼ିଛି। ଲାଇବ୍ରେରୀ ପାଖରେ ଦେଖାହେଲା। ନିଷ୍ପତ୍ତି ନେବାକୁ ସମୟ ଲାଗିଲା ନାହିଁ। ଆମେ ଆମର କର୍ତ୍ତବ୍ୟ କରିଛୁ, କୌଣସି ଦୋଷ କରିନୁ, ଆମକୁ ଦଣ୍ଡ ଦେବାର ଅଧିକାର କାହାରି ନାହିଁ, କ୍ଷମା ମାଗିବା ବା ଜୋରିମାନା ଦେବାର ପ୍ରଶ୍ନ ଉଠୁ ନାହିଁ।

ନିଷ୍ପତ୍ତି ପରେ ମନଟା ହାଲୁକା ହୋଇଗଲା। ସିନେମା ଦେଖି ଚାଲିଗଲି।

ସିନେମାରୁ ଫେରିଲାବେଳକୁ ଟେନିସ୍‌କୋର୍ଟ କଂପୁଛି। ରାମକୃଷ୍ଣ ପତି, ବିଶ୍ୱନାଥ ପଣ୍ଡାୟତ, ବୈଦ୍ୟନାଥ ରଥ, ଅନନ୍ତ ପଟ୍ଟନାୟକ, ସଚ୍ଚି ରାଉତରାୟ, ଅଶୋକ ଦାସ, ଗଙ୍ଗାଧର ମହାପାତ୍ର, ମନମୋହନ ମିଶ୍ର, ସୁରଜମଲ୍ଲ ସାହା, ବିଜୟଚନ୍ଦ୍ର ଦାସ, ଗଙ୍ଗାଧର ମହାପାତ୍ର, ମନମୋହନ ମିଶ୍ର, ସୁରଜମଲ୍ଲ ସାହା, ବିଜୟଚନ୍ଦ୍ର ଦାସ, ବନମାଳୀ ପଟ୍ଟନାୟକ, ଦୁର୍ଗାଚରଣ ମହାନ୍ତି ଓ ରାମଚନ୍ଦ୍ର ମିଶ୍ର ପ୍ରଭୃତି ବନ୍ଧୁ ସାଥୀ ପହଞ୍ଚିଗଲେଣି। ସେମାନଙ୍କ ମଧ୍ୟରୁ କେତେକ

ସେତେବେଳକୁ କଲେଜ ଛାଡ଼ି ସାରିଥିଲେ, କିନ୍ତୁ ଛାତ୍ର ଓ ଯୁବ ଆନ୍ଦୋଳନ ସହିତ ଘନିଷ୍ଠଭାବେ ସଂପୃକ୍ତ ଥିଲେ।

ସମସ୍ତେ ଉତ୍ତ୍ୟକ୍ତ। ଏ ଆଦେଶନାମାର କ'ଣ କିଛି ଦର୍କାର ଥିଲା ? ପତାକା ଓଜନରେ କଲେଜ ଛାତ କଣ ଭୁଶୁଡି ପଡ଼ିଲା ? କେତେକ ଛାତ୍ରଙ୍କ ଶାନ୍ତିପୂର୍ଣ୍ଣ ଶୋଭାଯାତ୍ରା ଓ ସଭାରେ ଏତେ କୋକୁଆ ଭୟ। ତୁମେ ବିଶ୍ୱବିଦ୍ୟାଳୟ- ଆମକୁ ଗଢ଼ିବା ଦାୟିତ୍ୱ ତୁମ ହାତରେ। ପିଠି ଥାପୁଡ଼େଇ ଆମକୁ ସାବାସ ଦେବା କଥା, ଯଦି ସେଥିପାଇଁ ସାହସ ନାହିଁ, ତୁନି ରହିଥାନ୍ତ, ଘଟଣାକୁ ନକରକୁ ନ ନେଇ ବୁଦ୍ଧିମତ୍ତାର ପରିଚୟ ଦେଇଥାନ୍ତ। ହାୟରେ ଦୁର୍ଭାଗା ଦେଶ ! ବିଶ୍ୱବିଦ୍ୟାଳୟ ମଧ୍ୟ ରାଜସ୍ତୁତି-ଗାନରେ ବ୍ୟସ୍ତ- ଯାହାର ଭାଇସ୍-ଚାନସେଲର ଭାରତର ପ୍ରତିଷ୍ଠିତ ବ୍ୟକ୍ତିମାନଙ୍କ ମଧ୍ୟରେ ଅନ୍ୟତମ ଡକ୍‌ଟର ସଚ୍ଚିଦାନନ୍ଦ ସିହ୍ନା। ସାର୍ଟିଫିକେଟ୍ ଦସ୍ତଖତ କଲାବେଳେ ସେ ପରକଲମ ବ୍ୟବହାର୍ କରୁଥିଲେ। କଲମକୁ ଖୁବ୍ ମାଡ଼ି ଓ ଲମ୍ବେଇ ସେ ଲେଖନ୍ତି। ଗୋଟେ ଦସ୍ତଖତରେ ଗୋଟେ ପରକଲମ ଭାଙ୍ଗିଯାଏ। ସେଥିପାଇଁ ଟେବୁଲ ଉପରେ ଯେତିକି ସାର୍ଟିଫିକେଟ୍‌କୁ ସେତିକି କଲମ ସଜା ହୋଇ ଥୁଆହୋଇଥାଏ। ଯାହାର ଗୋଟେ ଦସ୍ତଖତରେ ଗୋଟେ କଲମ ଭାଙ୍ଗିଯାଏ, ସେ ପୁଣି ଏମିତି ହେଲେ କେମିତି ?

ଆମ କୋଠା ଉପରେ ଆମ ପତାକା ଆମେ ଉଡ଼ାଇବୁ- ବାଧା ଦେବାର ଅଧିକାର ତୁମର ନାହିଁ। ତୁମର ବାଧା ଅନ୍ୟାୟ। ଅନ୍ୟାୟ କରିବା ଯେତିକି ପାପ, ଅନ୍ୟାୟକୁ ପ୍ରଶ୍ରୟ ଦେବା ତାଠାରୁ କିଛି ଊଣା ନୁହେଁ। ଆମେ ମାନିବୁ ନାହିଁ। ସମସ୍ୱରରେ ପ୍ରତିବାଦ କଣାଉଛୁ ଅବିଳମ୍ବେ ଆଦେଶନାମା ପ୍ରତ୍ୟାହାର କରି ନିଜ ଭୁଲକୁ ସୁଧାର।

ତହିଁ ପରଦିନଠାରୁ ଧର୍ମଘଟ କରିବାକୁ ନିଷ୍ପତ୍ତି ହେଲା। ରାତିରେ ହଷ୍ଟେଲ ଛାତ୍ରମାନଙ୍କୁ କହିଦେଇହେବ ଓ ସକାଳେ କଲେଜ ସାମନା ଦୁଇଫାଟକ ଆଗରେ ଦୁଇ ଦଳ ଛିଡ଼ାହୋଇଯିବେ ନିଷ୍ପତ୍ତି କଣାଇବାପାଇଁ।

ସଂପୂର୍ଣ୍ଣ ହରତାଳ। ଆମର ମଧ୍ୟ କିଛି ସଂଦେହ ନ ଥିଲା। କାହାକୁ କିଛି ବୁଝାଇବା ଦରକାର ପଡ଼ିଲା ନାହିଁ। ସମସ୍ତେ ବୁଝିଛନ୍ତି- ଆମ ବଞ୍ଚିରହିବାର ଅଧିକାର ଉପରେ ଏ ଅଯଥା ଆକ୍ରମଣ। ପ୍ରତିବାଦ କରିବାକୁ ହେବ, କେହି ନ ଶୁଣିଲେ ପ୍ରତିରୋଧର ପନ୍ଥା ଗ୍ରହଣ କରିବାକୁ ହେବ।

ଦିନେ.... ଦୁଇଦିନ... ତିନିଦିନ। କ୍ଲାସ ସବୁ ଖାଲି ପଡ଼ିଛି। ସବୁ ଛାତ୍ର ଏକାଠି ହୋଇଛନ୍ତି ଟେନିସ୍‌କୋର୍ଟରେ, ସଭା ଚାଲିଛି, ମୁହଁରେ ଆତ୍ମସମ୍ମାନର ଦୀପ୍ତି। ସ୍ୱରରେ ବଜ୍ରର ଦୃଢ଼ତା ଓ ମନରେ ପୃଥିବୀ ଫଟା ସାହସ। କଲେଜର ଛାତ୍ରସମାଜ ନିଜକୁ ଏକ ଦୁର୍ଦ୍ଧର୍ଷ ସେନାବାହିନୀ ରୂପେ ସଂଗଠିତ କରିଛି- ସେ ମାଡ଼ିଚାଲିବ ଆଗକୁ। ତା'ର ପ୍ରତ୍ୟେକ ପଦକ୍ଷେପରେ ସୀମାବଦ୍ଧତାର ପ୍ରାଚୀର କରୁଣ ଚିତ୍କାର କରିଉଠିବ।

ଶିକ୍ଷକମାନଙ୍କୁ କ୍ଲାସକୁ ନ ଛାଡ଼ିବାପାଇଁ କେତେକ ଛାତ୍ର ଦୁଆରମୁହଁରେ ଶୋଇଗହନ୍ତି, ଶିକ୍ଷକମାନେ ଦୁଆରମୁହଁ ପର୍ଯ୍ୟନ୍ତ ଆସି ପୁଣି ଫେରିଯାନ୍ତି । କେବଳ ପ୍ରଫେସର ବିପିନ୍‌ବିହାରୀ ରାୟ୍ ଆସିଲେ ନାହିଁ । ପରିକାପାହେବ ତାଙ୍କୁ ସେଥିପାଇଁ କୈଫିୟତ ମାଗିଥିଲେ । ବିପିନବାବୁ ଉଦାରଚେତା, ନିର୍ଭୀକ ଓ ଛାତ୍ରସ୍ନେହୀ । ସେ ଉତ୍ତର ଦେଇଥିଲେ ଯେ ପିଲାଙ୍କ ପିଠି ଉପରେ ଚଢ଼ି କ୍ଲାସକୁ ଯିବା ପ୍ରଶ୍ନ ନ ଉଠିବାବେଳେ ଦୁଆରମୁହଁ ପର୍ଯ୍ୟନ୍ତ ଯାଇ ପୁଣି ଫେରିଆସିବାର ପ୍ରହସନ କାହିଁକି ?

ଧର୍ମଘଟ ଚାଲୁରହିବାରେ କଲେଜ କର୍ତ୍ତୃପକ୍ଷ ଶଙ୍କିତ ହୋଇପଡ଼ିଲେ । କେତେକ ଅଭିଭାବକ ସମାଧାନ ଉଦ୍ୟମରେ ଲାଗିପଡ଼ିଲେ । ମୋ ନନା ଓ ପାଟଣା ହାଇକୋର୍ଟର ବିଚାରପତି ସୁବୋଧଚନ୍ଦ୍ର ଚାଟାର୍ଜୀ ସେମାନଙ୍କ ମଧ୍ୟରେ ଅନ୍ୟତମ । କ୍ଷମା ମାଗିଲେ ଜୋରିମାନା ଛାଡ଼ିଦିଆଯିବ ବା ଜୋରିମାନା ଦେଇଦେଲେ କ୍ଷମା ମାଗିବାକୁ ପଡ଼ିବ ନାହିଁ ବୋଲି ଆମକୁ କୁହାଗଲା । ଆମେ ରାଜି ହେଲୁ ନାହିଁ- କ୍ଷମା ମାଗିବୁ ନାହିଁ ବା ଜୋରିମାନା ଦେବୁ ନାହିଁ; ଏ ଅନ୍ୟାୟ ଆଦେଶ ପ୍ରତ୍ୟାହୃତ ନ ହେବା ପର୍ଯ୍ୟନ୍ତ ଧର୍ମଘଟ ଚାଲୁ ରହିବ । ସମାଧାନ ଉଦ୍ୟମ ବିଫଳ ହେଲା । ନନା ପୁରୀ ଫେରିଗଲେ ।

ତା ପରେ, ସରକାର ଦୃଢ଼ ନୀତି ଅବଲମ୍ବନ କଲେ । ଧର୍ମଘଟ ଭାଙ୍ଗିବାପାଇଁ ସବୁ ଉଦ୍ୟମ ଆରମ୍ଭ ହୋଇଗଲା । ପ୍ରିନ୍‌ସିପାଲଙ୍କ ବିନାନୁମତିରେ କ୍ରମାଗତ ତିନିଦିନ କ୍ଲାସରୁ ଅନୁପସ୍ଥିତ ରହିଥିବା ଅଭିଯୋଗରେ ସବୁ ଛାତ୍ରଙ୍କ 'ନାଁ' କାଟିଦିଆଗଲା । କଲେଜରେ ଆଉ ଛାତ୍ର ନାହାନ୍ତି, ଖାଲି ମାଳ ମାଳ ଶିକ୍ଷକ । ପୁଣି, ଆମେ ଆଉ ଛାତ୍ର ନୋହୁଁ- ଏହି ଯୁକ୍ତିରେ ଚବିଶଘଣ୍ଟା ମଧ୍ୟରେ ହଷ୍ଟେଲରୁ ବାହାରିଯିବାକୁ ଆଦେଶ ମିଳିଲା- ତା ନ ହେଲେ, 'କ୍ରିମିନାଲ-ଟ୍ରେସପାସ୍' ଅଭିଯୋଗରେ ଗିରଫ କରାଯିବ ବୋଲି ଧମକ ଦିଆହେଲା ।

ଧମକକୁ ଡର ନାହିଁ, ହଷ୍ଟେଲ ଛାଡ଼ିବୁ ନାହିଁ । ତୁମ ଅନ୍ୟାୟ ଅତ୍ୟାଚାରରେ ପରିଣତ ହୋଇଛି । ଆମେ ଛାତ୍ର, ଆମ ଯୋଗୁଁ ଏ କଲେଜ, ତୁମେ ପ୍ରଫେସର ଦଳ ଓ ଏହି ବିଶ୍ୱବିଦ୍ୟାଳୟ । ଆମ ସ୍ଥିତିକୁ ତମେ ଅସ୍ୱୀକାର କଲେ, ତୁମ ସ୍ଥିତି ଆମେ ମାନିବୁ ନାହିଁ ।

ବିଜୁଳି, ପାଣିଯୋଗାଣ ବ୍ୟବସ୍ଥା କାଟିଦିଆଗଲା । ହଷ୍ଟେଲ ମେସ୍ ବନ୍ଦ କରିଦେବାକୁ ନିର୍ଦ୍ଦେଶ ଦିଆଗଲା । ଯେତିକି ମାଡ଼ ପଡ଼ିଲା, ତା ଆମକୁ ଭାଙ୍ଗିଦେବା ପରିବର୍ତ୍ତେ ଅଧିକ ଟାଣ କରିଦେଲା । ଅନ୍ଧାର ଆମକୁ ଭୟଭୀତ କରିପାରିଲା ନାହିଁ । କଲେଜ କଂପାଉଣ୍ଡ ଭିତରେ ସାରାରାତି ବଡ଼ ବଡ଼ ନିଆଁହୁଳା ଜଳି ରାସ୍ତାର ବିଜୁଳି ଆଲୁଅକୁ ଉପହାସ କଲା । ହାତରେ ନିଆଁହୁଳା ଧରି ଶୋଭାଯାତ୍ରା, ରାତିରେ ହୁଳା-ଆଲୁଅତଳେ ଟେନିସ୍-କୋର୍ଟରେ ସଭା । କଟକ ସହରରେ ନାହିଁନଥିବା ଉନ୍ମାଦନା । କେତେ ମାଗଣା ଖାଇବାକୁ ମିଳୁଛି, କେତେ ପାନ, ବିଡ଼ି,

ସିଗାରେଟ୍- ନ ନେଲେ ଲୋକେ ଦୁଃଖିତ ହେଉଛନ୍ତି । ଏ ସ୍ନେହ, ଶ୍ରଦ୍ଧା, ସହାନୁଭୂତି ଆମକୁ ଦେଇଗଲା ଅଭିନବ ପ୍ରେରଣା । ଏମିତି ଦିନେ ରାତିରେ ଟେନିସ୍‌କୋର୍ଟ ସଭାରେ ରେଭେନ୍‌ସା କଲେଜ 'ସାଧାରଣତନ୍ତ୍ର' ହେଲା ବୋଲି ଘୋଷଣା କରାଗଲା । ପରାଧୀନ ଭାରତରେ 'ସାଧାରଣତନ୍ତ୍ର' ରେଭେନ୍‌ସା କଲେଜ । ପୁଣି ୨୪ଘଣ୍ଟା ପରେ କଲେଜ ହତା ଭିତରେ ରହୁଥିବା ପ୍ରଫେସରମାନେ କଲେଜ ଭିତରେ ଯା'ଆସ କରି ପାରିବେ ନାହିଁ ବୋଲି ଆଦେଶ ଦିଆଗଲା । ଅକାଟ୍ୟ ଯୁକ୍ତି- ଆମ ଯୋଗୁଁ ତୁମେ, ଆମର ଏଠି ରହିବାର ଅଧିକାର ନାହିଁ, ତୁମର ଆସିବ କେଉଁଠୁ ? ତୁମେ ଆମକୁ ଅସ୍ୱୀକାର କରିଛ, ଆମେ ତୁମକୁ ଅସ୍ୱୀକାର କରିବୁ । ଆମର ତୁମ ବିରୋଧରେ ବ୍ୟକ୍ତିଗତ ଭାବେ କୌଣସି ଅଭିଯୋଗ ନାହିଁ, ଅଭିଯୋଗ ସଂସ୍ଥା ବିରୋଧରେ ଯାହାର ପ୍ରତିନିଧି ତୁମେ । ସେଥିପାଇଁ ତୁମକୁ ଏ ନୋଟିସ, ଆମକୁ ଭୁଲବୁଝିବ ନାହିଁ । ଏଣିକି ଏ ହତାଭିତରେ ଆମ ଶାସନ ଚାଲିବ, ଆମେ ଆଦେଶନାମା ଜାରି କରିବୁ ।

ପରିଜାସାହେବ ନିଜ କ୍ୟାଣ୍ଟନମେଣ୍ଟ ଘରକୁ ଚାଲିଗଲେ । ପ୍ରଫେସରମାନଙ୍କର କଲେଜ ହତାଭିତରେ ଯା'ଆସ ବନ୍ଦ ହୋଇଗଲା । ଅର୍ଥନୀତି ବିଭାଗର ମୁଖ୍ୟ ପ୍ରଫେସର ଭୈରବନାଥ ରୋହତ୍‌ଗୀ, ଅଭ୍ୟାସ ଦୋଷବଶତଃ, ଦିନେ ହଷ୍ଟେଲ ବାରଣ୍ଡାରେ ଯାଉଯାଉ ସୁରଜମଲ୍ଲ ସାହାଙ୍କ ହାବୁଡ଼ରେ ପଡ଼ିଗଲେ । ସେଇଠି ତାଙ୍କୁ ରହିଯିବାକୁ ହେଲା । ସାଧାରଣତନ୍ତ୍ରର ଆଦେଶ-ଅମାନ୍ୟକୁ ବରଦାସ୍ତ କରାଯାଇ ନ ପାରେ । ସୁରଜ ରାଗରେ ଚିତ୍କାର କରୁଥାଏ ଓ ନିଜ ଛାତିକୁ ପିଟିପକାଉଥାଏ । ଠିକ୍ ସେତିକିବେଳକୁ ମୁଁ ପହଞ୍ଚିଗଲି । ମୁଁ ନ ଥିଲେ ସୁରଜକୁ ପୁଣି ଶାନ୍ତ କରିବ କିଏ ?

ହଠାତ୍ ଦିନେ ଅଶୋକ ଦାସ, ସଚ୍ଚି ରାଉତରାୟ ପ୍ରଭୃତିଙ୍କୁ 'କ୍ରିମିନାଲ ଟ୍ରେସପାସ୍' ଅଭିଯୋଗରେ ଗିରଫ କରିନିଆହେଲା । ସେତେବେଳକୁ ସେମାନେ ଛାତ୍ର ନ ଥିଲେ, ସୁତରାଂ କଲେଜ ହତା ଭିତରେ ପ୍ରବେଶ କରିବାର ଅଧିକାର ତାଙ୍କର ନାହିଁ । ଏହି ଉଦ୍ଦେଶ୍ୟରେ କ'ଣ ଆଇନ ତିଆରି ହୋଇଥିଲା ? ଦୁଇଜଣ ଛାତ୍ରଙ୍କୁ ପରୀକ୍ଷାରୁ ବଂଚିତ କରିବାପାଇଁ ତୁମ ଅନ୍ୟାୟ ଆଦେଶ ବିରୋଧରେ ଆମେ ପ୍ରତିବାଦ କରିଥିଲୁ, ଆଦେଶ ଓ୍ୱାପଶ ନେଇଯିବାକୁ ଦାବି କରିଥିଲୁ, କିନ୍ତୁ ତୁମେ ତା କରିବା ବଦଳରେ ଆମ ଉପରେ ସବୁପ୍ରକାର ଅତ୍ୟାଚାର ଚଳାଇଛ । ତୁମେ ଆମକୁ ଭାଙ୍ଗିପାରିବ ନାହିଁ, ଆମେ ସବୁପ୍ରକାର ମୁକାବିଲା ପାଇଁ ପ୍ରସ୍ତୁତ । ବର୍ତ୍ତମାନ ବି ସମୟ ଅଛି, ତୁମ ଆଦେଶକୁ ପ୍ରତ୍ୟାହାର କରିନେଇ କଲେଜକୁ ଶାନ୍ତି ଫେରାଅ- ତା ନ ହେଲେ ଆମେ କେହି ଆଇ.ଏ. ବା ବି.ଏ. ପରୀକ୍ଷା ଦେବୁ ନାହିଁ ।

ଧର୍ମଘଟରୁ ଆରମ୍ଭ ହୋଇ ପରିସ୍ଥିତି ବିଶ୍ୱବିଦ୍ୟାଳୟ ପରୀକ୍ଷାବର୍ଜନରେ ପହଞ୍ଚିଲା । 'ପରୀକ୍ଷା ପ୍ରବେଶପତ୍ର ଦହନ' ନିଷ୍ପତ୍ତି ନିଆଗଲା । କଲେଜ ଅଫିସ୍ ସାମନା ଏକ ସ୍ୱତନ୍ତ୍ର ଉତ୍ସବରେ ପ୍ରତ୍ୟେକ ଛାତ୍ର କଳନ୍ତାନିଆଁରେ ନିଜ ପ୍ରବେଶପତ୍ର ପକାଇଦେଲେ । ଅଗ୍ନିର ଲେଲିହାନ୍

ଜିହ୍ୱାରେ ଯତେ ଯେମିତି ପାଟଣା ବିଶ୍ୱବିଦ୍ୟାଳୟର ସୁନାମ ଓ ମହତ୍ତ୍ୱ ଜଳିପୋଡ଼ି ପାଉଁଶ ହୋଇଗଲା । ବାସ୍ତବିକ୍ ଏକ ଉତ୍ସବ ଯେ- କି ଉନ୍ମାଦନା, କି ଜୟଜୟକାର- ଆମେ ଛାତ୍ରସମାଜ, ଆମେ ଧ୍ୱଂସକାରୀ, ଆମେ ସୃଜନକାରୀ, ଆମେ ଏକ, ଅବିଚ୍ଛିନ୍ନ, ଅଭେଦ୍ୟ ।

ଫେବୃଆରୀ ୨୫ ତାରିଖ । କଟକ ସହର ପୁଲିସ ଛାଉଣୀରେ ପରିଣତ ହୋଇଛି । ପେଶୱାରରୁ ସଶସ୍ତ୍ର ପୁଲିସବାହିନୀ ମଗାଯାଇଛି । ଆମେ ଖବର ପାଇଲୁ ଯେ ରାତିଅଧିଆ ହଷ୍ଟେଲକୁ ଘେରାଉକରି ସରକାରୀ କର୍ମଚାରୀଙ୍କ ପିଲାମାନଙ୍କୁ ଜବରଦସ୍ତି ପରୀକ୍ଷା ଦେବାକୁ ବାଧ୍ୟ କରାଯିବ । ସରକାରୀ ଉଦ୍ୟମକୁ ପଣ୍ଡ କରିବାପାଇଁ ସଂଧ୍ୟାସୁଦ୍ଧା ଦୁଇ ହଷ୍ଟେଲ ଖାଲି କରିଦେବାକୁ ଆମେ ନିଷ୍ପତ୍ତି କଲୁ । ସେତେବେଳେ ଓଡ଼ିଆବଜାରର ଜାନକୀନାଥ ଭବନରେ ପ୍ରାଦେଶିକ କଂଗ୍ରେସ କମିଟି ଅଫିସ ଥାଏ । ସମସ୍ତେ ସେଇଠିକୁ ଯିବୁ ବୋଲି ନିଷ୍ପତ୍ତି ହେଲା ।

ସେ ସଂଧ୍ୟା ମନରେ ଅଲିଭାଦାଗ ରଖିଯାଇଛି । କେତେ ଉଚ୍ଚପଦସ୍ଥ ସରକାରୀ କର୍ମଚାରୀ ଚାକିରି ଚାଲିଯିବା ଭୟରେ ନିଜ ପିଲାଙ୍କୁ ବୁଝାଇଶୁଝାଇ ସାଙ୍ଗରେ ଘରକୁ ନେଇଯିବାକୁ ଆସିଲେ, କିନ୍ତୁ କେହି ଜଣେହେଲେ ଛାତ୍ର ଗଲେ ନାହିଁ । ସେତେବେଳକୁ ସେମାନେ ବ୍ୟକ୍ତିଗତ ପ୍ରଶ୍ନର ବିଚାରର ଦୂରରେ, ବହୁ ଉପରେ । ଛାତ୍ରସମାଜ ଭିତରେ 'ମୁଁ ଆଉ ତୁମେ'ର ବିଭେଦ ନାହିଁ । ସଂଧ୍ୟା ହୋଇଆସୁଛି, ଜଣେ ଜଣେ କରି ଛାତ୍ର ନିଜ ବେଡିଂ କାନ୍ଧରେ ପକାଇ ଟେନିସ୍‌କୋର୍ଟରେ ଏକାଠି ହେଉଛନ୍ତି, ସେଇଠୁ ସମସ୍ତେ ଶୋଭାଯାତ୍ରାରେ ଜାନକୀନାଥ ଭବନ ଯିବେ । ପଶ୍ଚିମ ଛାତ୍ରାବାସର ସୁପରିନ୍‌ଟେଣ୍ଡେଣ୍ଟ, ଇତିହାସ ବିଭାଗର ମୁଖ୍ୟ ପ୍ରଫେସର ଘନଶ୍ୟାମ ଦାସ ଗେମସ୍‌ରୁମ୍‌ର ପିଙ୍ଗପଙ୍ଗ ଟେବୁଲ ଉପରେ ମୂକ ପରି ବସିଥାନ୍ତି । ଛାତ୍ରମାନେ ବିଦାୟ ନେଲାବେଳେ ତାଙ୍କ ଆଖିରୁ ଧାରଧାର ଲୁହ ବୋହିଯାଉଥାଏ ।

ସମସ୍ତେ ଚାଲିଗଲେଣି । ପଶ୍ଚିମ ଛାତ୍ରାବାସରେ ଏକା ପ୍ରଫୁଲ୍ଲ କୁମାର ପତି ଅଛନ୍ତି । ପ୍ରଫୁଲ୍ଲ ଜଣେ ମେଧାବୀ ଛାତ୍ର । ସମ୍ବଲପୁରରୁ ମାଟ୍ରିକୁଲେସନ୍ ବୃତ୍ତି ପାଇ ଆସିଛି । ତହିଁପରଦିନ ଆଇ.ଏ. ପରୀକ୍ଷା ଦେବ । ନିଶ୍ଚୟ ବୃତ୍ତି ପାଇବ ବୋଲି ସମସ୍ତେ ଧରିନେଇଛନ୍ତି । ପ୍ରଫେସର ଘନଶ୍ୟାମ ଦାସ ତାର ମୁରବି, ତାଙ୍କ ଅନୁମତି ନ ପାଇ ସେ ହଷ୍ଟେଲ ଛାଡ଼ିନି ।

ପ୍ରଫୁଲ୍ଲକୁ ମୁଁ ଖୁବ୍ ସ୍ନେହ କରୁଥିଲି । ତା ବଡ଼ଭାଇ ଲଳିତ କୁମାର ପତି ମୋର ଜଣେ ଘନିଷ୍ଠ ବନ୍ଧୁ ଥିଲେ । ପ୍ରଫୁଲ୍ଲ ମଧ୍ୟ ମୋତେ ଶ୍ରଦ୍ଧା ଓ ସମ୍ମାନ କରୁଥିଲା । ତା' ଠାରୁ ବିଦାୟ ନେବାପାଇଁ ମୁଁ ତା ରୁମ୍‌କୁ ଗଲାବେଳକୁ ସେ ଖଟ ଉପରେ ବସି ସାନପିଲାଙ୍କ ପରି କଇଁକଇଁ ହୋଇ କାନ୍ଦୁଛି । ମୁଁ କିଛି କହିବା ପୂର୍ବରୁ ସେ ମୋ ହାତକୁ ଜାବୋଡ଼ି ଧରିଲା- 'ମୁଁ ଆଉ ସହିପାରୁନି, ମୋତେ ସାଙ୍ଗରେ ନେଇଯାନ୍ତୁ'- କି ଆକୁଳ ଅନୁରୋଧ, ଜମାଟବନ୍ଧା ଲୁହ ବରଫ ତରଳିଲା ପରି ବୋହିଯାଉଥାଏ ।

ମୁଁ ଇତିହାସ ଛାତ୍ର ଥିଲି । ପ୍ରଫେସର ଘନଶ୍ୟାମ ଦାସ ମୋତେ ନିଜ ପୁଅପରି ସୁଖ ପାଉଥିଲେ । ମୁଁ ତାଙ୍କଠୁ ବିଦାୟ ନେଲାବେଳକୁ ମୋତେ ନିଜ ଛାତିରେ ଜୋର୍‌ରେ ଜାକିପକାଇଲେ । ଛାତି ଜୋର୍‌ରେ ପଡୁଛି ଓ ଉଠୁଛି । ନ ଦେଖିଲେ ମଧ୍ୟ, ସେ ନିଜକୁ ସଂଭାଳିବା ପାଇଁ ଯଥାସାଧ୍ୟ ଉଦ୍ୟମ କରୁଛନ୍ତି ବୋଲି ବୁଝିପାରିଲି । ନିଶ୍ୱାସ ବନ୍ଦହୋଇ ଆସୁଥିଲା, ନିଜକୁ ଛିଣ୍ଡାଇ ନେଲାପରି ବାହାରକୁ ଚାଲିଆସିଲି, ପଛକୁ ଆଉ ଅନେଇ ନାହିଁ ।

ଟେନିସ୍‌କୋର୍ଟରୁ ଆରମ୍ଭ ହେଲା ଶୋଭାଯାତ୍ରା । ହାତରେ ମଶାଲର ନିଆଁ, ମନରେ ବିପ୍ଲବର ନିଆଁ, ଚାରିଆଡ଼େ ନିଆଁଖେଳ, ହୁଏତ ଜାଳିପୋଡ଼ି ଦେବ ନଚେତ୍ ଜଳିପୋଡ଼ିଯିବ । ଶହ ଶହ ଦର୍ଶକ ରୁଣ୍ଡ ହୋଇଛନ୍ତି ବିଜୟ କାମନା କରି- କିଏ ଫୁଲମାଳ ପିନ୍ଧେଇ ଦେଉଛି ତ କିଏ ସିନ୍ଦୂରଟୀକା ଲଗାଇଦେଉଛି । ପାନ, ବିଡ଼ି, ସିଗାରେଟ୍‌ର ବି ଗଦା-ବିଡ଼ା । 'ଇନ୍‌କିଲାବ-ଜିନ୍ଦାବାଦ' ସ୍ଲୋଗାନରେ ବାୟୁମଣ୍ଡଳ ଫାଟିପଡୁଛି ।

ଶୋଭାଯାତ୍ରା ବାହାରିବା ପରେ ମୁଁ ଓ ବୈଦ୍ୟନାଥ ରଥ ମେଡ଼ିକାଲ ସ୍କୁଲ ହଷ୍ଟେଲକୁ ଗଲୁ । ୧୯୩୯ର ମେଡ଼ିକାଲ ସ୍କୁଲ ଧର୍ମଘଟ ଦିନଠାରୁ ଆମେ ସମସ୍ତେ ସହଯୋଗୀଭାବେ କାମ କରୁଥିଲୁ । ଆମ ଆନ୍ଦୋଳନରେ ସେମାନେ ସହଯୋଗ କରୁଥାନ୍ତି । ତହିଁ ପରଦିନ କର୍ମପନ୍ଥା ବିଷୟରେ ଆଲୋଚନା କରିବା ଆମ ଯିବାର ଉଦ୍ଦେଶ୍ୟ । ଆଲୋଚନା ପରେ ମେଡ଼ିକାଲସ୍କୁଲର ମଙ୍ଗଳାବାଗ୍ ଗେଟ ଦେଇ ବାହାରିଲାବେଳକୁ ପୁଲିସ ଭ୍ୟାନ ସହିତ ଲାଲବାଗ ପୁଲିସ-ଇନ୍‌ସପେକ୍‌ଟର ଶ୍ରୀପତି ନନ୍ଦ ଗିରଫ ପରୱାନା ଧରି ଅପେକ୍ଷା କରିଛନ୍ତି । ପ୍ରଥମେ ଆମେ ଦୁହେଁ ଗିରଫ ହେଲୁ ।

ପୁଲିସଭ୍ୟାନ୍ ମଙ୍ଗଳାବାଗ ଦେଇ ଗଲାବେଳକୁ ରାସ୍ତାରେ ଛାତ୍ର ଶୋଭାଯାତ୍ରା ରହିଛି । ଆମକୁ ଦେଖି ଭ୍ୟାନକୁ ସେମାନେ ଘେରିଗଲେ । ଆମେ ଭ୍ୟାନ୍‌ରୁ ଓହ୍ଲାଇଲୁ । ଶ୍ରୀପତିବାବୁ ପ୍ରଥମେ ଅମଙ୍ଗ ହେଉଥିଲେ, କିନ୍ତୁ ଅବସ୍ଥା ଦେଖି କିଛି କହିଲେ ନାହିଁ । ସମସ୍ତେ ଝୁଲିପଡ଼ିଛନ୍ତି ଆଗକୁ ନିଜ ଛାତିରେ ଆମକୁ ଭିଡ଼ିଧରିବାପାଇଁ । ଚାରିଆଡ଼େ ଅସଂଖ୍ୟ ହାତମାଳ ମଝିରେ ମୁଁ ବନ୍ଦୀ, ଗଳାଫଟା 'ଭାଇନା ଜିନ୍ଦାବାଦ' ସ୍ଲୋଗାନ । ଏତେ ସ୍ନେହ ଓ ଆଦରରେ ମୁଁ ବେଦମ୍ ହୋଇପଡ଼ିଲି । ସ୍ଲୋଗାନ୍ ଦେଇ ଓ ବକ୍ତୃତା କରି କରି ତଣ୍ଟି ଖୋଲୁନଥିଲା । ତଥାପି କିଛି କହିବାକୁ ହେବ । ବିଚ୍ ରାସ୍ତା ଉପରେ ବକ୍ତୃତା ଆଗରୁ ଅଭ୍ୟାସରେ ପଡ଼ିଯାଇଥିଲା । କହିଲି, ଶେଷ ନିଷ୍ପତ୍ତି କଥା ମନେ ପକାଇ ଦେଲି-ହତାଶାର ସ୍ଥାନ ନାହିଁ, ଶେଷ ସୈନିକ ଥିବା ପର୍ଯ୍ୟନ୍ତ ଲଢ଼େଇ ଚାଲିବ । ସରକାର ଯଦି ଜବରଦସ୍ତି ପୁଲିସଭ୍ୟାନ୍‌କୁ କଲେଜ ହତା ଭିତରକୁ ନେବାକୁ ଚାହାନ୍ତି, ତେବେ ଛାତ୍ରଙ୍କ ଛାତିଉପରେ ସେ ଭ୍ୟାନ ଚାଲୁ । ଆମେ ପ୍ରସ୍ତୁତ ବୋଲି ସମସ୍ୱରରେ ଜବାବ ମିଳିଲା । ସ୍ଲୋଗାନ ଉପରେ ସ୍ଲୋଗାନ ଚାଲିଲା । ରାସ୍ତାରେ ଲୋକଭିଡ଼ ହୋଇଗଲା । ଚଞ୍ଚଳ

ଚାଲିନଗଲେ ଅବସ୍ଥା ଅଣଆୟତ୍ତ ହୋଇପଡ଼ିବ ବୋଲି ଅଭିଜ୍ଞ ପୋଲିସ ଅଫିସର ଶ୍ରୀପତିବାବୁ ବୁଝି ଭ୍ୟାନ୍‌ଭିତରକୁ ଯିବାକୁ ଇସାରା ଦେଲେ। ସେ କଣ ଡରୁଛନ୍ତି ମୁଁ ବୁଝିପାରିଲି। ସମସ୍ତ ଶକ୍ତି ସଂଚିତ ହୋଇ ରହୁ କାଲି ପର୍ଯ୍ୟନ୍ତ, ଆଜି ରାତିରେ ଅଯଥା ଅପଚୟ ନ ହେଉ। ଛାତ୍ରମାନେ ଛାଡ଼ିବାକୁ ନାରାଜ। ସେମାନଙ୍କୁ ବୁଝେଇଶୁଝେଇ ଆମେ ଭ୍ୟାନ୍‌ରେ ଚଢ଼ିଲୁ। ଭ୍ୟାନ୍ ଚାଲିଥାଏ, ସ୍ଲୋଗାନ ଦେଇ ଛାତ୍ରମାନେ ପଛରେ ଦୌଡ଼ୁଥାନ୍ତି- ଗାଡ଼ିଚକ ତଳେ ପଡ଼ିଯିବେ ପରା। ମୋ ଜୀବନରେ ଏକ ଗୌରବମୟ ମୁହୂର୍ତ୍ତ ସେ।

ଲାଲବାଗ୍ ପୁଲିସ ହାଜତରେ ଅନ୍ୟ ବନ୍ଧୁମାନଙ୍କୁ ଅପେକ୍ଷା କଲୁ। କିଛି ସମୟ ପରେ ରାମକୃଷ୍ଣ ପତି ଓ ଦୁର୍ଗାଚରଣ ମହାନ୍ତି ଗିରଫ ହୋଇ ଆସିଲେ, ତା'ପରେ ସୁରଜମଲ୍ଲ ସାହା। ଶ୍ରୀରାମଚନ୍ଦ୍ର ଦାସଙ୍କ ସହିତ ରିକ୍‌ସାରେ ଯାଉଥିବାବେଳେ ରାସ୍ତାରେ ସୁରଜ ଗିରଫ ହେଲା। ଶ୍ରୀରାମ ମଧ୍ୟ ଗିରଫ ହୋଇଥିଲା, କିନ୍ତୁ ତାର ପରିଚୟ ପାଇଲା ପରେ ପୁଲିସ ତାକୁ ଛାଡ଼ିଦେଲେ। ସେଇ ରାତିରେ ଆଉ କେତେକ ବନ୍ଧୁ ଗିରଫ ହୋଇ ଆସିଲେ। ଶ୍ରୀପତିବାବୁ ତାଙ୍କ ଥାନା ଭିତର ଘରେ ଆମ ରାତି ଖାଇବା ବ୍ୟବସ୍ଥା କରିଥାନ୍ତି। ଆଠଦିନ ହେବ କିଛି ଖାଇ ନାହୁଁ ବୋଲି ମନେପଡ଼ିଲା। ରାତିସାରା ପୁଲିସ ହାଜତରେ ଉଜାଗର ରହି ଆଲୋଚନା କରିଛୁ, ଆସନ୍ତାକାଲିର ଏପଟ ସେପଟ ବିଷୟ ଚିନ୍ତାକରିଛୁ, କେଉଁଠି କ'ଣ ଚାଲିଛି ଜାଣିବା ପାଇଁ ଉଦ୍‌ଗ୍ରୀବ ରହିଛୁ... ସକାଳ ହୋଇଗଲା। ତା'ପରେ କଟକ ଜେଲ୍ ଆଠନମ୍ବର ଓ୍ୟାର୍ଡରେ ପୂର୍ବରୁ ଗିରଫ ହୋଇଥିବା ବନ୍ଧୁମାନଙ୍କ ସହିତ ଭେଟ ଓ ଇନ୍‌କିଲାବ ଜିନ୍ଦାବାଦ୍ ଧ୍ୱନିରେ ପରସ୍ପରକୁ ଅଭିନନ୍ଦନ।

ଛାତ୍ର ଶୋଭାଯାତ୍ରା ପହଞ୍ଚିଲା ବେଳକୁ ସ୍ୱରାଜ୍ୟ ଆଶ୍ରମର ପ୍ରଧାନ ଫାଟକରେ ବଡ଼ ତାଲା ପଡ଼ିଛି। କଂଗ୍ରେସ କର୍ମକର୍ତ୍ତାମାନଙ୍କ ସହିତ ପୂର୍ବରୁ କଥାବାର୍ତ୍ତା ହୋଇଥିଲା- ଆଶ୍ଚର୍ଯ୍ୟ ଲାଗିଲା। ଏପରି ହେବ ବୋଲି ପୂର୍ବରୁ କେହି କଳ୍ପନା କରିନଥିଲେ। ସାମାନ୍ୟ ସନ୍ଦେହ ଥିଲେ ସେମାନେ ଅନ୍ୟ ସ୍ଥାନ ଖୋଜିଥାନ୍ତେ। ଛାତ୍ରମାନେ ନଛୋଡ଼ବନ୍ଧା- କଂଗ୍ରେସ ଅଫିସରେ ରହିବାର ଅଧିକାର ସେମାନଙ୍କର ଅଛି। ଏ କାହାର ବ୍ୟକ୍ତିଗତ ସଂପତ୍ତି ନୁହେଁ। ତାଲା ଭାଙ୍ଗି ସେମାନେ ଭିତରେ ପଶିଲେ। ରାତିସାରା ଉଜାଗର-ଘନଘନ ସ୍ଲୋଗାନ ଭିତରେ 'ସକାଳ' ପାଇଁ ପ୍ରସ୍ତୁତି।

ଫେବୃଆରୀ ୨୬ ତାରିଖ। ଆମେ ପୂର୍ବେ ପାଇଥିବା ସମ୍ବାଦ ଠିକ୍ ହେଲା। ରେଭେନ୍‌ସା କଲେଜ ଆଡ଼କୁ ଗୋଟାକ ପରେ ଗୋଟେ ପୁଲିସ ଭ୍ୟାନ୍ ଚାଲିଛି। ପ୍ରତ୍ୟେକ ଭ୍ୟାନ ଦାୟିତ୍ୱରେ ଜଣେ ପୁଲିସ ଇନସପେକ୍ଟର। ସଶସ୍ତ୍ର ପୁଲିସ ଭର୍ତ୍ତି ହୋଇଛନ୍ତି। ତା ଭିତରେ କେତେକ ସରକାରୀ କର୍ମଚାରୀ ସେମାନଙ୍କ ପିଲାଙ୍କୁ ଜବରଦସ୍ତି ଆଣିଛନ୍ତି ପରୀକ୍ଷା ଦେବାପାଇଁ। ପରିସ୍ଥିତିକୁ ଆୟତ୍ତ କରିବାର ସର୍ବୋଚ୍ଚ ଦାୟିତ୍ୱ ଗୋରା ପୁଲିସ ସାହେବଙ୍କର। ସେ ମଧ୍ୟ

ସାଙ୍ଗରେ ଚାଲିଛନ୍ତି । ପୁଲିସଭ୍ୟାନ ରାଣୀହାଟ ପୋଲ ପାଖରେ ପହଞ୍ଚିଲାବେଳକୁ ରାସ୍ତା ବନ୍ଦ । ପୋଲଠୁ ଆରମ୍ଭ କରି କଲେଜ ଦୁଆର ମୁହଁ ପର୍ଯ୍ୟନ୍ତ ଛାତ୍ରମାନେ ରାସ୍ତା ଅବରୋଧ କରି ଶୋଇରହିଛନ୍ତି । ଭ୍ୟାନ୍ ଅଟକିଗଲା । ପୁଲିସ ସାହେବ ରାଗିଗଲେ, ନିର୍ଦ୍ଦିଷ୍ଟ ସମୟ ଭିତରେ ରାସ୍ତା ଛାଡ଼ିଦେବାକୁ ଛାତ୍ରମାନଙ୍କୁ ନିର୍ଦ୍ଦେଶ ଦେଲେ । ଛାତ୍ରମାନେ 'ଇନ୍‌କିଲାବ ଜିନ୍ଦାବାଦ' ଧ୍ୱନିରେ ତାର ଉତ୍ତର ଦେଲେ । ସାହେବଙ୍କୁ ଅପମାନ ଲାଗିଲା ବୋଧହୁଏ । ଗାଡ଼ି ଷ୍ଟାର୍ଟ କରିବାକୁ ସେ ଇନ୍‌ସପେକ୍‌ଟରମାନଙ୍କୁ ନିର୍ଦ୍ଦେଶ ଦେଲେ । ସାହେବ ବୋଧହୁଏ ଭାବିଲେ ଯେ ଗାଡ଼ି ଷ୍ଟାର୍ଟ କରିଦେଲେ ହୁଏତ ଛାତ୍ରମାନେ ଭୟରେ ଉଠିଯିବେ । ପ୍ରଥମଗାଡ଼ିର ଦାୟିତ୍ୱରେ ଥିବା ଇନ୍‌ସ୍‌ପେକ୍ଟର ମୁକୁନ୍ଦ ମିଶ୍ର କାଠପରି ଛିଡ଼ାହୋଇଛନ୍ତି । ରାସ୍ତା ଉପରେ ତାଙ୍କ କୋଇଁ ଫକୀର ଚରଣ ଦାସ ଶୋଇଛନ୍ତି । ଫକୁ ସେଇ ବର୍ଷ ପୁରୀରୁ ରେଭେନ୍‌ସା କଲେଜର ପ୍ରଥମଶ୍ରେଣୀକୁ ଆସିଥିଲା । ଅଳ୍ପଦିନ ପୂର୍ବରୁ ତାର ବିବାହ ହୋଇଥିଲା । ସେ ରାସ୍ତା ଉପରେ ଶୋଇଛି, କୁନି ଭାଇନା କହିଯାଇଛି ।

ସାହେବ ଅଧୈର୍ଯ୍ୟ ହୋଇପଡ଼ିଲେ । ଛାତ୍ରମାନଙ୍କୁ କୁଦି ଚକଟି ଟେକି ପୋଲତଳକୁ ଫୋପାଡ଼ି ଦିଅ ବୋଲି ନିର୍ଦ୍ଦେଶ ଦେବାମାତ୍ରକେ ରାଜଭକ୍ତ ରିଜର୍ଭ ପୁଲିସ ଫୌଜ ସାହେବଙ୍କୁ ଖୁସି କରିବା ପାଇଁ ନିଜର ସମସ୍ତ ଶକ୍ତି ପ୍ରୟୋଗରେ ଲାଗିଗଲେ । କେତେ ଛାତ୍ର ଜଖମ ହେଲେ, କେତେ ପୋଲତଳେ ଅଜ୍ଞାନ ହେଲେ, କେତେ ଡାକ୍ତରଖାନାକୁ ବୁହାହେଲେ- ତା' ଯଦୁମଣି ମଙ୍ଗରାଜଙ୍କ ବେସରକାରୀ ନିରପେକ୍ଷ ତଦନ୍ତ କମିଟିର ରିପୋର୍ଟରୁ ଜଣାପଡ଼ିବ ।

ପୁଲିସ୍ ଭଲ ମାଡ଼ ମାରିଥିବା ଯୋଗୁଁ ସାହେବ ଖୁସୀ ହୋଇଗଲେ । ରାସ୍ତା ସାଫ-ସମସ୍ତଙ୍କୁ ଡାକ୍ତରଖାନାକୁ ବିଦା କରି ଦିଆଯାଇଛି । କଲେଜ ଫାଟକକୁ ବନ୍ଦକରି କେବଳ ଛିଡ଼ା ହୋଇଛନ୍ତି ବଳରାମ ମହାନ୍ତି । ଲାଠି ଉପରେ ଲାଠି- ପ୍ରତ୍ୟେକ ଲାଠିକୁ 'ଇନ୍‌କିଲାବ ଜିନ୍ଦାବାଦ'ରେ ଉତ୍ତର ଶେଷ ସୈନିକର କର୍ତ୍ତବ୍ୟ ପାଳନ । ଗୋଟାଏ ପିଲା କେତେ ସମ୍ଭାଳିବ । ସେ ଅଚେତା ହୋଇଗଲା ପରେ କଲେଜ ଫାଟକ ଖୋଲିଗଲା ।

କଲେଜ କମ୍ପାଉଣ୍ଡ ପୁଲିସ ଛାଉଣୀରେ ପରିଣତ ହୋଇଛି । ବାଧା ଦେବାକୁ କେହି ନାହାନ୍ତି, ବୁଝାଇବାକୁ କେହି ନାହାନ୍ତି । ପୁଲିସ ଭ୍ୟାନରେ ଆସିଥିବା ଛାତ୍ରମାନେ ନିଜ ଆଖିଆଗରେ ସବୁ ଦେଖି କଳକା ହୋଇଯାଇଛନ୍ତି । ଗୁରୁଜନମାନେ ପରୀକ୍ଷା ହଲକୁ ବାଟ କଢ଼ାଇ ନେଇଛନ୍ତି, କାଳି କଲମ ସବୁ ଯୋଗାଇ ଦିଆଯାଉଛି । ଘଣ୍ଟାଏ ଡେରି ପରେ ପରୀକ୍ଷା ଆରମ୍ଭ ହୋଇଛି । ପରେ କେତେକ ଛାତ୍ର ପରୀକ୍ଷା ଚାଲିଛି ବୋଲି ଦେଖୁଛନ୍ତି, ସେମାନଙ୍କୁ ଡାକରା ହେଉଛି- ଯେତେ ଡେରି ପର୍ଯ୍ୟନ୍ତ ଲେଖିଲେ ବି କିଛି ଯାଏଆସେ ନାହିଁ ବୋଲି କୁହାଯାଉଛି । କାଳି କଲମ ତ ଯୋଗାଇ ଦିଆଯାଉଛି, ଜଳଖିଆ ଦେବାର ବ୍ୟବସ୍ଥା ହୋଇଛି । କେତେକ ଯାଉଛନ୍ତି,

କେତେକ ଯାଉ ନାହାନ୍ତି, କେତେକ ଗୁରୁଜନମାନଙ୍କ ଦୌରାତ୍ମ୍ୟରେ ବାଧ୍ୟ ହୋଇ ଯାଇ ହଲ୍‌ରେ ମୂର୍ଚ୍ଛା ହୋଇଯିବାର ଅଭିନୟ କରିଛନ୍ତି । କିଏ କେଉଁ କାରଣରୁ କ'ଣ କଲା- ତା ଆଉ ଏକ କାହାଣୀ ।

ଶ୍ରୀ ମନମୋହନ ମିଶ୍ର ଓ ବନମାଳୀ ପଟ୍ଟନାୟକ ପ୍ରଭୃତି ପୁଣି କେତେକ ବନ୍ଧୁ ଗିରଫ ହୋଇ ଦୁଇ ତିନିଦିନ ଭିତରେ ଆମ ସହିତ କଟକ ଜେଲରେ ଯୋଗ ଦେଲେ । ଆମ ଗିରଫ ଖବର ପାଇ ନୀଳମଣି ଆତ୍ମଗୋପନ କରିଥିଲା । ଜଣେ ଗୁଇନ୍ଦା ଅଫିସର ତାକୁ ସାହାଯ୍ୟ କରିଥିଲେ । ସେ ଗିରଫ ହେଲା । ଗଙ୍ଗାଧର ମହାପାତ୍ର ଓ ବିଜୟଚନ୍ଦ୍ର ଦାସ ଭୋକ ଓପାସରେ ଦୁଇ ତିନିଦିନ ବୁଲିବା ପରେ ଚଉଧୁରୀବଜାର ପାର୍କ ହୋଟେଲ ପାଖରେ ଧରାହେଲେ । କଟକ ଜେଲରେ ପୁଣି ଆମ ଆଡ୍‌ଡା ଜମିଲା ।

ରେଭେନ୍‌ସା କଲେଜ ଟେନିସ୍‌କୋର୍ଟ- ଆମ ଯୌବନର ଖେଳାଭୂମି, ଆମ ବିଜୟ-ପରାଜୟ ମୂକସାକ୍ଷୀ । ଏବେ ବି ସେଇ ରାସ୍ତା ଦେଇ ଗଲାବେଳେ, ବେଳେ ବେଳେ ଡାକେ; କେତେ ସୁଖ-ଦୁଃଖ କଥାବାର୍ତ୍ତା କରେ, କେତେ ସ୍ମୃତି ମନେ ପକାଇଦିଏ ।

୩୫ ବର୍ଷ ହୋଇଗଲା । କେତେ ବନ୍ଧୁ ଚିରଦିନ ପାଇଁ ବିଦାୟ ନେଇଗଲେଣି । ବେଳେବେଳେ ଭାବିଲେ ବିଶ୍ୱାସ ହୁଏ ନାହିଁ । କାଲିପରି ଲାଗୁଛି । ଆମେ ସତେ ଯେମିତି ଆଜିଯାଏ ସମସ୍ତେ ବନ୍ଧା ହୋଇ ରହିଛୁ !

•

---

*ଜୀବନଯାତ୍ରା ପଥରେ,* ଗ୍ରନ୍ଥମନ୍ଦିର,
ବିନୋଦବିହାରୀ, କଟକ-୨, ୨୦୦୬

# କଲେଜ ପଢ଼ା ଓ ଆନ୍ଦୋଳନ

## ବିକ୍ରମ ଦାସ

ମାଟ୍ରିକ ଫଳ ବାହାରିବା ପରେ କଲେଜରେ ନାମ ଲେଖାଇବା ପାଇଁ ପରାମର୍ଶ ନେବାକୁ କଟକ ଆସି ମୋର ଜ୍ୟେଷ୍ଠଭ୍ରାତା ଅଶୋକ ବାବୁ ଓ ପିତା ପଣ୍ଡିତ ନୀଳକଣ୍ଠଙ୍କୁ ଅପେକ୍ଷା କଲି। ସେମାନେ କଟକ ବାହାରକୁ ଯାଇଥିଲେ, ଆସିବାକୁ ବହୁତ ଡେରି ହେଲା। ନାମ ଲେଖା ତାରିଖ ଚାଲି ଯାଉଥିବାରୁ ମୁଁ ରେଭେନ୍‌ସା କଲେଜକୁ ଯାଇ ନାମ ଲେଖାଇ ନେଲି। ମୁଁ ନବଭାରତ ପ୍ରେସର ପଡ଼ିଆ ଉପରେ ଥିବା ଦୋତାଲା ଚାଳିଆ ଘରେ ରହି ଟିମା ନନା ହୋଟେଲରୁ ଦୁଇ ଅଣିକିଆ ମିଲ ଖାଇ ସାଇକେଲରେ କଲେଜକୁ ଯିବା ଆସିବା କରୁଥାଏ। ସେ ଦୁହେଁ ମଝିରେ ମଝିରେ ପ୍ରେସକୁ ଆସୁଥିଲେ ମଧ୍ୟ ସେମାନଙ୍କ ସଙ୍ଗେ ମୋ ପାଠପଢ଼ା ବିଷୟରେ ଆଲୋଚନା କରିବାର ଆଉ ପ୍ରୟୋଜନ ନ ଥିଲା।

କେତେକାଳ ପରେ ପ୍ରେସ୍ କୋଠା ଉପରେ ସେମାନଙ୍କ ସହିତ ଦେଖାହେବା ସଙ୍ଗେ ସଙ୍ଗେ ଭାଇନା ମୋତେ ପଚାରିଲେ କ'ଣ କଲେଜରେ ଆଡିମିଶନ୍ ନେଲୁ ? ଚତୁର୍ଥ ବିଷୟ (ଫୋର୍ଥ ସବଜେକ୍ଟ) କ'ଣ ନେଲୁ ? ମୁଁ କହିଲି 'କଳା'ରେ କ'ଣ ଚତୁର୍ଥ ବିଷୟ ଥାଏ ? ମୁଁ ସଂସ୍କୃତ, ଲଜିକ ଓ ଇକୋନମିକ୍‌ସ ନେଇ ଆଇ.ଏ.ରେ ନାମ ଲେଖାଇଛି।

ମୋ ପାଟିରୁ କଥା ନ ସରୁଣୁ ଭାଇନା ଗର୍ଜନ କରି କହିଲେ ତା' ହେଲେ ବୃଥା ଅର୍ଥ ଶ୍ରାଦ୍ଧ କରି କଟକରେ ରହି ସଂସ୍କୃତ ପଢ଼ିବାର କି ପ୍ରୟୋଜନ ଅଛି ? ତୁ କଲେଜରୁ ନାମ କଟାଇ ପୁରୀରେ ଯାଇ ସଂସ୍କୃତ ପଢ଼। ଚୁଟି ରଖି ଚିତା ଚୈତନ୍ୟ କରି ସଂସ୍କୃତ ପଢ଼ିଲେ ଏମାର ମଠରେ ବିନା ଭଡ଼ାରେ ରହିବାର ବ୍ୟବସ୍ଥା ସଙ୍ଗେ ସଙ୍ଗେ ମାଗଣାରେ ଦୁଇଓଳି ମୁଠିଏ ମୁଠିଏ ଅଭଡ଼ା ମଧ୍ୟ ଖାଇବାକୁ ମିଳିଯିବ।

ତାଙ୍କର ସେପରି ତାତ୍ପର୍ଯ୍ୟପୂର୍ଣ୍ଣ କଥାରେ ମୋ ଆଖି ଛଳଛଳ ହୋଇଗଲା। ମୋର ପିତା ସେଠାରେ ବସି ଚିନ୍ତାମଗ୍ନ ଥିଲେ। ଆମ କଥୋପକଥନ ପ୍ରତି ସେ କର୍ଣ୍ଣପାତ କରୁନଥିଲେ। ମୁଁ ତାଙ୍କ ଚିନ୍ତାଭଗ୍ନ ହେବା ଭଳି ବଡ଼ ପାଟିରେ କହିଲି ମୁଁ କଅଣ ପଢ଼ିବି ନ ପଢ଼ିବି ଯଦି

ଆପଣମାନଙ୍କର ଠିକ୍ କରିବା କଥା ତେବେ ମୋ କଥା ନ ବୁଝି ଆପଣମାନେ ଏତେଦିନ କାହିଁକି ନିରବ ଥିଲେ।

ଭାଇନା ପିତାଙ୍କ ଆଡ଼କୁ ଚାହିଁ କହିଲେ କଳା ବିଭାଗରୁ ବିଜ୍ଞାନ ବିଭାଗକୁ ବଦଳାଇ ବିକ୍ରମକୁ ଆଇ.ଏସସି.ରେ ସ୍ଥାନ ଦେବା ପାଇଁ ଅନୁରୋଧ କରି ଆପଣ ରେଭେନ୍ସା କଲେଜ ପ୍ରିନ୍ସପାଲ ପରିଜା ସାହେବଙ୍କ ନିକଟକୁ ବିକ୍ରମ ହାତରେ ପତ୍ରଟିଏ ପଠାନ୍ତୁ। ମୋର ବିଶ୍ୱାସ ସେ ଆପଣଙ୍କ କଥା ରଖିବେ। ଆଜିକାଲି ଯୁଗରେ ବିଜ୍ଞାନ ନପଢ଼ି କଳା ପଢ଼ିଲେ ଭବିଷ୍ୟତରେ କିଛି ଲାଭ ହେବନାହିଁ।

ମୁଁ ପିତାଙ୍କଠାରୁ ଚିଠି ଖଣ୍ଡି ନେଇ ପରିଜା ସାହେବଙ୍କୁ ଦେଲି। ସେ ଚିଠିଟି ପଢ଼ି ସାରି କହିଲେ, ଏତେ ଦିନ କ'ଣ ଶୋଇଥିଲ ? ଏବେ ନିଦ ଭାଙ୍ଗିଲା ? ପ୍ରଥମରୁ ବିଜ୍ଞାନ ପାଇଁ ଦରଖାସ୍ତ ତାରିଖ ଗଲାପରେ କଅଣ ହେବ ? ବାପାଙ୍କୁ କହିବ ଏବେ ସେପରି କରିବା ସମ୍ଭବ ନୁହେଁ।

ମୁଁ କହିଲି ତା'ହେଲେ ମୋ ଅସୁବିଧା କଥା ବୁଝାଇବା ପାଇଁ କ'ଣ ମୋତେ ଏଠାରେ ଅନଶନ କରି ବସିବାକୁ ପଡ଼ିବ ? ସେ କହିଲେ କ'ଣ ବୁଝାଇବ ? ତା ପରେ କହିଲି ଆପଣ କ'ଣ କହୁଛନ୍ତି ମୁଁ ପାଠ ପୂରା ଛାଡ଼ି ଦେବି ନଚେତ, ପୁରୀ ମଠରେ ମାଗଣା ଅଭଡ଼ା ଖାଇ ସଂସ୍କୃତ ଟୋଲରେ ପଢ଼ିବି ?

ପରିଜା ସାହେବ କହିଲେ ଏକଥା କିଏ କହୁଛି ? ତା'ପରେ ମୁଁ ଭାଇନା କହିଥିବା କଥା ତାଙ୍କ ସାମନାରେ ବର୍ଣ୍ଣନା କଲି। ତାହା ଶୁଣି ଠୋ ଠୋ କରି ହସି ହସି କହିଲେ 'ଏବେ ବୁଝିଲି ଅଶୋକ ବିଜ୍ଞାନର ଛାତ୍ର ଥିଲା ନା, ସେଥିଯୋଗୁ ସେ ବିଜ୍ଞାନ ଉପରେ ଗୁରୁତ୍ୱ ଦେଇ ତୁମେ ବିଜ୍ଞାନ ପଢ଼ିବା ସେ ଚାହୁଁଛି। ହଉ, ତୁମେ ଯଦି ଏପରି ବିପଦରେ ପଡ଼ିଯାଇଛ, ତୁମକୁ ସାହାଯ୍ୟ କରିବାକୁ ଚେଷ୍ଟା କରିବା। ସେଥିପାଇଁ ଗୋଟିଏ ମାତ୍ର ଉପାୟ ଅଛି। ଯଦି ବିଜ୍ଞାନ ନେଇଥିବା କୌଣସି ଛାତ୍ର ସେଥିରେ ନପାରି କଳା ନେବାକୁ ଚାହୁଁଥିବ ତା'ହେଲେ ମୁଁ ତା' ସଙ୍ଗରେ ତୁମର ପାଠ ଅଦଳ ବଦଳ କରାଇ ଦେଇପାରିବି। ତୁମେ ହଷ୍ଟେଲକୁ ଯାଇ ଦେଖ।

ମୁଁ ପଶ୍ଚିମ ଛାତ୍ରାବାସକୁ ଯାଇ ଗୋରା କାନକୀ (ପରେ ଓଡ଼ିଆ ଅଧ୍ୟାପକ ଜାନକୀ ବଲ୍ଲଭ ମହାନ୍ତି), ବିଜ୍ଞାନ ଛାଡ଼ି କଳା ନେବାକୁ ଚାହୁଁଥିବାର ଶୁଣି ତାଙ୍କୁ ସାଥୀରେ ଘେନି ପରିଜା ସାହେବଙ୍କ ନିକଟକୁ ଗଲି। ସେ ଆମ ଦରଖାସ୍ତ ସୁପାରିଶ୍ କରିବା ପରେ ମୁଁ ବିଜ୍ଞାନ ବିଭାଗ ଛାତ୍ର ହୋଇଗଲି।

ମୁଁ କଲେଜ ଛାତ୍ରାବାସରେ ରହିବା ପରେ ପୁଣି ମୋର ପୁରାତନ ସଂଗ୍ରାମୀ ବନ୍ଧୁଙ୍କ ସାଙ୍ଗେ ଆସର ଜମିଲା। ମୋର ସ୍କୁଲସାଥୀ ଚିନ୍ତାମଣି ପାଣିଗ୍ରାହୀ (ପରେ ମଣିପୁର ଗଭର୍ଣ୍ଣର),

ଗଙ୍ଗାଧର ରଥ (ପରେ ଆଡ଼ଭୋକେଟ ଜେନେରାଲ), ଶ୍ରୀନିବାସ ଶତପଥୀ (ପରେ ମେଡିକାଲ କଲେଜ ପ୍ରଫେସର), ସତ୍ୟବାଦୀ ମିଶ୍ର (ପରେ ପୁରୀ କଲେଜ ଅଧ୍ୟକ୍ଷ) ଓ କଲେଜିଏଟ ସ୍କୁଲର ପୂର୍ବତନ ତଥା ଅନ୍ୟ ଛାତ୍ର ସାଥୀମାନଙ୍କ ସଙ୍ଗେ ପୁଣି ମିଶି ରାଜନୀତି ଚର୍ଚ୍ଚା କରିବାର ସୁବିଧା ହେଲା । କିନ୍ତୁ ସେ ସବୁ ଆଲୋଚନାରେ ୧୯୩୯ ଛାତ୍ର ଆନ୍ଦୋଳନର ଉଷ୍ଣତା ଆଉ ନ ଥିଲା । ଏକତା ଓ ଉନ୍ମାଦନା ସ୍ଥାନରେ ଆମ ବନ୍ଧୁମାନଙ୍କ ଭିତରେ ରାଜନୈତିକ ମତଭେଦ ଦୃଢ଼ୀଭୂତ ହୋଇ ସାରିଥିଲା । କେତେକ ବନ୍ଧୁ ବିଦେଶୀ କମ୍ୟୁନିଷ୍ଟବାଦକୁ ଆଦରି ନେଇ ସାରିଥିଲେ, କେତେକ କଂଗ୍ରେସର ଦୃଢ଼ ସମର୍ଥକ ଥିବାବେଳେ ଆମପରି କେତେକ ସୁଭାଷ ପନ୍ଥୀ ହୋଇ ସାରିଥିଲେ । ଆଉ କେତେକ ପୁରୁଣା ଦେଶ ମିଶ୍ରଣ ଆନ୍ଦୋଳନକୁ ଆଶ୍ରାକରି 'ବାହିନୀ' ପତ୍ରିକା ପ୍ରକାଶନରେ ଲାଗିଥିଲେ ।

ଓଡ଼ିଶା ରାଜନୀତିରେ ସେତେବେଳେ ମଧ୍ୟ ଏକ ବଡ଼ ଦ୍ୱନ୍ଦ୍ୱ ଦେଖାଯାଇଥିଲା । କଂଗ୍ରେସ ନେତାମାନେ ମନ୍ତ୍ରୀମଣ୍ଡଳ ଛାଡ଼ି ବ୍ୟକ୍ତିଗତ ସତ୍ୟାଗ୍ରହ କରୁଥିଲେ । ସୁଭାଷପନ୍ଥୀମାନେ ସେହି ଗାନ୍ଧିପନ୍ଥୀଙ୍କ ପ୍ରତି ବିତସ୍ପୃହ ହୋଇ ସୁଭାଷଙ୍କ ପୂର୍ବ ନିର୍ଦ୍ଦେଶ ଧରି ମୁସଲିମ ଲିଗ୍‌କୁ ଓ ବିପକ୍ଷ ଦଳଙ୍କୁ ନେଇ ଏକ ଜାତୀୟ ମିଳିତ ମଣ୍ଡଳ ଗଢ଼ିବା ପାଇଁ ଉଦ୍‌ଗ୍ରୀବ ହୋଇ ଉଠିଥିଲେ । ୨୩.୧୧.୧୯୪୧ରେ ବିରୋଧୀଦଳର ପାରଳାଖେମୁଣ୍ଡି ମହାରାଜା, ସୁଭାଷପନ୍ଥୀ ଗୋଦାବରୀଶ ମିଶ୍ର ଓ ମୁସଲିମଲିଗ୍‌ର ଶୋଭାନ ଖାଁଙ୍କୁ ନେଇ ଓଡ଼ିଶାରେ ଏକ ମିଳିତ ମନ୍ତ୍ରୀମଣ୍ଡଳ ଗଢ଼ା ଯାଇଥିଲା ।

ଜମିଦାର ଗୋଷ୍ଠୀର ପାରଳା ମହାରାଜା ମନ୍ତ୍ରୀମଣ୍ଡଳର ମୁଖ୍ୟ ରହି ଖୋଲାଖୋଲି ଭାବେ ଇଂରେଜ ସରକାର ଓ ବିଶ୍ୱଯୁଦ୍ଧରେ ମିତ୍ର ପକ୍ଷଙ୍କୁ ସାହାଯ୍ୟ କରିବା ଘୋଷଣା କରିବାରୁ ସୁଭାଷପନ୍ଥୀଙ୍କୁ ତାଙ୍କ କାର୍ଯ୍ୟରେ ଆଗେଇ ଯିବା ପାଇଁ ଯେତିକି ସୁବିଧା ମିଳିଲା, ତାଙ୍କ ନେତାମାନଙ୍କୁ ଲୋକଙ୍କଠାରୁ ସେତିକି ଭର୍ତ୍ସନା ଶୁଣିବାକୁ ପଡ଼ିଲା । ସେମାନେ ସେହି ଅସୁବିଧା ଭିତରେ ନିନ୍ଦା ପ୍ରଶଂସାକୁ ଭ୍ରୂକ୍ଷେପ ନ କରି ଗୁପ୍ତରେ ବିପ୍ଳବ ପାଇଁ ଦେଶକୁ ପ୍ରସ୍ତୁତ କରୁଥିଲେ ।

ମୁଁ ରେଭେନ୍‌ସା କଲେଜରେ ପଢୁଥିବାବେଳେ ୨୪.୨.୧୯୪୨ରେ କଲେଜ ଇଉନିଅନ ପକ୍ଷରୁ ଆଲୋଚନା ସଭାଟିଏ ହେଲା, ବିନା ସର୍ତ୍ତରେ ଭାରତ ବିଶ୍ୱଯୁଦ୍ଧରେ ଯୋଗଦେବ କି ନାହିଁ ତା'ର ବିଷୟବସ୍ତୁ ଥିଲା । କମ୍ୟୁନିଷ୍ଟ ଛାତ୍ରସଂଘର ସଦସ୍ୟମାନେ ଓ ଉଚ୍ଚ ସରକାରୀ କର୍ମଚାରୀଙ୍କ ସନ୍ତାନମାନେ ଯୁଦ୍ଧରେ ଇଂରେଜଙ୍କ ସଙ୍ଗେ ଯୋଗଦେବା ସପକ୍ଷରେ ଭାଷଣ ଦେଲେ । ସୁଭାଷପନ୍ଥୀ ବିଭୁଧେନ୍ଦ୍ର ମିଶ୍ର ଓ କଂଗ୍ରେସ ତରଫରୁ ଶ୍ରୀ ବନମାଳି ପଟ୍ଟନାୟକ ସାହାଯ୍ୟ କରିବାର ଘୋର ବିରୋଧ କଲେ ।

ତା ୩.୮.୧୯୪୨ ଦିନ ଆମ ରେଭେନ୍‌ସା କଲେଜ ଛାତ୍ର ଇଉନିଅନର ନିର୍ବାଚନ ହେଲା । ସେହି ଇଉନିଅନକୁ ଆଗରୁ ଷ୍ଟୁଡେଣ୍ଟ ଫେଡ଼େରେସନ ନାମରେ କମ୍ୟୁନିଷ୍ଟ ଛାତ୍ର ସଂସ୍ଥା

ଏକଚାଟିଆ କରି ନିଜ ହାତରେ ରଖିବାକୁ ଉଦ୍ୟମ କରିଥିଲେ । ସେମାନଙ୍କ ପକ୍ଷରୁ ସଭାପତି ପଦ ପାଇଁ ଶ୍ରୀ ମନମୋହନ ମିଶ୍ର ଓ ସଂପାଦକ ପାଇଁ ଶ୍ରୀ ନରସିଂହ ତ୍ରିପାଠୀ ପ୍ରତିଦ୍ୱନ୍ଦିତା କରିଥିବା ବେଳେ କଂଗ୍ରେସ ଛାତ୍ରମାନେ ପ୍ରତିଦ୍ୱନ୍ଦିତାରୁ ଓହରି ରହିଥିଲେ । ଆମେ କମ୍ୟୁନିଷ୍ଟଙ୍କ ବିରୁଦ୍ଧରେ କଲେଜିଏଟ ସ୍କୁଲର ପୁରାତନ ପ୍ରଦୀପ୍ତ ଦାସ ଓ ଶ୍ରୀ ଚିନ୍ତାମଣି ପାଣିଗ୍ରାହୀଙ୍କୁ ନିର୍ଦ୍ଦଳୀୟ ସଭାପତି ଓ ସଂପାଦକ ପ୍ରାର୍ଥୀ ବାବରେ ପ୍ରତିଦ୍ୱନ୍ଦୀ କରାଇଥିଲୁ ।

ଇଂରେଜଙ୍କ ଯୁଦ୍ଧ ସପକ୍ଷରେ ପ୍ରଚାର କରୁଥିବାରୁ କମ୍ୟୁନିଷ୍ଟଙ୍କ ପ୍ରତିପତ୍ତି କ୍ଷୁର୍ଣ୍ଣ ହୋଇଥିଲା । ଆମ ପ୍ରାର୍ଥୀ ଦୁହେଁ ବହୁ ଭୋଟରେ ନିର୍ବାଚିତ ହୋଇଥିଲେ । ସେହି ନିର୍ବାଚନ ପରେ ପରେ ମୁଁ ଗାଁ 'କୁ ଯିବା ଭିତରେ ମୋର ଶୁଭାକାଂକ୍ଷୀ ଓ ଏକ ପ୍ରକାର ଅଭିଭାବକ ଏବଂ ପିତାଙ୍କର ଅନ୍ତରଙ୍ଗ ବନ୍ଧୁ କବିରାଜ ଶ୍ରୀ ବାଲୁଙ୍କେଶ୍ୱର ଆଚାର୍ଯ୍ୟଙ୍କ ତିରୋଧାନ ଖବର ପାଇ ମୁଁ ବଡ଼ ମର୍ମାହତ ହୋଇଥିଲି । ସେ ଅତି ଦୟାଳୁ, ସ୍ନେହଶୀଳ ଓ ଜନସେବୀ ଚିକିତ୍ସକ ଥିଲେ । ମୁଁ ଗ୍ରାମରେ ତାଙ୍କ ପାଇଁ ଶୋକସଭାଟିଏ କରି ଆତ୍ମାର ସଦ୍‌ଗତି ପାଇଁ ପ୍ରାର୍ଥନା କରାଇଲି ।

ଠିକ୍ ସେତିକିବେଳେ ଦେଶ ସାରା ଏକ ଚାଞ୍ଚଲ୍ୟ ଖେଳିଗଲା । ଗାନ୍ଧିଙ୍କ ସମେତ ସମସ୍ତ ତୁଙ୍ଗ ନେତାଙ୍କୁ ସରକାର ହଠାତ୍ ବନ୍ଦୀ କରିଥିବାର ଖବର ପାଇ ମୁଁ କଟକ ଫେରିଲି । ତା ୯.୮.୧୯୪୨ ଦିନ ଜାତୀୟ କଂଗ୍ରେସର ବମ୍ବେ ବୈଠକ ଶେଷରେ, ନେତା ମାନେ 'ଭାରତ ଛାଡ଼' ପ୍ରସ୍ତାବ ପାଶ୍ କରାଇବାରୁ ସରକାର ନେତାମାନଙ୍କୁ ବନ୍ଦୀ କରି ଦମନଲୀଳା ପାଇଁ ପ୍ରସ୍ତୁତ ହୋଇଗଲେ ।

ଦେଶସାରା ବିପ୍ଳବୀ କର୍ମୀମାନେ ମଧ୍ୟ ସକ୍ରିୟ ହୋଇ ଉଠିଲେ । କଂଗ୍ରେସର ସାମ୍ୟବାଦୀମାନେ ନେତୃତ୍ୱ ନେଇ ସେ ଆନ୍ଦୋଳନକୁ ଅହିଂସ ପରିବର୍ତ୍ତେ ହିଂସ୍ର ଆନ୍ଦୋଳନରେ ପରିଣତ କରିଦେଲେ । ଗାନ୍ଧି ଯେଉଁଥିପାଇଁ ସଂଗ୍ରାମର ଡାକ ଦେବାକୁ ପଛାଉଥିଲେ ସେକଥା ହେଲା । ଚଉରିଚଉରାର କ୍ଷୁଦ୍ର ହିଂସାକାଣ୍ଡ ବେଳେ ସେ ତାଙ୍କ ଅହିଂସ ଆନ୍ଦୋଳନକୁ ବନ୍ଦ କରିଦେଇଥିଲେ, କିନ୍ତୁ ବୟାଳିଶ ଆନ୍ଦୋଳନରେ ତାଙ୍କର ଆନ୍ଦୋଳନ ବନ୍ଦ ଡାକ ଶୁଣିବାକୁ କେହି ପ୍ରସ୍ତୁତ ନ ଥିବାରୁ ସେ ନିରବ ରହିଲେ । ସାମ୍ୟବାଦୀ ଜୟ ପ୍ରକାଶ, ଅରୁଣା ଆସଫ ଅଲ୍ଲୀ ପ୍ରଭୃତି ସେହି ଆନ୍ଦୋଳନର ନେତୃତ୍ୱ ନେଲେ ।

ଏଗାର ଅଗଷ୍ଟ ୧୯୪୨ରେ ଆମ ରେଭେନ୍‌ସା କଲେଜ ହରତାଳ ପାଳନ କଲା, ବାର ତାରିଖରେ ଗୋଟିଏ ସଭା ହେଲା । ତେର ତାରିଖରେ ଛାତ୍ର ଓ ଯୁବ ଜନତାକୁ ଆନ୍ଦୋଳନରେ ଯୋଗ ଦେବା ପାଇଁ ଆହ୍ୱାନ କରିବାକୁ ଆମେ କଲେଜରୁ ଏକ ଶୋଭାଯାତ୍ରା ଆରମ୍ଭ କରି ସହର ଆଡ଼କୁ ଯିବାକୁ ଉଦ୍ୟତ ହେବାବେଳେ ପୋଲିସ ଫଉଜ ଆମର ପଥରୋଧ କରିବାରୁ ଆମେ ଫେରିଆସି ଆମର ଭବିଷ୍ୟତ ଯୋଜନାରେ ଲାଗିପଡ଼ିଲୁ ।

ଚଉଦ ତାରିଖ ଦିନ ଧରପଗଡ଼ ଆରମ୍ଭ ହୋଇଗଲା । ବଳରାମ ମହାନ୍ତି ପ୍ରଭୃତି ଆମର କେତେକ ସାଥୀଙ୍କୁ ପୋଲିସ୍ ଗିରଫ କରି ନେଲେ । କଲେଜ ଛାତ୍ରମାନଙ୍କୁ ଗରିଫ କରାଯିବାରେ କଲେଜ କର୍ତ୍ତୃପକ୍ଷ କୌଣସି ଆପତ୍ତି କଲେନାହିଁ । ତେଣୁ କଲେଜ କର୍ତ୍ତୃପକ୍ଷ ଓ ଅଫିସ ଉପରେ ଚଢ଼ାଉ କରିବାର ଯୋଜନା ଚାଲିଲା । ସେହି ଆନ୍ଦୋଳନକୁ ସଂଗ୍ରାମ ରୂପ ଦେବା ପାଇଁ ଆମେ ପ୍ରସ୍ତୁତ ହୋଇଗଲୁ ।

ଚିନ୍ତାମଣି ପାଣିଗ୍ରାହୀ ଓ ମୋର ଗୁପ୍ତ ଯୋଜନା ଅନୁସାରେ କେତେକ ବିସ୍ଫୋରକ ଦ୍ରବ୍ୟ ସଂଗ୍ରହ ହେବାର କଥା ହେଲା । ମୁଁ ବିଜ୍ଞାନ ଛାତ୍ର ଥିବାରୁ ରାସାୟନିକ ଲାବରେଟରୀରୁ ସ୍ପିରଟ୍, ଏସିଡ୍ ଓ କେତେକ କେମିକାଲ ଦ୍ରବ୍ୟ ସଂଗ୍ରହ କରିବା ମୋ ପକ୍ଷରେ ସୁବିଧା ହେଲା ।

ଆମେ ଆମ ସାଥୀମାନଙ୍କ ଗିରଫର ପ୍ରତିବାଦ କରି ଆମ ପ୍ରଫେସରମାନଙ୍କୁ ଘେରାଉ କଲୁ । କେତେକ ପ୍ରଫେସରଙ୍କ ବିଲାତି ପୋଷକର 'ଟାଇ' ଭିଡ଼ି ସେ ପୋଷାକ ବର୍ଜନ କରିବା ପାଇଁ ଦାବି କଲୁ । ସେମାନେ ସମସ୍ତେ ସରକାରୀ ଚାକିରିରୁ ଇସ୍ତଫା ଦେଇ ଆମ ଆନ୍ଦୋଳନରେ ଯୋଗଦେଲେ ସ୍ୱାଧୀନ ଭାରତର କଲେଜ ମାନଙ୍କରେ ଉଚ୍ଚ ଆସନ ପାଇବେ ବୋଲି ପ୍ରତିଶ୍ରୁତି ଦେଲୁ । (ସେତେବେଳେ ଆମର ଧାରଣା ଥିଲା ଭାରତ ସ୍ୱାଧୀନ ହେଲେ ଇଂରେଜଙ୍କ ଅଧୀନରେ କାର୍ଯ୍ୟ କରୁଥିବା ସମସ୍ତ କର୍ମଚାରୀ ବରଖାସ୍ତ ହୋଇ ଦେଶପ୍ରେମୀ ଲୋକଙ୍କୁ ସେମାନଙ୍କ ସ୍ଥାନରେ ନିଯୁକ୍ତି ଦିଆଯିବ ।)

ପ୍ରଫେସରମାନେ ଆମ କଥାରେ କର୍ଣ୍ଣପାତ ନ କରିବାରୁ କଲେଜ ଅଫିସରେ ଥିବା ସେମାନଙ୍କ ରେକର୍ଡ଼ ସବୁ ପୋଡ଼ି ଧ୍ୱଂସ କରିଦେବା ପାଇଁ ଆମେ ବହୁ ଛାତ୍ରଙ୍କ ସହିତ କଲେଜ ଅଫିସ ଭିତରକୁ ପଶିଯାଇ ସରକାରୀ ଫାଇଲଗୁଡ଼ାକ ଉପରକୁ ବିସ୍ଫୋରକ ଦ୍ରବ୍ୟ ସବୁ ଫିଙ୍ଗି ନିଆଁ ଲଗେଇ ଦେଲୁ । କଲେଜ ଅଫିସ ହୁତ୍‌ହୁତ୍ ହୋଇ ଜଳିଉଠିବା ବେଳକୁ ଆମେ ସେ ସ୍ଥାନ ଛାଡ଼ି ଯାଇ ଅନ୍ୟଠାରେ ଆତ୍ମଗୋପନ କଲୁ ।

ଖବର ପାଇ ପୋଲିସ୍ ସଦଳବଳେ ଆସି ଦମକଳ ସାହାଯ୍ୟରେ ଅଗ୍ନି ନିର୍ବାପିତ କଲେ । ପୋଲିସ୍‌ମାନେ ପ୍ରଫେସରମାନଙ୍କୁ ଦୁର୍ବୃତ୍ତ ଛାତ୍ରମାନଙ୍କ ନାମ ପଚାରିବାରେ, ଜାଣିଥିଲେ ସୁଦ୍ଧା ସେମାନେ କୌଣସି ଛାତ୍ରର ନାମ ପ୍ରକାଶ କଲେନାହିଁ ।

ଏସବୁ ଚାଲିଥିଲାବେଳେ କଲେଜର ନେତୃସ୍ଥାନୀୟ ଛାତ୍ରମାନେ କଲେଜ ଭିତରେ ଚାଲିଥିବା ପ୍ରଳୟକାଣ୍ଡ ବିଷୟରେ କିଛି ନ ଜାଣି କଲେଜ ସାମ୍ନା ବଜାରରେ ଗୁଡ଼ୁରାଟି ଦୋକାନରେ ବସି ଗାଣ୍ଠିଆ ଖାଉଥିଲେ । ପୋଲିସ କଲେଜ ଭିତରେ ନେତା ଓ ଦୁର୍ବୃତ୍ତମାନଙ୍କୁ ନପାଇ ବଜାର ଭିତରକୁ ଯାଇ ଜଳଖିଆ ଦୋକାନରୁ ଶ୍ରୀ ସୁରଜମଲ୍ଲ ଶାହା, ବିଭୁଧେନ୍ଦ୍ର ମିଶ୍ର ପ୍ରଭୃତି ଛାତ୍ରନେତାମାନଙ୍କୁ ଗିରଫ କରି ଘେନିଗଲେ । ଆମେ ଧରା ନପଡ଼ି ଆନ୍ଦୋଳନ ଚାଲୁ ରଖିଲୁ ।

ସାତ ତାରିଖ ସେପ୍‌ଟେମ୍ବର ଦିନ ଆମେ ଏକ ବିରାଟ 'ଛାତ୍ର ଗିରଫ-ପ୍ରତିବାଦ' ପଟୁଆର ବାହାର କରି କଲେଜରୁ ବିଭିନ୍ନ ସ୍କୁଲ ନିକଟକୁ ଯାଇ ସେଠାରେ ଛାତ୍ରମାନଙ୍କୁ ସେ ଆନ୍ଦୋଳନରେ ଯୋଗ ଦେବାପାଇଁ ଆହ୍ବାନ କରିବାକୁ ସ୍ଥିର କଲୁ । ଆମେ ରାଣୀହାଟ ସ୍କୁଲର ପିଲାମାନଙ୍କୁ ଆହ୍ବାନ ଦେବା ପରେ ମେଡ଼ିକାଲ ସ୍କୁଲଆଡ଼କୁ ଯାତ୍ରା କଲୁ । ଆମ ପଟୁଆରର ସାମନାରେ ମହିଳା ଛାତ୍ରୀମାନେ ରହି ଧ୍ୱନୀ ଦେଇ ଓ ଜାତୀୟ ସଙ୍ଗୀତ ଗାଇ ଗାଇ ଚାଲିଥିଲେ ।

ହଠାତ୍ ହରଗ୍ରୀଭସ୍ ସାହେବ ଆମକୁ ପଛକୁ ଘଉଡ଼ାଇ ନେବାକୁ ଲାଠିଚାର୍ଜ ଆଦେଶ ଦେଲେ । ପୋଲିସ୍‌ବାହିନୀ ବଢ଼ିପାଣିର ପ୍ରଖର ସ୍ରୋତ ପରି ଆମ ଶୋଭାଯାତ୍ରା ଉପରକୁ ମାଡ଼ି ଆସିଲେ । ଲାଠି ଚାର୍ଜ ଦେଖି ପିଲାମାନେ ଚଟି ଜୋତା ସାଇକେଲ ପ୍ରଭୃତି ଫିଙ୍ଗି ଦେଇ ଛିନ୍‌ଛତ୍ର ହୋଇ ଯେ ଯୁଆଡ଼େ ପାଇଲେ ସେ ପଡ଼ିଆ ଭିତରେ ପୂର୍ବ ଦିଗକୁ ଦଉଡ଼ିବାକୁ ଲାଗିଲେ । ପୋଲିସମାନେ ଲାଠି ଧରି ସେମାନଙ୍କ ଅନୁଧାବନ କଲେ । ସାମନାରେ ଥିବା ପ୍ରଖ୍ୟାତ ପୋଲିସ ଅଫିସର ବୈଷ୍ଣବ ଦାସଙ୍କ ପୁତ୍ର ନୀଳମାଧବ ହସପିଟାଲ ଖଟିଆରୁ ଆସି ପଟୁଆରରେ ଯୋଗ ଦେଇଥିଲେ । ସେ ତାଙ୍କୁ ଗୋଡ଼ାଉଥିବା ପୋଲିସ ଆଗରେ ଦଉଡ଼ି ନ ପାରି ପଡ଼ିଗଲେ, ପୋଲିସ ଲାଠିରେ ତାଙ୍କ ମୁଣ୍ଡ ଫାଟିଗଲା । ଚନ୍ଦ୍ରଶେଖର ନାୟକ ପ୍ରଭୃତି ଅନେକ ଛାତ୍ର ଲାଠି ମାଡ଼ରେ ଆହତ ହେଲେ ।

ପୋଲିସ ଲାଠି ଚାର୍ଜର କିପରି ସମ୍ମୁଖୀନ ହେବାକୁ ହୁଏ ସେ ବିଷୟରେ ଛାତ୍ରମାନେ ଅନଭିଜ୍ଞ ଥିଲେ । ମୁଁ ଓ ବିପ୍ଳବୀ ଜୟକୃଷ୍ଣ ମହାପାତ୍ର ପିଲାମାନଙ୍କୁ ପୋଲିସ ସମ୍ମୁଖରେ ନ ଦଉଡ଼ି କଡ଼ରେ ବଙ୍କେଇ କରି ଦଉଡ଼ି ଯିବାକୁ ପାଟିକରି କହିଲୁ । ଆମେ ଦୁହେଁ କଡ଼କୁ ଦଉଡ଼ିଯାଇ ଗୋଟିଏ ଦେବଦାରୁ ଗଛ ମୂଳେ ଠିଆ ହୋଇଗଲୁ । ଦଉଡୁଥିବା ପୋଲିସମାନେ ଗଛମୂଳେ ଅଟକି ନ ପାରି ଆମ ଦୁଇପଟେ ସିଧା ଦଉଡ଼ି ତାଙ୍କ ସମ୍ମୁଖରେ ଥିବା ଛାତ୍ରଙ୍କୁ ଗୋଡ଼ାଇଗଲେ । ଆମେ ଲାଠିର ବିନା ଆଘାତରେ ସେଠାରୁ ଅନ୍ୟବାଟେ ବୁଲି ହଷ୍ଟେଲକୁ ଫେରିଲୁ ।

ନଅ ତାରିଖ ସେପ୍‌ଟେମ୍ବରରେ ଆମ କଲେଜରେ ସଂପୂର୍ଣ୍ଣ ଧର୍ମଘଟ ପାଳନ କରାଗଲା । ସେହିଦିନ ମୋର ଭାଇନା ଅଶୋକ ଦାସଙ୍କର କାରାଗାର ଭିତରେ ମୋକଦମାର ବିଚାର ଆରମ୍ଭ ହେବାରୁ ମୁଁ ତାଙ୍କୁ ଦେଖିପାରିଲି ନାହିଁ । ଅବଶ୍ୟ ସେଠାରେ ଜେରା କମାନବନ୍ଦୀ ଓ ସାକ୍ଷ୍ୟ ପ୍ରଦାନର ସୁବିଧା ନ ହେବାରୁ ଭାଇନାଙ୍କ ପକ୍ଷ ଆଡ଼ଭୋକେଟ ଶ୍ରୀ ହରିହର ମହାପାତ୍ର (ଜଷ୍ଟିସ)ଙ୍କ ଦାବିରେ ଏଗାର ସେପ୍‌ଟେମ୍ବର ଦିନ ତାଙ୍କ ମୋକଦମା କଚେରୀରେ କରାଯିବା ପାଇଁ ତାଙ୍କୁ କଡ଼ା ପ୍ରହରାରେ ରିକ୍‌ସାରେ ବସାଇ ଜେଲରୁ କଚେରୀକୁ ନିଆଗଲା । କଚେରୀରୁ ଅଶୋକ ବାବୁ ରିକ୍‌ସାରେ ବସି ଜେଲକୁ ଫେରିବା ସମୟରେ ତାଙ୍କ ସଙ୍ଗେ ଅନ୍ୟ କେତେକ ବିଚାରାଧୀନ ଅଭିଯୁକ୍ତ କଏଦୀଙ୍କୁ ଜେଲକୁ ଚଲାଇ ଚଲାଇ ଅଣାଯାଉଥିଲା । ସେମାନଙ୍କ ଭିତରୁ

ଗୋଟିଏ ଦୁର୍ବଳିଆ ଲୋକ ଚାଲି ନ ପାରି ବାଟରେ ପଡ଼ିଗଲା । ତାକୁ ଘୋଷାରିକରି ନେବା ପାଇଁ ପୋଲିସମାନେ ଅଣ୍ଟା ଭିଡ଼ି ବାହାରି ପଡ଼ିଲେ । ତାହା ଦେଖି ଅଶୋକ ବାବୁ ରିକ୍ସାକୁ ଅଟକାଇ ଖପ୍‌କରି ରିକ୍ସାରୁ ଓହ୍ଲାଇପଡ଼ି ପୋଲିସମାନଙ୍କୁ ହାତଯୋଡ଼ି କହିଲେ- ଭାଇମାନେ ମୋର ଚାଲିବାର ଶକ୍ତି ଅଛି, ଏ ଲୋକର ନାହିଁ । ତାକୁ ଅନୁଗ୍ରହ କରି ମୋ ରିକ୍ସାରେ ବସାଇ କରି ନିଅ । ମୁଁ ତୁମ ସଙ୍ଗେ ଚାଲି ଚାଲି ଯିବାକୁ ପ୍ରସ୍ତୁତ ଅଛି । ତାଙ୍କ କଥାରେ ପୋଲିସବାଲା ଅଭିଭୂତ ହୋଇ ଆଉ ଗୋଟିଏ ରିକ୍ସା ଡକାଇ ସେଥିରେ ସେ ଲୋକକୁ ବସାଇବା ପରେ ଅଶୋକ ବାବୁ ତାଙ୍କ ରିକ୍ସାରେ ବସିଲେ ।

ରେଭେନ୍‌ସା କଲେଜରେ ଧର୍ମଘଟ ଲାଗି ରହିଥିବାବେଳେ ପୂର୍ବ ଓ ପଶ୍ଚିମ ଦୁଇଟିଯାକ ଛାତ୍ରାବାସକୁ ସ୍ୱାଧୀନ ଘୋଷଣା କରାଯାଇ ପ୍ରତିଦିନ ଦଳ ଦଳ ସତ୍ୟାଗ୍ରହୀଙ୍କୁ ସହର ଭିତରେ ସଭା କରି ଆନ୍ଦୋଳନ ସପକ୍ଷରେ ଭାଷଣ ଦେବା ପାଇଁ ବେକରେ ଫୁଲମାଳ ପକାଇ ପଠାଯାଉଥିଲା । ସାଧାରଣତଃ ସରକାରୀ କର୍ମଚାରୀଙ୍କ ସନ୍ତାନମାନଙ୍କୁ ସେ ଦଳର ଡିକ୍ଟେଟର କରିବା ନେତୃତ୍ୱଦେଇ ପଠାଯାଉଥିଲା । ପୋଲିସ ଡି.ଏସ.ପି. ଗୋକୁଳାନନ୍ଦ ମହାନ୍ତିଙ୍କ ପୁତ୍ର ଶ୍ରୀ ଦେବେନ୍ଦ୍ର ମହାନ୍ତି ପ୍ରଥମ ଦିନ ୱେଷ୍ଟ ହଷ୍ଟେଲ ଦଳର ନେତୃତ୍ୱ ନେଇ କାରାବରଣ କରିଥିଲେ ।

ଛାତ୍ରାବାସମାନଙ୍କ ଚାରିପଟେ, ଛାତ୍ରମାନଙ୍କ ଗତିବିଧି ଲକ୍ଷ୍ୟ କରିବା ପାଇଁ ସାଧା ପୋଷାକଧାରୀ ଗୁଇନ୍ଦା ପୋଲିସମାନେ ବୁଲୁଥିବାରୁ ଅନ୍ତେବାସୀ ଛାତ୍ରମାନଙ୍କର ସେମାନଙ୍କୁ ଧରି ଅପଦସ୍ତ କରିବାର ଯୋଜନା ହୋଇଥିଲା । ସେପରି ଗୋଇନ୍ଦା ପୋଲିସମାନଙ୍କୁ ଧରିଆଣି ଛାତ୍ରାବାସ ଭିତରେ ବିଚାର କରି ଦଣ୍ଡ ଦେବାପାଇଁ ବିଚାରକ ମଣ୍ଡଳୀ ଓ ଦଣ୍ଡ ବିଧାନକାରୀମାନେ ନିଯୁକ୍ତ ହୋଇଥିଲେ ।

ଉଣେଇଶ ତାରିଖ ସେପ୍‌ଟେମ୍ବର ଦିନ ପୂର୍ବ ଛାତ୍ରାବାସର ଛାତ୍ର କର୍ମୀମାନେ ଛାତ୍ରାବାସ ବାହାରେ ବୁଲୁଥିବା ଜଣେ ଗୋଇନ୍ଦା ଅଫିସରଙ୍କୁ ପଛଆଡୁ ଆକ୍ରମଣ କରି ତାଙ୍କ ଚକ୍ଷୁରେ ପଟି ବାନ୍ଧି, ଛାତ୍ରାବାସ ଭିତରକୁ ଆଣି ସେହି ବିଚାରକ ମଣ୍ଡଳୀଙ୍କ ସାମନାରେ ହାଜର କଲେ । ତାଙ୍କ ଚକ୍ଷୁରେ ପଟି ଓ ପଛରେ ହାତ ଦୁଇଟି ବନ୍ଧା ହୋଇଥିବା ଅବସ୍ଥାରେ ତାଙ୍କର ବିଚାର ଆରମ୍ଭ ହେଲା । ସେ ' ଦିନର ପ୍ରଧାନ ବିଚାରକର୍ତ୍ତା ଶ୍ରୀ ଦ୍ୱାରକାନାଥ ଦାସ (ପରେ ଆଡ୍‌ଭୋକେଟ ଓ ପୁରୀ ମ୍ୟୁନିସ୍‌ପାଲିଟି ଚେୟାରମାନ୍) ସେ ବ୍ୟକ୍ତିକୁ ଦେଶଦ୍ରୋହ ଏବଂ ବିଦେଶୀଙ୍କ ଷଡ଼ଯନ୍ତ୍ରରେ ଯୋଗ ଦେଇଥିବା ଘୃଣ୍ୟ ଭୃତ୍ୟ ସାବ୍ୟସ୍ତ କରି ଏକ ଅଦ୍ଭୁତ ଦଣ୍ଡର ଆଦେଶ ଦେଲେ । ତାଙ୍କ ଆଦେଶରେ ସେ ଛାତ୍ରାବାସର ପ୍ରଶସ୍ତ ଦୀର୍ଘ ବାରଣ୍ଡାରେ ଆଖି ପଟି ବନ୍ଧା ଥାଇ "ଚଲରେ ଚଲରେ ଆଜାଦ କାମ୍ପ ଚଲରେ" କହି ଦୁଇଜଣ ଛାତ୍ର କର୍ମୀ ତାକୁ ପଛରୁ ଧକ୍‌କା ମାରି ମାରି ବାରଣ୍ଡାର ଏପଟରୁ ସେପଟ ପର୍ଯ୍ୟନ୍ତ ବହୁଥର ଚଲାଇବା ପରେ ଆଜାଦ କାମ୍ପ ନାମ ଦିଆଯାଇଥିବା ଏକ

ଅପରିଷ୍କାର ଦୁର୍ଗନ୍ଧମୟ ପାଇଖାନା ଭିତରେ ରଖି ପାଇଖାନା ଦୁଆର ବନ୍ଦ କରିଦିଆଗଲା । ରାତ୍ରି ହେବାରୁ ଅନ୍ଧାରରେ ତାକୁ ହତା ବାହାରକୁ ନିଆଯାଇ ଗୋଟିଏ ଦୋକାନର ଅଳ୍ପ ଦୂରରେ ଛାଡ଼ି ଦିଆଯାଇ, ଆଉଦିନେ ଏପରି ଦେଶଦ୍ରୋହ କାର୍ଯ୍ୟ କରିବୁ ନାହିଁ କହି ଛାଡ଼ି ଦିଆଗଲା । ତା'ର ଚିତ୍କାରରେ ଦୋକାନରୁ ଲୋକ ତା' ନିକଟକୁ ଆସିଲା ବେଳକୁ ଛାତ୍ର କର୍ମୀ ତାଙ୍କ ଛାତ୍ରାବାସକୁ ନିରାପଦରେ ଫେରିଆସିଥିଲେ । ସେ ଲୋକେ ତା' ଆଖି ଓ ହାତରୁ ପଟି ମୁକୁଳାଇବା ପରେ ସେ ନିକଟସ୍ଥ ଥାନାକୁ ଯାଇ ରିପୋର୍ଟ କଲା ।

ପରଦିନ ଭୋରକୁ ପୋଲିସ ଫଉଜ ସେ ଛାତ୍ରାବାସକୁ ଘେରଉ କରି ସେ ଛାତ୍ରାବାସ ଭିତରୁ ସନ୍ଦେହରେ ବାରକଣ ଛାତ୍ରଙ୍କୁ ଧରି ହାତକଡ଼ା ଦେଇ ଥାନାକୁ ନେଇଗଲେ । ସେ ଗୁଇନ୍ଦା ପୋଲିସ ସେମାନଙ୍କ ଭିତରୁ କାହାକୁ ଚିହ୍ନି ନପାରିଲେ ମଧ୍ୟ ସେମାନଙ୍କ ଭିତରୁ କେତେକ ବନ୍ଦୀ ହୋଇ ରହିଲେ ।

ସେହି ଗିରଫର ପ୍ରତିବାଦରେ ଦୁଇଟିଯାକ ଛାତ୍ରାବାସରେ ଗଣ-ଅନଶନ ଆରମ୍ଭ ହୋଇଯିବାରୁ, ଶିକ୍ଷା ବିଭାଗର ଡିରେକ୍ଟର ଶ୍ୟାମାଚରଣ ତ୍ରିପାଠୀ କଲେଜ ଅଫିସକୁ ଆସି ପୂଜା ଛୁଟି ହୋଇଗଲା ବୋଲି ଘୋଷଣା କରି ଦୁଇଟିଯାକ ଛାତ୍ରାବାସ ସଙ୍ଗେ ସଙ୍ଗେ ଖାଲି କରାଇବା ପାଇଁ ନିର୍ଦ୍ଦେଶ ଦେଲେ । ସେ ଘୋଷଣା ଫଳରେ ଆମ୍ଭମାନଙ୍କୁ ଜୋର ଜବରଦସ୍ତ ଛାତ୍ରାବାସରୁ ବହିଷ୍କୃତ କରାଯାଇ ଛାତ୍ରାବାସକୁ ଅନିର୍ଦ୍ଦିଷ୍ଟ କାଳ ପାଇଁ ବନ୍ଦ କରି ଦିଆଗଲା । ସେହି ଘୋଷଣା ସହିତ କଲେଜ ଇଉନିଅନକୁ ନିଷିଦ୍ଧ ଘୋଷା କରାଯାଇ ସଭାପତି ପ୍ରଦୀପ୍ତ କିଶୋର ଦାସ, ସମ୍ପାଦକ ଚିନ୍ତାମଣି ପାଣିଗ୍ରାହୀଙ୍କ ସମେତ ୩୦ ଜଣ ଛାତ୍ରଙ୍କ ନାମ କଲେଜ ରେଜିଷ୍ଟରରୁ କାଟି ଦିଆଯିବାର ବିଜ୍ଞପ୍ତି ପ୍ରକାଶିତ ହେଲା ।

ସେହି ଘଟଣାରେ କେତେକ ଛାତ୍ରନେତା ମଧ୍ୟ ଗିରଫ ହେଲେ । ଅନ୍ୟ କେତେକ କଟକ ଛାଡ଼ି ନିଜ ନିଜ ଗ୍ରାମକୁ ଚାଲିଗଲେ । କିଛିଦିନ ଆତ୍ମଗୋପନ ପରେ ଚିନ୍ତାମଣି ପାଣଗ୍ରାହୀ କଲିକତା ଯାଇ ସେଠାରେ ଗୋଟିଏ କଲେଜରେ ନାମ ଲେଖାଇବା ସଙ୍ଗେ ସଙ୍ଗେ, ବଳରାମ ନନ୍ଦଙ୍କ ସହିତ ରହି ଓଡ଼ିଆ ଆନ୍ଦୋଳନ ଓ ବାହିନୀ କାର୍ଯ୍ୟରେ ଲିପ୍ତ ରହିଲେ ।

•

---

***ଜୀବନର ଛାପ,*** ଲାର୍କ ବୁକ୍ସ୍, ଭୁବନେଶ୍ୱର, ୨୦୦୫

# କଲେଜ ଜୀବନ

## ଶ୍ରୀରାମଚନ୍ଦ୍ର ଦାସ

ନନା ୧୯୩୬ ଜୁଲାଇ ମାସରେ ମତେ ଆଣି କଟକ ଆସିଲେ । ମୋ ଜିନିଷପତ୍ର ଆସି ନଥାଏ । କାହିଁକି ନା, ମୁଁ କଲେଜରେ ଯୋଗଦେଇ ପାରିବି କି ନାହିଁ ସେ ବିଷୟରେ ସନ୍ଦେହ ଥାଏ । ବଙ୍ଗାଳୀ ସାହି ତେଲେଙ୍ଗା ବଜାର ଛକ ଉପରେ ଆମ ଗ୍ରାମ ପାଖର କୁଣ୍ଡେଶ୍ୱର ଗ୍ରାମର ବାଉରୀବନ୍ଧୁ ପଣ୍ଡା ଗୋଟିଏ ହୋଟେଲ କରିଥାଆନ୍ତି । ନନା ଓ ମୁଁ ଆସି ସେଇଠି ରହିଲୁ । ସେତେବେଳେ ରାଧାନାଥ ବାବୁ ସ୍ୱରାଜ ଆଶ୍ରମ ଗଳିରେ ରହୁଥିଲେ । ତାଙ୍କୁ ଯାଇ ଦେଖାକଲି । ସେ ମୋତେ ସାଙ୍ଗରେ ନେଇ ପରିଜା ସାହେବଙ୍କ ନିକଟକୁ ଗଲେ । ପରିଜା ସାହେବ କହିଲେ, ପଞ୍ଚପଲ୍ଲୀର ଡାକ୍ତର କାଶୀନାଥ ମିଶ୍ର (ମାନ୍ୟବର ବିଚାରପତି ଡକ୍ଟର ବ୍ରଜନାଥ ମିଶ୍ରଙ୍କ ପିତା) ଦରଭଙ୍ଗାରୁ ବଦଳି ହୋଇ ଆସି ଓଡ଼ିଶା ଡାକ୍ତରୀ ସ୍କୁଲରେ ଉପତତ୍ତ୍ୱାବଧାରକ ରୂପେ ଯୋଗ ଦେଇଛନ୍ତି । ତାଙ୍କଠାରୁ ଖଣ୍ଡିଏ ସାର୍ଟିଫିକେଟ ଆଣି ପାରିଲେ ମୋ ନାମ ଲେଖାରେ କୌଣସି ଅସୁବିଧା ହେବନାହିଁ । ରାଧାନାଥ ବାବୁ ମୋ ସହିତ କାଶୀବାବୁଙ୍କ ନିକଟକୁ ଗଲେ । କାଶୀବାବୁ ଦୁଇଦିନ କାଳ ଲଗାତର ପରୀକ୍ଷା କରି ଡାକ୍ତର ବିଶ୍ୱନାଥ କର (ମଧୁସୂଦନ ଆଇନ କଲେଜର ଅଧ୍ୟକ୍ଷ ଡକ୍ଟର ଦେବପ୍ରସାଦ କରଙ୍କ ପିତା)ଙ୍କ ବିଶେଷଜ୍ଞ ମତ ଉପରେ ନିର୍ଭର କରି ପ୍ରମାଣପତ୍ର ଦେଲେ ଯେ, ମୁଁ କୁଷ୍ଠରୋଗାକ୍ରାନ୍ତ ନୁହେଁ ଓ କଲେଜରେ ନାମ ଲେଖାଇବାରେ କୌଣସି ଆପତ୍ତି ରହିନପାରେ । ଯଦି କେହି ତାଙ୍କ କହୁଣୀର ଫୁଲା ଅଂଶଟିକୁ ଦେଖି ସେ କୁଷ୍ଠରୋଗାକ୍ରାନ୍ତ ବୋଲି ଅଭିଯୋଗ କରନ୍ତି, ତା' ସତ୍ତ୍ୱେ ବି ସେ ନାମ ଲେଖାଇ ପାରିବେ, କାରଣ ତାଙ୍କ ରୋଗ ସଂକ୍ରାମକ ଅବସ୍ଥାକୁ ଆସିନାହିଁ । ଏହି ମତ ମୋ ଜୀବନର ପଥ ସୁଗମ କରିଦେଲା ଏବଂ ମୁଁ ରେଭେନ୍ସା କଲେଜରେ ପ୍ରଥମ ବାର୍ଷିକ ଶ୍ରେଣୀରେ ଗଣିତ, ତର୍କଶାସ୍ତ୍ର ଓ ସଂସ୍କୃତ ବିଷୟ ନେଇ ଅଧ୍ୟୟନ କଲି । ରାଧାନାଥ ରଥ, ପ୍ରାଣକୃଷ୍ଣ ପରିଜା ଓ କାଶୀନାଥ ମିଶ୍ର ସାହାଯ୍ୟ କରିନଥିଲେ ମୋ ପାଠପଢ଼ାରେ ଡୋରି ବନ୍ଧା ହୋଇଥାଆନ୍ତା । ସେମାନେ ମୋର ଚିର ନମସ୍ୟ ।

ନାମ ଲେଖାଇ ପାରିବା ପରେ ସେଇ ବାଉରୀବନ୍ଧୁ ପଣ୍ଡାଙ୍କ ହୋଟେଲରେ ରହି ପ୍ରତିଦିନ ରେଭେନ୍ସା କଲେଜକୁ ପାଦରେ ଚାଲି ଯାଉଥିଲି । ତେଲେଙ୍ଗା ବଜାରରୁ କଲେଜ ପର୍ଯ୍ୟନ୍ତ ଚାଲି

ଯିବାକୁ ମୋତେ ପନ୍ଦର ମିନିଟ ଲାଗୁଥିଲା, ଅବଶ୍ୟ ସେତେବେଳେ ଗୋଡ଼ରେ ଯୋତା ନଥିଲା । ମୁଁ ପ୍ରଥମେ ଯୋତା ପିନ୍ଧିଲି ୧୯୪୦ ଜୁଲାଇ ମାସରେ ପାଟନା କଲେଜରେ ପଞ୍ଚବାର୍ଷିକ ଶ୍ରେଣୀରେ ନାମ ଲେଖାଇବା ପରେ । ମୋ ପରିଧେୟ ମଧ୍ୟରେ ଥିଲା ଖଣ୍ଡିଏ ଜାପାନୀ ଧୋତି, ଯାହାର ମୂଲ୍ୟ ସେତେବେଳେ ଥିଲା ଛ'ଅଣା ବା ୩୭ ପଇସା । ତା' ସହିତ ଖଣ୍ଡିଏ ହାଫ୍ ସାର୍ଟ ପିନ୍ଧୁଥିଲି । କ୍ଲାସରେ କୌଣସି ପିଲାଙ୍କଠାରୁ ମୁଁ କେବେହେଲେ ଖରାପ ବ୍ୟବହାର ପାଇନାହିଁ, ବରଂ ଅଧ୍ୟାପକମାନେ କେଉଁ ପିଲା ବିଶ୍ୱବିଦ୍ୟାଳୟରେ ପ୍ରଥମ ହୋଇଛି ବୋଲି ପ୍ରଥମେ ପଚାରିଦେବା ମାତ୍ରକେ ମୋ ମର୍ଯ୍ୟାଦା ବୃଦ୍ଧି ପାଉଥାଏ ଓ ସହାଧ୍ୟାୟୀମାନେ ମୋ ପାଖରେ ବସିବାକୁ ପସନ୍ଦ କରୁଥାଆନ୍ତି । ଏହାଛଡ଼ା ରେଭେନ୍‌ସା କଲେଜିଏଟ ସ୍କୁଲର ସହାଧ୍ୟାୟୀମାନଙ୍କ ମଧ୍ୟରୁ କେତେଜଣ ଅନ୍ତରଙ୍ଗ ବନ୍ଧୁ କଲେଜରେ ଯୋଗ ଦେଇଥାଆନ୍ତି । କଥାରେ ଅଛି ଯାହା ପୁଅକୁ ସାପ କାମୁଡ଼ିଥାଏ, ତା' ମା' ସାଳଦଉଡ଼ି ଦେଖିଲେ ଡରେ । ମୋର ଠିକ୍ ସେହି ଅବସ୍ଥା ଥିଲା ।

ମୁଁ କେଉଁଠି ରହୁଛି ବୋଲି ମୋତେ କେତେ ପିଲା ପଚାରୁଥାଆନ୍ତି । ମୁଁ କାହାରିକୁ କୌଣସି ଠିକଣା ଦେଉନଥାଏ । ମୋ ବାସସ୍ଥାନ ବିଷୟରେ ମୁଁ ସର୍ବଦା ମିଛ କହୁଥାଏ ।

ଛାତ୍ରମାନଙ୍କ ସହିତ ଘନିଷ୍ଠ ସମ୍ପର୍କ ପ୍ରତିଷ୍ଠା କରିବା ଲାଗି ଅଧ୍ୟକ୍ଷ ମହୋଦୟ ସେମାନଙ୍କୁ କେତେଗୁଡ଼ିଏ ଦଳରେ ବିଭକ୍ତ କରିଦେଲେ ଓ ପ୍ରତ୍ୟେକ ଦଳ ଜଣେ ଜଣେ ଅଧ୍ୟାପକଙ୍କ ମାର୍ଫତରେ ରହିଲା । ମୋ ଦଳର ଭାରପ୍ରାପ୍ତ ଅଧ୍ୟାପକ ଥିଲେ ଗଣିତ ଅଧ୍ୟାପକ ହରେକୃଷ୍ଣ ଦାସ । ସେ ମୋତେ ଗଣିତ ପଢ଼ାଉଥିଲେ । ତାଙ୍କୁ ଛାତ୍ରମାନେ 'ଥିବା' ବୋଲି ପରିହାସରେ ନାଁ ଦେଇଥିଲେ, କିନ୍ତୁ ସେ ବଡ଼ ସରଳବିଶ୍ୱାସୀ, ଉଦାର ହୃଦୟ ବ୍ୟକ୍ତି ଥିଲେ । ମୁଁ ହୋଟେଲରେ ରହୁଥିବା ଲକ୍ଷ୍ୟ କରି ସେ ବିବ୍ରତ ଓ ବିରକ୍ତ ହେଲେ ଏବଂ କହିଲେ ଜଣେ ପରିଚିତ ଲୋକ ଅଭିଭାବକ ରୂପେ ସ୍ୱାକ୍ଷର ନଦେଲେ ସେ ଏ ବିଷୟରେ ଅଧ୍ୟକ୍ଷଙ୍କୁ ଜଣାଇବେ । ଗୋଟିଏ ନୂଆ ବିପଦ ଆସିଗଲା ବୋଲି ଚିନ୍ତାକରି ମୁଁ କିଂକର୍ତ୍ତବ୍ୟବିମୂଢ଼ ହୋଇଗଲି । କ'ଣ କରିବି ଭାବି ପାରିଲି ନାହିଁ । ମୋର କଲେଜିଏଟ ସ୍କୁଲ ଶିକ୍ଷକ, ସବୁଜ କବି ଅଧ୍ୟାପକ ବୈକୁଣ୍ଠନାଥ ପଟ୍ଟନାୟକଙ୍କ ଦ୍ୱାରସ୍ଥ ହେଲି । ସେ ଅଭିଭାବକ ଫର୍ମରେ ଦସ୍ତଖତ କରି ଲେଖିଦେଲେ ଯେ, ମୁଁ ତାଙ୍କ ଘରେ ରହେ । ଏହି କାଗଜଟି ହରେକୃଷ୍ଣ ବାବୁଙ୍କୁ ଧରାଇଦେଲି ଓ ଉକ୍ତ ବିପଦରୁ ରକ୍ଷା ପାଇଲି । କଥାରେ ଅଛି, "ବିପଦ ଆସିଲେ ଏକୁଟିଆ ଆସେନାହିଁ । ବହୁସଂଖ୍ୟକ ବିପଦ ସାଙ୍ଗସାଥୀ ହୋଇ ଏକାଠି ଆସନ୍ତି ।" ରଥଯାତ୍ରା ପରେ କେବଳ ପୁରୀରେ ନୁହେଁ କଟକରେ ମଧ୍ୟ ପ୍ରତିବର୍ଷ ହଇଜା ଲାଗୁଥିଲା । ଅଗଷ୍ଟ ୧୫ ତାରିଖ ୧୯୪୭ରୁ ଭାରତ ଇତିହାସରେ ପ୍ରସିଦ୍ଧ ହୋଇଛି । ଏହାର ଏଗାରବର୍ଷ ଆଗରୁ ଏହି ତାରିଖଟି ମୋ ଜୀବନରେ ଗୋଟିଏ ଧୂମକେତୁ ହୋଇଥିଲା । ସେଦିନ ରାତିରୁ ମୋତେ ହଇଜା ଆରମ୍ଭ ହେଲା । ମୁଁ ହୋଟେଲ ପଛଆଡ଼େ ଗୋଟିଏ କୋଠରିରେ ପ୍ରାୟ

ବେହୋସ ଅବସ୍ଥାରେ ପଡ଼ିଥାଏ । ଯେଉଁମାନେ ଏକା ହୋଟେଲକୁ ଯାଆନ୍ତି, କାଳକ୍ରମେ ସେମାନଙ୍କ ମଧ୍ୟରେ ବି ଗୋଟିଏ ପ୍ରକାର ସାମାଜିକ ବନ୍ଧନ ସୃଷ୍ଟି ହୋଇଯାଏ । ମୁଁ ଦୁଇଦିନ କାଳ କାହିଁକି ଖାଇବାବେଳେ ଦେଖାଯାଉନାହିଁ ବୋଲି ଖୋଜା ପଡ଼ିଲା । ବାଉରୀ ପଣ୍ଡା ମଧ୍ୟ ମୋର ଏ ଦୁରବସ୍ଥା ଜାଣିଲେ । ତେଣୁ ମୋତେ ବେହୋସ ଅବସ୍ଥାରେ ଆମ୍ବୁଲାନ୍‌ସ ଡକାଇ ମେଡ଼ିକାଲ ସ୍କୁଲ ହାସ୍‌ପାତାଳକୁ ପଠାଇ ଦେଲେ । ହସ୍ପିଟାଲ କ'ଣ ମୁଁ ଜାଣି ନଥିଲି । ମୋର ତ ହୋସ ନଥାଏ । କେତେବେଳେ ସେଠାକୁ ଗଲି ଓ କ'ଣ ହେଲା କିଛି ଜାଣି ନଥିଲି । ଷୋଳ ତାରିଖ ରାତି ପାହାନ୍ତା ବେଳକୁ ମେଡ଼ିକାଲ ୱାର୍ଡ ପଛଆଡ଼େ ଥିବା କାଶୀବାବୁଙ୍କ ଘରେ ବେହେରା ଯାଇ ଡାକିଲା ଓ କହିଲା, ତାଙ୍କ ଗାଁ ପାଖର ଜଣେ ଛାତ୍ର ହଇଜା ରୋଗରେ ଆକ୍ରାନ୍ତ ହୋଇ ସନ୍ଧ୍ୟାବେଳେ ଡାକ୍ତରଖାନା ଆସିଥିଲେ । ସେବିକା କହିଲା ସେ ମରିଗଲେ । ମୁଁ ହାସ୍‌ପାତାଳକୁ ଯିବା ପରେ କାଶୀନାଥ ବାବୁ ମୋତେ ଦେଖିଥିଲେ ଓ ଯେଉଁ ପିଲାକୁ ସେ ଡାକ୍ତରୀ ସାର୍ଟିଫିକେଟ ଦେଇଥିଲେ ମୁଁ ସେହି ପିଲା ବୋଲି ଚିହ୍ନିଲେ । ସେ କୁଆଡ଼େ ସେବିକାକୁ କହିଥିଲେ ମୁଁ ତାଙ୍କ ଗାଁ ପାଖ ପିଲା । ତେଣୁ ସେ ଟିକେ ମୋ ପ୍ରତି ଦୃଷ୍ଟି ରଖିବେ । ସେହିହେତୁ ତାଙ୍କୁ ଖବର ଦିଆଗଲା । ମୋ ପ୍ରବେଶିକା ପରୀକ୍ଷା ଫଳ ଭଲ ହୋଇ ନଥିଲେ ମୋର ବୋଧହୁଏ ସେହିଦିନ ମୃତ୍ୟୁ ହୋଇ ଯାଇଥାଆନ୍ତା । ଏଡ଼େ ଭଲ ପିଲାଟାଏ । ଏପରି ଭାବରେ ମରିଯିବ ବୋଲି ନା ପସନ୍ଦ କରି କାଶୀବାବୁ ଶୁଣିବା ମାତ୍ରକେ ଡାକ୍ତରଖାନା ଆସିଲେ ଓ ମୋତେ ସାଲାଇନ୍ ଦେବା ବ୍ୟବସ୍ଥା କଲେ । ସେ ମୋ ଶଯ୍ୟା ପାଖରେ ବସିଥାଆନ୍ତି । ସକାଳ ପାଞ୍ଚଟା ବେଳକୁ ମୋର ହୋସ ଆସିଲା । ସେ ଲମ୍ବା ଛୁଞ୍ଚିଟା ମୋତେ ଏତେ କଷ୍ଟ ଦେଉଥିଲା ଯେ ମୁଁ କୁଆଡ଼େ 'କାଢ଼ କାଢ଼' ବୋଲି ଚିତ୍କାର କଲି । ଆଉ ଅଧଘଣ୍ଟାଏ ପରେ କାଢ଼ି ନିଆଯିବ ବୋଲି ଆଶ୍ୱାସନା ଦେଇ କାଶୀବାବୁ ବସାକୁ ଫେରିଗଲେ । ସକାଳ ଆଠଟା ବେଳ ସରିକି କାଶୀବାବୁ ଜଣେ ଗୋରା ସାହେବଙ୍କ ସହିତ ମୋ ଶଯ୍ୟା ପାଖକୁ ଆସିଲେ । ସେ ସାହେବ ହେଉଛନ୍ତି କଟକର ସିଭିଲ ସର୍ଜନ ମେଜର ପି.ଏଲ୍. ଓନିଲ । ସେ ମୋ ପ୍ରବେଶିକା ପରୀକ୍ଷା ବିଷୟରେ ଦୁଇ ଚାରିପଦ କଥା ପଚାରିଲେ । ମୋ କହୁଣୀକୁ ତନ୍ନ ତନ୍ନ କରି ଦେଖିଲେ । ଗଲାବେଳେ କହିଗଲେ - "Young boy ! There is nothing wrong with you. You will go home by tomorrow." ଅର୍ଥାତ୍ "ବାଳକ, ତୁମର କିଛି ହୋଇନାହିଁ । ତୁମେ କାଲି ଘରକୁ ଯାଇପାର ।" ମୁଁ ଅଗଷ୍ଟ ୧୮ ତାରିଖଦିନ ହାସପାତାଳରୁ ସିଧାସଳଖ ଗାଁକୁ ଗଲି । ଗାଁରେ ମାସେକାଳ ରହି ନିଜକୁ ସୁସ୍ଥ କଲି । ଗାଁରୁ ଫେରିବାପରେ ହୋଟେଲରେ ରହିବା ଆଉ ନିରାପଦ ମନେ ହେଲା ନାହିଁ । ଇତିମଧ୍ୟରେ ଜନସେବକ ଲକ୍ଷ୍ମୀନାରାୟଣ ସାହୁଙ୍କ ସହିତ ମୋର ପରିଚୟ ହୋଇ ଯାଇଥାଏ । ମୁଁ ତାଙ୍କ ପାଖକୁ ନିଜେ ଯାଇନାହିଁ । କାରଣ ସେ କିଏ ମୋତେ ଜଣାନଥିଲା । ସେ ମୋ କଥା

ଶୁଣି ମୋ ପାଖକୁ ଆସିଥିଲେ । ତାଙ୍କ ଦୟା ଅତୁଳନୀୟ । ମୋ ପରି ସେ ମଧ୍ୟ ଜୀବନରେ ଏହିପରି ଦୁର୍ବିପାକର ସମ୍ମୁଖୀନ ହୋଇଥିଲେ । ସେଥିପାଇଁ ତାଙ୍କୁ କମ୍ ପ୍ରତିରୋଧର ସମ୍ମୁଖୀନ ହେବାକୁ ପଡ଼ିନଥିଲା । ସେ ମୋତେ ଯଥେଷ୍ଟ ଉତ୍ସାହ ଦେଲେ ଓ ଜୀବନରେ ସଂଗ୍ରାମ କରିବାଲାଗି ଉପଦେଶ ଦେଲେ । ସବୁଠାରୁ ବଡ଼କଥା କଲେ, ସମ୍ବଲପୁର ହାତୀବାଡ଼ି କୁଷ୍ଠାଶ୍ରମର ସ୍ଥାପୟିତା ଆନ୍ତର୍ଜାତିକ କୁଷ୍ଠରୋଗ ବିଶେଷଜ୍ଞ ଡାକ୍ତର ଆଇକାକ୍ ସାନ୍ତରାଙ୍କୁ କଟକକୁ ଡକାଇ ଆଣି ଲକ୍ଷ୍ମୀନାରାୟଣ ବାବୁଙ୍କ ଅନୁରୋଧରେ ଡକ୍ଟର ସାନ୍ତରା ମୋତେ ତନ୍ନ ତନ୍ନ ରୂପେ ପରୀକ୍ଷା କରି ମୋତେ କୁଷ୍ଠରୋଗ ହୋଇନାହିଁ ବୋଲି ଲିଖିତ ଭାବରେ ମତ ଦେଲେ । ମୋତେ ଗୋଟିଏ ଗଡ଼ କିଣିଲା ପରି ଲାଗିଲା ।

ସେହିବର୍ଷ ନଭେମ୍ବର ମାସରେ ଇଂଲଣ୍ଡର ଜଣେ କୁଷ୍ଠରୋଗ ବିଶେଷଜ୍ଞ ଡକ୍ଟର ଲୋ କଲିକତାର School of Tropical Medicine କୁ ପରିଦର୍ଶୀ ଅଧ୍ୟାପକ ରୂପେ ଆସିଥିଲେ । ଡାକ୍ତର କାଶୀନାଥ ମିଶ୍ର କେତେଗୋଟି ଭାଷଣ ଦେବାଲାଗି ତାଙ୍କୁ ଓଡ଼ିଶା ମେଡ଼ିକାଲ ସ୍କୁଲକୁ ନିମନ୍ତ୍ରଣ କରି ଅଣାଇଲେ । ସେ ମଧ୍ୟ ମୋତେ କାଶୀବାବୁଙ୍କ ଅନୁରୋଧରେ ପରୀକ୍ଷା କରି ଡାକ୍ତର ଆଇକାକ୍ ସାନ୍ତରାଙ୍କ ସହିତ ଏକମତ ହେଲେ ଓ ପ୍ରମାଣ ପତ୍ର ଦେଲେ । ଆଉ ଯାହା ହେଉ ନା କାହିଁକି ମୁଁ ରୁଗ୍ଣ ନୁହେଁ ଏବଂ ମୋର ଅକାଳ ମୃତ୍ୟୁ ଅନିବାର୍ଯ୍ୟ ନୁହେଁ ବୋଲି ଜାଣି ମୋ ଦେହରେ ଜୀବନ ପଶିଲା ଓ ହୀନମ୍ମନ୍ୟତା ଲୋପ ପାଇଲା । କର୍ତ୍ତୃପକ୍ଷ ସିନା ଏହିସବୁ ପ୍ରମାଣପତ୍ରରେ ସନ୍ତୁଷ୍ଟ ହୋଇ ମୋ ପାଇଁ କୌଣସି ଅସୁବିଧା ସୃଷ୍ଟି କଲେ ନାହିଁ, କୂଟଚକ୍ରାନ୍ତକାରୀମାନେ ସାମାଜିକ କ୍ଷେତ୍ରରେ ମୋତେ ଯଥେଷ୍ଟ ହଇରାଣ କରିଥିଲେ । ମୁଁ ପାଟନା କଲେଜରେ ସ୍ନାତକୋତ୍ତର ଶ୍ରେଣୀରେ ଯୋଗଦେବା ପର୍ଯ୍ୟନ୍ତ ଏହି ସାମାଜିକ ବାସନ୍ଦ ମୋ ପଛେ ପଛେ ଗୋଡ଼ାଇଥିଲା ।

ଲକ୍ଷ୍ମୀନାରାୟଣ ବାବୁଙ୍କ ଯତ୍ନରେ କଲେଜ ଛକରେ ଯୋବ୍ରା ଯାଉଥିବା ରାସ୍ତା ଉପରେ ଗୋଟିଏ ଘର ମୋ ପାଇଁ ସ୍ଥିର କରି ଦିଆଗଲା । ସେହି କୋଠରିର ଭଡ଼ା ଥିଲା ମାସକୁ ପନ୍ଦର ଟଙ୍କା । ମୁଁ ନିକଟବର୍ତ୍ତୀ ହୋଟେଲରେ ଖାଉଥିଲି । ତାଳଦଣ୍ଡା ନାଳରେ ନିତ୍ୟକର୍ମ ସାରୁଥିଲି ଓ ଆନନ୍ଦରେ କଲେଜକୁ ଯାଉଥିଲି । ଏହି ବ୍ୟବସ୍ଥା ୧୯୩୭ ମଇ ମାସ ପର୍ଯ୍ୟନ୍ତ ଚାଲିଲା । ସେବର୍ଷ ବାର୍ଷିକ ପରୀକ୍ଷାରେ ମୁଁ ଏଭଳି ନମ୍ବର ରଖିଲି ଯେ ଅଧ୍ୟକ୍ଷ ତ୍ରିପାଠୀ ସାହେବ ଚମତ୍କୃତ ହୋଇଗଲେ ଓ ମୋତେ ଡାକି ପଚାରିଲେ - "ତୁମେ ତ ପ୍ରବେଶିକା ପରୀକ୍ଷାରେ ପ୍ରଥମ ହେଲ । ଆଇ.ଏ. ପରୀକ୍ଷାରେ କ'ଣ କରିବ ?" ମୁଁ ଉତ୍ତର ଦେଲି, "ମୁଁ ପ୍ରଥମ ହେବି ।" ମୋ ଆତ୍ମବିଶ୍ୱାସ ଦେଖି ସେ ମୁଗ୍ଧ ହେଲେ ଓ ଗ୍ରୀଷ୍ମଛୁଟି ପରେ ସେ ମୋତେ ହଷ୍ଟେଲରେ ରଖିବା ଲାଗି ବନ୍ଦୋବସ୍ତ କରିଦେବାର ପ୍ରତିଶ୍ରୁତି ଦେଲେ । ତେଣୁ ମୁଁ ଭଡ଼ାଘରକୁ ଛାଡ଼ି ଗାଁକୁ ଗଲି ଓ ଗ୍ରୀଷ୍ମଛୁଟି ପରେ ଆସି

ପୂର୍ବ ଛାତ୍ରାବାସର କୋଡ଼ିଏ ନମ୍ବର କୋଠରିରେ ରହିଲି । ମୁଁ ତ ପ୍ରଥମ ବାର୍ଷିକ ଶ୍ରେଣୀରେ ଛାତ୍ରାବାସରେ ନଥିଲି, ତେଣୁ ଜଣିକିଆ ଘର ପାଇବା ଲାଗି ମୋର ଯୋଗ୍ୟତା ନଥିଲା । ଅଧ୍ୟକ୍ଷଙ୍କ ଦୟାରୁ ଗୋଟିଏ ଚାରିଜଣିଆ ପ୍ରକୋଷ୍ଠକୁ ମୋ ପାଇଁ ଜଣକିଆ କୋଠରିରେ ପରିଣତ କରାଗଲା । ମୋତେ ସିଟ୍ ଭଡ଼ା ଦେବାକୁ ପଡୁନଥିଲା । ଏହା କ୍ରମେ ମୋ ସୌଭାଗ୍ୟରେ ପରିଣତ ହେଲା । କାରଣ ଓଡ଼ିଶା ବିଧାନସଭା ରେଭେନ୍ସା କଲେଜ ହଲରେ ହେଉଥିବାରୁ କେତେକଣ ବିଧାୟକ ଅଧିବେସନବେଳେ ଛାତ୍ରାବାସରେ ରହୁଥିଲେ । ମୋ କୋଠରିରେ ଆହୁରି ତିନିଗୋଟି ସ୍ଥାନ ଥିବାରୁ ସେଠାରେ ଆସି ରହିଲେ ପରବର୍ତ୍ତୀ ମୁଖ୍ୟମନ୍ତ୍ରୀ ସଦାଶିବ ତ୍ରିପାଠୀ, ପରବର୍ତ୍ତୀ ମନ୍ତ୍ରୀ ରାଧାକୃଷ୍ଣ ବିଶ୍ୱାସରାୟ ଓ ରାଧାମୋହନ ସାହୁ । ସେ ତିନିଜଣଯାକ ଥିଲେ କୋରାପୁଟ ଜିଲ୍ଲାର ସଭ୍ୟ । ଛାତ୍ର ଜୀବନରେ ସେମାନଙ୍କ ସହିତ ପରିଚୟ ପରବର୍ତ୍ତୀ ଜୀବନରେ ମୋତେ ଖୁବ୍ ସାହାଯ୍ୟ କରିଛି ।

ମୁଁ ଆଇ.ଏ. ପରୀକ୍ଷା ଦେବା ବେଳକୁ ଅଧ୍ୟକ୍ଷ ଶ୍ୟାମଚନ୍ଦ୍ର ତ୍ରିପାଠୀ ଓଡ଼ିଶାର ଶିକ୍ଷାବିଭାଗ ନିର୍ଦ୍ଦେଶକ ରୂପେ ନିଯୁକ୍ତ ହୋଇ କାର୍ଯ୍ୟଭାର ଗ୍ରହଣ କଲେ ଓ ଅଧ୍ୟାପକ ପ୍ରାଣକୃଷ୍ଣ ପରିଜା ଅଧ୍ୟକ୍ଷ ନିଯୁକ୍ତ ହେଲେ । ମୋ ପ୍ରତିଶ୍ରୁତିମତେ ଆଇ.ଏ. ପରୀକ୍ଷାରେ ପୁଣି ପ୍ରଥମ ଶ୍ରେଣୀରେ ପ୍ରଥମ ହେବାରୁ ତ୍ରିପାଠୀ ସାହେବ କେବଳ ଯେ ମୋତେ ନିଜ ହାତରୁ ଟଙ୍କା ଦେଇ ତୃତୀୟବାର୍ଷିକ ଶ୍ରେଣୀରେ ନାମ ଲେଖାଇଦେଲେ, ସେତିକି ନୁହେଁ, ଛାତ୍ରାବାସରେ ରହିବା ଲାଗି ସୁବନ୍ଦୋବସ୍ତ କରିଦେବା ନିମିତ୍ତ ପରିଜା ସାହେବଙ୍କୁ ଅନୁରୋଧ କଲେ । ମୁଁ ବି.ଏ. ପଢ଼ିବାବେଳେ ଦୁଇବର୍ଷ କାଳ ପଶ୍ଚିମ ଛାତ୍ରାବାସର ଦୁଇନମ୍ବର ୱାର୍ଡରେ ଥିବା ପ୍ରଥମ ଜଣିକିଆ କୋଠରିରେ ରହିଲି । ମୁଁ ଛାତ୍ରାବାସରେ ପ୍ରବେଶ କରିବାର ଅଳ୍ପଦିନ ପରେ କେତେଜଣ ଛାତ୍ର ଷଡ଼ଯନ୍ତ୍ର କରି ମୁଁ ଶ୍ରେଣୀରେ ଥିବା ଅବସ୍ଥାରେ ଦୁଆରରୁ ତାର କାଳି ବାଟେ ଜନାରେ ପେଟ୍ରୋଲ ଢାଳି ନିଆଁ ଲଗାଇ ଘର ଭିତରକୁ ପକାଇଦେଲେ । ଫଳରେ ମୋର ସମସ୍ତ ଆବସବାସପତ୍ର ପୋଡ଼ି ପାଉଁଶ ହୋଇଗଲା । ପରେ ଉତ୍କଳ ବିଶ୍ୱବିଦ୍ୟାଳୟର ତୃତୀୟ କୁଳପତି ହୋଇଥିବା ଅଧ୍ୟାପକ ପର୍ଶୁରାମ ମିଶ୍ର ସେତେବେଳେ ଛାତ୍ରାବାସର ତତ୍ତ୍ୱାବଧାରକ ଥିଲେ । ସେ ଥିଲେ ଉଦ୍ଭିଦ ବିଜ୍ଞାନ ଅଧ୍ୟାପକ । ତାଙ୍କ ବିଭାଗ ପଶ୍ଚିମ ଛାତ୍ରାବାସ ସହିତ ସଂଲଗ୍ନ ଥିଲା । ସେ ସମ୍ବାଦ ପାଇବା ମାତ୍ରକେ ମୋ ପ୍ରକୋଷ୍ଠକୁ ତାଲା ଭାଙ୍ଗି ନିଆଁ ଲିଭାଇ ଦେବାର ବନ୍ଦୋବସ୍ତ କରିଦେବାରୁ ଚୌକି, ଟେବୁଲ ଓ ଖଟ ପୋଡ଼ିଯାଇ ନଥିଲା; କିନ୍ତୁ ମୋ ବହିପତ୍ର ଓ ଲୁଗାପଟା ଆଦି ସବୁ ପୋଡ଼ି ପାଉଁଶ ହୋଇ ଯାଇଥିଲା । ଖେଳଛୁଟିବେଳେ ମୁଁ ଅଧ୍ୟକ୍ଷ ପରିଜାଙ୍କୁ ଏକଥା ଜଣାଇବାକୁ ତାଙ୍କ ଅଫିସକୁ ଗଲି । ଠିଆହୋଇ କାନ୍ଦିଲି । ସେତେବେଳକୁ ସେ ପର୍ଶୁରାମ ବାବୁଙ୍କଠାରୁ ସମ୍ବାଦ ପାଇସାରିଥିଲେ । ସେ ମୋତେ ପ୍ରବୋଧନା ଦେଇ କହିଲେ, "ତୁମେ କାହିଁକି କାନ୍ଦୁଛ ? ତୁମର ଯାହା ପୋଡ଼ିଯାଇଛି ତାଲିକା

କରି ହେଡ୍‌କିରାଣିଙ୍କୁ ଦିଅ । ସେ ସନ୍ଧ୍ୟାବେଳ ସୁଦ୍ଧା ସବୁ କିନିଷ କିଣିଆଣି ତୁମକୁ ଯୋଗାଇ ଦେବେ ।" ତାହାହିଁ ହୋଇଥିଲା ।

ପରେ ଗୋଟିଏ ତିନିକଣିଆ ଅନୁସନ୍ଧାନକମିଟି ଗଠିତ ହୋଇ ତିନିମାସ କାଳ ସାକ୍ଷ୍ୟ ପ୍ରମାଣ ନିଆଗଲା । ଏହି କମିଟିରେ ପରିଜା, ଆଇନ ଅଧ୍ୟାପକ ଗିରିଧାରୀ ଧଳ ଓ ଇଂରେଜୀ ଅଧ୍ୟାପକ ପି.ଏସ. ସୁନ୍ଦରମ୍ ସଭ୍ୟ ଥିଲେ । ଚକ୍ରାନ୍ତକାରୀ ଛାତ୍ରମାନଙ୍କ ନାମ ପଦାରେ ପଡ଼ିଲା ଏବଂ ପରବର୍ତ୍ତୀ କାଳରେ ଓଡ଼ିଶା ବିଧାନସଭାର ସଚିବ ଓ ଲୋକସଭାର ଯୁଗ୍ମସଚିବ ରୂପେ ଦାୟିତ୍ୱ ବହନ କରିଥିବା ଚତୁର୍ଥ ବାର୍ଷିକ ଶ୍ରେଣୀର ପ୍ରଫୁଲ୍ଲ କୁମାର ପଟ୍ଟନାୟକଙ୍କୁ କଲେଜ ଓ ଛାତ୍ରାବାସରୁ ବହିଷ୍କାର କରି ଦିଆଯାଇଥିଲା । ଅଧ୍ୟକ୍ଷ ପରିଜା ସାହେବ ଏଭଳି ଦଣ୍ଡବିଧାନ ଯୋଗୁଁ କିପରି ସମାଲୋଚିତ ଓ ଅପମାନିତ ହୋଇଥିଲେ ତାହା ପରେ ବର୍ଣ୍ଣନା କରାଯିବ । ପଶ୍ଚିମ ଛାତ୍ରାବାସରେ ମୋ ରହଣି କାଳ ମଧ୍ୟରେ ମୁଁ କେତେକଣ ଛାତ୍ରଙ୍କ ବନ୍ଧୁତା ଲାଭ କଲି ଯେଉଁମାନେ କି ଭବିଷ୍ୟତ ଜୀବନରେ ଉଚ୍ଚ ସ୍ଥାନ ପାଇଥିଲେ । ସେମାନଙ୍କ ମଧ୍ୟରେ ସୁରଜମଲ ଶାହା, ଗଣେଶ୍ୱର ମିଶ୍ର, ବନମାଳି ପଟ୍ଟନାୟକ, ବିଭୁଧେନ୍ଦ୍ର ମିଶ୍ର, ବିଧୁଭୂଷଣ ଦାସ, ମହେନ୍ଦ୍ର କୁମାର ରାଉତ, ପ୍ରଫୁଲ୍ଲ କୁମାର ପତି ଆଦିଙ୍କ ନାମ ଉଲ୍ଲେଖଯୋଗ୍ୟ । ଆମ ଓ୍ୱାର୍ଡେନ ଥିଲେ ଡକ୍ଟର ବଳଭଦ୍ର ପ୍ରସାଦ । ସେ କାଳକ୍ରମେ ରେଭେନ୍‌ସା କଲେଜରେ ଅଧ୍ୟକ୍ଷ ନହୋଇ ସୁଦ୍ଧା ଶିକ୍ଷା ବିଭାଗ ନିର୍ଦ୍ଦେଶ ଓ ଏଲାହାବାଦ ବିଶ୍ୱବିଦ୍ୟାଳୟର କୁଳପତି ନିଯୁକ୍ତ ହୋଇଥିଲେ । ମୁଁ ଛାତ୍ରାବାସରେ ପ୍ରବେଶ କରିବାବେଳେ ତତ୍ତ୍ୱାବଧାରକ ଥିଲେ ପର୍ଶୁରାମ ମିଶ୍ର । ସେ ଥିଲେ ଉଦ୍ଭିଦବିଦ୍ୟା ଅଧ୍ୟାପକ । ଡକ୍ଟରେଟ୍ ଉପାଧି ପାଇବା ଲାଗି ସେ ଇଂଲଣ୍ଡ ଚାଲିଯିବାରୁ ତାଙ୍କ ସ୍ଥାନରେ ପୂର୍ବ ଛାତ୍ରାବାସରେ ମୋର ତତ୍ତ୍ୱାବଧାରକ ଥିବା ଅଧ୍ୟାପକ ଘନଶ୍ୟାମ ଦାସ ପଶ୍ଚିମ ଛାତ୍ରାବାସକୁ ବଦଳି ହୋଇ ଆସିଲେ । ମୁଁ ସ୍ନାତକ ଶ୍ରେଣୀରେ ଅର୍ଥନୀତିରେ ଅନର୍ସ ବା ପ୍ରତିଷ୍ଠା ପାଠ୍ୟ ନେଇଥିଲି । ସେହି ବିଭାଗର ଅନ୍ୟତମ ଅଧ୍ୟାପକ ବିହାରର ଭୈରବନାଥ ରୋହତଗୀ ସହକାରୀ ତତ୍ତ୍ୱାବଧାରକ ଥିଲେ । ସ୍ନାତକ ଶ୍ରେଣୀରେ ମୋର ଇତିହାସ ଥିଲା ଓ ଅଧ୍ୟାପକ ଘନଶ୍ୟାମ ଦାସ ଇତିହାସ ପଢ଼ାଉଥିଲେ । ତେଣୁ ଉଭୟ ତତ୍ତ୍ୱାବଧାରକ ଓ ସହକାରୀ ତତ୍ତ୍ୱାବଧାରକ କଲେଜ ଶ୍ରେଣୀରେ ମଧ୍ୟ ମୋର ଅଧ୍ୟାପକ ଥିଲେ । ଏହା ଥିଲା ଗୋଟିଏ ସୁବର୍ଣ୍ଣ ସୁଯୋଗ ।

ଖାଲି ପଶ୍ଚିମ ଛାତ୍ରାବାସ କାହିଁକି ମୋତେ ନାନା କ୍ଷେତ୍ରରେ ଅପମାନ ସହିବାକୁ ପଡୁଥିଲା । ଏହା ପଛରେ ଯେ ବନ୍ଧୁମାନଙ୍କ ଈର୍ଷା ନଥିଲା ତାହା ନୁହେଁ, ଅନେକ ମଧ୍ୟ ଈର୍ଷାପରାୟଣ ଥିଲେ । କଣେ ଛାତ୍ର ପକ୍ଷରେ ଉଭୟ ପ୍ରବେଶିକା ପରୀକ୍ଷା ଓ ଆଇ.ଏ, ପରୀକ୍ଷାରେ ପାଟନା ବିଶ୍ୱବିଦ୍ୟାଳୟରେ ପ୍ରଥମ ସ୍ଥାନ ଅଧିକାର କରିବା କମ୍ ଗୌରବର ବିଷୟ ନଥିଲା । ଏହି ଗୌରବ

ଯୋଗୁଁ ମୋ ସହାଧ୍ୟାୟୀମାନଙ୍କ ମଧ୍ୟରୁ କେତେଜଣ ସାରା ଜୀବନ ଈର୍ଷାପରାୟଣ ହୋଇ ମୋ ଜୀବନକୁ ଧ୍ୱଂସ କରିବାରେ ଦାୟୀ ହୋଇଥିଲେ। ଏଥିରେ ଜଣେ ଦୁଇଜଣ ଅଧ୍ୟାପକ ବି ସେମାନଙ୍କୁ କମ୍ ସାହାଯ୍ୟ କରି ନାହାନ୍ତି।

ମୋ କଲେଜ ଜୀବନ କାଳରେ କେତେଗୁଡ଼ିଏ ଉଲ୍ଲେଖନୀୟ ଘଟଣା ଘଟିଥିଲା। ଆଗରୁ ୧୯୩୮ରେ ଆଇନ ଅଧ୍ୟାପକ ଜିତେନ୍ଦ୍ର ନାଥ ବାନାର୍ଜୀଙ୍କ ବାସଗୃହ ସମ୍ପର୍କରେ ଧର୍ମଘଟ ହୋଇଥିଲା। ସ୍ନାତକ ଜୀବନରେ ପଶ୍ଚିମ ଛାତ୍ରାବାସରେ ଦୁଇଟି ଉଲ୍ଲେଖନୀୟ ଘଟଣା ଓ କଲେଜ ପରିସରରେ ସର୍ବାପେକ୍ଷା ଗୁରୁତ୍ୱପୂର୍ଣ୍ଣ ଘଟଣା ଘଟିଥିଲା। ଛାତ୍ରମାନେ ସକାଳୁ ଡ୍ରିଲ୍ କରିବାକୁ ଯାଉଥିଲେ ଓ ସେଠାରୁ ଆସି ତତ୍ତ୍ୱାବଧାରକଙ୍କ ଦ୍ୱାରା ପରିଚାଳିତ ପ୍ରାର୍ଥନାରେ ଯୋଗ ଦେଉଥିଲେ। ଶୀତଦିନେ ଏହି ବ୍ୟବସ୍ଥା ଅତ୍ୟନ୍ତ କଷ୍ଟଦାୟକ ଥିଲା। ଘନଶ୍ୟାମ ବାବୁ ପ୍ରାର୍ଥନା ସଭାରେ ଉପସ୍ଥାନ ପକାଉଥିଲେ। ସେ ଜଣେ ମିଷ୍ଟଭାଷୀ ଓ ଛାତ୍ରବତ୍ସଳ ଅଧ୍ୟାପକ ଥିଲେ ହେଁ କଡ଼ାକଡ଼ି ଭାବରେ ପ୍ରାର୍ଥନା ସଭାରେ ଉପସ୍ଥିତିକୁ ବିଚାର କରୁଥିଲେ। ରାତିରେ ସହତତ୍ତ୍ୱାବଧାରକ ଅଧ୍ୟାପକ ରୋହାତ୍‌ଗୀ ଅବଶ୍ୟ ସାମାନ୍ୟ କୋହଳ ଥିଲେ। ପ୍ରିନ୍ସିପାଲ ଡକ୍ଟର ପ୍ରସାଦ ବିଶେଷ ନିରପେକ୍ଷ ନଥିଲେ। ଯେଉଁ କେତେଜଣ ଛାତ୍ରଙ୍କୁ ସେ ଭଲ ପାଉଥିଲେ ସେମାନଙ୍କ ବ୍ୟତୀତ ଅନ୍ୟମାନଙ୍କ ପ୍ରତି ସେ ଅତ୍ୟନ୍ତ କଡ଼ା ଥିଲେ। ମୁଁ ଟିକିଏ ସକାଳୁ ଡେରିରେ ଉଠେ; କାରଣ ରାତିରେ ବହୁ ସମୟ ପର୍ଯ୍ୟନ୍ତ ନିର୍ଜନ ସ୍ଥିତିରେ ପଢ଼ିବା ମୋର ଅଭ୍ୟାସ ଥିଲା। ସକାଳ ଆଠଟାବେଳେ ଡକ୍ଟର ପ୍ରସାଦ ଛାତ୍ରାବାସରେ ବୁଲିଯିବାବେଳେ ମୋ କବାଟ ବାଡ଼େଇ ମୋତେ ଉଠାଉଥିଲେ ଓ ବହୁବାର କୈଫିୟତ ତଲବ କରିଥିଲେ। ତଥାପି ମୁଁ କୌଣସି ବିଷୟରେ କ୍ଷୁବ୍‌ଧ ନଥିଲି; କିନ୍ତୁ ଏ ଡ୍ରିଲ ଶ୍ରେଣୀ ଅନେକଙ୍କ ପକ୍ଷରେ ଅସୁବିଧାଜନକ ଥିଲା। ଡ୍ରିଲ ଶ୍ରେଣୀକୁ ଉଠାଇଦେବା ଲାଗି ଛାତ୍ରାବାସରେ ଧର୍ମଘଟ ହେଲା। କେହି ସେଠାକୁ ଗଲେନାହିଁ। ଡ୍ରିଲ ଶିକ୍ଷକ ସୀତାନାଥ ଚୌଧୁରୀ କାହାରିକୁ ଡ୍ରିଲ ଶ୍ରେଣୀରୁ ଛାଡ଼ିଦେବା ଲାଗି ରାଜି ନଥିଲେ। ଏହି ଧର୍ମଘଟରେ ସମସ୍ତେ ଯୋଗଦେଲେ। କେବଳ ରାମକୃଷ୍ଣ ପାଡ଼ୀ ଯୋଗ ଦେଲେ ନାହିଁ।

ସେତିକି ନୁହେଁ, ପାରଳାଖେମୁଣ୍ଡିର ଲୋକ ହିସାବରେ ଇଂରେଜୀରେ କହି ପକାଇଲେ, "I do not subscribe to the barbarous ideas of the Oriyas of this place." ଏହି ରାମକୃଷ୍ଣ ପାଡ଼ୀ ପୁଲିସ୍ ବିଭାଗର ମହାନିର୍ଦ୍ଦେଶକ ଥିବାବେଳେ ସ୍ୱର୍ଗାରୋହଣ କରିଥିଲେ। ତାଙ୍କର ଏହି ବାକ୍ୟ ଯୋଗୁଁ ନୂଆ ହୋଇ ଓଡ଼ିଶାରେ ମିଶିଥିବା ଓ ଦକ୍ଷିଣ ଓଡ଼ିଶା ନାମରେ ଅଭିହିତ ହୋଇଥିବା ଗଞ୍ଜାମ ଓ କୋରାପୁଟ ଜିଲ୍ଲା ବିରୋଧରେ ଏକ ପ୍ରକାର ବାୟୁମଣ୍ଡଳ ସୃଷ୍ଟି ହେଲା। ଦୁର୍ଭାଗ୍ୟକୁ ସେତେବେଳେ ଗଞ୍ଜାମର ବିଶ୍ୱନାଥ ଦାସ ପ୍ରଧାନମନ୍ତ୍ରୀ ଓ କୋରାପୁଟର ରାଧାକୃଷ୍ଣ ବିଶ୍ୱାସରାୟ ସଂସଦୀୟ ସଚିବ ଥିଲେ।

ଉପକୂଳ ଜିଲ୍ଲାମାନଙ୍କର ବୀର ଯୁବକ ଏ ଅପମାନ ସହନ୍ତେ କିପରି ! ରାମକୃଷ୍ଣ ପଶ୍ଚିମ ଛାତ୍ରାବାସର ଯୁଗ୍ମ ସମ୍ପାଦକ ରୂପେ ନିର୍ବାଚିତ ହୋଇଥିଲେ । ଏହି ଉକ୍ତି ଯୋଗୁଁ ତାଙ୍କ ବିରୋଧରେ ଅନାସ୍ଥା ପ୍ରସ୍ତାବ ଆଣିବା ଲାଗି ପଶ୍ଚିମ ଛାତ୍ରାବାସର ବୀର ପୁଙ୍ଗବମାନେ ଦସ୍ତଖତ କରି ଅଧ୍ୟକ୍ଷ ପରିଜାଙ୍କୁ ଦରଖାସ୍ତ ଦେଲେ । ପାଢ଼ୀ ଥିଲେ ଜଣେ କୃତୀ ଛାତ୍ର । ସେ ମଧ୍ୟ ସଦ୍‌ଗୁଣସମ୍ପନ୍ନ ଥିଲେ । ତେଣୁ ଅଧ୍ୟକ୍ଷ ଏହି ପ୍ରସ୍ତାବରେ ରାଜି ହେଲେ ନାହିଁ କିମ୍ବା ଏଥିପାଇଁ ଛାତ୍ରାବାସ ସଂସଦର ଅସାଧାରଣ ଅଧିବେଶନ ଡାକିବା ଲାଗି ଅନୁମତି ଦେଲେ ନାହିଁ ।

ପୁଣି ଧର୍ମଘଟ ଆରମ୍ଭ ହେଲା ଏବଂ ଏହା ପୂର୍ବ ଛାତ୍ରାବାସ ଓ କଲେଜ ସ୍ତରକୁ ସଂକ୍ରମିତ ହେଲା । ସେତେବେଳେ ଦିବାଧ୍ୟାୟୀ ଛାତ୍ରସଂଘର ସଭାପତି ଥିଲେ ବୀରେନ୍ଦ୍ର ମୋହନ ପଟ୍ଟନାୟକ (ପରବର୍ତ୍ତୀ ମହାଧିବକ୍ତା) ଓ ସମ୍ପାଦକ ଥିଲେ ବିଧୁଭୂଷଣ ଦାସ (ପରବର୍ତ୍ତୀ ଉଚ୍ଚଶିକ୍ଷା ନିର୍ଦ୍ଦେଶକ) । ସେମାନେ ବି ଏହି ଧର୍ମଘଟରେ ସାମିଲ ହୋଇଗଲେ । ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାସ, ଶିକ୍ଷାମନ୍ତ୍ରୀ ବୋଧିରାମ ଦୁବେ ଏବଂ ସଂସଦୀୟ ସଚିବ ଯଦୁମଣି ମଙ୍ଗରାଜ ଓ ରାଜକୃଷ୍ଣ ବୋଷ ମଧ୍ୟସ୍ଥତା କରି ଧର୍ମଘଟ ତୁଟାଇ ଦେଲେ ।. ରାମକୃଷ୍ଣ ପାଢ଼ୀ ବାଧ୍ୟହୋଇ ଉକ୍ତ ଯୁଗ୍ମ ସାଧାରଣ ସମ୍ପାଦକ ପଦରୁ ଇସ୍ତଫା ଦେଇଦେଲେ । ସେତିକିବେଳେ ଏହି ଧର୍ମଘଟକୁ ତେଜେଇବା ଲାଗି ହରେକୃଷ୍ଣ ମହତାବଙ୍କ ନେତୃତ୍ୱରେ କେତେଜଣ କଂଗ୍ରେସ ନେତା ଛାତ୍ରମାନଙ୍କୁ ଉତ୍ତେଜିତ କରିଥିଲେ । କାରଣ ମୋ ଘରପୋଡ଼ି ସଂକ୍ରାନ୍ତରେ ସେମାନଙ୍କର କେତେକଣ ପ୍ରିୟ ଛାତ୍ରଙ୍କ ବିରୋଧରେ ଅଧ୍ୟକ୍ଷ ଶୃଙ୍ଖଳାଗତ ଶାସ୍ତି ବିଧାନ କରିଥିଲେ । ଅଧ୍ୟକ୍ଷ ପରିଜା ମନ୍ତ୍ରୀମାନଙ୍କ ହସ୍ତକ୍ଷେପ ଯୋଗୁଁ କହି ପକାଇଥିଲେ, "ମୁଁ ମୋ ଇସ୍ତଫାପତ୍ରକୁ ପକେଟରେ ପୂରାଇ ଚାଲିଛି । ମୋତେ କୌଣସି କଥାରେ ସରକାର ବାଧ୍ୟ କଲେ ମୁଁ ଇସ୍ତଫା ଦେବାକୁ ପଶ୍ଚାଦ୍‌ପଦ ହେବି ନାହିଁ ।" ଏଥିରେ ପ୍ରଧାନମନ୍ତ୍ରୀ ଓ ଶିକ୍ଷାମନ୍ତ୍ରୀ ଦବିଗଲେ କିନ୍ତୁ ଧର୍ମଘଟକୁ ତେଜୋଉ ଥିବା ନେତାମାନେ କହି ବୁଲିଲେ, "ପରିଜା ସାହେବ ଇସ୍ତଫା ଦେଲେ କାହାରି କିଛି କ୍ଷତି ହେବ ନାହିଁ । ତାଙ୍କ ଇସ୍ତଫା ଗ୍ରହଣ କରି ନିଆଯାଉ ।" ଏଭଳି ଏକ ପଦକ୍ଷେପ ଲାଗି ସରକାର ପ୍ରସ୍ତୁତ ନଥିଲେ ।

ବିଶ୍ୱନାଥ ଦାସଙ୍କ ମନ୍ତ୍ରିମଣ୍ଡଳ ୧୯୩୯ ନଭେମ୍ବର ପ୍ରଥମ ସପ୍ତାହରେ ଇସ୍ତଫା ଦେଲେ । ଇଂରେଜ ସରକାର ଭାରତର କେନ୍ଦ୍ର ବିଧାନସଭା ଓ ପ୍ରଦେଶର ମନ୍ତ୍ରିମଣ୍ଡଳ ତଥା ବିଧାନସଭାଗୁଡ଼ିକର ମତ ନ ନେଇ ଦ୍ୱିତୀୟ ବିଶ୍ୱଯୁଦ୍ଧରେ ଯୋଗଦେବା କଥା ନିଷ୍ପତ୍ତି କରିବାରୁ କଂଗ୍ରେସର ଉଚ୍ଚ କର୍ତ୍ତୃପକ୍ଷ ଯୁଦ୍ଧରେ ଯୋଗ ଦେବାର ଉଦ୍ଦେଶ୍ୟ ଓ ଭାରତକୁ ସ୍ୱାଧୀନତା ଦେବାର ପ୍ରତିଶ୍ରୁତି ଘୋଷଣା କରିବା ଲାଗି ସରକାରଙ୍କ ନିକଟରେ ଦାବୀ କଲେ ଏବଂ ସରକାର ଏଭଳି କୌଣସି ପ୍ରତିଶ୍ରୁତି ନଦେବାରୁ ପ୍ରାଦେଶିକ କଂଗ୍ରେସ ମନ୍ତ୍ରିମଣ୍ଡଳଗୁଡ଼ିକ ଯୁଦ୍ଧ ଉଦ୍ୟମରେ ସାହାଯ୍ୟ

କରିବେ ନାହିଁ କହି ଇସ୍ତଫା ଦେଇଦେଲେ । ସେଦିନ ପଣ୍ଡିତ ଗୋଦାବରୀଶ ମିଶ୍ର କଲେଜ ହଲ୍‌ରେ ହେଉଥିବା ବିଧାନସଭା ଅଧିବେଶନରେ ଯେଉଁ ଭାଷଣ ଦେଇଥିଲେ ତାହା ଏପରି ଉଚ୍ଚକୋଟୀର ବିଶ୍ଳେଷଣାତ୍ମକ ଭାଷଣ ଥିଲା ଯେ, ଏଭଳି ଭାଷଣ ଅନ୍ୟ କେହି ଦେଇଛନ୍ତି କି ନାହିଁ ତାହା ମୋତେ ଜଣା ନାହିଁ । ସେହି ଭାଷଣରୁ ପରବର୍ତ୍ତୀ ଘଟଣାବଳୀର କେତେକ ସୂଚନା ମିଳିଥିଲା । ପଣ୍ଡିତ ଗୋଦାବରୀଶ ୧୯୪୧ ନଭେମ୍ବର ମାସରେ ପାରଳାଖେମୁଣ୍ଡି ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଦେଓ ଓ ମୁସିଲିମଲିଗ୍‌ର ଅବଦୁସ୍ ଶୋଭାନ ଖାଁଙ୍କ ସହିତ ମିଳିତ ଭାବରେ ଭାରତ ଛାଡ଼ି ପଳାଇ ଥିବା ସୁଭାଷ ଚନ୍ଦ୍ର ବୋଷଙ୍କ ଯନ୍ତ୍ରଣାରେ କେତେଜଣ କଂଗ୍ରେସତ୍ୟାଗୀ ବିଧାୟକଙ୍କୁ ନେଇ ଗୋଟିଏ ମିଳିତ ମନ୍ତ୍ରିମଣ୍ଡଳ ଗଠନ କରାଇଥିଲେ । ସେ ଯାହାହେଉ ମନ୍ତ୍ରିମଣ୍ଡଳ ଶାସନ ଅପସରି ଯିବାରୁ ୧୯୩୫ ଭାରତ ଶାସନ ଆଇନର ୯୩ ଧାରା ଅନୁସାରେ ରାଜ୍ୟପାଳଙ୍କ ପ୍ରତ୍ୟକ୍ଷ ଶାସନ ଆରମ୍ଭ ହେଲା । ସ୍ୱାଧୀନତା ଅଂଶିକ ଆସିଗଲାଣି ବୋଲି ୧୯୩୭ ଅପ୍ରେଲ ପହିଲାରୁ ଯେଉଁ ଆଶା ଓ ଉଲ୍ଲାସର ବାତାବରଣ ସୃଷ୍ଟି ହୋଇଥିଲା ତାହା ଲୋପ ପାଇଲା । ଭାରତ ରକ୍ଷା ଆଇନ ଓ ନିୟମାବଳୀ ପ୍ରଣୀତ ହୋଇ ଏକ ପ୍ରକାର କଠୋର ଶାସନ ଆରମ୍ଭ ହେଲା । ରାଜ୍ୟପାଳ ଥିଲେ ସାର ଜନ୍ ଅଷ୍ଟିନ ହବାକ୍ ଓ ତାଙ୍କ ପରାମର୍ଶଦାତା ଥିଲେ ଇ.ସି. ଆନ୍‌ସୋର୍ଜ । ଏହାହିଁ ଥିଲା ଓଡ଼ିଶାର ପ୍ରଥମ ରାଜ୍ୟପାଳ ଶାସନ, ଯାହା ଆମ ସମ୍ବିଧାନ ଅନୁସାରେ ରାଷ୍ଟ୍ରପତି ଶାସନ ନାମରେ ଅଭିହିତ ।

୧୯୩୦ରୁ ଜାନୁଆରୀ ୨୬ ତାରିଖ ଦିନଟି ସ୍ୱାଧୀନତା ଦିବସ ରୂପେ ପାଳିତ ହୋଇ ଆସୁଥିଲା । ୧୯୪୦ ଜାନୁଆରୀ ୨୬ ତାରିଖ ଦିନ ଆମ ସହିତ ସ୍ନାତକ ପରୀକ୍ଷା ଦେବାକୁ ଥିବା ନୀଳମଣି ରାଉତରାୟ ଓ ବିଭୁଧେନ୍ଦ୍ର ମିଶ୍ର ଅଧ୍ୟକ୍ଷଙ୍କ ବାରଣ ନମାନି କଲେଜ ଅଟ୍ଟାଳିକା ଉପରେ ଜାତୀୟ ପତାକା ଉଡ଼ାଇଦେଲେ । ତାଙ୍କ ଆଦେଶର ଅବମାନନା ହେଲା ବୋଲି ଅଧ୍ୟକ୍ଷ ପରିଜା କ୍ରୋଧାନ୍ଧ ଭାବରେ ସେମାନଙ୍କୁ ପଚାଶ ଟଙ୍କା ଲେଖାଏଁ ଜୋରିମାନା କରିବା ସଙ୍ଗେ ସଙ୍ଗେ କଲେଜରୁ ବହିଷ୍କାର କଲେ ଏବଂ ସେମାନେ ଯେପରି ସ୍ନାତକ ପରୀକ୍ଷା ଦେଇ ନପାରିବେ ସେହି ଉଦ୍ଦେଶ୍ୟ ରଖି ପାଟନା ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷଙ୍କୁ ସେମାନଙ୍କ ବହିଷ୍କାର ଆଦେଶ ଜଣାଇ ଦେଲେ । ବିଶ୍ୱବିଦ୍ୟାଳୟରୁ ନିର୍ଦ୍ଦେଶ ଆସିଲା ଯେ ସେ ଦୁହେଁ ପରୀକ୍ଷା ଦେଇ ପାରିବେ ନାହିଁ । ଏକେ ତ ଲୋକପ୍ରିୟ ଶାସନର ଅବସାନ ଘଟିଥାଏ । ଅପର ପକ୍ଷରେ ଯୁଦ୍ଧ ଉଦ୍ୟମକୁ ପ୍ରତିହତ କରିବା ଭଳି କୌଣସି କାର୍ଯ୍ୟକଳାପକୁ ସହ୍ୟ କରିବା ଲାଗି ରାଜ୍ୟପାଳଙ୍କ ସରକାର ପ୍ରସ୍ତୁତ ନଥାନ୍ତି । ଏହିଭଳି ପରିସ୍ଥିତିରେ ସେ ଦୁହିଁଙ୍କ ବିରୋଧରେ ଦଣ୍ଡ ବିଧାନ କରାଗଲା । କଲେଜର ଛାତ୍ରମାନେ ଏହାକୁ ଜାତି ପ୍ରତି ଏକ ଆହ୍ୱାନ ରୂପେ ଗ୍ରହଣ କରି ଧର୍ମଘଟ ଆରମ୍ଭ କରିଦେଲେ । କ୍ରମେ ଏହି ଛାତ୍ର-ଧର୍ମଘଟ ପରୀକ୍ଷା-ଧର୍ମଘଟରେ ରୂପାନ୍ତରିତ ହେଲା ଏବଂ ସେବର୍ଷ କେହି

ରେଭେନ୍‌ସା କଲେଜ କେନ୍ଦ୍ରରୁ ପରୀକ୍ଷା ନ ଦେଇ ବଏକଟ କରିବେ ବୋଲି ସ୍ଥିର ହେଲା । ସେକାଳର ସିଣ୍ଡିକେଟ୍ ସଭ୍ୟ ଅଧ୍ୟାପକ ବିପିନ୍‌ବିହାରୀ ରାୟ ପାଟନା ଯାଇ ସିଣ୍ଡିକେଟ୍‌ରେ ଓ ବ୍ୟକ୍ତିଗତ ଭାବରେ କୁଳପତି ଡକ୍ଟର ସଚ୍ଚିଦାନନ୍ଦ ସିଂହଙ୍କ ସାଙ୍ଗରେ ଆଲୋଚନା କରି ଫେରି ଆସି ଜଣାଇ ଦେଲେ ଯେ, ଧର୍ମଘଟ ପ୍ରତ୍ୟାହୃତ ନହେଲେ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ କୌଣସି କଥା ବିଚାର କରିବାକୁ ନାସ୍ତି କରି ଦେଲେ । ଏଣେ ପରୀକ୍ଷାର୍ଥୀମାନେ ପରୀକ୍ଷା ବର୍ଜନ କରିବାକୁ ନଛୋଡ଼ବନ୍ଧା ।

ସଂଗ୍ରାମ ଚାଲିଲା । ସେବର୍ଷ ମୁଁ, ବିଦ୍ୟାଧର ମିଶ୍ର, ବ୍ରଜବନ୍ଧୁ ମିଶ୍ର, ରବୀନ୍ଦ୍ର ନାଥ ମହାନ୍ତି, ରଘୁନାଥ ଦାସ, ଇନ୍ଦୁଭୂଷଣ ମିଶ୍ର, ବୀରେନ୍ଦ୍ର ମୋହନ ପଟ୍ଟନାୟକ, ନବ କୁମାର ଦାଶ, କୁଞ୍ଜ ବିହାରୀ ପଣ୍ଡା ଆଦି ସ୍ନାତକ ପରୀକ୍ଷା ଦେବାର ଥାଏ । ବିଧୁଭୂଷଣ ଦାସ, ପ୍ରଫୁଲ୍ଲ କୁମାର ପତି, ମହେନ୍ଦ୍ର କୁମାର ରାଉତ, ପ୍ରସନ୍ନ କୁମାର ଦାସ ଆଦି ଇଣ୍ଟର୍ମିଡ଼ିଏଟ ପରୀକ୍ଷା ଦେବାର ଥିଲା । କାଳେ ଏହି ଭଲ ଛାତ୍ରମାନେ ପରୀକ୍ଷା ଦେବାକୁ ଆଗେଇ ଆସିବେ ଏହି ଆଶଙ୍କାରେ ଛାତ୍ରମାନଙ୍କଠାରୁ ପରୀକ୍ଷା ପ୍ରବେଶ ପତ୍ର ସଂଗ୍ରହ କରିବା ଅଭିଯାନ ଆରମ୍ଭ ହେଲା । ମୁଁ ଶେଷ ପର୍ଯ୍ୟନ୍ତ ପ୍ରବେଶ ପତ୍ର ଦେଇ ନଥିଲି । ବିଦ୍ୟାଧର ମିଶ୍ର ଓ ବ୍ରଜବନ୍ଧୁ ମିଶ୍ର ନିଜ ପ୍ରବେଶ ପତ୍ର ଧର୍ମଘଟର ନେତାମାନଙ୍କୁ ଦେଇ ଦେଲେଣି ବୋଲି ମୋର ବନ୍ଧୁ ସୁରଜମଲ ଶାହା ଓ ବନମାଳି ପଟ୍ଟନାୟକ ଉକ୍ତ ପ୍ରବେଶପତ୍ର ଦୁଇଟିକୁ ମୋତେ ଦେଖାଇ ମୋ ଠାରୁ ମୋ ପ୍ରବେଶ ପତ୍ରକୁ ନେଇଗଲେ । ଫ୍ରାନ୍‌ସର ବିଦ୍ରୋହୀମାନେ ୧୭୮୯ରେ ରାଜତନ୍ତ୍ର ଲୋପ କରିବା ଲାଗି ମନସ୍ଥ କରି ଗୋଟିଏ ଟେନିସ୍ ପଡ଼ିଆରେ ଶପଥ ନେଇଥିଲେ । ସେହି ପରମ୍ପରାକୁ ଅନୁସରଣ କରି ରେଭେନ୍‌ସାର ବିଦ୍ରୋହୀମାନେ ପରୀକ୍ଷା ବର୍ଜନ ବିଷୟରେ କଲେଜ ସମ୍ମୁଖରେ ଥିବା ଟେନିସ୍ ପଡ଼ିଆରେ ସମବେତ ହୋଇ ପରୀକ୍ଷା ବର୍ଜନ କରିବା ଲାଗି ଶପଥ ଗ୍ରହଣ କରିଥିଲେ । ମୋଠାରୁ ପ୍ରବେଶପତ୍ର ନେଇଯିବା ପରେ କେତେଜଣ ବନ୍ଧୁ ମୋତେ ପୂରାପୂରି ଟେକିନେଇ ଟେନିସ୍ ପଡ଼ିଆରେ ଉପସ୍ଥାପିତ କରି ଘୋଷଣା କଲେ, "ପ୍ରବେଶିକା ଓ ଆଇ.ଏ. ପରୀକ୍ଷାରେ ବିଶ୍ୱବିଦ୍ୟାଳୟରେ ପ୍ରଥମ ସ୍ଥାନ ଅଧିକାର କରିଥିବା ଓ ବି.ଏ. ଅନର୍ସ ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରିବାକୁ ଆଶାୟୀ ଥିବା ଶ୍ରୀରାମ ଚନ୍ଦ୍ର ଦାଶ ତା' ପ୍ରବେଶ ପତ୍ର ଦେଇ ଦେଲାଣି । ତେଣୁ ପରୀକ୍ଷା ଦେବା ଭଳି ଆଉ କୌଣସି ପରୀକ୍ଷାର୍ଥୀ ରହିଲେ ନାହିଁ ।" ବିପୁଳ କରତାଳି ମଧ୍ୟରେ ମୋତେ ଗୋଟିଏ ଫୁଲମାଳ ଦେଇ ବିଦା କରିଦେଲେ ।

ଏହି ସମ୍ବାଦ ବିଦ୍ୟୁତ୍ ବେଗରେ ଅଧ୍ୟକ୍ଷ ପରିଜାଙ୍କ ନିକଟରେ ପହଞ୍ଚିଗଲା । ସେ ମୋତେ ଉଦ୍ଭିଦବିଜ୍ଞାନ ଗବେଷଣା ସହକାରୀ ଖମ୍ବାକୁଳର ବଂଶୀଧର ପରିଜାଙ୍କ ହାତରେ ଡକାଇ ଦେଇ ଭୀଷଣ ଗାଳି ଦେଲେ ଏବଂ କହିଲେ, "ମୁଁ ବିଶ୍ୱବିଦ୍ୟାଳୟ ଓ ସରକାରୀ କର୍ତ୍ତୃପକ୍ଷଙ୍କୁ ଜଣାଇ

ଦେଇ ସାରିଛି ଯେ, ଆଉ କେହି ପରୀକ୍ଷା ନଦେଲେ ତୁମେ ହିଁ ଏକମାତ୍ର ପରୀକ୍ଷାର୍ଥୀ ଯେ କି ନିଶ୍ଚିତ ଭାବରେ ପରୀକ୍ଷା ଦେବ। ତୁମେ ମୋ ମୁହଁକୁ ପୋଡ଼ିଦେଲ।" ମୁଁ ଯେତେଯାହା କହିଲେ ବି ଅଧ୍ୟକ୍ଷ ଶୁଣିବାକୁ ପ୍ରସ୍ତୁତ ନଥିଲେ। ମନଦୁଃଖରେ ଛାତ୍ରାବାସକୁ ଫେରିଆସିଲି। ୧୯୪୦ ଫେବୃଆରୀ ମାସ ଶେଷ ସପ୍ତାହର ସୋମବାର ଦିନ ପରୀକ୍ଷା ଆରମ୍ଭ ହେବାର ଥାଏ। ଏହି ଘଟଣା ଘଟିଲା ତା' ପୂର୍ବ ଶନିବାର ଦିନ। ସମସ୍ତେ ପରୀକ୍ଷା ବର୍ଜନ କଲେ ବୋଲି ପୂର୍ବ ଓ ପଶ୍ଚିମ ଛାତ୍ରାବାସର ସବୁ ଅନ୍ତେବାସୀ ଚବିଶ ଘଣ୍ଟା ମଧ୍ୟରେ ଛାତ୍ରାବାସ ଛାଡ଼ି ଚାଲିଯିବା ଲାଗି ଅଧ୍ୟକ୍ଷ ହୁକୁମ ଦେଇଦେଲେ। ବିଦ୍ରୋହ ନେତୃବୃନ୍ଦ ଏଥିପାଇଁ ବୋଧହୁଏ ଆଗରୁ ପ୍ରସ୍ତୁତ ଥିଲେ। ବନମାଳୀ ପଟ୍ଟନାୟକ, ବିଭୁଧେନ୍ଦ୍ର ମିଶ୍ର, ସୁରଜମଲ ଶାହା ପ୍ରଭୃତି କଂଗ୍ରେସ ଯୁବକମାନେ ସମସ୍ତେ ଜାନକୀନାଥ ସ୍ୱରାଜ ଭବନରେ ରହିବା ଲାଗି ପ୍ରାରମ୍ଭିକ ବ୍ୟବସ୍ଥା କରି ଆସିଥିଲେ। ତେଣୁ ପରିଜା ସାହେବଙ୍କ ହୁକୁମ ମିଳିବା ମାତ୍ରକେ ସମସ୍ତେ ନିଜ ନିଜ ଟ୍ରଙ୍କ, ସୁଟ୍‌କେଶ ଓ ସବିଛଣା ମୁଣ୍ଡାଇ ରାସ୍ତାରେ ଶୋଭାଯାତ୍ରା କରି ଓଡ଼ିଆବଜାର ପର୍ଯ୍ୟନ୍ତ ଚାଲିଲେ। ଉକ୍ତ ଶୋଭାଯାତ୍ରା ଦେଖିବାର ବିଷୟ ଥିଲା।

ମୁଁ ଓ ଗଣେଶ୍ୱର ମିଶ୍ର ବିଦ୍ରୋହୀମାନଙ୍କ ଭିତରେ ନଥିଲୁ। ସେବର୍ଷ ଅବଶ୍ୟ ଗଣେଶ୍ୱରର ପରୀକ୍ଷା ଦେବାର ନଥାଏ। ସେ ଥିଲା ତୃତୀୟ ବାର୍ଷିକ ଶ୍ରେଣୀର ଛାତ୍ର, କିନ୍ତୁ ଆମେ ଉଭୟ ଅଧ୍ୟାପକ ବିପିନ ବିହାରୀ ରାୟଙ୍କ ଅନୁଗତ ଥିଲୁ। ଆମେ ପ୍ରଥମେ ସୁରଜମଲକୁ ଖୋଜିବା ଲାଗି ମେଡ଼ିକାଲ ସ୍କୁଲ ଛାତ୍ରାବାସକୁ ଗଲୁ। ସେତେବେଳେ ଶ୍ରୀରାମ ଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜ ସ୍ଥାପିତ ହୋଇ ନଥାଏ। ପୁଲିସ୍ ଆମକୁ ଭିତରକୁ ଛାଡ଼ିଲା ନାହିଁ। ସହର ତମାମ ପୁଲିସ୍ ଜଗି ରହିଥାଆନ୍ତି, କାଳେ ରେଭେନ୍‌ସା କଲେଜ ଛାତ୍ରମାନେ ଅନ୍ୟ କୌଣସି ସ୍ଥାନରେ ଗଣ୍ଡଗୋଳ ଆରମ୍ଭ କରିଦେବେ। ଏହି ଆଶଙ୍କାରେ ଆମେ ଦୁହେଁ ମେଡ଼ିକାଲ ହତାରୁ କୁଞ୍ଚକୁ ମୁଣ୍ଡରେ ବାନ୍ଧି ଓ ଜାମିକକୁ ମୁଣ୍ଡ ଉପରେ ରଖି ଗିରଫ ହେବା ଭୟରେ ଗଳିବାଟେ ଚାଲି ଚାଲି ବିପିନ୍ ବାବୁଙ୍କ ଘରକୁ ଗଲୁ। ସେ ଆମକୁ ଛାତ୍ରାବାସକୁ ଫେରିଯିବା ଲାଗି ନିର୍ଦ୍ଦେଶ ଦେଲେ ଓ ପରଦିନ ସକାଳେ ସେ ଅଧ୍ୟକ୍ଷଙ୍କ ସହିତ ଆମେ ଛାତ୍ରାବାସରେ ରହିବା ବିଷୟରେ ଆଲୋଚନା କରିବେ ବୋଲି ପ୍ରତିଶ୍ରୁତି ଦେଲେ। ଆମେ ସେଠାରୁ ଫେରିଆସି ଦେଖିଲୁ ଯେ, ପଶ୍ଚିମ ଛାତ୍ରାବାସର ଚାରିଆଡ଼େ ବହୁ ପୁଲିସ୍ ଜଗି ରହିଛନ୍ତି। ଆମକୁ ଭିତରକୁ ଛାଡ଼ୁ ନଥିଲେ; କିନ୍ତୁ ଆମେ ଆମ ଜିନିଷ ନେଇ ନଥିଲୁ ଆଣିବାକୁ ଯାଉଛୁ ବୋଲି ପୁଲିସ୍‌କୁ କହି ଭିତରକୁ ଗଲୁ। ସେତେବେଳକୁ ଛାତ୍ରାବାସ ଜନଶୂନ୍ୟ, କେବଳ ତତ୍ତ୍ୱାବଧାରକ ଅଧ୍ୟାପକ ଘନଶ୍ୟାମ ଦାସ, ସହକାରୀ ତତ୍ତ୍ୱାବଧାରକ ଅଧ୍ୟାପକ ରୋହାତ୍‌ଗୀ ଓ ଅଧ୍ୟକ୍ଷଙ୍କ ପ୍ରତିନିଧି ଅଧ୍ୟାପକ ସଦାଶିବ ମିଶ୍ର ଛାତ୍ରାବାସକୁ ଜଗି ବାରଣ୍ଡାରେ ବସି ଥାଆନ୍ତି। ମୁଁ ଛାତ୍ରାବାସରେ ରହିବାକୁ ଚାହିଁଲେ ମୋତେ ଅନୁମତି ଦେବାଲାଗି

ଅଧ୍ୟକ୍ଷଙ୍କ ନିର୍ଦ୍ଦେଶ ଅଛି ବୋଲି ଘନଶ୍ୟାମ ବାବୁ କହିଲେ; କିନ୍ତୁ ଗଣେଶ୍ୱର ପରୀକ୍ଷାର୍ଥୀ ନୁହେଁ ବୋଲି ତାକୁ ଅନୁମତି ଦେବାକୁ ଘନଶ୍ୟାମ ବାବୁ ମନା କରିଦେଲେ। ତେଣୁ ଉଭୟ ଏକତ୍ର ଛାତ୍ରାବାସରୁ ବାହାରି କଲେଜ ଫାଟକ ପାଖକୁ ଯିବାବେଳକୁ ସୁରଜମଲ ଶାହା ଆମ ଦୁହିଁଙ୍କୁ ଖୋଜିବାଲାଗି ବ୍ୟାକୁଳ ହୋଇ କଲେଜ ହତାରେ ଏଣେତେଣେ ବୁଲୁଥିଲେ। ସେ ଆମକୁ ଦେଖିବା ମାତ୍ରକେ ଆମେ ତିନିକଣଯାକ ଗୋଟିଏ ରିକ୍ସାରେ ବସି ଯିବାକୁ ବାହାରିଛୁ ପୁଲିସ୍ ଆମକୁ ଅଟକାଇଲେ ଏବଂ ସୁରକମଲ ଶାହାକୁ ଗିରଫ କଲେ। ମୋ ନାମ ପଚାରନ୍ତେ ମୁଁ ଭୟରେ ସେ ବର୍ଷ ଆଇ.ଏ. ପରୀକ୍ଷା ଦେବାକୁ ଥିବା ଭବିଷ୍ୟତର କମ୍ୟୁନିଷ୍ଟ ନେତା ମୋ ନାମ ରାମଚନ୍ଦ୍ର ମିଶ୍ର ବୋଲି କହିଦେଲି। ମୁଁ ଯାଏ କୁଆଡ଼େ ? ପୁଲିସ୍ ମୋତେ ବି ଗିରଫ କରି ଗାଡ଼ିରେ ବସାଇ ଦେଲେ। ଗଣେଶ୍ୱର ନେତା ନୁହେଁ କି ପରୀକ୍ଷାର୍ଥୀ ନୁହେଁ, ତେଣୁ ସେ ଗିରଫ ହେଲାନାହିଁ। ସେଦିନ ପୁଲିସ୍ ଦାୟିତ୍ୱରେ ଥିଲେ କଟକ ସହରର ଇନ୍ସପେକ୍ଟର ଶ୍ରୀପତି ନନ୍ଦ। ସେ ମୋତେ ବ୍ୟକ୍ତିଗତ ଭାବରେ ଜାଣିଥିଲେ। ଦୁଇଜଣ ଛାତ୍ର ଗିରଫ ହୋଇଛନ୍ତି ବୋଲି ଶୁଣିବା ମାତ୍ରକେ ସେ ଆମକୁ ଦେଖିବାକୁ ଆସିଲେ। ଦେଖିବା ମାତ୍ରକେ କହିଲେ- "ସୁରଜମଲ ନାମରେ ୱାରେଣ୍ଟ ଅଛି ତାକୁ ତ ଗିରଫ କଲେ, ଶ୍ରୀରାମଚନ୍ଦ୍ର ଦାଶକୁ କାହିଁକି ଗିରଫ କରିଛ ?" ସବ୍ଇନିସ୍ପେକ୍ଟର କହିଲେ- "ତାଙ୍କ ନାଁ ରାମଚନ୍ଦ୍ର ମିଶ୍ର। ତାଙ୍କ ନାଁରେ ବି ୱାରେଣ୍ଟ ଅଛି।" ଶ୍ରୀପତି ବାବୁ ସବ୍ଇନିସ୍ପେକ୍ଟରଙ୍କୁ ଗାଳିଦେଇ ଉତ୍ତର ଦେଲେ- "ତା' ନାଁ ଶ୍ରୀରାମଚନ୍ଦ୍ର ଦାଶ। ସେ ଆମ କଗତ୍ସିଂହପୁର ଅଞ୍ଚଳର ପିଲା। ମୁଁ ତାକୁ ବହୁଦିନୁ ଜାଣେ। ସେ ରାମଚନ୍ଦ୍ର ମିଶ୍ର ନୁହେଁ।" ସେ ମୋତେ ଛାଡ଼ିଦେଲେ। ଗଣେଶ୍ୱର ଓ ମୁଁ ପୁଣିଥରେ ଚାଲି ଚାଲି ରାତି ପାହିବାବେଳକୁ ବିପିନ ବାବୁଙ୍କ ଘରେ ଯାଇ ପହଞ୍ଚିଲୁ ଓ ସେଠାରେ ସୋମବାର ସକାଳ ପର୍ଯ୍ୟନ୍ତ ରହିଲୁ। ପୁଲିସ୍ ବନ୍ଦୋବସ୍ତ ବିଷୟରେ ବିପିନ ବାବୁ ଶୁଣି ଅତ୍ୟନ୍ତ ବ୍ୟଥିତ ହେଲେ ଓ ପରିକା ସାହେବଙ୍କ କିଦ୍ ଯୋଗୁଁ କାଳେ କିଛି ଅଘଟଣ ଘଟିଯାଇପାରେ ଏହି ଆଶଙ୍କାରେ ସୋମବାର ସକାଳେ ପରୀକ୍ଷା ପ୍ରକୋଷ୍ଠରେ ନିରୀକ୍ଷକ ହେବା ଲାଗି ଓ ଅଧ୍ୟକ୍ଷଙ୍କ ସଙ୍ଗେ ଆଲୋଚନା କରିବାଲାଗି ମୋତେ ଗୋଟିଏ ଘୋଡ଼ା ଗାଡ଼ିରେ ବସାଇ କଲେଜକୁ ଗଲେ।

ରାଣୀହାଟରେ ପହଞ୍ଚିବା ମାତ୍ରକେ ପୁଲିସ୍ ଯାଞ୍ଚ ଆରମ୍ଭ ହୋଇଗଲା ଏବଂ କୌଣସି ଛାତ୍ରକୁ ସାଙ୍ଗରେ ନେଇ ବିପିନ ବାବୁ ରାଣୀହାଟ ପୋଲ ପାରିହୋଇ ପାରିବେ ନାହିଁ ବୋଲି ତାଙ୍କୁ ମୋର ଜଣେ ସମ୍ପର୍କୀୟ ପୁଲିସ୍ ସବ୍ଇନିସ୍ପେକ୍ଟର ମୁକୁନ୍ଦ ମିଶ୍ର ଜଣାଇଦେଲେ। ମୋତେ ଘୋଡ଼ା ଗାଡ଼ିରୁ ଓହ୍ଲାଇ ଦିଆଯାଇଥିଲା। ବିପିନ ବାବୁ ଏକୁଟିଆ କଲେଜ ଗଲେ। ମୁଁ ଗୋଟିଏ ଲୁଙ୍ଗି ପିନ୍ଧିଥାଏ। ମୋ ଦେହରେ କୌଣସି ଜାମା ନଥାଏ। ତେଣୁ ମୋତେ ଛାତ୍ର ବୋଲି କେହି ଚିହ୍ନିବା ସମ୍ଭବପର ନଥିଲା। ମୁଁ ଆସ୍ତେ ଆସ୍ତେ ଚାଲି ଚାଲି କଲେଜ ଫାଟକ ପର୍ଯ୍ୟନ୍ତ ଗଲି।

ସେଠାରେ ଦେଖିବାବେଳକୁ ଏକପକ୍ଷରେ ପୁଲିସ୍ ଛାତ୍ର ଦେଖିଲେ ଲାଠିରେ ବାଡ଼େଉଥାଆନ୍ତି ଓ ଅପର ପକ୍ଷରେ ଅଧିକାଂଶ ଛାତ୍ରଙ୍କୁ ଚିହ୍ନିଥିବା ଅଧ୍ୟାପକ ନାରାୟଣ ମିଶ୍ର ଓ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ପରୀକ୍ଷାର୍ଥୀଙ୍କୁ ଚିହ୍ନି କଣ କଣ କରି ଟାଣି ନେଉଥାଆନ୍ତି । କଲେଜ ଫାଟକ ଭିତରେ ଅନ୍ୟାନ୍ୟ ଅଧ୍ୟାପକ ଥାଆନ୍ତି । ଆର୍ତ୍ତବାବୁ ଓ ନାରାୟଣ ବାବୁ ଜଣେ ପରୀକ୍ଷାର୍ଥୀଙ୍କୁ ନେଇ ସେମାନଙ୍କ ହାତରେ ଧରାଇ ଦେଲେ ସେମାନେ ପରୀକ୍ଷା ହଲକୁ ନେଇ ଯାଉଥାଆନ୍ତି । ମୁଁ ଫାଟକଠାରୁ ପୁଲିସ୍ ଚୌକି ଏପାଖରେ ଠିଆ ହୋଇଥିବାର ଦେଖି ଆର୍ତ୍ତବାବୁ ଆସି ମୋ ହାତ ଧରି ପକାଇଲେ ଓ କହିଲେ- "ତୁ ଗୋଟିଏ ଗଜମୂର୍ଖ । ଷ୍ଟ୍ରାଇକ୍ ଭାଙ୍ଗି ଗଲାଣି । ବହୁ ସଂଖ୍ୟକ ପରୀକ୍ଷାର୍ଥୀ ପରୀକ୍ଷା ହଲକୁ ଗଲେଣି । ତୋ ଭଳି ମେଧାବୀ ଓ ଦରିଦ୍ର ଛାତ୍ର ପରୀକ୍ଷା ନଦେବାଟା ମୂର୍ଖତା ହେବ ନାହିଁ କି ?" ସେ ମୋତେ ଟାଣି ନେଇ ନାରାୟଣ ବାବୁଙ୍କୁ ଧରାଇ ଦେଲେ ଓ ସେ ମୋତେ ନେଇ ଅଧ୍ୟକ୍ଷ ପରିଜା ସାହେବଙ୍କ ଅଫିସକୁ ଗଲେ । ରାଗରେ ପରିଜା ସାହେବ ମୋତେ କଥା କହିଲେ ନାହିଁ । ସେତିକିବେଳେ ଜଣେ କେହି ଅଧ୍ୟାପକ ଆସି ଅଧ୍ୟକ୍ଷଙ୍କୁ କହିଲେ- "ପୁଲିସ୍ ମାଡ଼ରେ ମନମୋହନ ମିଶ୍ର ମରିଗଲା । ତା' ଶବ ଟେନିସ୍ ପଡ଼ିଆରେ ପଡ଼ିଛି ।" ମନମୋହନ ବାବୁ ସେତେବେଳେ ଷଷ୍ଠବାର୍ଷିକ ଶ୍ରେଣୀର ଛାତ୍ର । ସେ ଜଣେ କୃତୀ ଛାତ୍ର । ପରିଜା ସାହେବ ଏକଥା ଶୁଣି ପ୍ରାୟ ଅଚେତ ହୋଇଗଲେ ଏବଂ କହିଲେ- "ଟେଲିଫୋନ୍ କରି ସିଭିଲ୍ ସର୍ଜନ ଓନିଲ ସାହେବଙ୍କୁ ଡକାଅ । ସେ ମନମୋହନକୁ ଦେଖନ୍ତୁ ।" ମନମୋହନ ବାବୁ ପ୍ରକୃତରେ ମରି ନଥିଲେ । ମୁଣ୍ଡ ଫାଟି ଭୀଷଣ ରକ୍ତସ୍ରାବ ହେବାରୁ ସେ ଅଚେତ ହୋଇ ଯାଇଥିଲେ । ମୋତେ ପରୀକ୍ଷା ହଲକୁ ନେଇଯିବାଲାଗି ଅଧ୍ୟକ୍ଷ, ଅଧ୍ୟାପକ ନାରାୟଣ ମିଶ୍ରଙ୍କୁ ନିର୍ଦ୍ଦେଶ ଦେଲେ ।

ତାହା ହେଉଛି ପରୀକ୍ଷାର ପ୍ରଥମ ଦିନ । ସେଦିନ ଦଶଟାରୁ ଗୋଟାଏ ପର୍ଯ୍ୟନ୍ତ ବି.ଏ. ପରୀକ୍ଷାରେ ଇଂରେଜୀ ପ୍ରଥମ ପତ୍ର ଓ ଅପରାହ୍ଣ ଦୁଇଟାରୁ ପାଞ୍ଚଟା ପର୍ଯ୍ୟନ୍ତ ଇଂରେଜୀ ଦ୍ୱିତୀୟ ପତ୍ରର ପରୀକ୍ଷା ଥାଏ । ତା' ପରଦିନ ଥାଏ ଇଂରେଜୀ ତୃତୀୟ ପତ୍ର ଓ ବାଧ୍ୟତାମୂଳକ ଭାରତୀୟ ଭାଷାର ପରୀକ୍ଷା । ତା' ପରବର୍ତ୍ତୀ ଚାରିଦିନ ମୋର ପରୀକ୍ଷା ନଥାଏ । ପରୀକ୍ଷା ପଦାର୍ଥବିଦ୍ୟା ଲାବୋରେଟୋରୀର ଉପର ମହଲାରେ ହେଉଥାଏ ଏବଂ କେତେଜଣ ଅଧ୍ୟାପକ ସିଡ଼ିକୁ ଜଗି ଥାଆନ୍ତି, କୌଣସି ବାହାର ଲୋକ ଯେପରି ଉପରକୁ ଯାଇ ନପାରେ । ପରୀକ୍ଷା ହଲକୁ ଯାଇ ଦେଖିଲି ଯେ, ବିଦ୍ୟାଧର ମିଶ୍ର, ରଘୁନାଥ ଦାସ, ରବୀନ୍ଦ୍ରନାଥ ମହାନ୍ତି ଓଗେରେ ପରୀକ୍ଷା ହଲକୁ ଆସି ଯାଇଥାଆନ୍ତି । କେବଳ ମୋର ବନ୍ଧୁ ଉଦୟନାଥ ମିଶ୍ର ପରୀକ୍ଷା ହଲରେ ନଥାଏ । ଅଧ୍ୟାପକ ସଦାଶିବ ମିଶ୍ର ନିରୀକ୍ଷକ ଥାଆନ୍ତି । ପରିଜା ସାହେବଙ୍କ ନିର୍ଦ୍ଦେଶ ଅନୁସାରେ ଓ ନାରାୟଣ ବାବୁଙ୍କ କହିବା ମତେ ସଦାଶିବ ବାବୁ ସୁଲତାନିଆ ଷ୍ଟୋରକୁ ଯାଇ ମୋ ପାଇଁ

ଗୋଟିଏ ବ୍ଲାକବାର୍ଡ ଫାଉଣ୍ଟେନ୍‌ପେନ୍, ମୁଁ ବ୍ୟବହାର କରୁଥିବା ବାଇଗଣି କାଳି, ଖଣ୍ଡିଏ ଧୋତି ଓ ଖଣ୍ଡିଏ ହାଫସାର୍ଟ ଆଣିଲେ। ମୁଁ ଲେଖିବାକୁ ଆରମ୍ଭ କରିବାବେଳକୁ ଦେଢ଼ଘଣ୍ଟା ସରିଯାଇଥାଏ। ବେଳ ହୋଇଥାଏ ଦିନ ସାଢ଼େ ଏଗାରଟା। ପ୍ରଥମ ପତ୍ର ପରୀକ୍ଷା ସାରି ମୁଁ ସେହି ପରୀକ୍ଷଣାଗାରରେ ଗାଧୋଇଲି ଓ ମୋ ପାଇଁ କଳଖିଆ କିଣାହୋଇ ଅଣାଗଲା। ଅପରାହ୍ଣ ପରୀକ୍ଷା ଆରମ୍ଭବେଳକୁ ମୁଁ ସୁସ୍ଥ ଅବସ୍ଥାରେ ଥାଏ। ଲେଖିବସିଲି ସିନା, ପୂର୍ବ ରାତିରେ ଆଦୌ ଶୋଇ ନଥିବାରୁ ତିନିଟାବେଳ ସରିକି ଟେବୁଲରେ ମୁଣ୍ଡ ରଖି ଶୋଇପଡ଼ିଲି। ଅଧ୍ୟାପକ ସଦାଶିବ ମିଶ୍ର ମୋତେ ଉଠାଇଲେ। ମୁଁ ନିଦ ବାଉଳାରେ ଆଉ ଲେଖି ପାରିବି ନାହିଁ ବୋଲି କହିଲି। ସେ ମୋତେ ଅଧ୍ୟାପକ କୋଠରିକୁ ନେଇଗଲେ ଓ ମୁଁ ସେଠାରେ ପ୍ରାୟ ଚାରିଟା ପର୍ଯ୍ୟନ୍ତ ଶୋଇପଡ଼ିଲି। ଚାରିଟାବେଳକୁ ଫେରିଆସି ପୁଣି ଲେଖିବାକୁ ଆରମ୍ଭ କଲି। ପରୀକ୍ଷା ସରିବା ମାତ୍ରକେ ଅର୍ଥନୀତି ବିଭାଗର ଅଧ୍ୟାପକ ରୋହାତ୍‌ଗି ମୋତେ ଡାକି ଅଧ୍ୟକ୍ଷଙ୍କ ନିକଟକୁ ନେଇଗଲେ। ମୁଁ ଛାତ୍ରାବାସରେ ରହିବାକୁ ଚାହିଁଲେ ମୋ ରୁମ ଖୋଲି ଦିଆଯିବ ବୋଲି ପରିଜା ସାହେବ ନିର୍ଦ୍ଦେଶ ଦେଲେ। ଏକେତ ମୁଁ ଅର୍ଥନୀତି ଅନର୍ସ ଛାତ୍ର। ଅପର ପକ୍ଷରେ ଅଧ୍ୟାପକ ରୋହାତ୍‌ଗି ଛାତ୍ରାବାସର ସହକାରୀ ତତ୍ତ୍ୱାବଧାରକ। ମୁଁ ଛାତ୍ରାବାସରେ ଯାଇ ରହିଲି ଏବଂ କାଳେ ଅନ୍ୟ କେହି ଆସି ମୋତେ ପୁଣି ଥରେ ଟାଣି ନେଇଯିବ, ଏହି ଆଶଙ୍କାରେ ମୋ କୋଠରି ନିକଟରେ ଜଣେ ପୁଲିସ୍ ଜଗୁଆଳି ରହିଲା। ମଙ୍ଗଳବାର ସକାଳ ସୁଦ୍ଧା ଆହୁରି କେତେଜଣ ଛାତ୍ର ଛାତ୍ରାବାସରେ ରହିଲେ। ସହକାରୀ ତତ୍ତ୍ୱାବଧାରକଙ୍କ ଗୃହରେ ଆଶ୍ରୟ ନେଇଥିବା ବିଧୁଭୂଷଣ ଦାସ ଓ ତତ୍ତ୍ୱାବଧାରକଙ୍କ ଗୃହରେ ରହିଥିବା ପ୍ରଫୁଲ୍ଲ କୁମାର ପତି ଛାତ୍ରାବାସକୁ ଆସିଗଲେ। ଏହିପରି ଭାବରେ ପୁଲିସ୍ ନିର୍ଯାତନା ଯୋଗୁଁ ପରୀକ୍ଷା ଧର୍ମଘଟ ବିଫଳ ହେଲା ଏବଂ ଦ୍ୱିତୀୟ ଦିନଠାରୁ ରୀତିମତ ପରୀକ୍ଷା ଚାଲିଲା। କେବଳ ନୀଳମଣି ରାଉତରାୟ ଓ ବିଭୁଧେନ୍ଦ୍ର ମିଶ୍ର ଜେଲରେ ଥିଲେ ଓ ପରୀକ୍ଷା ହେଉଛି ବୋଲି ଜାଣି ନପାରି ଉଦୟନାଥ ମିଶ୍ର ପରୀକ୍ଷା ଦେଇ ପାରି ନଥିଲେ। ଲାଭ ଭିତରେ ଏତିକି ହେଲା ଯେ ପରିଜା ସାହେବ ରାଗିକରି ପରୀକ୍ଷା ପରେ ଓ କଲେଜ ଛାଡ଼ିବାବେଳକୁ ମୋ ଆଚରଣ ପ୍ରମାଣ ପତ୍ରରେ ଲେଖିଦେଲେ- "His conduct was on the whole satisfactory." ଅର୍ଥାତ୍ "ତା' ଆଚରଣ ଉଣା ଅଧିକ ସନ୍ତୋଷଜନକ ଥିଲା।" ଏହି ପ୍ରମାଣ ପତ୍ରକୁ ମୋ ଯୋଗାଣ ବିଭାଗ ଚାକିରି ଆରମ୍ଭ ବେଳେ ଅସନ୍ତୋଷଜନକ ବୋଲି ବିଚାର କରାଗଲା ଏବଂ କଲେକ୍ଟର ଏଲ.ପି.ସିଂହଙ୍କ ଅନୁରୋଧରେ ପରିଜା ସାହେବ ଏହି ପ୍ରମାଣ ପତ୍ରକୁ ବଦଳାଇ ସନ୍ତୋଷଜନକ ବୋଲି ଲେଖିଦେଲେ। ଏହିପରି ଭାବରେ ମୋର ବି.ଏ. ପରୀକ୍ଷା ଶେଷ ହେଲା ଓ ୧୯୪୦ ଜୁଲାଇ ମାସରେ ମୁଁ ଏମ୍.ଏ. ପଢ଼ିବା ଲାଗି ପାଟନା ଗଲି। ସେତେବେଳେ ଇଂରେଜୀ ବ୍ୟତୀତ ଅନ୍ୟ କୌଣସି ବିଷୟରେ ସ୍ନାତକୋତ୍ତର ଅଧ୍ୟାପନା ଲାଗି ଓଡ଼ିଶାରେ ସୁବିଧା ନ ଥିଲା।

ରେଭେନ୍‌ସା କଲେଜରେ ମୁଁ ଚାରିବର୍ଷ କାଳ ଅଧ୍ୟୟନ କରିଛି । ପ୍ରଥମ ବାର୍ଷିକ ଶ୍ରେଣୀରେ କୁଷ୍ଠରୋଗୀ ବୋଲି ମୋତେ ଛାତ୍ରାବାସରେ ସ୍ଥାନ ଦିଆଯାଇ ନଥିଲା , ଯଦିବା ଅଧ୍ୟକ୍ଷ ପରିଜା ଡାକ୍ତର କାଶୀନାଥ ମିଶ୍ର ଓ "ସମାଜ"ର ପରିଚାଳକ ରାଧାନାଥ ରଥଙ୍କ ସାହାଯ୍ୟ ଏବଂ ଡାକ୍ତର ବିଶ୍ୱନାଥ କରଙ୍କ ଉଦ୍ୟମ ଫଳରେ ମୁଁ କୁଷ୍ଠରୋଗାକ୍ରାନ୍ତ ନୁହେଁ ବୋଲି ଆନ୍ତର୍ଜାତିକ ଖ୍ୟାତି ସମ୍ପନ୍ନ ଡାକ୍ତର ଆଇଜାକ୍ ସାନ୍ତରା ଓ ଡକ୍ଟର ଲୋଙ୍କ ଠାରୁ ପ୍ରମାଣପତ୍ର ମିଳିଥିଲା । ଡକ୍ଟର ସାନ୍ତରାଙ୍କ ସୁପାରିସ ପଦ୍ମଶ୍ରୀ ଡକ୍ଟର ଲକ୍ଷ୍ମୀନାରାୟଣ ସାହୁଙ୍କ ବିନା ସାହାଯ୍ୟରେ ସମ୍ଭବପର ହୋଇ ନଥାନ୍ତା । ମୁଁ ସେମାନଙ୍କ ନିକଟରେ ଆଜୀବନ ଋଣୀ । ଏହି ବିଶେଷଜ୍ଞ ମତକୁ ବିଚାରକୁ ନେଇ ମୋ ଦ୍ୱିତୀୟ ବାର୍ଷିକ ଶ୍ରେଣୀରେ ଅଧ୍ୟକ୍ଷ ଶ୍ୟାମଚନ୍ଦ୍ର ତ୍ରିପାଠୀ ମୋତେ ପୂର୍ବ ଛାତ୍ରାବାସରେ ଗୋଟିଏ ଚାରିଜଣିଆ କୋଠରିରେ ରଖାଇଥିଲେ । ମୁଁ ସ୍ୱୀକାର କରିବାକୁ ଚାହେଁ ଯେ ପୂର୍ବ ଛାତ୍ରାବାସରେ ରହିଥିବାବେଳେ ମୋର କୌଣସି ଅସୁବିଧା ହୋଇନଥିଲା । ଏହି ଛାତ୍ରାବାସରେ ମୁଖ୍ୟତଃ ସମ୍ବଲପୁର ଅଞ୍ଚଳ ଓ ପୂର୍ବତନ ଗଡ଼ଜାତମାନଙ୍କରୁ ଆସିଥିବା ଛାତ୍ରମାନେ ରହୁଥିଲେ; ତେଣୁ ମୋର କେତେଜଣ ବ୍ୟକ୍ତିଗତ ବନ୍ଧୁଙ୍କ ପରାମର୍ଶରେ ମୁଁ ବି.ଏ. ଶ୍ରେଣୀରେ ପଶ୍ଚିମ ଛାତ୍ରାବାସରେ ରହିଲି । ମୋତେ ଗୋଟିଏ ଏକକ କୋଠରି ମିଳିଥିଲା । ପଶ୍ଚିମ ଛାତ୍ରାବାସରେ ରହଣି କାଳରେ ମୁଁ ଯେଉଁ ଗୁରୁତର ଅସୁବିଧାର ସମ୍ମୁଖୀନ ହୋଇଥିଲି ତାହା ଆଗରୁ ବର୍ଣ୍ଣନା କରିଛି । ସେତେବେଳେ ନିଖିଳ ଭାରତ କଂଗ୍ରେସ କାର୍ଯ୍ୟକାରୀ କମିଟିର ଅନ୍ୟତମ ସଭ୍ୟ ହରେକୃଷ୍ଣ ମହତାବ ମୋ କୋଠରିରେ ନିଆଁ ଲଗାଇଥିବା ଯୋଗୁଁ ପ୍ରଫୁଲ୍ଲ କୁମାର ପଟ୍ଟନାୟକଙ୍କ ପ୍ରତି ଦଣ୍ଡବିଧାନ ହେବା ଫଳରେ ମୋ ପ୍ରତି କ୍ରୋଧାନ୍ୱିତ ହୋଇ ମୋର ଅନିଷ୍ଟ କରିବା ଲାଗି ଏପରି ପ୍ରତିଜ୍ଞାବଦ୍ଧ ହେଲେ ଯେ ଏହି ଘଟଣାର ପ୍ରାୟ ଦଶବର୍ଷ ପରେ ମୁଁ ଆଇ.ଏ.ଏସ୍.ରେ ନିଯୁକ୍ତ ହେବାବେଳେ ତାହାର କୁପରିଣାମ ମୋତେ ଭୋଗ କରିବାକୁ ପଡ଼ିଥିଲା । ଏପରିକି ୧୯୪୫ରେ ମୁଁ ବାଲେଶ୍ୱରରେ ଯୋଗାଣ ବିଭାଗରେ କାର୍ଯ୍ୟ କରୁଥିବାବେଳେ ସେ ମୋତେ ବିଷ ଦୃଷ୍ଟିରେ ଦେଖୁଥିଲେ ଏବଂ ସେ ପ୍ରଧାନମନ୍ତ୍ରୀ ହେବା ପରେ ଏକ ପକ୍ଷରେ ମୋତେ ଚାକିରିରେ ସାତବର୍ଷ ପର୍ଯ୍ୟନ୍ତ ସ୍ଥାୟୀ କରାଇ ଦେଲେ ନାହିଁ ଏବଂ ୧୯୪୮ ନଭେମ୍ବର ମାସରେ ମୁଁ ଜୟପୁର କଲେଜକୁ ଯାଇ ୧୯୪୯ ଜୁଲାଇ ମାସରେ ବାଲେଶ୍ୱର କଲେଜକୁ ବଦଳି ହୋଇ ଆସିଲେ ବି ସେ ମୋତେ ସେଠାରେ ୧୯୪୯ ସେପ୍‌ଟେମ୍ବର ମାସରେ ଦେଖିବା ମାତ୍ରକେ ପୁନର୍ବାର ଜୟପୁର କଲେଜକୁ ଅକ୍ଟୋବର ମାସରେ ବଦଳି କରି ଦେଇଥିଲେ । ମୁଁ ଜୟପୁର କଲେଜରେ ଥିବା ଅବସ୍ଥାରେ ମୋ ଆଇ.ଏ.ଏସ. ନିଯୁକ୍ତି ରଦ୍ଦ ହେଲା ଏବଂ ୧୯୫୦ ମଇ ମାସରେ ସେ କେନ୍ଦ୍ର ମନ୍ତ୍ରିମଣ୍ଡଳରେ ଯୋଗଦେବା ଆଗରୁ ମୋତେ ଚାକିରିରୁ ଡିସ୍‌ମିସ୍ କରି ଦେଉଥିଲେ । ତାଙ୍କ ପରେ ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ହୋଇ ଆସିବାରୁ ସେ ଉକ୍ତ ହୁକୁମନାମାକୁ ରଦ୍ଦ କରି ମୋତେ

ରେଭେନ୍‌ସା କଲେଜକୁ ବଦଳି କରି ଦେଇଥିଲେ । ପରବର୍ତ୍ତୀ ଜୀବନରେ ମହତାବଙ୍କର ଏହି ତିକ୍ତତା ଆଉ ରହିନଥିଲା । ମୁଁ ନିଖିଳ ଭାରତ ରାଜନୀତି ବିଜ୍ଞାନ ସମ୍ମିଳନୀର ସଭାପତି ଥିବାବେଳେ ମୋର କେତେକ ଲେଖାପଢ଼ି ସେ ଉଚ୍ଚ ପ୍ରଶଂସା କରିଥିଲେ ଓ "ପ୍ରଜାତନ୍ତ୍ର"ରେ ପ୍ରଶଂସାସୂଚକ ସମ୍ପାଦକୀୟ ଲେଖାଇ ଥିଲେ ।

ମୁଁ ରେଭେନ୍‌ସା କଲେଜର ଛାତ୍ର ଥିବାବେଳେ ମୋର କେତେଜଣ ଅଧ୍ୟାପକଙ୍କ ବିଷୟରେ ଲିପିବଦ୍ଧ ନକଲେ କର୍ତ୍ତବ୍ୟରେ ହେଳା ହେବ । ମୁଁ ନାମ ଲେଖାଇବା ବେଳେ ଅଧ୍ୟକ୍ଷ ଥିଲେ ପ୍ରାଣକୃଷ୍ଣ ପରିଜା । ଅସୁସ୍ଥତା ଯୋଗୁଁ ସେ ଛୁଟି ନେବାରୁ ଇଂରେଜୀ ଅଧ୍ୟାପକ କିଶୋରୀ ପ୍ରସାଦ ସିହ୍ନା ଅଳ୍ପକାଳ ପାଇଁ ଅଧ୍ୟକ୍ଷ ଥିଲେ । ୧୯୩୬ ସେପ୍‌ଟେମ୍ବର ମାସରେ ସ୍ଥାୟୀ ଅଧ୍ୟକ୍ଷ ଶ୍ୟାମଚନ୍ଦ୍ର ତ୍ରିପାଠୀ ବିଲାତ ଗସ୍ତରୁ ଫେରି ଦାୟିତ୍ୱ ଗ୍ରହଣ କଲେ । ସେ ୧୯୩୮ ମସିହା ଜାନୁଆରୀ ୨୮ ତାରିଖ ପର୍ଯ୍ୟନ୍ତ ଅଧ୍ୟକ୍ଷ ପଦରେ ରହିଲେ ଏବଂ ଓଡ଼ିଶାର ପ୍ରଥମ ଶିକ୍ଷା ବିଭାଗ ନିର୍ଦ୍ଦେଶକ ଡିପି ସାହେବଙ୍କ ପରେ ନିର୍ଦ୍ଦେଶକ ପଦ ଗ୍ରହଣ କରିବା ଲାଗି କିଛିଦିନ ଓଡ଼ିଶା ବାହାରକୁ ଯାଇଥିଲେ । ପରେ ସେ ଆଉ ଅଧ୍ୟକ୍ଷ ପଦକୁ ନଫେରି ଶିକ୍ଷା ବିଭାଗ ନିର୍ଦ୍ଦେଶକ ଭାବରେ ନିଯୁକ୍ତି ପାଇ କାର୍ଯ୍ୟରେ ଯୋଗଦେଲେ ଏବଂ ଉଦ୍ଭିଦ ବିଜ୍ଞାନ ମୁଖ୍ୟ ଅଧ୍ୟାପକ ପ୍ରାଣକୃଷ୍ଣ ପରିଜା ସ୍ଥାୟୀ ଅଧ୍ୟକ୍ଷ ନିଯୁକ୍ତ ହେଲେ । ସେ ଅଧ୍ୟକ୍ଷ ଥିବାବେଳେ ମୁଁ ବି.ଏ. ଅନର୍ସ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଅର୍ଥନୀତିରେ ଏମ୍.ଏ. ପଢ଼ିବା ଲାଗି କଲେଜ ଛାଡ଼ି ପାଟନା ଯାଇଥିଲି । ମୁଁ କଲେଜରେ ଯୋଗଦେବାବେଳେ ପରିଜା ସାହେବ ଅଧ୍ୟକ୍ଷ ନଥିଲେ ମୋର ବୋଧହୁଏ କଲେଜ ପଢ଼ା ହୋଇପାରିନଥାନ୍ତା । ଅଧ୍ୟାପକମାନଙ୍କ ମଧ୍ୟରେ ମୁଁ ବିପିନ ବିହାରୀ ରାୟଙ୍କୁ ଜୀବନରେ ଭୁଲିପାରିବି ନାହିଁ । ସେ ମୋର ପିତୃକଳ୍ପ ଥିଲେ । ମୁଁ ନାମ ଲେଖାଇବାବେଳେ ଓଡ଼ିଶା ସାହିତ୍ୟର କଥା ସମ୍ରାଟ୍ ଫକୀର ମୋହନ ସେନାପତିଙ୍କ ପୁତ୍ର ମୋହିନୀ ମୋହନ ସେନାପତି ଦର୍ଶନ ବିଭାଗର ମୁଖ୍ୟ ଅଧ୍ୟାପକ ଥିଲେ । ବିପିନ ବାବୁ ଅନ୍ୟତମ ଦର୍ଶନ ଅଧ୍ୟାପକ ରୂପେ ଆମକୁ ଲଜିକ୍ ବା ତର୍କଶାସ୍ତ୍ର ପଢ଼ାଉଥିଲେ । ସେନାପତିଙ୍କ ପରେ ସେ ମଧ୍ୟ ମୋ ଟିଉଟୋରିଆଲ କ୍ଲାସ୍ ନେଉଥିଲେ । ସେ ମୋ ପ୍ରତି ଏତେ ଆକୃଷ୍ଟ ହେଲେ ଯେ, ସେ ମୋତେ ପ୍ରତ୍ୟେକ କ୍ଷେତ୍ରରେ ସାହାଯ୍ୟ କରିଥିଲେ ଏବଂ ତାଙ୍କରି ଅର୍ଥ ସାହାଯ୍ୟରେ ସ୍ନାତକୋତ୍ତର ବୃତ୍ତି ପାଇବା ଘୋଷଣା ଡେରି ହେବାରୁ ମୁଁ ପାଟନା କଲେଜରେ ନାମ ଲେଖାଇ ପାରିଥିଲି । ମୁଁ ବୃତ୍ତି ପାଇବା ପର୍ଯ୍ୟନ୍ତ ସେ ମୋତେ ମାସିକ ତିରିଶ ଟଙ୍କା ଲେଖାଏଁ ସାହାଯ୍ୟ ଦେଉଥିଲେ ଏବଂ ସେ ପାଟନା ବିଶ୍ୱବିଦ୍ୟାଳୟର ସିଣ୍ଡିକେଟ ସଭ୍ୟରୂପେ ଘନ ଘନ ପାଟଣା ଯାଉଥିବାରୁ ମୋତେ ନାନା ଭାବରେ ସାହାଯ୍ୟ କରୁଥିଲେ । ସେ ୧୯୪୩ ମସିହାରେ କାର୍ଯ୍ୟରୁ ଅବସର ଗ୍ରହଣ କଲେ । ସେହିବର୍ଷ ସରକାର ତାଙ୍କୁ ରାୟବାହାଦୁର ପଦରେ ଭୂଷିତ କରିଥିଲେ । ସେ ଅବସର ଗ୍ରହଣ କରିବା ପରେ

ଦୀର୍ଘ ବତିଶ ବର୍ଷ ସୁସ୍ଥ ଜୀବନ ଯାପନ କରି ମୁଁ ବିଶ୍ୱବିଦ୍ୟାଳୟ ଚାକିରିରୁ ବାଧ୍ୟତାମୂଳକ ଅବସର ଗ୍ରହଣ କରିବାର ପାଞ୍ଚଦିନ ପରେ ୧୯୬୫ ଡିସେମ୍ବର ୨୮ ତାରିଖ ଦିନ ସ୍ୱର୍ଗାରୋହଣ କଲେ । ସେ ତାଙ୍କ ଜୀବଦଶାରେ ଅସଂଖ୍ୟ ମେଧାବୀ ଛାତ୍ରଙ୍କୁ ଅର୍ଥ ସାହାଯ୍ୟ କରି ଜୀବନରେ ମଣିଷ କରାଇ ପାରିଥିଲେ । ସେମାନଙ୍କ ମଧ୍ୟରୁ ଅଧିକାଂଶ ବ୍ରାହ୍ମଣ ପିଲା ଥିବାରୁ ବଙ୍ଗାଳୀ କାୟସ୍ଥମାନେ ତାଙ୍କ ଉଦ୍ଦେଶ୍ୟକୁ ଭୁଲ ବୁଝି ତାଙ୍କୁ ବହୁ ପ୍ରକାର ଅପମାନିତ କରିଥିଲେ । ସେ ଓଡ଼ିଶାର ଭୂମି ଉନ୍ନୟନ ସମବାୟ ଆନ୍ଦୋଳନର ପ୍ରବର୍ତ୍ତକମାନଙ୍କ ମଧ୍ୟରୁ ଶୀର୍ଷସ୍ଥାନୀୟ ଥିଲେ ଏବଂ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠାତାମାନଙ୍କ ମଧ୍ୟରେ ଅନ୍ୟତମ ଥିଲେ । ପଣ୍ଡିତ ନୀଳକଣ୍ଠ ଦାସ ଓ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କର ସେ ମଧ୍ୟ ଜଣେ ରାଜନୈତିକ ପରାମର୍ଶଦାତା ଓ ସାହାଯ୍ୟକର୍ତ୍ତା ଥିଲେ । ଅନ୍ୟତମ ଦର୍ଶନ ଅଧ୍ୟାପକ ରତ୍ନାକର ପତି ନିଜ ଯଶ ଓ ଗୁଣରେ ଗରୀୟାନ । ସେ ଥିଲେ ପଣ୍ଡିତ ଗୋପବନ୍ଧୁ ଦାସଙ୍କର ବଡ଼ଭାଇ ।

ମୋ ଇଂରେଜୀ ଅଧ୍ୟାପକମାନଙ୍କ ମଧ୍ୟରେ ଥିଲେ କେ.ପି. ସିହ୍ନା ଓ ତାଙ୍କ ବଦଳି ପରେ ପି.ଏସ୍. ସୁନ୍ଦରମ, ନିରଞ୍ଜନ ନିୟୋଗୀ, କୃତ୍ତିବାସ ସାମନ୍ତରାୟ, ନାରାୟଣ ମୋହନ ଦେ ଓ ଜୋନାଥନ ମହାନ୍ତି । ଅଳ୍ପଦିନ ପାଇଁ ଡକ୍ଟର ମାୟାଧର ମାନସିଂହ, କୀର୍ତ୍ତନ ବିହାରୀ ପଟ୍ଟନାୟକ ଓ ପୂର୍ଣ୍ଣଚନ୍ଦ୍ର ପଟ୍ଟନାୟକ ଅସ୍ଥାୟୀ ଅଧ୍ୟାପକ ରୂପେ ମୋତେ ଇଂରେଜୀ ପଢ଼ାଇଛନ୍ତି । କାଶୀନାଥ ଦାସ, ଆର୍ତ୍ତବଲ୍ଲଭ ମହାନ୍ତି ଓ ଲକ୍ଷ୍ମୀକାନ୍ତ ଚୌଧୁରୀ ମୋର ସଂସ୍କୃତ ଓ ଓଡ଼ିଆ ଅଧ୍ୟାପକ ଥିଲେ । ଦର୍ଶନ ଅଧ୍ୟାପକ ପଦ ଖାଲି ନଥିବାରୁ ରତ୍ନାକର ପତି ସମ୍ବଲପୁର ଜିଲ୍ଲା ସ୍କୁଲର ପ୍ରଧାନ ଶିକ୍ଷକ ପଦରୁ କଲେଜକୁ ଓଡ଼ିଆ ଅଧ୍ୟାପକ ରୂପେ ୧୯୩୬ରେ ବଦଳି ହୋଇ ଆସିଥିଲେ । ଏହି ଅଧ୍ୟାପକମାନେ ସାହିତ୍ୟରେ ଜଣେ ଜଣେ ରଥୀ ଥିଲେ । ମୁଁ ବି.ଏ. ପରୀକ୍ଷା ଦେବାର ପ୍ରାୟ ମାସକ ଆଗରୁ ଲକ୍ଷ୍ମୀକାନ୍ତ ଚୌଧୁରୀ ସ୍ୱର୍ଗାରୋହଣ କଲେ । ସେ ଏପରି ସ୍ନେହୀ ଓ ଦରଦୀ ଥିଲେ ଯେ, ତାଙ୍କ ମୃତ୍ୟୁ ଛାତ୍ର ଓ ଅଧ୍ୟାପକମାନଙ୍କୁ ଖୁବ୍ ବାଧିଥିଲା । ମୁଁ ତାଙ୍କ ସ୍ନେହର ପାତ୍ର ହୋଇଥିବା ମୋର ଭାଗ୍ୟ ଥିଲା । ମୁଁ ମଧ୍ୟ ତାଙ୍କ ମୃତ୍ୟୁ ସମୟରେ କଟକ ମେଡ଼ିକାଲ ସ୍କୁଲ ହାସ୍‌ପାତାଳରେ ତାଙ୍କ ଶଯ୍ୟା ପାଖରେ ଥିଲି ।

ମୁଁ ଆଇ.ଏ. ପଢ଼ିବାବେଳେ ଗଣିତ ନେଇଥିଲି । ହରେକୃଷ୍ଣ ଦାସ, ବାମାଚରଣ ଦାସ ଓ ରମାନାଥ ମହାନ୍ତି ମୋର ଗଣିତ ଅଧ୍ୟାପକ ଥିଲେ । ନାମ ଲେଖାଇବାବେଳେ ସରସୀ ମୋହନ ଦାସ ୧୯୩୬ ଜୁଲାଇରୁ ଡିସେମ୍ବର ୧୩ ତାରିଖ ପର୍ଯ୍ୟନ୍ତ ଗଣିତ ଅଧ୍ୟାପକ ଥିଲେ । ରମାକାନ୍ତ ମହାନ୍ତିଙ୍କ ନିଯୁକ୍ତି ପରେ ସେ କଲେଜରୁ ବିଦାୟ ନେଲେ । ଅଧ୍ୟାପକ ହରେକୃଷ୍ଣ ଦାସ ମୋର ରହଣି ସ୍ଥାନ ବିଷୟକ ଟିଉଟର ଥିଲେ । ମୁଁ ଯେତେବେଳେ ବଙ୍ଗାଳୀ ସାହିର ବାଉରି ପଣ୍ଡା ହୋଟେଲରେ ରହୁଥିଲି । ସେହିଠାରେ ମୋତେ ୧୯୩୬ ଅଗଷ୍ଟ ୧୫ ତାରିଖ ଦିନ ହଇଜା

ହୋଇଥିଲା । ହରେକୃଷ୍ଣ ବାବୁ ମୁଁ ହୋଟେଲରେ ରହୁଛି ବୋଲି ଲେଖି ଦେଇଥିଲେ ମୋ କଲେଜ ପଢ଼ାରେ ଇତି ହୋଇଥାଆନ୍ତା । ତାହା ସେ କରିନଥିଲେ ଓ ହଇଜା ପରେ ମୁଁ ରେଭେନ୍ସା କଲେଜ ଫାଟକ ପାଖରେ ଗୋଟିଏ ଘର ନେଇ ରହିବା ପର୍ଯ୍ୟନ୍ତ ସେ ଅଧ୍ୟକ୍ଷଙ୍କୁ ଜଣାଇଥିଲେ ଯେ ମୁଁ ରେଭେନ୍ସା କଲେଜିଏଟ୍ ସ୍କୁଲର ଶିକ୍ଷକ କବି ବୈକୁଣ୍ଠନାଥ ପଟ୍ଟନାୟକଙ୍କ ମାର୍ଫତରେ ରହୁଥିଲି; କାରଣ ବୈକୁଣ୍ଠ ବାବୁ କାଗଜପତ୍ରରେ ମୋର ସ୍ଥାନୀୟ ଅଭିଭାବକ ଥିଲେ ।

ମୁଁ ସ୍ନାତକ ସ୍ତରରେ ଗଣିତ ପରିବର୍ତ୍ତେ ଇତିହାସ ନେଇଥିଲି । ନିଶିକାନ୍ତ ସାନ୍ୟାଲ, ଘନଶ୍ୟାମ ଦାସ ଓ ନିର୍ମଳ ଚନ୍ଦ୍ର ବାନାର୍ଜୀ ମୋର ଇତିହାସ ଅଧ୍ୟାପକ ଥିଲେ । ନିଶିକାନ୍ତ ବାବୁ ଓ ନିର୍ମଳ ବାବୁ ଥରେ ଲେଖାଏଁ ଛ' ମାସ କାଳ ଛୁଟି ନେଇଥିଲେ ବୋଲି ପ୍ରଥମେ ବୈଦ୍ୟନାଥ ରଥ ଓ ପରେ ଶ୍ରୀମତୀ ପଦ୍ମା ସୁନ୍ଦରମ୍ ଅସ୍ଥାୟୀ ଇତିହାସ ଅଧ୍ୟାପକ ରୂପେ ଯୋଗ ଦେଇଥିଲେ । ରେଭେନ୍ସା କଲେଜ ଇତିହାସରେ ଶ୍ରୀମତୀ ପଦ୍ମା ସୁନ୍ଦରମ୍ ଥିଲେ ପ୍ରଥମ ଅଧ୍ୟାପିକା । ଶ୍ରେଣୀରେ ଉପସ୍ଥାନ ନିଆଯିବାବେଳେ ଦଳେ ଚଗଲା ଟୋକା ଜାଣିଶୁଣି 'ୟେସ୍ ସାର୍' କିମ୍ବା 'ପ୍ରେଜେଣ୍ଟ ସାର୍' ବୋଲି କହୁଥିଲେ । ଅଧିକାଂଶ କହୁଥିଲେ 'ୟେସ୍ ମ୍ୟାଡ଼ାମ୍'। ଉପସ୍ଥାନ ନିଆଯିବାବେଳେ ଏତେ ହସ ହେଉଥିଲା ଯେ, ଶ୍ରୀମତୀ ସୁନ୍ଦରମ୍ ପରାମର୍ଶ ଦେଲେ- "ତୁମେ ସମସ୍ତେ ସାର୍ କହିବାରେ ଅଭ୍ୟସ୍ତ; ତେଣୁ ସେହି ୟେସ୍ ସାର୍ କୁହ ।" ତାହାହିଁ ହେଲା ।

ମୋତେ ଶ୍ରୀ ଜଗଦାନନ୍ଦ ମହାନ୍ତି ପ୍ରାଚୀନ ଭାରତ ଇତିହାସ ପଢ଼ାଉଥିଲେ । ସେ ୧୯୩୮ରେ ଅଧ୍ୟାପକ ରୂପେ ନିଯୁକ୍ତି ପାଇଲେ । ସେ ବୋଧହୁଏ ତାଙ୍କ ବଡ଼ଭାଇ ପ୍ରେମାନନ୍ଦ ମହାନ୍ତି ପାରଳାଖେମୁଣ୍ଡି କଲେଜର ଅଧ୍ୟକ୍ଷ ଥିବାବେଳେ ତାଙ୍କ ପାଖରେ ରହି ପାଠ ପଢୁଥିଲେ, କାହିଁକି ନା ତାଙ୍କ ଉଚ୍ଚାରଣରେ ତେଲୁଗୁ ଭାଷାର ପ୍ରଭାବ ଥିଲା ।

ମୁଁ ସ୍ନାତକ ଶ୍ରେଣୀରେ ଅର୍ଥନୀତିରେ ଅନର୍ସ ନେଇଥିଲି । ମୁଁ ତୃତୀୟ ବାର୍ଷିକ ଶ୍ରେଣୀରେ ନାମ ଲେଖାଇବା ମାତ୍ରକେ ପ୍ରଥମେ ଇଂରେଜୀରେ ଅନର୍ସ ନେଲି । କାରଣ ଆଇ.ଏ. ପରୀକ୍ଷାରେ ମୁଁ ବିଶ୍ୱବିଦ୍ୟାଳୟରେ ପ୍ରଥମ ହେଲି ବୋଲି ମୋତେ ସେକ୍ସପିଅରଙ୍କ ଗ୍ରନ୍ଥାବଳୀ ଓ ଆଉ କେତେକ ଇଂରେଜୀ ବହି ଦେଇଥିଲେ । ମୁଁ ଇଂରେଜୀରେ ଅନର୍ସ ନେଇଛି ବୋଲି ଶୁଣି ପୂର୍ବଛାତ୍ରାବାସରେ ମୋର ତତ୍ତ୍ୱାବଧାରକ ଥିବା ଅଧ୍ୟାପକ ଘନଶ୍ୟାମ ଦାସ ଇତିହାସ ଅନର୍ସ ନେବା ଲାଗି ପ୍ରବର୍ତ୍ତାଇ ଇଂରେଜୀ କ୍ଲାସରୁ ଘେନି ଆସିଲେ । ପ୍ରକାଶ ଥାଉକି, ଅଧ୍ୟାପକ ସୁନ୍ଦରମ୍ ପୂର୍ବଛାତ୍ରାବାସରେ ମୋର ଓ୍ୱାର୍ଡନ ଥିଲେ । କିଛିଦିନ ପରେ ଅଧ୍ୟାପକ ବିପିନ ବିହାରୀ ରାୟଙ୍କ ପରାମର୍ଶରେ ମୁଁ ଇତିହାସ ଛାଡ଼ି ଦର୍ଶନ ଶାସ୍ତ୍ରରେ ଅନର୍ସ ନେବାକୁ ସ୍ଥିର କରିଥିଲି; କିନ୍ତୁ ଅଧ୍ୟକ୍ଷ ପରିଜା ସାହେବ ମୋତେ ଡାକି ପରାମର୍ଶ ଦେଲେ ଯେ, ୧୯୪୪ରେ ରେଭେନ୍ସା କଲେଜରେ ଗୋଟିଏ ଅର୍ଥନୀତି ଅଧ୍ୟାପକ ପଦ ଖାଲି ହେଉଥିବାରୁ ମୁଁ ଅର୍ଥନୀତି ଅନର୍ସ ନିଏ ବୋଲି ଶିକ୍ଷା

ବିଭାଗ ନିର୍ଦ୍ଦେଶକ ତ୍ରିପାଠୀ ସାହେବ ଚାହାଁନ୍ତି । ଶେଷରେ ତାହାହିଁ ହେଲା ଓ ମୁଁ ଅର୍ଥନୀତି ଅନର୍ସ ଶ୍ରେଣୀରେ ଯୋଗ ଦେଲି ।

ଅର୍ଥନୀତି ବିଭାଗର ମୁଖ୍ୟ ଅଧ୍ୟାପକ ଥିଲେ ସୁରେଶ ଚନ୍ଦ୍ର ବର୍ଦ୍ଧନ । ସେ ଆମକୁ ଭାରତୀୟ ଅର୍ଥନୀତି ପଢ଼ାଉଥିଲେ । ତାଙ୍କର ଗୋଟିଏ ଆଖି କଣା ଥିଲା । ସେ ଅତ୍ୟନ୍ତ ଧୀରେ ପଢ଼ାନ୍ତି ବୋଲି ଆମ ଶ୍ରେଣୀରେ କେତେକ ଚଗଲା ପିଲା ତାଙ୍କ ଡାହାଣ କଣା ଆଖି ସେପଟେ ବସି ହଜିରା ପଡ଼ିସାରିବା ପରେ ଆସ୍ତେ ଆସ୍ତେ ଚାଲିଯାଆନ୍ତି । କ୍ଲାସ୍ ଶେଷ ହେବାବେଳକୁ ଅଧେ ପିଲା ନଥାନ୍ତି । ସେ ଏତେ ଅମାୟିକ ଥିଲେ ଯେ, ଏକଥା ଜାଣିଲେ ବି ସେ ଦିନେ ହେଲେ କାହାକୁ କିଛି ଏଥିପାଇଁ କହୁନଥିଲେ । ଅନ୍ୟତମ ଅଧ୍ୟାପକ ଥିଲେ ବିହାରର ଭୈରବନାଥ ରୋହାତ୍‌ଗୀ । ସେ କଣେ ବିଲାତ ଫେରନ୍ତା ଅଧ୍ୟପାକ । ସେ ଇଂଲଣ୍ଡର ସମ୍ବିଧାନ ଓ ରାଜନୀତି ଶାସ୍ତ୍ରର ଅର୍ଦ୍ଧେକ ଅତି ଚମତ୍କାର ଭାବରେ ପଢ଼ାଉଥିଲେ । ୧୯୩୮ ଜୁଲାଇ ମାସରେ ରେଭେନ୍‌ସା କଲେଜର ଆଇ.ଏ. ଶ୍ରେଣୀରେ ପ୍ରଥମ କରି ଅର୍ଥନୀତି ପଢ଼ାହେଲା । ସେ ଅର୍ଥନୀତିରେ ଅର୍ଥ, ବ୍ୟାଙ୍କ୍ ଓ ଆନ୍ତର୍ଜାତିକ ବ୍ୟାପାର ଏବଂ ରାଜନୀତି ବିଜ୍ଞାନରେ ଭାରତୀୟ ସମ୍ବିଧାନ ପଢ଼ାଉଥିଲେ । ସେ ଭଲ ପଢ଼ାନ୍ତି ସିନା, ତାଙ୍କର ଛାତ୍ରମାନଙ୍କ ପ୍ରତି ସମଦୃଷ୍ଟି ନଥିଲା । କେଜାଣି କାହିଁକି ସେ ମୋତେ ଆଦୌ ପସନ୍ଦ କରୁନଥିଲେ ଓ ମୋ ସହାଧ୍ୟାୟୀ ବିଦ୍ୟାଧର ମିଶ୍ରକୁ ଉପରକୁ ଉଠାଇବା ଲାଗି ସର୍ବଦା ଚେଷ୍ଟିତ ଥିଲେ । ମୁଁ ତାଙ୍କ ଅଧ୍ୟାପନାରେ ଏତେ ମୁଗ୍‌ଧ ହୋଇଥିଲି ଯେ, ଅର୍ଥନୀତି ଦ୍ୱିତୀୟ ପତ୍ରରେ ତାଙ୍କ କ୍ଲାସ ନୋଟ୍‌କୁ ମୁଖସ୍ଥ କରି ପରୀକ୍ଷାରେ କମ୍ ନମ୍ବର ରଖି ବିଶ୍ୱବିଦ୍ୟାଳୟରେ ଦ୍ୱିତୀୟ ହେଲେହେଁ ତିନି ନମ୍ବର ଯୋଗୁଁ ପ୍ରଥମ ଶ୍ରେଣୀ ହରାଇଥିଲି । ପାଟନା କଲେଜର ଶୈଳେଶ କୁମାର ବୋଷ ଗୋଟିଏ ନମ୍ବର ଅଧିକ ରଖି ପ୍ରଥମ ସ୍ଥାନ ଅଧିକାର କରିଥିଲା ।

ମୋ ଅଧ୍ୟାପକମାନଙ୍କ ମଧ୍ୟରୁ କେତେକଣ ରାଜ୍ୟରେ ପ୍ରସିଦ୍ଧି ଲାଭ କରିଥିଲେ । ଇଂରେଜୀ ଅଧ୍ୟାପକମାନଙ୍କ ମଧ୍ୟରୁ ନାରାୟଣ ମୋହନ ଦେ କବି, ଗାଳ୍ପିକ ଓ ପ୍ରାବନ୍ଧିକ ଏବଂ ଅଧ୍ୟାପକ ଜନାର୍ଦ୍ଦନ ମହାନ୍ତି ଗାଳ୍ପିକ ଓ ସମାଜସେବୀ ହିସାବରେ ଖ୍ୟାତି ଅର୍ଜନ କରିଥିଲେ । ଓଡ଼ିଆ ଅଧ୍ୟାପକମାନଙ୍କ ମଧ୍ୟରୁ ରାୟ ବାହାଦୁର ଆର୍ତ୍ତବଲ୍ଲଭ ମହାନ୍ତି ପ୍ରାଚୀ ସମିତି ପ୍ରତିଷ୍ଠା କରି ଓଡ଼ିଆ ସାହିତ୍ୟର ବହୁ ପ୍ରାଚୀନ ଗ୍ରନ୍ଥର ସଟୀକ ସଂସ୍କରଣ ପ୍ରକାଶ କରି ଅକ୍ଷୟ କୀର୍ତ୍ତି ରଖି ଯାଇଛନ୍ତି । ଅଧ୍ୟାପକ ଲକ୍ଷ୍ମୀକାନ୍ତ ଚୌଧୁରୀ ଜଣେ ସଙ୍ଗୀତପ୍ରେମୀ ଥିଲେ ଓ ତାଙ୍କ ପ୍ରଚେଷ୍ଟାରେ ସେ ଲକ୍ଷ୍ମୀକାନ୍ତ ସଙ୍ଗୀତ ବିଦ୍ୟାଳୟ ନାମକ ଯେଉଁ ଅନୁଷ୍ଠାନ ଗଢ଼ିଥିଲେ ତାହା ଏବେ ଉତ୍କଳ ସଙ୍ଗୀତ ବିଦ୍ୟାଳୟ ନାମରେ କାର୍ଯ୍ୟ କରୁଛି । ଇତିହାସ ଅଧ୍ୟାପକମାନଙ୍କ ମଧ୍ୟରୁ ଅଧ୍ୟାପକ ନିଶିକାନ୍ତ ସାନ୍ୟାଲ ଜଣେ ଗୌଡ଼ୀୟ ବୈଷ୍ଣବ ଥିଲେ ଏବଂ ବୈଷ୍ଣବ ସାହିତ୍ୟ ଓ ଇତିହାସ

ସମ୍ବନ୍ଧରେ ଗ୍ରନ୍ଥ ରଚ଼ନା କରିଯାଇଛନ୍ତି । ଅଧ୍ୟାପକ ନିର୍ମଳ ଚନ୍ଦ୍ର ବାନାର୍ଜୀ ସଉକରେ ହୋମିଓପ୍ୟାଥି ଚିକିତ୍ସା କରୁଥିଲେ ଏବଂ କୌଣସି ଛାତ୍ର ବା ଅଧ୍ୟାପକ ବେମାର ପଡ଼ିଛି ବୋଲି ଶୁଣିଲେ ସ୍ୱତଃପ୍ରବୃତ୍ତ ଭାବରେ ତାଙ୍କର ଚିକିତ୍ସା କରୁଥିଲେ । ଦର୍ଶନ ଓ ତର୍କଶାସ୍ତ୍ର ଅଧ୍ୟାପକମାନଙ୍କ ମଧ୍ୟରୁ ଅଧ୍ୟାପକ ସେନାପତି, ଅଧ୍ୟାପକ ରାୟ୍ ବାହାଦୂର, ବିପିନ ବିହାରୀ ରାୟ୍ ଓ ଅଧ୍ୟାପକ ରତ୍ନାକର ପତି ପ୍ରବନ୍ଧ ସାହିତ୍ୟ କ୍ଷେତ୍ରରେ ଯଥେଷ୍ଟ କୃତିତ୍ୱ ଅର୍ଜନ କରିଯାଇଛନ୍ତି । ଅଧ୍ୟକ୍ଷ ଡକ୍ଟର ପ୍ରାଣକୃଷ୍ଣ ପରିଜାଙ୍କ ଗବେଷଣା ବିଶ୍ୱବିଖ୍ୟାତ । ସେ ବିଷୟରେ ମତଦେବା ମୋ ପକ୍ଷରେ ଧୃଷ୍ଟତା ହେବ । ଏହି ପ୍ରସିଦ୍ଧ ଅଧ୍ୟାପକମାନଙ୍କ ସାହଚ଼ର୍ଯ୍ୟ ମୋ ଭଳି ଛାତ୍ରମାନଙ୍କୁ ଗୌରବାନ୍ୱିତ କରୁଥିଲା ।

ଆଜିକାଲି ଗଣତାନ୍ତ୍ରିକ ଓ ସମାଜବାଦୀ ଯୁଗରେ ନିମ୍ନ ଶ୍ରେଣୀର କର୍ମଚ଼ାରୀମାନଙ୍କ କଥା ନଲେଖିଲେ ଏହା କର୍ତ୍ତବ୍ୟହାନି ରୂପେ ବିବେଚ଼ିତ ହୋଇପାରେ । ଆମ ହେଡ୍‌କ୍ଲର୍କ ଥିଲେ ଜଗନ୍ନାଥ ମିଶ୍ର । ସେ କେବଳ ଛାତ୍ର କାହିଁକି, ନୂତନ ଅଧ୍ୟାପକମାନଙ୍କର ଅଭିଭାବକ ଓ ପରାମର୍ଶଦାତା ରୂପେ କାର୍ଯ୍ୟ କରୁଥିଲେ । ହିସାବ ରକ୍ଷକ ଥିଲେ ସାଧୁ ଚରଣ ପରିଜା । ପ୍ରତି ତିନି ମାସରେ ଥରେ ବୃତ୍ତି ଟଙ୍କା ଆଣିବା ଲାଗି ମୁଁ ତାଙ୍କ ନିକଟକୁ ଯାଉଥିଲି । ତାଙ୍କ ପୁଅ ଶ୍ରୀ ନାରାୟଣ ପ୍ରସାଦ କାନୁନ୍‌ଗୋ ମୋର ସହାଧ୍ୟାୟୀ ଥିବାରୁ ସେ ମୋତେ ପୁତ୍ରତୁଲ୍ୟ ଆଦର ଓ ସ୍ନେହ କରୁଥିଲେ । ସେ ଦୁହେଁ ତ ବଡ଼ କିରାଣି ଥିଲେ । ତାଙ୍କ ସହିତ ସମ୍ପର୍କ କେତେକାଂଶରେ ସଂଯତ ଥିଲା । କନିଷ୍ଠ କିରାଣି ଥିଲେ ଦ୍ୱାରିକାନାଥ ଦାସ । ଅବସର ଗ୍ରହଣ ପରେ ସେ ବାବାଜୀ ହୋଇଯାଇଛନ୍ତି । ଆମର ସବୁ ଅଳି ଅର୍ଦ୍ଦଳି ସେ ଶୁଣି ସାହାଯ୍ୟ କରୁଥିଲେ ।

ଆମ ଛାତ୍ର ଜୀବନରେ ଅଧ୍ୟାପକ ଓ ଅନ୍ୟାନ୍ୟ ଶିକ୍ଷା କର୍ମଚ଼ାରୀମାନେ ଯେଉଁ ସ୍ନେହ, ଆଦର ଓ ଶ୍ରଦ୍ଧା ଆମ୍ଭମାନଙ୍କ ପ୍ରତି ପ୍ରଦର୍ଶନ କରିଛନ୍ତି ତାହାକୁ ଜୀବନରେ ଭୁଲି ହେବନି । କେବଳ ସେହିମାନଙ୍କ ଯୋଗୁଁ ଛାତ୍ର ଜୀବନ ମଧୁମୟ ହୋଇଥିଲା । ସେମାନେ ମୋର ନମସ୍ୟ । ସେମାନଙ୍କ ପ୍ରତି ମଧ୍ୟ ମୁଁ କୃତଜ୍ଞତା ପାଶରେ ଆବଦ୍ଧ ।

•

---

***ମୋ ଅଜୁହା କାହାଣୀ***, କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର,
ଦ୍ୱିତୀୟ ସଂସ୍କରଣ, ୨୦୦୩

# ରେଭେନ୍‌ସା କଲେଜ

## ଶତ୍ରୁଘ୍ନ ନାଥ

ଶିକ୍ଷାର ତୃତୀୟ ବର୍ଷ, ରେଭେନ୍‌ସା କଲେଜରେ। ମିଷ୍ଟର ତ୍ରିପାଠୀ (ଶ୍ରୀ ଶ୍ୟାମ ଚରଣ ତ୍ରିପାଠୀ) ଆମ ଅଧ୍ୟକ୍ଷ ଥା'ନ୍ତି। ୧୯୩୬ରୁ ୧୯୩୮ ମସିହା ପର୍ଯ୍ୟନ୍ତ। ସେ ହେଉଛନ୍ତି ଆମ କଲେଜର ପ୍ରଥମ ଓଡ଼ିଆ ଅଧ୍ୟକ୍ଷ। ୧୯୩୬ ଏପ୍ରିଲ ମାସ ପ୍ରଥମ ଦିନ, ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଦିବସ। ସେତେବେଳକୁ ଶ୍ରୀ ବି.କେ. ସିଂହ ବୋଧହୁଏ ଅଧ୍ୟକ୍ଷ ଥା'ନ୍ତି। ମୋର ମନେହୁଏ ସେଦିନ ଆମ ଛାତ୍ରାବାସରେ ସ୍ୱତନ୍ତ୍ର ଭୋଜି ହୋଇଥାଏ। ଆମେ ଆନନ୍ଦିତ ଥାଉଁ। କେତେକ ବନ୍ଧୁ ଆମିଷାହାରୀ, କିନ୍ତୁ ନିରାମିଷାଶୀଙ୍କ ସହିତ କିଛି ଉଭୟ ଖାଦ୍ୟ ଖାଇବାର ମଉଜ କରିଛନ୍ତି। ସଭାସମିତି, ଆଲୋଚ଼ନା, ଆଲୋକସଜା ଆଦି ଯାହା ହେବାର କଥା ହୋଇଛି କି ନାହିଁ, କହିପାରିବି ନାହିଁ।

କିନ୍ତୁ ମିଷ୍ଟର ତ୍ରିପାଠୀ ଛାତ୍ରବତ୍ସଳ। ଆମେ ସବୁ କଲେଜ କମନ ରୁମ୍‌ରେ ବସିଥାଉଁ। ଗପ ସପ କରୁ, ଆଡ୍ଡା ମାରୁ। ଖବରକାଗଜ ପୃଷ୍ଠା ଲେଉଟାଉଁ। ଆଜିକାଲି ଖବରକାଗଜ ପଢ଼ିବାକୁ ଯେପରି ଗୁରୁତ୍ୱ ଦିଆଯାଉଛି ଓ ହାଇସ୍କୁଲସ୍ତରରୁ ସୁଦ୍ଧା ପିଲାମାନେ ପଢ଼ିବା ଆରମ୍ଭ କରିଦେଉଛନ୍ତି ବା ଆବଶ୍ୟକତା ଅନୁଭବ କରୁଛନ୍ତି ସେପରି ନ ଥାଏ। ହଠାତ୍ ତ୍ରିପାଠୀ ସାହେବ ଚୌକିଟିଏ ଟାଣିଆଣି ପିଲାଙ୍କ ମେଳରେ ଜମିଯାଆନ୍ତି। "କିସ କରୁଛ ?" କହି ଆମ ସହିତ କଥାବାର୍ତ୍ତା ଜମାଇ ଦିଅନ୍ତି। ଏହା ବିରଳ ଦୃଷ୍ଟାନ୍ତ, ଯାହାର ପଟାନ୍ତର ମହାବିଦ୍ୟାଳୟ ବା ସ୍କୁଲ ସ୍ତରରେ ପ୍ରବେଶ ନାହିଁ କହିଲେ ଚଳେ। ସେ ପୁଣି ବିଲାତ ଫେରନ୍ତା। ଭାରତୀୟ ଶିକ୍ଷା ସେବା (I.E.S.) ଯୋଗ୍ୟତା ପ୍ରାପ୍ତ ତାଙ୍କ ଚେହେରା ଦେଖିଲେ ସେବେଳରେ ଭୟ ଲାଗୁଥିଲା। ଦୀର୍ଘ, ପ୍ରସ୍ଥ ଓ ମୋଟେଇ ଆଖିଦୃଶିଆ। ଏପରି ଅଧ୍ୟକ୍ଷ ମୋ ଦୃଷ୍ଟିରେ ନାହାନ୍ତି କହିଲେ ଚଳେ। ଏପରି ବ୍ୟକ୍ତି ପିଲାଙ୍କ ସ୍ତରକୁ ଆସି ଏକାତ୍ମ ହେବା ଉଦାରତା, ସ୍ନେହଶୀଳତା ଓ ମହାନୁଭବତାର ଚିହ୍ନ। ସେ ସହଜରେ ଆମ୍ଭମାନଙ୍କୁ ଆପଣାର କରି ନେଉଥିଲେ। ଆଜିକାଲି ଆମେ ପିଲାଙ୍କୁ ଆପଣାର ନ କରି ପର କରି ଦେଉଛୁଁ। ଦୂରେଇ ଯାଉଛୁ ଆମ ପିଲାଙ୍କଠାରୁ। ଆପଣାର ଆୟତ୍ତ ପରକୁ ଦେଇ, ଶିବ ପଳାଇଲେ ଲଙ୍ଗଳା ହୋଇ। ଆମ ଆୟତ୍ତରେ ଆମ ପିଲା, ଆମେ ତାଙ୍କୁ ପର ହାତରେ

ଦେଉଛନ୍ତି । କଳୁଷିତ ରାଜନୀତି, ଟାଉଟରି, ମନ୍ଦ ମତି, କୁସଙ୍ଗ ଓ ନିଶାସକ୍ତି ସେମାନଙ୍କୁ ଟେକି ଦେଉଛ । ଆମେ ସେମାନଙ୍କୁ ବୁଝିଲେ, ବୁଝାଇଲେ, ସ୍ନେହର ସମ୍ପର୍କ ରଖି ପାରିଥିଲେ ଆମ ମାନମର୍ଯ୍ୟାଦା ଦାଣ୍ଡରେ ପଡ଼ି ହାଟରେ ଗଡ଼ାଗଡ଼ି କରନ୍ତା ନାହିଁ ।

ଥରେ ଆମେ ଖବର ପାଇଲୁ, ତହିଁ ପରଦିନ ତ୍ରିପାଠୀ ସାହେବ ଆମକୁ କଲେଜ କ୍ୱାଡ୍ରେଙ୍ଗଲ (Quadrangle)ରେ ଭେଟିବେ । ଘଣ୍ଟା ବାଜିଛି । ଆମେ ସବୁ ଧାଡ଼ି ଧରି ଧାଉଁଛୁ ସେ ଆଡ଼କୁ । ପୂର୍ବ ଛାତ୍ରାବାସର ଅନ୍ତେବାସୀମାନେ ଆସୁଥା'ନ୍ତି । ପୂର୍ବ ଓ ପଶ୍ଚିମ ଆଜି ପ୍ରଥମ ଥର ପାଇଁ ମିଳିତ ହୋଇଛନ୍ତି । ଅଧ୍ୟକ୍ଷ ମହୋଦୟ ମଝିରେ । ସେ ଆହ୍ୱାନ ଦିଅନ୍ତି, "କ୍ୱାଡ୍ରେଙ୍ଗଲରେ ଘାସ କଅଁଳୁ ନାହିଁ । କାଠଯୋଡ଼ି ନଦୀରୁ ପଟୁମାଟି ଆଣିବା ।" ଅଭିନବ କଥାଟିଏ, ଏପର୍ଯ୍ୟନ୍ତ ଅଭିନବତାର ଆନନ୍ଦ ଛାଡ଼ି ନାହିଁ । କଲେଜ ପ୍ରତି ଆମ କର୍ତ୍ତବ୍ୟ କରିବା । ଆଜିର ଭାଷାରେ Work experience – କର୍ମାନୁଭୂତି ଶିକ୍ଷା କରାଯିବ । ଅଧ୍ୟକ୍ଷ, ଅଧ୍ୟାପକ ଓ ଅଧ୍ୟାୟୀମାନେ ମିଳିମିଶି ଏହି କାମରେ ହାତ ଦେବେ । ଯାହା ଜଣକ ହାତରେ ମୂଠାଟିଏ, ତାହା ସମସ୍ତଙ୍କ ହାତରେ ସହଯୋଗରେ ଟ୍ରକଟିଏ । ଦୁଇଧାଡ଼ି ବିଶିଷ୍ଟ ଧାଡ଼ିଟିଏ ହୋଇଛି । ଆଗରେ ଅଧ୍ୟକ୍ଷ । ଲମ୍ବଧାଡ଼ିର ପଛରେ ଅଧ୍ୟାପକ । ଛତ୍ରବଜାରରୁ ଦୋଳମୁଣ୍ଡାଇ ଓ ସେଠୁ କାଠଯୋଡ଼ି ଯାଏଁ ଲୋକ ଥାଟପଟାର । ଖରାଦିନ ଓ ପଟୁମାଟି ଆଁ କରି ରହିଛନ୍ତି ବାଲିର ଶେଯ ଉପରେ । ଗୋଟି ଗୋଟି କରି ଉଠାଇ ନେଇଛୁଁ, ଖବର କାଗଜରେ ଧରିଛୁଁ । ସାଉଁଳି ବନ୍ଧା ଗାମୁଛା ଅଧ୍ୟକ୍ଷଙ୍କର ଗୋଟିଏ ପାଖ ପୃଥୁଳକାୟ ପେଟ ଉପରେ ଓ ଅନ୍ୟପାଖଟି ପିଠି ଉପରେ ଝୁଲୁଥାଏ । ଦୁଃଖ ଲାଗେ, ସେ ବେଳରେ ଫଟୋ ପ୍ରଚଳନ ନ ଥିଲା । ଏହି ଅଦ୍ଭୁତ ଦୃଶ୍ୟ ଖବର କାଗଜର ଦୃଷ୍ଟିକୁ ଆସି ନାହିଁ । କଲେଜର ସେବାରେ ଲାଗିପଡିଛୁ ।

ସେ ବେଳରେ ନୂଆ, ଆଜି ବି ନୂଆ । ଅନ୍ୟ ଏକ ନୂଆ ଘଟଣା ଶିକ୍ଷା ଇତିହାସରେ ନୂଆ ହୋଇ ରହିଯାଇଛି । ଉଭୟ ଛାତ୍ରାବାସର ଅନ୍ତେବାସୀ ଓ ଅଳ୍ପ କେତେକଣ ଦିବାଧ୍ୟାୟୀ ସଞ୍ଜ ସଞ୍ଜ ବେଳେ ଏକତ୍ର ଭୋଜନ କରୁଥାଉଁ । ପଶ୍ଚିମ ଛାତ୍ରାବାସ ପାଖ Quadrangle ଚୌକି ଟେବୁଲ ପଡ଼ିଥାଏ । ବିଜୁଳି ଆଲୁଅ ପଡ଼ିଆରେ ଏହା ଗହଳିକୁ ଚକ୍‌ଚକ୍ କରୁଥାଏ । ପରଷୁଥାନ୍ତି ଅଧ୍ୟକ୍ଷ ଓ ଅଧ୍ୟାପକମାନେ । ବଡ଼ପାଟିଆ ଆମ ଅଧ୍ୟକ୍ଷ । ଲଡୁ ଲଡୁ ଡାକ ଛାଡ଼ିଥା'ନ୍ତି । ପୁଡ଼ି ପୁଡ଼ି କହୁଥା'ନ୍ତି ମିଷ୍ଟର ରୋହାତଗୀ । ଅନ୍ୟ କଅଣ ଭୋଜନ ସାମଗ୍ରୀ ଥାଏ ମନେ ପଡୁନାହିଁ । କାହା ମୁଣ୍ଡରୁ ଏକଥା ବାହାରିଛି ଓ କିଏ ବ୍ୟୟବହନ କରିଛନ୍ତି ମୁଁ ଜାଣେ ନାହିଁ । ଆମେ ତ ନିମନ୍ତ୍ରିତ ଅତିଥି, ଭୋଜନପ୍ରିୟ । ପିଠା ବିନ୍ଧ ଗଣିବୁ କାହିଁକି ? ପରିବେଶ ଡାକରାରେ କମ୍ପୁଛି । ଆମେ ଖାଇବାରେ ବ୍ୟସ୍ତ, ପାଟି କରିବୁ କାହିଁକି ? ଅଧ୍ୟାପକମାନଙ୍କର ପଢ଼ାଇବା ଅଭ୍ୟାସ ଓ ସେମାନେ କଲେଜର ଅଧିକାଂଶ ପିଲାଙ୍କୁ ପାଇ ଆନନ୍ଦରେ ଲଡୁ, ପୁରୀ, ତରକାରି କହି ଆମ

ପାଖରେ ପହଞ୍ଚନ୍ତି । ଆମେ ସିନା ଅଧ୍ୟକ୍ଷ , ଅଧ୍ୟାପକ ଓ ଅନ୍ୟମାନଙ୍କୁ ନିମନ୍ତ୍ରଣ କରି ଭୋଜନ ଦେଉ ଉତ୍ସବାନୁଷ୍ଠାନରେ । ଏଥର ଉକାଣି ବହିଛି, ସେମାନେ ଆମ୍ଭମାନଙ୍କୁ ନିମନ୍ତ୍ରଣ କରି ଭୋଜନରେ ଆପ୍ୟାୟିତ କରିଛନ୍ତି । ଉଭୟଙ୍କ ମଧ୍ୟରେ ସହୃଦୟତା ଓ ସୁସମ୍ପର୍କର ପ୍ରସାର ପାଇଁ ଏହାର ଆୟୋଜନ ବୋଲି ଅନୁଭବ କରିଛି । ତାହାହିଁ ନିଜ ଜୀବନରେ ବହୁସ୍ଥାନରେ ବିଶେଷ କରି ଅନୁଗୁଳ ମୌଳିକ ତାଲିମ ଭବନରେ ଏକାଧିକ ବର୍ଷ ପ୍ରୟୋଗ କରିଛି ଓ ବିପୁଳ ଆନନ୍ଦ ପାଇଛି । ମୋର କେତେକ ଛାତ୍ର ଏହାର ପୁନରାବୃତ୍ତି କରିବାର ମୁଁ ଜାଣେ । ସାମାନ୍ୟତମ ତ୍ୟାଗ, ସଦ୍‌ଭାବନା ଆମ ଶିକ୍ଷକ ଓ ଆମ ସହିତ ଶିକ୍ଷାର୍ଥୀଙ୍କ ମଧ୍ୟରେ ସ୍ନେହର ଡୋରିଟି ଆମକୁ ବାନ୍ଧି ପକାଏ ।

ମୋର ଚାରିବର୍ଷର କଲେଜ ଜୀବନ ମଧ୍ୟରୁ ଏକାଦିକ୍ରମେ ତିନିବର୍ଷ ଛାତ୍ରାବାସରେ ଅତିବାହିତ କରିଛି । ଏହା କଲେଜ ଶିକ୍ଷାପାଇଁ ଅନୁକୂଳ ହୋଇଥିବାର ହୃଦ୍‌ବୋଧ ହୋଇଛି । ପ୍ରତିଦିନର ପାଠ ପାଇଁ ପୁରୁଣା ପାଠ ପଢ଼ିକରି ଯାଏଁ ଓ ସେଦିନର ପାଠ୍ୟ ପାଇଁ ମଧ୍ୟ ଚିନ୍ତା କରିଥାଏ । ତେଣୁ ଯେଉଁ ନୂତନ ପାଠ ଉପସ୍ଥାପନ କରାଯାଏ, ତାହା ବୁଝିବା ଓ ଶିକ୍ଷକଙ୍କ ପାଠଦାନ ସହିତ ତାଳ ମେଳକରି ଚାଲିବା କଷ୍ଟକର ହୁଏ ନାହିଁ । ଛାତ୍ରାବାସର ଜୀବନ ଶୃଙ୍ଖଳିତ ଓ ନିୟମିତ ହୋଇଥିବାରୁ ଏହାର ସଦୁପଯୋଗ କରିବା ସମ୍ଭବ ହୁଏ । ଅତଏବ ମହାବିଦ୍ୟାଳୟର ଲକ୍ଷ୍ୟ ପୂରଣ ପାଇଁ ଛାତ୍ରାବାସ ଯେ ସହାୟକ, ଏହା ଅନୁଭବ କରିଛି । ପରିବାର ପରି ଛାତ୍ରାବାସ ଏପରି ଭୂମିକା ଗ୍ରହଣ କରିପାରିଲେ ଶିକ୍ଷାରେ ସଫଳତା ଅର୍ଜନ କରିବା ସମ୍ଭବ ହୁଅନ୍ତା ।

କଲେଜରେ ମଧ୍ୟ ଘଣ୍ଟା ବାଜେ । ରୁଟିନ୍ ଅନୁସାରେ ପାଠପଢ଼ା ଯାଏ । ଅପ୍ରତ୍ୟାଶିତ ଅଶାନ୍ତି ଯୋଗୁଁ ପାଠ ନ ପଢ଼ି ଫେରିଆସିବା ସେତେବେଳେ ଜଣା ନ ଥିଲା । ବରଂ ଦୁଇ ପିରିଅଡ଼ ମଧ୍ୟରେ ଯଦି କିଛି ସମୟ ଅବସର ଥାଏ ଏହାର ସଦୁପଯୋଗ କରିବା ଲାଇବ୍ରେରୀ କରେ । ପତ୍ର ପତ୍ରିକା ଦେଖିବା ଓ ବହି ଆଡ଼େ ଦୃଷ୍ଟି ଦେବା ମୋର କାମ । ଗ୍ରନ୍ଥାଗାରିକ ଦାମବାବୁଙ୍କୁ ସାହେବ ଅଧ୍ୟକ୍ଷ ଓ ଅଣଓଡ଼ିଆ ଅଧ୍ୟାପକ Damned ବାବୁ  ଉଚ୍ଚାରଣ କରୁଥିବାରୁ ଆମ୍ଭମାନଙ୍କ ମଧ୍ୟରେ ଉପଭୋଗ୍ୟ ହସ ଚାଲେ । ସେ କିନ୍ତୁ ସ୍ନେହୀ ଓ ଆମ୍ଭମାନଙ୍କୁ ବୁଲାଇ ବହି ଦେଖାଇବାରେ ଆନନ୍ଦ ଅନୁଭବ କରନ୍ତି । ଆଜିକାଲି ପରି ବହିର ପୃଷ୍ଠା ଫାଡ଼ି ନେବା ବା ହରଣଚାଳ କରିବା ସେତେବେଳେ ଜଣାନଥିଲା ।

ମାତୃଭାଷା ଓଡ଼ିଆ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ଓ ଅଧ୍ୟାପକ ଲକ୍ଷ୍ମୀକାନ୍ତ ଚୌଧୁରୀ ପଢ଼ାଉଥିଲେ । ଦୁହିଁଙ୍କର ବିଶେଷ କରି ଆର୍ତ୍ତବାବୁଙ୍କ ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରୀତି ସେ ବେଳର ଇଂରାଜୀ ହାଉଆ ସମୟରେ ଆମ୍ଭମାନଙ୍କୁ ପ୍ରଭାବିତ କରୁଥିଲା । ଗବେଷଣା ଦ୍ୱାରା ପ୍ରାଚୀନ ଓଡ଼ିଆ ସାହିତ୍ୟର ଉଦ୍ଧାର କରୁଥିବା ଯୋଗୁଁ ସେ ନିଜକୁ କଲେଜ ଓ ବାହାରେ ପ୍ରତିଷ୍ଠିତ

କରିପାରିଥିଲେ। ତେଣୁ ଆମ୍ଭେମାନେ ତାଙ୍କୁ ଭକ୍ତି କରୁଥିଲୁ। ସେ ରାୟ୍ ସାହେବ, ରାୟ୍ ବାହାଦୁର ଓ ପଦ୍ମଶ୍ରୀ ଉପାଧିରେ ଭୂଷିତ ହୋଇଥିଲେ। ପ୍ରାଚୀ ସମିତି ଗଠନ କରି ବହୁ ଗ୍ରନ୍ଥକୁ ପୋଥିରୁ ଉଦ୍ଧାର କରି ପୁସ୍ତକ ରୂପେ ପ୍ରକାଶ କରିଛନ୍ତି। I.Sc. ଓ B.A. ଶ୍ରେଣୀରେ ଇଂରାଜୀ ଶିକ୍ଷା ଉପରେ ବେଶ୍ ଗୁରୁତ୍ୱ ଦିଆଯାଉଥିଲା। ସମସ୍ତେ ପ୍ୟାଣ୍ଟ, କୋର୍ଟ/ ସାର୍ଟ ଟାଇ ପିନ୍ଧୁଥିବାବେଳେ ଅଧ୍ୟାପକ ନିରଞ୍ଜନ ନିୟୋଗୀଙ୍କୁ ପୂରା ସଫା ଧୋତି ଓ ପଞ୍ଜାବି ପିନ୍ଧୁଥିବାର ଦେଖିଛି। ଭଲ ଅକ୍ଷରରେ ଶୁଦ୍ଧ ଭାଷାରେ ଇଂରାଜୀ ଲେଖି ପାରିଲେ ଶତକଡ଼ା ୫୦ ନମ୍ବର ମିଳିବ ବୋଲି ସେ ଆମ୍ଭମାନଙ୍କୁ ନିଶ୍ଚିତ କରି ଦିଅନ୍ତି। ପାଠ୍ୟପୁସ୍ତକ ସହିତ ପରିଚିତ ହୋଇପାରିଲେ ଶତକଡ଼ା ୬୦ ନମ୍ବର ରଖିବା ସହଜ ବୋଲି ତାଙ୍କ ଉପଦେଶ। ଅଧ୍ୟାପକ ଯନାଥନ ମହାନ୍ତି ଆମ୍ଭମାନଙ୍କୁ ଇଂରାଜୀ ପଢ଼ାଉଥା'ନ୍ତି। ତିନିଚାରି ଜଣ ଭଉଣୀ ଆମ ଶ୍ରେଣୀରେ ଥା'ନ୍ତି। ସେମାନେ ବରଣ୍ଡାରେ ଅପେକ୍ଷା କରିଥା'ନ୍ତି ଓ ଶିକ୍ଷକଙ୍କର ଶ୍ରେଣୀରେ ପ୍ରବେଶ କରିବା ମାତ୍ରେ ସେମାନେ ଆସନ୍ତି। ସେମାନଙ୍କ ପାଇଁ ଡେସ୍କ ମିଶା ବେଞ୍ଚ ଥାଏ। ଦିନେ ଏହା ଟେର୍ଚ୍ଛା ହୋଇ ଦୂରେଇ ଥାଏ। ଅଧ୍ୟାପକ ମହାନ୍ତି ଆସିବାମାତ୍ରେ ଛାତ୍ରୀମାନେ ସବୁଦିନ ପରି ଶ୍ରେଣୀ କୋଠରିକୁ ପଶିଆସନ୍ତି। ଏମାନଙ୍କ ସୁବିଧା ପାଇଁ ଶିକ୍ଷକ ମହୋଦୟ ଡେସ୍କଟିକୁ ଟାଣି ସିଧା କରି ଦିଅନ୍ତି ଓ ଚଡ଼ ଚଡ଼ କରି ଶବ୍ଦ ସହ ନିଆଁ ବାହାରିପଡ଼େ। ଦୀପାବଳୀ ଅମାବାସ୍ୟା ପାଖେଇ ଆସୁଥିବାରୁ କଟକ ସହରରେ ଫୋଟା ଆରମ୍ଭ ହୋଇଯାଇଥାଏ। ଏପରି ରସିକତାରୁ ଆମ ସମୟ ବାଦ୍ ପଡ଼ି ନ ଥିଲା। ଶ୍ରୀ କୃତ୍ତିବାସ ସାମନ୍ତରାୟ ଓ ଶ୍ରୀ ନାରାୟଣ ମୋହନ ଦେ ମଧ୍ୟ ପଢ଼ାନ୍ତି। ଶ୍ରୀ କୃପାନାଥ ମିଶ୍ର ଅଦ୍ଭୁତ ଉଚ୍ଚାରଣ କରନ୍ତି ଓ ଶ୍ରୀ କେ.ପି. ସିହ୍ନା ସଦ୍ୟ ଯୋଗ ଦେଇଥା'ନ୍ତି। ସେ ପଢ଼ାଇବା ବେଳେ ବାରମ୍ବାର ରୁମାଲରେ ମୁହଁ ପୋଛନ୍ତି ଓ ରୁମାଲଟିକୁ ପକେଟରେ ନ ପୂରାଇ ପୂରା ସାର୍ଟ ବାଁ ପାଖ ହେଣ୍ଡକପ୍ ଭିତରକୁ ପୂରାଇଥା'ନ୍ତି। ଚଟକରି ବାହାର କରି ପୁଣି ପୂରାଇ ଦିଅନ୍ତି।

ଏପରି ଆନନ୍ଦରେ ସମୟ କଟିଛି। ସେ ସମୟର ବିଭିନ୍ନ ଶିକ୍ଷକମାନଙ୍କ ଠାଣି ଆମ୍ଭମାନଙ୍କୁ ଆନନ୍ଦ ଦେଇଛି। I.Sc. ପରୀକ୍ଷା ସରିଲା। ଠିକ୍ ମନେ ନାହିଁ; କିନ୍ତୁ ଆଙ୍ଗୁଳିରେ ଗଣିଲା ପରି ଅଳ୍ପ କେତେଜଣ ପିଲା ପ୍ରଥମ ଶ୍ରେଣୀରେ ଥା'ନ୍ତି ଓ ସେ ତାଲିକାରେ ମୋ ନାମ ଥାଏ। ଗୁରୁଜନମାନେ ସନ୍ତୁଷ୍ଟ ହୁଅନ୍ତି। ଏ ସମ୍ବାଦ ଭଦ୍ରକ ହାଇସ୍କୁଲ ଓ ନାରାୟଣ ଚନ୍ଦ୍ର ମି.ଇ. ସ୍କୁଲରେ ପ୍ରତିଧ୍ୱନିତ ହୁଏ ଓ ମୋତେ ସେମାନେ ଧନ୍ୟ ଧନ୍ୟ କହନ୍ତି। କିନ୍ତୁ ଆଜିକାଲି ପରି ତାରବାର୍ତ୍ତା ପଠାଇବା ବା ଚିଠି ଦେବା ସେତେବେଳେ ନଥାଏ। ଏହି ସୁସମ୍ବାଦ ଆମ ଗାଁକୁ ସମ୍ଭବତଃ ଯାଇ ନାହିଁ ଓ ମୋ ମା' ଏହା ଜାଣି କଅଣ ବୁଝିବେ। ମୋ ଶ୍ରମ ସାର୍ଥକ ହୋଇଛି, ସେଥିପାଇଁ ପ୍ରଭୁ ପରମାତ୍ମାଙ୍କ ଠାରେ କୃତକୃତ୍ୟ ହୋଇଛି।

ପିତୃପ୍ରତିମ ଯଦୁବାବୁ ଓ ପୃଷ୍ଠପୋଷକ ଅଧ୍ୟାପକ ବିପିନ ବାବୁଙ୍କ ଆସ୍ଥାଭାଜନ ହୋଇପାରିଛି। ସେମାନଙ୍କ ମନ୍ତ୍ରଣା ଚାଲେ, ନାଥ ଏବେ କଅଣ କରିବ ? ପଢ଼ା ଚାଲୁ ରହିବ।

କିନ୍ତୁ B.Sc. ପଢ଼ିବ ନାହିଁ । ପରବର୍ତ୍ତୀ M.Sc. ପାଠ ପାଟନାରେ ଓ ଏହାପରେ ଚାକିରିରେ ଆଶା କିଛି ନାହିଁ । ବରଂ B.A. ପଢ଼ିଲେ କିଛି ବାଟ ମିଳିଯିବ । ତେଣୁ Mathematics (Honours) ସହ Economics ପାସ୍ ନେବାର ସ୍ଥିର ହେଲା । ମାସିକ ଟ୨୦.୦୦ର ବୃତ୍ତିଟିଏ ଦୁଇବର୍ଷ ପାଇଁ ନିଶ୍ଚିତ ହୋଇଯାଏ ।

ପୁଣି ଆସେ ଆଶଙ୍କା, ଭୟ ଓ ବିପଦ । ପାଞ୍ଚ ଛଅ ବର୍ଷ ହେଲା ଗଣିତ (Honours) କେହି ନେଇ ନାହାନ୍ତି । ଯଦି କେହି ନାମ ଲେଖାଉଛନ୍ତି, ମାସେ ପରେ ଛାଡ଼ି ଦେଉଛନ୍ତି । ତଥାପି ପରମେଶ୍ୱରଙ୍କୁ ସ୍ମରଣ କରି ସମସ୍ତଙ୍କ ଆଶୀର୍ବାଦ ନେଇ ନାମ ଲେଖାଇଛି । ଛାତ୍ରାବାସ ଓ ମହାବିଦ୍ୟାଳୟରୁ ପୂର୍ବ ପରି ସମସ୍ତ ସୁବିଧା ମିଳିଯାଇଛି ।

ସେ ବେଳର ଗଣିତ ସ୍ନାତକ ଶିକ୍ଷା ବିଭାଗୀୟ ମୁଖ୍ୟ ଥାନ୍ତି ଅଧ୍ୟାପକ ହରେକୃଷ୍ଣ ଦାସ । ତାଙ୍କୁ ଆମ୍ଭେମାନେ ଆମ ଭିତରେ ଥିଟା (θ) ବୋଲି ଡାକୁ । ଖୁବ୍ ସରଳ, ନିରାଡ଼ମ୍ବର, ଅମାୟିକ ବିଷୟ ବିଶାରଦ ସେ ଥିଲେ । ଗଣିତ ଶିକ୍ଷକ ଭାବରେ ତାଙ୍କ କଳାପଟା ବ୍ୟବହାର ଆକର୍ଷଣୀୟ । ପାଠପଢ଼ା ସରିଲେ ତାଙ୍କ କଳା କୋର୍ଟ ଉପରେ ଧଳା ଚକ୍ ଗୁଣ୍ଡ ବୁଣି ହୋଇ ଯାଇଥାଏ ଓ ଏହାକୁ ବ୍ରଶ୍ ସାହାଯ୍ୟରେ ପୋଛନ୍ତି । ସେ ପାଟନା ବିଶ୍ୱବିଦ୍ୟାଳୟରେ ଗଣିତ Honours ପଢୁଥିବାବେଳେ ସାତ ରିମ୍ କାଗଜରେ ଅଙ୍କ କଷିଥିଲେ ବୋଲି କହନ୍ତି । ବିସ୍ମୟାଭିଭୂତ କଥା ହେଲେହେଁ ଏହା ଆମ୍ଭମାନଙ୍କ ମନରେ ଆଗ୍ରହ ସୃଷ୍ଟି କରୁଥାଏ । ଆମେ ସେତେବେଳକୁ ଏକ ଦିସ୍ତା କାଗଜକୁ ଦୁଇ ଦିସ୍ତାରେ ଲଗାଉଁ, ଆଉ ପ୍ରଥମେ ପେନ୍‌ସିଲରେ ଲେଖି ତା'ପରେ ପର କଲମରେ ଲେଖୁଥାଉଁ । ଗଣିତ ଶିକ୍ଷକ ଭଲ ଇଂରାଜୀ ଜାଣନ୍ତି ନାହିଁ ବୋଲି ହାସ୍ୟୋଦ୍ଦୀପକ ଖ୍ୟାତି ଆମେ ଶୁଣିବାକୁ ଓ ଦେଖିବାକୁ ପାଇଛୁଁ । ଥରେ Pass କ୍ଲାସରେ କେହି କେହି ଦୁଷ୍ଟ ଛାତ୍ର ଡେସ୍କମିଶା ବେଞ୍ଚଗୁଡ଼ିକୁ ବିଶୃଙ୍ଖଳିତ କରି ଦେଇଥା'ନ୍ତି । ସେ ନିଜେ ଟଣାଟଣି କରି ସଜାଡ଼ନ୍ତି ଓ କହନ୍ତି- This is office, do not handle in this way. କଟକ ଚଣ୍ଡୀଛକସ୍ଥିତ ବାସଭବନରୁ କଲେଜକୁ ସେ ସାଇକେଲରେ ଧୀରେ ଧୀରେ ଆସନ୍ତି । ହପିଙ୍ଗ କରି ଚଢ଼ନ୍ତି ଓ ଫୁଟପିନ୍ ଉପରେ ଗୋଡ଼ ଦେଇ ଓହ୍ଲାନ୍ତି । ଦିନେ ସେ ଫେରୁଥା'ନ୍ତି । କଲେଜ ଆଗ ସାମ୍ନା ଫାଟକ ପାରି ହୋଇ ଉଠାଣି ପଡ଼େ । ସାଇକେଲକୁ ଜାବୁଡ଼ି ଧରିଥାନ୍ତି । ଜଣେ କେହି ଛାତ୍ର ତାଙ୍କୁ ନମସ୍କାର ଜଣାଇଛନ୍ତି । ପ୍ରତି ନମସ୍କାର କିପରି କରିବେ ? ଆଗ ଚକ ହଲି ଯାଇଛି । ସେ ଅସ୍ତବ୍ୟସ୍ତ ହୋଇ କହିଛନ୍ତି, Do not do me in this way. This is road. ଆଜିର ସମୟରେ ସାଇକେଲ Street cat ହୋଇଛି ଓ କେତେ କଅଣ ଦି' ଚ଼କିଆ ଯାନ ବାହାରିଛି କହିଲେ ନ ଚଳେ । ସେ ବେଳର ଶିକ୍ଷକ ଅଧ୍ୟାପକ ଦାସ କେତେ ସରଳ, ସ୍ନେହୀ, ନିଷ୍କପଟ ଓ ନିର୍ଗୀହ ଥିଲେ ଆଜି ବୁଝି ହେବ ନାହିଁ । ସେ ଆମକୁ ଅନ୍ୟାନ୍ୟ ବିଷୟ ସହିତ vector

ପଢ଼ାଉଥିଲେ । ଆଜି ଏହା ଯୁକ୍ତ ଦୁଇ ଶ୍ରେଣୀର ଗଣିତ ପାଠ୍ୟ ହୋଇଛି । Mathematics is the queen of all sciences. ଗାଣିତିକ ଜ୍ଞାନର ବୈପ୍ଳବିକ ବିସ୍ଫୋରଣ ଘଟିଛି । ତଦନୁସାରେ ଆହୁରି ଉଚ୍ଚତର ଗଣିତ ତଳ ଶ୍ରେଣୀରୁ ପଢ଼ାଯିବା ଉଚିତ । ଆହୁରି ମଧ୍ୟ ଆମେ Intermediate class ର ଯେଉଁ ବିଜ୍ଞାନ ବିଷୟ ପଢୁଥିଲୁ, ସେସବୁ ବର୍ତ୍ତମାନ ସ୍କୁଲ ସ୍ତରରେ ଆହୁରି କଠିନ କରି ପଢ଼ାଯାଉଛି । କଠିନ ପରିଶ୍ରମ ଓ ସ୍ୱାଧ୍ୟାୟ ସହିତ ଜ୍ଞାନର ବିସ୍ଫୋରଣ ଓ ପ୍ରତିଭାର ବିସ୍ଫୋରଣ ତାଳମେଳ ରଖିବା ଉଚିତ । ଏ ଦୃଷ୍ଟିରୁ ସ୍କୁଲ ଓ ମହାବିଦ୍ୟାଳୟକୁ ନିଜ ନିଜ ପାଠ୍ୟକ୍ରମ ସ୍ଥିର କରିବା ପାଇଁ ସ୍ୱାଧୀନତା ଦେବା ଉଚିତ । ପରୀକ୍ଷା ମଧ୍ୟ ତଦନୁସାରେ ସମସ୍ତଙ୍କ ପାଇଁ ଗୋଟିଏ ସ୍ତରରେ ଏକପ୍ରକାର ନ କରି ଆଞ୍ଚଳିକ ସ୍ତରରେ ଭିନ୍ନ ଭିନ୍ନ କରିବା ଉଚିତ । ବରଂ ପରୀକ୍ଷାକୁ ଉଠାଇ ଦେଇ ଉପସ୍ଥାନ ସମେତ କେତେକ କୃତିକୁ ଆଧାରିତ କରି Record Card କରିବା ଉଚିତ । ଏହାକୁ ଧରି ଶିକ୍ଷାର୍ଥୀମାନେ ଜୀବନ ସଂଗ୍ରାମରେ ଯୋଗ ଦିଅନ୍ତୁ ।

ଯାହାହେଉ, ଥିଟା ସାର୍ (ଅଧ୍ୟାପକ ଦାସ) ନିଜ ବହି ଦିଅନ୍ତି । ନିଜେ ଅଙ୍କ କଷିବା ପାଇଁ ଉତ୍ସାହିତ କରନ୍ତି । ତାଙ୍କୁ ସ୍ମରଣ କରିବା ମୋର ଗୌରବ ଓ ଆଜିର ଶିକ୍ଷାର୍ଥୀପିଢ଼ିଙ୍କୁ ଜଣାଇ ଦେବା କର୍ତ୍ତବ୍ୟ । Prof. B. C. Das (ଅଧ୍ୟାପକ ବାମାଚରଣ ଦାସ) Coordinate Geometry ପଢ଼ାନ୍ତି । ଛୋଟ ଛୋଟ ଅକ୍ଷର । ପ୍ରତ୍ୟେକଟି ସୁସ୍ପଷ୍ଟ ଓ ସୁନ୍ଦର । କଳାପଟାରେ କବିତା ଲେଖିଲା ପରି ଜଣାଯାଏ । ଗାଣିତିକ Principle ର ଧାରଣା ଅତି ପ୍ରାଞ୍ଜଳ । ପରବର୍ତ୍ତୀ କାଳରେ ସେ ଅଧ୍ୟକ୍ଷ ଓ ଶିକ୍ଷାନିର୍ଦ୍ଦେଶକ ହୋଇଛନ୍ତି । ଛାତ୍ରବେଳର ମୋ ପ୍ରତି ତାଙ୍କ ଧାରଣା ସାରା ଜୀବନରେ ଅତୁଟ ରହିଛି ଓ ମୁଁ ନିଜକୁ ଧନ୍ୟ ମନେ କରିବା ସହିତ ତାଙ୍କୁ ପ୍ରଣାମ ଜଣାଉଛି । ରାଜ୍ୟରେ ଓ ଆନ୍ତର୍ଜାତିକ ସମ୍ମିଳନୀରେ ଭାରତର ଅନ୍ୟତମ ପ୍ରତିନିଧି ଭାବେ ନିଜ ଅଧ୍ୟବସାୟର ତୀକ୍ଷ୍ଣ ବୁଦ୍ଧିମତ୍ତା ଏବଂ ନିଷ୍ଠାର ପରିଚୟ ଦେଇଛନ୍ତି । ଓଡ଼ିଶାରେ ୧୯୭୮-୭୯ରୁ ୧୯୮୨-୮୩ ମଧ୍ୟରେ ନୂତନ କଲେଜ ପ୍ରତିଷ୍ଠା ପାଇଁ ସମ୍ବଲପୁର ବିଶ୍ୱବିଦ୍ୟାଳୟର ପୂର୍ବତନ କୁଳପତି ଅଧ୍ୟାପକ ଭୁବନେଶ୍ୱର ବେହେରା ଓ ଶିକ୍ଷା ନିର୍ଦ୍ଦେଶକ ଅଧ୍ୟାପକ ବିଧୁଭୂଷଣ ଦାସଙ୍କ ସମେତ ତିନିଜଣିଆ କମିଟିର ରିପୋର୍ଟ ସୁଚିନ୍ତିତ ଓ ସୁବିସ୍ତୃତ ହୋଇଛି । ୧୯୭୮-୭୯ରେ ଏକାମ୍ର କଲେଜର ଅଧ୍ୟକ୍ଷ ଥିବାବେଳେ ସଭାପତି ଓ ମୋ ଶିକ୍ଷକ ଅଧ୍ୟାପକ ବାମାଚରଣ ଦାସ ଆମ କଲେଜ ପରିଦର୍ଶନ କରିଛନ୍ତି ଓ ଆମ କଲେଜର ସଭାପତି ଡଃ ମହତାବଙ୍କ ସହିତ ଆଲୋଚନା କରିଛନ୍ତି । ସେପରି ଅଧ୍ୟାପକ ଥା'ନ୍ତି ଡଃ ରମାକାନ୍ତ ମହାନ୍ତି । ସେ Astronomy ପଢ଼ାନ୍ତି । ତାଙ୍କ ପ୍ରଥମ ଅଧ୍ୟାପକ ଜୀବନରେ ମୁଁ ତାଙ୍କର ଗଣିତ ଛାତ୍ର, ମୋ Honours class ରେ । କଳାପଟା କାମ ସଫାସୁତୁରା, ପୂରା କଳାପଟାରେ ବିରାଟ ବୃତ୍ତ ଟାଣି ଦିଅନ୍ତି । ବୋଧହୁଏ କମ୍ପାସ୍ କାଟିଲେ ଏତେ ନିଖୁଣ ହେବ ନାହିଁ । ଧୀର ସ୍ଥିର ଭାବରେ ଗାଣିତିକ

ନୀତି ଓ ଚିନ୍ତା ଅଭୁଲା ରହିଯାଏ । Astronomy ର କଟିଳ ଧାରାକୁ ସେ ପ୍ରାଞ୍ଜଳ କରିଦିଅନ୍ତି । ସେତେବେଳେ ଦୁଇ ତିନି ବର୍ଷ ହେଲା କେହି ଛାତ୍ର Honours ରେ ପାସ୍ କରୁ ନଥିବାରୁ କି କଅଣ କହିପାରିବି ନାହିଁ । ଯେଉଁ ମା'ର ପିଲା ନ ଥା'ନ୍ତି ବା ମରିଯାଉଥା'ନ୍ତି ସେ ପିଲାଟିଏ ପାଇଲେ କୋଟିନିଧି କଲା ପରି ମୋତେ ଭଲ ପାଆନ୍ତି ଓ ସାହାଯ୍ୟ କରନ୍ତି । ଶ୍ରୀ ଉଦୟନାଥ ଆଚାର୍ଯ୍ୟ ଯେ ପରବର୍ତ୍ତୀ କାଳରେ ମୋ ସହିତ ଅନୁଗୁଳରେ ସହକାରୀ ମୌଳିକ ଶିକ୍ଷା ସଂଗଠକ ରହି ଶିକ୍ଷାର ପ୍ରସାର ପାଇଁ ବିଶେଷ ସହଯୋଗ କରିଛନ୍ତି ଓ ଶ୍ରୀ ଚନ୍ଦ୍ରମାଧବ ଦତ୍ତ (ଯେ B.Sc. ପାସ୍ କରି ବାଲେଶ୍ୱର ଚାନ୍ଦିପୁର Experimental station ରେ କାର୍ଯ୍ୟ କରିଛନ୍ତି) ମୋ ସାଙ୍ଗ ଥିଲେ Honours class ରେ କିନ୍ତୁ ସେମାନେ Honours ଛାଡ଼ି ଦିଅନ୍ତି । Honours ନ ମିଳିବାର ଆଶଙ୍କାରେ ସମ୍ଭବତଃ ଏହି କାରଣରୁ ମୋର ତିନିକଣ ଶିକ୍ଷକ ମୋତେ ଏତେ ସାହାଯ୍ୟ କରିଛନ୍ତି, ମୁଁ ସେମାନଙ୍କୁ କେବେ ଭୁଲିପାରିବି ନାହିଁ । ଆଜି କେହି ବିଶ୍ୱାସ କରିବେ ନାହିଁ, ଅସମ୍ଭବ ଲାଗିବ, ରମାନାଥବାବୁ ମୋ ପଛରେ ଠିଆ ହୋଇ University Honours ପରୀକ୍ଷା ବେଳରେ ଦେଖୁଥିବେ ମୁଁ କଅଣ ଲେଖୁଛି । କିନ୍ତୁ ପାଟିରୁ ପଦଟିଏ ବା ଆଖିରୁ ଠାରଟିଏ ନ ଥାଏ । ଛଅଟି ପତ୍ର, ସମ୍ଭବତଃ ତିନି ଘଣ୍ଟିଆ । ତାଙ୍କ ଅସୀମ ଧୈର୍ଯ୍ୟ ଓ ଛାତ୍ର ପ୍ରୀତି । ସମ୍ଭବତଃ ସେ ଉକ୍ତ ପରୀକ୍ଷା ଦିନରେ ନିରୀକ୍ଷକ ନ ଥାନ୍ତି । ତଥାପି ମୁଁ ତାଙ୍କ ଛାଇତଳେ ଲେଖୁଥାଏଁ । ପରୀକ୍ଷା ସରିଯିବା ପରେ ମୁଁ ତାଙ୍କୁ ଦେଖା କରିଛି ଓ ସେ Astronomy class ବୃତ୍ତର ଉଦାହରଣ ଦିଅନ୍ତି ଓ କହନ୍ତି ଯେଉଁଠି କିଛି କମ୍ ଥିବ, ସେଠି ପୂରଣ ହୋଇ ପୂରା ଗୋଲ ବୃତ୍ତ ହୋଇଯିବ । ଆଜି ଏହା କହିଲେ ଆଳୁ ପାଇବି ବୋଲି ଜଣାପଡ଼େ । କିନ୍ତୁ ମୁଁ ବୁଝିଥିଲି ଯେ ମୋ ଶ୍ରମ ଅନୁସାରେ ଫଳ ପାଇବି । Labour never goes unrewarded. ଅଧ୍ୟାପକ ମହାନ୍ତିଙ୍କ ଏହି କଥା ଓ ଚିତ୍ର ମୋ ଜୀବନର ବ୍ରତ ହୋଇଛି । ଯାହା କିଛି କରିଛି ବୋଲି ଭାବୁଛି ତାହା ସେହି ଗୁରୁଜନମାନଙ୍କ ଠାରୁ ଶିଖିଛି । ନିରୁତ୍ସାହିତ ହୋଇ ନାହିଁ, ଏକାକୀ ଚାଲିଛି ବହୁ ବାଧାବିଘ୍ନ ମଧ୍ୟରେ । ଅଧ୍ୟାପକ ମହାନ୍ତି ଶିକ୍ଷା ବିଭାଗର ନିର୍ଦ୍ଦେଶକ ଓ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଥା'ନ୍ତି ଓ ମୁଁ ସେ ସମୟରେ ଯଥାକ୍ରମେ ରାଜ୍ୟଶିକ୍ଷା ପ୍ରତିଷ୍ଠାନର ଅଧ୍ୟକ୍ଷ ଓ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରଥମ ଉନ୍ନୟନ ଅଧିକାରୀ (Development Officer) ଥାଏ । ସେ ଆମକୁ ପଢ଼ାଇଲା ବେଳେ ଯେପରି ଥିଲେ, ସେପରି ନିର୍ମାୟ୍ଯ, ସରଳ ଓ ଧୀରସ୍ଥିର ଥାନ୍ତି । ଉଭୟ ସ୍ଥାନରେ ସେ ମୋତେ ବିଶ୍ୱାସ କରନ୍ତି । ୧୯୭୫ ମସିହାରେ ମୋ କାର୍ଯ୍ୟକାଳ ସରିଯାଏ ଓ ଏହା ପୂର୍ବରୁ ସେ କୁଳପତି ଥିବାବେଳେ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ (U.G.C.)ଙ୍କ The utilisation of services of outstanding Teacher. ଯୋଜନା ପାଇଁ ମୋ ଦରଖାସ୍ତ ପଠାଇଛି । ସେ ତାଙ୍କ ସୁପାରିସ ସହ ଦିଲ୍ଲୀ ପଠାଇଛନ୍ତି । ମୋ ଆଶା, ତାଙ୍କ ସୁପାରିସ ଯୋଗୁଁ

ତିନିବର୍ଷ (୧୯୭୫-୧୯୭୮) ପାଇଁ କାମ କରିଛି । ପ୍ରଥମେ ରାଧାନାଥ ଟ୍ରେନିଂ କଲେଜ ଓ ଏହାପରେ ମୋ ସୁବିଧା ପାଇଁ ଆଞ୍ଚଳିକ ଶିକ୍ଷା ମହାବିଦ୍ୟାଳୟ ଭୁବନେଶ୍ୱରରେ କାମ କରିଛି । B.Ed., M.Ed. ଆଦି ଶ୍ରେଣୀରେ ପାଠ ପଢ଼ାଇଛି ଓ ଗବେଷଣାର ଛାତ୍ରମାନଙ୍କୁ ମାର୍ଗଦର୍ଶନ ଦେଇଛି । ମୋ ଶିକ୍ଷକ ଜୀବନର କୃତି ଓ ସଫଳତା ଆଗେଇ ଯାଇଛି । ନିକର କିଛି ଗବେଷଣା ଭାବରେ ମହିମା ଧର୍ମ ଅଧ୍ୟୟନ କରିଛି । Biswanath Baba-saint self realised, one man bibliography ପୁସ୍ତକ ଲେଖିଛି । Prof. Pranakrushna Panja ଙ୍କ ମୁଖବନ୍ଧ ସହ ଏହି ବହି ପ୍ରକାଶ ପାଇଛି ।

ଅଳ୍ପଦିନ ପାଇଁ ଅଧ୍ୟାପକ ସରସୀ ମୋହନ ଦାସ ଆମକୁ ଗଣିତ ପଢ଼ାଇଛନ୍ତି । ସେ ଅସ୍ଥାୟୀ ନିଯୁକ୍ତି ପାଇଥା'ନ୍ତି । ଆମ ସହିତ ମିଶିଯାଆନ୍ତି । ଛାତ୍ରବତ୍ସଳ ସରସୀବାବୁ ହସି ହସି କଥାବାର୍ତ୍ତା କରନ୍ତି । Honours class ରେ ମୋଟେ ତିନିଜଣ ଛାତ୍ର । ତେଣୁ ଆମ୍ଭମାନଙ୍କୁ ଭଲଭାବରେ ଜାଣି ଯାଇଥିଲେ । ଏହାପରେ ସେ Stewart College ରେ ଗଣିତ ଅଧ୍ୟାପକ ଓ ଅଧ୍ୟକ୍ଷ ରହିଛନ୍ତି । ମାଟ୍ରିକ୍ୟୁଲେସନ୍ ପରୀକ୍ଷାରେ ଆମେ ଦୁହେଁ ଯୋଡ଼ି ବାନ୍ଧି Tabulator ରହିଛୁଁ ଓ ତାଙ୍କ ଘରକୁ ଯାଇ ଆତିଥ୍ୟ ଗ୍ରହଣ କରିଛି । "ଶତ୍ରୁଘ୍ନ" ଡାକିଲାବେଳେ ଏ ପର୍ଯ୍ୟନ୍ତ ତାଙ୍କ ହସ ହସ ମୁହଁ ମୋତେ ଦେଖାଯାଉଛି ଓ ପାଟି ଶୁଭୁଛି ।

ମୋର ଅନ୍ୟ ପାଠପଢ଼ା ବିଷୟ ଥିଲା ଅର୍ଥନୀତି । ଇଣ୍ଟରମିଡ଼ିଏଟ୍‌ରେ ସେତେବେଳେ ଅର୍ଥନୀତି ପଢ଼ାଯାଉ ନ ଥାଏ । ଏହି ବିଭାଗର ମୁଖ୍ୟ ଥା'ନ୍ତି ଶ୍ରୀ ଭୈରବ ନାଥ ରୋହାତଗୀ । ସେ ହିନ୍ଦୀ ଭାଷୀ ଓ ତାଙ୍କ ଉଚ୍ଚାରଣ ଆମକୁ କଉତୁକିଆ ଲାଗେ । ଛାତ୍ରାବାସର ସେ ଥା'ନ୍ତି ସହକାରୀ ତତ୍ତ୍ୱାବଧାରକ । ଦିନେ ସେ ପାଠପଢ଼ା ସମୟରେ (Study hour) ରେ ବୁଲି ଯାଉଥା'ନ୍ତି । ଗୋଟିଏ ରୁମ୍‌ରେ ଶ୍ରୀ ଚାଉ ପଟ୍ଟନାୟକ ଓ ଅନ୍ୟ ତିନିକଣ ପଢୁଥାନ୍ତି । "ଶ-ତୁ-ଘନ" ଏପରି ରୋହାତ୍‌ଗୀଙ୍କ ଅବିକଳ ଉଚ୍ଚାରଣ କରି ଦେଲେ । ସହକାରୀ ତତ୍ତ୍ୱାବଧାରକ ହସି ହସି ବାରଣ୍ଡାରେ ବାହାରିଗଲେ । ଶ୍ରୀ ବର୍ଦ୍ଧନ ଗମ୍ଭୀର କିନ୍ତୁ ଧୀରସ୍ଥିର । ଆମ ଛାତ୍ରାବାସରେ ଶ୍ରୀ ଚାଉ ପଟ୍ଟନାୟକ ନିଜ ସ୍ୱର ପରିବର୍ତ୍ତନ କରି ଅଙ୍ଗଭଙ୍ଗୀ ସହ ବୀର, କରୁଣ ଓ ହାସ୍ୟରସ ପରିବେଷଣ କରନ୍ତି । "ଆଳୁ ବାଇଗଣ", ସାରୁ ବାଇଗଣ କଥାଟି ଉଲ୍ଲିଖିତ ତିନି ରସରେ ଚମତ୍କାର ଉପଭୋଗ୍ୟ ହୋଇଥାଏ । ଏଇ ହେଲା ମୋ ରେଭେନ୍‌ସା କଲେଜ ଜୀବନରେ ସାଧନା । ପ୍ରାକ୍ କଲେଜ ଜୀବନରେ ଯାହାର ପୁନାଦ ପଡ଼ିଥିଲା ତା'ର ସୌଧ ନିର୍ମାଣ କରାଯାଇଛି କଲେଜରେ । ଏହା ମୋର ସୌଭାଗ୍ୟ ଓ ସେହି ସୌଧ କ୍ରମେ ଉପରକୁ ଉଠିଛି ।



---

***ଚରାଚରହିତାୟ,*** ପ୍ରଜାତନ୍ତ୍ର ପ୍ରଚାର ସମିତି, ୨୦୦୩

# ରେଭେନ୍ସାରେ ଅଧ୍ୟାପନା

## ରାଜକିଶୋର ରାୟ

୧୯୪୨ ଅଗଷ୍ଟ ବିପ୍ଳବରେ ମୁଁ ଜଣେ ଅଧ୍ୟାପକ ରଭେନ୍ସା କଲେଜରେ । ମୋର ଗୁରୁଜୀମାନଙ୍କ ସହିତ ଏକ ପଙ୍‌କ୍ତିରେ ମୁଁ ସହକର୍ମିତ୍ୱ ଅର୍ଜନ କରିଥିଲି । ସେହି ଅଗଷ୍ଟ ମାସ ନଅ ତାରିଖରେ ରେଭେନ୍ସା କଲେଜ ଅଫିସ୍‌ରେ ନିଆଁ ଲାଗିଲା । ଟିଣ ଟିଣ କିରୋସିନି ଢଳାଯାଇ ଫାଇଲପତ୍ର ପୋଡ଼ାଗଲା । ଧୂଆଁ ଓ ନିଆଁ ଭିତରୁ ଫାଇଲପତ୍ର ଉଦ୍ଧାର କରିବା ସମ୍ଭବ ହେଲାନାହିଁ । ଏଭଳି ଯେ ବିପତ୍ତି ଆସିବ ତାହା ଆଗରୁ ଜଣାଥିଲା । ତତ୍‌କାଳୀନ ପୁଲିସ୍ ସାହେବ ମିଷ୍ଟର ପର୍କିନ୍ ସୈନ୍ୟଦଳ ନେଇ ସଶସ୍ତ୍ର ହୁସିଆରରେ କମ୍ପାଉଣ୍ଡରେ ରହିଥିଲେ । ଏଣେ ବିପ୍ଳବୀ ଛାତ୍ରମାନେ ଆର୍ତ୍ତବଲ୍ଲଭ ମହାନ୍ତି, କରୁଣାକର କର, ପଦାର୍ଥ ବିଦ୍ୟାବିତ୍ ନାରାୟଣ ମିଶ୍ରଙ୍କ ଗଳାରେ ଫୁଲମାଳ ଲମ୍ବାଇ ଅନୁରୋଧ କରୁଥାଆନ୍ତି ତତ୍‌କ୍ଷଣାତ୍ ଚାକିରିରୁ ଇସ୍ତଫା ଦେଇଦେବା ପାଇଁ । କଣ୍ଠଦେଶରେ ଲମ୍ବିତ ଫୁଲହାରକୁ ଟୋଳି ନାରାୟଣ ମିଶ୍ର ଦଉଡ଼ିଲେ ଲାଇବ୍ରେରୀ ଓ ଲାବୋରେଟୋରୀ ଆଡ଼େ । ଦଉଡ଼ି ଦଉଡ଼ି ଚିତ୍କାର କରୁଥାନ୍ତି (ସେ ଖେଳୁଓ୍ୱାଡ଼ ଥିଲେ) । ଆରେ ସବୁ ପୋଡ଼ ପଛକେ ଲାଇବ୍ରେରୀ ଲାବରେଟୋରୀ ପୋଡ଼ ନାହିଁ । ଜ୍ଞାନ ଓ ଗବେଷଣାର ସମ୍ପତ୍ତି ସେଠାରେ ରହିଛି । ଥରେ ପୋଡ଼ିଗଲେ ଆଉ ଯୋଡ଼ିହବନି । ଲାବରେଟୋରୀରେ ନିଆଁ ଲାଗିଲେ ସେଠି ଯେଉଁ ବିସ୍ଫୋରଣ ହେବ ତାହା ଭୟଙ୍କର ହେବ ।

ପିଲାଏ ମାନିଲେ । କେବଳ ଅଫିସ ପୋଡ଼ିଲେ । ଡକ୍ଟର ପ୍ରାଣକୃଷ୍ଣ ପରିଜା ସେତେବେଳେ କ୍ଷମତା ଓ ପ୍ରାଣଶକ୍ତିର ଜ୍ୟୋତିର୍ମୟ ପ୍ରିନ୍ସପାଲ । ଠାଣି ଚାହାଣି ଓ ଚଳଣିରେ ପାଶ୍ଚାତ୍ୟ ଜ୍ଞାନଦର୍ଶୀ ଗାମ୍ଭୀର୍ଯ୍ୟ ତାଙ୍କର ଅଧିଗତ ଥିଲେ ବି ଓଡ଼ିଶା ଓ ଓଡ଼ିଆ ପିଲାଙ୍କ ପାଇଁ ତାଙ୍କ ମମତା ସୁଗଭୀର । ସେ ଦନ୍ତାହାତୀ ଭଳି ସେ ପରିସ୍ଥିତିରେ ପ୍ରମତ୍ତ ଥିଲେ, କିନ୍ତୁ ଅସାଧାରଣ ସଂଯମ ରକ୍ଷା କରି ପୁଲିସ୍ ସାହେବଙ୍କୁ କହିଲେ- ପିଲାଏ ଅଫିସ ପୋଡୁଛନ୍ତି, ପୋଡ଼ନ୍ତୁ; କିନ୍ତୁ ଗୋଟାଏ ପିଲାକୁ ଯଦି ଗୁଳି କରିଦିଅ ପର୍କିନ ସାହେବ, ତେବେ ତା' ପୂର୍ବରୁ ମତେ ମାର । ଏ ବିପ୍ଳବ ସର୍ବବ୍ୟାପୀ । ଓଡ଼ିଶାର ଛାତ୍ରମାନେ କ୍ଲୀବ ନୁହନ୍ତି । କିନ୍ତୁ ଲାଇବ୍ରେରୀ ଓ ଲାବରେଟୋରୀକୁ ରକ୍ଷା କରିବା ପୁଲିସ୍‌ର ଦାୟିତ୍ୱ ! ସଶସ୍ତ୍ର କାର୍ଯ୍ୟ ନୁହେଁ, ବୁଝି ବିଚାରି କାର୍ଯ୍ୟ କର ।

ଜଣେ ଉଚ୍ଚପଦସ୍ଥ ସରକାରୀ କର୍ମଚାରୀ, କଡ଼ା ଗଣ୍ଡାରେ ସାହେବୀ, ନିୟମ ଶୃଙ୍ଖଳାର ଗୋଟାଏ ଗମ୍ଭୀର ପିରାମିଡ଼ ପରିଜା ସାହେବ ସେଦିନ ଆଗାମୀ କାଳର ବଜ୍ର ବିଦ୍ୟୁତ୍‌କୁ ଯେପରି ଦେଖିପାରିଥିଲେ ଜାତୀୟ ଯଜ୍ଞର ସର୍ବପ୍ରସାରୀ ତ୍ୟାଗମନ୍ତ୍ରର ଧ୍ୱନିକୁ ଯେପରି ଶୁଣିପାରିଥିଲେ ତାଆରି ଆଳାପ ମାତ୍ର ସେଦିନ ସେ କରିଥିଲେ ଅଗ୍ନିଉତ୍ସବର ଏହି ପ୍ରଳୟାନୁଜ୍ୟୋତିରେ ।

ଯେତେବେଳେ ରେଭେନ୍‌ସା କଲେଜର ବିପ୍ଳବୀ ଛାତ୍ରପ୍ରତିନିଧି ଭାବେ ବନମାଳୀ ପଟ୍ଟନାୟକ, ବିବୁଧେନ୍ଦ୍ର ମିଶ୍ର, ଦୀନବନ୍ଧୁ ସାହୁ, ସୁରଜମଲ୍ଲ ସାହା, ମନମୋହନ ମିଶ୍ର, ଦେବେନ୍ଦ୍ର ନାଥ ମହାନ୍ତି ପ୍ରମୁଖ ଯେ ପ୍ରକାର ସମାନ୍ତରାଳ ରିପବ୍ଲିକ୍ ପୂର୍ବ ଓ ପଶ୍ଚିମ ଛାତ୍ରାବାସରେ ଗଢ଼ି ଭବିଷ୍ୟତ ସଂଗ୍ରାମୀ ରାଜନୀତିର ମୂଳପତ୍ତନ କଲେ ତାହାର ପଟାନ୍ତର ନାହିଁ । ଆତ୍ମଗୋପନ କଲେ ସେମାନେ । ଏ ଏକ ସ୍ୱତନ୍ତ୍ର ଇତିହାସ । ରେଭେନ୍‌ସା କଲେଜ ଯେତିକି ଓଡ଼ିଶାର ସାଂସ୍କୃତିକ ଜାଗରଣରେ ରୂପକାର ହୋଇଛି, ତଦପେକ୍ଷା ବିପ୍ଳବ ଓ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିବା ଆଜିର କେତେକ ସ୍ୱର୍ଗତ ଓ ପ୍ରୌଢ଼ ବୟସର ନାଗରିକମାନଙ୍କର ଜୀବନକୁ ଓଲଟ ପାଲଟ କରିଦେଇଛି ।

ଏକ ପକ୍ଷରେ ସ୍ୱର୍ଣ୍ଣାଭ ସନ୍ଧ୍ୟା । ରେଭେନ୍‌ସା ସବୁଜ ଦୂର୍ବାଲନ୍ । ଅନ୍ୟ ପକ୍ଷରେ ଧୂମାୟିତ ପୋଡ଼ା ଫାଇଲପତ୍ରର ଗନ୍ଧ । ଏହି ପରିବେଶରେ ଅଗଷ୍ଟ ନଅ ତାରିଖର ସୂର୍ଯ୍ୟ ଢଳିପଡ଼ିଲେ ପଶ୍ଚିମାକାଶରେ । ସେ ବାରୁଣୀ ରଙ୍ଗ ଆଗାମୀ ରକ୍ତସ୍ନାନର ସାମାନ୍ୟ ପ୍ରତିବିମ୍ବ ନଥିଲା ମାତ୍ର । ତା'ର ପରବର୍ତ୍ତୀ ଇତିହାସ ପୋଲିସ୍ ଗିରଫଦାରୀ, କାରାଗାର ଓ ସେଠାରେ ନିର୍ଯାତନା । ଗୋରା ପୋଲିସ୍ ସାହେବ ଡକ୍ଟର ପରିଜାଙ୍କ ଅନୁରୋଧକୁ ସମ୍ମାନ ଦେଇଥିଲେ ଦିବାଲୋକରେ, ମାତ୍ର ଅନ୍ଧକାରର ବିସ୍ତାର ତଳେ ଚାଲିଲା ନିର୍ମମ ପ୍ରତିଶୋଧ । ମହାତ୍ମା ଗାନ୍ଧିଙ୍କର ଅଗଷ୍ଟ ବିପ୍ଳବର ସ୍ମାରକୀ ଧ୍ୱନି "ଭାରତ ଛାଡ଼" ଓଡ଼ିଆ ଯୁବକର ପ୍ରାଣରେ ଉନ୍ମାଦନା ସଂଚାର କରିଥିଲା ।

ଇଉନିୟନ୍ ଜ୍ୟାକ୍ ଉଡ଼ାଇବାକୁ ସରକାରଙ୍କର କିଦ୍ ଓ ତତ୍‌ପରିବର୍ତ୍ତେ କଂଗ୍ରେସ ଧ୍ୱଜା ଉଡ଼ାଇବାକୁ ମନମୋହନ ମିଶ୍ରଙ୍କ ମରଣାପନ୍ନ ଜିଦ୍ ଓ ଏ ଜିଦ୍‌କୁ ସାକାର କରିବାରେ ତାଙ୍କର ଅଗ୍ନିବର୍ଷୀ ଭାଷଣ ପରେ କଂଗ୍ରେସ ପତାକା ଯେତେବେଳେ ରେଭେନ୍‌ସା ଖେଳ ପଡ଼ିଆରେ ଏକ ସ୍ତମ୍ଭ ଉପରେ ଉଡ଼ିଥିଲା, ସେତେବେଳେ ଏହି ମହାନ୍ ବିପ୍ଳବୀ ଯୁବକଙ୍କର ଜୀବନ ଓ ସାଧନା ପରବର୍ତ୍ତୀ କାଳରେ କିପରି ରୂପ ନେବ ତାହା ସ୍ଥିର ହୋଇଯାଇଥିଲା । ମନମୋହନ ମିଶ୍ର କାରାରୁଦ୍ଧ ହେଲେ । ପରବର୍ତ୍ତୀ ଜୀବନରେ ଏହି ଶ୍ରମିକ ନେତାଙ୍କର ଭୂମିକା ଅନୁଧ୍ୟାନ କଲେ ବିସ୍ମୟାଭିଭୂତ ହେବାକୁ ପଡ଼େ । କାରଣ ଆଜୀବନ ଏ ସଂଗ୍ରାମୀ କେବଳ ଦୁଃଖ ସହି ଆସିଛନ୍ତି, ଓଠରେ ସେଇ ଧାରେ ହସ, ବିପଦ ଓ ସଂପଦ ଉଭୟ ସ୍ଥିତିରେ ତାଙ୍କର ସ୍ଥିତପ୍ରଜ୍ଞ ଭାବ ।

ନୂଆ ନିଯୁକ୍ତି ପାଇଥିବା ଇଂରାଜୀ ଭାଷା ଓ ସାହିତ୍ୟର ଅଧ୍ୟାପକ ଭାବରେ ମୁଁ ନିଯୁକ୍ତି ପାଇଥାଏ । ୧୯୩୭ରେ ଇଂରାଜୀ ଏମ୍.ଏ. ପାସ୍ କରିଥିବା ଛାତ୍ର ୧୯୪୨ରେ ଅଧ୍ୟାପକ ।

୧୯୪୨ ଡି.ଇଡ଼ି. ପରୀକ୍ଷାରେ ସମଗ୍ର ପାଟନା ବିଶ୍ୱବିଦ୍ୟାଳୟରେ ପ୍ରଥମ ଶ୍ରେଣୀର ପ୍ରଥମ ଛାତ୍ର ମୁଁ । ତତ୍‌କାଳୀନ ଡି.ପି.ଆଇ. ସ୍ୱର୍ଗତ ଶ୍ୟାମସୁନ୍ଦର ତ୍ରିପାଠୀଙ୍କର ଶୁଭ ଦୃଷ୍ଟିରେ ପଡ଼ିଲି । ମତେ ସେ ନିଯୁକ୍ତି ଦେଲେ ରେଭେନ୍‌ସା କଲେଜରେ । ମାତ୍ର ତା' ପୂର୍ବରୁ ଡକ୍ଟର ମାୟାଧର ମାନସିଂ, ଶ୍ରୀ ପୂର୍ଣ୍ଣଚନ୍ଦ୍ର ପଟ୍ଟନାୟକ ଓ ଶ୍ରୀ କୀର୍ତ୍ତନ ବିହାରୀ ପଟ୍ଟନାୟକ ଅସ୍ଥାୟୀ ଅଧ୍ୟାପକ ରହି ବିଦାୟ ନେଇଥାନ୍ତି । ଏ ବିଚାର ଗ୍ରହଣ ସେମାନଙ୍କର ସ୍ୱେଚ୍ଛାକୃତ ନଥିଲା । ମିଷ୍ଟର ସୁନ୍ଦରମ୍ ଯେ କି ଇଂରାଜୀ ବିଭାଗର ମୁଖ୍ୟ ଥିଲେ ତାଙ୍କ ବିଚାରରେ କେହି ଓଡ଼ିଆ ଇଂରାଜୀ ଅଧ୍ୟାପନାରେ କୃତିତ୍ୱ ଦେଖାଇ ପାରିଲେ ନାହିଁ । ସେ ଅବଶ୍ୟ ତାଙ୍କ ରାଜ୍ୟରୁ ଅଧ୍ୟାପକ ଆଣିବାକୁ ଉଦ୍ୟମ କଲେ, କେହି କେହି ଆସିଲେ ମଧ୍ୟ ।

ଏଇଭଳି ପରିସ୍ଥିତିରେ ମୋର ସହାଧ୍ୟାୟୀ ଶ୍ରୀ କୀର୍ତ୍ତନ ବିହାରୀ ପଟ୍ଟନାୟକଙ୍କର ବିଚାର ପରେ ଡି.ପି. ଆଇ.ଙ୍କ ସୁପାରିସ କ୍ରମେ ମୁଁ ନିଯୁକ୍ତି ପାଇଲି । ସଙ୍ଗେ ସଙ୍ଗେ ମିଷ୍ଟର ସୁନ୍ଦରମ୍ ଯେଉଁଠି ତିମି ତିମିଙ୍ଗିଳ ଉଡ଼ିଗଲେଣି ସେଠାରେ ମୋଭଳି ଜଣେ ସାମାନ୍ୟ ଲୋକକୁ ଟିକିଏ ଚାହିଁଦେଇ ଅବଜ୍ଞା ସ୍ୱରରେ ଅଭିନନ୍ଦନ ଜଣାଇ କହିଥିଲେ, "ମିଷ୍ଟର ରାୟ, ଆଜି ନୁହେଁ, କାଲିଠାରୁ ଆପଣ ଅଧ୍ୟାପନା ଆରମ୍ଭ କରିବେ । ପ୍ରଥମ ପିରିୟଡ଼ରେ ସେକ୍‌ସପିୟରଙ୍କ ଅଥେଲୋ ନାଟକ ଫୋର୍ଥଇୟର ଛାତ୍ରଙ୍କ କ୍ଲାସ୍ ।"

ମୁଁ ଜାଣିପାରିଲି ମତେ ପ୍ରଥମରୁ ଅପଦସ୍ଥ କରିବାପାଇଁ ତାଙ୍କର ଏ ଚକ୍ରାନ୍ତ । ୧୯୩୭ରେ ଏମ୍.ଏ. ପାଠ ଇତି କରିଥିବା ଲୋକ ହଠାତ୍ ୧୯୪୨ରେ ସେକ୍‌ସପିୟର ୪ର୍ଥ ବାର୍ଷିକ ଛାତ୍ରଙ୍କୁ ପଢ଼ାଇବା ପାଇଁ କେତେ ଯେ ପ୍ରସ୍ତୁତି ଦରକାର, ତାହା ମିଷ୍ଟର ସୁନ୍ଦରମ୍‌ଙ୍କୁ ଜଣାଥିଲା । ଅଥଚ ମତେ ବଦ୍‌ନାମ କରି ପୂର୍ବସୂରୀଙ୍କୁ ଉତ୍‌ଖାତ୍ ଯେପରି ସେ କରିଥିଲେ, ତାହାହିଁ କରିବାକୁ ସେ ଯୋଜନା କରିସାରିଥିଲେ ।

ମୋର ପୂଜ୍ୟ ଦୁଇଜଣ ଗୁରୁ ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି ଓ ବିପିନ ବିହାରୀ ରାୟ ସେଭଳି ମାନସିକ ଅବସ୍ଥାରେ ମତେ ସାହସ ଦେଇଥିଲେ । ଘଟଣାଚକ୍ରରେ ମୁଁ ସେମାନଙ୍କର ସହକର୍ମୀ ହୋଇଗଲି ।

ସେତେବେଳର ଫେସନ ଥିଲା ପ୍ରତ୍ୟେକ ଅଧ୍ୟାପକ ଫୁଲ୍‌ସୁଟ୍ ଟାଇ ପିନ୍ଧି ଆସନ୍ତି କ୍ଲାସ୍‌କୁ । ଛାତିଖୋଲା କୋଟ୍ ଓ ଗଳାବନ୍ଧା କୋଟ୍ ଏ ଦୁଇ ପ୍ରକାର କୋଟ୍ ଚଳଣି ଥିଲା । ଆର୍ତ୍ତବଲ୍ଲଭ ମହାନ୍ତି, ଗିରିଜାଶଙ୍କର ରାୟ, ବିପିନ ବିହାରୀ ରାୟ, ରତ୍ନାକର ପତି ପ୍ରଭୃତି ଗୁରୁମାନେ ଗଳାବନ୍ଧା କୋଟ୍ ପିନ୍ଧି କଲେଜକୁ ଆସୁଥିଲେ । ଅନ୍ୟମାନେ ସାହେବୀ ରୀତିରେ ବେଶପୋଷାକ ପିନ୍ଧି ଆସୁଥିଲେ ।

ବ୍ୟତିକ୍ରମ ଦୁଇଜଣ ଗୁରୁ ଥିଲେ- ଶ୍ରୀ ନିରଞ୍ଜନ ନିୟୋଗୀ ଇଂରାଜୀ ଅଧ୍ୟାପକ ପ୍ୟାଣ୍ଟ୍ ଓ ଚପ୍‌କନ୍ ପିନ୍ଧୁଥିଲେ । ସଂସ୍କୃତ ଅଧ୍ୟାପକ ଶ୍ରୀ ଲକ୍ଷ୍ମୀକାନ୍ତ ଚଉଧୁରୀ ଅତି ସୁନ୍ଦର ଧୋତି ଓ

ହଳଦୀ ବର୍ଣ୍ଣ ସିଲ୍କ ପଞ୍ଜାବି, ତହିଁ ଉପରେ ସିଲ୍କର ଉତ୍ତରୀୟ ପିନ୍ଧି କ୍ଲାସ୍ ନେଉଥିଲେ। ଏ ଗୁରୁଜୀମାନେ ବେଶପୋଷାକରେ ଏପରି ବିମଣ୍ଡିତ ରହୁଥିଲେ ଯେ, ଆପେ ଆପେ ତାଙ୍କ ବ୍ୟକ୍ତିତ୍ୱ ପରିସ୍ଫୁଟ ହେଉଥିଲା। ତାହାଛଡ଼ା ଗାମ୍ଭୀର୍ଯ୍ୟ, ସମୟାନୁବର୍ତ୍ତିତା, ଜ୍ଞାନ, ଛାତ୍ରବତ୍ସଳତା, ଅଧ୍ୟାପନା ବହିର୍ଗତ ବିଭିନ୍ନ ସାଂସ୍କୃତିକ କାର୍ଯ୍ୟ ଯଥା ନାଟକ, ସଙ୍ଗୀତ ସ୍ଥାପତ୍ୟ, ଭାସ୍କର୍ଯ୍ୟ ସଂଗ୍ରହ କ୍ରୀଡ଼ା ପ୍ରଭୃତି ବିଭାଗରେ ତାଙ୍କର ମେଧା ଓ ସଂଗଠନ ଶକ୍ତି ବିନିଯୁକ୍ତ ହେଉଥିଲା। ମୋର ଦୀର୍ଘ ଛ'ବର୍ଷ କାଳ ଭିତରେ ଛାତ୍ର ଭାବରେ ମୁଁ ରେଭେନ୍ସା କଲେଜ ଅଧ୍ୟାପକମାନେ ଯେ କେବେ କେନେରାଲ ଓ ଟିଉଟରିୟାଲ ଶ୍ରେଣୀ ନେଇ ନାହାନ୍ତି, ଏପରି ଦେଖିନାହିଁ। ତାହା ପୁଣି ପିରିୟଡ୍‌ର ଶେଷ ମୁହୂର୍ତ୍ତଯାଏ ଅଧ୍ୟାପନା ଚାଲିଥାଏ। ଏମାନଙ୍କୁ ବାସ୍ତବରେ କୁହାଯାଏ ନିବେଦିତପ୍ରାଣ ଆଦର୍ଶ ଶିକ୍ଷକ।

ପରୀକ୍ଷା ସେତେବେଳେ ପରିଚାଳିତ ହେଉଥିଲା ଏକ ଧର୍ମୀୟ ଅନୁଷ୍ଠାନ ଭଳି। ପୂଜା ପାର୍ବଣର ପବିତ୍ରତା ଭଳି ପରିବେଶ ସୃଷ୍ଟି ହେଉଥିଲା। ପରୀକ୍ଷାର୍ଥୀମାନେ ଯେ ଯାହା ସ୍ଥାନରେ ବସୁଥିଲେ ନିଶ୍ଚଳ ଭାବରେ। ମୁଖ୍ୟ ପରିଦର୍ଶକ ଠିକ୍ ଦଶମିନିଟ୍ ପୂର୍ବରୁ ସିଲ୍ କରାଯାଇଥିବା ପ୍ୟାକେଟ୍‌ଟି ଧରି ପ୍ରବେଶ କରିବେ ନତମସ୍ତକରେ ଏବଂ ଛିଡ଼ାହୋଇ ରହିବେ ସମସ୍ତଙ୍କ ସମ୍ମୁଖରେ। ଏକ ସଂଭ୍ରାନ୍ତ ନୀରବତା ବିରାଜମାନ କରୁଥିବ। ଦ୍ୱିତୀୟ ଘଣ୍ଟା ବାଜିବା ମାତ୍ରେ ପ୍ରଶ୍ନପତ୍ର ବଣ୍ଟନ କରାଯାଏ। ଆଉ ତିନିଜଣ ସହକାରୀ ନିଜର କର୍ତ୍ତବ୍ୟ କରନ୍ତି। ଏମାନେ ସମସ୍ତେ ପରୀକ୍ଷା ଶେଷ ହେବାଯାଏ ଘୂରି ବୁଲୁଥା'ନ୍ତି। କେହି ବସିରହି ପରସ୍ପର ସହିତ ଗଳ୍ପ କରିବା ମୁଁ ଦେଖିନାହିଁ। 'କପି' ଶବ୍ଦ ସେତେବେଳେ ସୃଷ୍ଟି ହୋଇ ନଥିଲା। ବାଁ ଡାହାଣକୁ ପରୀକ୍ଷାର୍ଥୀ ଆଖି ଡାଳିବା ଏକପ୍ରକାର ଅସମ୍ଭବ ବ୍ୟାପାର ଥିଲା। ଆଜିର ପରୀକ୍ଷା ପରିଚାଳକ ପରିପ୍ରେକ୍ଷୀରେ ଏ ସତ୍ୟକୁ ସ୍ୱୀକାର କରିନେବାକୁ ମନରେ ଦ୍ୱିଧା ଆସିବ, ଯିମିତି ସେତେବେଳର ସ୍ପଞ୍ଜ୍ ରସଗୋଲା ଚାରିପଇସା ଓ ଲଫାପାର ମୂଲ୍ୟ ଦୁଇପଇସା ଭାବିବାକୁ ମନରେ ଆତଙ୍କ ଆସିବ। ଘିଅ ସେରକୁ ଆଠଅଣା, ସୋରିଷ ତେଲ ସେର ଚାରିଅଣାରେ ବିକ୍ରୀ ହେବା ସେତେବେଳେ ଦୁର୍ମୂଲ୍ୟ ବୋଲି ବିଚାର କରାଯାଉଥିଲା।

ମହାକାଳ କେଉଁଠି ସ୍ଥିର ରହିଯାଏ ନାହିଁ। କାଳହିଁ ଅସ୍ଥିର। ମୂଲ୍ୟର ପରିବର୍ତ୍ତନରେ ଦୁଃଖିତ ହେବାର କାରଣ ନାହିଁ, ମାତ୍ର ଦୁଃଖ ସେତିକିବେଳେ ପୀଡ଼ା ଦିଏ, ଯେତେବେଳେ ସେ ମୂଲ୍ୟ ଅଧୋଗତିକୁ ଡାକିଆଣେ। ଉତ୍ତରଣ ଆଡ଼କୁ ମନୁଷ୍ୟକୁ ନିଏ ନାହିଁ।

ସେତେବେଳେ ରେଭେନ୍ସା କଲେଜରେ ଅତି ବିଦ୍ୱାନ୍ ଚାଲିଚଳଣିରେ ମାର୍ଜିତ ରୁଚିସଂପନ୍ନ, ସମୟାନୁବର୍ତ୍ତୀ, ଛାତ୍ରବତ୍ସଳ ଓ ପାରମାର୍ଥିକ ଅଧ୍ୟାପକ ଥିଲେ। ସେମାନେ ଭାବୀ ନାଗରିକ ଓ ଜାତୀୟତାବାଦୀ ବ୍ୟକ୍ତି ସୃଷ୍ଟି କରିବାରେ ଅଧ୍ୟାପନା ମାଧ୍ୟମରେ ତରୁଣ

ତରୁଣୀମାନଙ୍କ ହୃଦୟରେ ଜ୍ଞାନସ୍ପୃହା ସହିତ ପରାଧୀନ ଭାରତବର୍ଷର ଶୃଙ୍ଖଳ ଛିନ୍ନ କରିବା ଚେତନାକୁ ଉଦ୍ଦୀପ୍ତ କରୁଥିଲେ। ଶିକ୍ଷାଦାନ ସେତେବେଳେ ଶିକ୍ଷକର ଦରମାଭିତ୍ତିକ ବୃତ୍ତି ନଥିଲା। ଏକ ବ୍ୟାପକ ଓ ଗଭୀର ଆତ୍ମବୋଧ ଛାତ୍ରମାନଙ୍କର ଥିଲା ଓ ସେତେବେଳେ ଯେଉଁ କେତୋଟି ଛାତ୍ରଆନ୍ଦୋଳନ ସଂଘଟିତ ହୋଇଥିଲା ତାହା ରେଭେନ୍ସା କଲେଜ ଅଧ୍ୟକ୍ଷଙ୍କ ଶାସନ ବିରୁଦ୍ଧରେ କିମ୍ବା ଅଧ୍ୟାପକମାନଙ୍କର ବ୍ୟକ୍ତିଗତ ଚରିତ୍ର ବା ପଠନ ପାଠନ ବିରୁଦ୍ଧରେ ନଥିଲା। ତାହା ଥିଲା ବ୍ରିଟିଶ ଶାସନ ବିରୁଦ୍ଧରେ ସଂଗ୍ରାମ ଚଳାଇବା ଯାହାର ଏକ ଦୃଷ୍ଟାନ୍ତ ଥିଲା ୧୯୪୨ ଅଗଷ୍ଟ ନଅ ତାରିଖ ପୂର୍ବାହ୍ନରେ ଅଫିସ ଦଗ୍ଧ କରିବାରେ।

କାରାବାସ ସେତେବେଳେ ଛାତ୍ରମାନଙ୍କର ମନୋବଳ ଭାଙ୍ଗି ପାରିନଥିଲା। ଯଦିଓ ଯେଉଁମାନଙ୍କର ପିତା ବା ସମ୍ପର୍କୀୟ ଆତ୍ମୀୟମାନେ ସରକାରୀ ଚାକିରି କରୁଥିବାରୁ ଅନୁନୟ କରି କହୁଥିଲେ ଏପରି ବିପ୍ଳବ କଲେ ଆମ ସରକାରୀ ଚାକିରି ରହିବ ନାହିଁ, ତାହାର ଉତ୍ତରରେ ପୁଅ ଝିଅମାନେ ପ୍ରବର୍ତ୍ତାଉ ଥିଲେ ଯେ ସେମାନେ ଆଉ ଗୋଲାମୀ କରନ୍ତୁ ନାହିଁ।

ବହୁ ସରକାରୀ କର୍ମଚାରୀଙ୍କର ପ୍ରମୋଶନ ବନ୍ଦ ହୋଇଯାଉଥିଲା। ଦୃଷ୍ଟାନ୍ତ ମୋର ନିଜର ଶ୍ୱଶୁର ଶ୍ରୀ ଗୋକୁଳାନନ୍ଦ ମହାନ୍ତି ବର୍ତ୍ତମାନର ଅବସରପ୍ରାପ୍ତ ଡି.ଏସ୍.ପି.। ଏହାଙ୍କର ଜ୍ୟେଷ୍ଠ ପୁତ୍ର ଶ୍ରୀ ଦେବେନ୍ଦ୍ର ନାଥ ମହାନ୍ତି ଜେଲ୍ ବରଣ କଲେ, ଲାଠି ମାଡ଼ ଖାଇଛନ୍ତି। ତାଙ୍କର ନାମ ସରକାରୀ ଫାଇଲରେ ରହିଲା ଯେ ସେ ବିପ୍ଳବୀ। ଶ୍ରୀ ଗୋକୁଳାନନ୍ଦ ମହାନ୍ତି ସେତେବେଳେ ଜଣେ ପ୍ରବୀଣ ଓ ଦକ୍ଷ ପୋଲିସ୍ ପ୍ରଶାସକ ଥିଲେ। ଜ୍ୟେଷ୍ଠ ପୁତ୍ରର ସଂଗ୍ରାମୀ ମନୋଭାବ ଓ ବ୍ରିଟିଶ ସରକାରଙ୍କୁ ଗାଦିଚ୍ୟୁତ କରିବା ଜାତୀୟ ଯଜ୍ଞରେ ଯୋଗ ଦେଇଥିବାରୁ ଶ୍ରୀ ଗୋକୁଳାନନ୍ଦ ମହାନ୍ତି ଯାହାଙ୍କର କାର୍ଯ୍ୟକାଳର ଅଭିବୃଦ୍ଧିରେ ସର୍ବୋଚ୍ଚ କର୍ତ୍ତା ହୋଇପାରିଥାଆନ୍ତେ, ସେ ଡି.ଏସ୍.ପି. ସ୍ତରରେ ରହିଲେ ଓ ପ୍ରଶାସନିକ ବ୍ୟବସ୍ଥାରେ ଲାଞ୍ଛନା ପାଇଲେ।

ଏ ଏକମାତ୍ର ଘଟଣା ନୁହେଁ - ଏପରି ବହୁ ଘଟଣା ରହିଛି। ପୁତ୍ରମାନଙ୍କର ତେଜୋଦ୍ଦୀପ୍ତ ମୁଖମଣ୍ଡଳ ଏବେବି ମୋର ଦୃଷ୍ଟି ପଥକୁ ଆସୁଛି। ମହାତ୍ମାଗାନ୍ଧିଙ୍କର ଆହ୍ୱାନ ଛାତ୍ରମାନଙ୍କୁ ଅସ୍ଥିର କରୁଥିଲା। ଦୁଇଟି ପଥ ଥିଲା ଗୋଟିଏ କଲେଜ ସ୍କୁଲ ବର୍ଜନ କରି ପ୍ରତ୍ୟକ୍ଷ ସଂଗ୍ରାମରେ ଲମ୍ଫଦେବା କିମ୍ବା ପ୍ରଥମେ ଉଚ୍ଚଶିକ୍ଷା ପାଇ ଜ୍ଞାନାର୍ଜନ ସହିତ ଗାନ୍ଧିଜୀଙ୍କର ରଚନାତ୍ମକ କର୍ମରେ ନିଯୁକ୍ତ ହେବା।

ଜାତୀୟ ସଂଗ୍ରାମର ଏ ଦୁଇଟି ଦିଗରେ ଓଡ଼ିଶାର ଛାତ୍ର ସମାଜ ସେତେବେଳେ ବିଭକ୍ତ ହୋଇ ଯାଇଥିଲା। ମନମୋହନ ମିଶ୍ର, ବିବୁଧେନ୍ଦ୍ର ମିଶ୍ର, ସୂରଜମଲ୍ଲ ସାହା, ଦୀନବନ୍ଧୁ ସାହୁ, ବନମାଳୀ ପଟ୍ଟନାୟକ, ଅନନ୍ତ ପଟ୍ଟନାୟକ ପ୍ରମୁଖ ଛାତ୍ରମାନେ ପ୍ରତ୍ୟକ୍ଷ ସଂଗ୍ରାମରେ ଝାସ ଦେଲେ। ପଣ୍ଡିତ ଗୋପବନ୍ଧୁଙ୍କର ବନବିଦ୍ୟାଳୟରେ ଅଧ୍ୟୟନ କରୁଥିବା ଛାତ୍ରମାନେ ଓଡ଼ିଶାର ସଂସ୍କୃତି ଓ ସାହିତ୍ୟ ତଥା ଜାତୀୟତା ବୋଧରେ ଅନୁପ୍ରାଣିତ ହୋଇ ଆଉ ଏକ ସରଣୀ ପ୍ରସ୍ତୁତ

କରିନେଲେ । ଏମାନେ ସେ ସ୍ୱର୍ଣ୍ଣଯୁଗର ସ୍ୱର୍ଣ୍ଣକାର, ଜାତୀୟତାର ବିନ୍ଧାଣୀ, କି ସାହିତ୍ୟ, କି ଜୀବନ ଚର୍ଚ୍ଚା, କି ନୈତିକତା ସତ୍ ଚରିତ୍ର ବାର୍ତ୍ତାରେ ଆତ୍ମସ୍ଥ ରହି ଓଡ଼ିଶାରେ ଏକ ନବଜୀବନ ସୃଷ୍ଟି କରିପାରିଥିଲେ ।

ମୋ ମନକୁ ତଥା ହୃଦୟକୁ ଯେଉଁ ଗୁରୁଜୀମାନେ ସେତେବେଳେ ଆକୃଷ୍ଟ କରୁଥିଲେ ସେମାନେ ହେଲେ ନମନୀୟ ଓ କମନୀୟ ବ୍ୟକ୍ତିତ୍ୱସମ୍ପନ୍ନ ସଂସ୍କୃତ ଅଧ୍ୟାପକ ଲକ୍ଷ୍ମୀକାନ୍ତ ଚୌଧୁରୀ । ଏହାଙ୍କର ପରିଧାନ ଥିଲା ସୁନ୍ଦର ଧୋତି ଓ ସିଲ୍କ ପଞ୍ଜାବି ଓ ଖଣ୍ଡେ ଉତ୍ତରୀୟ ସେହି ରଙ୍ଗର । ମୋର ଅଧ୍ୟୟନ କାଳରେ ମୁଁ କେବେ ଦେଖିନାହିଁ ଲକ୍ଷ୍ମୀକାନ୍ତ ଚୌଧୁରୀ ଏ ବେଶ ଦିନକ ପାଇଁ ପରିହାର କରି ଅନ୍ୟ ପୋଷାକ ପିନ୍ଧିଛନ୍ତି । ଏହାର ଏକ ସ୍ୱାଭାବିକ ମନସ୍ତାତ୍ତ୍ୱିକ ପ୍ରଭାବ କିଶୋର ବୟସର ପିଲାଙ୍କ ଉପରେ ପଡ଼େ । ଯାହାଙ୍କର ଚକ୍ଷୁ ଖୋକି ବୁଲୁଥାଏ ଏକପ୍ରକାର ତନ୍ଦ୍ରାଚ୍ଛନ୍ନ ହୋଇ କେଉଁଠି ପ୍ରକୃତରେ ସୌନ୍ଦର୍ଯ୍ୟ ରହିଛି, ବ୍ୟକ୍ତିତ୍ୱରେ ମାର୍ଜନା ରହିଛି, ବେଶଭୂଷାରେ ପରିପାଟୀ ରହିଛି ତାହାର ଅନୁକରଣ କରିବ ।

ଏ ଅନୁକରଣ ପ୍ରବୃତ୍ତି ସ୍ୱାଭାବିକ । ଅଧ୍ୟାପକ ଗିରିଜାଶଙ୍କର ରାୟ, ବିପନବିହାରୀ ରାୟ ପ୍ରମୁଖ ବ୍ୟକ୍ତି ଗୋଟିଏ ଗୋଟିଏ ଚଳମାନ । ଆନନ୍ଦ, ଜ୍ଞାନ ଓ ମମତାର ପିରାମିଡ୍, ଦେଖିଲେ ତାଙ୍କ ନିକଟରେ ଆତ୍ମସମର୍ପଣ କରିବା ଛଡ଼ା ଉପାୟ ନଥିଲା । ଶ୍ରେଣୀ ଗୃହ ସେତେବେଳେ ମନ୍ଦିର ଥିଲା । ମୋର ଅଧ୍ୟୟନ କାଳ ଭିତରେ ମୁଁ କୌଣସି ଦିନ ଦେଖିନାହିଁ କ୍ଲାସ୍ ପ୍ରକୋଷ୍ଠର ଚୌକି ବେଞ୍ଚ୍ ଅବିନ୍ୟସ୍ତଭାବେ ଏଣେ ତେଣେ ରହିଛି । ବ୍ଲାକ୍ ବୋର୍ଡ ଉପରେ ଅବାନ୍ତର ଅଶ୍ଳୀଳ ଲେଖା ରହିଛି । କ୍ଲାସ୍ ଶେଷରେ କକ୍ଷଟି ବନ୍ଦ ହେବା ପୂର୍ବରୁ ପିଅନ୍‌ଟିର କର୍ତ୍ତବ୍ୟ ଥିଲା ସେ ଦେଖିବ ଯେ ଆଗାମୀ ଅଧ୍ୟାପନା ପାଇଁ ଶ୍ରେଣୀ କକ୍ଷଟି ସଜ୍ଜିତ ରହିବ ।

ଏବର ଚଳଣି ଭିନ୍ନ ପ୍ରକାର । ତଳ ଧାଡ଼ିର ବେଞ୍ଚ୍ ଉପରେ ଚଉକିମାନ ରହିଥାଏ । ତା' ଉପରେ ପିଲାଏ ବସୁଛନ୍ତି । କିଏ ବି ସାଥୀମାନଙ୍କ କାନ୍ଧ ଉପରେ ପାଦ ରଖି ନଟରାଜ ନୃତ୍ୟ ଭଙ୍ଗୀରେ ଶୋଭା ପାଆନ୍ତି । ପ୍ରକୋଷ୍ଠଟିରେ ଯେତୋଟି ବିଦ୍ୟୁତ୍ ପଙ୍ଖା ଥାଏ ତାହା "ଶାନ୍ତାକାରଂ" ନିଶ୍ଚଳ ଓ ପଦ୍ମପୁଷ୍ପାକୃତିରେ ରଞ୍ଜିତ ରହୁଛନ୍ତି ।

ପ୍ରଥା ଥିଲା - ଦୁଇ ତିନି ମିନିଟ୍ ଘଣ୍ଟା ବାକିବାକୁ ଥିବ ଜଣେ ମାର୍ଜିତ ଚେହେରାର ସୁନ୍ଦର ଯୁବକ ପିଅନ ରେଜିଷ୍ଟର ଖାତା ନେଇଯାଏ । ପରବର୍ତ୍ତୀ କ୍ଲାସ୍ ପାଇଁ ଖାତା ଦେଇଯାଏ । ତାହାଦ୍ୱାରା ଅଧ୍ୟାପକ ବିକଳ ହୋଇ କମନ୍‌ରୁମ୍‌କୁ ଦଉଡ଼ନ୍ତି ନାହିଁ ଏବଂ ଏହି ଆଳରେ ପନ୍ଦର ବା କୋଡ଼ିଏ ମିନିଟ୍ ଡେରିରେ କ୍ଲାସ୍‌କୁ ଆସନ୍ତି ନାହିଁ ।

ବେଶଭୂଷା, ମଥାର କେଶବିନ୍ୟାସ, ପରିଚ୍ଛନ୍ନତା ଓ ଚାଲିଚଳଣିରେ ମୁଁ ବାସ୍ତବରେ ଅନୁପ୍ରାଣିତ ଓ ପ୍ରଭାବିତ ହୋଇଗଲି । ମୋର ପୂଜ୍ୟ ଇଂରାଜୀ ଅଧ୍ୟାପକ କେ.ପି. ସିହ୍ନାଙ୍କ ପୂଜା

ମୁଁ ଆଜି ବି କରୁଛି । ଅନ୍ୟ ସରକାରୀ ବିଭାଗରେ ଯାହା ଯିମିତି ହେଉ ପଛକେ ଚଳିଯିବ, ମାତ୍ର ସ୍କୁଲ କଲେଜରେ ଶିକ୍ଷକ ଅଧ୍ୟାପକଙ୍କ ବେଶଭୂଷା, ପରିମାର୍ଜିତ କଥାବାର୍ତ୍ତା, ଚଳଣି ଓ ଢଙ୍ଗରେ ମମତାଭରା ଶ୍ରୀ ଇତ୍ୟାଦିର ଯଥେଷ୍ଟ ପ୍ରଭାବ କିଶୋର କିଶୋରୀଙ୍କ ଉପରେ ପଡ଼ିଥାଏ ।

କଲେଜର ନାଟ୍ୟ ସଂସଦର ବାର୍ଷିକ ନାଟ୍ୟୋତ୍ସବ ସମଗ୍ର କଟକ ସହରର ବୁଦ୍ଧିଜୀବୀ ଓ ନାଟ୍ୟପ୍ରେମୀଙ୍କୁ ଆକର୍ଷଣ କରୁଥିଲା । ମୋର ପରବର୍ତ୍ତୀ ଜୀବନର ସର୍ବପ୍ରକାର ନାଟ୍ୟମୋହ ଓ ପ୍ରତିଭାକୁ ମୁଁ ସେହି ପରିବେଶ ମାଧ୍ୟମରେ ଆବିଷ୍କାର କରିଥିଲି । ଯାହା କିଛି ମୁଁ ଆଜିର ପରିପ୍ରେକ୍ଷୀରେ ନିଜକୁ ସକେଇ ପାରିଛି, ତା'ର ଜନନୀ, ସୃଷ୍ଟିକର୍ତ୍ତା ଥିଲା ରେଭେନ୍‌ସା, ପ୍ରେମ ପ୍ରଣୟଠାରୁ ଆରମ୍ଭ କରି ଅଧ୍ୟାପନା ଶିଳ୍ପ ଓ ଜୀବନ ଦର୍ଶନର ଗଭୀର ଅବବୋଧକୁ ମୁଁ ସାଉଁଟି ଆଣିଥିଲି ଶିଷ୍ୟ - ଶିକ୍ଷକର ସୁସଂପର୍କରୁ ।

ଥରେ ରୋଗାଗ୍ରସ୍ତ ହୋଇ ପଡ଼ିଥିଲି । ମୁଁ ସେତେବେଳେ ଇଂରାଜୀ ଅଧ୍ୟାପକ ଥିଲି । ମୋର ପୂଜ୍ୟ ଗୁରୁମାନେ ମୋର ସହକର୍ମୀ । ଏହା ଯେତିକି ମୋ ପକ୍ଷରେ ବିଡ଼ମ୍ବନା ସେତିକି ଆନନ୍ଦୋଦ୍ଭବ ଅନୁଭବ । କାଠଯୋଡ଼ି ମେସରୁ ପ୍ରତ୍ୟହ ମୋର ଭଙ୍ଗା ସାଇକେଲ୍‌ରେ ପେଡ଼ାଲ କରି ରେଭେନ୍‌ସାକୁ ଆସିବା ଓ ଫେରିବା ମତେ ବଡ଼ କ୍ଲାନ୍ତ କଲା । ଏଣେ ମେସର ପାଚକ ନନା ଚୋରେଇ ନେଉଥିବାରୁ ଆମେ ଅନ୍ତେବାସୀ ପୁଷ୍ଟିକର ଖାଦ୍ୟ ପାଉନଥିଲୁ । ମୋ ପକ୍ଷରେ ଇଂରେଜୀ ଅଧ୍ୟାପନାର ପ୍ରସ୍ତୁତି ପାଇଁ ଖୁବ୍ ସମୟ ଦେବାକୁ ପଡୁଥିଲା ।

ମୋର ଅସ୍ତ୍ରୋପଚାର କରିବା ଛଡ଼ା ଗତ୍ୟନ୍ତର ନଥିଲା । ପାଖରେ କେହି ନାହାନ୍ତି । ମୋର ପିତା ମାତା ଦୂରରେ । ସେମାନେ ଆସିଲେବି ରହିବେ କେଉଁଠାରେ ? ମୁଁ ନୂଆ ହୋଇ ଇଂରାଜୀ ଅଧ୍ୟାପକ ଭାବରେ ରେଭେନ୍‌ସାରେ ଯୋଗ ଦେଇଥିଲି । ଛୁଟି ବି କାହିଁ ? ମୋର ସତୀର୍ଥ ଓ ମେସବାସୀ ସ୍ୱର୍ଗତ ସୋମନାଥ ନନ୍ଦ ଯେ କି ଅର୍ଥ ବିଭାଗର ସେକ୍ରେଟେରୀ ଥିଲେ, ମୋର ଏ ଅବସ୍ଥାରେ ବିଚଳିତ ହୋଇ ଡାକ୍ତର ଦେଖାଇବାରେ ଜାଣିଲେ ଯେ ମୋର ଅସ୍ତ୍ରୋପଚାର ଜରୁରୀ ଦରକାର ।

ମୋର ପ୍ରଥମ ବାର୍ଷିକ କଳାରେ ନାମଲେଖା ବର୍ଷ ହେଉଛି ୧୯୩୧ । ୧୯୩୩ରୁ ୧୯୪୫ ପର୍ଯ୍ୟନ୍ତ ମୋ ଜୀବନାକାଶରେ ଯେଉଁ ଉଦିତ ଚନ୍ଦ୍ର ଆଭା ପ୍ରକାଶ କରିଥିଲା ତା'ର ଅସ୍ତ ଘଟିଲା ୧୯୪୫ ମସିହାରେ । ଧର୍ମର ବାଡ଼ ଆମକୁ ଏକତ୍ର ଓ ଏକାନ୍ତ କରିପାରିଲା ନାହିଁ । ୧୯୩୩ରୁ ମୋର ସହପାଠିନୀ ଭାବରେ ସେ ଓ ମୁଁ ଅଭିନ୍ନ ହୃଦୟ ଥିଲୁ । କଟକରେ ତାଙ୍କ ଛଡ଼ା ମୋର ଏ ରୋଗଗ୍ରସ୍ତ ଶରୀରକୁ ଦୃଷ୍ଟି ଦେବାପାଇଁ ଆଉ କେହି ନଥିଲେ ।

ମାତ୍ର ମୋ ପାଖକୁ ଯିବା ଆସିବା ଓ ମୋ ସହିତ ମିଳିତ ହେବା ଜଣେ ଛାତ୍ରୀ ପକ୍ଷରେ ସେତେବେଳର ରକ୍ଷଣଶୀଳତା ଭିତରେ କେତେ ଯେ କଷ୍ଟକର ଓ ବିପଦସଂକୁଳ, ତାହା

ସହଜରେ ଅନୁମେୟ । ତଥାପି ସର୍ବ ପ୍ରକାର ବିପଦ ଓ ଆଲୋଚନାକୁ ଭ୍ରୂକ୍ଷେପ ନକରି ଆମେ ପରସ୍ପରର ସାନ୍ନିଧ୍ୟ ପାଉଥିଲୁ ।

ରେଭେନ୍‌ସା କଲେଜର ନୀଳାଭ ଦୂର୍ବା ଗାଲିଚା । ପ୍ରାନ୍ତର ଭରା ପୁଷ୍ପରାଜିର ଦୋଳନ । ସୂର୍ଯ୍ୟ ସ୍ତମ୍ଭର ପାଖ ପଥଟି ଉପରେ ଆମେ ଦୃଷ୍ଟି ବିନିମୟ କରୁଥିଲୁ । ମାତ୍ର ମୋର ଅଧ୍ୟାପକ ଜୀବନ ଆରମ୍ଭ ପରେ ଏ ଚିତ୍ରପଟ ବଦଳିଗଲା ।

କିନ୍ତୁ ସଞ୍ଜ ପରେ ମେସ୍ ପାଖ କାଠଯୋଡ଼ୀ ବନ୍ଧ ଉପରେ ସେ ମତେ ଅପେକ୍ଷା କରୁଥିଲେ । ଥରେ ଜାଣିଲେ ଯେ ମୁଁ ବ୍ୟାଧିଗ୍ରସ୍ତ ଓ ଅସ୍ତ୍ରୋପଚାର ପାଇଁ ମୁଁ ପ୍ରସ୍ତୁତ ହେଉଛି । ସୋମନାଥ ତାଙ୍କୁ ଏକଥା ଜଣାଇ ତାଙ୍କଠାରୁ ସହଯୋଗ କାମନା କରିଥିଲେ ।

ଏହା ପୂର୍ବରୁ ସହରରେ ବୁଦ୍ଧିଜୀବୀ ମହଲରେ ଆମ ସଂପର୍କ ନେଇ ସ୍ଥିରମତ ସୃଷ୍ଟି ହୋଇଥିଲା ଯେ ଏମାନେ ପରିଶେଷରେ ବିବାହ କରିବେ । ମାତ୍ର ସ୍ୱାଭାବିକ ଭାବରେ ଦୁଇ ପରିବାରରେ ଜୋର୍ ଆପତ୍ତି । ମୁଁ ବିଧର୍ମୀ ହେବିନାହିଁ । ସେ ବି ମତେ ଜଣେ ନାରୀ ପାଇଁ ଧର୍ମଛଡ଼ା ଦେଖିବେ ନାହିଁ । ଏ ସଂକଳ୍ପ ନେଇ ଆମେ ଶେଷରେ ଦ୍ୱାରସ୍ଥ ହେଲୁ ବର୍ତ୍ତମାନର ଅବସରପ୍ରାପ୍ତ ବିଚାରପତି ଶ୍ରୀ ରାଜକିଶୋର ଦାସଙ୍କର ଚାମ୍ବରରେ । ମତେ ସେ ଖୁବ୍ ଶ୍ରଦ୍ଧା କରୁଥିଲେ । ଅଧ୍ୟାପକମାନେ ଏ ସମସ୍ତ ବିଷୟ ଜାଣିଥିଲେ । ସ୍ୱୟଂ ଡି.ପି. ଆଇ. ସ୍ୱର୍ଗତ ଶ୍ୟାମସୁନ୍ଦର ତ୍ରିପାଠୀ ପରିହାସରେ କେତେଥର ମତେ "ବୈବାହିକ ଅର୍ଗଳ ଭିତରକୁ ମଥା କିଆଁ ପୂରାଉ ନାହିଁ, ରାଜକିଶୋର" ବୋଲି କହୁଥିଲେ । "ଆଉ ଡେରି କରନାହିଁ" ଏହା ତାଙ୍କର ସତର୍କବାଣୀ ଥିଲା ।

ମୋର ଅସ୍ତ୍ରୋପଚାର ହେଲା । ସେତେବେଳେ ମେଡ଼ିକାଲ ସ୍କୁଲ ଥିଲା । ଆଜି ଏ ବିରାଟ ଚିକିତ୍ସାଳୟ ତାହାଠାରୁ ଉଦ୍‌ଭବ ହେଲେ ବି ଆଖି ପାଉନାହିଁ ।

ମୋର ସେବା ଶୁଶ୍ରୂଷା କଲେ ତିନି ଭଉଣୀ । ଯଥାର୍ଥ ଖ୍ରୀଷ୍ଟୀୟ ସ୍ନେହ ଓ ଅନୁକମ୍ପା ନେଇ ରାତି ଉଜାଗର ରହି ପାଳି କରି ଏମାନେ ମତେ କ୍ରମେ ରୋଗ ଶଯ୍ୟାରୁ ଉଠାଇଲେ । ସେମାନଙ୍କର ବାପା ଏହା ଜାଣନ୍ତି, ମାତ୍ର ରୋଗୀ ଭାବୀ ଜାମାତା । ଏହାର ଏକାନ୍ତ ସମନ୍ୱୟ ଭାବ ସେ ସେତେବେଳେ ନଦେଖି ଜଣେ ପ୍ରକୃତ ଖ୍ରୀଷ୍ଟିୟାନ୍ ସେ ବରଂ କନ୍ୟାମାନଙ୍କର ମୋଭଳି ଆତୁର ପ୍ରତି ସେବାକୁ ସମର୍ଥନ କଲେ । କ୍ରୁଦ୍ଧ ହେଲେ ନାହିଁ । ସେ ସ୍ୱର୍ଗରେ, ମାତ୍ର ମୋର ନମସ୍ୟ । ମନେ ରଖିଛି ଏ ସବୁ ସ୍ନେହ ପ୍ରୀତି ଓ ତ୍ୟାଗର ଘଟଣା ।

ମୁଁ ଖୁବ୍ ଦୁର୍ବଳ ହୋଇ ପଡ଼ିଲି । ମେସ୍‌କୁ ଫେରିଗଲେ କିଏ ବୁଝିବ ଖାଦ୍ୟପେୟ କଥା ? ପୁଷ୍ଟିକର ଖାଦ୍ୟ ମୋର ଖୁବ୍ ଦରକାର । ମଥା ଘୂରିଲା ପ୍ରେମଲତାଙ୍କର । ଅବଶ୍ୟ ବାପା ଆସିଥିଲେ ପୁରୀରୁ । କିନ୍ତୁ କିଛି ସମାଧାନ ହୋଇପାରିଲା ନାହିଁ, ମୁଁ କେଉଁଠାରେ ରହିବି । କିପରି ଏ ଦୁର୍ବଳ ଶରୀରକୁ ପୁନର୍ବାର କାର୍ଯ୍ୟକ୍ଷମ କରିପାରିବି, ଏଇ ଚିନ୍ତାରେ ପ୍ରେମଲତା ବ୍ୟଥିତା ।

ମୋର ପୂଜ୍ୟ ଗୁରୁଦେବ ବିପିନ ବିହାରୀ ରାୟ୍ ଯେଉଁଦିନ ହାସପାତାଳରୁ ମୁଁ ଡିସ୍‌ଚାର୍ଯ ହେଲି, ସେଦିନ ନିଜ ଘୋଡ଼ା ଗାଡ଼ିରେ ଆସି ମୋତେ ଉଠେଇ ନେଲେ ତାଙ୍କ ଘରକୁ । ଗୋଟିଏ ରୁମ୍‌ରେ ମତେ ରଖିଲେ । ମୁଁ ଅସ୍ୱସ୍ତି ବୋଧ କରୁଥାଏ । ପ୍ରାୟ୍ ପନ୍ଦର ଦିନ କାଳ ସେ ଅଣ୍ଡା, ମାଂସ, ଖୁବ୍ ସୁସ୍ୱାଦୁ ଭୋଜନ ମତେ ଦେଇ ଆଶ୍ୱସ୍ତ କଲେ । ତାଙ୍କର କନ୍ୟା ଓ ସହଧର୍ମିଣୀ ମୋର ସବୁପ୍ରକାର ଯତ୍ନ ନେଲେ ।

ମନେପଡ଼େ ପ୍ରଥମ ଚାକିରିରେ ଯୋଗ ଦେବା ପରେ ପ୍ୟାଣ୍ଟ ସୁଟ୍ ମୋର ନଥିବାରୁ ମୋର ଗୁରୁ ବିପିନ ବିହାରୀ ରାୟ୍ ଦୁଇଶହ ଟଙ୍କା ମତେ ଦେଇ ଏସବୁ ପୋଷାକ କିଣି କଲେଜ ଯିବାକୁ ପରାମର୍ଶ ଦେଲେ । କାରଣ ସେତେବେଳେ ଏହାହିଁ ଚଳଣି ଥିଲା । ସେହି ଗୁରୁଦେବ ମତେ ଘରକୁ ଆଣି ମୋର ସ୍ୱାସ୍ଥ୍ୟ ଫେରି ଆସିବାଯାଏ ମୋର ଯତ୍ନ ନେଲେ ।

ଏ କାହାଣୀ ହୁଏତ ଅବିଶ୍ୱାସ୍ୟ କାହାକୁ ମନେ ହୋଇପାରେ । ପରେ ଜାଣିଲି ପ୍ରେମଲତା ଅନ୍ୟ କୌଣସି ବାଟ ନପାଇ ବିପିନ ବିହାରୀ ରାୟଙ୍କୁ ମୋର ଅବସ୍ଥା ସମ୍ବନ୍ଧରେ ଜଣାଇଥିଲେ । ଏ ଥିଲା ସେତେବେଳର ଗୁରୁ-ଶିଷ୍ୟ ସଂପର୍କ । ମେଧାବୀ ପ୍ରତିଭାବାନ୍ ଛାତ୍ରର ଏମାନେ ହୋଇଯାଇଥିଲେ ଦେବଦୂତ । ସେମାନଙ୍କର ଆବିଷ୍କାରିଣୀ ଶକ୍ତି ଦେଖି ପାରୁଥିଲା କେଉଁ ଛାତ୍ରକୁ କିପରି ଭାବରେ ସାହାଯ୍ୟ ସହଯୋଗ କଲେ ତା'ର ଭବିଷ୍ୟତ ଉଜ୍ଜ୍ୱଳ ହୋଇଉଠିବ । ଆଜି ଏ ଜୀବନ ସ୍ମୃତିରେ ପ୍ରେମଲତା ଯେତିକି ମୋର ହୃଦୟକୁ ଉଦ୍‌ବେଳିତ କରୁଛନ୍ତି, ମୋର ନମସ୍ୟ ଗୁରୁଜୀମାନେ ମତେ ପରବର୍ତ୍ତୀ ଜୀବନରେ ଉଦ୍‌ଭାସିତ କରିବାପାଇଁ ସେତିକି ଆଶୀର୍ବାଦ ବାଢ଼ି ଦେଇଛନ୍ତି । ପ୍ରଥମଟିରେ ମୁଁ ମମତା, ସୌନ୍ଦର୍ଯ୍ୟ ଓ ପ୍ରେମର ପ୍ରବାହରେ କବିତ୍ୱ ଶକ୍ତି ଆହରଣ କଲି । ଦ୍ୱିତୀୟଟିରେ ଅଧ୍ୟାପନାର କୌଶଳ ସହିତ ଅନ୍ୟର ହୃଦୟରେ ପ୍ରବେଶ କରିବାର ଶିକ୍ଷା ପାଇଲି, ସେହି ଗୁରୁମାନଙ୍କର ଆଦର୍ଶକୁ ଚିତ୍ତାୟତ କରି ।

•

---

***ଆଦ୍ୟପ୍ରାଣ ଚିନ୍ମୟ୍,***
ଗ୍ରନ୍ଥମନ୍ଦିର, କଟକ, ୧୯୮୯

# ରେଭେନ୍ସା କଲେଜ

## ସର୍ବେଶ୍ୱର ଦାସ

୧୯୪୦ ମସିହା ଜୁଲାଇ ମାସ ଆରମ୍ଭ ହେଲା ମୋର କଲେଜ ଜୀବନ । ପୁରୀ ଛାଡ଼ି, ନନା, ବୋଉ, ଭାଇନା, ଭାଉଜ, ମୋର ଟିକି ଟିକି ପୁତୁରା ଝିଆରୀଙ୍କୁ ଛାଡ଼ି, ବୁଢ଼ୀ ମାଈଁ ଆଇ ପ୍ରଭୃତି ସମସ୍ତଙ୍କୁ ଛାଡ଼ି କଟକ ବାହାରିଲା ବେଳକୁ ଦୁଃଖ ଲାଗିଲା । ନନା ବୋଉ ମୋତେ ବିଦାୟ ଦେଲାବେଳକୁ ବିଷଣ୍ଣ ହୋଇ ପଡ଼ିଥିଲେ ମଧ୍ୟ ମୋର ଉଜ୍ଜ୍ୱଳ ଭବିଷ୍ୟତର ସ୍ୱପ୍ନ ଦେଖି ମନକୁ ସାନ୍ତ୍ୱନା ଦେଇଥିଲେ । ମୁଁ ମଧ୍ୟ ମୋର ବିଦାୟକାଳୀନ ଦୁଃଖ ଭିତରେ ଭବିଷ୍ୟତ କଲେଜ ଜୀବନର ସ୍ୱପ୍ନ ଦେଖୁଥିଲି ।

ସେତେବେଳେ ରେଭେନ୍ସା କଲେଜରେ କେବଳ ଦୁଇଟି ଛାତ୍ରାବାସ ଥିଲା । ଇଷ୍ଟ୍ ହଷ୍ଟେଲ୍ ଓ ୱେଷ୍ଟ୍ ହଷ୍ଟେଲ୍ । ୱେଷ୍ଟ୍ ହଷ୍ଟେଲ୍ ବା ପଶ୍ଚିମ ଛାତ୍ରାବାସରେ ରହିଥାନ୍ତି ମୁଖ୍ୟତଃ ଉପକୂଳ କିଲ୍ଲା - କଟକ, ପୁରୀ, ବାଲେଶ୍ୱରରୁ ଆଗତ ଛାତ୍ରମାନେ । ଆଉ ଇଷ୍ଟ୍ ହଷ୍ଟେଲ୍ ବା ପୂର୍ବ ଛାତ୍ରାବାସରେ ରହୁଥାନ୍ତି ଓଡ଼ିଶାର ମୁଖ୍ୟତଃ ପଶ୍ଚିମାଞ୍ଚଳର- ସମ୍ବଲପୁର, ବଲାଙ୍ଗୀର, କଳାହାଣ୍ଡି ପ୍ରଭୃତିର, ଗଡ଼ଜାତ ଅଞ୍ଚଳ ଓ ଉତ୍ତର ଉପାନ୍ତ ଅଞ୍ଚଳ ସିଂହଭୂମି କିଲ୍ଲା, ଷଢ଼େଇକଳା ଓ ଖରସୁଆଁରୁ ଆଗତ ଛାତ୍ରମାନେ । ମୁଁ ଏହି ପରମ୍ପରା ଭାଙ୍ଗି ସ୍ଥିର କଲି ପୂର୍ବ ଛାତ୍ରାବାସରେ ରହିବାକୁ । ଆଉ ମଧ୍ୟ ଶୁଣିଥାଏ ଆପାତତଃ ଅନଗ୍ରସର ଅଞ୍ଚଳର ଛାତ୍ରମାନଙ୍କ ଦ୍ୱାରା ଅଧ୍ୟୁଷିତ ପୂର୍ବ ଛାତ୍ରାବାସର ବାତାବରଣ ପଶ୍ଚିମ ଛାତ୍ରାବାସର ବାତାବରଣଠାରୁ ଅପେକ୍ଷାକୃତ ଶାନ୍ତ ଥାଏ, ନିଶ୍ଚିନ୍ତରେ ପାଠାଭ୍ୟାସ କରିବା ପାଇଁ ଅନୁକୂଳ ଥାଏ । ରହିଲି ଭାଇନାମାନଙ୍କଠାରୁ ଅଲଗା ହୋଇ ପୂର୍ବ ଛାତ୍ରାବାସରେ । ସେଠି ପ୍ରଥମେ ପୁରୁଣା ସାଙ୍ଗମାନଙ୍କ ମଧ୍ୟରୁ ଥାଏ କେବଳ କୃଷ୍ଣ, ପରେ ଆସିଲେ ମୃତ୍ୟୁଞ୍ଜୟ - ସେହି ପୁରୀ କିଲ୍ଲା ସ୍କୁଲର ସହପାଠୀ । ଗଦାଧର, ନାରଣ, ହରିହର ରହିଲେ ପଶ୍ଚିମ ଛାତ୍ରାବାସରେ, ଯାମିନୀ ମଧ୍ୟ ରହିଲେ ସେଇଠି । ସମସ୍ତେ ନେଲେ ବିଜ୍ଞାନ, I.Sc. ର (ବର୍ତ୍ତମାନ Higher Secondary Science) ପ୍ରଥମ ବାର୍ଷିକ ଶ୍ରେଣୀରେ ଯୋଗ ଦେଲେ । ସେଇ ହଷ୍ଟେଲ୍‌ରେ ରହିଲେ ଜିଲ୍ଲାବୃତ୍ତି ପ୍ରାପ୍ତ ଗଂଗାଧର ରଥ । ଭୂତପୂର୍ବ ଆଡ୍‌ଭୋକେଟ୍-ଜେନେରାଲ) ଓ ସୂର୍ଯ୍ୟକାନ୍ତ ଦାସ (ଉତ୍କଳ ବିଶ୍ୱବିଦ୍ୟାଳୟର ଅବସରପ୍ରାପ୍ତ

ବାଣିଜ୍ୟ ପ୍ରଫେସର) । ସୂର୍ଯ୍ୟକାନ୍ତ କଳାହାଣ୍ଡିରୁ ବୃତ୍ତି ପାଇ ଆସିଥା'ନ୍ତି । ସେ I.A. (ଏବର Higher Secondary) ପ୍ରଥମ ବାର୍ଷିକ ଶ୍ରେଣୀରେ ଯୋଗ ଦେଲେ । ମୋର ପୁରୀ ସହପାଠୀ ଗୋବିନ୍ଦ କିଲ୍ଲାବୃତ୍ତି ଦଶ ଟଙ୍କା ଟ.୧୦ ପାଇଲେ ମଧ୍ୟ ଅଭାବ ହେତୁ ବାହାରେ ଗୋଟିଏ ମେସ୍‌ରେ ରହିଲେ, ଟିଉସନ୍ କରି ନିଜର ବ୍ୟୟ ନିର୍ବାହ କଲେ । ସମ୍ବଲପୁରରୁ କିଲ୍ଲା ବୃତ୍ତି ପାଇଁ ଆସିଥିବା ନିତ୍ୟାନନ୍ଦ ଦର୍ଜି (ଅବସରପ୍ରାପ୍ତ ଦର୍ଶନ ଅଧ୍ୟାପକ, ଖ୍ରୀଏଷ୍ଟ୍ କଲେଜ) ବାହାରେ ବସା ନେଇ ନିଜର ମାତାଙ୍କ ସହିତ ରହିଲେ । ସେ ମଧ୍ୟ ଟିଉସନ୍ କରୁଥା'ନ୍ତି । ବାଲେଶ୍ୱରରୁ ବୃତ୍ତି ପାଇ ଆସିଥିବା ଶେଖ୍ ଅବଦୁଲ୍ ମନାନ୍ ରହିଲେ ପଶ୍ଚିମ ଛାତ୍ରାବାସରେ । ସେତେବେଳେ ସେହି ହଷ୍ଟେଲ୍‌ର ତିନୋଟି ବଖରା ମୁସଲମାନ ଛାତ୍ରମାନଙ୍କ ପାଇଁ ନିର୍ଦ୍ଦିଷ୍ଟ ଥାଏ । ସେମାନେ ବାହାରେ ସେମାନଙ୍କର ଖାଦ୍ୟପେୟାଦିର ବ୍ୟବସ୍ଥା କରିଥା'ନ୍ତି ।

ମୋର ସାହିତ୍ୟ, ସଂସ୍କୃତ, ଦର୍ଶନ ପ୍ରଭୃତି ପ୍ରତି ବିଶେଷ ଆଗ୍ରହ ଥିବାରୁ ମୁଁ କଳା ବିଭାଗରେ (I.A.ରେ) ଯୋଗ ଦେଲି । ଇଂରାଜୀ ଓ ଓଡ଼ିଆ ଉଭୟ I.Sc. ଓ I.A. ପାଇଁ ବାଧ୍ୟତାମୂଳକ ଥାଏ । ବାକି ତିନୋଟି ଇଚ୍ଛାଧୀନ ବିଷୟ ଥାଏ । ପୂର୍ବରୁ ଯେଉଁମାନେ ଓଡ଼ିଶାରେ I.A. ରେ ପ୍ରଥମ ହୋଇଥିଲେ ସେମାନେ M.L.S. ବା Mathematics, Logic, Sanskrit ନେଇଥିବାରୁ ଅଧିକ ନମ୍ବର ପାଇଥିଲେ ବୋଲି ଶୁଣି ମୁଁ ମଧ୍ୟ ସେହି ବିଷୟଗୁଡ଼ିକ ଇଚ୍ଛାଧୀନ ବିଷୟ ରୂପେ ନେଲି । ମୋର ପୁରୁଣା ବନ୍ଧୁ ପ୍ରହ୍ଲାଦ ମଧ୍ୟ ତାହାହିଁ ନେଇଥିଲେ । ପୂର୍ବ ଛାତ୍ରାବାସରେ ଆଇ.ଏ. (Intermediate in Arts)ରେ ନାମ ଲେଖାଇଥିବା ଆଉ ଦୁଇଜଣ କୃତୀଛାତ୍ର ଥିଲେ - ସାଧୁଚରଣ ଦାସ (ପରେ ଉତ୍କଳ ବିଶ୍ୱବିଦ୍ୟାଳୟର ଗଣିତ ବିଭାଗର ପ୍ରଫେସର ହୋଇଥିଲେ, ବହୁବର୍ଷ ହେଲା ପରପାରିକୁ ଗଲେଣି) ଓ ରଘୁନାଥ ନାୟକ (ସ୍ୱାଧୀନତା ସଂଗ୍ରାମୀ ଅଧ୍ୟାପକ) । I.Sc. ନେଇଥିଲେ ଅନୁଗୁଳର ଶ୍ରୀନିବାସ ମିଶ୍ର (ଡଃ ଶ୍ରୀନିବାସ ମିଶ୍ର, ପରେ କେନ୍ଦ୍ରର ଦେଶରକ୍ଷା ବିଭାଗର ବୈଜ୍ଞାନିକ ଗବେଷଣା ସଂସ୍ଥାରେ ଉଚ୍ଚ ପଦବୀରେ ଅଧିଷ୍ଠିତ ହେଲେ । ସେ ମଧ୍ୟ ଆଉ ଇହଧାମରେ ନାହାନ୍ତି), ଶିଶିର କୁମାର ଗୁପ୍ତ (ପରେ ପ୍ରାଧ୍ୟାପକ, ଦର୍ଶନଶାସ୍ତ୍ରୀ) ମଧ୍ୟ I.A. ରେ ନାମ ଲେଖାଇ ପୂର୍ବ ଛାତ୍ରବାସରେ ରହିଲେ । ଆଗରୁ ରେଭେନ୍‌ସା କଲେଜକୁ ଟିକିଏ ଦୂରରୁ ଦେଖିଥିଲି । ନନା ବୋଉଙ୍କ ସହିତ ଷ୍ଟେସନରୁ ଘୋଡ଼ାଗାଡ଼ିରେ ସାହେବଜାଦା ବଜାରରୁ ଘରକୁ ଗଲାବେଳେ । ଥରେ କେବେ ପଶ୍ଚିମ ଛାତ୍ରାବାସର ସୁପରିଣ୍ଟେଣ୍ଡେଣ୍ଟ୍ ଅଧ୍ୟାପକ ନାରାୟଣ ମିଶ୍ରଙ୍କ ଘରକୁ ଆସିଥିଲି, ଆହୁରି ପିଲା ହୋଇଥିବାବେଳେ । ସେ କଥା ଆଗରୁ ଲେଖିଛି ।

ଏବେ ରେଭେନ୍‌ସା କଲେଜରେ ନାମ ଲେଖାଇବା ପରେ ପ୍ରଥମ କେତେଦିନ ତ କଲେଜକୁ ତନ୍ନ ତନ୍ନ କରି ଦେଖିବାରେ ଗଲା । ମତେ କେବଳ ରେଭେନ୍‌ସା କଲେଜର ସୁପରିକଳ୍ପିତ ବିରାଟ

ଅଟ୍ଟାଳିକା, ହଷ୍ଟେଲ୍ ଦ୍ୱୟ ଓ କନିକା ଲାଇବ୍ରେରୀ ଚମତ୍କୃତ କଲା ନାହିଁ, ଦୁଇ ହଷ୍ଟେଲ୍ର ଓ ବିଭିନ୍ନ ବିଭାଗର ଉଦ୍ୟାନ ଓ କଲେଜ Quadrangle, ଉତ୍ତର ଦକ୍ଷିଣର Arts Block ଓ Science Block ଓ ପୂର୍ବ ପଶ୍ଚିମସ୍ଥ ଦୁଇ ଛାତ୍ରାବାସ ମଧ୍ୟସ୍ଥ ଚତୁଷ୍କୋଣ ସବୁଜ ତୃଣଭୂମି ଚମତ୍କୃତ କଲା । ତାରି ମଝିରେ ଲମ୍ବିଥାଏ Arts Block ରୁ କନିକା ଲାଇବ୍ରେରୀ ପର୍ଯ୍ୟନ୍ତ ଏକ ନାତିପ୍ରଶସ୍ତ ପକ୍କା ରାସ୍ତା - ଦୁଇ ପାଖରେ ଦୋହଲୁଥାନ୍ତି ଫୁଲଗଛଗୁଡ଼ିଏ - ଭରା ହୋଇଥାଏ ଫୁଲ - ଦୁଇ ହଷ୍ଟେଲ୍ରୁ ଦୁଇଟି ଅନୁରୂପ ରାସ୍ତା ଆସି ଭେଟିଥାନ୍ତି ପୂର୍ବୋକ୍ତ ରାସ୍ତାକୁ ମଝିରେ । ଛକରେ ଥାଏ ଗୋଟିଏ ଗୋଲେଇ ସ୍ତମ୍ଭ ଉପରେ ସୂର୍ଯ୍ୟ ଘଡ଼ିଟିଏ । ଶୁଣିଛି ତାହା ତିଆରି କରାଇଥିଲେ ପ୍ରସିଦ୍ଧ ଉଦ୍ଭିଦ ବିଜ୍ଞାନ ପ୍ରଫେସର ଯୋଗେଶ ଚନ୍ଦ୍ର ରାୟ ବିଦ୍ୟାନିଧି ଯେ ପଠାଣି ସାମନ୍ତଙ୍କୁ ଲୋକଦୃଷ୍ଟିକୁ ଆଣିଥିଲେ, ତାଙ୍କର ପ୍ରତିଭା ବିଶ୍ୱକୁ ଜ୍ଞାପନ କରିଥିଲେ ।

ହଷ୍ଟେଲ୍ ବଗିଚ଼ା, ଶୁଣିଛି, ଆରମ୍ଭ କରିଥିଲେ ତ୍ରିପାଠୀ ସାହେବ । (ଶ୍ୟାମଚ଼ନ୍ଦ୍ର ତ୍ରିପାଠୀ, ଆଇ.ଇ.ଏସ୍. (Indian Educational Service) ରେଭେନ୍ସା କଲେଜର ଭୂତପୂର୍ବ ପ୍ରିନ୍ସିପାଲ୍, ଓଡ଼ିଶାର ଶିକ୍ଷା ବିଭାଗର ପ୍ରଥମ ଓଡ଼ିଆ ଡିରେକ୍ଟର । ସେ ଓ ଡଃ ପ୍ରାଣକୃଷ୍ଣ ପରିଜା I.E.S.କୁ ଉନ୍ନୀତ ହେବାରୁ ସେବେ ତ୍ରିପାଠୀ ସାହେବ, ପରିଜା ସାହେବ ବୋଲି ସେମାନଙ୍କୁ ଅଭିହିତ କରାଯାଉଥିଲା ।) ତାଙ୍କରି ଦ୍ୱାରା ଉଦ୍‌ବୁଦ୍ଧ ହୋଇ ତାଙ୍କରି ନେତୃତ୍ୱରେ ମହାନଦୀ ପଠାରୁ ପଟୁମାଟି ବୋହି ଆଣି ଛାତ୍ରମାନେ ହଷ୍ଟେଲ୍‌ମାନଙ୍କର ଚତୁଃଷ୍କୋଣୀ ପଡ଼ିଆଗୁଡ଼ିକୁ ଉଦ୍ୟାନ ପାଇଁ ଉପଯୋଗୀ କରିଥିଲେ । କଲେଜ Quadrangle ର ତୃଣଭୂମି ମଧ୍ୟ ସେହିପରି ପ୍ରସ୍ତୁତ କରାହୋଇଥିଲା ବୋଲି ଶୁଣିଛି ।

ମୁଁ କଲେଜରେ ଯୋଗ ଦେବା ବେଳକୁ ପରିଜା ସାହେବ ଥିଲେ ପ୍ରିନ୍ସିପାଲ୍ । ସେ ତ ଉଦ୍ଭିଦ ବିଜ୍ଞାନୀ ରୂପେ ଭାରତପ୍ରସିଦ୍ଧ ଥିଲେ । ଅଧ୍ୟକ୍ଷ ରୂପେ ତାଙ୍କର ସମସ୍ତ କାର୍ଯ୍ୟବ୍ୟସ୍ତତା ସତ୍ତ୍ୱେ ସେ କଲେଜ quadrangle, ବିଭିନ୍ନ ବିଭାଗର ବଗିଚ଼ା, ବିଶେଷତଃ ଉଦ୍ଭିଦ ବିଭାଗର ବଗିଚ଼ାର ବ୍ୟକ୍ତିଗତ ଭାବରେ ତତ୍ତ୍ୱ ନେଉଥିଲେ । କଲେଜ quadrangle ର ଘାସ ପଡ଼ିଆ ଉପରେ କେହି ଛାତ୍ର ଚାଲିଲେ ଦଣ୍ଡ ପାଉଥିଲା । ତହିଁର ରାସ୍ତାଗୁଡ଼ିକର ଦୁଇ ପାଖରେ ଜାତିଆ ଜାତିଆ ଫୁଲଗଛ ଲଗା ହୋଇଥିଲା । ସେଥିରୁ ଫୁଲ ଛିଣ୍ଡାଇବା ମଧ୍ୟ ଏକାବେଳକେ ମନା ଥିଲା । ତାଙ୍କର ସରକାରୀ ଘରରୁ ଆର୍ଟସ ବ୍ଲକ୍‌ର ଦ୍ୱିତୀୟ ମହଲାରେ ଥିବା ଅଫିସ୍ ଗୃହକୁ (ସେହି ଅଫିସ୍ ଗୃହ ପାଖକୁ ତଳ ମହଲାରୁ ଗୋଟିଏ ଲୁହା ଶିଡ଼ି ଘୂରି ଘୂରି ଯାଇଥାଏ- ତାହା ଆଉ ନାହିଁ) ଆସିଲାବେଳେ ସେ quadrangle ଓ ବିଭାଗୀୟ ବଗିଚ଼ାଗୁଡ଼ିକ ପ୍ରତି ସସ୍ନେହ ଦୃଷ୍ଟି ପକାଇ ପକାଇ ଆସନ୍ତି ଏବଂ ଆବଶ୍ୟକସ୍ଥଳେ ମାଳୀମାନଙ୍କୁ ଯଥାଯଥ ନିର୍ଦ୍ଦେଶ ଦିଅନ୍ତି ।

ହଷ୍ଟେଲ୍‌ରେ ପ୍ରଥମେ ଗୋଟିଏ ଚାରିଜଣିଆ କୋଠରିରେ (୨୦ ନମ୍ବର) ରହିଲି । ସାଙ୍ଗରେ ଥାଆନ୍ତି କୃଷ୍ଣ, ମୃତ୍ୟୁଞ୍ଜୟ ଓ ତୃତୀୟ ବାର୍ଷିକ ଶ୍ରେଣୀର ବନମାଳୀ ତ୍ରିପାଠୀ, ଭୂତପୂର୍ବ

ହେଡ୍‌ମାଷ୍ଟର ଜଗନ୍ନାଥ ତ୍ରିପାଠୀଙ୍କ ପୁତୁରା । ହଷ୍ଟେଲ୍‌ରେ କେତେଗୁଡ଼ିଏ ଜଣିକିଆ କୋଠରି ଥାଏ । ସେଥିରେ ପ୍ରଥମ ବାର୍ଷିକ ଶ୍ରେଣୀ ଓ ତୃତୀୟ ବାର୍ଷିକ ଶ୍ରେଣୀର ଯେଉଁ ଛାତ୍ରମାନେ ବାର୍ଷିକ ପରୀକ୍ଷାରେ ଭଲ କରନ୍ତି ସେମାନଙ୍କୁ ସ୍ଥାନ ଦିଆଯାଏ । ସେତେବେଳେ ସରକାରୀ ଆଇନ କଲେଜର ଛାତ୍ର ଓ ସ୍ନାତକୋତ୍ତର ଛାତ୍ରମାନଙ୍କ ପାଇଁ ଅଲଗା ହଷ୍ଟେଲ୍ ନ ଥାଏ । ତେଣୁ ସେମାନଙ୍କ ମଧ୍ୟରୁ ନିର୍ବାଚିତ କେତେ ଜଣଙ୍କୁ ଦୁଇ ହଷ୍ଟେଲ୍‌ରେ ଜଣିକିଆ କୋଠରିମାନଙ୍କରୁ କେତୋଟିରେ ସ୍ଥାନ ଦିଆଯାଏ । ପଶ୍ଚିମ ଛାତ୍ରାବାସରେ ପୁରୀର ସ୍ୱର୍ଗତ ବିଶିଷ୍ଟ ଓକିଲ ଉମାକାନ୍ତ ମିଶ୍ର ଓ ମୋର ମହିଭାଇନା ଥା'ନ୍ତି । ମୋର ଯେତେଦୂର ମନେ ହେଉଛି, ପରବର୍ତ୍ତୀ କାଳର ବିଖ୍ୟାତ ଓକିଲ ଓ ଆଡ୍‌ଭୋକେଟ୍ ଜେନେରାଲ୍ ବୀରେନ୍ ପଟ୍ଟନାୟକ ସେହି ହଷ୍ଟେଲ୍‌ରେ ଥିଲେ । ସେ ଇଂରାଜୀ ସ୍ନାତକ ଶ୍ରେଣୀରେ ଛାତ୍ର ଥିଲେ । ଆଉ ଜଣେ ଇଂରାଜୀ ସ୍ନାତକ ଶ୍ରେଣୀର ଛାତ୍ର କୈଳାସ ଚନ୍ଦ୍ର ମହାନ୍ତି (ପରେ ବୋଧହୁଏ ପ୍ରଶାସନିକ ସେବାରେ ଯୋଗ ଦେଲେ) ଥା'ନ୍ତି ପଶ୍ଚିମ ଛାତ୍ରାବାସରେ । ସେ ଭଲ ଚିତ୍ର ଆଙ୍କୁଥିଲେ ଓ ଇଂରାଜୀରେ କବିତା ଲେଖୁଥିଲେ । ଆମ ପୂର୍ବ ଛାତ୍ରାବାସରେ ଥା'ନ୍ତି ସମ୍ବଲପୁରର ପରବର୍ତ୍ତୀ କାଳର ପ୍ରସିଦ୍ଧ ଓକିଲ ଓ କିଛି ବର୍ଷ ଓଡ଼ିଶା ବ୍ୟବସ୍ଥାପକ ସଭାର ସଭ୍ୟ ଥିବା ବନମାଳୀ ବାବୁ । ସେ ଥିଲେ ଆମ ଛାତ୍ରାବାସର ମୁଖ୍ୟ ପ୍ରିଫେକ୍ଟ (Prefect) । ଛାତ୍ରାବାସର ଚାରୋଟି ୱାର୍ଡ ପାଇଁ ଚାରିଜଣ ଦାୟିତ୍ୱପୂର୍ଣ୍ଣ ଛାତ୍ରଙ୍କୁ ପ୍ରିଫେକ୍ଟ ରୂପେ କର୍ତ୍ତୃପକ୍ଷଙ୍କ ଦ୍ୱାରା ମନୋନୀତ କରାଯାଇଥାଏ । ସେମାନେ ଅନ୍ତେବାସୀଙ୍କ ମଧ୍ୟରେ ସାଧାରଣ ଶୃଙ୍ଖଳା ରକ୍ଷା କରିବାରେ କର୍ତ୍ତୃପକ୍ଷଙ୍କୁ ସାହାଯ୍ୟ କରିଥା'ନ୍ତି । ନିଜ ନିଜ ୱାର୍ଡର ଛାତ୍ରମାନଙ୍କର ପଢ଼ାପଢ଼ି ଆଚରଣ ଉପରେ ଦୃଷ୍ଟି ରଖିଥାନ୍ତି । ବନମାଳୀ ବାବୁଙ୍କ ପରି ଆଉ ଦୁଇ ତିନିଜଣ ବରିଷ୍ଠ ଛାତ୍ର ଥା'ନ୍ତି । ତାଙ୍କ ଭିତରୁ ଜଣେ ହେଉଛନ୍ତି ବିନୋଦ ନାୟକ, ଆମ ଓଡ଼ିଶାର ପ୍ରଖ୍ୟାତ ବୟୋଜ୍ୟେଷ୍ଠ କବି । ସେ ସେତେବେଳେ ଇଂରାଜୀରେ ଏମ୍.ଏ. ପଢୁଥିଲେ । ଓଡ଼ିଶାରେ ସାହିତ୍ୟ ଉପରେ ନାନା ଉଚ୍ଚକୋଟୀର ପ୍ରବନ୍ଧ ପତ୍ରପତ୍ରିକାମାନଙ୍କରେ ଲେଖୁଥିଲେ । ସଚ୍ଚି ରାଉତରାୟଙ୍କ ପରି ମାର୍କ୍ସିଷ୍ଟ ନ ହେଲେ ମଧ୍ୟ ମୁକ୍ତ ଛନ୍ଦ କବିତା ଲେଖୁଥିଲେ । ଗଦ୍ୟକବିତା ମଧ୍ୟ ଲେଖୁଥିଲେ । ମୋର ତ ଗଦ୍ୟ-କବିତା ମୂଳରୁ ପସନ୍ଦ ହୁଏ ନାହିଁ । ତାକୁ ବ୍ୟଙ୍ଗ କରି, ସମାଲୋଚନା କରି ଗୋପୀନାଥ ମହାନ୍ତି 'ନବଭାରତ'ରେ ଗୋଟିଏ ପ୍ରବନ୍ଧ ଲେଖିଥିଲେ ଓ ତହିଁର ଶେଷରେ କେତୋଟି ଗଦ୍ୟଧାଡ଼ିକୁ ଭାଙ୍ଗି ଭାଙ୍ଗି ଲେଖି ତାହା ଗଦ୍ୟ କବିତା ହେଲା କି ନାହିଁ ବୋଲି ପ୍ରଶ୍ନ କରିଥିଲେ । ପୁଣି ନୂଆ ପ୍ରକାର ଯେଉଁ ଚିତ୍ରକଳ୍ପ Image ସବୁ ସଚ୍ଚି ରାଉତରାୟ ଓ ବିନୋଦ ନାୟକ ପୂରାଉଥିଲେ ସେଗୁଡ଼ିକ ମୋତେ ଶୋଭନୀୟ, କାବ୍ୟଯୋଗ୍ୟ ମନେ ହେଉ ନ ଥିଲା ।)

(ଆମ ଛାତ୍ରାବାସର ଆସିଷ୍ଟାଣ୍ଟ ସୁପରିଣ୍ଟେଣ୍ଡେଣ୍ଟ ଥାଆନ୍ତି ରମାନାଥ ମହାନ୍ତି - ପୁରୀ ଜିଲ୍ଲାସ୍କୁଲର ବରିଷ୍ଠ ଶିକ୍ଷକ ବୈଦ୍ୟନାଥ ମହାନ୍ତିଙ୍କ ଜ୍ୟେଷ୍ଠପୁତ୍ର, ରାୟ୍ ବାହାଦୂର ଲକ୍ଷ୍ମୀଧର

ମହାନ୍ତି (କଟକର ବିଶିଷ୍ଟ ଆଡ୍‌ଭୋକେଟ୍, ବହୁବର୍ଷ ସରକାରୀ ଓକିଲ ଓ କିଛି କାଳ ବିହାର ଓଡ଼ିଶା କାଉନସିଲର ସଭ୍ୟ)ଙ୍କ ଜାମାତା । ପୋଷାକପତ୍ରରେ ସ୍ମାର୍ଟ (smart) ଥିଲେ ମଧ୍ୟ (ଅବଶ୍ୟ ବାମାବାବୁଙ୍କ ପରି ନୁହନ୍ତି) ଚାଲିଚଳଣରେ, କଥାବାର୍ତ୍ତାରେ ସରଳ, ନିରାଡ଼ମ୍ବର ଥିଲେ । ଗଣିତରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇଥିଲେ ସ୍ନାତକୋତ୍ତର ପରୀକ୍ଷାରେ । ଛାତ୍ରଜୀବନରେ ସବୁବେଳେ ବୃତ୍ତି ପାଇ ଆସିଥିଲେ । ସେତେବେଳେ ଆମେ ଶୁଣୁଥିଲୁ, ସେ ରାତି ଗୋଟେ ଦୁଇଟା ପର୍ଯ୍ୟନ୍ତ ପଢ଼ନ୍ତି - କେବେ କେବେ କଲେଜର quadrangle କୁ ଯାଇ ବହୁ ରାତି ପର୍ଯ୍ୟନ୍ତ ଗ୍ରହନକ୍ଷତ୍ରଙ୍କ ଗତିବିଧି ଲକ୍ଷ୍ୟ କରନ୍ତି । ଆମର ଗଣିତ କ୍ଲାସ୍‌ରେ ସେ Algebra ନେଉଥିଲେ । ତାଙ୍କର ଅକ୍ଷରଗୁଡ଼ିକ ବଡ଼ ସୁନ୍ଦର । ତାଙ୍କର ହସ୍ତାକ୍ଷରର ପ୍ରଭାବ ପଡ଼ିଥିଲା ମୋର ହସ୍ତାକ୍ଷର ଉପରେ । ସେ black-board ରେ ଅଙ୍କ ଲେଖୁଥିବେ ଆମକୁ ପିଠିକରି । ହଠାତ୍ ହାତ ତାଙ୍କର ରହିଯିବ - ସେମିତି ଚକ୍ ଧରି । ଦୁଇ ମିନିଟ୍ ଅଟକିଯିବେ । ତା'ପରେ ଆମ ଆଡ଼କୁ ବୁଲିପଡ଼ି ସେ ସମୟର ଗଣିତ ଜ୍ୟୋତିଷ ବା ପଦାର୍ଥ ବିଜ୍ଞାନର ସର୍ବଶେଷ ତଥ୍ୟ କଥା, Expanding Universe (ସଦା ବିସ୍ତାରଣଶୀଳ ବିଶ୍ୱ) କଥା କହି ବସିବେ । ଟିକିଏ ପରେ ପୁଣି ଫେରିଯିବେ ବ୍ଲାକ୍‌ବୋର୍ଡ ପାଖକୁ, ପାଠ୍ୟ ବିଷୟକୁ ।

ଛାତ୍ରାବାସର ସୁପରିଣ୍ଟେଣ୍ଡେଣ୍ଟ୍ ଥାଆନ୍ତି ଡକ୍‌ଟର ହରିବନ୍ଧୁ ମହାନ୍ତି । ସେ ଥିଲେ ଫିଜିକ୍ସ ବା ପଦାର୍ଥ ବିଦ୍ୟାର ଅଧ୍ୟାପକ । ସେତେବେଳେ ସଦ୍ୟ ଫେରିଥାଆନ୍ତି କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରୁ ପଦାର୍ଥ ବିଦ୍ୟାରେ ଡକ୍‌ଟରେଟ୍ ଉପାଧି ପାଇ । ବେଶ୍ ସୁଦୃଶ୍ୟ ଥିଲା ତାଙ୍କର ବ୍ୟକ୍ତିତ୍ୱ, ସ୍ୱର ଥିଲା ମଧୁର । ପୋଷାକରେ ପରିପାଟୀ ଥାଏ । ସେ ଥିଲେ ଅପେକ୍ଷାକୃତ ଗମ୍ଭୀର - କଥାରେ ସମୟ ସମୟରେ ଥାଏ ସାମାନ୍ୟ ବ୍ୟଙ୍ଗ । କିନ୍ତୁ ହରିବନ୍ଧୁ ବାବୁ ଓ ରମାନାଥ ବାବୁ ଦୁହେଁ ଥିଲେ ଛାତ୍ରବତ୍ସଳ । ଅନ୍ତେବାସୀଙ୍କ ସୁବିଧା ଅସୁବିଧା ସହାନୁଭୂତି ସହିତ ବୁଝନ୍ତି । ଦୁହେଁ ବଡ଼ଭାଇନାଙ୍କୁ ଚିହ୍ନିଥିଲେ, ମୋ ପ୍ରତି ସସ୍ନେହ ବ୍ୟବହାର କରୁଥିଲେ ।

ଛାତ୍ରାବାସ ତ ଏକ ପ୍ରକାର ବନ୍ଦୀଶାଳା । ସଂଧ୍ୟା ସାତଟାରୁ ବନ୍ଦ ହୋଇଯାଏ quadrangle ଆଡ଼କୁ ଥିବା ଲୁହା ଫାଟକଟି ଆଉ ଆର୍ଟସ ବ୍ଲକ୍ ଓ ସାଇନ୍‌ସ ବ୍ଲକ୍‌କୁ ଯୋଗ କରୁଥିବା ଛାତ ଥିବା କରିଡ଼ର ବା ଦୀର୍ଘ ବାରଣ୍ଡାର ଦୁଇ ପ୍ରାନ୍ତର କବାଟ ଦୁଇଟି । ସେହିପରି ବନ୍ଦ କରିଦିଆଯାଏ ଛାତ୍ରାବାସର ଦୁଇ ପ୍ରାନ୍ତରେ ଥିବା କବାଟ ଦୁଇଟି ଯେଉଁ ବାଟେ ବାହାର ରାସ୍ତାକୁ ଯାଇହୁଏ । ଖୋଲାଯାଏ କେବଳ ତଳ ମହଲାର ମଝିରେ ଥିବା Indoor Games Room ର ସରୁ ଦ୍ୱାରଟିଏ । ଜଗିଥାଏ ଛାତ୍ରାବାସର ବୟୋଜ୍ୟେଷ୍ଠ ମୁଖ୍ୟ ଚପରାସୀ ପଞ୍ଚୁ । ପ୍ରାୟ ବୁଢ଼ା ହୋଇଯାଇଥାଏ ସେ - ମୁଣ୍ଡର ଅଧାବାଳ ପାଚିଯାଇଥାଏ, ନାକତଳେ ଧଳା ପୁଷ୍କଳ ନିଶ ତା'ର ବ୍ୟକ୍ତିତ୍ୱ ଜାହିର କରୁଥାଏ । ବେଶ୍ କର୍ତ୍ତୃତ୍ୱ ସହିତ ଅନ୍ତେବାସୀଙ୍କ ସଙ୍ଗେ କଥାବାର୍ତ୍ତା କରେ । ପାଠ

ସମୟରେ କାହାକୁ ଖେଳିବାକୁ ଦେବନି । ସେଠି ଗୋଟାଏ ବଡ଼ ଟେବ୍ଲ୍ ଥାଏ ଟେବୁଲ୍ ଟେନିସ୍ ଖେଳିବା ପାଇଁ। କେହି ବାହାରକୁ ଯିବାକୁ ହେବନି - କୌଣସି ବିଶେଷ କାମ ପଡ଼ିଲେ Superintendent କି Assistant Superintendent ଙ୍କ ଅନୁମତି ନେବାକୁ, ପଞ୍ଚୁ ପାଖରେ ଥିବ ରେଜିଷ୍ଟର୍‌ରେ ଯିବାର ଉଦ୍ଦେଶ୍ୟ, ଯିବା ଓ ଫେରିବାର ସମୟ ଲେଖିବାକୁ ହେବ । କେହି ସେ ସମୟରେ କୌଣସି ଅନ୍ତେବାସୀଙ୍କୁ ଦେଖା କରିବାକୁ ଆସିଲେ ତାକୁ ଅପେକ୍ଷା କରିବାକୁ ହେବ । ପଞ୍ଚୁ ଯାଇ ସଂପୃକ୍ତ ଛାତ୍ରଙ୍କୁ ଡାକିଆଣିବ । ଯେପରି କଡ଼ା ସେପରି ସ୍ନେହୀ ସେ ଥିଲା, ଅନ୍ତେବାସୀଙ୍କର ପ୍ରିୟ ଥିଲା ।

ଦୁଇଓଳି ପାଠ ସମୟରେ ହରିବନ୍ଧୁ ବାବୁ ଓ ରମାନାଥବାବୁ ଛାତ୍ରାବାସର ଚାରୋଟି ଯାକ ଓ୍ୱାର୍ଡ ବୁଲି ଦେଖନ୍ତି, ଛାତ୍ରମାନେ ପଢ଼ାପଢ଼ି କରୁଛନ୍ତି କି ନାହିଁ ।

ନ'ଟାବେଳେ ସକାଳେ ଓ ସଂଧ୍ୟାବେଳେ ଘଣ୍ଟି ବାଜେ - ସୂଚାଇ ଦିଏ ମେସ୍‌କୁ ଖାଇବାକୁ ଯିବାର ବେଳ ହେଲା । ସେହିପରି ରାତି ସାଢ଼େ ଦଶଟାରେ କି ଏଗାରଟାରେ ଘଣ୍ଟି ବାଜେ ଶୋଇବାକୁ ଯିବାର ବେଳ ହେଲା ବୋଲି ସୂଚନା ଦେଇ, ତା'ପରେ କେହି ରୁମ୍ ଛାଡ଼ି ବାହାରେ ବୁଲିବାକୁ ହେବ ନାହିଁ । ରାତି ଏଗାରଟାର କିଛି ପରେ ରମାନାଥବାବୁ ଆସନ୍ତି ବଡ଼ ଟର୍ଚ୍ଚଟିଏ ଧରି । ସାଙ୍ଗରେ ଥାଏ ପଞ୍ଚୁ । ରମାନାଥବାବୁ ପ୍ରତି ରୁମ୍ ଭିତରକୁ ଟର୍ଚ୍ଚ ପକାଇ ଦେଖନ୍ତି ରୁମ୍‌ର ସମସ୍ତେ ଭିତରେ ଶୋଇଛନ୍ତି କି ନାହିଁ । ତତ୍ତ୍ୱାବଧାରକମାନଙ୍କର ଗଭୀର ନିଷ୍ଠା ଓ କର୍ତ୍ତବ୍ୟବୋଧ ଥିଲା । ଛାତ୍ରମାନେ ବି ପ୍ରାୟ ସମସ୍ତେ ଶୃଙ୍ଖଳା ମାନି ଚଳୁଥିଲେ ।

କେବେ ଯେ କିଛି ବ୍ୟତିକ୍ରମ ହେଉ ନ ଥିଲା ତା' ନୁହେଁ । କେହି କେହି ସମୟ ସମୟରେ ରମାନାଥବାବୁ ଗଲା ପରେ ଉପର ମହଲାରୁ ଯାଇ ଶିଡ଼ିରେ ଶୌଚାଗାର ଛାତକୁ ଓହ୍ଲାଇ କୌଣସିମତେ ସେଠୁ ତଳକୁ ଖସି ଯାଉଥିଲେ । ଷ୍ଟେସନରେ ବୁଲାବୁଲି କରି ଫୂର୍ତ୍ତି କରି ପୁଣି କେମିତି ଶୌଚାଗାରର ଛାତକୁ ଚଢ଼ି ପୂର୍ବ ବାଟରେ ଫେରି ଆସୁଥିଲେ ରୁମ୍‌କୁ । ଧରାପଡ଼ିଲେ ଦଣ୍ଡ ପାଉଥିଲେ । କିନ୍ତୁ ତାହା ଥିଲା ବ୍ୟତିକ୍ରମ ।

ମଝିରେ ମଝିରେ ଛାତ୍ରାବାସର ଓ୍ୱାର୍ଡେନ୍ (Warden) ଇଂରାଜୀ ବିଭାଗର ମୁଖ୍ୟ ପି.ଏସ୍. ସୁନ୍ଦରମ୍ ଆସନ୍ତି - କିମ୍ବା ତାଙ୍କର ଛୋଟ ଅଫିସ୍ ଗୃହଟିରେ ବସନ୍ତି । ସେ ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟରୁ ଇଂରାଜୀରେ ବି.ଏ. ପାସ୍ କରିଥାନ୍ତି (ଅବଶ୍ୟ ଭାରତରୁ ଏମ୍.ଏ. ପାସ୍ କରିଲା ପରେ) । ଇଂରାଜୀ ବିଭାଗରେ ବିଲାତ ଫେରନ୍ତା କେହି ଅଧ୍ୟାପକ କେ.ପି. ସିହ୍ନାଙ୍କ ପରେ ଆଉ ନ ଥିବାରୁ ଶିକ୍ଷାବିଭାଗର ସେତେବେଳର ଡିରେକ୍ଟର ଶ୍ୟାମଚନ୍ଦ୍ର ତ୍ରିପାଠୀ ସୁନ୍ଦରମ୍‌ଙ୍କୁ ଆଣିଥିଲେ ଶିକ୍ଷାବିଭାଗୀୟ ଚାକିରିରେ ତାଙ୍କୁ ପ୍ରଥମ ଶ୍ରେଣୀ ଦେଇ । ସେ ଥିଲେ ସର୍ବଦା ଗମ୍ଭୀର ମନେହୁଏ ଯେପରି ବିଷଣ୍ଣ । ଆମ ପରି ନୂଆ ଛାତ୍ରଙ୍କ ପାଇଁ ସେ ଥିଲେ ଏକ ପ୍ରକାର ଦୂର ଦେବତା । କ୍ରମେ

କ୍ରମେ ତାଙ୍କର ନିକଟ ସମ୍ପର୍କରେ ଆସିଲି । ଇଂରାଜୀ ଅନର୍ସ ନେଇ ବି.ଏ. ପଢ଼ିଲାବେଳେ ସମ୍ପର୍କ ନିକଟତର ହେଲା । ସେତେବେଳେ ମଧ୍ୟ ଛାତ୍ରାବାସର ୟୁନିଅନ୍‌ର ସାଧାରଣ ସମ୍ପାଦକ ରୂପେ ନିର୍ବାଚିତ ହୋଇ କାମ କରିବାରୁ ତାଙ୍କ ସହିତ ଅଧିକ ସମ୍ପର୍କରେ ଆସିଲି । ତାଙ୍କର ନାରୀସୁଲଭ ସ୍ୱର ମୋତେ ମନେ ପକାଇ ଦେଇଥିଲା ରବୀନ୍ଦ୍ରନାଥଙ୍କ ସ୍ୱର । ତେବେ ତାହା ଟିକେ ତୀକ୍ଷ୍ଣ ଥିଲା ।

ସେତେବେଳେ ଛାତ୍ରାବାସର ଖର୍ଚ୍ଚ କମ୍ ଥାଏ । ଦିନକର ଦୁଇଟା ମିଲ୍‌ର ମୂଲ୍ୟ ଥାଏ ୬ ପଇସା + ୬ ପଇସା = ୧୨ ପଇସା ବା ୩ ଅଣା । ଉପର ଓଳି ଜଳଖିଆର ମୂଲ୍ୟ ୪ ପଇସା ବା ୧ ଅଣା । ଏହିପରି ସାରାଦିନରେ ଖାଇବା ଖର୍ଚ୍ଚ ମୋଟରେ ଚାରି ଅଣା ଅର୍ଥାତ୍ ଗୋଟିଏ ଟଙ୍କାର ଚାରି ଭାଗରୁ ଭାଗେ । ମିଲ୍‌ରେ ଥାଏ ଭାତ, ଡାଲି, ତରକାରି, ଭଜା ଓ ଶାଗ ବା ଦୁଇକଥା । ଜଳଖିଆ ରୂପେ ଉପରଓଳି ମିଳେ ପାଞ୍ଚଟି ବଡ଼ ବଡ଼ ଗରମ ପୁରୀ ଓ ବଡ଼ ପିତଳ ଗିନାରେ ଗିନାଏ ଆଳୁ ତରକାରି । ସକାଳେ ରାତିରେ ଯେପରି ମେସ୍ ଘଣ୍ଟି ବାଜିବାକୁ ଅପେକ୍ଷା କରିଥାଉ, ସେହିପରି ଉପରଓଳି ଅପେକ୍ଷା କରିଥାଉ ସାଢ଼େ ତିନିଟା କି ଚାରିଟାବେଳକୁ ଜଳଖିଆ ପାଇଁ ଘଣ୍ଟି ବାଜିବାକୁ । ସପ୍ତାହର ସାଧାରଣ ଦିନମାନଙ୍କରେ ଦିନେ ଦୁଇ ଦୁଇଦିନ ହୁଏ ମାଂସ ତରକାରି କିମ୍ବା ମାଛ ତରକାରି । ଶନିବାର ସଂଧ୍ୟାରେ ହୁଏ ସାପ୍ତାହିକ ଭୋଜି - ମାଂସ ତରକାରୀ ମିଳେ ବଡ଼ ଗିନାରେ ଗିନାଏ କିମ୍ବା ସମପରିମାଣ ବଡ଼ ମାଛ ତରକାରି । ଯେଉଁମାନେ ନିରାମିଷାଶୀ ସେମାନଙ୍କ ପାଇଁ ଥାଏ ବଡ଼ ରସଗୋଲା କି ସେପରି କିଛି ମିଠା । ସାପ୍ତାହିକ ଶନିବାରିଆ ଭୋଜି ବ୍ୟତୀତ ମାସିକିଆ ଭୋଜି ମଧ୍ୟ ହୁଏ, ଆହୁରି ଉତ୍ତମ ଧରଣର । ଏ ସମସ୍ତ ପାଇଁ କିଛି ଅଧିକ ଦେବାକୁ ପଡ଼େ ନାହିଁ । କେବଳ ଗଣେଶ ପୂଜା କି ସରସ୍ୱତୀ ପୂଜା କି ଛାତ୍ରାବାସର ବାର୍ଷିକ ଉତ୍ସବ ଦିନର ଭୋଜି ପାଇଁ କିଛି ଅଧିକା, ସାଧାରଣତଃ ଏକ ଟଙ୍କା ଦେବାକୁ ହୁଏ ।

ସକାଳେ ନିତ୍ୟକର୍ମ ସାରି ପଢ଼ି ପଢ଼ିବା ପୂର୍ବରୁ ward servant (ଦୁଇ ଜଣଙ୍କ ନାମ ମନେ ପଡୁଛି - ଅନ୍ତରା, ବୁଧିଆ) ଦେଇଯାଏ ଚାରି ପଇସାର ସେଉ, ଗାଣ୍ଠିଆ କି ଚୂଡ଼ା ଭଜା ଓ ଚୀନାବାଦାମ ପୁଡ଼ିଆଟିଏ । ଆଣିଥାଏ କଲେଜ ଆଗର ଗୁଜୁରାଟୀ ଦୋକାନରୁ ।

ହଷ୍ଟେଲ୍‌ର seat rent ମେସ୍ ଖର୍ଚ୍ଚ ward servant ମେସ୍ ପୂଝାରୀଙ୍କ ଦରମା ଇତ୍ୟାଦି ମିଶାଇ ମାସକୁ ସର୍ବମୋଟ ବାର କି ତେରଟଙ୍କା ଦେବାକୁ ପଡେ । ବାକି ଅଧିକ ପଇସା ଘରେ ଆସୁଥିଲେ କି ମୋ ଭଳି ମୋଟା ବୃତ୍ତି ଟଙ୍କା ମିଳୁଥିଲେ ଉପରଓଳି ଗୁଜୁରାଟୀ ଦୋକାନରେ କି ସାଉଥ୍ ଇଣ୍ଡିଆନ୍ ହୋଟେଲ୍‌ରେ ଖାଇବା ହୁଏ । ସେଇଠି ପ୍ରଥମେ ମୁଁ ଦୋଷା, ଇଡ୍‌ଲି, ସମ୍ବର ଇତ୍ୟାଦି ଇତ୍ୟାଦି ଦକ୍ଷିଣ ଭାରତୀୟ ଖାଦ୍ୟ କଥା ଜାଣିଲି । ଆଉ ଥାଏ ମଦନ ସାହୁଙ୍କ (ଲୋକପ୍ରିୟ ନାମ ମଦନା) ଜଳଖିଆ ଦୋକାନ - ବଡ଼ ଅପରିଚ୍ଛନ୍ନ; କିନ୍ତି ସିଙ୍ଗଡ଼ା, ନିମକୀ ବ୍ୟତୀତ ଖୁବ୍ ଭଲ ରସଗୋଲା ,ଡାଡ଼ିଆ ସେଠି ମିଳୁଥିଲା । ଆଗେ କଲେଜ ଛକ ପାଖରେ ଯେଉଁଠି

ଥିଲା 'କିତାବ ମହଲ୍' ସେଇଠି ଆମେ ପଢ଼ିଲାବେଳେ ଥିଲା ଗୋଟିଏ ଦଦରା ଚାଳଘର। ସେଇଟା ହୋଟେଲ୍ ହୋଇଥାଏ। ସେଥିର ମାଲିକ ପାଣ୍ଡବ ପଶୁପାଳକ ଭଲ ରାନ୍ଧୁଣିଆ - ଚାରିଅଣା ପଇସାରେ ସେଇ ହୋଟେଲ୍‌ରେ ବଡ଼ ବଡ଼ ଭଲ ପରଟା ଗୋଟେ ଆଉ ପ୍ରଚୁର ମାଂସ ତରକାରି ମିଳେ।

ଏସବୁର ଅବତାରଣା କରୁଛି ଏବର ଲୋକଙ୍କୁ ଜଣାଇବାକୁ ସେତେବେଳେ ଖାଦ୍ୟପେୟ କେଡ଼େ ଶସ୍ତା ଥିଲା, ଟଙ୍କାର ମୂଲ୍ୟ କେତେ ବେଶି ଥିଲା। ଏବେ ତ କଳ୍ପନା କରି ହେବ ନାହିଁ ଏପରି କେବେ ଥିଲା ବୋଲି।

ତେବେ ଯା'ବି ସତ ଯେ ସେତେବେଳେ ଅନେକ ଅଭାବୀ ଛାତ୍ର ଥିଲେ, ଯେତିକି ଏତିକି ଖର୍ଚ୍ଚ ତୁଲାଇ ପାରୁନଥିଲେ। ପାଞ୍ଚ ସାତ ଟଙ୍କାକୁ ଟିଉସନ୍ କରି କଷ୍ଟେ ମଷ୍ଟେ କୌଣସିମତେ ଚଳି ଯାଉଥିଲେ।

ହଷ୍ଟେଲ୍ ୟୁନିଅନ୍ ଥାଏ। ପ୍ରତିବର୍ଷ ସେଥିପାଇଁ ନିର୍ବାଚନ ହୁଏ। ଏବପରି ଗୁଡ଼ାଏ ଖର୍ଚ୍ଚ କେହି କରନ୍ତି ନାହିଁ ନିର୍ବାଚନରେ ଜୟଲାଭ କରିବାକୁ। କେବେ କିଏ କାହାକୁ ସିନେମା ଦେଖାଇ ନେଉଥିବ କି ମଦନା ଦୋକାନରେ କି ସାଉଥ୍ ଇଣ୍ଡିଆନ୍ ହୋଟେଲ୍‌ରେ ଖୁଆଉଥିବ। କିନ୍ତୁ ବାୟୁମଣ୍ଡଳ ସରଗରମ୍ ହୋଇଯାଏ ଦୁଇ ଚାରିଦିନ ପାଇଁ।

ମୁଁ ଯେଉଁ ବର୍ଷ କଲେଜରେ ଯୋଗ ଦେଲି ସେହି ବର୍ଷ ବୋଧହୁଏ ଭଲ ଛାତ୍ର ବୋଲି ଖ୍ୟାତି ଥିବାରୁ ମତେ ସର୍ବସମ୍ମତିକ୍ରମେ ପୂର୍ବ ଛାତ୍ରବାସର ହାତଲେଖା ପତ୍ରିକା 'ଜାଗରଣ'ର ସମ୍ପାଦକ କରାଗଲା। ନିର୍ବାଚିତ କାର୍ଯ୍ୟକାରୀ ସମିତିରେ ସର୍ବୋଚ୍ଚ ସ୍ଥାନ ହେଉଛି ସାଧାରଣ ସମ୍ପାଦକ (General Secretary)ଙ୍କର। ତାଙ୍କ ତଳକୁ ମେସ୍ ସେକ୍ରେଟାରୀ, ଡ୍ରାମାଟିକ୍ ସେକ୍ରେଟାରୀ ପ୍ରଭୃତି ଥାଆନ୍ତି। ମେସ୍ ସେକ୍ରେଟାରୀ ପଦଟି ଗୁରୁତ୍ୱପୂର୍ଣ୍ଣ। ସମସ୍ତ ଅଭିଯୋଗ ତାଙ୍କ ପାଖକୁ ଯାଏ। ସେ ମେସ୍ ମ୍ୟାନେଜର (ସେତେବେଳେ ମାସିକ ମାତ୍ର ବାରଟଙ୍କା ଦରମା ପାଉଥିଲେ)ଙ୍କ ସହିତ କଥାବାର୍ତ୍ତା କରନ୍ତି। ଡାଲିରେ ବେଶି ପେଜ ମିଶିଥିଲେ କି ଚାଉଳରେ ବେଶି ଗୋଡ଼ି ଥିଲେ କି ତାହା ପାଣିପଶା ହୋଇଥିବାରୁ ଗନ୍ଧାଉଥିଲେ କି ମାଂସ କି ମାଛ ତରକାରି ଭଲ ହୋଇନଥିଲେ ଅଭିଯୋଗ ହୁଏ। କେବେ କେବେ ତାହା ମେସ୍‌ର ସର୍ବୋଚ୍ଚ ପରିଚାଳକ ଆସିଷ୍ଟାଣ୍ଟ ସୁପରିଣ୍ଟେଣ୍ଡେଣ୍ଟଙ୍କ ପାଖକୁ ଯାଏ। କେବେ କେମିତି ତାଙ୍କର ଉପରକୁ ଯାଏ। ହଷ୍ଟେଲ୍‌ରେ ସବୁ ଛାତ୍ରଙ୍କୁ ସାତ ଆଠଟି ବିଭାଗରେ ବିଭକ୍ତ କରି ସେମାନଙ୍କ ପାଇଁ ସାତ ଆଠଟି ମେସ୍ ନିର୍ଦ୍ଦିଷ୍ଟ କରାଯାଇଥାଏ। କେଉଁ କେଉଁ ମେସ୍‌ରେ ଦକ୍ଷ ପାଚକ ଥାଆନ୍ତି, ଦକ୍ଷ ମେସ୍ ଭୃତ୍ୟ ଥାଆନ୍ତି। ଆଉ କେଉଁଠି ଭଲ ନ ଥାନ୍ତି। ସେଥିଯୋଗୁଁ ଦ୍ୱନ୍ଦ୍ୱ ହୁଏ। ତେବେ ପୁଣି ସବୁ ମିଟମାଟ୍ ହୋଇଯାଏ। ରମାନାଥବାବୁ, ହରିବନ୍ଧୁବାବୁଙ୍କ କଅଁଳିଆ କଥାରେ ସବୁ ଥଣ୍ଡା ପଡ଼ିଯାଏ।

ତଳକ୍ଲାସ୍‌ର ଛାତ୍ର ହୋଇ 'ଜାଗରଣ'ର ସମ୍ପାଦକ ରୂପେ ନିର୍ବାଚିତ ହୋଇଥିବାରୁ ନିଜକୁ ଟିକିଏ ବଡ଼ ମନେ କରୁଥାଏ। ପତ୍ରିକା ପାଇଁ ଲେଖା ନିର୍ବାଚନ କରିବି - ପୁଣି କିଏ ପାରିଶ୍ରମିକ ନେଇ ଲେଖିବ ତାହା ସ୍ଥିର କରିବି। ଭଲ ହସ୍ତାକ୍ଷର ହୋଇଥିବ, ବେଶି ପାରିଶ୍ରମିକ ମାଗିବ ନାହିଁ- ଏସବୁ ଦେଖିବାକୁ ହେବ। ତୃତୀୟ ବାର୍ଷିକ ଶ୍ରେଣୀରେ ଇଂରାଜୀ ଅନର୍ସ ନେଇ ପଢୁଥାଆନ୍ତି ଗୌରୀଶ୍ୟାମ ମହାନ୍ତି। ପରେ ଶିକ୍ଷା ଅଧ୍ୟାପକରୂପେ ରେଭେନ୍‌ସା କଲେଜରେ ଯୋଗ ଦେଲେ। କାଳକ୍ରମେ ସ୍କୁଲ ଇନ୍‌ସପେକ୍ଟର, ପ୍ରିନ୍‌ସିପାଲ୍, ଟ୍ରେନିଂ କଲେଜର ଅଧ୍ୟକ୍ଷ ପଦକୁ ଉଠି ତା'ପରେ ଅବସର ନେଲେ। ସେ ବଡ଼ ସୁନ୍ଦର ଇଂରାଜୀ ଲେଖନ୍ତି। ମନେ ପଡୁଛି ହଷ୍ଟେଲ୍‌ର ସର୍ବବରିଷ୍ଠ ପିଅନ୍ ପଞ୍ଚୁ ଉପରେ ଲେଖା - କଲେଜର quadrangle ଉପରେ ଲେଖା - ତା'ର ସୌନ୍ଦର୍ଯ୍ୟ, ରୋମାଣ୍ଟିକ୍ ପରିବେଶ, ଜ୍ୟୋତ୍ସ୍ନା ରାତିରେ ଯାଦୁକରୀ ରମଣୀୟତାର ଚମତ୍କାର ବର୍ଣ୍ଣନା, ରୁମ୍ ନଂ ୩୯ (କଲେଜର ଛାତ୍ରୀମାନଙ୍କର କମନ୍ ରୁମ୍) ବିଷୟରେ ଆମୋଦକର ଲେଖା। ତାଙ୍କ ଲେଖା ତ ବାଛିଲି। ପୁଣି ତାଙ୍କର ଇଂରାଜୀ ହସ୍ତାକ୍ଷର ଭଲ ହୋଇଥିବାରୁ ଏବଂ ତାଙ୍କର ନିଜର ଅର୍ଥ ଆବଶ୍ୟକତା ଥିବାରୁ ଯଥାର୍ଥ ପାରିଶ୍ରମିକ ନେଇ (ପୃଷ୍ଠା ବାବଦ ୪ ପଇସା କି ୬ ପଇସା) 'ଜାଗରଣ'ର ଇଂରାଜୀ ଅଂଶତକ ଲେଖିବାକୁ ବାଛିଲି ତାଙ୍କୁ।

ନିଜେ ତ ସମ୍ପାଦକ- ଓଡ଼ିଆ ଅଂଶ ତକ ଲେଖିଲି ପାରିଶ୍ରମିକ ନ ନେଇ। କିଛି ଚିତ୍ର ବି କଲି। ସମ୍ପାଦକୀୟ ଉପରେ କି ପ୍ରଥମ ପୃଷ୍ଠା ଉପରେ ଚିତ୍ରଟିଏ ଆଙ୍କିଥିଲି - ଗୋଟିଏ ପାଖରେ ମନ୍ଦିର - ଆଉ ଗୋଟିଏ ପାଖରେ ମସ୍‌ଜିଦ୍। ମଝିରେ ଗୋଟିଏ ପ୍ରାକୃତିକ ଦୃଶ୍ୟ। ପ୍ରତି ଲେଖାର ଶେଷରେ ବି ଛୋଟ କିଛି ଗୋଟାଏ ଚିତ୍ର ଆଙ୍କିଥାଏ।)

ପିଲାଳିଆ ଦୁର୍ବଳତା- ନିଜ ଲେଖା ନିଜେ ବାଛି ପକାଇଲି। ଯେଉଁ ଦୀର୍ଘ ଇଂରାଜୀ ଲେଖାଟି ସ୍କୁଲରେ ଲେଖିଥିଲି ମହାସମରର ଆରମ୍ଭରେ ସେଥିରେ ଟିକିଏ ମିଶାଇ ସାମାନ୍ୟ ପରିବର୍ତ୍ତନ କରି ପ୍ରକାଶ କରିଦେଲି 'ଜାଗରଣ'ରେ। ଆଉ ପ୍ରକାଶ କଲି ମୋର ଗୋଟିଏ ଦୀର୍ଘ ଗଳ୍ପ - ମାଟ୍ରିକ୍ୟୁଲେସନ୍ ପରୀକ୍ଷା ପରେ ପୁରୀରେ ଲେଖିଥିଲି - ନାମ ତା'ର ଥିଲା 'ଶିଳ୍ପୀର ବ୍ୟଥା'।

•

---

***ମୋ କାହାଣୀ,*** ଶିକ୍ଷାସନ୍ଧାନ, ଭୁବନେଶ୍ୱର, ୨୦୦୯

# ରେଭେନ୍‌ସା କଲେଜ

## ଚିତ୍ତରଂଜନ ଦାସ

ରେଭେନ୍‌ସା କଲେଜିଏଟ୍ ସ୍କୁଲ ପରେ ରେଭେନ୍‌ସା କଲେଜରେ ହିଁ ପାଠ ପଢ଼ିବା କଥା । ମୋର ଯାହା ମନେ ପଡୁଛି, ସେତେବେଳେ ଓଡ଼ିଶା ପ୍ରଦେଶରେ ଦୁଇଟି କଲେଜ ରହିଥିଲା, ଗୋଟାଏ ବ୍ରହ୍ମପୁରର ଖଲିକୋଟ କଲେଜ ଓ ଆରଟି କଟକର ରେଭେନ୍‌ସା କଲେଜ । ନାନା କାରଣରୁ ବ୍ରହ୍ମପୁରର କଲେଜଟି ପ୍ରଧାନତଃ ଏକ ସ୍ଥାନୀୟ କଲେଜ ହୋଇ ରହିଥିଲା । ୧୯୩୬ ପୂର୍ବରୁ ତ ତାହା ମାନ୍ଦ୍ରାଜ ପ୍ରଦେଶରେ ଥିଲା । ତେଣୁ ଏକାଧିକ ଯୁକ୍ତିଯୁକ୍ତତା ସହିତ ରେଭେନ୍‌ସା କଲେଜକୁ ହିଁ ଓଡ଼ିଶାର ଏକମାତ୍ର କଲେଜ ବୋଲି ବିଚାର କରାଯାଉଥିଲା । ସେଠାରେ ପଢ଼ିବାଲାଗି ସମଗ୍ର ଓଡ଼ିଶାରୁ ଛାତ୍ର ଆସୁଥିଲେ । ଗଣି ହୋଇଯିବା ପରି କେତେଜଣ ଛାତ୍ରୀ ମଧ୍ୟ ପଢୁଥିଲେ । ମାଟ୍ରିକ୍ ଶେଷ ପରୀକ୍ଷାରେ ବୃତ୍ତି ପାଇ ମୁଁ ରେଭେନ୍‌ସା କଲେଜରେ ନାମ ଲେଖାଇବାକୁ ଆସିଲି । ବିଜ୍ଞାନ କି କଳାବିଭାଗରେ ଯୋଗ ଦେବି, ସେକଥା ନେଇ ଆମ ଘରେ କିଞ୍ଚିତ୍ ଆଲୋଚ଼ନା ମଧ୍ୟ ହୋଇଥିଲା । ମାଟ୍ରିକରେ ଭଲ କରୁଥିବା ଛାତ୍ରମାନେ ସେତେବେଳେ ବିଜ୍ଞାନ ଆଡ଼େ ଯାଉଥିଲେ । କାରଣ ଦୁଇବର୍ଷ ବିଜ୍ଞାନ ପଢ଼ିଲେ ଯାଇ ଇଞ୍ଜିନିୟରିଙ୍ଗ୍ କିମ୍ବା ଡାକ୍ତରୀ ପଢ଼ିବାର ସମ୍ଭାବନା ରହିଥିଲା ଏବଂ ଇଞ୍ଜିନିଅର୍ ଓ ଡାକ୍ତର ହେଲେ ଅଧିକ ପଇସା ରୋଜଗାର କରିବାର ଉଜ୍ଜ୍ୱଳ ସମ୍ଭାବନା ମଧ୍ୟ ରହିଥିଲା ।

ବିଜ୍ଞାନ ପଢ଼ିବାରେ ମୋର ଆପତ୍ତି ନ ଥିଲା । ଗଣିତ ହିଁ ଏକ ବିଷୟରୂପେ ମୋତେ ଅନ୍ୟ ସବୁ ବିଷୟ ତୁଳନାରେ ଅଧିକ ଭଲ ଲାଗୁଥିଲା । ବଡ଼ଭାଇ କହିଲେ, ମୁଁ ରେଭେନ୍‌ସା କଲେଜରେ ଆଗ ଦୁଇବର୍ଷ ବିଜ୍ଞାନ ପଢ଼ିବି ଓ ତା'ପରେ ଇଞ୍ଜିନିଅରିଙ୍ଗ୍ ପଢ଼ିବାକୁ ପାଟନା ନ ହେଲେ କଲିକତା ଯିବ । ମୁଁ କହିଲି, ଯଦି ଦୁଇବର୍ଷ ବିଜ୍ଞାନ ପଢ଼ିବା ପରେ ଆଉ କେଉଁ ଧାରାରେ ଯିବାର କଥା ତେବେ ମୁଁ ଡାକ୍ତରୀ ପଢ଼ିବି ଏବଂ ଡାକ୍ତର ହେବି । ଏଥିରେ ଭାଇ ମଙ୍ଗିଲେ ନାହିଁ କିମ୍ବା ବାପା ମଙ୍ଗିଲେ ନାହିଁ । ବାପା କହିଲେ ଘରେ ତ ଗୋଟାଏ ପୁଅ ଡାକ୍ତର ହୋଇସାରିଲାଣି, ଆଉ ଗୋଟାଏ ପୁଅ ଡାକ୍ତର ହୋଇ ପୁଣି କ'ଣ କରିବ । ମୋ' ଉପର ଭାଇ ସେତେବେଳେ କଟକ ମେଡ଼ିକାଲ୍ ସ୍କୁଲ୍‌ରୁ ପାଠ ଶେଷ କରି ଓଡ଼ିଶା ସରକାରଙ୍କର ଅଧୀନରେ ଡାକ୍ତର ହୋଇଥାନ୍ତି ଓ କୋରାପୁଟର ବିଷମକଟକରେ ଚାକିରି କରୁଥାନ୍ତି । ସେତେବେଳର ବାପାମାନେ ସତେଯେପରି ପରିବାରଟିକୁ ସର୍ବମୂଳ ଓ ସର୍ବଶେଷ ଏକକ ବୋଲି ଧରି ହିଁ ଯାହାକିଛି ଚିନ୍ତା କରି ପାରୁଥିଲେ ।

ସେମାନଙ୍କ ବିଚାରର ଆୟତନ ଭିତରକୁ ବ୍ୟକ୍ତିକୁ ନେଇ କୌଣସି ସ୍ୱତନ୍ତ୍ର କଳ୍ପନା କରିବା ସାଧାରଣତଃ ଆଦୌ ସମ୍ଭବ ନ ଥିଲା । ସେହି ବିଚାରର ଧରଣଟା ହିଁ ଅଲଗା ଥିଲା ।

ଡାକ୍ତରୀ ପଢ଼ିବାର ମୋ ' ଇଚ୍ଛାଟା ଯେତେବେଳେ ଏହିପରି ଭାବରେ କାଟ ଖାଇଗଲା, ସେତେବେଳେ ମୁଁ ବିଜ୍ଞାନ ପଢ଼ିବି ବୋଲି ଇଚ୍ଛା ପ୍ରକାଶ କଲି । ଅର୍ଥାତ୍, ଦୁଇବର୍ଷ ପରେ ଆଉ ଗୋଟାଏ କୋଉ ଗୁଳା ଭିତରେ ପଶିବାକୁ ନୁହେଁ, ଯଥାସମ୍ଭବ ଆଗକୁ ଯିବାଲାଗି ମୁଁ ବିଜ୍ଞାନ ପଢ଼ିବି ବୋଲି କହିଲି । ସେଇଟା ଘରେ କାହାରି ମନକୁ ଆସିଲା ନାହିଁ । ଡାକ୍ତର ବା ଇଞ୍ଜିନିଅର୍ ନ ହେଲେ ତୁଚ୍ଛା ବିଜ୍ଞାନରେ ଆଦୌ କିଛି କାରଣ ଅର୍ଥାତ୍ ପ୍ରାପ୍ତି ରହିଛି ବୋଲି ସେମାନେ ମୋଟେ ଦେଖି ପାରୁନଥିଲେ । ଶେଷକୁ ମୋରି ନିଷ୍ପତ୍ତି ଅନୁସାରେ ମୋର କଳାବିଭାଗରେ ପାଠ ପଢ଼ିବାର ହିଁ ଠିକ୍ ହେଲା । ଅବଶ୍ୟ ଗଣିତ ମଧ୍ୟ ମୋ ' ବିଷୟଗୁଡ଼ିକ ମଧ୍ୟରେ ରହିଲା । ମୁଁ ରେଭେନ୍ସା କଲେଜର ପଶ୍ଚିମ ଛାତ୍ରାବାସରେ ଯାଇ ରହିଲି । ପ୍ରଥମ ବାର୍ଷିକ ଛାତ୍ରମାନେ ଗୋଟିଏ କୋଠରିରେ ଚାରି ଚାରି ଜଣ ଲେଖାଏଁ ରହୁଥାନ୍ତି । ସେତେବେଳେ ଆମକୁ ପାଠ ପଢ଼ାଉଥିବା ଅଧ୍ୟାପକମାନେ ନିଜ ନିଜ ବିଷୟରେ ଅତ୍ୟନ୍ତ ପ୍ରବୀଣ ଥାଆନ୍ତି ଓ ସେମାନଙ୍କର ଦାନ୍ତ ଭାଙ୍ଗିଯିବା ପର୍ଯ୍ୟନ୍ତ ଅତ୍ୟନ୍ତ ଗାମ୍ଭୀର୍ଯ୍ୟ ସହିତ ପାଠ ପଢ଼ାଉ ଥାଆନ୍ତି । ଆମ ଆଖିକୁ ସାହେବଙ୍କ ପରି ଦିଶୁଥାଆନ୍ତି, ପ୍ରାୟ ସାହେବଙ୍କ ପରି ଆମଠାରୁ ଦୂରଛଡ଼ା ହୋଇ ରହିଥାନ୍ତି । ସମସ୍ତେ ସାହେବଙ୍କ ପରି ପୂରା ପ୍ୟାଣ୍ଟ ପିନ୍ଧି କଲେଜକୁ ଆସନ୍ତି । ନିର୍ଧୂମ ଖରାଦିନେ ମଧ୍ୟ ମୋଟା କୋଟ୍ ପିନ୍ଧିଥାନ୍ତି ଓ ପାଠ ପଢ଼ାଉ ପଢ଼ାଉ ଝାଳସରସର ହୋଇଯାଆନ୍ତି । ମୋର ଯେତେଦୂର ମନେ ପଡୁଛି, କଲେଜିଏଟ୍ ସ୍କୁଲରେ ପାଠ ପଢ଼ିଲା ବେଳେ କେବଳ ପ୍ରଧାନ ଶିକ୍ଷକଙ୍କ ବ୍ୟତୀତ ଅନ୍ୟ ଶିକ୍ଷକମାନେ ଧୋତି ପିନ୍ଧି ସ୍କୁଲକୁ ଆସୁଥିଲେ । ଇତିହାସ ପଢ଼ାଉଥିବା ଶ୍ରୀଯୁକ୍ତ ମୋହିତ ମୋହନ ଦାସ ତ ଅଧା ପ୍ୟାଣ୍ଟ ପିନ୍ଧୁଥିଲେ । ଧଳା ଅଧା ପ୍ୟାଣ୍ଟ ଓ ଧଳା ଅଧା କମିଜ ସହିତ କଳା କୋତା ପିନ୍ଧି ଯେତେବେଳେ ସେ କ୍ଲାସ ଭିତରକୁ ପଶି ଆସୁଥିଲେ, ସେତେବେଳେ ଆମ ଆଖିକୁ ତାଙ୍କର ଗୋରା ଡକଡକ ଦେହଟି କେତେ ସୁନ୍ଦର ଓ ସ୍ପୃହଣୀୟ ଦିଶୁଥିଲା ଓ ଆମେ ସତେଅବା ନିମିଷେକ ମଧ୍ୟରେ ତାଙ୍କର ପାଠପଢ଼ା ଭିତରେ ବୁଡ଼ି ଯାଉଥିଲୁ । ସମ୍ଭବତଃ ଅନ୍ୟମାନଙ୍କ ଠାରୁ ସହଜରେ ବାରି ହୋଇ ପଡ଼ିବା ଲାଗି ପ୍ରଧାନଶିକ୍ଷକ ପୂରା ପ୍ୟାଣ୍ଟ ପିନ୍ଧୁଥିଲେ । ଅନ୍ୟ ଶିକ୍ଷକମାନେ କ୍ଲାସରେ ପାଠ ପଢ଼ାଉଥିବା ସମୟରେ କେଉଁଠାରେ କ'ଣ କିପରି ହେଉଛି ବୋଲି ତଦାରଖ କରିବାକୁ ସେ ଅନେକ ସମୟରେ ବାରଣ୍ଡାରେ କୋତା ମଚ୍ ମଚ୍ କରି ଚାଲି ଯାଉଥିଲେ । ତାଙ୍କୁ ନ ଦେଖୁଥିଲେ ମଧ୍ୟ ବେଶ୍ ଖଣ୍ଡେ ଦୂରରୁ ସେ ଆସୁଛନ୍ତି ବୋଲି ତାଙ୍କର କୋତା ଶବଦରୁ ହିଁ ଆମେ ପିଲାମାନେ ସମଝି ଯାଉଥିଲୁ । ଆମ ଶିକ୍ଷକମାନେ ତ ଧର୍ମତଃ ସେହି ସନ୍ଦେଶଟିକୁ ପାଇ ଯାଉଥିଲେ ।

କଲେଜ ସ୍ତରରେ ସେତେବେଳେ ଛାତ୍ରମାନେ ବି ପୂରା ପ୍ୟାଣ୍ଟ କେହି ପିନ୍ଧୁ ନ ଥିଲେ । ପ୍ରାୟ ସମସ୍ତେ ଧୋତି ପିନ୍ଧୁଥିଲେ । ପୂରା ପ୍ୟାଣ୍ଟ ପିନ୍ଧିବା କେବଳ ଆମ ଅଧ୍ୟାପକମାନଙ୍କର ଏକଚାଟିଆ

ଥିଲା । ତେଣୁ ସେମାନେ ପ୍ରାୟ ଗୋଟିଏ ଅଲଗା ଜାତି ହୋଇ ରହିଯାଉଥିଲେ । ଶ୍ରେଣୀରେ ଠୋ' ଠା ପଡ଼ାଇ ଯାଉଥିଲେ ସିନା, ମାତ୍ର ଶ୍ରେଣୀ ବାହାରେ ଆମଲାଗି କେତେ ନା କେତେ ଦୂର ହୋଇ ରହୁଥିଲେ । ଗୋଟାଏ ଗୋଟାଏ କ୍ଲାସରେ ଅଢ଼େଇଶହ ସରିକି ପିଲା ଯେତେବେଳେ ଏକାଠି ବସୁଥିଲେ, ସେତେବେଳେ ସେମାନେ କଥାକୁହା ଜ୍ଞାନଦେବତାମାନଙ୍କ ପରି ଆମମାନଙ୍କ ଉପରେ ଜ୍ଞାନ ଅକାଡ଼ି ଦେଇ ଯାଉଥିଲେ ସିନା, ମାତ୍ର ଆମକୁ କାହାକୁ ଛୁଇଁ ପାରୁନଥିଲେ । ଆମେ ତାଙ୍କୁ ଛୁଇଁ ପାରିବାର ତ କୌଣସି ପ୍ରଶ୍ନ ହିଁ ନ ଥିଲା । ଥରେ ଇଂରାଜୀ ପାଠର କ୍ଲାସରେ ମୁଁ ସେହି ମେଲା ଭିତରୁ ଛିଡ଼ା ହୋଇ କ'ଣ ଗୋଟାଏ ପଚାରି ପକାଇଲି ବୋଲି ଅଧ୍ୟାପକ ଆଦୌ କୌଣସି ଆବେଗ ପ୍ରକାଶ ନ କରି କହି ପକାଇଲେ ଯେ ସାଧାରଣ କ୍ଲାସରେ ମୋର ବା ଆଉ କୌଣସି ଛାତ୍ରର କୌଣସି ପ୍ରଶ୍ନର ଉତ୍ତର ଦେଲେ ସରକାର ବାହାଦୁର ତାଙ୍କୁ କଦାପି ଗୋଟିଏ ପଇସା ବି ଅଧିକ ବେତନ ଦେବେ ନାହିଁ । ହଁ, ସାନ ସାନ ଟିଉଟୋରିଆଲ୍ କ୍ଲାସ୍ ଥିଲା, ଯେଉଁଠାରେ କି ଅନ୍ତତଃ ଅଧ୍ୟାପକମାନେ କେତୋଟି ମୁହଁ ଦେଖି ପାରୁଥିଲେ ଓ ଆମେ ମଧ୍ୟ ସେମାନଙ୍କୁ ଜଣେ ଜଣେ ବ୍ୟକ୍ତି ହିସାବରେ ଚିହ୍ନିବାର ସୌଭାଗ୍ୟ ଲାଭ କରୁଥିଲୁ ।

ଆଗରୁ କହିଛି, କଲେଜରେ ଝିଅ ଅଳପ ଥିଲେ । ଦୃଷ୍ଟାନ୍ତସ୍ୱରୂପ, ଦୁଇଶହରୁ ଅଧିକ ଛାତ୍ର ବିଶିଷ୍ଟ ଆମ ଶ୍ରେଣୀରେ ମୋଟେ ଚାରିଜଣ ଛାତ୍ରୀ ଥିଲେ । ସେମାନଙ୍କର ଦିନମାନର କଲେଜ ଜୀବନ ପ୍ରକୃତରେ ଅତ୍ୟନ୍ତ ଦୟନୀୟ ହୋଇ ରହିଥିବ । ଯେକୌଣସି ପାଠଘଣ୍ଟାରେ କ୍ଲାସ୍ ଆରମ୍ଭ ହେବାର ବେଶ୍ କେତେ ମିନିଟ୍ ପୂର୍ବରୁ ଆମେ ପୁଅମାନେ କୋଠରି ଭିତରେ ପଶି ମାଛହାଟ ପରି ହୋ' ହା' ହେଉଥିଲୁ । ସେତେବେଳେ ଝିଅମାନଙ୍କର ପ୍ରବେଶ କରିବାର ଜୁ' ନ ଥିଲା । ଘଣ୍ଟା ବାଜିବା ପରେ ଆଗ ଅଧ୍ୟାପକ ମହାଶୟ କୋଠରି ଭିତରକୁ ଆସୁଥିଲେ ଓ ତା'ପରେ ଚାରୋଟିଯାକ ପ୍ରାଣୀ କ୍ଲାସ୍ ଭିତରେ ପ୍ରବେଶ କରୁଥିଲେ । ଆମେ ପ୍ରାୟ ଗୋଟାଏ ସମୁଦ୍ର ପରି ଅଧ୍ୟାପକଙ୍କୁ ମୁହଁ କରି ବସୁଥିଲୁ । ସେମାନେ ଅଧ୍ୟାପକଙ୍କର ଟେବୁଲଠାରୁ ପ୍ରାୟ ହାତେ ଦୂରରେ ବାଆଁ ପାଖକୁ ଚାରୋଟି କାଷ୍ଠାସନ ଉପରେ ବସୁଥିଲେ । ଅଧିକାଂଶ ସମୟରେ ନିଜ ଖାତା ଉପରକୁ ଅନାଇବାରେ ସେମାନଙ୍କର ବେଳ ଯାଉଥିଲା । ବେଳେ ବେଳେ ସେମାନେ ଅଧ୍ୟାପକଙ୍କର ମୁହଁଆଡ଼କୁ ଅବଶ୍ୟ ଅନାଉଥିଲେ । ମାତ୍ର ଛାତ୍ରମାନଙ୍କ ଆଡ଼କୁ ଚାହିଁ ଦେଖିବାରୁ ପ୍ରଶ୍ନ ହିଁ ନ ଥିଲା । କ୍ଲାସ୍ ସରିବା ପରେ ଘଣ୍ଟା ବାଜିଲେ ସବା ଆଗ ଛାତ୍ରୀମାନେ ଶ୍ରେଣୀ କକ୍ଷରୁ ଉଠି ବାହାରକୁ ଯାଉଥିଲେ । ତା'ପରେ ଅଧ୍ୟାପକ ଓ ତା'ପରେ ଅଧ୍ୟାପକ ଓ ତା'ପରେ ଆମ ଛାତ୍ରମାନଙ୍କର ପଲଟି । ତାହାହିଁ ନୈତିକତା ଥିଲା । ଛାତ୍ରୀମାନେ ସିଧା ସେମାନଙ୍କ ପାଇଁ ଉଦ୍ଦିଷ୍ଟ କମନ୍ ରୁମ୍‌କୁ ଚାଲି ଯାଉଥିଲେ । ଛାତ୍ରମାନଙ୍କ ନିମନ୍ତେ କୌଣସି କମନ୍ ରୁମ୍ ନ ଥିଲା । ସେମାନେ ଯେଉଁଠି ଯେତେବେଳେ ଇଚ୍ଛା କରୁଥିଲେ, କମନ୍ ରୁମ୍ କରି ପାରୁଥିଲେ । ସେମାନଙ୍କ ପାଇଁ ତାହାହିଁ ସର୍ବୋତ୍ତମ ଥିଲା ।

ରେଭେନ୍‌ସା କଲେଜରେ ଦୁଇଟି ଛାତ୍ରାବାସ ଥିଲା । ଗୋଟିଏ ପୂର୍ବ ଛାତ୍ରାବାସ ଓ ଆଉ ଗୋଟିଏ ପଶ୍ଚିମ ଛାତ୍ରାବାସ । ପଶ୍ଚିମ ଛାତ୍ରାବାସରେ ଅଧିକାଂଶତଃ ମୋଗଲବନ୍ଦୀ ପିଲାଏ ରହୁଥିଲେ ଏବଂ ପୂର୍ବ ଛାତ୍ରାବାସରେ ଅଧିକାଂଶତଃ ତତ୍କାଳୀନ ଗଡ଼ଜାତଗୁଡ଼ିକର ପିଲାଏ । ସେମାନଙ୍କର ଚଳଣି ଓ ଚାହାଣି ଦେଖି ମନେ ହେଉଥିଲା, ସେମାନେ ଖୁବ୍ ବଡ଼ଲୋକ ଘରୁ ଆସିଥିଲେ । ଅର୍ଥାତ୍ ସେମାନଙ୍କ ଅଞ୍ଚଳର ଜଣେ ମଧ୍ୟବିତ୍ତ ଘରର ପିଲା ନିମନ୍ତେ ଦୂର କଟକକୁ ଆସି କଲେଜରେ ପାଠ ପଢ଼ିବା ଅଧିକାଂଶ କ୍ଷେତ୍ରରେ ଆଦୌ ସମ୍ଭବ ନ ଥିଲା । ଆମେ ସାଧାରଣମାନେ ଯେତେ ଖରଚ୍ କରୁଥିଲୁ, ସେମାନେ ତାହାର ବହୁଗୁଣ ଖରଚ୍ କରୁଥିଲେ । ପୋଷାକ ପିନ୍ଧାରେ ସାଆନ୍ତମାନଙ୍କ ପରି ଦିଶୁଥିଲେ । ଶନିବାର ଉପରଓଳି ସିନେମା ଦେଖି ସହରକୁ ଗଲାବେଳେ ଆମେ ଚାଲି କରି ଯାଉଥିଲୁ, ସେମାନେ ଯାତ୍ରା ଦେଖି ଗଲାପରି ଘୋଡ଼ାଗାଡ଼ିରେ ଯାଉଥିଲେ ଓ ଘୋଡ଼ାଗାଡ଼ିରେ କଲେଜକୁ ଫେରୁଥିଲେ । ଛାତ୍ରାବାସ ତରଫରୁ ଆମକୁ ଦୁଇଓଳି ଖାଇବା ଓ ଚାରିଟା ବେଳର ଜଳଖିଆ ଦିଆଯାଉଥିଲା । ସକାଳ ଜଳଖିଆ କେହି ଖାଉଥିଲେ, କେହି ଖାଉନଥିଲେ । ନିଜ ପଇସାରୁ ତାହାର ବ୍ୟବସ୍ଥା କରିବାକୁ ପଡୁଥିଲା । ଗଡ଼ଜାତରୁ ଆସିଥିବା ସାଆନ୍ତିଆ ପିଲାମାନେ କଲେଜଛକ ଦୋକାନକୁ ଯାଇ ଖାଇ ଆସୁଥିଲେ, ଆମ ଆଖିକୁ ସେମାନେ ସତେଅବା ମଣୋହି ସାରି ଫେରୁଥିବା ପରି ଦେଖାଯାଉଥିଲା । ସେମାନେ ଆମଠାରୁ ବୟସରେ ବେଶ୍ ବଡ଼ ଥିଲେ । ହାବଭାବ ଓ ଗାମ୍ଭୀର୍ଯ୍ୟରେ ସତେଅବା ଆମ ଗୁରୁଜନଙ୍କ ପରି ଦେଖାଯାଉଥିଲେ । ସେହି ଦୁଇବର୍ଷର ପାଠପଢ଼ା ସମୟରେ ପାଠ ପଢ଼ାଇଥିବା ଅଧ୍ୟାପକମାନଙ୍କ ମଧ୍ୟରୁ ମୋ' ଜୀବନରେ ପ୍ରାୟ କେହି ସେପରି ବିଶେଷ ଭାବରେ ଆକର୍ଷକ ହୋଇ ରହି ନାହାନ୍ତି । ତାହାର ମୁଖ୍ୟ କାରଣ ହେଲା, କ୍ଲାସ୍ ବାହାରେ ସେମାନଙ୍କୁ ବ୍ୟକ୍ତି ହିସାବରେ ଚିହ୍ନିବା ଲାଗି ଆଦୌ କୌଣସି ଅବସର ସେତେବେଳେ ନ ଥିଲା । ଦ୍ୱିତୀୟ କାରଣଟି ହେଉଛି ରେଭେନ୍‌ସା କଲେଜରେ ମୁଁ ମାତ୍ର ଗୋଟିଏ ବର୍ଷ ପଢ଼ିଥିଲି ଏବଂ, ପ୍ରଥମ ବର୍ଷର ପିଲାମାନଙ୍କୁ ହୁଏତ ଖୁବ୍ କମ୍ ଅଧ୍ୟାପକ କଲେଜର ଅସଲ ପିଲା ବୋଲି ସ୍ୱୀକାର କରୁଥିଲେ ।

କଲେଜର ପ୍ରଥମ ବର୍ଷରୁ ମୁଁ କଳାବିଭାଗରେ ପ୍ରଥମ ହୋଇ ଦ୍ୱିତୀୟ ବର୍ଷକୁ ଉତ୍ତୀର୍ଣ୍ଣ ହୋଇଥିଲି । ତଥାପି କଲେଜରେ ପଢ଼ିବାର ପ୍ରଥମ ବର୍ଷଟିରେ ଏହାକୁ ମୋର ସର୍ବପ୍ରଧାନ ଲାଭ ବୋଲି ଆଦୌ କୁହାଯାଇପାରିବ ନାହିଁ । ପାଠ ଭଲ ଲାଗୁଥିଲା, ତେଣୁ ପାଠ ଠିକ୍ ଭାବରେ ଚାଲୁଥିଲା । ବିଶେଷ କରି କଳାବିଭାଗରେ ନୂଆ କରି ଯେଉଁସବୁ ବିଷୟ ପଢ଼ାଯାଏ, ସେଗୁଡ଼ିକର ଏକ ସ୍ୱତନ୍ତ୍ର ଆକର୍ଷଣ ରହିଥାଏ । ହାଇସ୍କୁଲ ସ୍ତରରେ ପାଠ ପଢ଼ିବାବେଳେ ସତେଯେପରି ଅନ୍ୟମାନଙ୍କର ବୋଲଣା ମାନି ପାଠ ପଢୁଥିବା ପରି ସାଧାରଣତଃ ଅନୁଭବ ହୋଇଥାଏ । ଭାଇ, ବାପା, ଏମାନେ ମତେ କେତେ ଭଲ ପାଆନ୍ତି, ମୋ ଲାଗି କେତେ କୁଆଡ଼କୁ ଚିନ୍ତା କରନ୍ତି, ତେଣୁ ମୁଁ ଅବଶ୍ୟ ଭଲ କରି ପାଠ ପଢ଼ିବି, ଉଚ୍ଚକୁ ଉଠିବି, ଭଲ ଦେଖାଯିବି, - ସେହି ପିଲା ବୟସରେ ସତେ ଅବା ଏହିଭଳି ଗୋଟାଏ ପ୍ରରୋଚନା ପାଠ ପଢ଼ିବାର କ୍ଷେତ୍ରରେ ମନକୁ ଉଦ୍‌ବୋଧିତ କରି

ରଖିଥାଏ । ମୋ' ଭାଇମାନଙ୍କ ମଧ୍ୟରୁ ବଡ଼ଭାଇ ମୋ' ଠାରୁ ଯେ ସ୍ୱତନ୍ତ୍ର ଭାବରେ କିଛି ଅଧିକ ବା କିଛି ବିଶେଷ ଆଶା କରୁଥିଲେ, ସେକଥା ସେହି ପିଲାଦିନେ ସେ ଏକାଧିକ ସମୟରେ ପ୍ରକାଶ୍ୟ ଭାବରେ ମୋତେ କହିଛନ୍ତି । ବଡ଼ଭାଇଙ୍କ ପ୍ରତି ପିଲାଦିନରୁ ମୋର ଯେଉଁ ଅନୁରାଗ ଥିଲା, ତାହା ମୋତେ ମୋର ପାଠ ଭଲ ଲାଗିବାରେ ଏବଂ ଏକ ପୂର୍ଣ୍ଣପ୍ରାଣ ଉତ୍ସାହରେ ପାଠ ପଢ଼ିବାରେ ବସ୍ତୁତଃ ଏକ ପ୍ରଧାନ ଉତ୍‌ପ୍ରେରକ ରୂପେ ସର୍ବଦା କାର୍ଯ୍ୟ କରୁଥିଲା ଏବଂ, ମୋ' ପରୀକ୍ଷା ଫଳମାନ ଶୁଣି ସେ ସବୁବେଳେ କେଡ଼େ ଖୁସୀ ହୋଇଯାଉଥିଲେ । ମୋ' ଅନ୍ୟ ଭାଇମାନଙ୍କ ଆଗରେ ମୋର ଉଦାହରଣ ଦେଉଥିବା ବେଳେ ସେ ନିକେ ଅତ୍ୟନ୍ତ ଉଲ୍ଲସିତ ଅନୁଭବ କରୁଥିଲେ । ମୁଁ ବି ସେତେବେଳେ ମନେ ମନେ କମ୍ ଫୁଲେଇ ହେଉ ନ ଥିଲି ।

ରେଭେନ୍‌ସା କଲେଜର ପଶ୍ଚିମ ଛାତ୍ରାବାସରେ ମୁଁ ଆସି ପହଞ୍ଚିଥିଲା ବେଳକୁ ଗଙ୍ଗାଧରବାବୁ ମଧ୍ୟ ସେହିଠାରେ ରହୁଥିଲେ । ତେଣୁ ପୂର୍ବରୁ କ୍ରମେ ଗଢ଼ି ଉଠିବା ସମ୍ପର୍କଟି ଏଠାରେ ମଧ୍ୟ ଧୀରେ ଧୀରେ ଏକ ରାଜନୀତିକ ସମ୍ପର୍କରେ ପରିଣତ ହୋଇ ଆସୁଥିଲା । କ୍ରମ ପ୍ରସାରିତ ହୋଇ ଆସୁଥିଲା ବା କ୍ରମସଙ୍କୁଚିତ ହୋଇ ଆସୁଥିଲା, ସେକଥା ଆଦୌ କୌଣସି ନିକିତିରେ ପକାଇ କହି ହେବ ନାହିଁ । ଗଙ୍ଗାଧରବାବୁ ମୋତେ କମ୍ୟୁନିଷ୍ଟ ପାର୍ଟିର ପ୍ରଚାରପୁସ୍ତିକାମାନ ଆଣି ଦେଉଥିଲେ ଓ ସେଗୁଡ଼ିକୁ ମୁଁ ପରିପୂର୍ଣ୍ଣ ଉତ୍ସାହରେ ପଢ଼ି ପକାଉଥିଲି । ତାଙ୍କର ଓଡ଼ିଶା କମ୍ୟୁନିଷ୍ଟ ପାର୍ଟିର ଅନ୍ୟମାନଙ୍କ ସହିତ ମଧ୍ୟ ପରିଚୟ ରହିଥିଲା । ଏହିପରି ଭାବରେ ମୋର ଶ୍ରୀଯୁକ୍ତ ସଚ୍ଚି ରାଉତରାୟଙ୍କ ସହିତ ମଧ୍ୟ ପରିଚୟ ହୋଇଥିଲା । ହାଇସ୍କୁଲରେ ପଢ଼ିବା ସମୟରେ ତାଙ୍କର ଅଭିଯାନ, ପଲ୍ଲିଶ୍ରୀ ଓ ବାଜିରାଉତ ପ୍ରଭୃତି କବିତା ପୁସ୍ତକ ପଢ଼ିଥିଲି । କୈଶୋର୍ଯ୍ୟର ପରିପୂର୍ଣ୍ଣ ଉତ୍ସାହ ଏବଂ ଆନୁଗତ୍ୟବୋଧ ସହିତ ପଢ଼ିଥିଲି । ତେଣୁ ତାଙ୍କ ସହିତ ମୋତେ ସମ୍ପର୍କିତ କରାଇ ଦିଆଯିବାରୁ ମୁଁ ପ୍ରକୃତରେ ଭାରି ପୁଲକିତ ହୋଇ ଉଠିଥିଲି । ତାହାକୁ ଏକ ଭାଗ୍ୟର କଥା ବୋଲି ଗ୍ରହଣ କରିଥିଲି । ସେତେବେଳେ ସରକାରଙ୍କ ଦ୍ୱାରା ବେଆଇନ ହୋଇ ରହିଥିବା କମ୍ୟୁନିଷ୍ଟ ପାର୍ଟିର କାର୍ଯ୍ୟକୌଶଳ ଏକ ବିଶେଷ ପ୍ରକାରର ଥିଲା । ସବୁ କର୍ମୀ ବା ସାଥୀଙ୍କର ଗୋଟିଏ ଠାରନାମ ରହିଥିଲା । ଗଙ୍ଗାଧରବାବୁ ମୋତେ ବି ତାଙ୍କର ପାର୍ଟି ସହିତ ସାମିଲ ହୋଇ ଆସୁଥିବାର ଅନୁଭବ କରିପାରିଲେ କି କ'ଣ କେଜାଣି ମୋ' ପାଇଁ ବି ପାର୍ଟିଠାରୁ ନାଆଁଟିଏ ଆଣିଲେ । ମୋ' ନାଆଁ ପରମାନନ୍ଦ ରଖାଗଲା ଏବଂ, ଯାବତୀୟ ପ୍ରୟୋଜନ ପାଇଁ ମୋତେ ଶ୍ରୀ ସଚ୍ଚି ରାଉତରାୟଙ୍କ ସହିତ ସମ୍ପର୍କିତ କରି ଦିଆଗଲା । ମୁଁ ସତେଅବା କେଉଁ ସମ୍ମାନର ଅଟ୍ଟାଳିକାରେ ପାହାଚେ ଉପରକୁ ଉଠିଗଲା ପରି ଅନୁଭବ କରିଥିଲି । ଉତ୍ସାହୀ ଓ ସମ୍ମତ କିଶୋରଟି ପାଇଁ ତାହା ଅତ୍ୟନ୍ତ ସ୍ୱାଭାବିକ ଥିଲା ।



---

*ମିତ୍ରସ୍ୟ ଚକ୍ଷୁସା (ପ୍ରଥମ ସକାଳ)*, ଏସ୍.ବି. ପବ୍ଲିକେଶନ, କଟକ, ୧୯୯୨

# ରେଭେନ୍‌ସା କଲେଜ

## ଲୋକନାଥ ଚୌଧୁରୀ

**ଇଉନିୟନ୍ ଜ୍ୟାକ୍ ପତାକା ଆନ୍ଦୋଳନ**

କିଛିଦିନ ପରେ ଅଚ୍‌ିନ ଲେକ୍-କମାଣ୍ଡର ଇନ୍ ଚିଫ୍ ରେଭେନ୍‌ସା କଲେଜ ଷ୍ଟୋର୍ଟସକୁ ଆସିବେ ବୋଲି ଇଉନିଅନ୍ ଜ୍ୟାକ୍ ପତାକା ଖେଳ ପଡ଼ିଆରେ ଉଡ଼ିଲା । ସେତେବେଳକୁ ଆଇ.ଏନ୍.ଏ. (I.N.A.) ଆନ୍ଦୋଳନ, ରାଜ୍ୟମାନଙ୍କରେ ନିର୍ବାଚିତ କଂଗ୍ରେସ ସରକାର ଗଠନ ଏବଂ ବିଶେଷ କରି ଫାସିଷ୍ଟ ହିଟ୍‌ଲରର ପରାଜୟ ପରେ ସମସ୍ତ ପରାଧୀନ ଦେଶମାନଙ୍କରେ ମୁକ୍ତି ଆନ୍ଦୋଳନର ପ୍ରଖରତା ବୃଦ୍ଧି ପାଇଥିଲା । ଦେଶପ୍ରେମୀ ଛାତ୍ରମାନଙ୍କ ମନ ଭିତରେ ଇଉନିଅନ୍ ଜ୍ୟାକ୍ ପାତାକା ଉତ୍ତୋଳନ ପରେ ଘୃଣା ସୃଷ୍ଟି କରିଥିଲା । ସେତେବେଳେ ପରାଧୀନ ଦେଶମାନଙ୍କର ମୁକ୍ତି ଆନ୍ଦୋଳନ ନୂତନ ରୂପରେ ଉଦ୍‌ଭାସିତ ହୋଇ ଉଠୁଥିଲା । ରାମେଶ୍ୱର ବାନାର୍ଜୀ କଲିକତାରେ ଶହୀଦ ହେବାପରେ, ଗୌରୀଶଙ୍କର ପାର୍କ ସଭାରେ ମନମୋହନ ମିଶ୍ର ଯେଉଁ ଗୀତଟି ଲେଖି ବୋଲିଥିଲେ, ତାହା ଜନସାଧାରଣଙ୍କର ହୃଦୟର ଭାଷା ଓ ଭାବକୁ ପ୍ରଭାବିତ କରିଥିଲା । ସେଥିରୁ କେତୋଟି ପଂକ୍ତି ମନେ ପଡ଼ୁଛି-

"ବନ୍ଧୁକ ହାତେ ଶୁଣରେ ଶୋଷକ
ହୀନ ପରାଜୟ ବାଜେ
ବାଜେ ତୋ ମରଣ ଭେରୀ, ଭେଦି କାରା ବନଗିରି ।"

ଶ୍ରୀ ମନମୋହନ ମିଶ୍ରଙ୍କ ନେତୃତ୍ୱରେ ଛାତ୍ରନେତା ବସନ୍ତ ମିଶ୍ର ପ୍ରମୁଖ ଇଉନିଅନ୍ ଜ୍ୟାକ୍ ପତାକାକୁ ଛିଣ୍ଡାଇ, ଗୋଡ଼ରେ ଦଳି ଦେଇଥିଲେ । ବସନ୍ତ ମିଶ୍ର ସେତେବେଳେ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ଥିଲେ ଏବଂ ସେ ଜଷ୍ଟିସ୍ ଗତିକୃଷ୍ଣ ମିଶ୍ର ଓ ଜୟକୃଷ୍ଣ ମିଶ୍ରଙ୍କ ଆତ୍ମୀୟ । ସେ ପରେ ଇଂଲଣ୍ଡ ଯାଇ ସେଠାରେ ଡାକ୍ତରୀରେ ଉଚ୍ଚଶିକ୍ଷା ଲାଭ କରି, ଇଂଲଣ୍ଡରେ ଚିକିତ୍ସା ବ୍ୟବସାୟ କରୁଥିଲେ ଏବଂ ନିକଟରେ ସେ ପରଲୋକ ଗମନ କରିଛନ୍ତି । ସେତେବେଳେ ଛାତ୍ର ଆନ୍ଦୋଳନ ଭିତରେ ଗଭୀର ବିଭେଦ ଦେଖା ଦେଇଥିଲା । କମ୍ୟୁନିଷ୍ଟ ବିରୋଧୀ ପ୍ରଚାର ଏପରି ଉଗ୍ର ଆକାର ଧାରଣ କରିଥିଲା ଯେ ରେଭେନ୍‌ସା କଲେଜ ଇଷ୍ଟ ହଷ୍ଟେଲ୍‌ରେ ମୁଁ ଥିଲାବେଳେ ୧୯୪୨ ମସିହାରେ

କମ୍ୟୁନିଷ୍ଟ ପାର୍ଟି ଜନ ଯୁଦ୍ଧ ଘୋଷଣା କରିଥିବାରୁ କମ୍ୟୁନିଷ୍ଟ ବିରୋଧୀ ଭାବଧାରା ଯେପରି ଭ୍ରମାତ୍ମକ ଭାବରେ ପ୍ରଚାର କରାଯାଉଥିଲା । କମ୍ୟୁନିଷ୍ଟ ଛାତ୍ରମାନଙ୍କ ପ୍ରତି ଗଭୀର ଘୃଣାଭାବ ସୃଷ୍ଟି କରାଯାଉଥିଲା । ଏହିପରି ଭ୍ରମାତ୍ମକ ପ୍ରଚାରର ଅଗ୍ରଭାଗରେ ଥିଲେ କଂଗ୍ରେସ - ସୋସାଲିଷ୍ଟ ପାର୍ଟିର ଛାତ୍ରମାନେ । ରେଭେନ୍‌ସା କଲେଜ ହଷ୍ଟେଲ୍‌ରେ ଆମେ କମ କମ୍ୟୁନିଷ୍ଟ ଛାତ୍ର ଥିଲୁ । ଆମେ ଏଥିରେ ବିଚଳିତ ହେଉ ନ ଥିଲୁ । ଇଉନିଅନ୍ ଜ୍ୟାକ୍ ଛିଣ୍ଡାହେବା ପରେ ଛାତ୍ରମାନଙ୍କ ଭିତରେ ବିଭେଦ ସୃଷ୍ଟି କରିବାକୁ ଉଦ୍ୟମ ହୋଇଥିଲା । ଯେଉଁ ଛାତ୍ରମାନେ ଇଉନିଅନ୍ ଜ୍ୟାକ୍ ଛିଡ଼ାଇବାରେ ଭାଗ ନେଇଥିଲେ ସେମାନଙ୍କ ବିରୋଧରେ ଦଣ୍ଡବିଧାନ ହେଲା । କିନ୍ତୁ ଆଶ୍ଚର୍ଯ୍ୟର ବିଷୟ, ବିଭାଜନ ସୃଷ୍ଟି କରିବାର ପ୍ରଚେଷ୍ଟା ସତ୍ତ୍ୱେ ଛାତ୍ରମାନଙ୍କ ଉପରୁ ଦଣ୍ଡବିଧାନ ପ୍ରତ୍ୟାହାର କରିବା ଆନ୍ଦୋଳନ ବ୍ୟାପକ ରୂପ ନେଲା । ସେତେବେଳେ ମହତାବ ବାବୁଙ୍କ ମନ୍ତ୍ରିମଣ୍ଡଳରେ ଶ୍ରୀ ଲିଙ୍ଗରାଜ ମିଶ୍ର ଶିକ୍ଷାମନ୍ତ୍ରୀ ଥିଲେ । ଛାତ୍ରମାନଙ୍କ ଉପରୁ ଦଣ୍ଡ ପ୍ରତ୍ୟାହାର କରିବା ପାଇଁ ଦାବି କରି ଛାତ୍ର ସଂଘର ଦଳେ ପ୍ରତିନିଧି ସାଥୀ ନରସିଂହ ତ୍ରିପାଠୀ, ମୁଁ ଓ ଅନ୍ୟମାନେ ଶିକ୍ଷାମନ୍ତ୍ରୀ ଶ୍ରୀଯୁକ୍ତ ଲିଙ୍ଗରାଜ ମିଶ୍ରଙ୍କୁ ସାକ୍ଷାତ୍ କରି ଦଣ୍ଡାଦେଶ ପ୍ରତ୍ୟାହାର କରିବାପାଇଁ ଦାବି ଜଣାଇଥିଲୁ । ଲିଙ୍ଗରାଜ ମିଶ୍ରଙ୍କ ଗୋଟିଏ ଧାରଣା ଜନ୍ମିଥିଲା - ଏହା କେତେକ କମ୍ୟୁନିଷ୍ଟ ଛାତ୍ରଙ୍କର ଅପକର୍ମ । କିନ୍ତୁ ଛାତ୍ରମାନଙ୍କ ଭିତରେ ପ୍ରବଳ ସାମ୍ରାଜ୍ୟବାଦ ବିରୋଧୀ ମନୋଭାବ ପ୍ରାଧାନ୍ୟ ଲାଭ କରିଥିଲା । ପଣ୍ଡିତ ଲିଙ୍ଗରାଜ ମିଶ୍ର ଯେତେବେଳେ ଆମର ଦାବିକୁ ପ୍ରତ୍ୟାଖ୍ୟାନ କଲେ, ସେତେବେଳେ ମୁଁ ତାଙ୍କୁ ଚାଲେଞ୍ଜ କଲି । ରାଜରାସ୍ତାରେ ଛାତ୍ରମାନେ ଏହାର ଉଚିତ ଜବାବ ଦେବେ ବୋଲି କହିଲି । ପରେ ଧର୍ମଘଟ ଡାକରା ଦିଆଗଲା । ଧର୍ମଘଟ ସଫଳ ହେଲା । ଛାତ୍ରମାନଙ୍କ ଭିତରେ ଅଦ୍‌ଭୁତପୂର୍ବ ଏକତା ସୃଷ୍ଟି ହେଲା ।

**ହଷ୍ଟେଲ୍‌କୁ ସାଧାରଣତନ୍ତ୍ର ଘୋଷଣା**

ରେଭେନ୍‌ସା କଲେଜର ୱେଷ୍ଟ ହଷ୍ଟେଲ୍‌କୁ ଏକ ସାଧାରଣତନ୍ତ୍ର ବୋଲି ଘୋଷଣା କରାଗଲା । ଏଥିରେ ପୋଲିସ୍ ପ୍ରବେଶକୁ ରୋକିବା ପାଇଁ ଏକ ସ୍ୱେଚ୍ଛାସେବକ ବାହିନୀ ଗଠିତ ହେଲା । ଏହି ସାଧାରଣତନ୍ତ୍ରର ସଭାପତି ରୂପେ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ସର୍ବସମ୍ମତି କ୍ରମେ ନିର୍ବାଚିତ ହୋଇଥିଲେ । ସରକାରଙ୍କ ତରଫରୁ ସମସ୍ତ ପ୍ରକାର ଦାବି ବ୍ୟବସ୍ଥା ଜାରି କରାଗଲା । ଛାତ୍ରସଂଘର ଅଧିକାଂଶ ଛାତ୍ରନେତା ଗିରଫ ହୋଇଯିବାରୁ ମୋତେ ଅଜ୍ଞାତବାସରେ ରହି ଆନ୍ଦୋଳନ ପରିଚାଳନା କରିବାକୁ ନିର୍ଦ୍ଦେଶ ଦିଆଗଲା । ମୁଁ କ୍ରାଏଷ୍ଟ କଲେଜର ଛାତ୍ର ଥିବାରୁ ମାନସିଂପାଟଣାରେ ଅଜ୍ଞାତବାସରେ ରହିଥିଲି । ସାଥୀ କେଶବ ଦାସ ଏବଂ ସାଥୀ ବଂଶୀଧର ପଟ୍ଟନାୟକ ମୋ ସହିତ ଗୁପ୍ତ ସଂପର୍କ ରଖି ରେଭେନ୍‌ସା କଲେଜରେ ଛାତ୍ର ଆନ୍ଦୋଳନକୁ ପରିଚାଳନା କରିବା ପାଇଁ ଉଦ୍ୟମ କଲେ । ରେଭେନ୍‌ସା କଲେଜରୁ ଏକ ଛାତ୍ର ଶୋଭାଯାତ୍ରା

୧୪୪ ଧାରା ଭଙ୍ଗକରି ଚାନ୍ଦିନୀଚୌକ ଅଭିମୁଖେ ଆସୁଥିବାବେଳେ ବକ୍ସି ବଜାରଠାରେ ଲୁହବୁହା ଗ୍ୟାସ ପ୍ରୟୋଗ କରାଗଲା, ଲାଠିଚାର୍ଜ ହେଲା। ଛାତ୍ରମାନଙ୍କୁ ଗିରଫ କରାଗଲା। ସେତେବେଳେ ସର୍ବଶ୍ରୀମତୀ ନିରୁପମା ରଥ, ସାବିତ୍ରୀ ମିଶ୍ର, ନନ୍ଦିନୀ ଶତପଥୀ ଓ ଶ୍ୟାମଳୀ ଲାହିଡ଼ୀ ଓ ଅନ୍ୟ ଛାତ୍ରୀନେତ୍ରୀମାନେ ମହିଳା ପୋଲିସ୍ ନ ଆଣି ଆମକୁ ଗିରଫ କରିବେ ନାହିଁ ବୋଲି ଦୃଢ଼ ଦାବି କଲେ ଏବଂ ଛାତ୍ରୀମାନେ ପୋଲିସ୍‌ର ସମସ୍ତ ଚେଷ୍ଟା ପ୍ରତିବନ୍ଧକକୁ ଏଡ଼ାଇ ନିରୂପମା ରଥଙ୍କ ନେତୃତ୍ୱରେ ଆସି ଚାନ୍ଦିନୀଚୌକରେ ପହଞ୍ଚିଲେ।

ସେତେବେଳେ ଯେଉଁ କାଉନସିଲ୍ ଅଫ୍ ଆକସନ୍ ଗଢ଼ା ଯାଇଥିଲା, ସେଥିରେ ସଭାପତି ଥିଲେ ତତ୍କାଳୀନ ଛାତ୍ରନେତା ଶ୍ରୀ ପ୍ରଦୀପ୍ତ କିଶୋର ଦାସ। ଛାତ୍ରୀମାନେ ଚାନ୍ଦିନୀଚୌକରେ ପହଞ୍ଚିବା ପରେ, ମୁଁ ସେଠାରେ ଯାଇ ପହଞ୍ଚିଲି। ସେତେବେଳେ ପୋଲିସ୍ ଗିରଫ କରିବାକୁ ଉଦ୍ୟମ କଲେ ଏବଂ ଛାତ୍ରୀମାନେ ମୋତେ କର୍ଡ଼ନ ମଝିରେ ରଖିଲେ। ପୋଲିସ୍ ଗିରଫ କରିପାରିଲେ ନାହିଁ। ସେଠାରେ ବହୁଲୋକ ସମବେତ ହେଲେ। ମୁଁ ଭାଷଣ ଦେଲି। ଭାଷଣ ପରେ ସଂଗ୍ରାମ ପାଣ୍ଠିକୁ ଦାନ ଦେବାପାଇଁ ନିବେଦନ କଲି। ତଳେ ପରା ଯାଇଥିବା ଲୁଗା ଉପରେ ବହୁତ ପଇସା ପଡ଼ିଲା। ନନ୍ଦିନୀ ଶତପଥୀ ତାଙ୍କ ହାତରେ ପିନ୍ଧିଥିବା ସୁନାକାଚ ସେଥିରେ ପକାଇଥିଲେ। ତାଙ୍କୁ ଦେଖି ଆଉ କେତେକ ଛାତ୍ରୀ ମଧ୍ୟ ସେମାନେ ପିନ୍ଧିଥିବା କାଚ ଇତ୍ୟାଦି ପକାଇଥିଲେ। ଏହି ସମୟରେ ସେଠାରେ ପ୍ରଦୀପ୍ତ କିଶୋର ଦାସ ପହଞ୍ଚିଲେ। ସଂଗୃହୀତ ହୋଇଥିବା ଅର୍ଥ ଓ ଗହଣା ମୁଁ ତାଙ୍କୁ ଦେଇ ସେଠାରୁ ଖସିଗଲି ଏବଂ ସାଥୀ କେଶବ ଦାସ ମୋତେ ସାଇକେଲରେ ନେଇ ମାନସିଂପାଟଣାରେ ପହଞ୍ଚିଲେ। ସେଠାରେ ନିଷ୍ପତ୍ତି ହେଲା ସନ୍ଧ୍ୟା ଛ'ଟାରେ ଗୌରୀଶଙ୍କର ପାର୍କରେ ସଭା ହେବ। ସଂଧ୍ୟାରେ ଗୌରୀଶଙ୍କର ପାର୍କରେ ସଭା ହେଲା। ସେହି ସଭାରେ ମୁଁ, ସାଥୀ ପୂର୍ଣ୍ଣାନନ୍ଦ ଦାସ, ଶ୍ରୀମତୀ ଶ୍ୟାମଳୀ ଲାହିଡ଼ୀ- ଯେକି ପରେ ତତ୍କାଳୀନ ଛାତ୍ରନେତା କୁଳମଣି ମହାପାତ୍ରଙ୍କୁ ବିବାହ କରିଥିଲେ। ସେଠାରେ ନିରୂପମା ରଥ ପ୍ରମୁଖ ଭାଷଣ ଦେଇଥିଲେ। ସରକାର ଦଣ୍ଡାଦେଶ ପ୍ରତ୍ୟାହାର କରିବାରୁ ଛାତ୍ର ଆନ୍ଦୋଳନ ପ୍ରତ୍ୟାହୃତ ହେଲା।

•

---

***ମୋ ଜୀବନ,*** ସ୍ୱ-ପ୍ରକାଶନୀ, ୧୯୯୯, ଭୁବନେଶ୍ୱର

# ରେଭେନ୍‌ସାରେ ପାଠପଢ଼ା

## ରବି ରାୟ

ପୂର୍ବରୁ କହିଛି ସ୍କୁଲ ଛାତ୍ର ଥିବାବେଳୁ ଗାନ୍ଧିଜୀ ଓ ତାଙ୍କ ପ୍ରବର୍ତ୍ତିତ ଆନ୍ଦୋଳନ ପ୍ରତି ମୁଁ ଆକୃଷ୍ଟ ହୋଇ ସାରିଥିଲି। ମାଟ୍ରିକ୍ ପାସ୍ କରି ମୁଁ ରେଭନ୍‌ସା କଲେଜରେ ଆଇ.ଏ. ପଢ଼ିଲି। ବ୍ରିଟିଶ ସରକାର କହୁଥିଲେ ଯେ ୧୯୪୨ ରେ ହୋଇଥିବା 'ଭାରତ ଛାଡ଼' ଆନ୍ଦୋଳନ ଏକ 'ଛାତ୍ର ଆନ୍ଦୋଳନ'। ସେତେବେଳେ ସିନ୍ଧ୍ ପ୍ରଦେଶର ଜଣେ ଛାତ୍ର ହେମୁ କଲ୍ୟାଣୀ ଶହୀଦ୍ ହୋଇଥାଆନ୍ତି। ଓଡ଼ିଶା ଜାତୀୟ୍ କଂଗ୍ରେସର ନେତାମାନେ ଜେଲ୍‌ରେ ଥିଲେ। ସେମାନେ ୧୯୪୫ରେ ଜେଲ୍‌ରୁ ଖଲାସ ହୁଅନ୍ତେ ଏଠି ଛାତ୍ର ଆନ୍ଦୋଳନ ଆରମ୍ଭ ହୋଇଗଲା। ଅଖିଳ ଭାରତୀୟ୍ ଛାତ୍ର କଂଗ୍ରେସ ପ୍ରତିଷ୍ଠିତ ହେଲା। ଇଏ ଥିଲା ଜାତୀୟତାବାଦୀ-ରାଷ୍ଟ୍ରବାଦୀ ଛାତ୍ର ସଂଗଠନ। ଏହାର ପ୍ରତିଦ୍ୱନ୍ଦ୍ୱୀ ଛାତ୍ର ସଂଗଠନ ଥିଲା ଛାତ୍ର ଫେଡେରେସନ୍-କମ୍ୟୁନିଷ୍ଟ୍‌ମାନଙ୍କର ଛାତ୍ର ଶାଖା। ଏହି ସାମ୍ୟବାଦୀମାନେ ୧୯୪୨ ଆନ୍ଦୋଳନକୁ ବିରୋଧ କରୁଥାଆନ୍ତି। ଯେହେତୁ ସୋଭିଏତ୍ ରୁଷିଆ ଦ୍ୱିତୀୟ୍ ମହାଯୁଦ୍ଧରେ ବ୍ରିଟେନ୍‌କୁ ସମର୍ଥନ କରୁଥାଏ ଏଣୁ ଏଠି ମଧ୍ୟ ସାମ୍ୟବାଦୀମାନେ ବ୍ରିଟିଶ ସରକାରଙ୍କୁ ସହଯୋଗ କରୁଥାଆନ୍ତି। ଏଥିପାଇଁ ସେମାନଙ୍କ ଲୋକପ୍ରିୟତା ଅନେକାଂଶରେ ଲୋପ ପାଇଯାଇଥିଲା।

ଆମର ଛାତ୍ର କଂଗ୍ରେସ ବଣ ନିଆଁପରି ଗାଁ ଗହଳିର ସ୍କୁଲ କଲେଜକୁ ବ୍ୟାପିଗଲା। ଏପରିକି କଂଗ୍ରେସ ନେତାମାନେ କହିବାକୁ ଲାଗିଲେ ଯେ ଛାତ୍ର କଂଗ୍ରେସ ଆମକୁ ଟପିଗଲା। ପରବର୍ତ୍ତୀ କାଳରେ ଓଡ଼ିଶାରେ ଜନତା ସରକାରର ଶିକ୍ଷା ଓ ସ୍ୱାସ୍ଥ୍ୟମନ୍ତ୍ରୀ ହୋଇଥିବା ଶ୍ରୀ ପ୍ରଦୀପ୍ତ କିଶୋର ଦାସ ଓଡ଼ିଶା ଛାତ୍ର କଂଗ୍ରେସର ପ୍ରଥମ ସଭାପତି ଥିଲେ। ମୁଁ କଟକ ଜିଲ୍ଲା ଛାତ୍ର କଂଗ୍ରେସର ସଂପାଦକ ଥିଲି। ୧୯୪୬ରେ ଯେଉଁ ଛାତ୍ର ନିର୍ବାଚନ ହେଲା ପ୍ରଦୀପ୍ତ କିଶୋର ଦାସ ଛାତ୍ର ଫେଡେରେସନ୍ ନେତା, ପରବର୍ତ୍ତୀ ସମୟର ପ୍ରସିଦ୍ଧ କମ୍ୟୁନିଷ୍ଟ ନେତା ମନମୋହନ ମିଶ୍ରଙ୍କୁ ବହୁ ଭୋଟରେ ହରାଇଥିଲେ। ଆମେ ରେଭେନ୍‌ସା ଛାତ୍ର ୟୁନିୟନର ସବୁ ପଦ ପାଇଁ ଜିତିଲୁ। କେବଳ ଏସ୍.ଏସ୍.ଜି. ସଂପାଦକ ପଦ ପାଇଁ ଛିଡ଼ା ହୋଇଥିବା କୁଳମଣି (ବିଶିଷ୍ଟ ନୃତତ୍ତ୍ୱବିତ୍ ଓ

ସମାଜବାଦୀ ସର୍ବୋଦୟ ନେତା ସ୍ୱର୍ଗତ ଡଃ. କୁଳମଣି ମହାପାତ୍ର) ସ୍ୱାଧୀନ ପ୍ରାର୍ଥୀ ଏ.ଏନ୍.ତିୱାରୀ (ପରବର୍ତ୍ତୀ ଜୀବନରେ ଆଇ.ଏ.ଏସ୍.)ଙ୍କ ଠାରୁ ହାରିଥିଲେ।

ଏହି ରେଭେନ୍‌ସା କଲେଜରେ ପଢୁଥିବା ବେଳେ ଆମେ ଗୋଟାଏ କାଣ୍ଡ କରି ବସିଲୁ ଯାହା ଥିଲା ଅଭୂତପୂର୍ବ ଓ ଯାହା ଓଡ଼ିଶାର ସ୍ୱାଧୀନତା ସଂଗ୍ରାମ ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହେବା ଭଳି ଗୋଟାଏ ଘଟଣା। ଇଏ ୧୯୪୬-୪୭ ବେଳର ଏକ ଘଟଣା। ରେଭେନ୍‌ସା କଲେଜର ବାର୍ଷିକ କ୍ରୀଡ଼ା ପ୍ରତିଯୋଗିତା ହେଉଥାଏ। ସେତେବେଳେ ରେଭେନ୍‌ସାର ବାର୍ଷିକ କ୍ରୀଡ଼ା ପ୍ରତିଯୋଗିତା ଏତେ ଜନପ୍ରିୟତା ହାସଲ କରିଥାଏ ଯେ କାହିଁ କାହିଁ ଦୂରରୁ ଲୋକେ ତାହା ଦେଖିବାକୁ ଆସନ୍ତି। ରେଭେନ୍‌ସାର ଅଧ୍ୟକ୍ଷ ଥାଆନ୍ତି ଏସ୍. ରାୟ୍। ଖେଳ ସ୍ଥାନରେ ବ୍ରିଟିଶ ଇଉନିୟନ୍ ଜ୍ୟାକ୍ ପତାକା ଉଡ଼ା ହେଉଥାଏ। କେତେ ଛାତ୍ରନେତା ସ୍ଥିର କଲେ ଯେ ଇଉନିୟନ୍‌ଜ୍ୟାକ୍ ଖସାଇ ଦେଇ ତା'ସ୍ଥାନରେ ଆମର ତ୍ରିରଙ୍ଗା ପତାକା ଉଡ଼ାଇବୁ। ତାହାହିଁ ହେଲା। ସେତେବେଳେ ଅଖିଳ ଭାରତ କଂଗ୍ରେସର ପତାକା ହିଁ ଜାତୀୟ ପତାକା ରୂପେ ପରିଗଣିତ ହେଉଥିଲା। ମୁଁ ଇତିହାସ ଅନର୍ସର ଛାତ୍ର ଥିଲି। ପ୍ରିନ୍‌ସିପାଲ୍ ଏସ୍. ରାୟ୍ ଆମକୁ ରାଜନୈତିକ ଇତିହାସ ପଢ଼ାଉଥିଲେ। ସେହି ହିସାବରେ ସେ ଆମକୁ ଭଲଭାବେ ଚିହ୍ନିଥିଲେ। ଏହି କାଣ୍ଡ ଭିଆଇଥିବା ଛାତ୍ରଙ୍କୁ ରଷ୍ଟିକେଟ୍ କରିବାର ମସୁଧା ହେଉଛି ଜାଣି ଆମେ ଛାତ୍ର କ୍ରିୟାନୁଷ୍ଠାନ କମିଟି ଗଢ଼ିଲୁ। ଏହି ସମିତି ଦୁଇଟି ପ୍ରସ୍ତାବ ପାସ୍ କଲା। ଯେଉଁ ଛାତ୍ରମାନେ ଜାତୀୟ ପତାକା କଲେଜରେ ଉଡ଼ାଇଥିଲେ ସେମାନଙ୍କୁ ବଧେଇ ଜଣାଗଲା ଓ ସେମାନଙ୍କୁ ରଷ୍ଟିକେଟ୍ କଲେ ପରିଣାମ ଭୟାବହ ହେବ ବୋଲି କର୍ତ୍ତୃପକ୍ଷଙ୍କୁ ଚେତାବନୀ ଦିଆଗଲା। ଦ୍ୱିତୀୟ ଦାବି ଥିଲା ଯେ ପ୍ରାଥମିକ ସ୍ତରରୁ ଆରମ୍ଭ କରି ବିଶ୍ୱବିଦ୍ୟାଳୟ ପର୍ଯ୍ୟନ୍ତ ଓଡ଼ିଶାର ସମସ୍ତ ଶିକ୍ଷାନୁଷ୍ଠାନରେ ଏବେଠାରୁ ଇଉନିୟନ୍ ଜ୍ୟାକ୍ ପରିବର୍ତ୍ତେ ଜାତୀୟ ପତାକା ଉଡ଼ାଯିବ। ସେତେବେଳେ ବ୍ରିଟିଶ୍ ସରକାର ଥାଏ। ମାଉଣ୍ଟ୍ ବ୍ୟାଟେନ୍ ଭାଇସ୍‌ରାୟ୍ ଓ ଅକିନେଲେକ୍ ପ୍ରଧାନ ସେନାପତି। ଶ୍ରୀଯୁକ୍ତ ହରେକୃଷ୍ଣ ମହତାବ ଥାଆନ୍ତି ଓଡ଼ିଶାର ପ୍ରଧାନମନ୍ତ୍ରୀ। (ସେତେବେଳେ ମୁଖ୍ୟମନ୍ତ୍ରୀଙ୍କୁ ପ୍ରଧାନମନ୍ତ୍ରୀ କୁହାଯାଉଥିଲା।) ଏଠି ପ୍ରକାଶ ଥାଉକି ଏହି ଅକିନେଲେକଙ୍କୁ ଉତ୍କଳ ବିଶ୍ୱବିଦ୍ୟାଳୟରେ ଦୀକ୍ଷାନ୍ତ ଭାଷଣ ଦେବାପାଇଁ ନିମନ୍ତ୍ରଣ କରାଯାଇଥିଲା। ଛାତ୍ରମାନେ ଏହାର ପ୍ରବଳ ବିରୋଧ କରିବାରୁ ଅକିନେଲେ ଆଉ ଆସି ନ ଥିଲେ। ଏବେ ଏ ଦୁଇଟି ପ୍ରସ୍ତାବକୁ ନେଇ ଆନ୍ଦୋଳନ ଚାଲିଲା। କ୍ରିୟାନୁଷ୍ଠାନ କମିଟିର ସଭାପତି ରହିଲେ ପ୍ରଦୀପ୍ତ କିଶୋର ଦାସ। କମିଟି ସରକାରଙ୍କୁ ଚରମ ପତ୍ର ଦେଲେ ଯେ ଯେପର୍ଯ୍ୟନ୍ତ ଏ ଦୁଇଟି ଦାବି ପୂରଣ ନ ହୋଇଛି ସେ ପର୍ଯ୍ୟନ୍ତ ରେଭେନ୍‌ସା କଲେଜ ପଶ୍ଚିମ ଛାତ୍ରାବାସ ଆମ ହାତରେ।

ଗୋଟିଏ ଅଭିନବ ପରୀକ୍ଷା କରାଗଲା। ଆନ୍ଦୋଳନକୁ ବୈପ୍ଲବିକ ରୂପ ଦିଆଯିବ। ଅଥଚ ଏହା ସଂପୂର୍ଣ୍ଣଭାବେ ଅହିଂସକ ହେବ। ଆମେ ପଶ୍ଚିମ ଛାତ୍ରାବାସକୁ ଦଖଲ କରିନେଲୁ ଏବଂ

ସୁପରିଣ୍ଟେଣ୍ଡେଣ୍ଟଙ୍କୁ ଛାତ୍ରାବାସରେ ତିଆରି କରାଯାଇଥିବା 'ଜେଲ୍' ଭିତରେ ସଦସ୍ୟମାନେ ବନ୍ଦୀ କରିଦେଲୁ। ସେତେବେଳେ ଆମର ସୁପରିଣ୍ଟେଣ୍ଡେଣ୍ଟ ଥାଆନ୍ତି ଖ୍ୟାତନାମା ଦର୍ଶନ ଅଧ୍ୟାପକ (ଯେ କି ପରବର୍ତ୍ତୀ କାଳରେ କେତୋଟି ବିଶ୍ୱବିଦ୍ୟାଳୟର କୁଳପତି ହେଲେ) ଶ୍ରୀଯୁକ୍ତ ଶ୍ରୀନିବାସ ସାହୁ। ମୋର ମନେ ଅଛି ଆମେ ସେହି ଜେଲ୍‌ରେ ତାଙ୍କୁ ଦେଖା କରିବାକୁ ଯାଇ ପଚାରିଲୁ, "ସାର୍, ଆପଣ କିପରି ଅଛନ୍ତି ?" ସେ ହସି ହସି କହିଲେ, "ଖୁବ୍ ଭଲରେ ଅଛି।" ପଶ୍ଚିମ ଛାତ୍ରାବାସକୁ ଆମେ ସ୍ୱାଧୀନ ସାଧାରଣତନ୍ତ୍ର ଘୋଷଣା କରିଦେଲୁ। ଅଧ୍ୟକ୍ଷ ଏସ୍. ରାୟ ପଶ୍ଚିମ ଛାତ୍ରାବାସକୁ ଯିବା ପାଇଁ ଆମ 'ଅନୁମତି' ମାଗିଲେ। କ୍ରିୟାନୁଷ୍ଠାନ କମିଟି ତାଙ୍କୁ ଅନୁମତି ଦେଲା ନାହିଁ। ମୋତେ ଚିହ୍ନିଥିବାରୁ କହିଲେ "କିରେ ରବି ! ମୁଁ ଯିବି ?" ମୁଁ ମନା କରିଦେଲି। ମୁଁ କହିଲି, "ସାର୍ ଆପଣଙ୍କ ପ୍ରତି ଆମର ଶ୍ରଦ୍ଧା ରହିଛି। ମାତ୍ର ଇଏ ହେଉଛି ଆମର ସର୍ବସମ୍ମତିକ୍ରମେ ନିଆଯାଇଥିବା ଫଏସଲା। ମୁଁ ନାଚାର।"

ସେତେବେଳେ ପଶ୍ଚିମ ଛାତ୍ରାବାସର ହଷ୍ଟେଲରେ ଜଣେ ଅନ୍ତେବାସୀ ଥାଆନ୍ତି (ପରବର୍ତ୍ତୀ କାଳରେ ଓଡ଼ିଶା ମୁଖ୍ୟମନ୍ତ୍ରୀ ହୋଇଥିବା କଂଗ୍ରେସ ନେତା) ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ। ସେତେବେଳେ ସଂସ୍କୃତ ଅନର୍ସର ଜଣେ କୃତୀ ଛାତ୍ର ଭାବରେ ତାଙ୍କର ସୁନାମ ଥାଏ। ଆମେ ତାଙ୍କୁ ସଭାପତି ରୂପେ ବାଛିଲୁ।

ଛାତ୍ରମାନଙ୍କ ଦାବି ସପକ୍ଷରେ ଆମେ ଯେଉଁ ଶୋଭାଯାତ୍ରା ସେତେବେଳେ ବାହାର କରିଥିଲୁ ତାହା କଟକ ସହର ପାଇଁ ଥିଲା ଅଭୂତପୂର୍ବ। ମୁଁ ଏଭଳି ଛାତ୍ର ଶୋଭାଯାତ୍ରା କେବେ ଦେଖି ନାହିଁ। ଝିଅମାନେ ପୂରାପୂରି ଆଗରେ ଥାଆନ୍ତି। ସେମାନଙ୍କ ମଧ୍ୟରୁ ଦୁଇଜଣଙ୍କ ନାଁ ମୋର ଏବେ ମଧ୍ୟ ମନେ ଅଛି। ଜଣେ ହେଲେ ନିରୂପମା ରଥ ଓ ଅନ୍ୟଜଣକ ଯୋଗମାୟା ପଟ୍ଟନାୟକ। (ଉଭୟ ପରବର୍ତ୍ତୀ ଜୀବନରେ ଡାକ୍ତର ହେଲେ)। ହଁ, ଶ୍ୟାମଳୀ ଲାହିଡ଼ି (ଯେ ପରେ କୁଳମଣି ମହାପାତ୍ରଙ୍କୁ ବିବାହ କଲେ) ମଧ୍ୟ ଆଗଧାଡ଼ିରେ ଥିଲେ। ଶୋଭାଯାତ୍ରା ରେଭେନ୍‌ସା କଲେଜରୁ ବାହାରି ବକ୍ସିବଜାର ଦେଇ ଗୌରୀଶଙ୍କର ପାର୍କ ନିକଟରେ ପହଞ୍ଚିଲା। ସେତେବେଳେ ରାମନାଥନ୍ ଥାଆନ୍ତି ଜିଲ୍ଲା ମାଜିଷ୍ଟ୍ରେଟ୍। ଲୋକେ ଆମକୁ ଏପରି ସମର୍ଥନ ଦେବା ଆରମ୍ଭ କଲେ ଯେ ଆମେ ପାର୍କ ନିକଟରେ ପହଞ୍ଚିଲା ବେଳକୁ ପିଲାଏ ଖାଇବେ ବୋଲି ବାଲୁବଜାରରୁ ଭରଣ ଭରଣ ମୁଢ଼ି ଓ ପାଣି ଆଣି ଲୋକେ ସଭାସ୍ଥଳରେ ପହଞ୍ଚାଇ ଥିଲେ। ଆମ ପଛରେ ସୃଷ୍ଟି ହୋଇଥିବା ଜନସମର୍ଥନକୁ ଲକ୍ଷ୍ୟ କରି ରାମନାଥନ୍ ସଭାସ୍ଥଳରେ ଯେଉଁ ୧୪୪ ଧାରା ଜାରି କରିଥିଲେ ତାକୁ ଉଠାଇ ନେଲେ। ଶ୍ୟାମଳୀ ଲାହିଡ଼ିଙ୍କୁ ଗିରଫ କରିବା ପାଇଁ ସର୍ଜେଣ୍ଟ ମାର୍କଣ୍ଡ ରାଉତରାୟ ଆସିଲେ। ମୁଁ କହିଲି ସ୍ତ୍ରୀ ପୋଲିସ୍ ନ ଆଣିଲେ ଆପଣ ତାଙ୍କୁ ଛୁଇଁ ପାରିବେ ନାହିଁ। ସେ ତାପରେ ଶ୍ୟାମଳୀଙ୍କୁ ଛାଡ଼ି ମୋତେ ଗିରଫ କଲେ। ମୁଁ ସେଦିନ ଜୀବନରେ ପ୍ରଥମ ଥର ପାଇଁ ଗିରଫ ହେଲି। ଏ ଦିନଟି ମୋ ଜୀବନରେ ଏକ ଅଭୁଲା ସ୍ମୃତି ହୋଇ ରହିଛି।

ଆମେ ଯେଉଁମାନେ କାରାବରଣ କଲୁ ଘୋଷଣା କରିଲୁ ଯେ ଯେଉଁଦିନ ସରକାର ଆମର ଦାବି ମାନିନେବେ ସେଇଦିନ ଆମେ ଜେଲ୍‌ରୁ ଆସିବୁ । ଛାତ୍ର ଓ ସରକାରଙ୍କ ଠାରେ ମଧ୍ୟସ୍ଥତା କରିବାକୁ ଦାୟିତ୍ୱ ନେଇଥାନ୍ତି ପରବର୍ତ୍ତୀ କାଳରେ ବିଚାରପତି ହୋଇଥିବା ଶ୍ରୀଯୁକ୍ତ ହରିହର ମହାପାତ୍ର । ଶେଷରେ ଆମର ଦାବି ପୂରଣ ହେଲା । ଆମେ ଜେଲ୍‌ରୁ ଖଲାସ ହୋଇ ଟାଉନ୍‌ହଲ୍ ପଡ଼ିଆରେ ସଭାକଲୁ ଓ ବୀରଦର୍ପରେ କଲେଜକୁ ଫେରିଲୁ । ଇଂରେଜ ରାଜତ୍ୱ ଭିତରେ ଗୋଟାଏ ରାଜ୍ୟର ଶିକ୍ଷାନୁଷ୍ଠାନରେ ଜାତୀୟ ପତାକା ଉଡ଼ିବା ସାରା ଭାରତରେ ଏହା ପ୍ରଥମ ଘଟଣା ଥିଲା ଓ ଏହା ସାରା ଭାରତରେ ସେ ସମୟରେ ଚହଲ ପକାଇ ଦେଇଥିଲା ।

ମତାଦର୍ଶ ନେଇ ଜଣକ ସହିତ ବେସାଲିସ୍ ସଂଗ୍ରାମ କରାଯାଉଥିବାବେଳେ ବ୍ୟକ୍ତିଗତ ଜୀବନରେ ଯେ ତା' ସହିତ ସୌହାର୍ଦ୍ଦ୍ୟପୂର୍ଣ୍ଣ ସଂପର୍କ ରଖାଯାଇପାରେ ଗଣତାନ୍ତ୍ରିକ ଜୀବନଚର୍ଯ୍ୟାର ଏହି ପ୍ରଥମ ପାଠ ମୁଁ ପଢ଼ିବାର ସୁଯୋଗ ପାଇଥିଲି ମୋ ନିଜ ଘରୁ । ଆମ ବାପା ପାଞ୍ଚ ଭାଇ । ସବା ସାନ ଭାଇ ଥିଲେ କୃଷ୍ଣଚନ୍ଦ୍ର ରାୟ । ସେ ପ୍ରଥମେ କଲିକତାରେ ପଢ଼ିଥିଲେ । ପରେ ଆସି ଘରେ ରହିଲେ । ତାଙ୍କ ସହିତ ମୋର ଆଦର୍ଶଗତ ପାର୍ଥକ୍ୟ ଥିଲା । ସେ ସତ୍ୟବାଦୀ ବନ ବିଦ୍ୟାଳୟରେ ପାଠ ପଢ଼ିଥିଲେ ଓ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କର ଛାତ୍ର ଥିଲେ । ପରବର୍ତ୍ତୀ ଜୀବନରେ ଗୋଦାବରୀଶ ବାବୁ ଗାନ୍ଧୀ ଆନ୍ଦୋଳନକୁ ବିରୋଧ କରିଥିଲେ ଓ ପାରଳାଖେମୁଣ୍ଡି ମହାରାଜା ୧୯୪୩ ମସିହାରେ ଯେଉଁ ମନ୍ତ୍ରିମଣ୍ଡଳ ଗଢ଼ିଥିଲେ ସେଥିରେ ଯୋଗ ଦେଇଥିଲେ । ମୋ ଦାଦା ନିଜ ପୂର୍ବତନ ଗୁରୁଙ୍କ ପ୍ରତି ଅନୁରକ୍ତି ପ୍ରକାଶ କରି ଗାନ୍ଧୀ ଆନ୍ଦୋଳନକୁ ବିରୋଧ କରୁଥିଲେ । ସେ ୧୯୪୨ ଆନ୍ଦୋଳନରେ ଯୋଗ ଦେଇନଥିବାରୁ ମୋ ମନରେ କ୍ଷୋଭ ଜାତ ହୋଇଥିଲା । କଂଗ୍ରେସ ବିରୋଧରେ ସେ ବେଳେବେଳେ ଉଦ୍ଭଟ କଥା ପ୍ରଚାର କରୁଥିଲେ । ମୋର ମନେ ଅଛି ଖଦଡ଼ ପିନ୍ଧିଲେ ମ୍ୟାଲେରିଆ ଜର ହୁଏ ବୋଲି ସେତେବେଳେ ତାଙ୍କ ସହକର୍ମୀମାନେ ଭାଷଣରେ ଲୋକଙ୍କୁ ବୁଝାଉଥିଲେ । ତେବେ ସେତେବେଳେ ଗାନ୍ଧିଜୀ ଓ କଂଗ୍ରେସ ସପକ୍ଷରେ ବହୁଥାଏ ପ୍ରବଳ ହାୱା । ଫଳରେ କଂଗ୍ରେସ ବିରୋଧୀମାନଙ୍କୁ ଲୋକେ ସନ୍ଦେହ ଚକ୍ଷୁରେ ଦେଖୁଥାଆନ୍ତି । ମୋର ମନେ ଅଛି, ଆମ ଅଞ୍ଚଳର ସବୁଠାରୁ ବଡ଼ ବ୍ୟବସାୟ ପେଣ୍ଠ ବନମାଳୀପୁର ହାଟରେ ଥରେ କଂଗ୍ରେସ କର୍ମୀମାନେ ପ୍ରଚାର କରୁଥିବାବେଳେ କୃଷ୍ଣକକାଙ୍କ ସମର୍ଥକମାନେ କଂଗ୍ରେସ କର୍ମୀଙ୍କୁ ପ୍ରବଳ ମାଡ଼ ମାରିଥିଲେ । ଅବଶ୍ୟ ତାଙ୍କ ବିରୋଧରେ ଏପ୍ରକାର ଅଣଗାନ୍ଧୀବାଦୀ ପଦକ୍ଷେପକୁ ମୁଁ ସମର୍ଥନ କରିପାରି ନ ଥିଲି ।

ଆମର ମୁରବି ସେଇ ଦାଦା । ସେ ମୋର ପଢ଼ାପଢ଼ିର ମଧ୍ୟ ଦାୟିତ୍ୱ ନେଇଥାନ୍ତି । ବନମାଳିପୁର ହାଟରେ ଗୋଟିଏ ପାଠାଗାର ଥିଲା । କକା ସେଠି ଗୋଟିଏ କଣ୍ଟ୍ରୋଲ ଦୋକାନ ଖୋଲାଇ ଦେଲେ । ମୁଁ ଏହାର ବିରୋଧ କରି ବନମାଳିପୁର ହାଟରେ ଗୋଟିଏ ସଭା କଲି । ସାଧାରଣ ସଭାରେ ଭାଷଣ ଦେବା ସେଇ ଥିଲା ମୋ ଜୀବନରେ ପ୍ରଥମ । ମୋତେ ଏତେ

ପରିମାଣରେ ଜନ ସମର୍ଥନ ମିଳିଲା ଯେ କକା ବାଧ୍ୟ ହୋଇ ସେଠାରୁ କଣ୍ଟ୍ରୋଲ ଦୋକାନ ଉଠାଇନେଲେ ଏବଂ ଆମେ ପିଲାମାନେ ପୁନର୍ବାର ପାଠାଗାର ଚାଲୁ କଲୁ । ତେବେ ବ୍ୟକ୍ତିଗତ ଜୀବନରେ କକାଙ୍କ ପ୍ରତି ମୋର ସମ୍ମାନବୋଧ ପୂର୍ବପରି ଅତୁଟ ରହିଥିଲା । ମୋ ଦ୍ୱାରା ସେ ଏହିଭଳି ଅପଦସ୍ତ ହୋଇଥିଲେ ମଧ୍ୟ ବ୍ୟକ୍ତିଗତ ଜୀବନରେ ମୋ ପ୍ରତି ତାଙ୍କ ମନରେ କୌଣସି ତିକ୍ତତା ସୃଷ୍ଟି ହୋଇନଥିଲା । ମୁଁ କଲେଜରେ ପାଠ ପଢ଼ିଲାବେଳେ ସେ ଟଙ୍କା ଯୋଗାଉଥିଲେ ଓ ଅଧିକ ପଢ଼ିବା ପାଇଁ ସେ ଟଙ୍କା ଦେବେ ବୋଲି ମଧ୍ୟ ଭାଇଙ୍କୁ କହିଲେ । ମୋତେ ଲାଗୁଛି ମାସେ ଖଣ୍ଡେ ସେ ଟଙ୍କା ବନ୍ଦ କରି ଦେଇଥିଲେ । ମାତ୍ର ମୋ ବଡ଼ଭାଇ ମର୍ଦ୍ଦରାଜ ରାୟ ପୀତାମ୍ବର ମହାପାତ୍ର କକାଙ୍କୁ ଚିଠି ଲେଖିଲେ । କକା ପୁଣି ପୂର୍ବ ପରି ଟଙ୍କା ପଠାଇଲେ । ଏହିଭଳି ବ୍ୟକ୍ତିଗତ ସଂପର୍କ ଓ ଆଦର୍ଶଗତ ସଂପର୍କକୁ ପୃଥକ୍ କରି ରଖିପାରିବାର ଗଣତାନ୍ତ୍ରିକ କଳା ମୁଁ ସେହି ଯୁବାବସ୍ଥାରୁ ନିଜ ଘରୁ ଶିଖିଥିଲି । ମୋର ସେହି ପ୍ରଥମ ବିଜୟ ପରେ କିଛି ଭଲ କାମ କରିବି ଓ ଲୋକଙ୍କ ସମସ୍ୟା ସହିତ ପ୍ରତ୍ୟକ୍ଷଭାବେ ଜଡ଼ିତ ହେବି - ଏହି ସଂକଳ୍ପ ଅଧିକ ଦୃଢ଼ ହେଲା ।

ଏହା ମୋ କଟକରେ ଥିବା ବେଳର ଏକ ଘଟଣା । ବଡ଼ଭାଇ ମର୍ଦ୍ଦରାଜ ରାୟଙ୍କ ଠାରୁ ହଠାତ୍ ଖବର ପାଇଲି ଯେ ବୋଉ ଦେହ ଭୀଷଣ ଖରାପ । ସେତେବେଳକୁ ବୋଉର ଡାଏବେଟିସ୍ ବଢ଼ିଯିବା ସହିତ ତାର ଗୋଟିଏ ଆଙ୍ଗୁଠି ପାଚି ନଷ୍ଟ ହୋଇଯାଇଥାଏ । ଘରେ ପରିସ୍ଥିତି ଖୁବ୍ ଖରାପ ଆଡ଼କୁ ଗତି କଲାରୁ ସେମାନେ ମୋ ପାଖକୁ ଫୋନ୍ କଲେ ଏବଂ ମୁଁ ମଧ୍ୟ କାଳବିଳମ୍ବ ନ କରି ଗାଁରେ ପହଞ୍ଚିଗଲି । ସେଠାରେ ବୋଉର ଅବସ୍ଥା ଦେଖି ମୋର ଯାହା ମନେ ହେଲା ଯଦି ବୋଉକୁ ସେହି ଅବସ୍ଥାରେ ତୁରନ୍ତ କଟକ ବଡ଼ ଡାକ୍ତରଖାନା ଅଣା ନ ଯାଏ ତାହେଲେ ବୋଉ ହୁଏତ ବଞ୍ଚିବ ନାହିଁ । ଏଥିନେଇ ବଡ଼ଭାଇଙ୍କ ସହିତ ପରାମର୍ଶ କଲି । ସେତେବେଳେ ପୁଣି କଟକ ଆସିବା ଲାଗି ଗାଡ଼ିମଟର ଆଦୌ ସୁବିଧା ନ ଥିଲା । ବଡ଼ଭାଇ ତେଣୁ ଗୋଟିଏ ଶବାରି ଠିକ୍ କଲେ । ସେହି ଶବାରିରେ ବୋଉକୁ ଭୁବନେଶ୍ୱର ରେଳଷ୍ଟେସନ ପର୍ଯ୍ୟନ୍ତ (ପ୍ରାୟ ଆମଘରଠୁ ଏହା ୨୦ କି.ମି. ଦୂର) ଅଣାଗଲା । ଏବେ ମଧ୍ୟ ମୋର ସ୍ପଷ୍ଟ ମନେ ଅଛି ମୁଁ ଏବଂ ମୋର ବଡ଼ଭାଇ ଶବାରିର ଦୁଇପାଖରେ ଚାଲି ଚାଲି ରେଳଷ୍ଟେସନ ପର୍ଯ୍ୟନ୍ତ ଆସିଥିଲୁ ଏବଂ ସେଠାରୁ ଟ୍ରେନ୍ ଚଢ଼ି କଟକ ବଡ଼ ଡାକ୍ତରଖାନାରେ ପହଞ୍ଚିଥିଲୁ । ସେତେବେଳେ ମେଡ଼ିକାଲର ସୁପରିଣ୍ଟେଣ୍ଡେଣ୍ଟ ଥାଆନ୍ତି ଡଃ. କାଶୀନାଥ ମିଶ୍ର । ସେ ଜଣେ ଭଲ ଡାକ୍ତର ମଧ୍ୟ । ସେ ବୋଉକୁ ଦେଖି କହିଲେ ବୋଉର ଯଦି ଆଙ୍ଗୁଳି କଟା ନ ଯାଏ ତାହେଲେ ସେ ହୁଏତ ବଞ୍ଚିବା ଅସମ୍ଭବ ହୋଇପଡ଼ିବ । ଅଗତ୍ୟା ଡାକ୍ତରଙ୍କ ପରାମର୍ଶ ଅନୁସାରେ ବୋଉର ଆଙ୍ଗୁଳି କଟାଗଲା ଓ ସେ ବଞ୍ଚିଲା ।

ପୂର୍ବରୁ ରେଭେନ୍‌ସା କଲେଜର ଯେଉଁ ଛାତ୍ର ଆନ୍ଦୋଳନ କଥା ବର୍ଣ୍ଣନା କରିଛି ସେଇ ଛାତ୍ର ଆନ୍ଦୋଳନରୁ ମୋର ରାଜନୈତିକ ଜୀବନର ମୂଳଦୁଆ ପଡିଲା । ଛାତ୍ର ଆନ୍ଦୋଳନରେ ମୁଁ

ସେବେଠାରୁ ଖୁବ୍ ସକ୍ରିୟ ହୋଇ ପଡ଼ିଲି । ଏଠି ଉଲ୍ଲେଖଯୋଗ୍ୟ ଯେ ମୋ ବଡ଼ ଭାଇ ଏ ଦିଗରେ ମୋତେ ସାହାଯ୍ୟ କରୁଥିଲେ ।

ଅଗଷ୍ଟ ୯, ୧୯୪୨ରେ ଗାନ୍ଧିଜୀ ଗିରଫ ହୋଇଯିବାପରେ ଯେଉଁମାନେ ଆନ୍ଦୋଳନକୁ ଚଳାଇ ରଖିଲେ ସେମାନଙ୍କ ଭିତରୁ ମୁଁ ତିନିଜଣଙ୍କ ନାଁ ଉଲ୍ଲେଖ କରିବି । ଏମାନେ ୧୯୪୨ ଭାରତ ଛାଡ଼ ଆନ୍ଦୋଳନକୁ ଚଳାଇ ରଖିଥିଲେ । ଏ ତ୍ରିମୂର୍ତ୍ତି ହେଲେ ଜୟପ୍ରକାଶ ନାରାୟଣ, ରାମମନୋହର ଲୋହିଆ ଏବଂ ଅରୁଣା ଆସଫ୍ ଅଲ୍ଲୀ । ଗାନ୍ଧିଜୀ ଗିରଫ ହୋଇଯିବାପରେ ଏ ତିନି ନେତା ଭାରତର ପ୍ରଗତିଶୀଳ ଯୁବସମାଜ ନିକଟରେ ପ୍ରେରଣାର ଉତ୍ସ ହୋଇଯାଇଥିଲେ । ୧୯୪୨ ଆନ୍ଦୋଳନରେ ଏମାନେ ଯେଉଁ ସାହସ, ତ୍ୟାଗ ଓ ନିଷ୍ଠା ପ୍ରଦର୍ଶନ କଲେ ତାହା ଦେଶଭକ୍ତ ଯୁବ ସମାଜର ହୃଦୟତନ୍ତ୍ରୀକୁ ସ୍ପର୍ଶ କଲା ।

ଆମର ସୌଭାଗ୍ୟକୁ ଜୟପ୍ରକାଶଜୀ ଏବଂ ଡ. ଲୋହିଆ ଉଭୟ ଆଗପଛ ହୋଇ ଓଡ଼ିଶା ଗସ୍ତରେ ଆସିଲେ । ଜୟପ୍ରକାଶଙ୍କ ଗସ୍ତକୁ କମ୍ୟୁନିଷ୍ଟ ପାର୍ଟି ବିରୋଧ କରୁଥାଏ । ଆମେ କିନ୍ତୁ ତାଙ୍କୁ ବୀରର ସମ୍ମାନ ଦେଇଥିଲୁ । ତାପରେ ୧୯୪୮ ସାଲରେ ଲୋହିଆ (ଯେକି ସୋସାଲିଷ୍ଟ ପାର୍ଟିର କେନ୍ଦ୍ରୀୟ କାର୍ଯ୍ୟାଳୟ ତରଫରୁ ଓଡ଼ିଶା ଦାୟିତ୍ୱରେ ଥିଲେ) ଓଡ଼ିଶା ଗସ୍ତରେ ଆସିଲେ । ସେ ଆସି ବାଲେଶ୍ୱରରେ ପହଞ୍ଚିଲେ । ସେତେବେଳେ ସମାଜବାଦୀମାନଙ୍କର ଗୋଟାଏ ପକ୍ଷରେ କମ୍ୟୁନିଷ୍ଟମାନଙ୍କ ସହିତ ଓ ଅପର ପକ୍ଷରେ ରକ୍ଷଣଶୀଳ କଂଗ୍ରେସ ନେତାମାନଙ୍କ ସହିତ ଆଦର୍ଶଗତ ସଂଘର୍ଷ ଚାଲିଥାଏ । ୧୯୪୬ରେ ସୋସାଲିଷ୍ଟମାନେ କଂଗ୍ରେସ ଛାଡ଼ିଦେଲେ । ତତ୍କାଳୀନ କଂଗ୍ରେସ ସଂପାଦକ ଶଙ୍କର ରାଓ ଦେଓ ଲୋହିଆଙ୍କୁ ବାଛନ୍ଦ କରିବା ପାଇଁ କଂଗ୍ରେସ ବାଲାଙ୍କୁ ଆନୁଷ୍ଠାନିକ ଭାବେ ସର୍କୁଲାର୍ ପଠାଇଥାଆନ୍ତି । ସେତେବେଳେ ଓଡ଼ିଶାର ପ୍ରଧାନମନ୍ତ୍ରୀ ଥାଆନ୍ତି ଡ: ମହତାବ । କଂଗ୍ରେସ ତରଫରୁ ଡ: ଲୋହିଆଙ୍କୁ ଆତିଥ୍ୟ ଦିଆଗଲା ନାହିଁ ଓ ବାଛନ୍ଦ କରାଗଲା । ସମାଜବାଦୀ ନେତା ରବୀନ୍ଦ୍ରମୋହନ ଦାସ ଡ: ଲୋହିଆଙ୍କୁ ସ୍ୱାଗତ କରି ଟ୍ରକ୍‌ରେ ନେଇଯାଇଥିଲେ ।

ଆମେ ପ୍ରାୟ ଶହେଜଣ ଛାତ୍ର ଡ: ଲୋହିଆଙ୍କୁ ଭେଟିବାକୁ ବାଲେଶ୍ୱର ଗଲୁ । ସେଇ ପ୍ରଥମ ଭେଟରୁ ହିଁ ମୁଁ ଧରିନେଲି ମୋ ଭବିଷ୍ୟତ ଜୀବନର ନେତା । ମୋର ଯେଉଁ ଜୀବନ ଦର୍ଶନ ଗଢ଼ି ଆସୁଥିଲା ସେ ତାଙ୍କ ଭାଷାରେ ସତେକି ସେଇ ସବୁର ପ୍ରଖ୍ୟାପନ କଲେ । ସେଇଦିନରୁ ସେ ମୋ ନେତା ରହିଲେ । ଆମେ ଯେତେବେଳେ ତାଙ୍କ ନିକଟକୁ ଗଲୁ ସେ ଆମକୁ ଗୋଟିଏ ପ୍ରଶ୍ନ କଲେ, "ତୁମେ ରିକ୍ସାବାଲାକୁ କ'ଣ ବୋଲି ସମ୍ବୋଧନ କର ?" ଭାରି ମାମୁଲି ପ୍ରଶ୍ନଟିଏ ଭଳି ଲାଗୁଥିଲେ ମଧ୍ୟ ଏହାର ଗଭୀର ତାତ୍ପର୍ଯ୍ୟ ରହିଥିଲା । ଆମେ ତାଙ୍କ ପ୍ରଶ୍ନର ଉତ୍ତର ଦେଲୁ, "ଆମେ 'ତୁ' ବୋଲି ସମ୍ବୋଧନ କରୁ ।" ସେଥିରୁ ସେ କହିଲେ, "ଗାନ୍ଧି ବିନା ସମାଜବାଦ ସମ୍ଭବ ନୁହେଁ । ତମଠାରୁ ଯିଏ ତଳେ ଅଛି, ଯିଏ ଫୁଲ୍‌ପ୍ୟାଣ୍ଟ୍ ପିନ୍ଧେ ନାହିଁ, ଧୋବଧାବଳିଆ ନୁହେଁ ସେମାନଙ୍କୁ

'ତୁ' ବୋଲି ସମ୍ବୋଧନ କରିବ ଆଉ ଧନୀ, କୋଟିପତିକୁ ଆପଣ ବୋଲି ସମ୍ବୋଧନ କରିବ । ଏଥିରେ ଗୋଟିଏ ସାଆନ୍ତିଆ ମାନସିକତା ପ୍ରତିଫଳିତ ହେଉଛି । ଏ ମାନସିକତା ନ ବଦଳାଇଲେ ସମାଜବାଦ ହୋଇପାରିବ ନାହିଁ । ଏଣିକି ଦରିଦ୍ର ଲୋକଙ୍କୁ 'ଆପଣ' ସମ୍ବୋଧନ କରିବାକୁ ପଡ଼ିବ ।"

୧୯୪୫ରେ ଜୟପ୍ରକାଶ ନାରାୟଣ ଓଡ଼ିଶା ଆସିବାର ଦୁଇମାସ ପୂର୍ବରୁ ତାଙ୍କୁ ଗୋଟିଏ ଥଳି ଭେଟି ଦିଆଯିବା ସ୍ଥିର ହୋଇଥିଲା । ସେ ଆସିବା ପରେ ତାଙ୍କୁ କୋଡ଼ିଏ ହଜାର ଟଙ୍କାର ଗୋଟିଏ ଥଳି ଭେଟି ଦିଆଗଲା । ଏଥିପାଇଁ ଯେଉଁ ଉପାୟରେ ଚାନ୍ଦା ଆଦାୟ ହୋଇଥିଲା ସେଇଟା ଏଠି ଉଲ୍ଲେଖଯୋଗ୍ୟ । ତରୁଣ ସମାଜବାଦୀ ସଂଘ ତରଫରୁ ଆମେ ଠିକ୍ କଲୁ ଯେ ଆମେ କଟକ ସହରର ଗଳିକନ୍ଦି ଖୋଳ କରତାଳ ଧରି ବୁଲିବୁ । ଗୀତ ଗାଇ ଚାନ୍ଦା ଆଦାୟ କରିବୁ । ସେୟା କଲୁ । ସେତେବେଳେ ଆମେ ଯେଉଁ ସବୁ ଗୀତ ଗାଉଥିଲୁ ସେଥିରୁ ଗୋଟିକର ଗୋଟିଏ ପଦ ମନେ ପଡୁଛି:

"ଉଠରେ ଜନତା ହସି ଜୟପ୍ରକାଶର ରଣଦୁନ୍ଦୁଭି ବାଜିଲାଣି କାନେ ଆସି ।"

ଆମେ ପୁଅଝିଅ ଏକାଠି ମିଶି ଏ ଚାନ୍ଦା ଆଦାୟ ଅଭିଯାନରେ ଯାଉଥିଲୁ । ଝିଅମାନଙ୍କ ଭିତରେ ଥିଲେ ଶ୍ୟାମଳୀ ଲାହିଡ଼ି (ଯେ କି ପରବର୍ତ୍ତୀ ଜୀବନରେ ଡ: କୁଳମଣି ମହାପାତ୍ରଙ୍କୁ ବିବାହ କରି ଶ୍ୟାମଳୀ ମହାପାତ୍ର ହେଲେ) । ଶ୍ୟାମଳୀ ମହିଳା କଲେଜର ଛାତ୍ରୀ ଥିବାବେଳେ କଂଗ୍ରେସ ପ୍ରାର୍ଥୀକୁ ହରାଇ କଟକ ପୌରସଭାକୁ ନିର୍ବାଚିତ ହୋଇଥିଲେ । ମୋର ଇତିହାସ ଅଧ୍ୟାପକ ପ୍ରଫେସର ଘନଶ୍ୟାମ ଦାଶଙ୍କ ଝିଅ ଇଲା ଦାଶ (ପରେ ଶିଳ୍ପପତି ବଂଶୀଧର ପଣ୍ଡାଙ୍କୁ ବିବାହ କରି ଇଲା ପଣ୍ଡା ହେଲେ) ଜୟପ୍ରକାଶଙ୍କ ପାଇଁ ଚାନ୍ଦା ଆଦାୟ କରିବା ଅଭିଯାନରେ ଯୋଗ ଦେଇଥିଲେ । ସେତେବେଳେ ସେ ୯ମ କି ୧୦ମ ଶ୍ରେଣୀର ଛାତ୍ରୀ । ମୁଁ ନିଜେ ତାଙ୍କ ଘରକୁ ଯାଇ ସାର୍‌ଙ୍କୁ କହିଲି "ସାର୍, ଜୟପ୍ରକାଶଜୀଙ୍କୁ ଥଳି ଭେଟି ଦେବା ପାଇଁ ଆମେ ଚାନ୍ଦା ଆଦାୟ କରୁଛୁ । ଇଲାକୁ ପଠାନ୍ତୁ । ଆମ ସାଙ୍ଗରେ ଚାନ୍ଦା ଆଦାୟ କରିବାକୁ ଯିବ ।" ପ୍ରଫେସର ଦାଶ ଇଲାକୁ ଡାକି କହିଲେ, "ତୁ ସେମାନଙ୍କ ସାଙ୍ଗରେ ଜୟପ୍ରକାଶ ପାଣ୍ଠି ପାଇଁ ଚାନ୍ଦା ଆଦାୟ କରିବାକୁ ଯା ।" ସେତେବେଳେ ଝିଅପିଲାଙ୍କ ଅଭିଭାବକମାନଙ୍କର ଆମ ଉପରେ ଏତିକି ବିଶ୍ୱାସ ଥିଲା । ମନେ ପଡୁଛି: ସେହି ଚାନ୍ଦା ଆଦାୟ କାର୍ଯ୍ୟରେ ଆମ ସହିତ ଥିଲେ ସ୍ୱର୍ଗତ ମିହିର ସେନ୍ ଯିଏକି ପରବର୍ତ୍ତୀ କାଳରେ ବାରିଷ୍ଟର ହେଲେ ଓ ଇଂଲିଶ୍ ଚାନେଲ୍ ସନ୍ତରଣ କରି ପୃଥିବୀ ପ୍ରସିଦ୍ଧ ହୋଇଗଲେ । ଥିଲେ ଆଜିର ପ୍ରସିଦ୍ଧ କଳାକାର ଶାରଦାଚରଣ ନାୟକ । ଆମେ ତରୁଣ ସମାଜବାଦୀ ସଂଘ ତରଫରୁ ଦୁଇ ହଜାର ଟଙ୍କା ଜୟପ୍ରକାଶ ପାଣ୍ଠିକୁ ଦେଇପାରିଥିଲୁ ।

ସେତେବେଳେ ନେତାଜୀ ସୁଭାଷ ବୋଷଙ୍କ ଆଜାଦ୍ ହିନ୍ଦ୍ ଫୌଜର ତିନିଜଣ ସେନାପତି- ସେହଗଲ୍, ଧୀଲୋନ୍ ଓ ସାହାନୱାଜ୍ ଖାଁଙ୍କର ବିଚାର ଇଂରେଜ ସରକାର

କରୁଥାଆନ୍ତି ଦିଲ୍ଲୀ ଲାଲକିଲ୍ଲାରେ । ସେ ତିନିଜଣଙ୍କୁ ଖଲାସ କରିବା ପାଇଁ କଟକରେ ବେଶ୍ ଗୋଟାଏ ଆନ୍ଦୋଳନ ହୋଇଥିଲା । କଟକ ନେତାଜୀଙ୍କ ଜନ୍ମସ୍ଥାନ ହୋଇଥିବାରୁ ଏ ଆନ୍ଦୋଳନ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ସେତେବେଳେ ନେତାଜୀଙ୍କ ପ୍ରତି କଟକବାସୀଙ୍କର ଯେପରି ଶ୍ରଦ୍ଧା ଓ ଭକ୍ତି ଭାବ ଥିଲା ତାହା ଏବେ ମନେ ପଡ଼ିଲେ ଶିହରଣ ଜାତ ହେଉଛି ।

ଏଇ ଛାତ୍ର ଜୀବନର ଆଉ ଏକ ଅବିସ୍ମରଣୀୟ ସ୍ମୃତି ହେଲା ମୋର ଦୁଇଥର ଗାନ୍ଧୀ ଦର୍ଶନ । ପ୍ରଥମ ଥର ମୁଁ ଗାନ୍ଧିଜୀଙ୍କୁ ଦେଖିଥିଲି ଖ୍ରୀ: ୧୯୩୭ରେ, ଯେତେବେଳେ ଗୋପରେ ଚତୁର୍ଥ ଶ୍ରେଣୀରେ ପଢୁଥିଲି । ସେତେବେଳେ ଡେଲାଙ୍ଗର ବେରବୋଇ ଗାଁରେ ଗାନ୍ଧିଜୀ ପ୍ରାୟ୍ ଏକ ସପ୍ତାହ ରହିଲେ । କାହିଁ ଦୂରଦୂରାନ୍ତରରୁ ଲୋକେ ଛୁଟି ଥାଆନ୍ତି ଗାନ୍ଧିଜୀଙ୍କ ଦର୍ଶନ ପାଇଁ । ତାଛଡ଼ା ସେଠି ଗୋଟିଏ ସୁନ୍ଦର କୁଟୀର ଉଦ୍ୟୋଗ ପ୍ରଦର୍ଶନୀ ମଧ୍ୟ ହେଉଥାଏ । ଆମ ଘରୁ ମୋ ବୋଉ ଓ ଆମେ ଭାଇ, ଭଉଣୀ ଶଗଡ଼ ଗାଡ଼ି କରି ସେଠି ପହଞ୍ଚିଲୁ । ସେଠି ଗାନ୍ଧିଜୀଙ୍କ ବକ୍ତୃତା ଶୁଣିଲୁ ଓ ପ୍ରଦର୍ଶନୀ ଦେଖି ଫେରିଲୁ ।

ତେବେ ମୋ ପାଇଁ ଅଧିକ ରୋମାଞ୍ଚକର ସ୍ମୃତି ହେଲା ମୋର କଲେଜ ଜୀବନରେ ଗାନ୍ଧିଦର୍ଶନ । ମୁଁ ତୃତୀୟ ବାର୍ଷିକ ଶ୍ରେଣୀରେ ପଢୁଥାଏ । ରେଭେନ୍‌ସା କଲେଜର ପୂର୍ବ ଛାତ୍ରାବାସରେ ରହୁଥାଏ । ଗାନ୍ଧିଜୀ ୧୯୪୨ ଆନ୍ଦୋଳନ ପରେ ସଦ୍ୟ ଖଲାସ ହୋଇ ଥାଆନ୍ତି । ମେଦିନୀପୁରରେ ଇଂରେଜ ସରକାରଙ୍କ ତରଫରୁ ଆନ୍ଦୋଳନକାରୀଙ୍କ ଉପରେ ଯେଉଁ ଅତ୍ୟାଚାର ହୋଇଥାଏ ତାକୁ ତଦାରଖ କରିବାକୁ ସେ ଆସିଥାଆନ୍ତି । ଆମେ ଶୁଣିବାକୁ ପାଇଲୁ ଯେ ଗାନ୍ଧିଜୀ ସେଠାରୁ ମାଡ୍ରାସ୍ ମେଲ୍‌ରେ ବ୍ରହ୍ମପୁର ଯିବେ । କଟକ ଷ୍ଟେସନରେ ତାଙ୍କୁ ଦର୍ଶନ କରିବୁ - ଏହି ଅଭିଳାଷ ନେଇ ଅର୍ଦ୍ଧ ରାତ୍ରରେ କଟକ ଷ୍ଟେସନରେ ପହଞ୍ଚିଗଲୁ । କିନ୍ତୁ ଶୁଣିଲୁ ତାଙ୍କ ଟ୍ରେନ୍ କଟକ ଷ୍ଟେସନରେ ଅଟକିବାର ନାହିଁ । ମାତ୍ର ସେତେବେଳକୁ କଟକ ରେଳ ଷ୍ଟେସନ ଲୋକାରଣ୍ୟ । ଲୋକେ ନଛୋଡ଼ବନ୍ଧା । ଗାଡ଼ି ଅଟକାଇବା ପାଇଁ ଲୋକେ ରେଳଧାରଣା ଉପରେ ଶୋଇଗଲେ । ଗାଡ଼ି କଟକରେ ପହଞ୍ଚିଲା ରାତି ପ୍ରାୟ୍ ଦୁଇଟା କି ସାଢ଼େ ଦୁଇଟା ବେଳେ । ଲୋକଙ୍କୁ ଧାରଣା ଉପରେ ଦେଖି ଗାଡ଼ି ସ୍ୱାଭାବିକ ଭାବେ ଅଟକିଗଲା । ଗାନ୍ଧିଜୀ ତ ସବୁବେଳେ ୩ୟ ଶ୍ରେଣୀରେ ଯାତାୟତ କରୁଥିଲେ । ଲୋକେ ତାଙ୍କ ଡବା ସମ୍ମୁଖରେ ଗଦା ହୋଇଗଲେ । ଗାନ୍ଧିଜୀ ନିଦରୁ ଉଠି ଅଗତ୍ୟା ଡବା ଦୁଆରମୁହଁକୁ ଆସିଲେ । ମୁଁ ରୋମାଞ୍ଚିତ ହେଲି । କାରଣ ମୁଁ ଠିକ୍ ଗାନ୍ଧିଜୀଙ୍କ ପାଖରେ ଛିଡ଼ା ହୋଇଥାଏ । ପ୍ରଥମେ ଗାନ୍ଧିଜୀ କଟକବାସୀଙ୍କୁ ମୃଦୁ ଭର୍ତ୍ସନା କଲେ । ସେତେବେଳେ କଟକ ଓଡ଼ିଶାର ରାଜଧାନୀ ଥାଏ । ସେ ଭଦ୍ରଖବାସୀଙ୍କ ସହିତ କଟକବାସୀଙ୍କୁ ତୁଳନା କରି ଭଦ୍ରଖବାସୀ କିପରି ତାଙ୍କୁ ଭଦ୍ର ଓ ଶୃଙ୍ଖଳିତ ବ୍ୟବହାର କଲେ ତା'ର ବର୍ଣ୍ଣନା ଦେଲେ । ମୃଦୁ ଭର୍ତ୍ସନା ପରେ ସେ ହସ୍ତ ପ୍ରସାରଣ କଲେ ହରିଜନ ପାଣ୍ଠିକୁ ସାହାଯ୍ୟ କରିବା ପାଇଁ । ମନେ ଅଛି, ହଜାର ହଜାର ଲୋକ, ଯାହା ପାଖରେ ଯାହା ଥିଲା, ଦାନ

କରିଦେଲେ । ମୁଁ ଦୁଇ ପକେଟ୍‌ରେ ହାତ ଭର୍ତ୍ତି କରି ଯାହା ପାଇଲି ତାକୁ ଗାନ୍ଧିଜୀଙ୍କ ହାତକୁ ବଢ଼ାଇ ଦେଲି । ସେଦିନ ମୁଁ ନିଜକୁ ଆହୁରି ଭାଗ୍ୟବାନ ମଣିଲି । କାରଣ ସେହି ଜନସମୁଦ୍ର ଭିତରେ ଗାନ୍ଧିଜୀଙ୍କ ହାତ ସ୍ପର୍ଶ କରିବାର ଦୁର୍ଲଭ ସୌଭାଗ୍ୟ ମୋତେ ଜୁଟିଥିଲା । ୧୯୪୮ରେ ଗାନ୍ଧିଜୀଙ୍କୁ ହତ୍ୟା କରାଗଲାବେଳେ ମୁଁ ବି.ଏ. ପରୀକ୍ଷା ଦେଉଥିଲି ।

ଜାତିର ପିତା ମହାତ୍ମାଗାନ୍ଧୀଙ୍କ ମୃତ୍ୟୁ ଦିବସଟି ମୋ ପାଇଁ ଏକ ଅଭୁଲା ସ୍ମୃତି ହୋଇ ରହିଛି । ସେତେବେଳକୁ ମୁଁ ବି.ଏ. ପରୀକ୍ଷା ଦେବା ପାଇଁ ନିଜକୁ ପ୍ରସ୍ତୁତ କରୁଥାଏ ଏବଂ ରେଭେନ୍‌ସା କଲେଜ ପଶ୍ଚିମ ଛାତ୍ରାବାସରେ ରହୁଥାଏ । ମୁଁ ଇତିହାସ ଅନର୍ସର ଛାତ୍ର ଥିଲି । ପରୀକ୍ଷା ଯୋଗୁଁ ମୁଁ ଓ ମୋର ସହପାଠୀମାନେ ଖୁବ୍ ଜୋର୍‌ସୋର୍‌ରେ ପାଠ ପଢ଼ାପଢ଼ିରେ ଲାଗି ଯାଇଥାଉ, ବୁଲାବୁଲି ପ୍ରାୟତଃ ନ ଥାଏ । ସନ୍ଧ୍ୟା ସମୟରେ ଚା' ଜଳଖିଆ ଖାଇବା ପାଇଁ ଯାହା ଆମେ ବାହାରକୁ ଆସୁଥିଲୁ । ସେଦିନ ଥିଲା ଜାନୁୟାରୀ ୩୦ ତାରିଖ, ୧୯୪୮ ମସିହା । ପ୍ରତିଦିନ ପରି ମୁଁ କଲେଜଛକରେ ଥିବା ମାରୱାଡ଼ୀ ଦୋକାନରେ ଜଳଖିଆ ଖାଉଛି, ହଠାତ୍ ଲକ୍ଷ୍ୟ କଲି ଲୋକମାନେ ଅସ୍ତବ୍ୟସ୍ତ ହୋଇ ଏଣେତେଣେ ଦୌଡ଼ାଦୌଡ଼ି କରୁଛନ୍ତି ଏବଂ ସମସ୍ତଙ୍କ ମୁହଁରେ ସେଇ ଗୋଟିଏ କଥା 'ମହାତ୍ମାଗାନ୍ଧୀ ମରିଗଲେ' । ସେମାନଙ୍କ କଥାକୁ ମୁଁ ହଠାତ୍ ବିଶ୍ୱାସ କରିପାରିଲି ନାହିଁ । ଅଧା ଖାଇଥିବା ଜଳଖିଆକୁ ଫୋପାଡ଼ି ଦୌଡ଼ିଲି ହଷ୍ଟେଲ୍‌କୁ । ସେଠାରେ ପହଞ୍ଚିବା ବେଳକୁ ଅବସ୍ଥା ତଦ୍ରୂପ । ସମସ୍ତେ ଶୋକ ଗଦ୍‌ଗଦ ହୋଇ କହୁଛନ୍ତି 'ଗାନ୍ଧୀ ମରିଗଲେ' । ସେତେବେଳକୁ ଛାତ୍ରାବାସ କମନ୍‌ରୁମ ଭିତରେ ପ୍ରାୟ ୪୦୦/୫୦୦ ପିଲା ରୁଣ୍ଡ ହୋଇଯାଇଥାନ୍ତି । ସମଗ୍ର ବାତାବରଣ ଏକାବେଳକେ ଶୋକାକୁଳ, ସମସ୍ତେ ଭେଁ ଭେଁ ହୋଇ କାନ୍ଦୁଥାନ୍ତି । ରେଡ଼ିଓରୁ ବାରମ୍ବାର ଗାନ୍ଧୀ ମୃତ୍ୟୁ ଖବର ପ୍ରଚାରିତ ହେବାରେ ଲାଗିଥାଏ । ଆମର ପ୍ରିୟତମ ଅଧ୍ୟାପକ ଡଃ ସତ୍ୟବାଦୀ ମିଶ୍ର (ଯିଏ କି ଆଚାର୍ଯ୍ୟ ନରେନ୍ଦ୍ର ଦେବଙ୍କ ଭକ୍ତ ଥିଲେ ଏବଂ ଜଣେ ସମାଜବାଦୀ) ସେତେବେଳକୁ ଗାନ୍ଧିଜୀଙ୍କ ଗୁଣାବଳୀ ସବୁ ପିଲାମାନଙ୍କୁ କହିଚାଲିଥାନ୍ତି । କହିବା ସମୟରେ ସେ ନିଜେ କାନ୍ଦୁଥାଆନ୍ତି ଏବଂ ତାଙ୍କ ସହିତ ପିଲାମାନେ ମଧ୍ୟ କାନ୍ଦୁଥାଆନ୍ତି । ସମଗ୍ର ଛାତ୍ରାବାସଟିରେ ମୁଁ ଏଭଳି ସ୍ଥିତି ଦେଖି ହତବାକ୍ ହୋଇଥିଲି । ଭାବିଲି ଗାନ୍ଧୀ କେଉଁଠି, ପିଲାମାନେ କେଉଁଠି, ତଥାପି ସେମାନଙ୍କ ମଧ୍ୟରେ ଏତେ ବ୍ୟାକୁଳତା ! ଏତେ ଅନ୍ତରଙ୍ଗତା ! କାହିଁକି ? କାହିଁକି ? ନିଜର ଜଣେ ପରିବାରର ଲୋକଟିଏ ଚାଲିଗଲାପରି ବୋଧ ହେଉଥିଲା ସେଦିନ ଆମ ସମସ୍ତଙ୍କ ପାଇଁ, ସମଗ୍ର ଛାତ୍ରାବାସରେ । ସେଦିନର ସେହି ଶୋକାକୁଳ ମୁହୂର୍ତ୍ତ ଏବଂ ଭାବବିହ୍ୱଳ ପରିବେଶକୁ ଆଜି ସୁଦ୍ଧା ମୁଁ ଅନ୍ତର ଭିତରେ ସାଇତି ରଖିଛି ।

•

***ଅନ୍ୱେଷାର ଆକାଶ,*** ଲୋହିଆ ଏକାଡେମୀ ଟ୍ରଷ୍ଟ,
ଭୁବନେଶ୍ୱର, ୨୦୦୫

# ରେଭେନ୍‌ସା କଲେଜ ଓ ପୂଜ୍ୟ ଗୁରୁଜନ

## ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ)

ଆଜିର ଓଡ଼ିଶାରେ ଯାହାକିଛି ହୋଇଛି, ଯିଏ ବା ଯାହାକିଛି ଓଡ଼ିଶାର ସାହିତ୍ୟ, ସଂସ୍କୃତି ଓ ରାଜନୀତି କ୍ଷେତ୍ରରେ କରିପାରିଛନ୍ତି ସମସ୍ତେ ରେଭେନ୍‌ସା କଲେଜ ସହ ଊଣାଅଧିକେ ସଂପୃକ୍ତ । ରେଭେନ୍‌ସା କଲେଜର ନୂତନ ପାଠାଗାର ଉଦ୍‌ଘାଟନ ଅବକାଶରେ ଯଥାର୍ଥତଃ ଏକଥା କହିଥିଲେ ସେତେବେଳର କେନ୍ଦ୍ର ଶିକ୍ଷାମନ୍ତ୍ରୀ ତ୍ରିଗୁଣା ସେନ୍ ।

କଟକକୁ ଇଏ ଥିଲା ମୋର ପ୍ରଥମ ଆଗମନ । ଟିଉସନ୍‌ଟିଏ ଯୋଗାଡ଼ ହେଲେ, କଲେଜରେ ନାଁ ଲେଖାହେବ । ସ୍ୱାଧୀନତା ଲାଭ ପର୍ଯ୍ୟନ୍ତ ବସ୍ତୁତଃ ଏଇ କଲେଜଟି ଥିଲା ଓଡ଼ିଶାର ଏକମାତ୍ର କଲେଜ । ବହୁ ଜ୍ଞାନୀ, ଗୁଣୀଙ୍କ ଶିକ୍ଷାଦାନ ଓ ସାଧନାର ପୀଠ । ଓଡ଼ିଶାର ସବୁଆଡ଼ର ଛାତ୍ର ଏଠାକୁ ଉଚ୍ଚ ଶିକ୍ଷାଲାଗି ଆସୁଥିଲେ । କେତେକ ଅଭାବଗ୍ରସ୍ତ ଛାତ୍ର ଟିଉସନ୍ କରି ନିଜେ ଚଳିବା ସଙ୍ଗେ ସଙ୍ଗେ କଲେଜରେ ପାଠ ପଢ଼ନ୍ତି ବୋଲି ଶୁଣିଥିଲି । ଏମିତି ମୋର ବି ପଢ଼ା ହୋଇ ଯାଇପାରିବ । ଟିଉସନ୍‌ଟିଏ ଯୋଗାଡ଼ କରିବା ଆଶାରେ ୧୯୪୩ ମସିହା ମେ/ଜୁନ୍ ମାସରେ ମୁଁ କଟକ ଯାଇଥିଲି । କୌଣସିମତେ ଯୋଗାଡ଼ କରି ୪୦/୫୦ ଟଙ୍କା ସାଙ୍ଗରେ ଆଣିଥାଏ । ଏଇ ଅଜଣା ସହରରେ କେହି ମୋର ପରିଚିତ ନାହାନ୍ତି । ବନ୍ଧୁ ବାନ୍ଧବ ବି ନାହାନ୍ତି । କଲେଜ ଛକରେ ଥିଲା ଗୋଟିଏ ନିମ୍ନ ଧରଣର ହୋଟେଲ୍ - ତାହାର ନାମଟି ମଧ୍ୟ ଥିଲା ଅନୁରୂପ - 'ପଥିକ ବନ୍ଧୁ ହୋଟେଲ୍' । ହୋଟେଲ୍‌କୁ ଲାଗି ୩/୪ଟି ଛୋଟ କୋଠରି- ସେଇଠି ରହିଲି । ସକାଳୁ ନିତ୍ୟକର୍ମ ସାରି ଟିଉସନ୍ ଖୋଜି ବାହାରି ପଡ଼େ । ଏଣେ ତେଣେ ବୁଲି ୧୨ଟା ବେଳକୁ ହୋଟେଲ୍‌କୁ ଫେରେ । ପାଣିଆ ଡାଲି, ରାଗ ତରକାରି ସହ କିଛି ଭାତ ଖାଇ ବିଶ୍ରାମ ନିଏ । ପୁଣି ଉପରବେଳା ବାହାରି ପଡ଼େ ଟିଉସନ୍ ଖୋଜିବାକୁ । ଏମିତି କେତେ ଦିନ କଟକ ରାଜପଥରେ ବୁଲିବା ହିଁ ସାର ହେଲା । ଏଣେ ହୋଟେଲ୍ ଖର୍ଚ୍ଚ ବାବଦରେ ମୋର ଯତ୍‌ସାମାନ୍ୟ ପୁଞ୍ଜି ସରିଆସୁଛି । ତେଣେ ପାଖେଇ ଆସୁଛି ନାଁ ଲେଖାର ଶେଷଦିନ । କ'ଣ କରିବି ? ଏଇ ସମୟରେ କଟକ ରେଳ ଷ୍ଟେସନର ଡାକ୍ତରଙ୍କ ଘରେ ଟିଉସନ୍‌ଟିଏ ଯୋଗାଡ଼ ହୋଇଗଲା - ମୁଁ କଲେଜରେ ନାଆଁ ଲେଖାଇଲି ।

ରେଲୱେ ଡାକ୍ତରବାବୁ ବଙ୍ଗୀୟ (ତାଙ୍କ ନାଁ ଭୁଲିଯାଇଛି) ତାଙ୍କର ଦୁଇଟି ପିଲା । ୩ୟ ୪ର୍ଥ ଶ୍ରେଣୀରେ ପଢ଼ନ୍ତି - ତାଙ୍କୁ ବଙ୍ଗଳାରେ ପଢ଼ାଇବାକୁ ହେବ । ମୁଁ ବଙ୍ଗଳା ପଢ଼ାଇ ପାରେ ବୋଲି ମୋତେ ପଚାରିଥିଲେ । ମୁଁ ତାଙ୍କୁ ମୋର ସମ୍ମତି ଜଣାଇଥିଲି ନିରୂପାୟ ବିବ୍ରତ ଅବସ୍ଥାରେ । ଡାକ୍ତରବାବୁଙ୍କୁ କହିଥିଲି ମୁଁ ବଙ୍ଗଳା ପଢ଼ିଜାଣେ ମାତ୍ର କହିବାରେ ସେତେବେଳେ ଅଭ୍ୟାସ ନ ଥିଲା । ମାତ୍ର ସେଇ ଛୋଟ ପିଲା ଦୁଇଟିଙ୍କ କଥାକୁ ଅନୁସରଣ କରି ଅଳ୍ପ କେତେଦିନ ମଧ୍ୟରେ ବଙ୍ଗଳା କହିବାରେ ମୁଁ ଅଭ୍ୟସ୍ତ ହୋଇଯାଇଥିଲି । କିନ୍ତୁ ଥରେ ମୋତେ ଅପ୍ରସ୍ତୁତ ହେବାକୁ ପଡ଼ିଥିଲା । ଦିନେ ପିଲାମାନଙ୍କୁ ଗୋଟିଏ ବିଷୟ ଲେଖିବାକୁ ଦେଇଥିଲି ପିଲାଏ ତାକୁ ଲେଖିଥିଲେ । ମାତ୍ର ତାହା ଭଲ ଭାବରେ ପଢ଼ି ହେଉ ନ ଥିଲା; ସେମାନଙ୍କ ଖାତାରେ ଏଠି ସେଠି କାଳି ଲାଗି ଅପରିଚ୍ଛନ୍ନ ଦେଖାଯାଉଥିଲା । ମୁଁ ତାହା ଦେଖି ହଠାତ୍ ଓଡ଼ିଆମିଶା ବଙ୍ଗଳାରେ କହି ପକାଇଲି- "ଯ୍ୟମନ ବିଲବିଲା କରେ କ୍ୟାନୋ ଲିଖ୍‌ଛ ?" ପିଲାଦୁଇଟି ଗାଲରେ ହାତରଖି ବିସ୍ମୟରେ ମୋତେ ଚାହିଁ ରହିଲେ ।" ପଚାରିଲେ- "ମାଷ୍ଟର ମଶାୟ୍ 'ବିଲ୍‌ବିଲା' କି ?" ମୁଁ ତା'ପରେ ସେମାନଙ୍କୁ ବୁଝାଇ କରି କହିଲି- ଏଠି କାଳି ପଡ଼ିଛି, ଭଲ ଦେଖାଯାଉନି । ପଢ଼ି ମଧ୍ୟ ହେଉ ନାହିଁ ଇତ୍ୟାଦି । ପିଲାଦୁହେଁ ଆଶ୍ୱସ୍ତି ବୋଧ କରି କହିଲେ- "ଓ ଆପ୍‌ନି ବଲତେ ଚେୟେଛେନ ହିଜିବିଜି ହୋଏ ଗେଛେ ? ତାଇ ନା ? - ଲଜ୍ଜିତ ହୋଇ କହିଲି- "ହାଁ ହାଁ ତାଇ ।"

ପ୍ରକୃତରେ ସେଇ ଛୋଟ ପିଲା ଦୁଇଟି ହିଁ ଥିଲେ ମୋର ଗୁରୁଭଳି । ସେଇମାନଙ୍କ ଯୋଗୁଁ ହିଁ ମୁଁ ବଙ୍ଗଳା କହିବାର ଅଭ୍ୟସ୍ତ ହୋଇଯାଇଥିଲି । ୨/୩ ମାସ ପରେ ଡାକ୍ତରବାବୁଙ୍କର କଟକରୁ ବଦଳି ହୋଇଗଲା । ମୋର ମାସିକ ଉପାର୍ଜନ ଆଉ ନାହିଁ । ଯାହାହେଉ ଖୁବ୍ ଶୀଘ୍ର ମୋତେ କଟକରେ ଆଉ ଗୋଟିଏ ଭଲ ଟିଉସନ୍ ମିଳିଯାଇଥିଲା । ସେଠାରେ ମଧ୍ୟ ମୋତେ ବଙ୍ଗଳାରେ ପଢ଼ାଇବାକୁ ହେଉଥିଲା ।

ଏଇ ସମୟରେ ଆମେ ୩ ଜଣ ବନ୍ଧୁ ତାଳଦଣ୍ଡା କେନାଲ କୂଳରେ ଗୋଟିଏ ଭଲ ଜାଗାରେ ମେସ୍ କରି ରହିଥିଲୁ । ମାତ୍ର ସେତେବେଳର ଯୁଦ୍ଧକାଳୀନ ଅବସ୍ଥା ଯୋଗୁଁ ଆମେ ବହୁ ଅସୁବିଧା ଭୋଗ କରୁଥିଲୁ । ଖାଦ୍ୟ ପଦାର୍ଥ ଦାମ୍ ହଠାତ୍ ବଢ଼ି ଯାଇଥିଲା । ସଙ୍ଗେ ସଙ୍ଗେ ଅଟା, ଚିନି, ସୁଜି, କିରାସିନି ପ୍ରଭୃତି ଦୁଃପ୍ରାପ୍ୟ ହୋଇପଡ଼ିଥିଲା । କଣ୍ଟ୍ରୋଲ ବ୍ୟବସ୍ଥାର ପ୍ରଚଳନ ହୋଇଥିଲା । କେବଳ ରେସନ୍‌କାର୍ଡ ଦେଖେଇଲେ ଅଳ୍ପ ପରିମାଣ କାଗଜ, ଲୁଗା, ଚିନି ପ୍ରଭୃତି ମିଳୁଥିଲା । ନିଷ୍ପ୍ରଦୀପ ବ୍ୟବସ୍ଥା ଯୋଗୁଁ କଟକ ସହର ରାତିରେ ଘୋର ଅନ୍ଧାରରେ ଆଚ୍ଛନ୍ନ ହୋଇ ରହୁଥିଲା । କିରାସିନି ଅଭାବରୁ ଆମେ ଅନେକ ଦିନ ରାତିରେ ପଢ଼ିପାରୁ ନ ଥିଲୁ । ରାସ୍ତାରେ ସାବଧାନରେ ଯିବାକୁ ପଡୁଥିଲା । ସେଠାରେ ମିଲିଟାରୀ ଗାଡ଼ିସବୁ ପ୍ରବଳ ବେଗରେ ଛୁଟୁଥାନ୍ତି । ସହର ଭିତରେ ଠାଆକୁ ଠାଆ ତିଆରି ହୋଇଥାଏ ବ୍ୟାଫଲ ୱାଲ୍; ଖୋଲା ଯାଇଥାଏ ଅନେକ ଟ୍ରେଞ୍ଚ । ବୋମା

ପଡ଼ିଲେ ମାଟିତଳେ ବା ବ୍ୟାଫଲ୍ ୱାଲ ପଛପଟେ ଆଶ୍ରୟ ନେବାପାଇଁ ଏଇ ବ୍ୟବସ୍ଥା । ସ୍ଥାନେ ସ୍ଥାନେ ସତର୍କ ଘଣ୍ଟି ବା ସାଇରେନ୍ ସବୁ କୋଠା ଉପରେ ଖଞ୍ଜା ଯାଇଥାଏ । ଜନ ସାଧାରଣଙ୍କୁ ଅଭ୍ୟସ୍ତ କରିବାଲାଗି ହଠାତ୍ ସେଇ ସାଇରେନ୍ ବାଜିଉଠେ । ଲୋକେ ଧାଇଁ ଯାଇ ସେଠାରେ ଆଶ୍ରୟ ନିଅନ୍ତି । କଟକର ରାସ୍ତା ତ ସହଜେ ସଂକୀର୍ଣ୍ଣ । କେନାଲ ଉପରେ ଥିବା ରାସ୍ତାଟି ଚଉଡ଼ା ହୋଇ ନଥାଏ, ସେଇ ଗୋଟିଏ ମାତ୍ର ସଂକୀର୍ଣ୍ଣ ରାସ୍ତାରେ ଯା ଆସ । ବୋମା ପଡ଼ିବା ଭୟରେ ଲୋକେ ଗାଆଁରୁ ସହରକୁ ଓ ସହରରୁ ଗାଆଁକୁ ଯା ଆସ କରିବାକୁ ଆରମ୍ଭ କରି ଦେଇଥାନ୍ତି । କଟକରୁ ସେକ୍ରେଟେରିଏଟ୍ ସମ୍ବଲପୁର ଉଠିଯାଇଥାଏ । ବହୁ ରେଲ୍ ଗାଡ଼ିର ଚଳାଚଳକୁ ବନ୍ଦ କରି ଦିଆଯାଇଥାଏ । ରେଲ୍ ଷ୍ଟେସନକୁ ଗଲେ ଦେଖିବାକୁ ମିଳେ ମିଲିଟାରୀ ସୈନ୍ୟଙ୍କୁ ନେଇ ରେଲଗାଡ଼ିସବୁ କେଉଁ ଅଜ୍ଞାତ ସ୍ଥାନ ଉଦ୍ଦେଶ୍ୟରେ ପ୍ରବଳ ବେଗରେ ଛୁଟି ଚାଲିଛି । କ୍ଷତ ବିକ୍ଷତ ରାସ୍ତାରେ ପ୍ରବଳ ଧୂଳି । ଏସବୁ ଦେଖି ଆମ ଗାଆଁ କଥା ମନେ ପଡ଼େ । ଇଚ୍ଛା ହୁଏ, ପଢ଼ା ଛାଡ଼ି ସେଠାରୁ ଚାଲିଯିବି । ସେଠାରେ ବରଂ ଚାଷକରି ଚଳିବି । ମାତ୍ର ଏଇ ଧୂଳି ଧୂସର ଭୀତିପ୍ରଦ ବଡ଼ ମହରଗ ଏ କଟକ ସହରରେ ଏତେ ଅସୁବିଧାରେ ଚଳିବା ସମ୍ଭବ ହୋଇପାରିବ ନାହିଁ । ଦିନେ ପ୍ରକୃତରେ ଟଙ୍କା ଅଭାବରୁ ଦରମା ଦେଇପାରିଲିନି ଯେ ନାଆଁ କଟିଗଲା । ପଢ଼ାଛାଡ଼ି ଦେବା ମନସ୍ଥ କରି ଗାଆଁକୁ ଚାଲି ଯାଇଥିଲି । ମାତ୍ର ଦାଦା ମୋତେ ଅଳ୍ପ କିଛି ଟଙ୍କା ଦେଇ ପୁଣି କଟକ ପଠାଇଦେଲେ, ଆଇ.ଏ. ପରେ ବି.ଏ. । ଏହି ସମୟରେ ଜଗନ୍ନାଥ ବଲ୍ଲଭ ମଠ ପକ୍ଷରୁ ଯାହା ହେଉ ମୋ ଲାଗି ମାସିକ ଦଶଟଙ୍କା ସାହାଯ୍ୟ ବ୍ୟବସ୍ଥା ହୋଇପାରିଥିଲା । ମାତ୍ର ତା' ସାଙ୍ଗକୁ ଆଉ କିଛି ଟଙ୍କା ଯୋଗାଡ଼ ନ ହେଲେ କଟକରେ ରହିବା ଓ କଲେଜ ଦରମା ଖର୍ଚ୍ଚ ତୁଲାଇବା ସମ୍ଭବ ନୁହେଁ । ଏଣୁ ଟିଉସନ୍ ଥିଲା ମୋର ପ୍ରଥମ ସମ୍ବଳ । ଗାଆଁରୁ ଆସି ଟିଉସନ୍ ଅନ୍ୱେଷଣ, ଟିଉସନ୍ ମିଳିବା ଜାଗା ପାଖେ ମେସ୍‌ର ସଂଧାନ । ନିର୍ଦ୍ଧାରିତ ଟଙ୍କାରେ କୌଣସି ମତେ ନିଜକୁ ଚଳାଇବା - ଏଭଳି ଏକ ସଂକୀର୍ଣ୍ଣ ଧାରାରେ ମୋ ଜୀବନ ସେତେବେଳେ ଗତି କରୁଥିଲା । ଏମିତିଭାବେ ପ୍ରାୟ ପାଞ୍ଚ ବର୍ଷ ମୋର କଟିଥିଲା । ଯୋବ୍ରାରୁ ଆରମ୍ଭ କରି ଚାନ୍ଦିନିଚୌକ ପର୍ଯ୍ୟନ୍ତ ବିଭିନ୍ନ ସ୍ଥାନରେ ରହିବାକୁ ପଡ଼ିଥିଲା । କେତେ ପ୍ରକାର ଲୋକଙ୍କ ସଂପର୍କରେ ଆସିବାକୁ ପଡ଼ିଛି । ଟିଉସନ୍ ପାଇଁ ଅଧିକ ପରିଶ୍ରମ ଫଳରେ ପଢ଼ିବା ପାଇଁ ମୁଁ ଯଥେଷ୍ଟ ସମୟ ପାଏନି- ମୋର ବହିପତ୍ର ପ୍ରାୟ ନ ଥାଏ । ୨/୪ ଖଣ୍ଡ କୌଣସିମତେ କିଣିଥାଏ । ଆଉ ସବୁ କେବେ କେବେ ମାଗିଆଣି ପଢ଼ିବାକୁ ହୁଏ ।

୧୯୪୩ରେ ଆଇ.ଏ. ଶ୍ରେଣୀରେ ମୁଁ ଯୋଗ ଦେବାପରେ ସବୁବେଳେ ଅଭାବ ଅନଟନରେ ସମୟ କାଟିବାକୁ ପଡୁଥିଲା । ଯୁଦ୍ଧକାଳୀନ ପରିସ୍ଥିତି ଯୋଗୁଁ ସେତେବେଳେ ଛାତ୍ରମାନେ ସାଧାରଣତଃ ବହୁ ଅସୁବିଧାର ସମ୍ମୁଖୀନ ହେଉଥିଲେ । ବିଶେଷତଃ ମୋ ଭଳି ମେସ୍‌ରେ

ରହୁଥିବା ଛାତ୍ରମାନେ । ତଥାପି କଲେଜର ଶିକ୍ଷା ମୋତେ ବେଶ୍ ଆକୃଷ୍ଟ କରିଥିଲା । ଏହାର କାରଣ, ସେ ସମୟର ଶିକ୍ଷକଗୋଷ୍ଠୀଙ୍କର ଶିକ୍ଷାଦାନ । କଲେଜର ପରିଚାଳନା ସେତେବେଳେ ଥିଲା ଖୁବ୍ ସୁଶୃଙ୍ଖଳ । ଅଧ୍ୟକ୍ଷ ଥିଲେ ଡ. ପ୍ରାଣକୃଷ୍ଣ ପରିଜା । ସେ ସମୟରେ କ୍ଲାସ୍ ନ ଥିବାବେଳେ ଛାତ୍ରମାନେ କ୍ୱଚିତ୍ ବାରଣ୍ଡାରେ ବେପରୁଆ ଭାବେ ବୁଲାବୁଲି ଅଥବା ଗପସପ କରୁଥିଲେ । ଯଦିବା କେହି କେହି ବାରଣ୍ଡାରେ ବୁଲୁଥାନ୍ତି ଡ. ପରିଜାଙ୍କୁ ଦେଖିବାମାତ୍ରେ ସେମାନେ କମନରୁମ୍‌କୁ ଚାଲି ଯାଉଥିଲେ । ଶିକ୍ଷକମାନେ ଯେପରି ଯଥା ସମୟରେ କ୍ଲାସ୍‌କୁ ଯାଉଥିଲେ ସେହିପରି ନିଷ୍ଠାର ସହିତ ଅଧ୍ୟାପନା କରୁଥିଲେ । କ୍ଲାସ୍‌ରେ ଉପସ୍ଥିତ ରହିବାକୁ ମନରେ ସ୍ୱତଃ ଆଗ୍ରହ ସୃଷ୍ଟି ହେଉଥିଲା । ଆଇ.ଏ. ଶ୍ରେଣୀରେ ମୋର ବିଷୟ ଥିଲା ଅର୍ଥନୀତି ମନସ୍ତତ୍ତ୍ୱ ଓ ଓଡ଼ିଆ । ଡ. ସଦାଶିବ ମିଶ୍ର, ଦାମୋଦର ମିଶ୍ରଙ୍କ ଭାଷଣ ଭଙ୍ଗୀ ଥିଲା ଅତ୍ୟନ୍ତ ଚିତ୍ତାକର୍ଷକ । ଇଂରାଜୀ ଅଧ୍ୟାପକ ଭାବେ, ପି.ଏସ୍. ସୁନ୍ଦରମ, ଭି.ଭି. ଜନ୍, ଗିରିଜା ଶଙ୍କର ରାୟଙ୍କ ଅଧ୍ୟାପନା ମଧ୍ୟ ଥିଲା ଖୁବ୍ ଆକର୍ଷଣୀୟ ଓ ପ୍ରଭାବଶାଳୀ । ବିଶେଷତଃ ହାସ୍ୟରସ ସୃଷ୍ଟି କରିବାରେ ଶ୍ରୀଯୁକ୍ତ ଜନ୍ ଥିଲେ ଅଦ୍ୱିତୀୟ । ସେତେବେଳେ ଅର୍ଥନୀତି ବିଭାଗରେ ଆଉ ଜଣେ ଅଧ୍ୟାପକ ଥିଲେ ଭୈରବ ନାଥ ରୋହତଗୀ । ସେ ମଧ୍ୟ ଖୁବ୍ ଚିତ୍ତାକର୍ଷକ ରୀତିରେ ଅଧ୍ୟାପନା କରୁଥିଲେ । କହିବା ଅନାବଶ୍ୟକ, ଏହି ଅଧ୍ୟାପକମାନଙ୍କର ଇଂରାଜୀ ଭାଷାର ପ୍ରକାଶ ଭଙ୍ଗୀରେ ଥିଲା ସ୍ୱକୀୟତା ।

ସେତେବେଳେ କଲିକତା ବିଶ୍ୱବିଦ୍ୟାଳୟରୁ ଓଡ଼ିଆରେ ଏମ୍.ଏ. ପାସ୍ କରିଥିବା ଖୁବ୍ କମ୍ ବ୍ୟକ୍ତି ଓଡ଼ିଆ ଶିକ୍ଷା ବିଭାଗରେ ଅଧ୍ୟାପକ ଭାବେ ଯୋଗ ଦେଇଥିଲେ । ଶ୍ରୀ ରାମଚନ୍ଦ୍ର ମହାପାତ୍ର ଥିଲେ ସେମାନଙ୍କ ମଧ୍ୟରୁ ଅନ୍ୟତମ । ଅବଶ୍ୟ ଅଳ୍ପ କେତେ ମାସ ପାଇଁ ଜୟକୃଷ୍ଣ ମିଶ୍ର ଓ ପ୍ରହ୍ଲାଦ ପ୍ରଧାନଙ୍କୁ ଅଧ୍ୟାପକ ଭାବେ ନିଯୁକ୍ତି ମିଳିଥିଲା । ସଂସ୍କୃତ ବିଭାଗରେ ଅଧ୍ୟାପକ ମାନେ ହିଁ ଓଡ଼ିଆ କ୍ଲାସ୍ ନେଉଥିଲେ । ଏମାନଙ୍କ ମଧ୍ୟରେ ଜୟକୃଷ୍ଣ ମିଶ୍ର ଥିଲେ ବାଗ୍ମୀ । ମୋଟ ଉପରେ ଅନ୍ୟ ବିଷୟ ତୁଳନାରେ ଓଡ଼ିଆ ବିଷୟଟି ଖୁବ୍ ଚିତ୍ତାକର୍ଷକ ହୋଇ ପାରୁନଥିଲା । ଏହା ମତେ ଦୁଃଖର ସହିତ ସ୍ୱୀକାର କରିବାକୁ ପଡୁଛି । ଆର୍ତ୍ତବଲ୍ଲଭ ମହାନ୍ତି ସଂସ୍କୃତ ବିଭାଗର ମୁଖ୍ୟ ଥିଲେ ହେଁ ସେ ଆଇ.ଏ. ଶ୍ରେଣୀରେ ଓଡ଼ିଆ କ୍ଲାସ୍ ନେଉ ନ ଥିଲେ । ଆର୍ତ୍ତବଲ୍ଲଭ ଥିଲେ ସୁବକ୍ତା ଓ ତାଙ୍କର ଶିକ୍ଷାଦାନ ପଦ୍ଧତି ଥିଲା ଖୁବ୍ ଆକର୍ଷଣୀୟ । ଏହି ଅଭିଜ୍ଞତା ଅବଶ୍ୟ ବହୁ ପରେ ଆମେ ଲାଭ କରିଥିଲୁ । ଅତି ଶ୍ରମ ଯୋଗୁଁ ଦିନେ ଦିନେ କ୍ଲାସ୍‌ରେ ମଧ୍ୟ ଢୁଳାଏ । ଏହି ସମୟରେ ଅଭାବ ଅନିଶ୍ଚିତତା ଭିତରେ ମୋତେ ଦିନ କାଟିବାକୁ ପଡୁଥିଲା । ମନେହୁଏ ପଢ଼ାପଢ଼ି ଛାଡ଼ି ଗାଆଁକୁ ଚାଲିଯିବି । ତଥାପି କେଜାଣି କେମିତି ପଢ଼ାପଢ଼ିର ଆକର୍ଷଣରେ ପଡ଼ିଯାଇଥିଲି । ଅର୍ଥନୀତି ଅନର୍ସ ନେବାକୁ ମୋର ଇଚ୍ଛା ଥିଲା । ଆଇ.ଏ. ପରୀକ୍ଷାରେ ମୁଁ ଓଡ଼ିଆ, ମନସ୍ତତ୍ତ୍ୱ ଅପେକ୍ଷା ଏଇ

ବିଷୟରେ ହିଁ ଅଧିକ ନମ୍ବର ରଖିଥିଲି । ଏଣୁ ସେଇ ବିଷୟରେ ଅନର୍ସ ନେବାକୁ ମୁଁ ମନୋନୀତ ହୋଇଥିଲି । କେତେ ଦିନ ଅର୍ଥନୀତି କ୍ଲାସ୍‌ରେ ଯୋଗ ଦେଇଥିଲି । ମାତ୍ର ଅର୍ଥନୀତି ପାଠ ବହୁ ଗ୍ରନ୍ଥ ଅଧ୍ୟୟନ ସାପେକ୍ଷ । ଏଥିପାଇଁ ମୋର ବେଳ ନ ଥିଲା କିମ୍ବା ସମ୍ବଳ ମଧ୍ୟ ନ ଥିଲା । ଅର୍ଥନୀତି ପରିବର୍ତ୍ତେ ଓଡ଼ିଆ ଅନର୍ସ ପାଇଁ ମୁଁ ଆବେଦନ କଲି । ଓଡ଼ିଆ ମାତୃଭାଷା ହୋଇଥିବାରୁ ଓ ଓଡ଼ିଆରେ ଭାବ ଅଭିବ୍ୟକ୍ତି ମୋ ପକ୍ଷରେ ଅଧିକ ସହଜ ଅନୁଭବ କରି ମୁଁ ଏହା ନେବାକୁ ମନସ୍ଥ କରିଥିଲି । ମାତ୍ର ଆଇ.ଏ. ପରୀକ୍ଷାର ମାର୍କ ଦୃଷ୍ଟିରୁ ମୋତେ ବିଳମ୍ବରେ ମନୋନୀତ କରାଯାଇଥିଲା ।

**ପହିଲି ଅନୁଭବ**

ଆପଣା ପରିବାରକୁ ଛାଡ଼ି ଏକ ନୂଆ ଜାଗାରେ ରହିବା ଯେପରି ଜଣେ ଲଜ୍ଜାଶୀଳ ବ୍ୟକ୍ତିଟି ପକ୍ଷେ ଆଦୌ ସୁଖକର ବିଷୟ ନ ଥିଲା । ତଥାପି ମୁଁ ଟିଉସନ୍ କରି ପାଠ ପଢ଼ିବା ସୁଅରେ ଯେପରି ଭାସି ଚାଲିଥିଲି । ଯୌବନ ସମୟରେ 'ସମବାୟ ପ୍ରୀତି' ଫୁଟିଯାଏ ଓ ନାରୀ ପୁରୁଷ ବନ୍ଧୁଟିଏ ଖୋଜେ ଓ ପୁରୁଷଟିଏ ସେହିପରି ଗୋଟିଏ ନାରୀକୁ ଖୋଜି ଥାଏ ବୋଲି ବୈଷ୍ଣବ କବି ଅଭିମନ୍ୟୁ ଯାହା ଲେଖିଛନ୍ତି ତାହା ଯଥାର୍ଥ । ଏ ବୟସରେ ସେହିପରି କେତୋଟି କିଶୋରୀଙ୍କ ସଂପର୍କରେ ମୋତେ ଆସିବାକୁ ପଡ଼ିଥିଲା । ଯୋଗକୁ ଏମାନେ ଥିଲେ ମୋର ଛାତ୍ରୀ । ସେମାନେ ପୁଣି ଥିଲେ ଅନ୍ୟ ଭାଷାଭାଷୀ । ବଙ୍ଗଦେଶରେ ସେମାନଙ୍କ ଘର । କାର୍ଯ୍ୟର ଲକ୍ଷ୍ୟରେ ଚାକିରି କରିବାକୁ ଆସି ସେମାନଙ୍କ ପରିବାର ଏଠି ରହିଛନ୍ତି । ବଙ୍ଗଳା ଭାଷାରେ ମୁଁ କହିପାରୁଥିଲି- ବଙ୍ଗଳା ଲେଖା ପଢ଼ିବା ମଧ୍ୟ ମୋତେ ଜଣାଥିଲା - ସେଥିପାଇଁ କେତେକ ବଙ୍ଗୀୟ ପରିବାରରେ ମୋର କିଛି ସୁନାମ ଥିଲା । ଏମାନେ ଥିଲେ ଅପେକ୍ଷାକୃତ ସ୍ୱଚ୍ଛଳ ଓ ମାର୍ଜିତ । ଯାହାହେଉ ଏହି ପରିବାରରେ ମୋର ଛାତ୍ରୀମାନଙ୍କ ଠାରୁ କିଛି ବ୍ୟବଧାନ ରଖି ମୋତେ ସଂଯତ ଭାବେ ହିଁ ଚଳିବାକୁ ପଡୁଥିଲା ।

ସେମାନଙ୍କ ଘରେ ମୋତେ ବେଶ୍ ଶ୍ରଦ୍ଧା ଓ ସମ୍ମାନ ମିଳୁଥିଲା । ମୁଁ ମଧ୍ୟ ମୋର ଅଭାବ ଓ ସଂଘର୍ଷମୟ ସମୟରେ ସେଠାକୁ ଯାଇ ସାମୟିକ ଆନନ୍ଦ ପାଉଥିଲି । ଭୁଲି ଯାଉଥିଲି ମୋର ଦୈନ୍ୟ, ଦୟନୀୟ ସ୍ଥିତି । ମର୍ଯ୍ୟାଦା ଦୃଷ୍ଟିରୁ ମୁଁ ସେଠାରେ ସଂଯତ ହେବାକୁ ଏକ ପ୍ରକାର ବାଧ୍ୟ । ଗୋଟିଏ ଝିଅ ଏମିତି ମୋର ଛାତ୍ରୀ ଥିଲା ମୀରା- ତା' କଥା ମୁଁ ବାସ୍ତବିକ୍ ଭୁଲିପାରିନି । ଦେଖିବାକୁ ସେ ଥିଲା ଖୁବ୍ ସୁନ୍ଦର । ଶୁଣିଲି ସେ ଡ୍ରାମାରେ ପାର୍ଟ୍ କରେ । ଥରେ ସେ କ'ଣ ଗୋଟାଏ ନାଚ୍‌ରେ ଅଂଶ ଗ୍ରହଣ କରିଥିଲା । ତା' ଭାଇ ମୋ ବୟସର । ମୁଁ ତାଙ୍କ ଘରେ ତା' ଭାଇ ସାଙ୍ଗେ ବେଶ୍ ଗପ କରେ । ମୀରା ମୋ ସାଙ୍ଗରେ ବଙ୍ଗଳାରେ କଥାବାର୍ତ୍ତା କରେ । ଦିନେ ସେ କହିଲା ସାର୍, ଆମ କ୍ଲବ୍‌ର ବାର୍ଷିକ ଉତ୍ସବ ହେବ । ମୁଁ ଏଥିରେ ନାଚିବି । ଆପଣ ଦେଖିବାକୁ ଆସିବେ ।

ଏଥିରେ ଅରାଜି ହେବାର ପ୍ରଶ୍ନ ନ ଥିଲା । ତା ଭାଇ ସାଙ୍ଗେ ମୁଁ ସେଇ ଉତ୍ସବରେ ପହଞ୍ଚିଥିଲି । ସୁସଜ୍ଜିତ ହୋଇ ମୀରା ନିଶ୍ଚିତ ଭାବେ ଖୁବ୍ ସୁନ୍ଦର ଦେଖାଯାଉଥିଲା । ସହଜେ ସେ ଥିଲା ଦୀର୍ଘାଙ୍ଗୀ - ବେଶଭୂଷା ତାକୁ ଆହୁରି ମନୋହାରିଣୀ କରିଥିଲା । 'ସ୍ୱଭାବ ସୁଲଭ ଅଙ୍ଗକୁ ଜଗତେ ନହୁଏ ମଣ୍ଡନ ! କଳଙ୍କ ହିଁ ଥାଏ କଳାକାର କୋଳେ କରଇ ନେତ୍ର ରଞ୍ଜନ ।' ମୀରାର ରୂପରେ କଳଙ୍କ କେଉଁଠି ଥିଲା ତାହା ଅବଶ୍ୟ ମୋ ଦୃଷ୍ଟିରେ ପଡ଼ି ନାହିଁ । କିନ୍ତୁ ନିଶ୍ଚିତ ଭାବେ ସେ ଥିଲା ରୂପାଭିମାନିନୀ ।

କଟକରେ ବାଲିଯାତ୍ରା ବଡ଼ ଉତ୍ସବ । ସଂଧ୍ୟାରେ ମହାନଦୀକୂଳ ଏହି ସମୟରେ ୨/୩ ଦିନ ପାଇଁ ହୁଏ ଉତ୍ସବମୁଖର । ମୀରା କହେ - ମାଷ୍ଟର୍ ମଶାୟ, ବାଲିଯାତ୍ରାରୁ କ'ଣ କିଣିଲେ ? ମୋ ପାଇଁ କିଛି କିଣି ଆଣିଛନ୍ତି ?

ମୁଁ ତାକୁ ସାମାନ୍ୟ ଆଘାତ କରି କହିଲି - ଫାଜିଲାମି ଥାଉ । ପଢ଼ାପଢ଼ି ଠିକ୍ କରି କରେ- ମନେ ମନେ କିନ୍ତୁ କହେ - ତୋ ଭଳି ଝିଅକୁ ଦେବାଲାଗି ମୋ ପାଖେ କ'ଣ ବା ଅଛି ? ଧନ ତ ନାହିଁ । ମନ ଥିଲେ ବି ତାହା ତ ମୁଁ ତତେ ଦେଇପାରିବା ସମ୍ଭବ ନୁହେଁ । ମୀରା ମୋର ଅଭାବ ବିଷୟ ଜାଣେ । ମୀରା ଖୁବ୍ ଭଲ ଛାତ୍ରୀ ନ ଥିଲା । ବୋଧହୁଏ ୮ମ ରୁ ୯ମ ଶ୍ରେଣୀକୁ ଉତ୍ତୀର୍ଣ୍ଣ ହୋଇଥିଲା । ଏହାପରେ ତା'ର ପରିବାର କଟକରୁ ଚାଲି ଯାଇଥିଲେ । ଗ୍ରୀଷ୍ମ ଛୁଟି ପରେ ଗାଆଁରୁ ଫେରି ମୁଁ ଏହା ଜାଣିବାକୁ ପାଇଲି । ଛୁଟି ହେବା ପୂର୍ବରୁ ଅବଶ୍ୟ ମୁଁ ଏହା ଜାଣିଥିଲି । ଯାହାହେଉ ମୀରା କଥା ମନକୁ ଆସିଲେ ବଙ୍ଗକବି ବନଲତା ସେନ୍ କବିତାର କେତୋଟି ପଙ୍‌କ୍ତି ମନକୁ ଆସିଯାଏ - ଆମାକେ ଦୁଦଣ୍ଡ ଶାନ୍ତି ଦିଏ ଛିଲ ନାଟୋରେର ବନଲତା ସେନ୍ । ମୀରା କୁଆଡ଼େ ଗଲା ? କେଉଁଠି ଅଛି - ଏ ଜଗତରେ ଅଥବା ଅନ୍ୟ କେଉଁଠି ଏହା ମୋତେ ଅଜ୍ଞାତ । ତା'ର ଭାଇ ବା ପରିବାରମାନଙ୍କ ମଧ୍ୟରୁ କାହା ସଙ୍ଗେ ବିଗତ ଅର୍ଦ୍ଧଶତାବ୍ଦୀ ମଧ୍ୟରେ ମୋର ଆଉ ଦେଖା ହୋଇ ନାହିଁ । କେବେ ପ୍ରୟାସ ମଧ୍ୟ ମୁଁ କରି ନାହିଁ - ମୁଁ ମୋର ଅନେକ ଦାୟିତ୍ୱ କର୍ତ୍ତବ୍ୟ ଭିତରେ ସଂପୂର୍ଣ୍ଣ ଭାବେ ଭୁଲିଯାଇଛି ତା' କଥା - ତଥାପି ସେ ମୋ ମନର ଉଷର ତଟରେ ଥିଲା ଏକ ଶୀତଳ ତରଙ୍ଗିଣୀ । ସେ ସବୁଦିନ ପାଇଁ ମଲା ଜହ୍ନଟିଏ ହୋଇ ରହିଗଲା ।



---

***ଏକାକୀ ପଥିକ,*** ସ୍ୱ-ପ୍ରକାଶନୀ, ପୁରୀ, ୨୦୦୦

# ରେଭେନ୍‌ସା କଲେଜ

## ଜୟନ୍ତ ମହାପାତ୍ର

୧୯୪୨ ଅଗଷ୍ଟ ମାସର ଆରମ୍ଭରେ ଜର୍ମାନ ସୈନ୍ୟବାହିନୀ ଆଫ୍ରିକାରେ ଆଗେଇ ଯାଇଥିଲେ ଫିଲ୍‌ଡ ମାର୍ଶାଲ୍ ରମେଲ୍‌ଙ୍କ ନେତୃତ୍ୱରେ । ମୋର ମନେପଡୁଛି, ଗୋଟିଏ ଦିନରେ, ବୋଧେ ଜୁଲାଇ ୨୧ ରାତିରେ, ୧୧୮ଟି ବ୍ରିଟିଶ ଆଉ ତାଙ୍କ ସହଯୋଗୀ ରାଷ୍ଟ୍ରଙ୍କ ଟ୍ୟାଙ୍କ ଧ୍ୱଂସ ହୋଇଥିଲା କିନ୍ତୁ ମୋଟେ ୩ଟି ଜର୍ମାନ ଟ୍ୟାଙ୍କ ନଷ୍ଟ ବଦଳରେ । କାହିଁକି କେଜାଣି ମତେ ବ୍ରିଟେନ ହାରୁଥିଲେ ଭଲ ଲାଗୁଥିଲା, କହିପାରିବିନି । କ'ଣ ଆମ ଉପରେ ରାଜତ୍ୱ କରୁଥିଲେ ବୋଲି ?

ସେଇ ସମୟରେ ସାରା ଭାରତରେ କ୍ୱିଟ୍ ଇଣ୍ଡିଆର ଆନ୍ଦୋଳନ ଆରମ୍ଭ ହୋଇଯାଇଥିଲା । ସବୁଆଡ଼େ ସେଇ କଥା, ଗାନ୍ଧିଜୀଙ୍କ ସତ୍ୟାଗ୍ରହ, ଆମ ଓଡ଼ିଶାରେ ଇଂରେଜମାନଙ୍କ ବିରୋଧରେ ବିଦ୍ରୋହ । ଅଗଷ୍ଟ ମାସ ପଶିଲା । କଲେଜରେ ପଢ଼ାପଢ଼ି ଆରମ୍ଭ ହୋଇଯାଇଥିଲା, କିନ୍ତୁ ଏତେ ନିୟମିତ ଭାବରେ ନୁହଁ । ଫିଜିକ୍ସ ବା କେମିଷ୍ଟ୍ରି ଲେକ୍‌ଚର୍ ଥିଏଟର୍‌ରେ କ୍ଲାସ୍ ହୁଏ, ଆଉ ମୋ ମନରେ ଏକପ୍ରକାରର ଭୟ ପଶିଯାଏ ସେ ଉଚ୍ଚ ଛାତତଳେ ବସି, ପିଲାଙ୍କ ଭିତରେ, ଗ୍ୟାଲେରିରେ । ଆଉ ଆମ ପ୍ରଫେସର ଯେତେବେଳେ ସୁଟ୍ ଟାଇ ପିନ୍ଧି ଆସିଯାନ୍ତି, ଭକ୍ତିଭାବ ଗୋଟେ ଆସିଯାଏ ମନରେ ।

ହେଲେ ମୁଁ ତ ସବୁବେଳେ ଅନ୍ୟମନସ୍କ । ପାଠରେ ମନ ରହୁ ନ ଥିଲା । ଲେକ୍‌ଚର୍‌ବେଳେ ମୋ ମନ ସେ ବଡ଼ ଝରକା ଦେଇ କୋଉ ବାହାର ଦେଶରେ ବୁଲୁଥିଲା । କୋଉ ହକିଯାଇଥିବା ଦିନରେ, ବର୍ଷାଦିନର କୁଳୁକୁଳିଆ ପୋକର ଆଲୁଅରେ, ଦେବଦାରୁ ଗଛରେ ବାଦୁଡ଼ିଙ୍କ ଚିତ୍କାରରେ କିମ୍ବା ମହାନଦୀ ପଠାରେ ପାଚିଲା ଭୂଇଁ ବରକୋଳିରେ । ବେଳେବେଳେ ନ ଥିବା ପ୍ରଥମ ପ୍ରେମିକାର ହସ ଟିକିଏ ପବନ ପରି ଭାସି ଆସି ମୋ ଶାର୍ଟର କଲାରକୁ ଥରାଇଦିଏ, ଆଉ ଇନ୍ଦ୍ରଧନୁ ଫେରିଯାଏ ତା'ର ବର୍ଷାର ନଅରକୁ ।

ଏମିତି ଗୋଟିଏ ଦିନ । ଅଗଷ୍ଟ ୯, ୧୯୪୨ । ଦଶଟା ବାଜି ଦଶ ହୋଇଛି କି ନାହିଁ, ଦୂରରୁ ପାଟି ଗୋଳମାଳ ଶୁଭିଲା । ପାଞ୍ଚ ମିନିଟ୍ ଭିତରେ ଅନେକ ପିଲା ଆମ ଲେକ୍‌ଚର ଥିଏଟର୍

ବାରଣ୍ଡାକୁ ଆସିଗଲେ । ପ୍ରଫେସରଙ୍କ କଥା ବୁଡ଼ିଗଲା । ଦୁଆର ପାଖରେ କଲେଜର ସିନିଅର ପିଲାଙ୍କ ଗହଳି । ଜୋର୍‌ରେ ସ୍ଲୋଗାନ ଦେଉଥାନ୍ତି, "ଇନ୍‌କିଲାବ୍ ଜିନ୍ଦାବାଦ !" "ବ୍ରିଟିଶ୍, କ୍ୱିଟ୍ ଇଣ୍ଡିଆ" ବି ଶୁଭୁଥାଏ । ତା'ପରେ କ୍ଲାସ୍‌ରୁ ଆମକୁ ବାହାରି ଆସିବାକୁ ଛାତ୍ର ନେତାମାନେ କହିଲେ । ଆମେ ସମସ୍ତେ ବାହାରି ଆସି ବାରଣ୍ଡାରେ ଏକାଠି ହେଲୁ । ମୋ ମନରେ କିନ୍ତୁ ଗୋଟେ ପ୍ରକାରର ଭୟ ଆସିଯାଉଥାଏ । ହେଲେ ଏକାଠି ହେବାରୁ ମୁଁ ଜାତୀୟବାଦୀ ବୋଲି ମୋ ମନକୁ ଆସିଲା । ଅନ୍ୟ ପିଲାଙ୍କ ସାଙ୍ଗେ କଲେଜ କରିଡ଼ର୍‌ରେ ବୁଲି ସମସ୍ତେ ଟେନିସ୍ କୋର୍ଟରେ ଜମା ହେଲୁ । ଛାତ୍ର ନେତାମାନେ ଭାଷଣ ଦେବା ଆରମ୍ଭ କରିଦେଲେ । କିଛି ନ କହିଲେ ବି ସେ ଉତ୍ତେଜନାରେ ମୁଁ ଭାସିଗଲି ।

ଘଣ୍ଟାଏ ଚାଲିଗଲା । ହଠାତ୍ ଦେଖିଲି କଲେଜ ଅଫିସ୍‌ରୁ ନିଆଁ ବାହାରୁଛି । ଘୋ ଘୋ ଶବ୍ଦରେ ଆକାଶ ଫାଟିଗଲା ପରି ଲାଗୁଥାଏ । ସାଙ୍ଗେ ସାଙ୍ଗେ ଶୋଭାଯାତ୍ରା ପାଇଁ ପ୍ରସ୍ତୁତ ହୋଇଗଲୁ । ଆମ ସାଙ୍ଗେ ଝିଅମାନେ ବି ଥିଲେ, ଅଳ୍ପ କେତୋଟି । ଏକାଠି ହୋଇ ମେନ୍‌ଗେଟ୍ ଦେଇ ବାହାରିଗଲୁ ରାଣୀହାଟ ରାସ୍ତାକୁ । ସ୍ଲୋଗାନ ଦିଆ ଚାଲିଥାଏ । ମୁଁ ଶୋଭାଯାତ୍ରାର ପଛକୁ ଥାଏ । ଭୀରୁ ଯିଏ, ସିଏ ସବୁ ପରିସ୍ଥିତିରେ ଭୀରୁ । କ'ଣ ବା ମୁଁ କରିପାରିଥାନ୍ତି ।

ଅଗଷ୍ଟ ନଅ, ନିଶ୍ଚିତ ଭାବରେ ମୋ ପାଇଁ ଏକ ସ୍ମରଣୀୟ ଦିନ । ଅନ୍ୟ ଦିନ ପରି ଶୂନ୍ୟତା ନ ଥିଲା ମୋ ମନରେ, ଥିଲା ଛାତିରେ ନୀରବ ବିପ୍ଳବ, ଅହିଂସାର ଅସାଧାରଣତା ଭିତରେ ଚାଲିବାର ସମ୍ଭବପରତା । ଆମ ଶୋଭାଯାତ୍ରା ଶେଷରେ ଯାଇ ପହଞ୍ଚିଲା ବଡ଼ଡ଼ାକ୍ତରଖାନାର ପଡ଼ିଆରେ, ସେତେବେଳେ ପରିଚିତ ଥିଲା ପ୍ରିନ୍‌ସ ଅଫ୍ ୱେଲସ୍ ମେଡ଼ିକାଲ୍ ସ୍କୁଲ ଭାବରେ । ଦୁଇ ତିନୋଟି ଘର ଛଡ଼ା କେବଳ ବଡ଼ ଘାସ ପଡ଼ିଆଟି, ଯୋଉଠି ଆମେ ଜମା ହେଲୁ । କିନ୍ତୁ କୋଉଠୁ କେଜାଣି, ହଠାତ୍ ଚାଲିଆସିଲେ ପୋଲିସ୍, ଲାଠି ଧରି, ଆଉ ସେମାନଙ୍କ ସାଙ୍ଗେ ସାହେବ ଜଣେ, ସାର୍ଜେଣ୍ଟ ହାରଗ୍ରୀଭସ୍, ଆମକୁ ପୋଲିସ୍ ଆଗକୁ ଯିବାକୁ ଦେଲା ନାହିଁ । ମୁଁ ସେତେବେଳେ, ଭୟରେ ବୋଧେ, ଆଠ ଦଶ ଲାଇନ ପଛରେ । ସାମ୍ନାରେ ଆମର ଅଳ୍ପ କେତୋଟି ଛାତ୍ରୀ, ତାଙ୍କ ଭିତରେ କୁନି ପରିଜା ଆଉ ନିରୂପମା ପଟ୍ଟନାୟକ ।

ପଛରୁ ଦେଖିଲି, ସାର୍ଜେଣ୍ଟ୍ ହାରଗ୍ରୀଭ୍‌ସ ସାମ୍ନାରେ ଥିବା ଝିଅମାନଙ୍କୁ ଟିକେ ଦୂରକୁ ଡାକିନେଇ କ'ଣ କଥାବାର୍ତ୍ତା ଆରମ୍ଭ କଲେ । ମିନିଟ୍ ଗୋଟିଏ ହୋଇଛି କି ନାହିଁ, 'ଚାର୍ଜ' ବୋଲି ହାରଗ୍ରୀଭ୍‌ସ ଚିତ୍କାର କଲେ । ପୋଲିସ୍‌ର ଲାଠି ଚାଲିବାକୁ ଆରମ୍ଭ କଲା । ମୋ ଛାତି ଉଠୁଥାଏ, ପଡୁଥାଏ । ଜୀବନ ଭୟରେ ଦୌଡ଼ିବା ଆରମ୍ଭ କଲି । ପଡ଼ିଆର ଦକ୍ଷିଣରେ ସାନ ପାଚେରିଟିଏ, ସେପଟେ ଡାକ୍ତରଙ୍କ କ୍ୱାର୍ଟର୍ସ କେତୋଟି, ଛୋଟ ଛୋଟ ସରକାରୀ ଘର । ଖାଲ, ଗାଡ଼ ଡେଇଁ ଯେତେ ଜୋର୍‌ରେ ଦୌଡ଼ିପାରିଲି ଯାଇ ପାଚେରି ପାର କଲି । ଦେଖିଲି ଗୋଟେ ଘରେ ତାଲା

ପଡ଼ିଛି, ସେଇ ଘରର ବାରଣ୍ଡାରେ ଆଶ୍ରୟ ନେଲି, ଗୋଟେ କଣରେ। ସିଆଡ଼େ ପୋଲିସ୍ ଯେତେ ଛାତ୍ରଙ୍କୁ ଧରିପାରିଲେ, ଭ୍ୟାନ୍‌ରେ ଭର୍ତ୍ତି କରି ନେଉଥାନ୍ତି।

ମୋ ଦେହରେ ଟିକେ ଜୀବନ ପଶିଲା ପରି ମନେହେଲା। ଚପଲ କୁଆଡ଼େ ପଡ଼ିଗଲା ଜାଣିପାରିଲିନି। ମୋ ହାତରୁ ବହିଖାତା ସବୁ ଚାଲିଯାଇଥିଲା। ସେ ଘରଟିରେ ଲୁଚି ରହିଲି। ପକେଟରେ ସାଇକଲ ଚାବିଟି। କିନ୍ତୁ ସାଇକଲ ତ କଲେଜର ସାଇକଲ ଷ୍ଟାଣ୍ଡରେ, ଅନେକ ଦୂରରେ। ଆଉ ଚାରିଆଡ଼େ ପୋଲିସ୍ ଥିବାରୁ ସେମିତି ବସି ରହିଲି। ପ୍ରାୟ ଦୁଇଘଣ୍ଟା ପରେ, ଚାରିଟା ପାଖାପାଖି ହବ, ସତର୍କତା ସହିତ ବାହାରିଲି। ମତେ ଲାଗୁଥାଏ ସତେ ଯେମିତି କଟକ ସହରରୁ ଲୋକେ କୁଆଡ଼େ ଚାଲିଯାଇଛନ୍ତି। ରାସ୍ତାରେ ବେଶି ଲୋକ ନ ଥିଲେ। ଧୀରେ ଧୀରେ, ଖାଲି ପାଦରେ ରାଣୀହାଟ ପୋଲ ପାର କରି କଲେଜରେ ପଶିଲି। ସିଧା ଷ୍ଟାଣ୍ଡକୁ ଯାଇ ମୋ ସାଇକଲ ଆଣିଲି। ସୂର୍ଯ୍ୟ ସେତେବେଳେ ନଇଁ ଯାଇଥିଲା। ମୋ ପାଖେ କିଛି ତ ନ ଥିଲା, ଖାଲି ପାଦରେ ପେଡ଼ାଲ ମାରି ଦୋଳମୁଣ୍ଡେଇ ଦେଇ ଘରକୁ ଫେରିଲି।

ଘଟଣାଟିର ଶେଷ ସେଇଠି ନୁହଁ। ଦୁଆର ଭିତରେ ପଶିଲାବେଳକୁ ଦିନର ଆଲୁଅ ତା' ମୁଣ୍ଡକୁ ପୋତି ଦେଇଥିଲା, ଝାପ୍‌ସା ଝାପ୍‌ସା ଅନ୍ଧାର ଥିଲା ଘର ଭିତରେ। ଆଉ ସେଇ ଅନ୍ଧାର-ଆଲୁଅ ଭିତରୁ କିଏ ଜଣେ ବାରଣ୍ଡାରୁ ଓହ୍ଲେଇ ମୋ ପାଖକୁ ଚାଲି ଆସି ଚିର ପରିଚିତ ସ୍ୱରରେ କହିଲେ, "ପୁଅରେ,, ଆସିଲୁ, ତୋର କିଛି ହେଇ ନାହିଁ ତ ?"

ଗୁରୁତ୍ୱପୂର୍ଣ୍ଣ ଦିନଟି ମୋ ପାଇଁ। ମନ ଦେହ ତ ହାଲିଆ ହେଇଯାଇଥିଲା, ବାପାଙ୍କ କଥାରେ ମୋ ଆଖି ପାଣିରେ ଭରିଗଲା। ବାପା କେନ୍ଦ୍ରାପଡ଼ାରେ ଥିଲେ, ଏମିତି ପୋଡ଼ାପୋଡ଼ି ଆଉ ଲାଠି ଚାର୍ଜ କଥା କୋଉଠୁ ଶୁଣି ବସ୍ ଧରି ଆସିଛନ୍ତି କଟକ, ଘେରାଏ ଖୋଜି ସାରିଛନ୍ତି ମତେ କଲେଜରେ ନ ପାଇ।

ଦେଖୁ ଦେଖୁ ରାତି ହେଇଗଲା। ମୋ ଜୀବନର ଗୋଟିଏ ନିଷ୍ପତ୍ତିମୂଳକ ଦିନ ପ୍ରାୟ ଶେଷ ହେଇଆସିଲା। ଅନେକ କଥା ରହିଥିଲା ସେ ଦିନଟି ଭିତରେ: ମତେ ଦେଖେଇପାରିଲା ଯେ ମଣିଷ ତା' ଛୋଟ ଦୁନିଆରୁ ସେ ବିରାଟ ବଡ଼ ଦୁନିଆକୁ ଆଣିପାରିବ, ସେ ସ୍ୱର୍ଗୀୟ ଦୁନିଆକୁ, ଭଲ ପାଇବାର ଦୁନିଆକୁ।

•

---

*ପାହିନି ରାତି*, ବିଜୟିନୀ ପବ୍ଲିକେଶନ୍‌ସ, କଟକ, ୨୦୧୩

# ମୋ କଲେଜ ଜୀବନ

## ଇନ୍ଦୁଭୂଷଣ ମିଶ୍ର

### ରେଭେନ୍ସା କଲେଜ

୧୯୩୬ ମସିହା ଜୁଲାଇ ମାସରେ ରେଭେନ୍ସା କଲେଜରେ ନାମ ଲେଖାଇ ୱେଷ୍ଟ ହଷ୍ଟେଲରେ ରହିଲି । କଲେଜ ଜୀବନରେ ମୁଁ ସାଧାରଣ ଛାତ୍ର ଥିଲି । ମାତ୍ର ଗୀତ, ନାଟକ ଓ ଅଭିନୟ, ବ୍ୟାଙ୍ଗାଭିନୟ ଆଦିରେ ସୁନାମ ଅର୍ଜନ କରି ପୁରସ୍କୃତ ହୋଇଥିଲି । କଲେଜରେ ଅନୁଷ୍ଠିତ ସମସ୍ତ ଉତ୍ସବଦିବସ ମାନଙ୍କରେ ଆବାହନ ଓ ବିଦାୟ ସଙ୍ଗୀତ ମୋତେ ବୋଲିବାକୁ ପଡୁଥିଲା । ୧୯୪୦ ମସିହାରେ ସରୋଜିନୀ ନାଇଡୁ ଆମ କଲେଜକୁ ଆସିଥିଲେ ଏବଂ କଲେଜହଲରେ କଲେଜ ୟୁନିଅନର ଛାତ୍ରଛାତ୍ରୀମାନଙ୍କୁ ଉଦ୍‌ବୋଧନ ଦେଇଥିଲେ । ସେଥିରେ ଆବାହନ ସଙ୍ଗୀତରେ ରାଧାନାଥଙ୍କ "ସର୍ବେଷାଂ ଜନନୀ ଭାରତ" ପଦ୍ୟଟି ଗ୍ରୀନରୁମରୁ ମାଇକ୍ ସାହାଯ୍ୟରେ ଗାଇଥିଲି । ସେଥିରେ ସରୋଜିନୀ ନାଇଡୁ ଅତ୍ୟନ୍ତ ମୁଗ୍‌ଧ ହୋଇ ଯାଇଥିଲେ ଏବଂ ଷ୍ଟେଜ୍ ଉପରକୁ ମୋତେ ଡାକି ପଚାରିଲେ "Are you the gentleman who sang the Sanskrit Song ?" ମୁଁ ହଁ କହିବାରୁ ସେ କହିଲେ, "You have got a powerful voice I carry the memory of the song with me."

ମୁଁ କଲେଜରେ ପଢ଼ିବାବେଳେ ଛାତ୍ର ଆନ୍ଦୋଳନର ସଭାସମିତିରେ ଯଦିଓ ଯୋଗଦିଏ, ଅଳ୍ପ କେତେକ ଛାତ୍ର ଆରେଷ୍ଟ ହୋଇଥିଲେ ମଧ୍ୟ ମୁଁ ସବୁବେଳେ ଆରେଷ୍ଟ ନହେବା ପାଇଁ ଦୃଷ୍ଟି ଦିଏ । କଲେଜରେ ମୋର ସହପାଠୀ ଥିଲେ କୃତବିଦ୍ୟ ଛାତ୍ର ଶ୍ରୀରାମ ଦାସ, ବିଦ୍ୟାଧର ମିଶ୍ର, ବ୍ରଜବନ୍ଧୁ ମିଶ୍ର ଓ ବୀରେନ୍ଦ୍ର ପଟ୍ଟନାୟକ । ଥରେ ୱେଷ୍ଟ ହଷ୍ଟେଲରେ ଛାତ୍ରମାନଙ୍କ ମଧ୍ୟରେ ଗୋଟିଏ କବିତା ପ୍ରତିଯୋଗିତା ହୋଇଥିଲା । ମୁଁ ହଷ୍ଟେଲ ୟୁନିଅନରେ ୟୁନିଅନର ସଭ୍ୟ ଥିଲି । ଡ.ବି. ପ୍ରସାଦ ଆମର ୱାର୍ଡ଼େନ ଥିଲେ । ଡ. ପର୍ଶୁରାମ ମିଶ୍ର ବିଲାତ ଯିବା ପରେପରେ ପ୍ରଫେସର ଘନଶ୍ୟାମ ଦାସ ଥିଲେ ହଷ୍ଟେଲ ସୁପରିଣ୍ଟେଣ୍ଡେଣ୍ଟ । ହଷ୍ଟେଲ ୟୁନିଅନର ଜଣେ ସଭ୍ୟ କବିତାଗୁଡ଼ିକ ସଂଗ୍ରହ କରି ସୁସାହିତ୍ୟିକ ଗିରିଜା ଶଙ୍କର ରାୟଙ୍କ ପାଖକୁ ମୂଲ୍ୟାୟନ କରିବାପାଇଁ ପଠାଇଦେଇ ଥିଲେ । ମୂଲ୍ୟାୟନ ପରେ ଦେଖାଗଲା ଯେ, ଉକ୍ତ ସଭ୍ୟ ପ୍ରଥମସ୍ଥାନ ଅଧିକାର କରିଥିଲେ । ଏଥିରେ ଅନ୍ୟଜଣେ ଛାତ୍ରାବାସର ଛାତ୍ର ଅସନ୍ତୁଷ୍ଟ ହୋଇ ଗିରିଜାବାବୁଙ୍କ

ପାଖକୁ ଯାଇ ବୁଝିଲେ ଯେ, ତାଙ୍କ ଦ୍ୱାରା ଲିଖିତ ପଦ୍ୟଟି ଗିରିଜାବାବୁଙ୍କୁ ଦିଆଯାଇ ନାହିଁ। ଏକଥା ସେ ଆସି ସମସ୍ତଙ୍କୁ ଜଣାଇଲେ ଏବଂ ଓ୍ୱାର୍ଡ଼େନଙ୍କ ପାଖରେ ଆପତ୍ତି କଲେ। ଏଥିରେ ଛାତ୍ରାବାସ ସାରା ଆନ୍ଦୋଳନ ହେଲା ଏବଂ ଡ.ବି ପ୍ରସାଦ କାର୍ଯ୍ୟାନୁଷ୍ଠାନ କରିବାପାଇଁ ବାଧ୍ୟ ହେଲେ। ଡ. ପ୍ରସାଦ ଉକ୍ତ ସଭ୍ୟଙ୍କୁ ଛାଡ଼ି ୟୁନିଅନର ସବୁ ସଭ୍ୟଙ୍କୁ ତାଙ୍କ ଅଫିସକୁ ଡାକି ବସାଇଲେ। ଆମ୍ଭମାନଙ୍କୁ ଖଣ୍ଡିଏ ଖଣ୍ଡିଏ କାଗଜଦେଇ କହିଲେ ଦୋଷ କରିଥିବା ସଭ୍ୟଙ୍କର ଏହା ଗୋଟିଏ Honest mistake ନା willful suppression ଥିଲା, ତାହା ଲେଖିକରି ଦେବାକୁ। ସମସ୍ତେ Honest mistake ଲେଖିବାବେଳେ ମୁଁ willful suppression ବୋଲି ଲେଖିଥିଲି। କାଗଜଖଣ୍ଡ ଗୁଡ଼ିକରେ ଆମେ ନାମ ନ ଦେଇଥିଲେ ମଧ୍ୟ ଡ. ପ୍ରସାଦ ମୋର ଲେଖାକୁ କୌଣସି ପ୍ରକାରେ ଚିହ୍ନି ପାରିଥିଲେ।

୧୯୪୦ ମସିହାରେ ଜାନୁୟାରୀ ୨୬ ପାଳନକୁ ନେଇ ଛାତ୍ର, ଅଧ୍ୟକ୍ଷ ଓ ଅନ୍ୟାନ୍ୟ ଅଧ୍ୟାପକମାନଙ୍କ ମଧ୍ୟରେ ମହାଗଣ୍ଡଗୋଳ ଘଟିଥିଲା। ପରୀକ୍ଷା ପୂର୍ବରୁ ଦୁଇଟିଯାକ ଛାତ୍ରାବାସରୁ ଅଳ୍ପ କେତେକଣ ଛାତ୍ରଙ୍କୁ ଛାଡ଼ି ପ୍ରାୟ ସମସ୍ତେ ଛାତ୍ରାବାସ ଛାଡ଼ି ଚାଲି ଯାଇଥିଲେ। ମୁଁ ହଷ୍ଟେଲ ଛାଡ଼ିଯାଇ ନଥିଲି। କିନ୍ତୁ ନେତାମାନଙ୍କୁ ପରୀକ୍ଷା ନ ଦେବା ପାଇଁ ପ୍ରତିଶ୍ରୁତି ଦେଇଥିଲି। ହେଲେ ପରୀକ୍ଷାଦିନ ଦେଖାଗଲା ଛାତ୍ରାବାସ ଛାଡ଼ି ଚାଲିଯାଇଥିବା ସମସ୍ତ ଛାତ୍ର ଆସି ପରୀକ୍ଷାରେ ଯୋଗ ଦେଲେ। ଡ. ପରିଜା ଛାତ୍ରାବାସର ଚାରିଆଡ଼େ ମିଲିଟାରୀ ପୋଲିସ ରଖି ଛାତ୍ରମାନଙ୍କୁ ଭିତରକୁ ଆଣିବାର ବନ୍ଦୋବସ୍ତ କରିଥିଲେ। ଅଳ୍ପ କେତେଜଣ ନେତା ଆରେଷ୍ଟ ହୋଇଥିଲେ। ଧର୍ମଘଟ ଫେଲ୍ ମାରିବା ଦେଖି ମୁଁ କିଞ୍ଚିତ ବିଳମ୍ବରେ ପରୀକ୍ଷାହଲରେ ପ୍ରବେଶ କରନ୍ତେ ଦେଖିଲି ଯେ ସମସ୍ତ ଛାତ୍ର ଏପରିକି କେତେକେଣ ମୋର ସହପାଠୀ ନେତା ଆଗରୁ ଆସି ଲେଖାଲେଖି ଆରମ୍ଭ କରି ଦେଲେଣି। ସୁତରାଂ ପରୀକ୍ଷା ଯେମିତି ହେବା କଥା ରୀତିମତ ଚାଲିଲା।

ପରୀକ୍ଷା ସରିବାର କେତେଦିନ ପରେ ମୁଁ ପରିଜା ସାହେବଙ୍କ ପାଖକୁ ଖଣ୍ଡିଏ ସାର୍ଟିଫିକେଟ୍ ଆଣିବାକୁ ଗଲି। ମତେ ଅଫିସରେ ଦେଖି ଯଦିଓ ସେ ସାମାନ୍ୟ ବିରକ୍ତି ପ୍ରକାଶ କଲେ, ତଥାପି କଲେଜରେ ମୋର Extra curricular activities ରେ ସନ୍ତୁଷ୍ଟ ଥିବାର ପ୍ରକାଶ କଲେ। ତା ପରେ ସେ କଣେ କିରାଣିକୁ ଗୁପ୍ତପୁଞ୍ଜିକା ଦେଖି ମୋର ଚରିତ୍ର ସମ୍ବନ୍ଧରେ କହିବାକୁ ନିର୍ଦ୍ଦେଶ ଦେଲେ। ଉକ୍ତ କିରାଣି ଗୁପ୍ତପଞ୍ଜିକା ଦେଖି ମୋ ସମ୍ବନ୍ଧରେ ଉତ୍ତମ ମନ୍ତବ୍ୟ ପ୍ରକାଶ କରିବାରୁ ପରିଜା ସାହେବ ସଙ୍ଗେସଙ୍ଗେ ମତେ ଗୋଟିଏ ଉତ୍କୃଷ୍ଟ ସାର୍ଟିଫିକେଟ୍ ଦେଲେ। ତାପରେ ମୁଁ ଡ.ପ୍ରସାଦଙ୍କ ପାଖକୁ ଗୋଟିଏ ସାର୍ଟିଫିକେଟ୍ ଆଣିବାକୁ ଗଲାରୁ ସେ ମୋତେ କହିଲେ ଯେ, ଏ ବର୍ଷ କୌଣସି ଛାତ୍ରକୁ ସାର୍ଟିଫିକେଟ୍ ଦିଆଯିବ ନାହିଁ ବୋଲି କଲେଜ ଷ୍ଟାଫ୍ ମିଟିଙ୍ଗରେ ସ୍ଥିର କରାଯାଇଛି। ତାପରେ ମୁଁ ତାଙ୍କୁ ପରିଜା ସାହେବଙ୍କ ସାର୍ଟିଫିକେଟ୍ ଦେଖାଇବାରୁ ସେ ଅତି

ଉତ୍‌ଫୁଲ୍ଲିତ ହୋଇ ମୋତେ ଗୋଟିଏ ଚମତ୍କାର ସାର୍ଟିଫିକେଟ୍ ଦେଲେ ଏବଂ ହଷ୍ଟେଲ ୟୁନିଅନର ଜଣେ ଛାତ୍ରଙ୍କ ବିରୋଧରେ ହୋଇଥିବା ଅଭିଯୋଗରେ ମୁଁ ସତ୍ୟର ଆଶ୍ରୟ ନେଇଥିବାରୁ ମୋର ପ୍ରଶଂସା କଲେ । ପରବର୍ତ୍ତୀ କାଳରେ ସେ ଡି.ପି.ଆଇ. ଥିବାବେଳେ ମଧ୍ୟ ମୋର ପଦୋନ୍ନତିରେ ବହୁତ ସାହାଯ୍ୟ କରିଥିଲେ ।

**କିଛି ବିଶିଷ୍ଟ ଘଟଣା**

ରେଭେନ୍‌ସା କଲେଜରେ ପ୍ରଥମ ଓଡ଼ିଆ ପ୍ରିନ୍‌ସିପାଲ୍ ହେଲେ ଶ୍ୟାମାଚରଣ ତ୍ରିପାଠୀ । ତ୍ରିପାଠୀ ସାହେବ ଜଣେ ମଜାଦର ଲୋକ ଥିଲେ । ତାଙ୍କ ସମୟରେ ଦୁଇଟି ଛାତ୍ରାବାସରେ ଛାତ୍ରମାନଙ୍କୁ ମାଗଣାରେ କଡ଼ଲିଭର ଅଏଲ ଦିଆଯାଉଥିଲା ଏବଂ ଆଉଟ୍‌ଡୋର ଗେମ୍‌ସକୁ ବାଧ୍ୟତାମୂଳକ ଭାବେ ପ୍ରଚଳନ କରିଥିଲେ ।

ସେ ଥରେ ଦୁଇ ଛାତ୍ରାବାସର ଛାତ୍ରମାନଙ୍କୁ ନେଇ ମହାନଦୀପଠାରୁ ଗୋଟିଏ ଗୋଟିଏ ଠେଲାଗାଡ଼ିରେ କିଛି ପଙ୍କ ଆଣି କଲେଜ quaderangleରେ ପକାଇଲେ । ତାପରେ କଲେଜ quaderangleଟି ଘାସ ଓ ନାନାପ୍ରକାର ଫୁଲରେ ହସି ଉଠିଥିଲା । ୧୯୩୯ ମସିହାରେ ଆଇ.ଏ. ଏବଂ ବି.ଏ. ପରୀକ୍ଷା ସରିବାପରେ ଦୁଇ ଛାତ୍ରାବାସର ଛାତ୍ରମାନଙ୍କୁ ପ୍ରିନ୍‌ସିପାଲ ଓ କଲେଜଷ୍ଟାଫ୍ ଗୋଟିଏ ରାଜକୀୟ ଢଙ୍ଗରେ ଭୋଜି ଦେଇ ଆପ୍ୟାୟିତ କରିଥିଲେ । ଉକ୍ତ ଭୋଜିର ଖର୍ଚ୍ଚ ପ୍ରିନ୍‌ସିପାଲ ଓ ସମସ୍ତ ଅଧ୍ୟାପକ ଚାନ୍ଦାଦେଇ ବହନ କରିଥିଲେ । ଚେୟାର, ଟେବୁଲ୍ ପକାଇ ଆମମାନଙ୍କୁ ବସାଇ ନିଜେ ପ୍ରିନ୍‌ସିପାଲ ଓ ଅଧ୍ୟାପକମାନେ ଖାଦ୍ୟ ପରିବେଷଣ କରିଥିଲେ ଏବଂ ରଗବି ଖେଳକୁ ନେଇ ଏକ ଇଂରାଜୀ ସିନେମା ଦେଖାଇଥିଲେ ।

ଥରେ ମୁଁ ଏବଂ ମୋର ଜଣେ ସହପାଠୀ କଲେଜ ଲାଇବ୍ରେରୀକୁ ଯାଇଥିଲୁ । ସେପଟରୁ ଶ୍ୟାମଚରଣ ତ୍ରିପାଠୀ ଏବଂ ପ୍ରିନ୍‌ସିପାଲ ଆସୁଥିଲେ । ମୁହାଁମୁହିଁ ହୋଇଯିବାରୁ ଆମେ ସେ ଦୁହିଁଙ୍କୁ ନମସ୍କାର କଲୁ । ସେ ହଠାତ୍ ମୋର ସହପାଠୀର ହାତଟାକୁ ଧରିପକାଇ ତାର ନାମ ପଚାରିଲେ । ଛାତ୍ରଜଣକ ତାର ନା ଶ୍ୟାମ ଚନ୍ଦ୍ର ତ୍ରିପାଠୀ କହିବାକୁ ତ୍ରିପାଠୀ ସାହେବ କହିଲେ, "You bear my name and you are so thin, look at me, How fat I am." ସେ ପିଲାଟିର ହାତଧରି ଟାଣିଟାଣି ନେଲେ । ତାକୁ ନେଇ କଲେଜ ଡାକ୍ତର ପାଖରେ ହାଜର କରାଇଲେ । ଡାକ୍ତରଙ୍କୁ କହିଲେ, "Dr. this boy bears my name and he is so thin, please make him fat." ସେଇଦିନରୁ ସେଇ ଛାତ୍ରଙ୍କୁ ଡାକ୍ତର ବେଶ୍ କିଛି ଔଷଧ ଦେଲେ । ବାସ୍ତବିକ୍ ସେ ପିଲାଟି ଥିଲା ଅତି ଢେଙ୍ଗା ଆଉ ଟଳଟଳ ହୋଇ ଚାଲୁଥିଲା । ଯାହାହେଉ ପ୍ରିନ୍‌ସିପାଲଙ୍କ ଆଗରେ ହାବୁଡ଼ିଯିବା ଥିଲା ଏକ ଆକସ୍ମିକ ଘଟଣା ।

•

*ଶିକ୍ଷକ-ଶିକ୍ଷାବିତ୍*, ସୁବର୍ଣ୍ଣରେଖା ପ୍ରକାଶନୀ, ୨୦୧୩

# କଲେଜରେ ପାଞ୍ଚ ବର୍ଷ

## ହରପ୍ରସାଦ ମହାପାତ୍ର

ମୁଁ ମେଟ୍ରିକ୍ ପାସ୍ କଲାବେଳେ ମୋର ବୟସ ୧୬ବର୍ଷ ହୋଇଥାଏ । ସେତେବେଳେ ଓଡ଼ିଶାରେ ଏକମାତ୍ର କଲେଜ କଟକର ରେଭେନ୍ସା କଲେଜ । ମୁଁ ପଢ଼ିବାକୁ ଯିବା ପାଇଁ ଜିଦ୍ କଲି । ସେତେବେଳେ କେବଳ ଦୁଇ ତିନୋଟି ପାସେଞ୍ଜର ଟ୍ରେନ୍ ବ୍ୟତୀତ ସୋରରୁ କଟକ ଯିବାକୁ ଅନ୍ୟ କିଛି ପନ୍ଥା ନଥାଏ । ମହାନଦୀ, ବ୍ରାହ୍ମଣୀ ଆଦି ବିରାଟକାୟ ନଦୀ ଉପରେ ସଡ଼କ ରାସ୍ତା ପୋଲ ୧୯୬୬ ମସିହାରେ ତିଆରି ହେଲା । ବାପା ତାଙ୍କ ବାର୍ଦ୍ଧକ୍ୟ ଅବସ୍ଥାରେ ତାଙ୍କର ଏକମାତ୍ର ପୁଅକୁ କଟକ ପଠାଇବାକୁ କୁଣ୍ଠିତ ହେଉଥାନ୍ତି । କିନ୍ତୁ ନିଷେଧ କରୁ ନଥାନ୍ତି । ସେହି ବର୍ଷ ସୋର ବଜାର ଠାରୁ ଆରମ୍ଭ କରି ପୂର୍ବରେ ସମୁଦ୍ର ଉତ୍ତରରେ ଖନ୍ତାପଡ଼ା ଓ ଦକ୍ଷିଣରେ ମାର୍କୋଣା ପର୍ଯ୍ୟନ୍ତ ଅଞ୍ଚଳକୁ ମୁଁ ହିଁ ଏକମାତ୍ର କଲେଜକୁ ପଢ଼ିବାକୁ ଯିବା ଛାତ୍ର ଥାଏ । ମୋର ଜକା କିନ୍ତୁ ମୋର କଲେଜ ପଢ଼ାକୁ ଦୃଢ଼ ଭାବେ ସମର୍ଥନ କରୁଥାନ୍ତି । ମାଆ ତ ମୁଁ କଟକ ଯିବା କଥା ଶୁଣିଲେ କାନ୍ଦ ବୋବାଳି ଛାଡ଼ୁଥାଏ । ୧୯୪୦ ମସିହା ଜୁଲାଇ ୨ ତାରିଖରେ ଗ୍ରୀଷ୍ମ ଛୁଟି ପରେ କଲେଜ ଖୋଲିଲା ପହିଲା ଦିନ ଏବଂ ଜକା ମୋତେ ସାଙ୍ଗରେ ଧରି ଆମ ଅଞ୍ଚଳ ବୈକୁଣ୍ଠ ମିଶ୍ର ନାମକ ଜଣେ ବହି ଦୋକାନୀ (ସେ କଟକରୁ ବହି ନେଇ ଗାଆଁରେ ବିକନ୍ତି)ଙ୍କ ସଙ୍ଗରେ କଟକ ଯିବା ପାଇଁ ବାହାରି ଆସିଲେ । ସୋର ଷ୍ଟେସନରେ ଦୈବାତ୍ ମୋର ଜିଲ୍ଲା ସ୍କୁଲ ଓ ହଷ୍ଟେଲ ସହପାଠୀ ସୋର ସରସଙ୍ଗ ଗ୍ରାମର ଶ୍ରୀ ପ୍ରହ୍ଲାଦ ଖିଲାରଙ୍କ ସହ ସାକ୍ଷାତ୍ ହେଲା । ସେ ମଧ୍ୟ କଲେଜରେ ନାମ ଲେଖାଇବାକୁ ଯାଉଥାଏ । ସେତେବେଳେ ଦିନ ୧୧ଟାରେ ଆସନସଲ-ପୁରୀ ପାସେଞ୍ଜର ଟ୍ରେନ ସୋର ଷ୍ଟେସନ ଛାଡ଼େ । ଆମେ ୪ଜଣ ସେହି ଗାଡ଼ିରେ ଯାଇ ପ୍ରାୟ ସନ୍ଧ୍ୟା ବେଳେ କଟକ ଷ୍ଟେସନରେ ପହଞ୍ଚିଲୁ । ବୈକୁଣ୍ଠ ମିଶ୍ର ପାଇକାରି ଦୋକାନରୁ ବହି ଆଣିବାକୁ ଗଲେ ଓ ଜକା ଆମ ନିଜ ମାଲି ମୋକଦମାରେ କଟକ ଗଲେ ଘରଭଡ଼ା ନେଇ ରହୁଥିଲେ । ଆମେ ସେହିପରି ଚୌଧୁରୀ ବଜାର ରୁଦ୍ରଚରଣ ମହାନ୍ତି ଓକିଲଙ୍କ ମହକିଲଙ୍କ ପାଇଁ ନିର୍ମିତ ମାଟି ଭଡ଼ାଘରେ ଯାଇ ରହିଲୁଁ । ଭଡ଼ା ଦିନକୁ ଦୁଇଅଣା ଅର୍ଥାତ୍ ୧୨ ନୂଆ ପଇସା ଓ କଳା ଭବନ-ହୋଟେଲରେ ଖାଇଲୁ । ସାଧାମିଲ୍ ୧୦ ପଇସା (୧୫ନୂଆ ପଇସା) । ସେଠାରୁ ଦୈନିକ ରିକ୍ସା ଭଡ଼ା କରି ରେଭେନ୍ସା

କଲେଜକୁ ଆସୁଁ । ଆମେ ଅଜ୍ଞତା ବଶତଃ ମେଟ୍ରିକ୍ ସାର୍ଟିଫିକେଟ୍ ବା School Leaving Certificate ନେଇ ନ ଥିଲୁ । ଓଡ଼ିଶାର ମେଟ୍ରିକ ପରୀକ୍ଷା ଫଳ ପାଟଣା ବିଶ୍ୱବିଦ୍ୟାଳୟ ଦ୍ୱାରା ସେତେବେଳେ ଗେଜେଟ୍‌ରେ ପ୍ରକାଶ ପାଉଥାଏ । ସେହି ଗେଜେଟ୍‌ରୁ ଆମ ନାମ ଦେଖି କଲେଜ କିରାଣିମାନେ ଠିକ୍ ବୋଲି ନୋଟ୍ ଦେବାରୁ ପ୍ରିନ୍‌ସିପାଲ ଶ୍ରୀଯୁକ୍ତ ପ୍ରାଣକୃଷ୍ଣ ପରିଜା ଆମ ପାଇଁ କଲେଜରେ ବିଜ୍ଞାନ କ୍ଲାସ୍ ଓ ପଶ୍ଚିମ ହଷ୍ଟେଲରେ ରହଣି ପାଇଁ ଆଦେଶ ଦେଲେ । ଭଡ଼ାଘରୁ କଲେଜକୁ ଖଣ୍ଡିଏ ଟଣା ରିକ୍ସାରେ ୨ଜଣ ଯିବାକୁ ୬ ପଇସା ( ୧୦ ନୂଆ ପଇସା ) ପଡ଼ୁଥାଏ । ସେତେବେଳେ କଟକରେ ସାଇକେଲ ରିକ୍ସା ପ୍ରଚଳନ ନଥାଏ । ଜୁଲାଇ ୪/୫ ତାରିଖରେ ଆମେ କଲେଜ ଅଫିସକୁ ବୁଝିବାକୁ ଯାଇଥିବା ବେଳେ କିରାଣି ସାଧୁବାବୁ ମୋତେ ଗୋଟିଏ ଟେଲିଗ୍ରାମ ଦେଲେ । ବାପାଙ୍କଠାରୁ ଫେରନ୍ତା ଉତ୍ତର ଖର୍ଚ୍ଚ ସହ ଟେଲିଗ୍ରାମ ଯାଇଥିଲା ଯେ ଆମେ ନିରାପଦରେ ଅଛୁଁ ତ ? ଘଟଣା ହେଲା ଯେ ଆମେ ଆସନସୁଲ ଗାଡ଼ିରେ ଯେଉଁ ଦିନ ଆସିଲୁ ସେହିଦିନ ଶେଷ ରାତ୍ରିରେ ବ୍ରାହ୍ମଣୀ ବୈତରଣୀ ଓ ଖରସୁଆଁରେ ବନ୍ୟା ଯୋଗୁଁ ରେଳ ଯୋଗାଯୋଗ ବିଚ୍ଛିନ୍ନ ହୋଇଗଲା । ବାପାଙ୍କର ଆଶଙ୍କା ଥିଲା ଯେ ଆସନସୁଲ ଗାଡ଼ି ନିରାପଦରେ କଟକ ପହଞ୍ଚିଛି କି ନାହିଁ । ସେତେବେଳେ ରେଡ଼ିଓ ନଥିଲା । କେବଳ ଦୈନିକ ସମାଜ ଅନନ୍ତପୁର ମାଇନର ସ୍କୁଲକୁ ଖଣ୍ଡିଏ ଯାଏ । ଆମ ଗ୍ରାମକୁ ଖଣ୍ଡିଏ ସାପ୍ତାହିକ ସମାଜ ଯାଉଥିଲା । ତେଣୁ ସଠିକ୍ ଖବର ଯଥା ସମୟରେ ବାପା ପାଉ ନଥିଲେ । ଟେଲିଗ୍ରାଫ୍ ଅଫିସ ସୋର ପୋଷ୍ଟ ଅଫିସରେ ଥିଲା । ଯାହାହେଉ ମୁଁ ତତ୍‌କ୍ଷଣାତ୍ କଲେଜ ସାମ୍ନା ଚାଉଳିଆଗଞ୍ଜ ପୋଷ୍ଟ ଅଫିସରେ ସଙ୍ଗେ ସଙ୍ଗେ ଟେଲିଗ୍ରାମ ସମ୍ବାଦ ଫେରାଇ ଦେଲି । ଆମ୍ଭେମାନେ କଲେଜରେ ୫/୬ ତାରିଖରେ ନାମ ଲେଖାଇ ପଶ୍ଚିମ ହଷ୍ଟେଲକୁ ତତ୍ ପର ଦିନ ଜିନିଷପତ୍ର ସହ ଗଲୁ । ସେତେବେଳକୁ ୧୬ ନମ୍ବର କୋଠରି ଆମକୁ ଦିଆଯାଇଥିଲା । ଆମ ସହ ବାଲେଶ୍ୱର ଜିଲ୍ଲା ସ୍କୁଲରୁ ପାସ୍ କରିଥିବା ଚୂନିଲାଲ ମହାପାତ୍ର ଓ ବାମଦେବ ମିଶ୍ର ମଧ୍ୟ ସେହି କୋଠରିରେ ରହିଲୁ । ସେହି ବର୍ଷ ଠାରୁ ରୁମ୍ ଗୁଡ଼ିକ ଚାରି ଶଯ୍ୟା ବିଶିଷ୍ଟ ହେଲା , ତତ୍ ପୂର୍ବରୁ ୩ଜଣ ରହୁଥିଲେ । ବାଲେଶ୍ୱର ଜିଲ୍ଲା ସ୍କୁଲ ହଷ୍ଟେଲର ପ୍ରତି ରୁମରେ ୪ଜଣ ରହୁଥିଲେ । କଲେଜ ହଷ୍ଟେଲ ରୁମ କିନ୍ତୁ ତାହା ଅପେକ୍ଷା ସଂକୀର୍ଣ୍ଣ ଥିଲା । ସମଗ୍ର ହଷ୍ଟେଲଟି ଦ୍ୱିତଳ ଓ ୪ଟି ଓ୍ୱାର୍ଡରେ ବିଭକ୍ତ ହୋଇଥାଏ । ପ୍ରତ୍ୟେକ ଓ୍ୱାର୍ଡରେ ୧୮ଟି ରୁମ୍ ଥାଏ । ତନ୍ମଧ୍ୟରୁ ୧ମ ଓ୍ୱାର୍ଡର ପ୍ରଥମଟି ଶିକ୍ (Sick) ରୁମ ଅର୍ଥାତ୍ ଅସୁସ୍ଥ ଛାତ୍ର ସେଠାରେ ଶାନ୍ତିରେ ରହି ଚିକିତ୍ସିତ ହୋଇ ପାରିବେ । ୨ୟ ଓ୍ୱାର୍ଡର ଶେଷ ରୁମ ହଷ୍ଟେଲ ଓ୍ୱାର୍ଡେନଙ୍କ ଅଫିସ ଏବଂ ତତ୍ ପୂର୍ବବର୍ତ୍ତୀ ରୁମ ହଷ୍ଟେଲ ଅଫିସ । ୮ଟି ଜଣକିଆ ରୁମ । ଦ୍ୱିତଳରେ ଥିବା ୩ୟ ଓ ୪ର୍ଥ ଓ୍ୱାର୍ଡ ପ୍ରତ୍ୟେକରେ ୮ଟି କରି ଜଣକିଆ ଓ ୧୦ଟି ୩/୪ ଜଣିଆ ରୁମ୍ ଥାଏ । ଜଣକିଆ ରୁମ ଗୁଡ଼ିକ ଦ୍ୱିତୀୟ ଓ ଚତୁର୍ଥ ବା ପଞ୍ଚମ ଓ ଷଷ୍ଠ ବର୍ଷର ମେଧାବୀ ଛାତ୍ରଙ୍କ ପାଇଁ ଉଦ୍ଦିଷ୍ଟ ଥାଏ । ଦ୍ୱିତୀୟ ଓ୍ୱାର୍ଡରେ ୩୬ ନମ୍ବର ରୁମ୍ ଓ୍ୱାର୍ଡେନଙ୍କ ଅଫିସ ଓ ୩୫

ନମ୍ବର ରୁମ ହଷ୍ଟେଲ ଅଫିସ । ତାହା ହଷ୍ଟେଲର ସରକାରୀ କିରାନି ଏବଂ ସୁପରିନ୍‌ଟେଣ୍ଡେଣ୍ଟ ଓ ଆସିଷ୍ଟାଣ୍ଟ ସୁପରିନ୍‌ଟେଣ୍ଡଣ୍ଟ ବ୍ୟବହାର କରୁଥିଲେ । ହଷ୍ଟେଲ ଦୋତାଲାରେ ୩ ଓ ୪ର୍ଥ ଓ୍ୱାର୍ଡ ପୂରାପୂରି ଛାତ୍ରମାନଙ୍କ ପାଇଁ ଉଦ୍ଦିଷ୍ଟ । ତଳ ତାଲାରେ ଉଭୟ ଓ୍ୱାର୍ଡର ମଝିରେ ଥିବା ଗୋଟିଏ ଖୁବ୍ ବଡ଼ କୋଠରି (Indoor games) ଇନ୍-ଡୋର ଗେମ୍‌ସ ପାଇଁ ବ୍ୟବହୃତ ହୁଏ । ସେଠାରେ Pingpong Carom ଆଦି ଖେଳ ହଷ୍ଟେଲ ଅଫିସ୍ ତରଫରୁ ଯୋଗାଇ ଦିଆଯାଉଥାଏ । ସେହି କୋଠରିରେ ବାହାରକୁ ଦରଜା ଥାଏ । ରାତି ୧୦ଟାରୁ ସକାଳ ୬ଟା ପର୍ଯ୍ୟନ୍ତ ହଷ୍ଟେଲ ପାଇଁ ନିଯୁକ୍ତ ସରକାରୀ ପିଅନ ରେଜିଷ୍ଟର ରଖି ସେହି ଦରଜାରେ ଚାବି ପକାଇ ଶୁଏ । ହଷ୍ଟେଲର ଉତ୍ତର ଓ ଦକ୍ଷିଣ ମଥାରେ ୨ଟି ଦରଜା ପଠନ ସମୟ ଓ ରାତ୍ରି ୧୦ଟାରୁ ସକାଳ ୬ଟା ପର୍ଯ୍ୟନ୍ତ ଚାବି ପଡ଼େ । ରାତିରେ କେହି ବାହାରକୁ ଗଲେ ବା ଆସିଲେ ପିଅନ ରେଜିଷ୍ଟରରେ ନାମ ଲେଖି ଯିବାକୁ ହୁଏ । ସକାଳ ୬ଟାରୁ ୯ଟା ଓ ସନ୍ଧ୍ୟାରେ ୭ଟାରୁ ୯ଟା ପଢ଼ା ସମୟ । ସେଥିପାଇଁ ଘଣ୍ଟି ବାଜେ । ସେହି Games room ର ଉପର ତାଲାରେ ସେହିପରି ଏକ ବଡ଼ ହଲ ଥାଏ । ତାହା ପ୍ରାର୍ଥନା, ଗାଆନ୍, ବଜାନ୍ ପାଇଁ ଉଦ୍ଦିଷ୍ଟ ଥିଲା । ହାରମୋନିୟମ୍, ଡିଗି ତବଲା ହଷ୍ଟେଲ ତରଫରୁ ଯୋଗାଇ ଦିଆଯାଇଥାଏ । ହଷ୍ଟେଲର ୧ ନମ୍ବର ରୁମ୍ ସଂଲଗ୍ନ ଦୋତାଲା କୋଠାର ତଳ ତାଲାରେ Assistant Superintendent ଶ୍ରୀ ଜଗଦାନନ୍ଦ ମହାନ୍ତି ଓ ଦୋତାଲାରେ Superintendent ଶ୍ରୀ ବାମାଚରଣ ଦାସ ରହୁଥାନ୍ତି । ସେହିପରି ଦ୍ୱିତୀୟ ଓ୍ୱାର୍ଡର ଶେଷ ୩୬ ନମ୍ବର ରୁମ୍ ସଂଲଗ୍ନ ଦୋତାଲା କୋଠାର ଉପରତାଲା ଓ୍ୱାର୍ଡେନଙ୍କ କ୍ୱାର୍ଟର ଏବଂ ତଳେ ଏକ ହଲ୍ ଥାଏ । ତାହା Common Room ଭାବେ ବ୍ୟବହୃତ ହୁଏ । ସେଠାରେ ଗୋଟିଏ ବିରାଟ ରେଡ଼ିଓ ଥାଏ । ତତ୍କାଳୀନ ଓଡ଼ିଶାର ଏକମାତ୍ର ଦୈନିକ ଖବର କାଗଜ ସମାଜ ଏବଂ ଦୁଇଟି ଇଂରାଜୀ ଦୈନିକ ଅମୃତ ବଜାର ପତ୍ରିକା ଓ ହିନ୍ଦୁସ୍ଥାନ ଷ୍ଟାଣ୍ଡାର୍ଡ ସରକାରୀ ଖର୍ଚ୍ଚରେ ହଷ୍ଟେଲକୁ ଆସୁଥାଏ । ହଷ୍ଟେଲ ତରଫରୁ ଏହି ସବୁ ଯୋଗାଣ ପିଅନ ଓ କିରାଣି ଦରମା ସହ ପ୍ରତ୍ୟେକ ଛାତ୍ରଙ୍କୁ ମାସିକ ୧ଟଙ୍କା ବାରଅଣା ଅର୍ଥାତ୍ ୧ଟଙ୍କା ୭୫ ପଇସା ଖାଇବା ଖର୍ଚ୍ଚ ସହ ହଷ୍ଟେଲ ଅଫିସରେ ଜମା ଦେବାକୁ ହୁଏ । ଖାଇବା ଖର୍ଚ୍ଚ ମାସିକ ୧୦ଟଙ୍କା ୧୨ଅଣା ଅର୍ଥାତ୍ ୧୦ଟଙ୍କା ୭୫ ପଇସା ଥିଲା । ଓ୍ୱାର୍ଡେନଙ୍କ ଦ୍ୱାରା ନିଯୁକ୍ତ ଜଣେ ମେନେଜର ମାସିକ ୩୦ଟଙ୍କା ଦରମାରେ ମେସ୍ ପରିଚାଳନା କରୁଥିଲେ । ପଶ୍ଚିମ ହଷ୍ଟେଲ ଛାତ୍ରମାନଙ୍କ ପାଇଁ ନ'ଟି ମେସ୍ କାର୍ଯ୍ୟ କରୁଥାଏ । ୮ଟି ଘରେ ରୋଷେଇ ଏବଂ ୮ଟି ରୁମରେ ବସି ଖାଇବା ପାଇଁ ବ୍ୟବସ୍ଥା ଥାଏ । ସେଥିରୁ ୧ଟି ମେସ୍ ନିରାମିଷ ଭୋଜନ ପାଇଁ । ମୁଁ ନିରାମିଷ ଥିବାରୁ ସେହି ମେସରେ ଖାଇବାକୁ ନାମ ଦେଲି । ପ୍ରତି ମେସରେ ୨୦ରୁ ୨୫ ଛାତ୍ରଙ୍କ ପାଇଁ ରୋଷେଇ ହୁଏ । ଜଣେ ବ୍ରାହ୍ମଣ ପୂଝାରୀ ଓ ଆଉ ଜଣେ ଚାକର ଥାଏ । ଏତଦ୍ ବ୍ୟତୀତ ପ୍ରତ୍ୟେକ ଓ୍ୱାର୍ଡ ପାଇଁ ଜଣେ ଚାକର ଥାଏ । ପ୍ରତ୍ୟେକ ରୁମ୍ ଝାଡ଼ିବା, ପିଇବା ପାଣି ଦେବା, ଧୁଆ ଲୁଗା ଶୁଖାଇବା ଓ ପୁଣି ଆଣି ରଖିବା, ବରାଦ ମତେ

କଳଖିଆ, ପାନ ବଜାରରୁ ଆଣି ଦେବା ଇତ୍ୟାଦିର ଡାକ ଶୁଣିବା ତାର କାମ। ପଶ୍ଚିମ ଛାତ୍ରାବାସରେ ୮ଟି ମେସ୍ ବ୍ୟତୀତ ଦ୍ୱିତୀୟ ଓ୍ୱାର୍ଡରେ ୨୫/୨୬ ନମ୍ବର ରୁମ୍ ମୁସଲମାନ ଛାତ୍ରଙ୍କ ପାଇଁ ନିର୍ଦ୍ଦିଷ୍ଟ ଥିଲା। ସେମାନଙ୍କ ପାଇଁ ଆମ୍ଭମାନଙ୍କ ରୋଷେଇ ସ୍ଥାନ ଠାରୁ ପ୍ରାୟ ୨୦/୩୦ ହାତ ଦୂରରେ ପୃଥକ ରୋଷେଇ ଓ ଖାଇବା ଘର ଥିଲା। ସେଠାରେ ଜଣେ ଲୋକ ରୋଷେଇ ଓ ଚାକର ଉଭୟ କାମ କରୁଥାଏ। ତାଙ୍କୁ ସମସ୍ତେ ବଡ଼ ମିଆଁ ବୋଲି ଡାକୁଁ। କିନ୍ତୁ ଅନ୍ୟ ୮ଟି ମେସର ପୂଝାରୀ, ଚାକର, ଓ୍ୱାର୍ଡ ଚାକର ଓ ହଷ୍ଟେଲ ପିଅନମାନଙ୍କ ପାଇଁ ରହିବା ଘର ରୋଷେଇ ମେସ୍ ପଛକୁ ଥାଏ। ହଷ୍ଟେଲ ତରଫରୁ ଦୁଇଓଳି ମିଲ୍ ଏବଂ ୪ଟା ବେଳେ କଳଖିଆ ଦିଆଯାଏ। ନିରାମିଷ ଭୋଜନରେ ଡାଲି ବ୍ୟତୀତ ଆଉ ୪ଟି ତରକାରି ଦିଆଯାଏ। ଆମିଷ ମିଲରେ ଡାଲି ବ୍ୟତୀତ ଆମିଷ ଲଗା ୩ଟି ତରକାରି ଦିଆଯାଏ। ଆମିଷ ମେସରେ ଦୈନିକ ସକାଳେ ମାଛ ଓ ରାତ୍ରରେ ମାଂସ ତରକାରି ହୁଏ। ପ୍ରତି ଶନିବାର ଦିନ ଗୋଟିଏ ସାଧାରଣ ଭୋଜି ଏବଂ ମାସର ଶେଷ ଶନିବାରରେ ଗୋଟିଏ ବଡ଼ ଭୋଜି ହୁଏ। ପ୍ରତି ମିଲର ମୂଲ୍ୟ ୬ପଇସା (୧୦ ନୂଆ) ଶନିବାର ଭୋଜିର ମୂଲ୍ୟ ୧୦ ପଇସା (୧୫ ନୂଆ ପଇସା) ଏବଂ ମାସ ଶେଷରେ ଭୋଜିରେ ପ୍ରତି ମଲ ୫ ଅଣା ୬ ପାହି ଅର୍ଥାତ୍ (୩୫ ନୂଆ ପଇସା) ଏତଦ୍ ବ୍ୟତୀତ ପ୍ରତି ବର୍ଷ ୩ଟି ବିରାଟ ଭୋଜି (Grand feast) ହୁଏ। ତହିଁରେ ପ୍ରତ୍ୟେକ ମିଲର ମୂଲ୍ୟ ୧ଟଙ୍କା। ତାହା ସରସ୍ୱତୀ ପୂଜା ଓ ଗଣେଶ ପୂଜା ଏବଂ ଜୁଲାଇ ମାସରେ ଛାତ୍ରାବାସର ନୂତନ ଅନ୍ତେବାସୀମାନଙ୍କ ଅଭ୍ୟର୍ଥନା ପାଇଁ ହୁଏ। ଓ୍ୱାର୍ଡେନ ଓ ସୁପରିନ୍‌ଟେଣ୍ଡେଣ୍ଟଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଓ ଜଣେ ମେନେଜର କରିଆରେ ଖାଦ୍ୟ ପାଇଁ ବ୍ୟବସ୍ଥା ହେଉଥିଲେ ହେଁ ପ୍ରତି ମେସ୍ ପାଇଁ ଛାତ୍ରମାନଙ୍କ ମଧ୍ୟରୁ ଜଣକୁ ସୁପରଭାଇଜର ଭାବେ Superintendent ମନୋନୟନ କରିଥାନ୍ତି। ସେ ଇଚ୍ଛା କଲେ ଜିନିଷପତ୍ର ଖରିଦ ଓ ଖର୍ଚ୍ଚ ହିସାବ ମେନେଜରଙ୍କ ଠାରୁ ନିଅନ୍ତି ଓ ହିସାବ ଖାତା ଚେକ୍ କରନ୍ତି। କୌଣସି ପୂଝାରୀ ଚାକର ରାନ୍ଧଣା କର୍ତ୍ତବ୍ୟରେ ତ୍ରୁଟି ହେଲେ ଉଚିତ ପଦକ୍ଷେପ ନେବାପାଇଁ ମେନେଜରଙ୍କୁ ସେ ନିର୍ଦ୍ଦେଶ ଦିଅନ୍ତି। ସାଧାରଣତଃ ବଡ଼ ବଡ଼ ପୁରି ଚାରିଖଣ୍ଡ ଓ ତରକାରି କଳଖିଆରେ ଦିଆଯାଏ। ପ୍ରତି ଶନିବାର ସନ୍ଧ୍ୟା ଭୋଜିରେ ସ୍ୱାଦିଷ୍ଟ ଦାମିକା ତରକାରି ଓ ଭଜା ଆଦି ୫/୬ଟି ବ୍ୟତୀତ ରାଜଭୋଗ, ଫଳ, ପାୟସ, କିସ୍‌ମିସ୍ ବା ଖେଜୁରି ଖଟା ନିରାମିଷ ଭୋଜନରେ ଦିଆଯାଏ। ସେହିପରି ଆମିଷ ଭୋଜନରେ ମାଂସ, ଆମିଷ ଚପ ସାଧାରଣ ତରକାରି ୨/୩ଟି ରସଗୋଲା ଓ ଖଟା ଦିଆଯାଏ। ମାସ ଶେଷ ଶନିବାର ଭୋଜିରେ କାନିକା ବା ମିଠା ଘିଅଭାତ ଉଭୟରୁ ଯେ ଯାହା ଇଚ୍ଛାମତେ ନେଇ ପାରିବେ। ଛେନା ମହିଁଷା ଘିଅରେ ଭଜା ଛେନାବଡ଼ା ଝୋଳ ସହ ମୂଲ୍ୟବାନ୍ ପରିବାର ରସା, ଡାଲି କିସ୍‌ମିସ୍ ଓ ଖେଜୁରି ଖଟା, ପାଏସ ରସଗୋଲା ଓ ଫଳ ଅନ୍ୟାନ୍ୟ ୨/୩ଟି ଭଜା ବା ସନ୍ତୁଳା, ପୁଣି ହଜମ ପାଇଁ ସୋଡ଼ା ବା ଲିମୋନେଡ୍ ଗୋଟିଏ କରି ନିରାମିଷ ମେସରେ ଦିଆଯାଏ। ଆମିଷ ମେସରେ ଡାଲି,

ମାଂସ ତରକାରି, ଛେନାବଡ଼ା ତରକାରି, ଭଜା, ଖଟା, ମିଠା ଦିଆଯାଏ । କି, କି ଆଇଟମ୍ ହେବ ତାହା ସଂପୃକ୍ତ Supervisor ମାନେ ତାଲିକା ଦିଅନ୍ତି । ତିନୋଟି Grand feast ପଶ୍ଚିମ ଓ ପୂର୍ବ ହଷ୍ଟେଲ ଉଭୟ ମିଶି ଏକତ୍ର ହୁଏ । ସାଧାରଣତଃ ୩ୟ ଭୋଜି ପଶ୍ଚିମ ହଷ୍ଟେଲରେ ଆୟୋଜନ କରାଯାଏ ଏବଂ ସରସ୍ୱତୀ ପୂଜା ଭୋଜି ପଶ୍ଚିମ ଓ ଗଣେଶପୂଜା ଭୋଜି ପୂର୍ବ ହଷ୍ଟେଲରେ ହୁଏ । ସେଥିରେ ନିରାମଷ ଭୋଜନ ପାଇଁ ଯାହା କିଛି ଆୟୋଜନ ହୋଇପାରିବ ସେ ସମସ୍ତ ତାଲିକା ହୋଇ ସାରିଲା ପରେ ମଧ୍ୟ ପ୍ରତି ମିଲ୍ ୧ଟଙ୍କାରୁ କିଛି କିଛି ଖର୍ଚ୍ଚ ହୋଇ ନପାରି ବଳକା ରହେ ଏବଂ ସେହି ବଳକା ଅର୍ଥକୁ ପରବର୍ତ୍ତୀ ଶନିବାର ଭୋଜିରେ ମିଶାଇ ସାଧାରଣ ଶନିବାର ଭୋଜି ଅପେକ୍ଷା କିଛି ଅଧିକ ଖାଦ୍ୟ ବ୍ୟବସ୍ଥା କରାଯାଏ । ତତ୍କାଳୀନ Grand feast ର କଳ୍ପନା ବର୍ତ୍ତମାନ ଖୁବ୍ ଧନାଢ୍ୟ ଘରେ ବିବାହ ଭୋଜି ଠାରୁ ଉଚ୍ଚସ୍ତରୀୟ ଥିଲା । ନିରାମିଷ ଓ ଆମିଷରେ ତାଲିକା ମିଠା ଘିଅ ଭାତ ମଧ୍ୟରୁ ଯିଏ ଯାହା ଖାଇପାରେ । ବୁଟଡାଲି ଓ ବହଳିଆ ହରଡ଼ ଡାଲି ଦୁଇଟି ଯାକ ହୁଏ । ମାଂସ ତରକାରି ଓ ବଡ଼ ବଡ଼ ମାଂସ ଖଣ୍ଡରେ ମଟନ୍ ବଡ଼ ପୋହଣା ମାଛ ଚପ ଖୋଳ ବା କଟ୍‌ଲେଟ୍ ଛେନା ବଡ଼ାରେ ଖୋଳ ଆଳୁ ପୋଟଳ ବା ଆଳୁ ଜାଙ୍କଡ଼ କିମ୍ବା ଆଳୁ ଓ ବେସନ ବଡ଼ାରେ ଖୋଳ ବାଇଗଣ ଫାଳି ଛଣା ଭଜା ଆଉ ଦୁଇ ପ୍ରକାର ଭଜା, ରସଗୋଲା ଖଟା ଓ ଖେଜୁରି କିସ୍‌ମିସ୍ ଏହିପରି ଦୁଇ ପ୍ରକାର ଖଟା, ପାଏସ୍, କଦଳୀ, କମଳା ଆଦି ଫଳ ହଜମ ପାଇଁ ସୋଡ଼ା ବା ଲିମୋନେଡ୍ ଦାମିକା ପାନ ଓ ସିଗାରେଟ୍ ବ୍ୟବସ୍ଥା ହୁଏ । ପ୍ରିନ୍‌ସିପାଲ ଓ ଉଭୟ ହଷ୍ଟେଲର ୱାର୍ଡେନ ଓ Superintendent ମାନେ ନିମନ୍ତ୍ରିତ ହୋଇ ଆସନ୍ତି । ଯେତେ ସବୁ ଭୋଜି ହୁଏ, ଛୋଟ ବା ବଡ଼, ତହିଁରୁ ଯାହା ବଳାଏ ଚାକର, ପୂଝାରୀ ଓ ୱାର୍ଡ ଚାକରମାନଙ୍କ ବ୍ୟତୀତ ଆହୁରି ୨୫/୩୦ ଜଣ ଆନନ୍ଦରେ ଖାଇ ପୁଣି ପରଦିନ ସକାଳକୁ ସେମାନେ ନିଜପାଇଁ ରଖନ୍ତି । ଉଲ୍ଲେଖଯୋଗ୍ୟ ଯେ ମାଂସ ବାହାରୁ ପ୍ରାୟ ଆସେ ନାହିଁ । ଭେଣ୍ଡର ବା ଯୋଗାଣକାରୀ ଖାସି ଆଣି ରୋଷେଇ ବ୍ଲକ ପଛକୁ Manager ବା ଚାକରଙ୍କ ସାକ୍ଷାତରେ ମାଂସ କାଟି ଓଜନ କରିଦିଏ । ସାଧାରଣ ଦିନ ବା ଭୋଜିରେ ଜଣେ ନ ଖାଇଲେ ସେହି ମୂଲ୍ୟ ସେ ନିଜେ ମେନେଜର ଠାରୁ ନେଇଥାଏ । କିନ୍ତୁ Grand feastରେ ଭାଗ ନନେଲେ ମୂଲ୍ୟ ଫେରସ୍ତ କେହି ଚାହିଁ ପାରିବେ ନାହିଁ । ଅନ୍ନ ପରିବର୍ତ୍ତେ ପୂର୍ବରୁ ବରାଦ କଲେ ରୁଟି, ପାଉଁରୁଟି ମଧ୍ୟ Manager ବ୍ୟବସ୍ଥା କରନ୍ତି । ୱାର୍ଡ ଚାକରକୁ ବରାଦ କଲେ ସେ ରୁମରେ ଆଣି ଖାଦ୍ୟ ଦେଇଯାଏ । ସକାଳ ଜଳଖିଆ ୱାର୍ଡ ଚାକର ବଜାରରୁ ଆଣି ଦିଏ । ଆମେ ସାଧାରଣତଃ ୪ ପଇସା (ନୂଆ ୬ ପଇସା)ର ଜଳଖିଆ ଖାଉଥିଲୁଁ । ଗୋଟିଏ ବଡ଼ ପାମ୍ପଡ଼ ଭଳି ଭଲ ଘିଅ ଛଙ୍କା ପୁରି ଓ ୩ ପଇସା (ନୂଆ ୫ ପଇସା)ରେ ବର୍ତ୍ତମାନ ଗୋଟିଏ ଖୁବ୍ ବଡ଼ ପୁରଯୁକ୍ତ ରସଗୋଲା ଆମର ଯଥେଷ୍ଟ ହୁଏ । କଲେଜ ସାମ୍ନା ବଜାରରେ ଦକ୍ଷିଣ ଭାରତୀୟ ଜଳଖିଆ ଓ ହୋଟେଲ ଏବଂ ଆଉ ଗୋଟିଏ ହିନ୍ଦୁସ୍ଥାନୀ ଜଳଖିଆ ଓ ଅନ୍ନ ହୋଟେଲ ମଧ୍ୟ ଥାଏ । ତାହା ଛଡ଼ା ସାଧାରଣ ଓଡ଼ିଆ ହୋଟେଲ

କେତୋଟି ଥାଏ । ୨/୩ଟି ବଡ଼ ହୋଟେଲ ମଧ୍ୟ ଥାଏ । କଲେଜ ତରଫରୁ ସବୁ ପ୍ରକାର ଖେଳର ବ୍ୟବସ୍ଥା ହୋଇଥାଏ । ବର୍ଷ ଆରମ୍ଭରେ ଖେଳ, ନାଟକ ପାଠାଗାର ଆଦି ଖର୍ଚ୍ଚ ସକାଶ ୧ଟଙ୍କା ବା ୧ଟଙ୍କା ୫୦ ପଇସା ମାସିକ ବେତନ ସହ ଆଦାୟ ହୁଏ । ବିଜ୍ଞାନ ବିଭାଗରେ Lending Library ଥାଏ । କିଛି ମୂଲ୍ୟ ଜମା ଦେଇ ଗରିବ ଛାତ୍ରମାନେ ସେଠାରୁ ବହି ଆଣି ପଢ଼ା ଶେଷରେ ତାହା ଫେରସ୍ତ ଦିଅନ୍ତି ଓ ଭଲ ଅବସ୍ଥାରେ ବହି ଫେରାଇଲେ ଜମା ଟଙ୍କା ଫେରସ୍ତ ମିଳେ ।

ସେତେବେଳେ କଲେଜରେ ପୁରୁଷ ଓ ମହିଳାମାନଙ୍କ ପାଇଁ ଏକତ୍ର ଶିକ୍ଷା ଦିଆଯାଏ । ଯଦିଓ ମହିଳାମାନଙ୍କ ସଂଖ୍ୟ ୧୦/୧୨ ମଧ୍ୟରେ ସୀମିତ ରହୁଥିଲା । ସମଗ୍ର ଛାତ୍ର ସଂଖ୍ୟା ୧୬/୧୭ ଶହରୁ ୨୧/୨୨ ଶହ ପର୍ଯ୍ୟନ୍ତ ରହୁଥିଲା । ପ୍ରିନ୍‌ସିପାଲଙ୍କ ସହ ମୋଟ ଅଧ୍ୟାପକମାନଙ୍କ ସଂଖ୍ୟା ୫୨ରୁ ୬୦ ମଧ୍ୟରେ । କ୍ଲାସରେ ଓ ଅଧ୍ୟାପକମାନଙ୍କ ସଙ୍ଗେ କଥାବାର୍ତ୍ତା ଇଂରାଜୀରେ କରିବାକୁ ବାଧ୍ୟ । ହଷ୍ଟେଲରେ କେତେବେଳେ ଓଡ଼ିଆରେ କଥାବାର୍ତ୍ତା କଲେ Superintendent ମାନେ ପ୍ରଥମ ବର୍ଷ ଛାତ୍ରମାନଙ୍କୁ ମଧ୍ୟ ଆପଣ ବୋଲି ସମ୍ବୋଧନ କରନ୍ତି । ତଳ ଛାତ୍ରମାନେ ବରିଷ୍ଠ ଛାତ୍ରମାନଙ୍କୁ ଆପଣ ବୋଲି କହିବା ମଧ୍ୟ ବାଧ୍ୟତାମୂଳକ ଥିଲା । ଯଦି ଆମେ କୌଣସି ଅଧ୍ୟାପକ ବା ପ୍ରଫେସରଙ୍କୁ ବିନୀତ ଭାବେ ଆମକୁ ଆପଣ ସମ୍ବୋଧନ କରିବାରେ ଲଜ୍ଜିତ ହେଉଛୁ ବୋଲି କହୁଁ, ସେମାନେ ଉତ୍ତର ଦିଅନ୍ତି । "You are no more School boys. You are gentlemen at large." ପ୍ରଫେସରମାନଙ୍କ ସଙ୍ଗେ କଥା କହିବାକୁ ଆମେ ଭୟ କରୁ ପ୍ରିନ୍‌ସିପାଲଙ୍କ ଅଫିସ ପାଖ ବାରଣ୍ଡାରେ ଗଲାବେଳେ ଯେପରି ଜୋତା ଶବ୍ଦ ନହେବ ଧୀରେ ଧୀରେ ପାଦ ପକାଇ ଯାଉଁ । ହଷ୍ଟେଲ ଛାତ୍ରମାନେ କଲେଜକୁ ଯାତାୟତ ବାଟରେ ତାଙ୍କ ଉପରେ ଖରା ପଡ଼େ ନାହିଁ ବର୍ଷା ଜଳ ପଡ଼େନାହିଁ । ସମଗ୍ର ଯାତାୟତ ବାରଣ୍ଡା ଉପରେ ଛାତ ଥାଏ । ମୟୂରଭଞ୍ଜ ମହାରାଜା ରାମଚନ୍ଦ୍ର ଭଞ୍ଜଙ୍କ ମହତ ଦାନରେ ପଦାର୍ଥ ଓ ରସାୟନ ବିଦ୍ୟାରେ ୨ଟି ବିଭାଗୀୟ କୋଠା, Laboratory ଗେଲେରିଯୁକ୍ତ Lecture theoter ନିର୍ମିତ ହୋଇ ତାଙ୍କରି ନାମରେ ନାମିତ ହୋଇଥିଲା । କନିକା ରାଜା (ବଡ଼ ଜମିଦାର)ଙ୍କ ଅନୁଦାନରେ କନିକା library ତିଆରି ହୋଇ ଅନେକ ବହି ଖରିଦ ହୋଇଥିଲା । ସେତେବେଳେ ସମସ୍ତ ବହିର ସଂଖ୍ୟା ପ୍ରାୟ ୨୯,୦୦୦ ଥିଲା । ଆଇନର ସ୍ନାତକ ପାଠ ରେଭେନ୍‌ସା କଲେଜରେ ଏକାଂଶ ଥାଏ । Madhusudan Law College ପ୍ରାୟ ୧୯୬୦ ମସିହାରେ ଆରମ୍ଭ ହୋଇଥିଲା । ଆଇନ ଅଧ୍ୟାପନା ପ୍ରତିଦିନ ସକାଳ ୭ଟାରୁ ସାଢ଼େ ନଅଟା ପର୍ଯ୍ୟନ୍ତ ୩ଟି ପିରିୟଡ଼ ହୁଏ । ସପ୍ତାହରେ ଦୁଇଦିନ ସନ୍ଧ୍ୟାରେ ୭ଟାରୁ ୮ଘଣ୍ଟା ୩୦ ମିନିଟ୍ ପର୍ଯ୍ୟନ୍ତ ୨ଟି ପିରିୟଡ଼ ହୁଏ । ୨ ବର୍ଷିଆ ଆଇନ୍ ଶିକ୍ଷା ପାଇଁ ୩ ଜଣ ଅଧ୍ୟାପକ ଥାନ୍ତି । ପ୍ରିନ୍‌ସିପାଲ ଓ ପ୍ରଫେସରମାନଙ୍କ ମଧ୍ୟରୁ ପ୍ରାୟ ୮ ଜଣ ବିଲାତର oxford ବା କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରୁ ଡିଗ୍ରୀ ପ୍ରାପ୍ତ ହୋଇଥିଲେ । ସ୍ୱୟଂ ପ୍ରିନ୍‌ସିପାଲ ପରିଜା ସାହେବ କେମ୍ବ୍ରିଜର

ସ୍ନାତକୋତ୍ତର ଡିଗ୍ରୀ ପାଇବା ପରେ ପ୍ରଥମ ବିଶ୍ୱଯୁଦ୍ଧ ଯୋଗୁଁ ଜାହାଜରେ ଭାରତକୁ ଯାତାୟାତ ନିଷେଧ ହେବାରୁ ସେଠାରେ ରହି ଉଦ୍ଭିଦ ବିଦ୍ୟାରେ ଗବେଷଣା ସଙ୍ଗେ ସଙ୍ଗେ ଅଧ୍ୟାପନା କଲେ। ପ୍ରଥମ ବିଶ୍ୱଯୁଦ୍ଧ ୧୯୧୮ରେ ଶେଷ ହେବା ପରେ ସେ ଭାରତ ଫେରିଲେ। କିଛିଦିନ ଉଦ୍ଭିଦ ବିଦ୍ୟାର ବିଭାଗୀୟ ମୁଖ୍ୟ ହୋଇ ପୁଣି ପ୍ରିନ୍‌ସିପାଲ ପଦବୀ ଅଳଙ୍କୃତ କଲେ।

ସେତେବେଳେ କଟକ ସହର ଜନସଂଖ୍ୟା ପ୍ରାୟ ୬୪ ହଜାର ଥାଏ। ଗୋଟିଏ ସିନେମା ହଲ ମୁଗ ଏକ ପୁରୁଣା କକ୍ଷରେ ଓ କେପିଟାଲ ସିନେମା ଏକ ତାଟି ଘେରା କକ୍ଷରେ ଚଳୁଥିଲା। ୧୯୪୧/୪୨ରେ ପ୍ରଭାତ ସିନେମା ଆରମ୍ଭ ହେଲା। ଅନ୍ନପୂର୍ଣ୍ଣା ଥିଏଟର ସାମୟିକ ଚାଲେ। ୧୯୪୧ ବେଳକୁ କାଳୀଚରଣ ପଟ୍ଟନାୟକଙ୍କ ଓଡ଼ିଶା ଥିଏଟର ଆରମ୍ଭ ହେଲା।

ମୁଁ ବିଜ୍ଞାନ ପଢ଼ିବା ଲକ୍ଷ୍ୟ ରଖି ମେଟ୍ରିକ୍ୟୁଲେସନ ନବମ ଶ୍ରେଣୀ ପରେ ସଂସ୍କୃତ ପୂରାପୂରି ଛାଡ଼ି ଦେଇ ଦଶମ ଶ୍ରେଣୀଠାରୁ ତତ୍ ପରିବର୍ତ୍ତେ ବିଜ୍ଞାନ ଏବଂ ସାଧାରଣ ଗଣିତ ବ୍ୟତୀତ ଅତିରିକ୍ତ ପାଠ ଭାବେ ଗଣିତକୁ ମଧ୍ୟ ନେଇଥିଲି। Intermediateରେ ମଧ୍ୟ ବିଜ୍ଞାନ ଛାତ୍ର ଥିଲି। ଇଂରାଜୀ ଓ ଓଡ଼ିଆ ସାହିତ୍ୟ ବ୍ୟତୀତ ପଦାର୍ଥ, ରସାୟନ ଓ ଗଣିତ ଗ୍ରୁପ୍ ନେଇଥିଲି। ମୋର ବିଜ୍ଞାନ ସହପାଠୀ ଅନେକ ବନ୍ଧୁ, ଉଦ୍ଭିଦ ବିଦ୍ୟାକୁ ଅତିରିକ୍ତ ବିଷୟ ଭାବେ ନେଇଥିଲେ। ଶେଷ ପରୀକ୍ଷାରେ ଉଦ୍ଭିଦ ବିଦ୍ୟାରେ ସେମାନେ ଯାହା ନମ୍ବର ପାଇବେ ତହିଁରୁ ପାସ୍ ନମ୍ବର ୩୦ ବାଦଯାଇ ବଳକା ନମ୍ବର ଅନ୍ୟ ୫ଟି ବିଷୟରେ ନମ୍ବର ସହ ମିଶି ସର୍ବମୋଟ ଓ ଶତକଡ଼ା ହାର ନିର୍ଣ୍ଣୟ କରାଯାଉଥିଲା। ଯାହାହେଉ ମାଟ୍ରିକ ପରୀକ୍ଷାରେ ୨ଟି ନମ୍ବର ପାଇଁ ମଧ୍ୟ ପ୍ରଥମ ଶ୍ରେଣୀ ହରାଇ ଥିଲି ଏବଂ ଆଇ.ଏସ୍‌ସିରେ ଅତିରିକ୍ତ ପାଠ ନଥାଇ ସୁଦ୍ଧା ୩ ନମ୍ବର ପାଇଁ ମଧ୍ୟ ପ୍ରଥମ ଶ୍ରେଣୀ ହରାଇଥିଲି। ଯେଉଁମାନେ ପ୍ରଥମ ଶ୍ରେଣୀ ପାଇଥିଲେ ସେମାନେ ସେମାନଙ୍କର ଉଦ୍ଭିଦବିଦ୍ୟା ଅତିରିକ୍ତ ବିଷୟ ଭାବେ ଥିଲା। ବି.ଏସି.ରେ ପଦାର୍ଥ ରାସାୟନ ଓ ଗଣିତ ସହ ରସାୟନ ବିଦ୍ୟାରେ ଅନର୍ସ ରଖିବାର ଇଚ୍ଛାକଲି। ମୋର ଜଣେ ସହପାଠୀ ଗଦାଧର ମିଶ୍ର (ଯେ, କି ପରବର୍ତ୍ତୀ ଜୀବନରେ ବିଭିନ୍ନ କଲେଜରେ ପ୍ରଫେସର ଓ ପ୍ରିନ୍‌ସିପାଲ ହୋଇଛନ୍ତି) ଉଦ୍ଭିଦ ବିଦ୍ୟା ଅତିରିକ୍ତ ବିଷୟ ସହ ୨ ନମ୍ବର ପାଇଁ ପ୍ରଥମ ଶ୍ରେଣୀ ହରାଇଥିଲେ। ବି.ଏସି.ରେ ନାମ ଲେଖାଇବା ଦରଖାସ୍ତରେ ମୋର ରସାୟନ ବିଦ୍ୟା ଅନର୍ସ ନେବି ବୋଲି ଲେଖିଥିଲି। ସେ ମଧ୍ୟ ସେହିପରି ଲେଖିଥିଲେ। ରସାୟନ ବିଦ୍ୟାରେ ହେଡ୍ ଅର୍ଥାତ୍ ପ୍ରଧାନ ପ୍ରଫେସର ଡ. ବଳଭଦ୍ର ପ୍ରସାଦ ଥାଆନ୍ତି। ସେ ପରବର୍ତ୍ତୀ କାଳରେ ରେଭେନ୍‌ସା କଲେଜରେ ପ୍ରିନ୍‌ସିପାଲ ପଦବୀ ଗ୍ରହଣ ନକରି ପୂର୍ବପଦବୀରେ ରହି ରସାୟନ ବିଦ୍ୟାରେ ଗବେଷଣାକୁ ଆଦରି ନେଇଥିଲେ। ପରେ ଶିକ୍ଷା ବିଭାଗର ନିର୍ଦ୍ଦେଶକ, ପାଟଣା ଓ ଆହ୍ଲାବାଦ ବିଶ୍ୱବିଦ୍ୟାଳୟର କୁଳପତି ହୋଇଥିଲେ। ରସାୟନ ବିଦ୍ୟାର ଅନର୍ସ ପାଇଁ ୩୨କଣ ଛାତ୍ର ନିଆଯାଉଥିଲେ। ୩୧କଣ ନିଆଯିବା ପରେ ଆଉ ଗୋଟିଏ ସିଟ୍ ପାଇଁ ମୁଁ ଓ ଗଦାଧରବାବୁଙ୍କ ମଧ୍ୟରୁ ଜଣଙ୍କୁ ମନୋନୀତ ହେବାକୁ ବାକିଥାଏ। ମୁଁ ରସାୟନ

ବିଦ୍ୟା ପ୍ରଫେସର ଗୁରୁଚରଣ ମହାନ୍ତିଙ୍କୁ ମୋର ମାର୍କଲିଷ୍ଟ ଦେଖାଇବାରୁ ସେ ମୋତେ ନିଶ୍ଚିତ ମନୋନୟନ କରାଯିବ ବୋଲି ପ୍ରତିଶ୍ରୁତି ଦେଇଥିଲେ । ଗଦାଧରବାବୁଙ୍କୁ ଅନୁରୂପ ଭାବେ ରସାୟନ ବିଦ୍ୟାର ଅନ୍ୟତନ ପ୍ରଫେସର ଲୋକନାଥ ମିଶ୍ର ପ୍ରତିଶ୍ରୁତି ଦେଇଥିଲେ । ତେଣୁ କାହାକୁ ଦିଆଯିବ ତାହା ବାଛିବା ଦାୟିତ୍ୱ ପ୍ରଧାନ ପ୍ରଫେସର ଡଃ.ବଳଭଦ୍ର ପ୍ରସାଦଙ୍କ ଉପରେ ନିଷ୍ପତ୍ତି ଦାୟିତ୍ୱ ପଡ଼ିଲା । ଗୁରୁଚରଣ ବାବୁ ଯୁକ୍ତି ଦେଖାଇଲେ ଯେ, ଉଦ୍ଭିଦ ବିଦ୍ୟାରେ ପାସ୍ ନମ୍ବର ବାଦ୍‌ଯାଇ ଅଧିକା ନମ୍ବର ମିଶି ସୁଦ୍ଧା ଗଦାଧରବାବୁ ପ୍ରଥମ ଶ୍ରେଣୀଠାରୁ ୨ନମ୍ବର କମ୍ ରଖିଛନ୍ତି । କିନ୍ତୁ ଅତିରିକ୍ତ ବିଷୟ ନଥାଇ ମଧ୍ୟ କେବଳ ୩ଟି ବିଷୟରେ ମୁଁ ପ୍ରଥମ ଶ୍ରେଣୀ ଅପେକ୍ଷା ୩ ନମ୍ବର କମ୍ ରଖିଛି । ବି.ଏସ୍‌ସି.ରେ ଏଣୁ ବାକିଥିବା ଗୋଟିଏ ସିଟ୍ ପାଇଁ ମୁଁ ଅଗ୍ରାଧିକାର ପାଇବା ଯଥାର୍ଥ ଏବଂ ୩ଟି ବିଷୟରେ ବି.ଏସ୍‌ସି. ପଢ଼ିବାବେଳେ ଉଦ୍ଭିଦ ବିଦ୍ୟା ଭଳି ଅଧିକ ବିଷୟ କିଛି ଆବଶ୍ୟକ ନାହିଁ । କିନ୍ତୁ ପ୍ରଫେସର ଲୋକନାଥ ମିଶ୍ର ଯୁକ୍ତି ବାଢ଼ିଲେ ଯେ ଯାହାକିଛି ହେଉ ପଛକେ ମୁଁ ଗଦାଧରବାବୁଙ୍କ ଠାରୁ ଏକ ନମ୍ବର କମ୍ ନମ୍ବର ରଖିଛି । ତେଣୁ ବାକି ଗୋଟିଏ ସିଟରେ ଗଦାଧର ବାବୁଙ୍କୁ ନିଆଯିବା ଉଚିତ । ସେତେବେଳେ କୌଣସି ରାଜନୈତିକ ଚାପ ବା ସିଟ୍ ସଂଖ୍ୟା ବଢ଼ାଇବା ପ୍ରଶ୍ନ ନଥିଲା । ପ୍ରଫେସର ପ୍ରସାଦ ଦୁଇ ଜଣ ବରିଷ୍ଠ ପ୍ରଫେସରଙ୍କ ଯୁକ୍ତି ଶୁଣିବା ପରେ ନିଜେ କିଛି ନିଷ୍ପତ୍ତି ନେଇ ନପାରି ପ୍ରିନ୍‌ସିପାଲ ଡଃ. ପ୍ରାଣକୃଷ୍ଣ ପରିଜାଙ୍କ ଉପରେ ନିଷ୍ପତ୍ତି ଦାୟିତ୍ୱ ଛାଡ଼ିଦେଲି । ପରିଜା ସାହେବ କେଉଁ ପ୍ରଫେସରଙ୍କ ମତ ଗ୍ରହଣ କରିବେ ଓ କାହାର ମତ ଆଗ୍ରାହ୍ୟ କରିବେ, ଏହି ଧର୍ମ ସଂକଟରେ ପଡ଼ି ଉଭୟଙ୍କୁ ରସାୟନ ବିଦ୍ୟାରେ ଅନର୍ସ ପାଇଁ ମନୋନୟନ କରିଦେଲେ ଏବଂ ସମସ୍ତ ବିଷୟ ଲେଖି ଗୋଟିଏ ସିଟ୍ ବଢ଼ାଇବା ପାଇଁ ଶିକ୍ଷା ବିଭାଗୀୟ ନିର୍ଦ୍ଦେଶକ ଶ୍ରୀଯୁକ୍ତ ଶ୍ୟାମାଚରଣ ତ୍ରିପାଠୀଙ୍କ ଠାରୁ ସୁପାରିସ କଲେ । ତ୍ରିପାଠୀ ସାହେବ ମଧ୍ୟ ପରିଜା ସାହେବଙ୍କର ବିଲାତରେ ସହପାଠୀ ଥିଲେ । କିନ୍ତୁ ପ୍ରଥମ ବିଶ୍ୱଯୁଦ୍ଧ ଆରମ୍ଭ ହେବା ପୂର୍ବରୁ ସେ ବିଲାତରେ ଅଧ୍ୟୟନ ଶେଷ କରି ଭାରତକୁ ଫେରିଆସି ରେଭେନ୍‌ସା କଲେଜରେ ପ୍ରିନ୍‌ସିପାଲ ହୋଇଥିଲେ ଓ ପରେ ଶିକ୍ଷା ବିଭାଗରେ ନିର୍ଦ୍ଦେଶକ ଥିଲେ । ପରିଜା ସାହେବ ତାଙ୍କ ସହ ଏକତ୍ରରେ ପାସ୍ କରିବା ପରେ ଉଦ୍ଭିଦ ବିଦ୍ୟାରେ ଗବେଷଣାରତ ଥିବାରୁ ଭାରତକୁ ଫେରିବା ତାଙ୍କର ଡେରିହେଲା । ସେତିକିବେଳେ ପ୍ରଥମ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଗଲା । ଏଣୁ ସେଠାରେ ସେ ୪ ବର୍ଷ ଅଟକି ଯାଇଥିଲେ । ସେହି ଅବସରରେ ସେ ଗବେଷଣା ସହ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ଅଧ୍ୟାପନା ମଧ୍ୟ କରିଥିଲେ । ବିଶ୍ୱଯୁଦ୍ଧ ପରେ ସେ ଭାରତକୁ ଫେରିଥିଲେ ହେଁ ଏବଂ ଉଭୟ ଓଡ଼ିଶାରୁ ସର୍ବ ଭାରତୀୟ ଶିକ୍ଷା ସେବା (ଆଇ.ଇ.ଏସ୍.) ଉପାଧିଧାରୀ ଥିଲେ ହେଁ ଭାରତରେ ଚାକିରି କ୍ଷେତ୍ରରେ ତ୍ରିପାଠୀ ସାହେବ ପରିଜା ସାହେବଙ୍କ ଠାରୁ ସିନିୟର ଥିଲେ । କିନ୍ତୁ ପରିଜା ସାହେବଙ୍କ ବ୍ୟକ୍ତିତ୍ୱ ସେତେବେଳକୁ ବିଶ୍ୱବିଖ୍ୟାତ ହୋଇ ସାରିଥିଲା । ପରିଜା ସାହେବଙ୍କ ଉପରୋକ୍ତ ସୁପାରିସ ସେ ଖଣ୍ଡନ କରିନପାରି ରସାୟନ

ଅନର୍ସରେ ଗୋଟିଏ ସିଟ୍ ବୃଦ୍ଧି କରିବାକୁ ଆଦେଶ ଦେଲେ । ଯାହାଫଳରେ ମୁଁ ଓ ଗଦାଧରବାବୁ ଉଭୟ ୧୯୪୨ ମସିହା ଜୁଲାଇ ଆରମ୍ଭରେ ରସାୟନ ବିଦ୍ୟା ଅନର୍ସରେ ନାମ ଲେଖାଇଲୁଁ ।

ତହିଁର ପରେ ପରେ ଛାତ୍ରାବାସରେ ବିଭିନ୍ନ ପଦପଦବୀ ପାଇଁ ନିର୍ବାଚନ ହେଲା । ସାଧାରଣତଃ ବାଲେଶ୍ୱର କେନ୍ଦୁଝର ଓ ମୟୂରଭଞ୍ଜରୁ ଯାଇଥିବା ଛାତ୍ରମାନେ ନିର୍ବାଚନରେ ଗୋଟିଏ ଗୋଷ୍ଠୀ ଓ ଅନ୍ୟମାନେ ଆଉ ଗୋଟିଏ ଗୋଷ୍ଠୀରେ ରହୁଥିଲେ । ଯାହାହେଉ ସେହି ନିର୍ବାଚନ ପାଇଁ ୨୦/୨୨ ଦିନ ମୋର ପଢ଼ା ନଷ୍ଟ ହେଲା । ୧୯୪୨ ମସିହା ଅଗଷ୍ଟ ୯ ତାରିଖରେ ଗାନ୍ଧିଜୀ ବ୍ରିଟିଶ ଶାସକମାନଙ୍କୁ ଭାରତଛାଡ଼ ଆହ୍ୱାନ ଦେଇ ବହୁ କଂଗ୍ରେସ ନେତାଙ୍କ ସହ ଜେଲ ବରଣକଲେ । ରେଭେନ୍ସା କଲେଜରେ ଆମେ ଛାତ୍ରମାନେ ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେଲୁ । କଲେଜ କ୍ଲାସ ବର୍ଜନ, ସାଧାରଣ ସଭା, ଶୋଭାଯାତ୍ରା ଓ ଶେଷରେ କଲେଜ ଅଫିସ କାଗଜପତ୍ରରେ ଅଗ୍ନି ସଂଯୋଗ ଇତ୍ୟାଦି ବିଭିନ୍ନ ପନ୍ଥାରେ ଛାତ୍ରମାନେ ଆନ୍ଦୋଳନକୁ ଆଗେଇନେଲେ । ଦିନେ କଲେଜ ଗେଟ୍ ସାମନା ଛକରେ ଛାତ୍ରମାନଙ୍କର ଏକ ବିରାଟ ସଭା ଚାଲିଥାଏ । ତଦ୍ୱାରା ସେହି ରାସ୍ତାରେ ଯାତାୟତ ବନ୍ଦ ହୋଇଯାଇଥାଏ । ସଭାରେ ବହୁ ସମାବେଶ ହୋଇଥିଲା । ସେତେବେଳେ ଏସ.ସଲମନ ନାମକ ଜଣେ ଇହୁଦୀ ଆଇ.ସି.ଏସ୍. ଅଫିସର ବିକାଶ ବିଭାଗ ନିର୍ଦ୍ଦେଶକ (Director of development) ପଦବୀରେ ଥାଆନ୍ତି । ରେଭେନ୍ସା କଲେଜର ହତା ମଧ୍ୟରେ ୪ଟି କ୍ୱାର୍ଟର ମଧ୍ୟରୁ ଗୋଟିକରେ ସେ ରହୁଥାନ୍ତି । ସେ ଅଫିସକୁ ଯିବା ପାଇଁ ତାଙ୍କ କାର୍‌ରେ ଆସି ସଭା ଚାଲିଥିବା ଯୋଗୁଁ ଆଗେଇ ନପାରି ଅଟକି ରହିଲେ । ସେଠାରେ ଛାତ୍ରମାନଙ୍କୁ ବୁଝାଇଲେ ଯେ ଏହିପରି ସଭା ସମିତି ଓ ସ୍ଲୋଗାନ୍ ଦ୍ୱାରା କଣ ସ୍ୱାଧୀନତା ହାସଲ ହୋଇପାରିବ ? ଅଳ୍ପ ବୟସ୍କ ଛାତ୍ରମାନଙ୍କର କଣ ଏପରି ଦେଶପ୍ରେମ ଭାବ ଆସିଲାଣି ? ତାହା ଶୁଣି ଜଣେ ଛାତ୍ର ନେତା ଉତ୍ତର ଦେଲେ ଯେଉଁ ଜାତିର ମାତୃଭୂମି ବୋଲି କହିବାକୁ ସୂର୍ଯ୍ୟଙ୍କ ତଳେ (ଅର୍ଥାତ୍ ପୃଥିବୀରେ) ଇଞ୍ଚେ ବୋଲି ସ୍ଥାନ ନାହିଁ, ସେହି ଜାତିର ଜଣେ ବ୍ୟକ୍ତି ମାତୃଭୂମି ପ୍ରତି ଛାତ୍ରମାନଙ୍କର ଦେଶପ୍ରେମ କେତେ, ତାହା କିପରି ବୁଝିବେ ? (ସେତେବେଳେ ଇହୁଦୀମାନଙ୍କର କୌଣସି ପୃଥକ ରାଜ୍ୟ ନଥିଲା, ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ମିଳିତ ଜାତିସଂଘରେ ଗୃହୀତ ପ୍ରସ୍ତାବ ଅନୁସାରେ ଇସ୍ରାଏଲ ଦେଶ ଜନ୍ମଲାଭ କରିଛି । ତାହା ଇହୁଦୀମାନଙ୍କର ଦେଶ ଅଟେ ।) ଛାତ୍ରନେତାଙ୍କର ଏହି ଆକ୍ଷେପ ଶୁଣି କାରରୁ ଓହ୍ଲାଇ ଛିଡ଼ା ହୋଇଥିବା ସଲମନ୍ ସାହେବ ବ୍ରିଟିଶ ସରକାରଙ୍କ ତରଫରୁ ଆନ୍ଦୋଳନ ବିରୁଦ୍ଧରେ ଅଧିକ କିଛି କହିନପାରି ଆଖିରୁ ୨ ଟୋପା ଲୁହ ଗଡ଼ାଇ ତାଙ୍କ କ୍ୱାର୍ଟରକୁ ଫେରିଗଲେ ଏବଂ ସେଦିନ ଅଫିସକୁ ଗଲେ ନାହିଁ । ଏହିପରି ଛାତ୍ର ଆନ୍ଦୋଳନ ବେଳେ ପ୍ରତିଦିନ ସନ୍ଧ୍ୟାରେ କଲେଜ ଓ ହଷ୍ଟେଲ ନୋଟିସ ବୋର୍ଡରେ ପ୍ରିନ୍ସିପାଲଙ୍କର ଆଦେଶନାମା ପ୍ରକାଶିତ ହେଉଥାଏ । କାହାକୁ କଲେଜରୁ ବହିଷ୍କାର , କାହାକୁ ବାଧ୍ୟତାମୂଳକ ଟ୍ରାନ୍ସଫର୍ ସାର୍ଟିଫିକେଟ, କାହାକୁ

ଜୋରିମାନା ବା ନିଜ ଅଭିଭାବକ ପାଖକୁ ଚାଲିଯିବା ପାଇଁ ନିର୍ଦ୍ଦେଶ, ଏହିପରି ନାନା ପ୍ରକାର ଦଣ୍ଡ ବିଧାନ ବ୍ୟବସ୍ଥା ନିର୍ଦ୍ଦେଶମାନ ଆସୁଥାଏ । ପ୍ରତିଦିନ ସନ୍ଧ୍ୟାରେ ହଷ୍ଟେଲ ମଧ୍ୟବର୍ତ୍ତୀ ବଡ଼ ହଲ (ଗେମସ୍ ରୁମ୍)ରେ ଆମ୍ଭେମାନେ ମିଳିତ ହୋଇ ବନ୍ଦେ-ମାତରମ୍ ଜାତୀୟ ସଙ୍ଗୀତ ଗାନ କରୁଁ ଏବଂ ପରବର୍ତ୍ତୀ ଦିନର କାର୍ଯ୍ୟକ୍ରମ ନିର୍ଦ୍ଧାରଣ କରୁଥାଉଁ । ଶୋଭାଯାତ୍ରାରେ ବିଭିନ୍ନ ସ୍ଲୋଗାନ୍ ଦେଇ ରେଭେନ୍ସା କଲେଜରୁ ବାହାରି ମେଡ଼ିକାଲ ସ୍କୁଲ (ସେତେବେଳେ ମେଡ଼ିକାଲ କଲେଜ ହୋଇନଥାଏ) ଭିତରେ ଯିବା ବେଳେ ଆମ୍ଭମାନଙ୍କ ଉପରେ ପୋଲିସର ଲାଠିଚାର୍ଯ ହେଲା । ମୁଁ ବି ମୋ କମରରେ ଏକ ଶକ୍ତ ପ୍ରହାର ପାଇଲି । ବହୁ କଷ୍ଟରେ ମେଡ଼ିକାଲ ହତା କାନ୍ଥ ଡେଇଁ ପକାଇ ଯିବା ବେଳେ ସେହି ପାଚେରି କାନ୍ଥରେ ମୋର ଆଣ୍ଠୁ ବାଜି ଗୁରୁତର ଆହତ ହେଲି । ସେଦିନ କଲେଜକୁ ଆସିଥିବା ଟେଲିଫୋନ୍ ତାର କାଟି ଦିଆଯାଇଥାଏ । ଯାହାହେଉ ତହିଁର ୨/୩ ଦିନ ପରେ ଅର୍ଥାତ୍ ୧୯୪୨ ମସିହା ଅଗଷ୍ଟ ୨୪/୨୫ ତାରିଖ ଦିନ ଅନିର୍ଦ୍ଦିଷ୍ଟ କାଳପାଇଁ କଲେଜ ବନ୍ଦ କରିଦିଆଗଲା । ୨୪ଘଣ୍ଟା ମଧ୍ୟରେ ହଷ୍ଟେଲ ଛାଡ଼ି ଦେବାପାଇଁ ଆମ୍ଭମାନଙ୍କୁ ନିର୍ଦ୍ଦେଶ ଦିଆଗଲା । ହଷ୍ଟେଲର ରୋଷେଇ ମଧ୍ୟ ବନ୍ଦ କରିଦିଆଗଲା । ସେହିଦିନ ସନ୍ଧ୍ୟାରେ ଆମ୍ଭେମାନେ ବନ୍ଦେ-ମାତରମ୍ ଗାନ କରି ପରାଧୀନ ଭାରତରେ ବ୍ରିଟିଶ ସରକାରଙ୍କ ପରିଚାଳିତ କଲେଜରେ ଆଉ ପଢ଼ିବୁ ନାହିଁ ବୋଲି ଶପଥ ନେଇ ତପର ଦିନ ନିଜ ନିଜ ଘରକୁ ଚାଲି ଆସିଲୁ । ଘରକୁ ଆସି ଦିନେ ଅପରାହ୍ଣରେ ମୁଁ ଆମ ଗ୍ରାମର ଏକ ବଡ଼ ଉନ୍ମୁକ୍ତ ପ୍ରାନ୍ତର (ଚକପଦା)ରେ ବୁଲୁଥାଏଁ ସେତେବେଳେ ମୋର ପ୍ରାଥମିକ ସ୍କୁଲର ପୂର୍ବତନ ଶିକ୍ଷକ ଶ୍ରୀ ଗୁରୁପ୍ରସାଦ ପାଣିଗ୍ରାହୀ ସେହିବାଟେ ଯାଉଥାନ୍ତି । ଏତିକିବେଳେ ଦକ୍ଷିଣ ପୂର୍ବ ଦିଗରୁ ବହୁ ଦୂରରେ ଗୁଡ଼ୁମ ଗୁଡ଼ୁମ, ଶବ୍ଦ ଭାସିଆସିଲା । ମୁଁ ଭାବିଲି ଚାନ୍ଦିପୁରଠାରେ ଅବସ୍ଥିତ ସେନାବାହିନୀ ପରୀକ୍ଷା କେନ୍ଦ୍ରରେ ଗୋଳା-ବାରୁଦ ସମୁଦ୍ର ଭିତରକୁ ପରୀକ୍ଷା ହେଉଛି । କିନ୍ତୁ ଉକ୍ତ ଶିକ୍ଷକ ମହାଶୟ କହିଲେ ବୋଧହୁଏ ଇରମରେ ସରକାରୀ ଫୌଜ ସ୍ୱାଧୀନତା ଆନ୍ଦୋଳନରେ ଏକ ବିରାଟ ସଭା ଭାଙ୍ଗିବା ପାଇଁ ଗୁଳି ଚଳାଉଛନ୍ତି ଯେହେତୁ ସେହିପରି ଘଟଣା ଘଟିବ ବୋଲି ସେ ଶୁଣିଥିଲେ ଏବଂ ତାଙ୍କ ଦେଖିବାରେ ଏକ ବନ୍ଧୁକଧାରୀ ଫୌଜ ଇରମ ଆଡ଼କୁ ଯାଉଥିଲେ । ତପରଦିନ ଆମ୍ଭେ ଖବର ଜାଣିଲୁ ଯେ ଇରମର ମଇଦାନ ପଡ଼ିଆରେ ବାସୁଦେବପୁର ଥାନା ବାହରାବାପୁର ନିବାସୀ ଶ୍ରୀ କମଳାକାନ୍ତ କରଙ୍କ ନେତୃତ୍ୱରେ ଆହୂତି ବ୍ରିଟିଶ ଶାସନ ବିରୋଧୀ ସଭାକୁ ଭାଙ୍ଗିବା ପାଇଁ ପୋଲିସ ଫୌଜ ଆଖିବୁଜା ଗୁଳିଚାଳନା କରିଥିଲେ । ସେଥିରେ ୩୩ଜଣ ସେ ସ୍ଥାନରେ ମୃତ୍ୟୁବରଣ କରିଥିଲେ । ଅନେକ ଆହତ ହୋଇଥିଲେ । ଲୋକେ ଗାଁ ଗଣ୍ଡା ଛାଡ଼ି ପଳାଇଥିଲେ । ୨/୩ଦିନ ପର୍ଯ୍ୟନ୍ତ ଶବ ଗୁଡ଼ାକ ପଡ଼ିଥାଏ, ଏବଂ ସେ ଅଞ୍ଚଳ ନିରବ ନିଶବ୍ଦ ଶ୍ମଶାନରେ ପରିଣତ ହୋଇଥିଲା । ଆନ୍ଦୋଳନକାରୀମାନଙ୍କ ପରିବାରର ସ୍ତ୍ରୀ ଲୋକମାନଙ୍କ ବ୍ୟତୀତ ପୁରୁଷ ଲୋକମାନେ ରାତ୍ରିରେ ଧାନ ବିଲରେ ଯାଇ ଲୁଚିଥିଲେ । ସେତେବେଳେ ଦୀର୍ଘ ଦିନ ଛୁଟିରେ ଗ୍ରାମରେ ଆମେ କେତେଜଣ

ମିଶି ଗୋଟିଏ ନାଟକ ମଞ୍ଚସ୍ଥ କରିଥିଲୁଁ । ତାହା ତା ୨୭.୧୦.୪୨ରିଖ ତାରିଖରେ ମଞ୍ଚସ୍ଥ ହୋଇଥିଲା ଏବଂ ଶ୍ରୀମନ୍ଦିର ନାଟକ ଅଭିନୀତ ହୋଇଥିଲା ।

ଏହିପରି ଭାବରେ ଦୀର୍ଘଦିନ ଗ୍ରାମରେ ରହିବା ଅବସ୍ଥାରେ ଦୁର୍ଗାପୂଜାର କିଛି ଦିନ ପରେ ଶୁଣାଗଲା ଯେ କଲେଜ ଖୋଲିଲାଣି । ଲେଖିବା ବାହୁଲ୍ୟ ଯେ, ସେତେବେଳେ ଆମ ଅଞ୍ଚଳ କଥା ଦୂରରେ ଥାଇ ସମଗ୍ର ସୋରଥାନା (ସେତେବେଳେ ପ୍ରାୟତଃ ସେରଗଡ଼ ଠାରୁ କାଂଶ ବାଂଶ ନଦୀ ଏବଂ ମଙ୍ଗଳପୁର ପାହାଡ଼ ଠାରୁ ବଙ୍ଗୋପସାଗର ପର୍ଯ୍ୟନ୍ତ ବିସ୍ତୃତ ଅଞ୍ଚଳ) କେବଳ ମୁଁ ଓ ଆମ ଗ୍ରାମର ଚୂନିଲାଲ ମହାପାତ୍ର ଏବଂ ଉପରିଲିଖିତ ପ୍ରହ୍ଲାଦ ଖିଲାର ବ୍ୟତୀତ ଆଉ କେହି କଲେଜରେ ପଢୁନଥିଲେ । ସୋର, ଅନନ୍ତପୁର, ଖନ୍ତାପଡ଼ା ବ୍ୟତୀତ ଆଉ କୌଣସି ପୋଷ୍ଟ ଅଫିସ ଏହି ଥାନାରେ ନଥିଲା । ଆମଘର ଠାରୁ ସୋର ୬ ମାଇଲ ଏବଂ ଅନନ୍ତପୁର ୨ ମାଇଲ ଦୂର । ଅନନ୍ତପୁର ମାଇନରସ୍କୁଲକୁ ଖଣ୍ଡିଏ ଦୈନିକ ସମାଜ ଡାକରେ ଆସୁଥାଏ । ସେତେବେଳେ ଓଡ଼ିଶାରେ ଅନ୍ୟ କୌଣସି ଖବରକାଗଜ ନଥିଲା । ସେହି ଖବରକାଗଜ ଖଣ୍ଡିକ ଅନନ୍ତପୁର ହାଟରେ କେହି କେହି ଖୋଲି ପଢ଼ନ୍ତି । ପୁଣି ତାହା ଡାକ ପିଅନ ସ୍କୁଲରେ ଦେଇଥାଏ । ଚୂନିଲାଲ ବାବୁ ତାଙ୍କ ଅକା ଶ୍ରୀଧର ପାଣିଗ୍ରାହୀଙ୍କ ଧାନ ମିଲ ମାର୍କୋଣା ଠାରେ ରହୁଥାନ୍ତି । ପ୍ରହ୍ଲାଦ ବାବୁ ଆମଠାରୁ ୯ ମାଇଲ ଦୂର ସରସଂଖ ଗ୍ରାମରେ ଥାଆନ୍ତି । ସେତେବେଳେ ପୁରୀରୁ କଲିକତା ଓଡ଼ିଶା ଟ୍ରଙ୍କରୋଡ଼ (ଜଗନ୍ନାଥ ସଡ଼କ) କେବଳ ମାଟି ଓ ଗେଟି ରାସ୍ତା ଥାଏ । ତାହା ୨୦/୨୨ ଫୁଟ ଓସାର ଥାଏ । ଆଉ ସବୁ ସଡ଼କ ଅଣଓସାରିଆ ହିଡ଼ ଭଳି ପଡ଼ିଥାଏ । ଗୋଟିଏ ଅଞ୍ଚଳରୁ ଅନ୍ୟ ଅଞ୍ଚଳକୁ ଖବର କେବଳ ଲୋକ ପଠାଇ ସଂଗ୍ରହ କରିବା ସମ୍ଭବ । କଲେଜ ଖୋଲିଲାଣି କି ନା, ଆମେ ଯିବା କି ନା ଏହା ବୁଝିବା ପାଇଁ ପ୍ରହ୍ଲାଦ ବାବୁଙ୍କ ପାଖକୁ ଲୋକ ପଠାଇବା ସେତେବେଳେ ବିପଜ୍ଜନକ ଥିଲା । ଅନ୍ତତଃ ଗାଁ ଗହଳରେ ଲୋକଙ୍କର ଏହି ଭୟ ଥିଲା ଯେ ଖବର ଆଦାନ ପ୍ରଦାନ କଥା ପୋଲିସ ଜାଣିଲେ ଛାତ୍ରମାନେ ପରସ୍ପର ମେଳି କରୁଛନ୍ତି ବୋଲି ଏରେଷ୍ଟ କରିପାରେ । ଭାରତ ରକ୍ଷା ଆଇନ ବଳରେ ସେତେବେଳେ କୌଣସି ପ୍ରତିକାର ନଥିଲା । ଜଣେ ଗ୍ରାମବାସୀ ଅନନ୍ତପୁର ହାଟରୁ ଖବର କାଗଜ ପଢୁଥିବା ଲୋକଠାରୁ କଲେଜ ଖୋଲିବା କଥା ଶୁଣି ଆସିଛନ୍ତି ବୋଲି ମୋତେ ଆସି କହିଲେ । ମୁଁ ସନ୍ଦେହ କଲି ଯେ ବ୍ରିଟିଶ ସରକାର ତରଫରୁ ମିଛ ପ୍ରଚାର କରାଯାଉଛି କଲେଜ ଖୋଲିଲାଣି ବୋଲି । ନଚେତ୍ ସମସ୍ତେ ଶପଥ ନେଇଆସିଛନ୍ତି ଯେ ପରାଧୀନ ଭାରତରେ ପଢ଼ିବୁ ନାହିଁ, କିଏ କଲେଜକୁ ଯିବ? ବାପାଙ୍କ ବାର୍ଦ୍ଧକ୍ୟ ଅବସ୍ଥାରେ ତାଙ୍କୁ ମିଳିଥିବା ମୁଁ ଏକମାତ୍ର ପୁତ୍ର ସନ୍ତାନ ଥିବାରୁ କୌଣସି ସନ୍ଦେହ ବା ବିପଜ୍ଜନକ ପରିସ୍ଥିତିର ଆଶଙ୍କା ଥିବା ସ୍ଥଳେ ସେ ମଧ୍ୟ ମୁଁ ଘରେ ରହିବା ଚାହୁଁଥିଲେ । ମୁଁ ମଧ୍ୟ କଲେଜ ଖୋଲିବା ଓ ଅଧ୍ୟାପନା ଆରମ୍ଭ ବିଷୟରେ ଆଉ କୌଣସି ଖବର ପାଇଲି ନାହିଁ ବା ସମାଜରେ ତାହା ପ୍ରକାଶିତ ହେଲାନାହିଁ । ତାହାପରେ ଅନନ୍ତପୁର ହାଟରୁ ଫେରୁଥିବା ଆମ ଗ୍ରାମର ପ୍ରାଥମିକ

ଶିକ୍ଷକ ଓ ମୋର ପୂର୍ବତନ ସହପାଠୀ ଦୟାନିଧି ପାଣିଗ୍ରାହୀ ମତେ କହିଲେ ଯେ ରେଭେନ୍‌ସା କଲେଜରେ ହାଫ୍ ଇୟରଲି ପରୀକ୍ଷା ହେବ ବୋଲି ଅନନ୍ତପୁର ହାଟରେ ସେ ଖବର କାଗଜରୁ ପଢ଼ିଆସିଛନ୍ତି । ମୁଁ ମଧ୍ୟ ଏହାକୁ ସରକାରଙ୍କ ଏକ ପ୍ରଚାର ବୋଲି ଭାବିଲି, ଯେ ସମସ୍ତେ ଜାଣିବେ କଲେଜ ଓ ଶାସନ ଠିକ୍ ଚାଲିଛି । ଯାହା ହେଉ ହାଫ୍‌ୟାରିଲି ପରୀକ୍ଷା ନଦେଇ ମଧ୍ୟ କେବଳ ବାର୍ଷିକ ପରୀକ୍ଷାରେ ବିଶେଷ ଖରାପ ନକଲେ ଜଣେ ଉତ୍ତୀର୍ଣ୍ଣ ହୋଇପାରିବ ବୋଲି ମୋତେ ଜଣାଥିଲା । ତାପରେ ସେହିପରି ଖବର ଆମ ଗ୍ରାମ ପ୍ରାଇମେରୀ ସ୍କୁଲ ଶିକ୍ଷକଙ୍କ ଠାରୁ ପାଇଲି ଯେ ବଡ଼ଦିନ ଛୁଟି ପାଇଁ କଲେଜ ବନ୍ଦ ହେଲା । ତେଣୁ ମୁଁ ପ୍ରାୟ ନିଶ୍ଚିତ ହେଲି ଯେ କଲେଜ ଖୋଲିଲାଣି । ବଡ଼ଦିନ ଛୁଟି ପରେ ଜାନୁୟାରୀ ୨ ତାରିଖରେ କଲେଜ ଖୋଲେ । ତେଣୁ ମୁଁ ଜାନୁୟାରୀ ପହିଲା ଦିନ ସେହି ଆସନ୍‌ସୋଲ ପାସେଞ୍ଜରରେ ଯାଇ ହଷ୍ଟେଲରେ ପହଞ୍ଚିଲି ଏବଂ ପରଦିନ କଲେଜରେ ଯୋଗ ଦେଲି । ରସାୟନ ଅନର୍ସ କ୍ଲାସ ପଢ଼ା ବହୁତ ଆଗେଇ ଯାଇଥାଏ । ପଦାର୍ଥ ବିଜ୍ଞାନରେ ମୁଁ ଅପେକ୍ଷାକୃତ ଦୁର୍ବଳ ଥିଲି । ଯାହା ହେଉ ଯଥା ଶକ୍ତି ଚେଷ୍ଟାକରି ଚତୁର୍ଥ ବର୍ଷକୁ ଉତ୍ତୀର୍ଣ୍ଣ ହେଲେ ମଧ୍ୟ ବି.ଏସି. ଶେଷ ପରୀକ୍ଷା ବେଳକୁ ମୁଁ ପଦାର୍ଥ ବିଜ୍ଞାନରେ ମୋର ଦୁର୍ବଳତାକୁ ସୁଧାରି ପାରିଲି ନାହିଁ । ଏହାର ଏକ କାରଣ ଥିଲା ଯେ ଅଧିକ ସମୟ ଆମେ ଯୁଦ୍ଧରେ ମିତ୍ର ଶକ୍ତି, (ବ୍ରିଟେନ, ଫ୍ରାନ୍‌ସ, ରୁଷିଆ ଆଦି) ହାରୁଛି ଓ ଅକ୍ଷଶକ୍ତି (ଜର୍ମାନ, ଇଟାଲି ଓ ଜାପାନ) ଜିତୁଛନ୍ତି । ସୁଭାଷବୋଷଙ୍କର ଗୁପ୍ତବେଶରେ ପଳାୟନ, କଂଗ୍ରେସର ବଡ଼ ନେତାମାନେ ଜେଲରେ ଥିବା ଯୋଗୁଁ ସାଧାରଣ କେତେକ କର୍ମୀ କିପରି ଦେହଛପା ଦେଇ ବିଭିନ୍ନ ବେଶରେ ଯୋଗାଯୋଗ ରକ୍ଷା କରୁଛନ୍ତି ଇତ୍ୟାଦି ଗୁପ୍ତ ଖବର ଶୁଣି ଆନନ୍ଦିତ ହେଉଥାଉଁ । ଅବସ୍ଥା ଏପରି ଥିଲା ଯେ ଇଲେକ୍‌ଟ୍ରିକ ବଲବ୍ ଲାଇଟ ଚାରିପାଖରେ ଚାରି ଇଞ୍ଚ ଓସାର ଆଠଶଇଞ୍ଚ ଲମ୍ବ ସବୁଜ ଟିଣା ନଳି ସର୍ବତ୍ର ଲଗେଇ ଦିଆଯାଇଥିଲା । ଧଳାରଙ୍ଗର କୌଣସି ଉଚ୍ଚ ଜିନିଷ ଯେପରିକି ଆକାଶକୁ ଦେଖାଯାଉଥିବା ଦିସ୍ତା, ପାଣିଟାଙ୍କି ଇତ୍ୟାଦିରେ ସେଥିପାଇଁ ସେଥିରେ ସବୁଜ ବା ନୀଳରଙ୍ଗ ଦିଆଯାଇଥିଲା, ଯେହେତୁ ଜାପାନ ବୋମା ବର୍ଷଣ କରିବା ଭୟ ଥାଏ । ସମଗ୍ର କଟକ ସହର ସନ୍ଧ୍ୟା ପରେ କେବଳ ଲୋକ ଯାତାୟାତ ବ୍ୟତୀତ ଆକାଶ ମାର୍ଗରୁ ଦେଖିଲେ ଗ୍ରାମାଞ୍ଚଳ ସହ ସମାନ ଦିଶୁଥାଏ । ସେତେବେଳେ ଚାରିବାଟିଆରେ ଗୋଟିଏ ଅସ୍ଥାୟୀ ଯୁଦ୍ଧବିମାନଘାଟି ଥାଏ । ଏପରି ଭୟଭୀତ ଅବସ୍ଥାରେ ଲୋକେ ଥାଆନ୍ତି ଯେ, ଗାଆଁ ଗହଳରେ ଗୋଟିଏ ଧନୀ ପରିବାରର ବିବାହ ବେଳେ ଲଗାତର କିଛି ବାଣ ଫୁଟିବାରୁ ଗୋରା ଲାଟ ସାହେବ ଓ ସାହେବ ଚିଫ୍ ସେକ୍ରେଟାରୀ ତାହା ଜାପାନୀ ବୋମା ବୋଲି ଭୟ କରି ନିଜ କୋଠି ଛାଡ଼ି ରାତ୍ରିରେ ଅନ୍ୟତ୍ର ପଳାଇଗଲେ । ସେ ଖବର ୨/୩ ଦିନପରେ ଜଣାପଡ଼ିଲା । ଭାରତର ବିଭିନ୍ନ ଅଞ୍ଚଳରୁ ଭାରତ ଛାଡ଼ ଆନ୍ଦୋଳନରେ ଶୋଭାଯାତ୍ରା, ଧର୍ମଘଟକାରୀମାନଙ୍କ ଉପରକୁ ଆଖିବୁଜା ଗୁଳିମାଡ଼, ଗିରଫଦାରୀ ଅନିର୍ଦ୍ଦିଷ୍ଟକାଳ ପାଇଁ ଅଟକ, କେଉଁଠି କମାଣରୁ ଗୋଳାବର୍ଷଣ ଆଦି ଘଟଣାମାନ

ଦୈନିକ ଖବର କାଗଜରେ ବାହାରୁଥାଏ ତେଣୁ ଆମର ଶେଷ ପରୀକ୍ଷା ପର୍ଯ୍ୟନ୍ତ କଲେଜ ଚାଲୁରହିବ କି ପୁଣି ବନ୍ଦ ହୋଇଯିବ ସେ ବିଷୟରେ ସମସ୍ତେ ସନ୍ଦେହ ଆଣୁଥିଲେ । ଘଣ୍ଟା କଣ୍ଟାକୁ ଭାରତ ସରକାରଙ୍କ ନିର୍ଦ୍ଦେଶକ୍ରମେ ଏକ ଘଣ୍ଟା ଆଗେଇ ଦିଆଯାଇଥାଏ, ଅର୍ଥାତ୍ ପ୍ରକୃତରେ ଘ ୯.୩୦ମି. ବେଳେ ଘ ୧୦.୩୦ମି. ହୁଏ । ଶୀତ ଦିନେ ସନ୍ଧ୍ୟା ପ୍ରକୃତରେ ଘ ୫ ଘଣ୍ଟା ହେଲେ ହେଁ ଘଣ୍ଟାରେ ସେତେବେଳକୁ ୬ଟା ବାଜୁଥାଏ । ଏହାର ଉଦ୍ଦେଶ୍ୟ ଥିଲା ଯେ ସନ୍ଧ୍ୟାରେ ଶୀଘ୍ର ବଜାର କାରବାର ବନ୍ଦ ହୋଇ ସବୁ ଯେପରି ଶୂନ୍‌ଶାନ୍ ହୋଇଯିବ । ଏହିପରି ପରିସ୍ଥିତିରେ ମୁଁ ଶେଷ ପରୀକ୍ଷା ଦେଲି । ମୋର ଦୁଇ ତିନିଜଣ ବନ୍ଧୁ ପଢ଼ାଛାଡ଼ି ଦେଇ ଚାଲିଯାଇଥିଲେ । ଶେଷରେ ମୁଁ ରସାୟନ ବିଦ୍ୟାରେ ଅନର୍ସ ଓ ଗଣିତରେ ଭଲ ନମ୍ବର ରଖିଥିଲେ ହେଁ ପଦାର୍ଥ ବିଦ୍ୟାରେ ନମ୍ବର କମ୍ ହେବାରୁ ଜୀବନରେ ପ୍ରଥମ ଥର ପାଇଁ ପରୀକ୍ଷାରେ ଫେଲ୍ ହେବାର ସ୍ୱାଦ ଚାଖିଲି, ବାପା ଓ ଆମର ପରିବାରବର୍ଗ କେହି ଦୁଃଖିତ ହେଲେନି । ପୁଣି ୧୯୪୪ ମସିହା ଜୁଲାଇ ମାସରେ ନାମ ଲେଖାଇଲି । ସେହିବର୍ଷ ଉତ୍କଳ ବିଶ୍ୱବିଦ୍ୟାଳୟ ଆରମ୍ଭ ହେଲା । ଆମ୍ଭେମାନେ ଉତ୍କଳ ବିଶ୍ୱବିଦ୍ୟାଳୟ ଅଧୀନରେ ବି.ଏସି ପରୀକ୍ଷା ଦେଇଥିଲୁଁ । ସେତେବେଳକୁ ଯୁକ୍ତରାଷ୍ଟ୍ର ଆମେରିକା ମିତ୍ରଶକ୍ତି ସହିତ ଯୁଦ୍ଧରେ ଯୋଗ ଦେଇ ସାରିଥାଏ ଏବଂ ଅକ୍ଷଶକ୍ତି ସବୁ ଯୁଦ୍ଧ କ୍ଷେତ୍ରରେ ପଛଘୁଞ୍ଚା ଦେଉଥାଏ । ଯୁଦ୍ଧ ଶେଷ ହେଲେ ଭାରତକୁ ଔପନିବେଶିକ ସ୍ୱାଧୀନତା ଦିଆଯିବ ବୋଲି ବିଲାତର ଲୌହମାନବ ପ୍ରଧାନମନ୍ତ୍ରୀ ନିଆଁଗିଳାର କାଠ ଦଳର ୮୦ ବୟସ୍କ ପ୍ରଧାନମନ୍ତ୍ରୀ ଉଇନଷ୍ଟନ ଚର୍ଚ୍ଚିଲ ଘୋଷଣା କରି ସାରିଥାନ୍ତି । ଶେଷ ପରୀକ୍ଷାରେ ମୁଁ ରସାୟନ ଅନର୍ସରେ ଉଚ୍ଚ ଦ୍ୱିତୀୟ ଶ୍ରେଣୀ ପାଇଲି । ଉଚ୍ଚଶିକ୍ଷା ପାଇଁ ବିଲାତ ଯିବାକୁ ମୋର ଉଚ୍ଚାଭିଳାଷ ଥିଲେ ହେଁ ସେତେବେଳେ କେବଳ ଯୁଦ୍ଧକାର୍ଯ୍ୟ ବ୍ୟତୀତ ଅନ୍ୟ କୌଣସି ଉଦ୍ଦେଶ୍ୟରେ ଭାରତରୁ ବିଲାତ ଯିବା ସଂପୂର୍ଣ୍ଣ ନିଷେଧ ଥିବାରୁ ସେ ଆଶା ପରିତ୍ୟାଗ କଲି । ଓଡ଼ିଶାରେ ଉପରିଲିଖିତ ମତେ କେବଳ ଇଂରେଜୀରେ ଏମ.ଏ. ଅଧ୍ୟାପନା ଓ ଓଡ଼ିଆରେ ପ୍ରାଇଭେଟ କୋଚିଙ୍ଗ ନେଇ ଏମ୍.ଏ. ପରୀକ୍ଷା ଦେବା ବ୍ୟତୀତ ଅନ୍ୟ କୌଣସି ସ୍ନାତକୋତ୍ତରର ଶିକ୍ଷା ସୁଯୋଗ ନଥିଲା । ତେଣୁ କଲେଜକୁ ମୋର ମାର୍କଲିଷ୍ଟ ଓ ସାର୍ଟିଫିକେଟ ଆଣି କଲିକତାରେ ପ୍ରେସିଡେନ୍‌ସି କଲେଜରେ ରସାୟନ ବିଦ୍ୟାରେ ଏମ୍.ଏସି. ପଢ଼ିବା ପାଇଁ ଦରଖାସ୍ତ ପଠାଇଲି ।

•

---

**ଐଶୀଶକ୍ତି ଓ ମୁଁ**

ପ୍ରକାଶକ-କିଶୋର ଚନ୍ଦ୍ର ମହାପାତ୍ର, ବାଲେଶ୍ୱର, ୨୦୦୨

# ଅଧ୍ୟାପକ ଜୀବନ

## ପ୍ରଫୁଲ୍ଲ କୁମାର ପତି

କଲେଜ ଜୀବନରେ ମୋର ମନ ବିକ୍ଷିପ୍ତ ହୋଇଗଲା । ରେଭେନ୍‌ସା କଲେଜ ଇଉନିୟନ୍‌ର ଉପସଭାପତି ଓ ପରେ ସଭାପତି ହେଲି । ଡିବେଟ୍ ଭଲ କଲି । ପ୍ରଥମ ବାର୍ଷିକ କଳାର ଛାତ୍ର ଥିଲେ ବି ( ୧୬/ ୧୭ ବର୍ଷ ବୟସରେ) କଲେଜର ଡିବେଟ୍‌ରେ ପ୍ରଥମ/ ଦ୍ୱିତୀୟ ସ୍ଥାନ ବରାବର ଅଧିକାର କଲି । ସେତେବେଳେ ରେଭେନ୍‌ସା କଲେଜରେ ଇଂରାଜୀ ଏମ୍.ଏ. ଓ ଲ' କ୍ଲାସ ମଧ୍ୟ ଥିଲା । ମୋର ମନେ ଅଛି ମୋର ପ୍ରଥମ ଡିବେଟ୍ ପ୍ରତିଯୋଗିତାର ବିଷୟ ଥିଲ, 'Spiritualism is the curse of India.' ମୁଁ ସେହି ବିଷୟର ବିରୋଧରେ କହିଲି ଏବଂ ସନ୍ତୋଷଜନକ ଭାବରେ ପ୍ରମାଣ କଲି ଯେ Spiritualism is the Crown of India । କଲେଜରେ ଖୁବ୍ ନାଁ ହେଲା ସତ, କିନ୍ତୁ ପଢ଼ାପଢ଼ି ଖୁବ୍ ମାରା ହେଉଥାଏ ।

ଏମ୍.ଏ.ରେ ପାଟନା କଲେଜରେ ବି ସେହି କଥା । ମୋ ମନରେ ଗୋଟିଏ ପାପ ଭାବନା ପଶିଲା ଯେ ସେକେଣ୍ଡ କ୍ଲାସରେ ପାସ୍ କଲେ ମଧ୍ୟ ଚଳିବ । କାରଣ ମୁଁ ଅଧ୍ୟାପକ ହେବି ବୋଲି ଠିକ୍ କରି ନେଇଥିଲି । ଏପରିକି ମୁଁ ବି.ଏ. ପାସ୍ କରିବା ପରେ ସମ୍ବଲପୁରର କଲେକ୍ଟର୍ ୧୯୪୨ରେ ମୋତେ ଡେପୁଟି କଲେକ୍ଟର୍ ପୋଷ୍ଟ ଯାଚିଲେ । ବ୍ରିଟିଶ୍ ସରକାର ତାଙ୍କୁ କ୍ଷମତା ଦେଇଥିଲେ ଯେ ସେ ଦ୍ୱିତୀୟ ମହାଯୁଦ୍ଧରେ ଗାନ୍ଧିଜୀଙ୍କ ଭାରତ ଛାଡ଼ ଆନ୍ଦୋଳନକୁ ବିରୋଧ କରିବା ପାଇଁ ଏବଂ war effort କୁ ଉତ୍ସାହିତ କରିବା ପାଇଁ ସମ୍ବଲପୁରରେ ଜଣେ ଦକ୍ଷ ଲୋକଙ୍କୁ ନିଯୁକ୍ତ କରନ୍ତୁ । ମୁଁ ମନା କଲି । ଭଗବାନଙ୍କ ସତରେ କେତେ ଦୟା ! ସେତେବେଳେ ଡେପୁଟି କଲେକ୍ଟର୍ ହୋଇଥିଲେ ବ୍ରିଟିଶ୍ ସରକାରଙ୍କ ଦାସାନୁଦାସ ହୋଇ ଆଇ.ଏ.ଏସ୍. ପାଇଲେ ବି ଏ ପୋଷ୍ଟ ସେ ପୋଷ୍ଟରେ ମୋର ଜୀବନକୁ ପୂରାପୂରି ମାଟି କରି ଦେଇଥାନ୍ତି । ଅଧ୍ୟାପକ କାମର ସ୍ୱାଦ ଓ ସନ୍ତୋଷ ପାଇପାରି ନ ଥାନ୍ତି । ରକ୍ଷା ହେଲା ମୁଁ ଅଧ୍ୟାପକ ହୋଇଗଲି ଏବଂ ଅଧ୍ୟାପକ ଭାବରେ ମୋର ଖୁବ୍ ନାଁ ହେଲା । କିନ୍ତୁ ଛାତ୍ର ଜୀବନରେ ପଢ଼ାପଢ଼ି ପ୍ରତି ଯେଉଁ ଅବହେଳା ପ୍ରଦର୍ଶନ କରିଥିଲି, ତାହା ଏକ ଅକ୍ଷମଣୀୟ ଅପରାଧ । ବାପା ଖୁବ୍ କଷ୍ଟ କରି ପଇସା ପଠାଉଥିଲେ । ମୋର ଶ୍ୱଶୁର ବି ତାଙ୍କ ପେନ୍‌ସନ୍ ଟଙ୍କାରୁ ମୋତେ ସାହାଯ୍ୟ କରୁଥିଲେ । ତେଣୁ

ଆଣ୍ଡୁମାଡ଼ି ବସି ମୋର ପଢ଼ାପଢ଼ି କରିବା ଉଚିତ ହୋଇଥାଆନ୍ତା । ତା' କଲିନାହିଁ । ବି.ଏ./ ଏମ୍.ଏ. ପରୀକ୍ଷାରେ ଯେତେ ଭଲ କରିବା କଥା କଲିନାହିଁ ।

ଅଧ୍ୟାପକ ହେବା ପରେ ମୋର ଚେତା ପଶିଲା । ସମ୍ବଲପୁର, ପୁରୀ ଓ ବାଲେଶ୍ୱର କଲେଜ ସେହିବର୍ଷ (୧୯୪୪ରେ) ଖୋଲିଥିଲା । ତେଣୁ ହଠାତ୍ ଲେକ୍ଚରର୍ ଚାକିରି ମିଳିଗଲା । ଡି.ପି.ଆଇ. ତ୍ରିପାଠୀ ସାହେବ (ଶ୍ରୀ ଶ୍ୟାମାଚରଣ ତ୍ରିପାଠୀ ଆଇ.ଇ.ଏସ୍. - ସମସ୍ତେ ତାଙ୍କୁ ଶ୍ରଦ୍ଧାରେ ତ୍ରିପାଠୀ ସାହେବ ଏବଂ ଶ୍ରୀ ପ୍ରାଣକୃଷ୍ଣ ପରିଜା ଆଇ.ଇ,ଏସ୍.ଙ୍କୁ ପରିଜା ସାହେବ ବୋଲି ଡାକୁଥିଲେ) ମୋର ପୋଷ୍ଟିଂ ରେଭେନ୍ସା କଲେଜରେ କଲେ । ମୁଁ ପୁଣି ମାଆର କୋଳକୁ ଫେରି ଆସିଲି । ସେ ଦିନ ୦୯.୦୯.୧୯୪୪ରେ ତ୍ରିପାଠୀ ସାହେବ ମୋତେ ଯାହା କହିଲେ ଏବଂ ମୋ ପାଇଁ ଯାହା କଲେ ଏବେ ବି ମୋର ମନେ ଅଛି । ସେ ପ୍ରଥମେ ମୋତେ ଗାଳିଦେଲେ ଯେ ମୁଁ ଯେତେ ଭଲ କରିବା କଥା କଲିନାହିଁ । କିନ୍ତୁ ପରେ ପରେ ସେ କହିଲେ ଯେ ପରିଜା ସାହେବଙ୍କୁ ଫୋନ୍‌ରେ କହିଦେଇଛନ୍ତି ଯେ ମୁଁ ରେଭେନ୍ସା କଲେଜରେ ଜଏନ୍ କରିବି । ସେ ଆଉ କ'ଣ କହିବେ ଭାବି ମୁଁ ଟିକିଏ ଅପେକ୍ଷା କଲି । ତା'ପରେ ସେ କହିଲେ ''You fool, why are you standing ? Go running to Ravenshaw College.'' ମୁଁ ରିକ୍ସାଟିଏ କରି କେଣ୍ଟନ୍‌ମେଣ୍ଟ ରୋଡ୍‌ର ୪ ନମ୍ବର ଘରୁ କଲେଜକୁ ଆସିଲି ଓ ପ୍ରିନ୍ସିପାଲଙ୍କୁ ଦେଖାକଲି ।

ବିଧୁବାବୁ ଓ ମୁଁ ଏକା ସମୟରେ ଅଧ୍ୟାପକ ଚାକିରି ପାଇଲୁଁ । ପ୍ରଫେସର୍ ସୁନ୍ଦରମ୍ ଇଂରାଜୀ ବିଭାଗର ଅଧ୍ୟକ୍ଷ ଥିଲେ । ସେ ବିଧୁବାବୁଙ୍କୁ କେବଳ ଅନର୍ସ ପାଇଁ ପ୍ରେସ୍‌କ୍ରାଇବ୍ ହୋଇଥିବା ବହି ପଢ଼ାଇବାକୁ ଦେଲେ ଏବଂ ମୋତେ ସେକ୍ସପିୟରଙ୍କ 'Much Ado about Nothing' ପଢ଼ାଇବାକୁ କହିଲେ । ଏହା ଫଳରେ ମୋତେ ପାସ୍ ଓ ଅନର୍ସର କମ୍ବାଇଣ୍ଡ୍ କ୍ଲାସ୍ ନେବାକୁ ପଡ଼ିଲା । ବୋଧହୁଏ, ସୁନ୍ଦରମ୍ ଭାବିଲେ ଯେ ବିଧୁବାବୁଙ୍କ ଜ୍ଞାନ ଭଲ, କିନ୍ତୁ ସେ ଲାଜକୁଳା ଥିବାରୁ ହୁଏତ ପ୍ରଥମରୁ ବି.ଏ.ରେ ବଡ଼ କ୍ଲାସ୍ ସମ୍ଭାଳି ପାରିବେ ନାହିଁ । ମୁଁ ବକ୍ତୃତା ଆଦିରେ ନାଁ କରିଥିଲି, ତେଣୁ ହୁଏତ ଜ୍ଞାନ ଅଳ୍ପ ଥିଲେ ବି ଚଳାଇନେବି । ମୁଁ ୪ର୍ଥ ବର୍ଷରେ ଥିବାବେଳେ ଯେଉଁମାନେ ପ୍ରଥମ ବର୍ଷରେ ଥିଲେ - ସେମାନଙ୍କ ମଧ୍ୟରୁ କେତେଜଣ ମୋର ସାଙ୍ଗ ଥିଲେ - ସେମାନଙ୍କୁ ପଢ଼ାଇବାକୁ ପଡ଼ିଲା । ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ବି ସେହି କ୍ଲାସ୍‌ରେ ଥିଲେ । ବିଧୁବାବୁ ଓ ମୋ ମଧ୍ୟରେ ଆଦୌ ବାଦ ହେଲାନାହିଁ । ଛାତ୍ରମାନେ କହିଲେ ବିଧୁବାବୁ ଖୁବ୍ ଜାଣନ୍ତି, ତେଣୁ ତାଙ୍କ ପଢ଼ାଇବା ଭଲ ଓ ପ୍ରଫୁଲ୍ଲ ବାବୁ ଭଲ ବୁଝାଇପାରନ୍ତି, ତେଣୁ ତାଙ୍କ ପଢ଼ାଇବା ଭଲ ।

ବିଧୁବାବୁ, ନନ୍ଦବାବୁ (ନନ୍ଦକିଶୋର ମିଶ୍ର) ଓ ମୁଁ ଖୁବ୍ ସାଙ୍ଗ ହେଲୁ । ଲୋକେ ଆମକୁ Three Musketeers ବୋଲି କହିଲେ । ବିଧୁବାବୁଙ୍କ ଖୁବ୍ ନାଁ । ସେ ବଡ଼ଲୋକ ପିଲା । ଭଲ ପୋଷାକରେ ଆସନ୍ତି । ତାଙ୍କର glamour ଥାଏ । କିନ୍ତୁ ମୋର ମାମୁଲି ପୋଷାକ, ଦୁଇ ଖଣ୍ଡ

ସୁଟ୍ ଥାଏ । ସେତେବେଳେ ଆମେ ସୁଟ୍ ପିନ୍ଧି କଲେଜକୁ ଯାଉଥିଲୁ । ବିଧୁବାବୁଙ୍କ ସହିତ ବା ଅନ୍ୟ କାହା ସହିତ ମୋର ବାଦ ନ ଥିଲା । ମୁଁ ଘରେ ପଢ଼ାପଢ଼ି କରି ପୂରା ପ୍ରସ୍ତୁତ ହୋଇ କ୍ଲାସ୍‌କୁ ଯାଉଥିଲି । ଯାହା ପଢ଼ାଇବାର ଥାଏ, ସେହି ବିଷୟକୁ ଛାତ୍ରମାନଙ୍କର ଦୃଷ୍ଟିକୋଣରୁ ଦେଖି ନେଉଥିଲି । ତେଣୁ କେଉଁ ଢଙ୍ଗରେ ପଢ଼ାଇଲେ ଭଲ ହେବ ଅର୍ଥାତ୍ ଛାତ୍ରଙ୍କ ମସ୍ତିଷ୍କକୁ ସୁବିଧାରେ ପ୍ରବେଶ କରିହେବ ଏବଂ କେଉଁ କେଉଁ ଜାଗାରେ ସେମାନଙ୍କର ବୁଝିବାରେ ଅସୁବିଧା ହୋଇପାରେ, ସେ ସବୁ କଥା ଠଉରାଇ ନେଉଥିଲି । ତେଣୁ ମୋର ପଢ଼ାଇବା ଛାତ୍ରମାନଙ୍କୁ ଭଲ ଲାଗୁଥିଲା । କିନ୍ତୁ ମୁଁ ଯେ ଖୁବ୍ ଭଲ ଅଧ୍ୟାପକ, ଏ ଧାରଣା ମୋର ମନକୁ ଆସୁ ନ ଥିଲା ଏବଂ ମୋର ଗର୍ବ ହେଉ ନ ଥିଲା । ତା'ର କାରଣ ହେଉଛି ମୁଁ ଜାଣିଥିଲି ଯେ ମୋର ଜ୍ଞାନ ଓ ପଢ଼ାପଢ଼ିର ବ୍ୟାପ୍ତି ସୀମିତ ଥିଲା ।

ଭଗବାନ୍ ମୋତେ ଏକ ଶକ୍ତି ଦେଇଛନ୍ତି । ତାହା ହେଉଛି ବିଶ୍ଳେଷଣ କରିବା । ଯେ କୌଣସି କବିତା ହେଉ ବା ଗଦ୍ୟକୃତି ହେଉ ମୁଁ ତାକୁ କାଟି ବାଛି ଧୋଇ ପାରୁଥିଲି । ସାହିତ୍ୟିକମାନଙ୍କର ମୂଲ୍ୟାୟନ କରିବା ବେଳେ ଭଲ-ମନ୍ଦକୁ ହଂସ ପରି ଅଲଗା କରିପାରୁଥିଲି । କିନ୍ତୁ ଏଥିପାଇଁ ବି ମୋର ଗର୍ବ ହେଉ ନ ଥିଲା । କାରଣ ମୋର କଳ୍ପନା ଶକ୍ତି ନିମ୍ନ ଧରଣର ଥିଲା । ସାହିତ୍ୟରେ ମୋର ଦକ୍ଷତା ଥିଲେ ବି ମୁଁ ବିଶେଷ କିଛି ଲେଖାଲେଖି କରିପାରିଲି ନାହିଁ । କଳ୍ପନାର ଡେଣା ଥିଲେ ହୁଏତ ମୁଁ ଭଲ ଭଲ ସାହିତ୍ୟିକ କୃତି ରଚନା କରିପାରିଥାଆନ୍ତି । ତା'ପରେ ମୋର ଆଉ ଗୋଟିଏ ଦୋଷ (ତାକୁ ହୁଏତ ଗୁଣ ବୋଲି କୁହାଯାଇପାରେ) ହେଉଛି ଯେ କୌଣସି କଥା ମୋତେ ପୂରାପୂରି ସନ୍ତୁଷ୍ଟ କରିପାରେ ନାହିଁ । ତେଣୁ ଅନେକ ଲେଖା ମୁଁ ଅଧାରୁ ଛାଡ଼ି ଦେଇଛି ।

ଟ୍ୟୁଟରିଏଲ୍ କ୍ଲାସ୍‌ରେ ମୁଁ ଏତେ କଡ଼ା ଥିଲି ଯେ ଛାତ୍ରମାନେ ମୋ କ୍ଲାସ୍‌କୁ ପୂରାପୂରି ପ୍ରସ୍ତୁତ ହୋଇ ଆସିବାକୁ ବାଧ୍ୟ ହେଉଥିଲେ । ସେମାନଙ୍କର ଦୋଷ ଦେଖାଇ ସେମାନଙ୍କୁ ନିରୁତ୍ସାହିତ କରୁ ନ ଥିଲି ବରଂ ସେମାନଙ୍କର ବ୍ୟକ୍ତିତ୍ୱର ଲତାକୁ କିପରି ଭାବରେ ସାମାନ୍ୟ ମୋଡ଼ାମୋଡ଼ି କରି ସେମାନଙ୍କୁ ସୂର୍ଯ୍ୟ ଆଡ଼କୁ ମୁହାଁଇ ପାରିବି ଓ ସେମାନଙ୍କର ମନ କନ୍ଦରକୁ ଜ୍ଞାନର ତାଜା ହାଓ୍ୱା ଯୋଗାଇ ପାରିବି, ଏହି ଉଦ୍ଦେଶ୍ୟ ମୋର ବରାବର ଥିଲା । ତେଣୁ ମୋର ଅଧ୍ୟାପନାରେ ଛାତ୍ରମାନେ ନିଜେ ନିଜେ ସେମାନଙ୍କର ବିକାଶ କରୁଥିଲେ ।

ରେଭେନ୍‌ସା କଲେଜର ସବୁ କଥାରେ ମୁଁ ଓତପ୍ରୋତ ଭାବରେ ଜଡ଼ିତ ଥିଲି । କ୍ଲାସରେ ଶୃଙ୍ଖଳା ରକ୍ଷା କରିବାରେ ମୁଁ ବିଲ୍‌କୁଲ୍ ଖିଲାପ କରୁ ନ ଥିଲି । ପଢ଼ାପଢ଼ିରେ କୌଣସି ଛାତ୍ର ବା ଛାତ୍ରୀ ଢିଲା ହେଲେ ମୁଁ ତାକୁ ଛାଡୁ ନ ଥିଲି । ମୁଁ କେବଳ ଦୁଇଟି ଉଦାହରଣ ଦେବି । ଜଣେ ଛାତ୍ରୀ - ବଡ଼ଲୋକ ଝିଅ- ସିନେମାରେ ନାଚ ଦେଖାଇଥିଲେ । ସେତେବେଳେ ତ ଛାତ୍ରୀ ଖୁବ୍ କମ୍ ସଂଖ୍ୟାରେ ଥିଲେ । ଏହି ଛାତ୍ରୀଙ୍କର ଗର୍ବ ଜାହିଁରେ କ'ଣ । ଥରେ ଟ୍ୟୁଟରିଏଲ୍ କ୍ଲାସରେ ତାଙ୍କୁ ଓ ଅନ୍ୟମାନଙ୍କୁ ଟାସ୍କ ଦେଇଥାଏଁ । ସେ କିନ୍ତୁ ମୋ କଥାକୁ ଗୁରୁତ୍ୱ ଦେଇ ନ ଥିବାରୁ ଟାସ୍କ କରି ଆସି

ନ ଥାଏ। ତାକୁ ପଚାରିବାରୁ ସେ କହିଲା, "ମୁଁ ଆରଥରକୁ କରିବି।" ତାକୁ ମୁଁ ଶାନ୍ତ ସ୍ୱରରେ କହିଲି, "ତାହାହେଲେ ତୁମେ ଆରଥରକୁ ଆସିବ।" ସେ କିନ୍ତୁ ମୋ କଥା ବୁଝିପାରିଲା ନାହିଁ ଏବଂ ବସି ରହିଲା। ତେଣୁ ମୁଁ ତାକୁ କହିଲି, "ମୁଁ ତୁମକୁ ଆରଥରକୁ ଆସିବା ପାଇଁ ପରା କହିଲି।" ସେ ଏଥର ବୁଝିଲା ଏବଂ କ୍ଲାସ୍ ଛାଡ଼ି ଚାଲିଗଲା। କିନ୍ତୁ ଯାଇ ଆମର HOD (ବିଧୁବାବୁ)ଙ୍କ ପାଖରେ କାନ୍ଦି କାନ୍ଦି ନେହୁରା ହେଲା। ମୁଁ ବିଧୁବାବୁଙ୍କୁ ବୁଝାଇ ଦେଲି ଯେ ମୁଁ ଯାହା କରିଛି, ଠିକ୍ କରିଛି। ସେ ଦିନରୁ ସେ ତା'ର ବ୍ୟବହାରରେ ନମ୍ର ହୋଇଗଲା ଏବଂ ପଢ଼ାପଢ଼ି ରୀତିମତ ଭାବରେ କଲା।

ଆଉ ଗୋଟିଏ ଉଦାହରଣ ହେଉଛି ଜେନେରାଲ୍ କ୍ଲାସ୍ ନେଇ। ରେଭେନ୍ସା କଲେଜର ୨୧ ନମ୍ବର ରୁମ୍‌ରେ କ୍ଲାସ୍ ହେଉଥାଏ। ୨୧ ଓ ୨୩ ବଡ଼ ରୁମ୍। ଜେନେରାଲ୍ କ୍ଲାସ୍ ଏହି ଦୁଇ ରୁମ୍‌ରେ ହୁଏ। ୧୨୫ ଜଣ ଛାତ୍ର ଓ ଛାତ୍ରୀ। ତା'ପରେ ଅନ୍ୟ ସେକ୍ସନ୍‌ରୁ ଆସି ମଧ୍ୟ ବହୁତ ଛାତ୍ର ମୋ ସେକ୍ସନ୍‌ରେ ବସିଥାଆନ୍ତି। ଛାତ୍ରୀମାନେ ଅଧ୍ୟାପକଙ୍କ ଗୋଟିଏ ପଟରେ ଅଲଗା ବସନ୍ତି। ରୋଲ୍ କଲ୍ ନେବାବେଳେ ଗୋଟିଏ ଝିଅର ରୋଲ୍ ନମ୍ବରରେ ଗୋଟିଏ ପୁଅ ପିଲା ପଛରୁ ଝିଅ କଣ୍ଠରେ କହିଲା, "Yes sir"। ସେଥର କିଏ ଏପରି କହିଲା, ମୁଁ ଧରି ପାରିଲିନାହିଁ। କିନ୍ତୁ ତା'ପର ଥର ମୁଁ ଜାଗତିଆର ଥିଲି। ସେ ଏପରି କହିବା ବେଳେ ମୁଁ ପିଲାକୁ ଠଉରାଇ ନେଲି। ରୋଲ୍ କଲ୍ ସରିଗଲା ପରେ ସେ ପିଲା ପାଖକୁ ଯାଇ ହାତ ଠାରି ଡାକିଲି। ସେ ମୋ ପଛରେ ଆସିଲା। ତାକୁ କିଛି ନ କହି ହାତ ଠାରି ଛାତ୍ରୀମାନଙ୍କୁ ତା' ପାଇଁ ଗୋଟିଏ ସିଟ୍ ଖାଲି କରିବାକୁ ନିର୍ଦ୍ଦେଶ ଦେଲି। ଜାଗା ଖାଲି ହେଲା ପରେ ସେ ପିଲାକୁ ହାତଠାରି ସେହି ସିଟ୍‌ରେ ବସିବା ପାଇଁ ନିର୍ଦ୍ଦେଶ ଦେଲି। ଛାତ୍ରର ନ ଯଯୌ ନ ତସ୍ଥୌ ଅବସ୍ଥା। ସେ କିଂକର୍ତ୍ତବ୍ୟବିମୂଢ଼ ହୋଇ କିଛି ସମୟ ଠିଆ ହୋଇ ରହିଲା। ତା'ପରେ ତାକୁ ତା'ର ମୂଳ ସିଟ୍‌କୁ ଯିବାପାଇଁ ନିର୍ଦ୍ଦେଶ ଦେଲି। ସେ ମୁଣ୍ଡ ତଳକୁ କରି ବସିଲା। ସେହି ଦିନରୁ ସେ ଓ ସମସ୍ତେ ଜାଣିଗଲେ ଯେ ଫାଜିଲାମି ଚଳିବ ନାହିଁ।

ଅଧ୍ୟାପକ ଭାବରେ ମୋର ଆଉ ଦୁଇଟି ଭଲ ଦିଗ ଥିଲା। ଅଧ୍ୟାପକ ଭାବରେ ଏବଂ ପରେ ପ୍ରଶାସକ ଭାବରେ ମୁଁ କେବେବି ପକ୍ଷପାତ କରିନାହିଁ। ବ୍ରାହ୍ମଣ, କରଣ, ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିୟାନ୍, ସମ୍ବଲପୁରିଆ, କଟକିଆ ଏପରିକି ସ୍ତ୍ରୀ ପୁରୁଷ ଏସବୁ ବିଚାର ମୋ ପାଖରେ ନ ଥିଲା। ତେଣୁ କୌଣସି ଛାତ୍ର ମୋ ପାଖରୁ କେବେବି ଅହେତୁକ ଅନୁଗ୍ରହ ପାଇନାହିଁ। ପରୀକ୍ଷକ ଭାବରେ କାହାକୁ ଗୋଟିଏ ବି ମାର୍କ ଅଧିକା ଦେଇନାହିଁ। ଜଣେ ଛାତ୍ର ବି.ଏ. ଅନର୍ସରେ ଫାଷ୍ଟ ହୋଇଥିଲେ। କିନ୍ତୁ ରେଭେନସା କଲେଜରେ ଏମ୍.ଏ.ରେ ତାଙ୍କର ତୃତୀୟ ଶ୍ରେଣୀ ହୋଇଗଲା। କାରଣ ତାଙ୍କ ଲେଖାରେ ବନାନ, ବ୍ୟାକରଣ ଓ ବାକ୍ୟଗଠନ ସ୍ତରରେ ଅତି ମାମୁଲି ଭୁଲ୍ ସବୁ ରହୁଥିଲା। ସେହିପରି ମୁଁ ସମ୍ବଲପୁର ବିଶ୍ୱବିଦ୍ୟାଳୟକୁ ଆସିବା ପରେ ଆମ ଡିପାର୍ଟମେଣ୍ଟରେ ଯେ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରିଥିଲା, ତାକୁ ଅଧ୍ୟାପକ ଭାବରେ ନ ବାଛି

ରେଭେନ୍‌ସା କଲେଜରେ ଯେ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରିଥିଲା ତାକୁ ବାଛିଲି । ଆଉ ସବୁଠୁ ବିଚିତ୍ର କଥା ହେଉଛି ଯେ ଯାହାକୁ ବାଛିଲି ନାହିଁ, ସେ ମୋର ପୁଅ ଭଳି ଥିଲା । ଏହି ଦୁଇଟି ଉଦାହରଣ ଦେଲି ଏ କଥା ଦେଖାଇବା ପାଇଁ ଯେ ନ୍ୟାୟ୍ ଓ ସତ୍ୟକୁ କେବେ ଛାଡ଼ିବା ଉଚିତ ନୁହେଁ । ଭଗବାନଙ୍କ କୃପାରୁ ଯେଉଁମାନଙ୍କୁ ବାଛିଲି ନାହିଁ ସେମାନଙ୍କ ମଧ୍ୟରୁ ଜଣେ ଡେପୁଟି ମାଜିଷ୍ଟ୍ରେଟ ହୋଇ ପରେ ଆଇ.ଏ.ଏସ୍. ହେଲେ ଏବଂ ଅନ୍ୟ ଜଣକ ସିଧା ଆଇ.ଏ.ଏସ୍. ହେଲେ । ଓଡ଼ିଶା ପବ୍ଲିକ୍ ସର୍ଭିସ୍ କମିଶନ୍‌ର ସଭ୍ୟ ଥିବାବେଳେ କିମ୍ବା ସିଣ୍ଡିକେଟର ସଭ୍ୟ ବା ଭାଇସ୍ ଚାନ୍‌ସେଲର୍ ଥିବାବେଳେ ଅଫିସର ଓ ଅଧ୍ୟାପକ ବାଛିବାରେ କେବେ ମୁଁ ପକ୍ଷପାତିତା କରିନାହିଁ । କାରଣ ଏହା ମୁଁ ଏକ ପବିତ୍ର ନ୍ୟାସ ବୋଲି ମନେ କରୁଥିଲି ।

ପଢ଼ାଇବା ଅଧ୍ୟାପକର ମୁଖ୍ୟ କାମ ହେଲେ ହେଁ ଏହା ତାଙ୍କର ଏକମାତ୍ର କାମ ନୁହେଁ । ଛାତ୍ରମାନଙ୍କ ଚରିତ୍ର ଗଠନ ଏକ ମୁଖ୍ୟ କାମ । ଅବଶ୍ୟ ଏହା ଅଧ୍ୟାପକ କରିପାରିବେ ବକ୍ତୃତା ବା ପ୍ରବଚନ ଦେଇ ନୁହେଁ, କିନ୍ତୁ ନିଜର କଥାବାର୍ତ୍ତା ଓ ଆଚରଣ ମାଧ୍ୟମରେ । ଭାବିଚିନ୍ତି ନିଜର ଆଚରଣକୁ ମାର୍ଜିତ କରିବାକୁ ଚେଷ୍ଟା କଲେ ଏହା ସ୍ୱାଭାବିକ ହେବ । ନଚେତ୍ ଛାତ୍ରମାନେ ଠିକ୍ ଧରିନେବେ ଯେ ଆପଣ ଯାହା କହୁଛନ୍ତି, ତାହା ନୁହନ୍ତି । ତେଣୁ କର୍ତ୍ତବ୍ୟବୋଧ, ଶୃଙ୍ଖଳା ଜ୍ଞାନ, ଛାତ୍ରମାନଙ୍କ ପ୍ରତି ସ୍ନେହ, ସେମାନଙ୍କୁ ସମସ୍ତଙ୍କୁ ସମାନ ଦୃଷ୍ଟିରେ ଦେଖିବା, ନମ୍ରତା ଆଦି ଗୁଣ ଅଧ୍ୟାପକର ନିଜସ୍ୱ ଓ ସ୍ୱତଃପ୍ରବୃତ୍ତ ଲକ୍ଷଣ ହେବା ଉଚିତ । ମୁଁ ଏ ସବୁଥିରେ କେତେଦୂର ଆଗେଇଛି କହିପାରିବି ନାହିଁ ଏବଂ କହିବା ବି ସୁରୁଚିସମ୍ପନ୍ନ ହେବନାହିଁ । କିନ୍ତୁ ଗୋଟିଏ କଥା ମୋତେ ଅପାର ଆନନ୍ଦ ଦେଇଛି, ତାହା ହେଉଛି ଛାତ୍ରମାନଙ୍କର ଭୟମିଶା ଭକ୍ତି ଏବଂ ଆନ୍ତରିକ ସ୍ନେହ । ଏପରିକି ଅନେକ ଛାତ୍ର ଯେଉଁମାନେ ବଡ଼ ବଡ଼ ଚାକିରି କରି ଅବସର ନେଲେଣି, ସେମାନେ ଏବେବି ରାସ୍ତାରେ ଦେଖିଲେ ପାଦଧୂଳି ନିଅନ୍ତି ଏବଂ ସେମାନେ କେବେ ମୋ ପାଖରେ ପଢ଼ିଥିଲେ, ମୁଁ କ'ଣ ପଢ଼ାଉଥିଲି ଏବଂ ମୋ ପଢ଼ାଇବା ସେମାନଙ୍କୁ କେତେ ଭଲ ଲାଗୁଥିଲା ଇତ୍ୟାଦି କହି ଚାଲନ୍ତି । "ମୋ ସାର୍" ବୋଲି ସେମାନଙ୍କର ସ୍ତ୍ରୀ ଓ ପିଲାମାନଙ୍କୁ ଚିହ୍ନାଇ ଦିଅନ୍ତି ଏବଂ ମୁଣ୍ଡିଆ ମାରନ୍ତି । ତେଣୁ ଅଧ୍ୟାପକ ହେବାରୁ ମୋର ଜୀବନ ସାର୍ଥକ ହୋଇଛି ବୋଲି ମୋର ପୂରାପୂରି ଧାରଣା ରହିଛି ଏବଂ ମୁଁ ଜୀବନରେ ପୂର୍ଣ୍ଣ ସନ୍ତୋଷ ଲାଭ କରିଛି ।

**ରେଭେନ୍‌ସା କଲେଜରେ**

ଆମେ ଅଧ୍ୟାପକମାନେ କ୍ଲାସ୍‌ରେ ଯେତିକି କଡ଼ା ଥିଲୁଁ, କ୍ଲାସ୍ ବାହାରେ ସେତିକି ନରମ ଥିଲୁଁ । ପିଲାଙ୍କ ସହିତ ଖୁବ୍ ମିଶୁଥିଲୁଁ କିନ୍ତୁ ଆମର ମର୍ଯ୍ୟାଦା କେବେ ହ୍ରାସ ପାଇ ନଥିଲା । କଲେଜ ଇଉନିଅନ୍ ସେତେବେଳେ ପ୍ରକୃତରେ ଏକ କଲ୍‌ଚରାଲ୍ ଇଉନିୟନ ଥିଲା । ଆମେ ଛାତ୍ର ଥିବା ବେଳେ ଓ ଅଧ୍ୟାପକ ହେବାପରେ ବି ପୂରା ଦମ୍‌ରେ ଇଉନିୟନର ସବୁ ପ୍ରକାର କାର୍ଯ୍ୟକ୍ରମରେ ଭାଗ ନେଉଥିଲୁଁ ।

ରାଜନୈତିକ କାର୍ଯ୍ୟକ୍ରମ ମଧ୍ୟ ଇଉନିୟନ ହାତକୁ ନେଉଥିଲା । କିନ୍ତୁ ହିଂସାତ୍ମକ କାଣ୍ଡରୁ ଛାତ୍ରମାନେ ପ୍ରାୟ ଦୂରରେ ରହୁଥିଲେ । କେବଳ ଥରେ ୧୯୪୨ର ଭାରତ ଛାଡ଼ ଆନ୍ଦୋଳନ ବେଳେ ଅଫିସ୍‌ର କାଗଜପତ୍ର ପୋଡ଼ାପୋଡ଼ି କରିଦେଇଥିଲେ । କଲେଜର ବାର୍ଷିକ କ୍ରୀଡ଼ା ଉତ୍ସବରେ ଛାତ୍ରନେତାମାନେ ବ୍ରିଟିଶ୍ ପତାକା (Union Jack)କୁ ତଳେ ପକାଇଦେଲେ । ସେତେବେଳେ ତ ବ୍ରିଟିଶ୍‌ରାଜ, ଭାରତୀୟମାନେ ସାହେବମାନଙ୍କୁ ଡରିମରି ରହୁଥିଲେ । ତେଣୁ ସେହି ଛାତ୍ରମାନଙ୍କୁ ରଷ୍ଟିକେସନ୍ ଦଣ୍ଡ ଦିଆଗଲା । କିନ୍ତୁ ମୋଟାମୋଟି ଭାବରେ କୌଣସି ବିଶେଷ ଘଟଣା ନହେଲେ ଛାତ୍ରମାନେ ରାଜନୈତିକ କାର୍ଯ୍ୟକ୍ରମ ଭିତରକୁ ପଶୁ ନ ଥିଲେ । ତା' ଫଳରେ କଲେଜରେ ପଢ଼ାପଢ଼ି ଓ ସାଂସ୍କୃତିକ କାର୍ଯ୍ୟକ୍ରମ ବିନା ବାଧାରେ ଚାଲିଥିଲା । ଆଜିକାଲି କଲେଜଗୁଡ଼ିକୁ ଦେଖିଲେ ମୋର ମନକୁ ବରାବର ଗୋଟିଏ ଭାବନା ଆସେ, ଆଗର ସେହି ଅବସ୍ଥା ଫେରି ଆସନ୍ତା କି? ଏବେ କଲେଜ ସଂଖ୍ୟା ବଢ଼ିଗଲାଣି । ଅଯୋଗ୍ୟ ନ ହେଲେ ବି ଅଧ୍ୟାପନାରେ ଯେଉଁମାନଙ୍କର ଆଗ୍ରହ ନାହିଁ, ସେପରି ଅନେକ ବ୍ୟକ୍ତି ବର୍ତ୍ତମାନ ଅଧ୍ୟାପକ ଅଛନ୍ତି । ହୁଏତ ସରକାରଙ୍କ ପକ୍ଷରେ ସମସ୍ତ କଲେଜରେ ଉଚ୍ଚମାନ ରକ୍ଷା ସମନ ହୋଇ ନ ପାରେ । କିନ୍ତୁ କେତେକ ବଛା ବଛା କଲେଜ ପଢ଼ାପଢ଼ିର ଉଚ୍ଚମାନ ରକ୍ଷା ସମ୍ଭବ ହୋଇ ନ ପାରେ । କିନ୍ତୁ କେତେକ ବଛା ବଛା କଲେଜ ପଢ଼ାପଢ଼ିର ଉଚ୍ଚମାନ ଓ ଗବେଷଣାର ସୁବିଧା ଯୋଗାଇ ପାରିଲେ ଦେଶ ଅନ୍ତତଃ ଅଧୋଗତିର ସ୍ରୋତରୁ ବଞ୍ଚିପାରିବ, କାରଣ ଭାରତରେ ଶିକ୍ଷା ଓ ଗବେଷଣାର ଉଚ୍ଚ ପରମ୍ପରା ରହିଛି ।

କିନ୍ତୁ ଅଧ୍ୟାପକ କେବଳ କ୍ଲାସ୍‌ରୁମ୍‌ରେ ମନ ଦେଇ ପଢ଼ାଇଲେ ଓ ନିଜର ଆଚରଣ ଦ୍ୱାରା ଛାତ୍ରମାନଙ୍କର ଚରିତ୍ର ଗଠନରେ ସାହାଯ୍ୟ କଲେ ତା'ର କର୍ତ୍ତବ୍ୟ ସରିଯିବନାହିଁ । ଛାତ୍ରର ବୌଦ୍ଧିକ ବିକାଶ କରିବା ଓ ତା'ର ଜୀବନ ସମ୍ବନ୍ଧରେ ଜ୍ଞାନ ବଢ଼େଇବା ବି ଶିକ୍ଷକର କର୍ତ୍ତବ୍ୟ । ଆଖି ଖରାପ ଥିବାରୁ ମୁଁ ଖେଳ ଆଦିରେ ମୂଳରୁ ବିଶେଷ ଭାଗ ନେଇ ପାରୁ ନ ଥିଲି । କିନ୍ତୁ ସଭାସମିତିରେ କହିବାରେ ଓ ଡିବେଟ ଆଦି କରିବାରେ ମୋର ଆଗ୍ରହ ଓ ପାରଦର୍ଶିତା ଥିଲା । ସାହିତ୍ୟିକ କାର୍ଯ୍ୟକ୍ରମରେ ବି ସଉକ ଥିଲା । ଶ୍ରୀ ରତ୍ନାକର ପତି (ଗୋପବନ୍ଧୁ ଦାଶଙ୍କ କୁଆଇଁ) ସମ୍ବଲପୁରରେ କେତେ ସମୟ ପାଇଁ ଆମର ପ୍ରଧାନ ଶିକ୍ଷକ ଥିଲେ । ସେ ମୋତେ ଏଥିରେ ପ୍ରେରଣା ଓ ପ୍ରଶିକ୍ଷଣ ଦେଇଥିଲେ । କଲେଜରେ ଏ ଦିଗରେ ମୋର ଏତେ ଆଗ୍ରହ ବଢ଼ିଲା ଯେ ରେଭେନ୍‌ସା କଲେଜକୁ ଭାରତୀୟ ସ୍ତରରେ ପ୍ରତିନିଧିତ୍ୱ କଲି । କଲେଜ ଇଉନିୟନ୍‌ର ଉପସଭାପତି ଓ ସଭାପତି ହେଲି । ପାଟନା କଲେଜରେ ବି ଡିବେଟ୍‌ରେ ସ୍ୱର୍ଣ୍ଣ ମେଡ଼ାଲ୍ ପାଇଲି ।

ରେଭେନ୍‌ସାରେ ଅଧ୍ୟାପକ ହେବା ପରେ ବି ଏହି କାର୍ଯ୍ୟକ୍ରମ ଚାଲୁ ରହିଲା । ପିଲାଙ୍କ ସହିତ ମିଶି ଆମେ ଅଧ୍ୟାପକମାନେ ଡିବେଟ ଆଦି ବରାବର କରୁଥିଲୁଁ । ପ୍ରିନ୍‌ସିପାଲ୍ ବାମାଚରଣ

ଦାସ, ଅଧ୍ୟାପକ ସୁନ୍ଦରମ୍. ଡ. ସଦାଶିବ ମିଶ୍ର ଭଳି ବରିଷ୍ଠ ଅଧ୍ୟାପକମାନେ ଆମ ଯୁବଅଧ୍ୟାପକମାନଙ୍କ ସହିତ କାନ୍ଧ ମିଳାଉଥିଲେ । ସେତେବେଳେ ଏ ପ୍ରକାର ଆଲୋଚ଼ନା ଦ୍ୱାରା ପିଲାଙ୍କର ବହୁତ ଲାଭ ହେଉଥିଲା । ସେମାନଙ୍କର ଏ ସବୁରେ ପ୍ରବଳ ଆଗ୍ରହ ଥିଲା । ଏପରି ଭାବରେ କ୍ଲାସ୍‌ରୁମ୍ ବାହାରେ ଆମ୍ଭେମାନେ ପିଲାମାନଙ୍କୁ ଅଧିକା ଶିକ୍ଷା ଦେଉଥିଲୁଁ । ସମ୍ବିଧାନ ପାସ୍ ହେବାପରେ ଆମେ ଅତି ଉନ୍ନତ ଧରଣର ମକ୍ ପାର୍ଲିଆମେଣ୍ଟ କରାଉଥିଲୁଁ । ନେହେରୁ ଆଦି ଗୁରୁତ୍ୱପୂର୍ଣ୍ଣ ଭୂମିକାରେ ପିଲାମାନେ ବାହାରୁଥିଲେ ଏବଂ ଆମେ ଅଧ୍ୟାପକ ମାନେ ମାମୁଲି ସଭ୍ୟ ହେଉଥିଲୁଁ । Point of Order, Question answer ଆଦିରେ (ସପ୍ଲିମେଣ୍ଟାରୀ ସମେତ) ପିଲାମାନଙ୍କୁ ଜ୍ଞାନ ଦେବା ଆମର ଉଦ୍ଦେଶ୍ୟ ଥିଲା । ଜଣେ ଛାତ୍ର ସ୍ପିକର୍ ହେଉଥିଲା । ଆଜିକାଲି ଇଉନିୟନ୍ ଅର୍ଥ ଗଣ୍ଡଗୋଳ ମଧ୍ୟରେ ନିର୍ବାଚ଼ନ ଖୁବ୍ ଡେରିରେ ହେବ, ମନ୍ତ୍ରୀ ଆଦିଙ୍କୁ ଡାକି ମେଲୋଡ଼ି ଆଦି ଯୋଗାଡ଼ କରି ଧୁମ୍‌ଧାମ୍‌ରେ ଉଦ୍‌ଘାଟନ ହେବ ଏବଂ ବର୍ଷ ଶେଷରେ ସେପରି ଗୋଟିଏ ତମାସା ହେବ । ଆଲୋଚ଼ନା ଆଦି ଶୂନ୍ ।

ଗୋଟିଏ ଡିବେଟ ଏତେ ମଜାଦାର ହୋଇଥିଲା ଯେ ତା' ବିଷୟରେ କିଛି କହିବା ପାଇଁ ଇଚ୍ଛା ହେଉଛି । ଆମେ ଗୋଟିଏ ଉଣ୍ଡାସିଆ ଡିବେଟ୍‌ର ଆୟୋଜନ କରିଥିଲୁଁ, ରେଭେନ୍‌ସା କଲେଜ ଓ ଶୈଳବାଳା ମହିଳା କଲେଜ ମଧ୍ୟରେ । ଆମ ପଟରେ ଆମର ଅଧ୍ୟକ୍ଷଙ୍କ ନେତୃତ୍ୱରେ କେତେଜଣ ଅଧ୍ୟାପକ ଓ କେତେଜଣ ଛାତ୍ର ଥିଲେ ଓ ସେମାନଙ୍କ ପଟରେ ସେମାନଙ୍କର ଅଧ୍ୟକ୍ଷା, କେତେଜଣ ଅଧ୍ୟାପିକା ଓ ଛାତ୍ରୀ ଥିଲେ । ବିଷୟ ଥିଲା, "ନାରୀମାନେ ଚାକିରି କରିବା ଉଚ଼ିତ ନୁହେଁ ।" ପ୍ରକୃତରେ ଏହା ଏକ ମଜାକିଆ, ଉଣ୍ଡାସିଆ ଡିବେଟ୍ ହେବାର ଥିଲା । କିନ୍ତୁ ମହିଳା କଲେଜର ସମସ୍ତେ ପୂରାପୂରି ପ୍ରସ୍ତୁତ ହୋଇଥିଲେ ଗୋଟିଏ ସିରିୟସ୍ ଡିବେଟ୍ ପାଇଁ । ଆମ ପଟରୁ ବି କେତେଜଣ ସିରିୟସ୍ ଭାବରେ ପ୍ରସ୍ତୁତ ହୋଇଥିଲେ । ମୋ ପାଳି ମୁଁ ପଛଆଡ଼କୁ ରଖିଥିଲି । ଇଉନିୟନ୍‌ର ପ୍ରତି ଡିବେଟ୍‌ରେ ଖୁବ୍ ଭିଡ଼ ହୁଏ । ଅନ୍ୟ କଲେଜର ଛାତ୍ର ଓ ବାହାର ଲୋକ ବି ଆସନ୍ତି । କିନ୍ତୁ ସେ ଦିନ ଅସାଧାରଣ ଭିଡ଼ ହୋଇଥିଲା । ରେଭେନ୍‌ସା କଲେଜ ହଲ୍ ଭିଡ଼ରେ ଫାଟି ପଡୁଥିଲା । ବାଲ୍‌କୋନିରେ ଜାଗା ନ ଥିଲା । ମହିଳା କଲେଜରୁ ବହୁ ଛାତ୍ରୀ ଆସି ହଲ୍‌ର ଗୋଟିଏ ପାଖରେ ଭର୍ତ୍ତି ହୋଇଥିଲେ । ମୁଁ ଏକ ମଜାକିଆ ବକ୍ତୃତା ଦେଲି ଏବଂ ଛାତ୍ର ଓ ଅଧ୍ୟାପକମାନେ ତାକୁ ବହୁତ ପସନ୍ଦ କଲେ । ସେଇ ବକ୍ତୃତାର କେତୋଟି ବାକ୍ୟ କହିବା ପାଇଁ ମନ ହେଉଛି ।

ମୁଁ ଆରମ୍ଭ କଲି, "Mr. President, Sir, when I was a student of class IV, in which class we were being introduced to English as a subject, I asked my teacher, Sir, why is it that the feminine gender for man is woman ?" He said, "You fool, you don't know even this. 'Woman'

comes from 'Wifeman' - 'the wife of man', A woman has no existence other than being a wife". ତା'ପରେ ମୁଁ କହିଲି, Women are in triple I.C.S. They are in Indian Cooking Service; and they are in Indian Children's Service, and they are in Indian Company Service'- ଅର୍ଥାତ୍ ସେମାନେ ସ୍ୱାମୀଙ୍କୁ କମ୍ପାନି ଦେବେ । ତେଣୁ ଅନ୍ୟ ଛୋଟ ଚାକିରି କଥା ତ ଛାଡ଼, ଆଇ.ସି.ଏସ୍. ପାଇଁ ମଧ୍ୟ ଚେଷ୍ଟା କରିବା ସେମାନଙ୍କ ପକ୍ଷରେ ତଳକୁ ଖସିଯିବା ପରି ହେବ । ସେତେବେଳେ ନେହେରୁଙ୍କର Socialistic Pattern of Society ଧାରଣା ଖୁବ୍ ଚର୍ଚ୍ଚାରେ ଥିଲା । ମୁଁ କହିଲି, "ସ୍ତ୍ରୀ ଲୋକମାନେ ଚାକିରି ସଉକ କଲେ ଏହା ଭାରତ ସରକାରଙ୍କ ଏହି ନୀତିର ଖିଲାପ ହେବ । ସ୍ୱାମୀ ତ ଚାକିରି କରିବ, କାରଣ ସେ ହେଉଛି ପରିବାରର bread earner - ଏହା ତା'ର କର୍ତ୍ତବ୍ୟ । ସ୍ତ୍ରୀ ଲୋକମାନେ କିନ୍ତୁ ସେମାନଙ୍କର ସଉକ ମେଣ୍ଟାଇବା ପାଇଁ ଚାକିରି କଲେ ଗୋଟିଏ ଘରକୁ ଡବଲ୍ ଇନ୍‌କମ୍ ଆସିବ ଏବଂ ଅନ୍ୟ ଏକ ଘରର ଜଣେ ପୁଅ ଯେ ସେହି ଚାକିରି ପାଇଥାଆନ୍ତା, ତାହା ସେ ପାଇବ ନାହିଁ ।" ଏପରି ଅନେକ ଗୁଡ଼ିଏ ମଜାକିଆ ଯୁକ୍ତି ଦେଲି । ପ୍ରତ୍ୟେକ ଯୁକ୍ତି ପରେ ପ୍ରେକ୍ଷାଳୟ ହଲ୍ ତାଳିରେ ଫାଟି ପଡୁଥାଏ । ତେଣୁ ମୁଁ ଦୁଇ ମିନିଟ୍ ଅଟକି ଆଉ ଏକ ଯୁକ୍ତି ବାଢ଼େ । ମହିଳା କଲେଜର ଅଧ୍ୟାପିକା ଓ ଛାତ୍ରୀମାନେ ଏତେ ଅପମାନିତ ବୋଧ କଲେ ଯେ (କାରଣ ସେମାନେ ଭୋଟରେ ବି ଦୟନୀୟ ଭାବରେ ହାରିଗଲେ) ସଭା ପରେ, ସେମାନେ ମୋତେ ଆକ୍ରମଣ କରିବାକୁ ମାଡ଼ି ଆସୁଥିଲେ- ଅନ୍ୟମାନେ କିନ୍ତୁ ସେମାନଙ୍କୁ ରୋକିଦେଲେ । ମୁଁ ଏକ ଆମୋଦଦାୟକ ମାରପିଟ୍‌ରୁ ବଞ୍ଚିତ ହୋଇଗଲି ।

ଏହି debate କଥାରୁ ମନେ ପଡୁଛି ମୋର ଜଣେ ବନ୍ଧୁଙ୍କ କଥା - ଡ. ଶ୍ରୀରାମଚନ୍ଦ୍ର ଦାଶ । ଶିକ୍ଷା ଜଗତରେ ଜଣେ ପ୍ରବାଦ ପୁରୁଷ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ତାଙ୍କୁ ମୁଁ ବନ୍ଧୁ ବୋଲି କହୁଛି କିନ୍ତୁ ସେ ମୋଠୁ ଦୁଇବର୍ଷ ସିନିୟର ଥିଲେ । ତାଙ୍କୁ ମୁଁ ବଡ଼ଭାଇର ସମ୍ମାନ ଦେଉଥିଲି । କିନ୍ତୁ ଡିବେଟ୍ ଆଦିରେ ତାଙ୍କ ସହିତ ମୋର ପ୍ରତିଯୋଗିତା ହେଉଥିଲା । ଥରେ ସେ ଡିବେଟ୍‌ରେ ମୋ ପାଖରୁ ହାରିଗଲେ । ତା'ପରେ ଅନ୍ୟ ଏକ ସଭାରେ ସେ କହିଲେ ଯେ କୁଆଡ଼େ ମୁଁ ମୋର sunny voice ଓ funny language ଦ୍ୱାରା ବିଚାରପତିଙ୍କୁ ପ୍ରଭାବିତ କରିପାରିଥିଲି ଏବଂ ମୁଁ ଯେହେତୁ ସମ୍ବଲପୁରର ଲୋକ, ବିଚାରପତି ମତେ ପ୍ରଥମ ସ୍ଥାନ ଦେବା ପାଇଁ ଆଗରୁ ଠିକଣା କରିସାରିଥିଲେ । ମୁଁ ପରେ ଉତ୍ତର ଦେଲି ଯେ ଶ୍ରୀରାମବାବୁ ମତେ ମୋର sunny voice and funny language ପାଇଁ ଆକ୍ରମଣ କରିଥିଲେ ବି ମୁଁ ତାଙ୍କର harsh voice and coarse language ପାଇଁ ଅଭିନନ୍ଦନ ଜଣାଉଛି । ମୁଁ ଆହୁରି ମଧ୍ୟ କହିଲି ଯେ ସେ ଆଗରୁ ପ୍ରଥମ ସ୍ଥାନ ଅଧିକାର କରିବେ ବୋଲି ଅତି ମାତ୍ରାରେ ନିଶ୍ଚିତ ହୋଇଥିବାରୁ ସେ ତାହା କରିପାରିଲେ ନାହିଁ ।

ଶ୍ରୀରାମ ବାବୁ ଛାତ୍ର ଭାବରେ ଅଦ୍ୱିତୀୟ ଥିଲେ । ସେ ପାଟନା ବିଶ୍ୱବିଦ୍ୟାଳୟରେ ମେଟ୍ରିକୁଲେସନ୍‌ରେ ଓ ଆଇ.ଏ.ରେ ପ୍ରଥମ ସ୍ଥାନ ଅଧିକାର କରିଥିଲେ । ଅର୍ଥଶାସ୍ତ୍ର ନେଇ ସେ ବି.ଏ. ଓ ଏମ୍.ଏ. ପରୀକ୍ଷାରେ ଖୁବ୍ ଭଲ କରିଥିଲେ । ଲେକ୍‌ଚରର୍ କାମ ସେତେବେଳେ ପ୍ରାୟ ମିଳୁ ନ ଥିବାରୁ ସେ ପ୍ରଥମେ ଇନ୍‌କମ୍ ଟେକ୍ସ ବିଭାଗରେ କାମ କଲେ । ମୁଁ ଲେକ୍‌ଚରର୍ ଭାବରେ ଯୋଗ ଦେବାର କେତେବର୍ଷ ପରେ ସେ ଲେକ୍‌ଚରର୍ ହେଲେ । କିଛିବର୍ଷ ପରେ ଏକ ବିଷୟ ହିସାବରେ ପଲିଟିକାଲ ସାଇନ୍‌ସର ଉଦ୍ଭବ ହେଲାଏବଂ ସେ ଏହି ବିଷୟରେ ପ୍ରଫେସର୍ ପୋଷ୍ଟ ପର୍ଯ୍ୟନ୍ତ ଉଠିଥିଲେ । ତାଙ୍କର ସ୍ମରଣ ଶକ୍ତି ପ୍ରଖର ଥିଲା । ବିଶେଷତଃ ଆମ ସମ୍ବିଧାନ ଉପରେ ତାଙ୍କର ଅଭୂତପୂର୍ବ ଦଖଲ ଥିଲା । ତେଣୁ ସେ ଛାତ୍ର ସମାଜରେ ବହୁତ ଆଦୃତ ହେଉଥିଲେ । କଲେଜ ଇଉନିୟନ ସବୁର ସଭା ଓ ଉତ୍ସବମାନଙ୍କରେ ଏହାର ମୁଖ୍ୟ ଅତିଥି ତାଲିକାରେ ତାଙ୍କର ସର୍ବଦା ପ୍ରଥମ ସ୍ଥାନ ଥିଲା । ତାଙ୍କର କେତେଗୋଟି ବିଶେଷତ୍ୱ ଥିଲା । ସେ ଗୋଟେ କ୍ଲାସ୍‌ରେ ପଢ଼ାଇବା ବେଳେ ବି ଖୁବ୍ ପାଟିକରି କହୁଥିଲେ ଏପରିକି ସେ ରେଭେନ୍‌ସା କଲେଜର ଆର୍ଟସ୍ ୱିଙ୍ଗ୍‌ରେ ପଢ଼ାଉଥିଲେ ବି ସାଇନ୍‌ସ ୱିଙ୍ଗ ଯାଏଁ ତାଙ୍କର ସବୁ କଥା ଶୁଣାଯାଉଥିଲା । ଆଉ ସଭା ସମିତି କଥା ତ ଛାଡ଼ । ବକ୍ତୃତା ଦେବାବେଳେ ମୁଣ୍ଡକୁ ବୃତ୍ତାକାର ଭାବରେ ବୁଲାଇବା ତାଙ୍କର ଆଉ ଗୋଟିଏ ବିଶେଷତ୍ୱ ଥିଲା ।

ସେ ଭାରି ସ୍ପଷ୍ଟବାଦୀ ଥିଲେ । କିନ୍ତୁ ଅପ୍ରିୟ ସତ୍ୟ ବି ଅତି ନିର୍ମମ ଭାବରେ କହୁଥିଲେ । ତେଣୁ ଭଦ୍ର ସମାବେଶମାନଙ୍କରେ ତାଙ୍କ ସହିତ କଥାବାର୍ତ୍ତା କରିବାକୁ ଲୋକେ ଭୟ କରୁଥିଲେ । ତାଙ୍କର ଧୀଶକ୍ତି ପ୍ରଖର ଥିବାରୁ ଏବଂ ବିଶ୍ୱବିଦ୍ୟାଳୟର Act ଓ Statutes ଆଦିରେ ଗଭୀର ପ୍ରବେଶ ଥିବାରୁ ସିନେଟ୍ ଓ ସିଣ୍ଡିକେଟ୍ ଆଦିରେ ତାଙ୍କ ସହିତ ଟକ୍କର ଦେବା ପାଇଁ କେହି ସାହସ କରିପାରୁ ନ ଥିଲେ । କିନ୍ତୁ ସେ ଭାରି କ୍ଷମତାଲୋଭୀ ଥିଲେ । ତେଣୁ ସେ ଉତ୍କଳ ବିଶ୍ୱବିଦ୍ୟାଳୟକୁ ପୂରାପୂରି ଓଲଟପାଲଟ କରିଦେଲେ । ସେ ଖୋଲାଖୋଲି ଭାବରେ କହିବାକୁ ଲାଗିଲେ, "I am the University". ସେ ଯାହା ଚାହିଁଲେ ତାହା କଲେ, ଆଉ ନିଜ ଇଚ୍ଛାରେ ମୋଡ଼ାମୋଡ଼ି କଲେ- କେବଳ ଦୁଇଟି ଉଦାହରଣ ଦେଲେ ଯଥେଷ୍ଟ ହେବ ।

ଥରେ ଜଣେ ଜାତୀୟ ବୃତ୍ତିଧାରୀ ଗରିବ ପିଲା ଆଇ.ଏସ୍‌ସି.ରେ ଗଣିତ ପରୀକ୍ଷା ପ୍ରଥମ ପତ୍ର ଦେଇପାରିଲା ନାହିଁ । ସେ ଫେଲ୍ ହୋଇଯିବ ଏବଂ ତା'ର ବୃତ୍ତି କଟିଯିବ, ଯାହା ସେ ଛାତ୍ର ଜୀବନର ଶେଷ ପର୍ଯ୍ୟନ୍ତ ନିଶ୍ଚିତ ପାଇଥାଆନ୍ତା । ପିଲାର ବାପା ଶ୍ରୀରାମ ବାବୁଙ୍କୁ ଧରିଲା । ସେ ପି.ସି.ଏମ୍. ଗ୍ରୁପ୍ ନେଇଥିଲା ଓ ବାୟୋଲୋଜି ତା'ର ଫୋର୍ଥ ସବ୍‌ଜେକ୍ଟ ଥିଲା । ଶ୍ରୀରାମ ବାବୁ ଆଇନ୍ ମୋଡ଼ି ଜଣେ ଚାରିଟି ବିଷୟ ନେଇଥିଲେ ଯେ କୌଣସି ବିଷୟ ୪ର୍ଥ ବିଷୟ ହୋଇ ପାରିବ ବୋଲି ଏକ ନୂତନ ବ୍ୟାଖ୍ୟା ଜଲେ ଏବଂ ସିଣ୍ଡିକେଟ୍ ସଭ୍ୟମାନେ ତାଙ୍କୁ ଏତେ ଭୟ କରୁଥିଲେ

ଯେ ତାଙ୍କ କଥା କେହି କାଟି ପାରିଲେ ନାହିଁ। ଫଳ ବାହାରିବା ଉପରେ ଥିଲା, ତେଣୁ ଆଉ ଥରେ ଫଲ ରିଭାଇକ୍ କରାହେଲା ଏବଂ କେମେଷ୍ଟ୍ରି, ଫିଜିକ୍ସ ଆଦି ବିଷୟରେ ଫେଲ୍ ହୋଇଥିଲେ ବି ପିଲା ଆଇ.ଏସ୍‌ସି. ପାସ୍ କଲେ। ସେହି ପିଲାମାନେ ଯେତେବେଳେ ଆଇ.ଆଇ.ଟି.କୁ ଦରଖାସ୍ତ କଲେ ଆଇ.ଆଇ.ଟି.ର କର୍ତ୍ତୃପକ୍ଷ ବିଶ୍ୱବିଦ୍ୟାଳୟର ଏ ପ୍ରକାର ନିଷ୍ପତ୍ତିରେ ଆଶ୍ଚର୍ଯ୍ୟ ହୋଇଗଲେ। ଏହା କହିବାର ଆବଶ୍ୟକତା ନାହିଁ ଯେ ସେମାନେ ପ୍ରବେଶିକା ପରୀକ୍ଷାରେ ବି ବସିପାରିଲେ ନାହିଁ। ମୁଁ ଯେତେବେଳେ ଆମେରିକାରୁ ଫେରିଥାଏଁ। ମୁଁ ଯେତେବେଳେ ଶ୍ରୀରାମ ବାବୁଙ୍କୁ କହିଲି ଯେ ସେ ଏ କଥା କରି ବିଶ୍ୱବିଦ୍ୟାଳୟର ମର୍ଯ୍ୟାଦା କ୍ଷୁଣ୍ଣ କରିଛନ୍ତି ଓ ଜଣେ ପିଲାକୁ ସାହାଯ୍ୟ କରିବାକୁ ଯାଇ ସାରା ଛାତ୍ର ସମାଜର ପ୍ରଭୂତ କ୍ଷତି କରିଛନ୍ତି, ସେ ରାଗିଗଲେ ଓ କହିଲେ "ତୁ କ'ଣ ବୁଝିବୁରେ ?" କିନ୍ତୁ ଏଥିରେ ମୁଁ ତାଙ୍କ ବିରୋଧରେ ଲାଗିଗଲି ଓ ଆର ବର୍ଷଠୁ ପୁରୁଣା ନିୟମ ଫେର୍ ଲାଗୁ ହେଲା।

ଅନ୍ୟ ଏକ ଉଦାହରଣ - ବିଶ୍ୱବିଦ୍ୟାଳୟ ବିଭିନ୍ନ ବିଷୟର Board of Studies ପାଠ୍ୟକ୍ରମ ଓ Regulations ତିଆରି କରନ୍ତି। ଏହି ସୁପାରିସ୍ ଗୁଡ଼ିକ ଏକାଡ଼େମିକ୍ କାଉନସିଲ୍‌ରେ ପଡ଼େ। ଏକାଡ଼େମିକ୍ କାଉନ୍‌ସିଲ୍ ଯେଉଁ ସବୁ ପରିବର୍ତ୍ତନ ହଁ କରେ ସେ ସବୁ ରେଗୁଲେସନ୍ ଫର୍ମରେ ପକାଇବା ପାଇଁ ଗୋଟିଏ ରେଗୁଲେସନ୍ ଆମେଣ୍ଡିଂ କମିଟି ଥାଏ। କିନ୍ତୁ ଡ. ଶ୍ରୀରାମଚନ୍ଦ୍ର ଦାଶ ଏତେ କ୍ଷମତାଶାଳୀ ହୋଇଯାଇଥିଲେ ଯେ ରେଗୁଲେସନ୍ ଆମେଣ୍ଡିଂ କମିଟି ସମସ୍ତ ବୋର୍ଡ ଅଫ୍ ଷ୍ଟଡ଼ିକ୍‌ର ସୁପାରିସ୍ ଏକାଡ଼େମିକ୍ କାଉନ୍‌ସିଲରେ ପକାଉଥିଲା। ଏତଦ୍ୱାରା ଶ୍ରୀରାମ ବାବୁ ନ ଚାହିଁଲେ କୌଣସି ବୋର୍ଡ ଦ୍ୱାରା କୌଣସି ପରିବର୍ତ୍ତନ ଏକାଡ଼େମିକ୍ କାଉନ୍‌ସିଲରେ ପଡ଼ିପାରୁ ନ ଥିଲା। ତେଣୁ ବିଭିନ୍ନ ବିଷୟର ପ୍ରଫେସରମାନେ ଶ୍ରୀରାମ ବାବୁଙ୍କ ପାଖରେ ଅଧିଆ ପଡୁଥିଲେ। କାରଣ ଶ୍ରୀରାମ ବାବୁ ହିଁ ନ କହିଲେ ସେମାନଙ୍କ ବିଷୟଗୁଡ଼ିକରେ କୌଣସି ପରିବର୍ତ୍ତନ ହୋଇପାରିବ ନାହିଁ ଏବଂ କୌଣସି ସ୍ପେଶାଲ୍ ଗ୍ରୁପ୍ ବା ସ୍ପେଶାଲ୍ ପେପର୍ ଆଦିର ପରିବର୍ତ୍ତନ ହୋଇପାରିବ ନାହିଁ। ବିଶେଷତଃ ମେଡ଼ିକାଲ୍ କଲେଜ ଲୋକେ ଛାନିଆ ହୋଇଯାଉଥିଲେ କାରଣ ନୂଆ ବ୍ରାଞ୍ଚ ନ ଖୋଲିଲେ ସେକେଣ୍ଡ କିମ୍ବା ଥାର୍ଡ ପ୍ରଫେସର ଆଦି କେହି ହୋଇପାରିବେ ନାହିଁ। ସେଥିରେ ବି ଏଡୁକେସନ୍ ବୋର୍ଡର ସୁପାରିସ୍ ପେଶ୍ କରିବା ପାଇଁ କୁଳପତି ଏଡୁକେସନ୍ ଫାକଲ୍‌ଟିର କାହାକୁ ନ ଡାକି ଶ୍ରୀରାମ ବାବୁଙ୍କୁ ଡାକିଲେ। ମୁଁ ଏକ ପଏଣ୍ଟ ଅଫ୍ ଅର୍ଡର ଉଠାଇଲି ଏବଂ ସେଥିରେ ଜିଦ୍ ଧରି ଛିଡ଼ା ହୋଇ ରହିଲି। ଶ୍ରୀରାମ ବାବୁ ବି ଛିଡ଼ା ହୋଇ ରହିଲେ। ଶେଷକୁ କୁଳପତି ମୋର ପଏଣ୍ଟ ଅଫ୍ ଅର୍ଡରକୁ ମାନିବାକୁ ବାଧ୍ୟ ହେଲେ ଏବଂ ଶ୍ରୀରାମ ବାବୁଙ୍କୁ ବସିଯିବାକୁ ପଡ଼ିଲା। ସେ ରାଗିଗଲେ ଏବଂ ଜୋର୍‌ରେ ପାଟିକରି ମୋତେ କହିଲେ, "ତୁ ମୋର ଏକ ନମ୍ବର ଶତ୍ରୁ।" ମୁଁ କହିଲି, "ଶ୍ରୀରାମ ବାବୁ କାହିଁକି କହୁନାହାନ୍ତି ଯେ ମୁଁ ତାଙ୍କର ଏକ ନମ୍ବର ବନ୍ଧୁ ବି।"

ଶ୍ରୀରାମ ବାବୁଙ୍କ ବିଷୟରେ କହିବସିଲେ କଥା ସରିବ ନାହିଁ । ତାଙ୍କର ବ୍ୟବହାର ଏବଂ ବେଢ଼ଙ୍ଗ କଥା ପାଇଁ ସେ ଖୁବ୍ ହଇରାଣ ବି ହେଲେ । ଡ. ମହତାବ ମୁଖ୍ୟମନ୍ତ୍ରୀ ଥିବାବେଳେ ସେ ଶ୍ରୀରାମ ବାବୁଙ୍କ ସମ୍ବନ୍ଧରେ ଆଡ଼ଭର୍ସ ଏଣ୍ଟ୍ରିଜ୍ ଲେଖିଦେଲେ ଯାହାଫଳରେ ଇମର୍ଜେନ୍ସି ରିକ୍ରୁଟ୍‌ମେଣ୍ଟ ସମୟରେ ସେ ବଛାହୋଇ ବି ଆଇ.ଏ.ଏସ୍. ପାଇପାରିଲେ ନାହିଁ । ଶ୍ରୀମତୀ ନନ୍ଦିନୀ ଶତପଥୀ ମୁଖ୍ୟମନ୍ତ୍ରୀ ଥିବାବେଳେ ତାଙ୍କର ପ୍ରିମେଚ୍ୟୋର୍ ରିଟାୟାର୍‌ମେଣ୍ଟ ହୋଇଗଲା । ଶ୍ରୀରାମ ବାବୁଙ୍କୁ ଚାକିରିରୁ କାଢ଼ିଦେବା ମୋ ପାଇଁ ଅସହ୍ୟ ହେଲା । ଶ୍ରୀମତୀ ନନ୍ଦିନୀ ଶତପଥୀ ମୁଖ୍ୟମନ୍ତ୍ରୀ । ତାଙ୍କର ଡିପାର୍ଟମେଣ୍ଟାଲ ହେଡ୍‌ସିପ୍ ନେଇଯାଇଥିଲେ ସ୍ୱତଃ ସିନେଟ୍‌ରୁ ବିଦାୟ ହୋଇଯାଇଥାଆନ୍ତେ ଏବଂ ସିଣ୍ଡିକେଟ୍‌କୁ ଆସିପାରି ନଥାନ୍ତେ । ଶ୍ରୀରାମ ବାବୁ ତ ଅନେକ ଲୋକଙ୍କ ଅପ୍ରିୟ ହୋଇସାରିଥିଲେ । ତେଣୁ ସିଧାସଳଖ ପ୍ରତିଦ୍ୱନ୍ଦ୍ୱିତା କରି ନିର୍ବାଚିତ ହୋଇପାରି ନଥାନ୍ତେ । କିନ୍ତୁ ଅଧ୍ୟାପକ ଚାକିରିରୁ ତାଙ୍କୁ କାଢ଼ିଦେବା ସମଗ୍ର ଛାତ୍ର ସମାଜ ପ୍ରତି ଅନ୍ୟାୟ ହେଲା ।

ଶ୍ରୀରାମ ବାବୁଙ୍କ ଭାଗ୍ୟ ଭଲ ଏବଂ ଈଶ୍ୱରଙ୍କର ତାଙ୍କ ପ୍ରତି ଅଶେଷ ଦୟା ଯେ ସେ ପ୍ରାଇଭେଟରେ ଲ' ପରୀକ୍ଷା ପାସ୍ କରିଥିଲେ (ସେତେବେଳେ ସେହି ସୁବିଧା ଥିଲା) । ତେଣୁ ଲାଇସେନ୍‌ସ ନେଇ ଓକିଲାତି କଲେ । ସେ ପ୍ରଥମରୁ କ୍ଲାସ୍‌ରେ ପଢ଼ାଇବାବେଳେ ଯେପରି ମୁଣ୍ଡ ବୁଲାଇ ପାଟିକରି ବକ୍ତୃତା ଦେଉଥିଲେ, ସେ କଥା ସେ କୋର୍ଟରେ ମଧ୍ୟ ଆରମ୍ଭ କଲେ । କିନ୍ତୁ ଜଣେ ବିଚାରପତି (ଯେ ତାଙ୍କର ଛାତ୍ର ଥିଲେ) ତାଙ୍କୁ କହିଲେ, "This is a Court room. Don't think it is your classroom." ସେ' ଦିନଠୁ ଶ୍ରୀରାମ ବାବୁଙ୍କର ପାଟିତୁଣ୍ଡ ଦବିଗଲା ଓ ତାଙ୍କର ବ୍ୟବହାର ନରମିଗଲା । ଆଗ୍ନେୟଗିରିରୁ ଆଉ ଲାଭା ନିର୍ଗତ ହେଲାନାହିଁ । କିନ୍ତୁ ଓକିଲ ହିସାବରେ ସେ ଖୁବ୍ ରୋଜଗାର କଲେ । କୋଠା ଆଦି ବଢ଼ାଇ, ନୂଆ ନୂଆ ଗାଡ଼ି କିଣି ଜୀବନକୁ ଉପଭୋଗ କଲେ ।

ଆଉ ଜଣକ କଥା କହିବି- ଶ୍ରୀ ବିଭୁଧେନ୍ଦ୍ର ମିଶ୍ର (କୁନିବାବୁ) । ସମସ୍ତେ ତାଙ୍କୁ ଭଲ ପାଆନ୍ତି - ସେ ସମସ୍ତଙ୍କର କୁନିଭାଇନା । ସ୍ୱାଧୀନତା ସଂଗ୍ରାମୀ । ତାଙ୍କର ଇଂରାଜୀ ଓ ଓଡ଼ିଆ ବକ୍ତୃତା ଖୁବ୍ ଉଚ୍ଚ ଧରଣର । ସେ ଓଡ଼ିଶାରେ ସୁଭାଷ ବୋଷଙ୍କ ଫରୱାର୍ଡ ବ୍ଲକ୍‌ର କାର୍ଯଟଦାର ଥିଲେ । ସେ ସ୍ୱାସ୍ଥ୍ୟରକ୍ଷାର ସବୁ ନିୟମକୁ ଭୁଲ ପ୍ରମାଣିତ କରିଛନ୍ତି । ସେ ଚା' ଓ ସିଗାରେଟ୍‌ରେ ବଞ୍ଚନ୍ତି । ତାଙ୍କର ଜୀବନ ଶୈଳୀ ପୂରାପୂରି ଅନିୟମିତ । କିନ୍ତୁ ସେ ସୁସ୍ଥ ଓ ଦୀର୍ଘଜୀବନ ପାଇଛନ୍ତି । ହାଇକୋର୍ଟ ବାର ଆସୋସିଏସନ୍‌ର ପ୍ରେସିଡେଣ୍ଟ ହୋଇଛନ୍ତି । ସେ ଦିଲ୍ଲୀରେ ଆଇନ ମନ୍ତ୍ରୀ ଥିବାବେଳେ ଅଷ୍ଟ୍ରେଲିଆରେ ଆଇନ ବିଷୟରେ ଏତେ ସୁନ୍ଦର ବକ୍ତୃତା ଦେଲେ ଯେ ଚାରିଆଡ଼େ ତାଙ୍କର ସୁନାମ ହେଲା । ସେ ସବୁ କଥାରେ ବେପରୁଆ ଓ ମୁଁ ଭାବୁଛି ତାଙ୍କର ସ୍ୱାସ୍ଥ୍ୟର ଚାବିକାଠି ସେଇଠି ରହିଛି ।

ରେଭେନ୍ସା କଲେଜରେ ଅଧ୍ୟାପକମାନେ ଗୋଟିଏ ପରିବାରର ସଭ୍ୟ ଭଳି ଚଳୁଥିଲେ। ଛାତ୍ରମାନଙ୍କର ଅଧ୍ୟାପକମାନଙ୍କ ସହିତ ପୁଅ ଝିଅ ସହିତ ମା' ବାପାଙ୍କର ସମ୍ପର୍କ ଥିଲା। କଲେଜର କର୍ମଚାରୀମାନେ ବି ଏହି ପରିବାରର ସଭ୍ୟ ଥିଲେ। ରେଭେନ୍ସା କଲେଜର ମର୍ଯ୍ୟାଦାକୁ ସର୍ବଦା ସର୍ବୋଚ୍ଚ ସମ୍ମାନ ଦିଆଯାଉଥିଲା।

ରେଭେନ୍ସା କଲେଜରେ ଅଧ୍ୟାପକ ଓ ଛାତ୍ରଛାତ୍ରୀମାନଙ୍କ ଭିତରେ ସଚେତନ ପରିବେଶ ଏପରି ଥିଲା ଯେ ଏଥିରେ ସବୁବେଳେ ଜାତୀୟତାବାଦ ପ୍ରତିଫଳିତ ହେଉଥିଲା। ଏଠାରେ ଅନ୍ୟାୟ ପାଇଁ ସ୍ଥାନ ନ ଥିଲା। ରେଭେନ୍ସା କଲେଜରେ ସ୍ୱାଧୀନତା ସଂଗ୍ରାମ ବେଳେ ଆନ୍ଦୋଳନ ହୋଇଛି। ସ୍ୱାଧୀନତା ପ୍ରାପ୍ତି ପରେ ମଧ୍ୟ ଏହି କଲେଜ ଯେ କୌଣସି ଜନସମସ୍ୟା ପ୍ରତି ସଚେତନ ଥିଲା।

୧୯୪୭ ମସିହା ଅଗଷ୍ଟ ୧୫ ତାରିଖର ସ୍ମରଣୀୟ ଘଟଣା। ମଧ୍ୟରାତ୍ରରେ ଦେଶ ସ୍ୱାଧୀନ ହେବ। କନ୍ଷ୍ଟିଚ୍ୟୁଏଣ୍ଟ ଏସେମ୍ବ୍ଲିରେ ପଣ୍ଡିତ ଜବାହାରଲାଲ ନେହେରୁ ଭାଷଣ ଦେବେ। ସାରା ଦେଶ ପରି କଟକ ଓ ରେଭେନ୍ସାରେ ମଧ୍ୟ ସ୍ୱାଧୀନ ଭାରତ ନେଇ ବହୁ ଆଶା ଓ ଉତ୍ସବ। ଏହି ମଧ୍ୟରାତ୍ରିରେ ରେଭେନ୍ସାରେ ମଧ୍ୟ ଏକ ଉତ୍ସବ ଆୟୋଜନ କଲୁ। କେମ୍ପସ୍ର ଟେନିସ୍ କୋର୍ଟରେ ପତାକା ତୋରଣ ନିର୍ମାଣ କରାଗଲା। ସବୁ ଛାତ୍ରାବାସରେ ଭଲ ଭୋଜି କରାଗଲା। ଆମେ ଷ୍ଟାଫ୍ କ୍ଲବ୍ର ଅଧ୍ୟାପକ, ଅଧ୍ୟାପିକାମାନେ ମଧ୍ୟ ଭୋଜିର ଆୟୋଜନ କଲୁଁ। ସନ୍ଧ୍ୟା ପରେ କେମ୍ପସ୍ରେ ଧୀରେ ଧୀରେ ଭିଡ଼ ଜମିବା ଆରମ୍ଭ ହେଲା। ରାତିରେ ଏହା ଲୋକାରଣ୍ୟ ରୂପ ନେଲା। ଅଧ୍ୟକ୍ଷ ପ୍ରଫେସର ଏସ୍. ରାୟ ଜାତୀୟ ପତାକା ଉତ୍ତୋଳନ କଲେ।

ରେଭେନ୍ସା କଲେଜରେ ଅଧ୍ୟାପକବୃନ୍ଦ ଛାତ୍ରମାନଙ୍କ ସ୍ୱାର୍ଥ, ଅଧ୍ୟାପନାର ସ୍ୱାଭିମାନ ତଥା ଶିକ୍ଷାନୁଷ୍ଠାନର ସମ୍ମାନ ପ୍ରତି ସଦା ସଚେତନ ଥିଲେ। ଏଥିମଧ୍ୟରୁ କୌଣସି ଉପାଦାନ କମିଗଲେ ବହୁତ ବାଧୁଥିଲା। ଥରେ ସରକାରୀ ପ୍ରୋତ୍ସାହନରେ କଟକଠାରେ ଏକ ବଡ଼ଧରଣର ଯୁବଶିବିର ଅନୁଷ୍ଠିତ ହେଉଥାଏ। ଏଥିରେ କଲେଜ ଛକରୁ ଯୋବ୍ରା ପର୍ଯ୍ୟନ୍ତ ରାସ୍ତା ନିର୍ମାଣ ସହ ସାଂସ୍କୃତିକ କାର୍ଯ୍ୟକ୍ରମ ଥିଲା। ଏହା ଖରାଛୁଟି ସମୟରେ ହେଉଥିବାରୁ ଆୟୋଜକମାନଙ୍କ ପକ୍ଷରୁ ଏକ ଛାତ୍ରାବାସ ଦେବା ସକାଶେ କଲେଜର ଅଧ୍ୟକ୍ଷଙ୍କୁ ଅନୁରୋଧ କରାଗଲା। ଅଧ୍ୟକ୍ଷ ମଧ୍ୟ ଏଥିପାଇଁ ଏକମାସ ସକାଶେ ଛାତ୍ରାବାସ ପ୍ରଦାନ କଲେ। ତତ୍କାଳୀନ ଯୁବ କଂଗ୍ରେସ ନେତା ତଥା ପରବର୍ତ୍ତୀ ସମୟର ପ୍ରଜାତନ୍ତ୍ରର ସମ୍ପାଦକ, କେନ୍ଦ୍ରମନ୍ତ୍ରୀ ତଥା ଦୀର୍ଘ ସମୟ ଧରି ମୁଖ୍ୟମନ୍ତ୍ରୀ ହୋଇଥିବା ଜାନକୀବଲ୍ଲଭ ପଟ୍ଟନାୟକଙ୍କ ନେତୃତ୍ୱରେ ବିଭିନ୍ନ ସ୍ଥାନରୁ ଏହି ଶିବିରରେ ଛାତ୍ର ଯୁବକ ଯୋଗ ଦେଇଥାଆନ୍ତି।

ୱେଷ୍ଟ୍ ହଷ୍ଟେଲ୍‌ରେ ଏକ ମାସ ଧରି ଚାଲିବା ପରେ ଶିବିର ତାରିଖ ସମ୍ପ୍ରସାରଣ କରାଗଲା । ଏଣେ ସପ୍ଲିମେଣ୍ଟାରୀ ପରୀକ୍ଷା ପାଇଁ ପ୍ରସ୍ତୁତ ହେବା ସକାଶେ ଛାତ୍ରମାନଙ୍କ ଆସିବା ସମୟ ହୋଇଯାଇଥାଏ । ସେ ସମୟରେ ଖରାଛୁଟି ମାନଙ୍କରେ କଲେଜର ୱେଷ୍ଟ୍ ଓ ଇଷ୍ଟ୍ ହଷ୍ଟେଲ୍ ପ୍ରତିବର୍ଷ ଅଦଳବଦଳ ହୋଇ ଖୋଲାଯାଉଥାଏ । ସେହିବର୍ଷ ୱେଷ୍ଟ୍ ହଷ୍ଟେଲ୍‌ର ପାଳି ପଡ଼ିଥାଏ । ଅଧ୍ୟକ୍ଷ ଏଥିପାଇଁ ପୂର୍ବ ନିର୍ଦ୍ଧାରିତ ସମୟରୁ ଏହି ହଷ୍ଟେଲ୍ ଅଧିକ ସମୟ ପାଇଁ ଦେବାକୁ ମନା କଲେ । ଶିବିରର ନେତାମାନେ ବହୁ ଚେଷ୍ଟା କଲେ । ପରେ ଏହି ଖବରଟି ତତ୍କାଳୀନ କଂଗ୍ରେସ ବିଧାୟକ ବିଜୁ ପଟ୍ଟନାୟକଙ୍କ ପାଖକୁ ଗଲା । ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁ ଏବଂ ଓଡ଼ିଶାର ମୁଖ୍ୟମନ୍ତ୍ରୀଙ୍କ ଖାସ୍ ଲୋକ ଥିଲେ ବିଜୁବାବୁ । ସେ ଦିନେ କଲେଜ ପରିସରକୁ ଆସି ଶିବିରର ବର୍ଦ୍ଧିତ ସମୟ ପାଇଁ ମଧ୍ୟ ହଷ୍ଟେଲ୍ ସୁବିଧା ଦେବାକୁ ଅଧ୍ୟକ୍ଷଙ୍କୁ କହିଲେ । ଅଧ୍ୟକ୍ଷ ମନା କରିବାରୁ ବିଜୁବାବୁ ଯୁକ୍ତିତର୍କ କଲେ । ପରେ ଅଧ୍ୟକ୍ଷ ପ୍ରଫେସର ଗୋଲକ ବିହାରୀ ବାନାର୍ଜୀଙ୍କୁ 'ଉଡ଼େନ୍ ହର୍ସ' ବୋଲି ସମ୍ବୋଧନ କରି ଚାଲିଗଲେ । ବିଜୁବାବୁଙ୍କ ଏପରି ଉକ୍ତି ଦ୍ୱାରା ଅଧ୍ୟକ୍ଷ ଭାଙ୍ଗି ପଡ଼ିଲେ । "ବିଜୁ ଏମନ୍ ବଲ୍‌ଲୋ, ଆମାର୍ ଛେଲୋ ବିଜୁ ଏମନ୍ ବଲ୍‌ଲୋ" ବୋଲି କହିଚାଲିଲେ । ଅଧ୍ୟକ୍ଷ ଏପରି ଭାବବିହ୍ୱଳ ହେବା ସ୍ୱାଭାବିକ ଥିଲା । କାରଣ ବିଜୁବାବୁ ରେଭେନ୍‌ସାରେ ଆଇ.ଏସ୍‌ସି. ପଢୁଥିବାବେଳେ ସେ ତାଙ୍କୁ ପଦାର୍ଥ ବିଜ୍ଞାନ ପଢ଼ାଉଥିଲେ । ବିଜୁବାବୁ ତାଙ୍କ ପ୍ରିୟ ଛାତ୍ର ଥିଲେ ।

ଅଧ୍ୟକ୍ଷଙ୍କ ଚିନ୍ତା ଦେଖି ଆମେ ଅଧ୍ୟାପକମାନେ ମଧ୍ୟ ଅସୁବିଧାରେ ପଡ଼ିଗଲୁ । ଏଥିପାଇଁ ଅଧ୍ୟାପକମାନଙ୍କ ଏକ ପ୍ରତିବାଦ ସଭା ସକାଶେ ମୁଁ ଷ୍ଟାଫ୍ କ୍ଲବ୍‌ର ସମ୍ପାଦକରୂପେ ପ୍ରସ୍ତାବ ଦେଲି । ଏହି ଅନୁଯାୟୀ ଏକ ସଭା ଆହୂତ ହେଲା । ସଭାରେ ଘଟଣା ଉପରେ ଏକ ନିନ୍ଦାପ୍ରସ୍ତାବ ପାସ୍ କରି କ୍ଷମଯାଚ଼ନା ସକାଶେ ମୁଖ୍ୟମନ୍ତ୍ରୀ, ବିଧାୟକ ସର୍ବୋପରି ଓଡ଼ିଶା ସରକାରଙ୍କ ଠାରେ ଦାବି କରାଗଲା । ମୁଁ ଜୁନିୟର ଥିଲି । କେତେଜଣ ସିନିୟର୍ ଅଧ୍ୟାପକ ମଧ୍ୟ ସଭାରେ ସଭାପତିତ୍ୱ କରିବାକୁ ରାଜି ହେଲେ ନାହିଁ । ସଭାକୁ ମଧ୍ୟ ଆସିଲେ ନାହିଁ । ଛୁଟିରେ ରହିଲେ । ଏହାଦ୍ୱାରା ବିଜୁବାବୁ ଓ ଓଡ଼ିଶା ସରକାରଙ୍କ ମନ ଖରାପ ହେବ ବୋଲି ବୋଧହୁଏ ସେମାନଙ୍କ ଧାରଣା ଥିଲା । ଏହି ସଭାରେ ବରିଷ୍ଠତା ଦୃଷ୍ଟିରୁ ଓଡ଼ିଆ ବିଭାଗ ପ୍ରଫେସର ଡ. କରୁଣାକର କର ସଭାପତିତ୍ୱ କଲେ । ସ୍ମାରକପତ୍ର ପାଇବା ପରେ ଶେଷରେ ସରକାର ଏହି ଘଟଣା ପାଇଁ ଅଧ୍ୟକ୍ଷଙ୍କ ଠାରୁ କ୍ଷମା ମାଗିଲେ ।

ଛାତ୍ରମାନେ କିଛି ନ ଭାବି ନ ଚିନ୍ତି କିଛି ଗୋଟିଏ ଭୁଲ୍ କରିଦେଲେ ଆମେ ଧରୁ ନ ଥିଲୁ । ଥରେ ନେହେରୁ କଟକ ଆସିଥିଲେ । ସେତେବେଳେ ଗିରିଜାଭୂଷଣ ପଟ୍ଟନାୟକ ( 'ୟୁନିଭର୍ସ'ର) କଲେଜ ଇଉନିୟନର ସଭାପତି । ସେ ଗୋଟିଏ ଖିଆଲରେ ମହତାବଙ୍କ କରିଆରେ ନେହେରୁଙ୍କୁ

କଲେଜ ଆସିବା ପାଇଁ ଆମନ୍ତ୍ରଣ କରିଦେଲେ । ଏ ବିଷୟରେ ପ୍ରିନ୍‌ସିପାଲଙ୍କୁ ପଚାରି ନ ଥିଲେ । ନେହେରୁ ତ ପିଲାଙ୍କୁ ଭଲ ପାଆନ୍ତି । ସେତେବେଳେ କାଠଯୋଡ଼ି-ମହାନଦୀ ପୋଲ ହୋଇ ନ ଥିଲା । କଟକରୁ ଟ୍ରେନ୍‌ରେ ଭୁବନେଶ୍ୱର ଯାଇ ପ୍ଲେନ୍‌ରେ ଯିବାକୁ ପଡୁଥିଲା । ନେହେରୁ କଟକର ରାଜଭବନରେ ରହୁଥିଲେ ଏବଂ ଷ୍ଟେସନ୍ ଯିବା ବାଟରେ କଲେଜରେ ଦଶମିନିଟ୍ ରହିବେ ବୋଲି ହଁ କରିଦେଲେ । ଆମେ କେତେ କଷ୍ଟରେ ନେହେରୁଙ୍କ ସଭା ପାଇଁ ପ୍ଲାଟ୍‌ଫର୍ମ ଆଦି ତିଆରି କରିଥିଲୁ । ଏବେ ବି ମୋର ମନେ ଅଛି । Quadrangleରେ କନିକା ଲାଇବ୍ରେରି ସାମନାରେ ସଭା ହେଲା । ଶୀତଦିନ ସକାଳ । Quadrangle ଗଛରେ ଫୁଲ ଛାଇ ହୋଇଥିଲା । ଶାଗୁଆ ଘାସ ଉପରେ ଶିଶିର ବିନ୍ଦୁ ଓ କଅଁଳିଆ ଖରା - ଏହି ପ୍ରାକୃତିକ ଦୃଶ୍ୟ ନେହେରୁଙ୍କୁ ଅଭିଭୂତ କରିଦେଲା ଏବଂ ସେହି ସଭାରେ ସେ ଖୁସି ହୋଇ ଛାତ୍ରଙ୍କ ସହିତ ବହୁ ସମୟ ବିତାଇଲେ ।

ଛାତ୍ର ଗଣ୍ଡଗୋଳ ହେଲେ ଆମେ ଅଧ୍ୟାପକମାନେ ଛାତ୍ର ଓ ପୋଲିସ୍ ମଧ୍ୟରେ ଛିଡ଼ା ହୋଇ ଛାତ୍ରମାନଙ୍କୁ ଶାନ୍ତ କରୁଥିଲୁ । ସର୍ବେଶ୍ୱର ଦାଶ ଏ ଦିଗରେ ଆମକୁ ନେତୃତ୍ୱ ଦେଉଥିଲେ । ଛାତ୍ରମାନେ ମଧ୍ୟ ଶିକ୍ଷକମାନଙ୍କୁ ଅଶେଷ ଭକ୍ତି ପ୍ରଦର୍ଶନ କରୁଥିଲେ । ଥରକର ଘଟଣା । ୧୯୪୫ ମସିହା । ପରବର୍ତ୍ତୀ ସମୟର କେନ୍ଦ୍ରମନ୍ତ୍ରୀ ଓ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ ରେଭେନ୍‌ସା କଲେଜର ଛାତ୍ର ସଂସଦର ନେତୃତ୍ୱ ନେଉଥାଆନ୍ତି । ସେ ନିପୁଣା ବିପ୍ଳବିନୀ ଥିଲେ । ଏହିବର୍ଷ କଲେଜର ଫି ବୃଦ୍ଧି ବିରୋଧରେ ବିରାଟ ଆନ୍ଦୋଳନ ମୁଣ୍ଡ ଟେକିଥିଲା । ସେ ସମୟରେ ରେଭେନ୍‌ସା କଲେଜର ହଲ୍‌ରେ ଅନୁଷ୍ଠିତ ହେଉଥିବା ବିଧାନସଭାକୁ ଛାତ୍ରଛାତ୍ରୀମାନେ ଘେରାଉ କଲେ । ପୋଲିସ୍ ପକ୍ଷରୁ ପ୍ରବଳ ଲାଠିମାଡ଼ ଆରମ୍ଭ ହେଲା । ପୋଲିସ୍ ଅଫିସର ହୁଇସିଲ୍ ଫୁଙ୍କିଲେ ମାଡ଼ ଆରମ୍ଭ, ପୁଣି ଥରେ ବଜାଇଲେ ବନ୍ଦ । କଲେଜର ପଡ଼ିଆସାରା ବିଶେଷ କରି ଟେନିସ୍ କୋର୍ଟ ଉପରେ ପୋଲିସ୍‌ମାନେ ଛାତ୍ରଛାତ୍ରୀମାନଙ୍କୁ ଗୋଡ଼ାଇ ଗୋଡ଼ାଇ ଆକ୍ରମଣ କଲେ । ମୁଁ, ବିଧୁବାବୁ, ଶ୍ରୀରାମଚନ୍ଦ୍ର ଦାଶ ଏବଂ ଭୁବନେଶ୍ୱର ମିଶ୍ର ପ୍ରମୁଖ କଲେଜର ସାମ୍ନା କରିଡର୍‌କୁ ଆସିବାବେଳେ ପୋଲିସ୍‌ମାନେ ଆସି ପ୍ରହାର ଆରମ୍ଭ କରି ସାରିଥିଲେ । ଆମେ ଅଡୁଆରେ ପଡ଼ିଗଲୁ । ତେବେ ତତ୍କାଳୀନ ଛାତ୍ର ତଥା ପରବର୍ତ୍ତୀ ସମୟର ଖ୍ୟାତିପ୍ରାପ୍ତ ଅଭିନେତା ଧୀର ବିଶ୍ୱାଳ ପ୍ରମୁଖ ଚାରିଜଣ ଛାତ୍ର ଆମମାନଙ୍କ ଆଗରେ ରହିଗଲେ । ଆମେ ଅଧ୍ୟାପକମାନେ ସୁରକ୍ଷିତ ହୋଇଗଲୁ ସିନା ଆମକୁ ସୁରକ୍ଷା ଦେଇଥିବା ଛାତ୍ରମାନେ ପ୍ରବଳ ଲାଠିମାଡ଼ ଖାଇଲେ । ଧୀର ଏହି ସୁରକ୍ଷା ଦେଇ ମାତ୍ରାଧିକ ମାଡ଼ ଖାଇଲେ । ଏକଥା ସ୍ମରଣ କଲେ ସେତେବେଳେ ଛାତ୍ର ଶିକ୍ଷକ ସମ୍ପର୍କ କିପରି ଥିଲା, ତାହା ଜଣାପଡ଼େ ।

ଆମେ All India English Teachers' Conference ବନ୍ଦୋବସ୍ତ କରିବାବେଳେ (ବିଧୁବାବୁ ସେତେବେଳେ ବିଭାଗ ମୁଖ୍ୟ ଥିଲେ) ଯେଉଁ ସାଂସ୍କୃତିକ କାର୍ଯ୍ୟକ୍ରମର ଆୟୋଜନ

କରିଥିଲୁ, ସେଥିରେ ଭାରତର ବିଭିନ୍ନ ପ୍ରାନ୍ତରୁ ଆସିଥିବା ପ୍ରତିନିଧିମାନେ ଏତେ ଅଭିଭୂତ ହୋଇଗଲେ ଯେ ଇଂରାଜୀ ପ୍ରଫେସରମାନଙ୍କ ମହଲରେ କେତେ ବର୍ଷ ପର୍ଯ୍ୟନ୍ତ କଥା ରହିଗଲା - "ଆଲିଗଡ଼ କା ଖାନା, କଟକ କା ଗାନା।" ମାନସିଂହଙ୍କର "କୋଣାର୍କ ଜାଗରଣ" ନୃତ୍ୟ ନାଟିକା ପରିବେଷଣ ଶେଷ ଆକର୍ଷଣ ଥିଲା। ଜହ୍ନରାତି। କଳାକାର କୋଣାର୍କର ନୃତ୍ୟରତା ମୂର୍ତ୍ତିମାନଙ୍କୁ ଦେଖୁଛି। ସେ ନିଜ କଳ୍ପନାରେ ଏପରି ଅଭିଭୂତ ହୋଇଯାଇଛି ଯେ ସେ ମନେ କରୁଛି ସେହି ମୂର୍ତ୍ତିମାନେ ବାହାରି ଆସି ସତରେ ନୃତ୍ୟ କରୁଛନ୍ତି ଏବଂ ଶେଷକୁ ସେ ମଧ୍ୟ ସେମାନଙ୍କ ସହିତ ନିଜେ ନୃତ୍ୟ କରୁଛି। ତା'ପରେ କଳ୍ପନା ମଉଳିଯାଉଛି ଏବଂ ମୂର୍ତ୍ତିମାନେ ସ୍ୱସ୍ଥାନକୁ ଫେରିଯାଉଛନ୍ତି।

ଏହି ଦୃଶ୍ୟ ଏପରି ହେଲା ଯେ ସାରା ପ୍ରେକ୍ଷାଳୟଟି ଓଡ଼ିଶୀର ଲାସ୍ୟରେ ବେଶ୍ କିଛି ସମୟ ଧରି ନିସ୍ତବ୍ଧ ହୋଇଗଲା। ପରେ ସମସ୍ତ ପ୍ରତିନିଧି ଠିଆ ହୋଇ ଦୀର୍ଘସମୟ ଧରି ତାଳି ମାରିଲେ। ଏହି ସଫଳତାର ହକ୍‌ଦାର ଥିଲେ କଲେଜର ବଛା ବଛା ଛାତ୍ରୀମାନେ, ଯଥା- ସୁଷମା ମିଶ୍ର, କୁମ୍‌କୁମ୍ ମହାନ୍ତି, ପ୍ରିୟମ୍ବଦା ମହାନ୍ତି ଏବଂ କାଜଲ ପାଲିତ ପ୍ରମୁଖ। ଏହି ଛାତ୍ରୀମାନେ ସମସ୍ତେ ଆଜି ଶିକ୍ଷାବିତ୍, ନୃତ୍ୟାଙ୍ଗନା ତଥା ନୃତ୍ୟ ଗବେଷିକା ରୂପେ ଦେଶ ବିଦେଶରେ ନାମ କରିଛନ୍ତି। ପ୍ରିୟମ୍ବଦା ତ ଓଡ଼ିଶାର ପ୍ରଥମ ମହିଳା ଯିଏ କି ସମ୍ବଲପୁର ବିଶ୍ୱବିଦ୍ୟାଳୟର କୁଳପତି ହୋଇଥିଲେ। ସେ ତାଙ୍କ ପ୍ରତିଭା ପାଇଁ ପଦ୍ମଶ୍ରୀ ଉପାଧି ମଧ୍ୟ ପାଇଛନ୍ତି। ଏହି ନୃତ୍ୟନାଟିକାରେ ମୋର ଏତେ ଆଗ୍ରହ ହେଲା ଯେ ଆୟୋଜକ ହିସାବରେ ସେଥିରେ ମୋର ଖୁବ୍ ଶକ୍ତି ଖଟାଇଥିଲି।

ଆମେ ଥିବାବେଳେ ବି କଲେଜର ଅବସ୍ଥା ଦିନକୁ ଦିନ ଖରାପ ଆଡ଼କୁ ଯିବାର ସୂତ୍ରପାତ ହେଉଥିଲା। ଏ ସମ୍ପର୍କରେ ୧୯୬୪ ଛାତ୍ରଆନ୍ଦୋଳନ କଥା ମୋର ମନକୁ ଆସୁଛି। ଦଳେ ଛାତ୍ର ପ୍ରତିବାଦ ଶୋଭାଯାତ୍ରାରେ ଯିବାବେଳେ ସେମାନଙ୍କ ଉପରେ କଲେଜ ଛକରେ ପୋଲିସ୍ ଲାଠିଚାଳନା କଲା। ଏହି କଥାରୁ ବଢ଼ି ବଢ଼ି ଓଡ଼ିଶାର ସବୁ କଲେଜରେ ଛାତ୍ର ଆନ୍ଦୋଳନ ଲାଗି ରହିଲା। ବୀରେନ୍ ମିତ୍ର ସେତେବେଳେ ଆମର ମୁଖ୍ୟମନ୍ତ୍ରୀ। ସେ ଅତିମାତ୍ରାରେ ଦରଦୀ ଲୋକ ଥିଲେ। ତାଙ୍କପରି ହୃଦୟବାନ୍ ବ୍ୟକ୍ତି କ୍ୱଚିତ୍ ଦେଖିବାକୁ ମିଳେ। ଦୀନବନ୍ଧୁ ସାହୁ ଥିଲେ ଆଡ୍‌ଭୋକେଟ୍ ଜେନେରାଲ୍। ସେ ଶିକ୍ଷାପ୍ରେମୀ। ଉଭୟେ ଚାହୁଁଥିଲେ ସମସ୍ୟାର ସମାଧାନ ହେଉ। ଡ. ଦେବେନ୍ଦ୍ରଚନ୍ଦ୍ର ମିଶ୍ର, ଡ. ଦେବପ୍ରସାଦ ପଟ୍ଟନାୟକ ସମେତ ଆମେ କେତେଜଣ ଅଧ୍ୟାପକ, ଛାତ୍ର ଏବଂ ସରକାରଙ୍କ ମଧ୍ୟରେ ସାଲିସ୍ ପାଇଁ ଲାଗିଥାଉଁ। ବିଶେଷ ଅସୁବିଧା ବି ନ ଥିଲା। ଛାତ୍ରମାନେ ବହୁଦିନ ଧରି କଲେଜରେ ଯୋଗଦାନ କରି ନ ଥିବାରୁ ସେମାନଙ୍କର ଲେକ୍‌ଚର ପର୍ସେଣ୍ଟେଜ୍ କମିଯାଉଥିଲା। ସରକାର ଚାହୁଁଥାନ୍ତି ଯେ ଏହା କନ୍‌ଡୋନ୍ କରିଦେବେ। କିନ୍ତୁ ରେଭେନ୍‌ସା କଲେଜର ଅଧ୍ୟକ୍ଷ ଓ କେତେଜଣ ଅଧ୍ୟାପକ ଏଥିରେ ରାଜି ହେଉ ନ ଥିଲେ।

ସେମାନେ ଚାହୁଁଥିଲେ ଯେ ଛାତ୍ରମାନଙ୍କୁ ଏକ ଉଚିତ ଶିକ୍ଷା ଦିଆଯାଉ ଯଦ୍ୱାରା ସେମାନେ ଆନ୍ଦୋଳନ କରି ପଢ଼ାପଢ଼ି ବନ୍ଦ କରିବା କଥା ଆଉ ଭାବିବେ ନାହିଁ । ସେମାନେ ମୁଖ୍ୟମନ୍ତ୍ରୀଙ୍କ ଉପରେ ମଧ୍ୟ ବିଗିଡ଼ିଥିଲେ । କାରଣ ତା' ଆଗରୁ ଦଳେ ଛାତ୍ର ବ୍ୟବସ୍ଥା ସଭା ହଲ୍ ମଧ୍ୟକୁ ପଶି (ଅବଶ୍ୟ ବ୍ୟବସ୍ଥା ସଭା ସେହି ସମୟରେ ବସି ନ ଥିଲା) ଆସବାବପତ୍ର ଭଙ୍ଗାରୁଜା କରିଥିଲେ ଏବଂ ଏଥିସକାଶେ ବି ନରମ ମୁଖ୍ୟମନ୍ତ୍ରୀ କିଛି ଦଣ୍ଡବିଧାନ କରି ନ ଥିଲେ ।

ଯାହାହେଉ ସରକାରୀ ଅର୍ଡର ହେଲା ମୌଖିକ ଭାବରେ ଏବଂ ଡି.ପି.ଆଇ. ଆସି ସମସ୍ତଙ୍କର ସର୍ଟେଜ୍ ମାଫି କରାଇନେଲେ । କିନ୍ତୁ ଅଧ୍ୟକ୍ଷ ଓ ତାଙ୍କର ସମର୍ଥକ ଅଧ୍ୟାପକମାନେ ଜଣଙ୍କ ବିଷୟରେ ଜିଦ୍ ଧରିଲେ । ସେହି ପିଲା କଥା ଭାବିଲେ ଏବେ ମଧ୍ୟ ମୋ ଆଖିକୁ ଲୁହ ଆସିଯାଉଛି । ସେହି ଛାତ୍ରର ନାମ ଥିଲା ଲୋକନାଥ ଆଚାର୍ଯ୍ୟ । ସେ ମେଟ୍ରିକୁଲେସନ୍ ପରୀକ୍ଷାରେ ଓଡ଼ିଶାରେ ପ୍ରଥମ ସ୍ଥାନ ଅଧିକାର କରିଥିଲା । ବି.ଏ.ରେ ଇକୋନମିକ୍ସ ଅନର୍ସ ନେଇଥିଲା । ମଝିରେ କିନ୍ତୁ ସେ କଲେଜ ଇଉନିୟନର ସେକ୍ରେଟେରୀ ହୋଇଗଲା ଓ ଛାତ୍ର ଆନ୍ଦୋଳନରେ ସାମିଲ୍ ହୋଇଗଲା । ଅଧ୍ୟକ୍ଷ ଓ ସେହି ଅଧ୍ୟାପକମାନେ ତା' ବିରୋଧରେ ଆକ୍ରୋଶ ରଖିଲେ ଯେ, ସେ ଏତେ ଭଲ ଛାତ୍ର ହୋଇ ବି କାହିଁକି ଇଉନିୟନରେ ପଶିଲା ଓ ଆନ୍ଦୋଳନରେ ଭାଗ ନେଲା । ତେଣୁ ଅଧ୍ୟକ୍ଷ ଓ ଡିପାର୍ଟମେଣ୍ଟ ତା'ର ସର୍ଟେଜ୍ କନ୍‌ଡୋନ୍ କରିବାପାଇଁ ମନା କରିଦେଲେ । ସେ ଭଲ ଛାତ୍ର, ସେନ୍‌ସିଟିଭ୍, ତେଣୁ ଏହି ବାଛ ବିଚାର ତାକୁ ଏତେ ବାଧିଲା ଯେ ସେ ରେଲ୍ ଇଞ୍ଜିନ୍ ସାମ୍ନାରେ ମୁଣ୍ଡ ରଖି ଆତ୍ମହତ୍ୟା କରିଦେଲା ।

ଲୋକନାଥର ବାପା ପାଲଲହଡ଼ାର ଲୋକ । ସେତେବେଳେ ସେ ପାଟନାଗଡ଼ରେ ସବ୍‌ଡେପୁଟି କଲେକ୍ଟର ଥିଲେ । ବୀରେନ୍ ମିତ୍ର ଗାଡ଼ି ପଠାଇ ବାପା- ମା'ଙ୍କୁ ଡକାଇ ଆଣିଲେ । ବାପା ତାଳଚେର ସ୍କୁଲ୍‌ରେ ଡ.ଡି.ସି.ମିଶ୍ରଙ୍କର ସହପାଠୀ ଥିଲେ । ଲୋକନାଥର ମା' ତାଙ୍କ ଘରେ ରହିଲେ ଏବଂ ବାପା ଆମ ଘରେ ରହିଲେ । ଅନ୍ୟ ଅଧ୍ୟାପକମାନେ ଅଧ୍ୟକ୍ଷଙ୍କୁ ଡରି ସେମାନଙ୍କ ପାଖ ପର୍ଯ୍ୟନ୍ତ ଆସିଲେ ନାହିଁ । ଯେତେବେଳେ ବାପା ଅଧ୍ୟକ୍ଷଙ୍କୁ ଦେଖା କରିବାପାଇଁ ଗଲେ, ଅଧ୍ୟକ୍ଷ ତାଙ୍କୁ ଦେଖା ବି ଦେଲେ ନାହିଁ । ଲୋକନାଥର ଶବ ସହିତ ଶ୍ମଶାନକୁ କେବଳ ଆମେ କେଇଜଣ ଅଧ୍ୟାପକ ଗଲୁ । ଅଧ୍ୟକ୍ଷଙ୍କୁ ହତ୍ୟାକାରୀ ବୋଲି ଛାତ୍ରମାନେ ବରାବର ପାଟି କଲେ । ଶୋକସଭାରେ ଯେତେବେଳେ ସେମାନେ ଏପରି ଗାଳିଗୁଲଜ କରିବାକୁ ଆରମ୍ଭ କଲେ, ମୁଁ ପ୍ରତିବାଦ କଲି । ମୁଁ କହିଲି ଯେ ଏ ପ୍ରକାର ବ୍ୟବହାର ଦ୍ୱାରା ସଭାର ପବିତ୍ରତା ଓ ଗାମ୍ଭୀର୍ଯ୍ୟ ନଷ୍ଟ ହେଉଛି । ବିଶେଷତଃ ଶୋକସଭାକୁ ଅଧ୍ୟାପକମାନଙ୍କୁ ଡକାଯାଇଛି । ତେଣୁ ସେମାନଙ୍କ ଉପସ୍ଥିତିରେ ଅଧ୍ୟକ୍ଷଙ୍କୁ ଗାଳି ଦେବା ଉଚିତ ନୁହେଁ । ଫଳରେ ସେହି ସଭାରେ କେବଳ ଏକ ଶୋକ ପ୍ରସ୍ତାବ ପାସ୍ ହେଲା ଏବଂ ଛାତ୍ରମାନେ ସେମାନଙ୍କ ଭିତରେ ଗୋଟିଏ ଅଲଗା ସଭା କରି ଅଧ୍ୟକ୍ଷଙ୍କ ସମ୍ବନ୍ଧରେ ମନଇଚ୍ଛା କହିଲେ ।

ତା'ପରେ କିନ୍ତୁ ସେମାନେ ଅଧ୍ୟକ୍ଷଙ୍କୁ ବୟକଟ୍ କଲେ । ତାଙ୍କୁ ନମସ୍କାର କରିବା ତ ଦୂରର କଥା, ତାଙ୍କ ସହିତ ଛାତ୍ରମାନେ ଆଦୌ କଥାବାର୍ତ୍ତା କଲେନାହିଁ । କୌଣସି କାମ ପାଇଁ ତାଙ୍କ ରୁମ୍‌କୁ କେହି ବି ଗଲେନାହିଁ । ଏମିତି ଅବସ୍ଥା ମାସେ ଉପରେ ରହିଲା । ଅଧ୍ୟକ୍ଷ ବି ଏତେ ଡରି ଯାଇଥିଲେ ଯେ କଣେ ମଜଭୁତିଆ ଅଧ୍ୟାପକଙ୍କୁ ତାଙ୍କ ନିରାପତ୍ତା ପାଇଁ ବରାବର ପାଖରେ ରଖିଲେ । ମୋତେ ଏହା ଖୁବ୍ ଖରାପ ଲାଗିଲା । ସେତେବେଳେ କଲେଜର ବାର୍ଷିକ ନାଟକ ହେବାର ଥାଏ ଏବଂ ରେଭେନ୍‌ସା କଲେଜର ପରମ୍ପରା ଥିଲା ଯେ ନାଟକ ତିନିରାତି ହେବ - ଗୋଟିଏ ରାତି କେବଳ ଅଧ୍ୟାପକ ଏବଂ ସେମାନଙ୍କର ପରିବାର ବର୍ଗ ପାଇଁ । ଦୈବଯୋଗକୁ ମୁଁ ପ୍ରଫେସର୍ ଇନ୍‌ଚାର୍ଜ ଡ୍ରାମା ଥାଏ । ପିଲାମାନେ ଠିକ୍ କରିଥାଆନ୍ତି ଯେ ଅଧ୍ୟକ୍ଷଙ୍କୁ ଆଦୌ ନାଟକ ଦେଖିବା ପାଇଁ ନିମନ୍ତ୍ରଣ କରିବେ ନାହିଁ । ମୁଁ କିନ୍ତୁ କହିଲି ଯେ ଅଧ୍ୟକ୍ଷଙ୍କୁ ନିମନ୍ତ୍ରଣ ନ କଲେ ଆମେ କେହି ଅଧ୍ୟାପକ ନାଟକ ଦେଖିବାକୁ ଆସିବୁ ନାହିଁ । ହୁଏତ ଯେଉଁମାନଙ୍କର କିଛି ଦାୟିତ୍ୱ ଥିବ, ସେମାନେ କେବଳ କର୍ତ୍ତବ୍ୟ ସମ୍ପାଦନ କରିବା ପାଇଁ ଆସିବେ । ଏକଥା ଛାତ୍ରମାନଙ୍କୁ ଅଡୁଆରେ ପକାଇଦେଲା ଏବଂ ସେମାନେ ବାଧ୍ୟ ହୋଇ ଅଧ୍ୟକ୍ଷଙ୍କୁ ଡାକିଲେ । କିନ୍ତୁ ଅଧ୍ୟାପକ-ଛାତ୍ରର ସମ୍ପର୍କରେ ଏ ଯେଉଁ ବିପର୍ଯ୍ୟୟ ହେଲା ତା'ର ସୁଦୂରପ୍ରସାରୀ ପ୍ରଭାବ ଓଡିଶାର ଚାରିଆଡ଼େ ପଡ଼ିଲା । କାରଣ ରେଭେନ୍‌ସା କଲେଜ ଥିଲା ଓଡ଼ିଶାର ଶିକ୍ଷା ଜଗତର ପ୍ରାଣକେନ୍ଦ୍ର । ଛାତ୍ରଙ୍କ ହିତ ପ୍ରତି ଅଧ୍ୟାପକମାନଙ୍କ ଅନାଗ୍ରହ ହିଁ ଶିକ୍ଷାନୁଷ୍ଠାନମାନଙ୍କର ଅଧୋଗତିର ଏକ ମୁଖ୍ୟ କାରଣ ।

ସବୁ ଅଧ୍ୟାପକ ଯେ ଭଲ ପଢ଼ାଇବେ ଏ କଥା କେବେ ହେବନାହିଁ । ଆମର କେତେକ ଅଧ୍ୟାପକ ତ ପ୍ରାୟ ପଢ଼ାଉ ନ ଥିଲେ । ଭି.ଭି.ଜନ୍ ଏ କଥାର ଏକ ଜ୍ୱଳନ୍ତ ଉଦାହରଣ । ସେ କ୍ଲାସ୍‌ରେ ଆଦୌ ପଢ଼ାଉ ନ ଥିଲେ । କିନ୍ତୁ ତାଙ୍କର ସ୍ୱାଧୀନ ଚିନ୍ତା, ବିସ୍ତୃତ ଦୃଷ୍ଟିଭଙ୍ଗୀ ତାଙ୍କୁ ଛାତ୍ର ମହଲରେ ଏକ ପୂଜ୍ୟ ବ୍ୟକ୍ତିର ସ୍ଥାନ ଦେଇଥିଲା । କେଉଁ ଅଧ୍ୟାପକ ଭଲ ପଢ଼ାଉଥିଲେ ଓ କେଉଁ ଅଧ୍ୟାପକ ଭଲ ପଢ଼ାଉ ନ ଥିଲେ ଏକଥା ଆମେ ଛାତ୍ର ଥଲାବେଳେ ଆଦୌ ଧରୁ ନ ଥିଲୁ । ସେମାନେ ଭଲ ମଣିଷ ଥିଲେ, ଛାତ୍ରମାନଙ୍କ ପ୍ରତି ସେମାନଙ୍କର ଅନାବିଳ ସ୍ନେହ ଥିଲା, ସେଥିପାଇଁ ସେମାନେ ଆଜି ପର୍ଯ୍ୟନ୍ତ, ଏତେ ବର୍ଷ ଚାଲିଗଲା ପରେ ବି, ଆମର ନମସ୍ୟ ହୋଇ ରହିଛନ୍ତି । ଅଧ୍ୟାପକମାନଙ୍କର ଏ ପ୍ରକାର ମନୋବୃତ୍ତି ହେଲେ ଛାତ୍ରମାନେ ସେମାନଙ୍କ ପ୍ରତି ସ୍ୱତଃ ଆକୃଷ୍ଟ ହୁଅନ୍ତେ । ତା'ଫଳରେ ଶୃଙ୍ଖଳା ରକ୍ଷା ଏକ ସମସ୍ୟା ହୋଇ ରହନ୍ତା ନାହିଁ ଏବଂ ଅଧ୍ୟାପନା ଓ ଅଧ୍ୟୟନ ଉଭୟ କଥା ଊର୍ଦ୍ଧ୍ୱମୁଖୀ ହୁଅନ୍ତା ।



***ନିଜକଥା***, ସ୍ୱ-ପ୍ରକାଶନୀ, ରାଉରକେଲା, ୨୦୦୭

# ରେଭେନ୍ସାରେ ବି.ଏ.

## ଭୁବନେଶ୍ୱର କର

ବି.ଏ. ପଢ଼ିବାର ବାସନା ବଳବତୀ ଥିଲା । କିନ୍ତୁ ପଢ଼ାଖର୍ଚ୍ଚ ବହନ କରିବାର ଆର୍ଥିକ ସ୍ୱଚ୍ଛଳତା ଘରେ ନଥିଲା । ତେଣୁ କଟକ ଯାଇ ନିକର ଚେଷ୍ଟାରେ କଟକ ଆଲମଚାନ୍ଦ ବଜାରରେ ନିଜଘରେ ରହୁଥିବା ତତ୍କାଳୀନ କଟକର ଅତିରିକ୍ତ ଜିଲ୍ଲା ମାଜିଷ୍ଟ୍ରେଟ୍ ନଳିନୀକାନ୍ତ ଘୋଷଙ୍କ ଘରେ ତାଙ୍କର ଗୋଟିଏ ନବମ ଶ୍ରେଣୀର ପୁଅ ଓ ଗୋଟିଏ ଅଷ୍ଟମ ଶ୍ରେଣୀର ଝିଅକୁ ଟିଉସନ କରି ତାଙ୍କର ଘରେ ରହିଲି ଓ ସେ ମୋର ରହିବା ଖାଇବା ଦାୟିତ୍ୱ ବହନ କଲେ । ରେଭେନ୍ସା କଲେଜରେ ବି.ଏ.ରେ ନାମ ଲେଖାଇଲି । ଆଲମଚାନ୍ଦ ବଜାରରୁ ରେଭେନ୍ସା କଲେଜ ଦୀର୍ଘ ପଥ ଚାଲି ଚାଲି ଯିବା ଆସିବା କରୁଥିଲି । ପରିଧେୟ ଦୁଇଖଣ୍ଡି ମୋଟା ଧୋତି ଓ ଖଣ୍ଡିଏ ଜାମା । ପାଠ୍ୟ ପୁସ୍ତକ କିଣିବାକୁ ପଇସା ନଥିଲା । ତେଣୁ ପ୍ରଥମ ବର୍ଷ ମୁଁ କିଛି ପାଠ ପଢ଼ି ନାହିଁ । ୨ୟ ବର୍ଷ କଲେଜର ପୂର୍ବ ଛାତ୍ରାବାସରେ ରହିବାର ସୁବିଧା ପାଇଲି । ଛାତ୍ରାବାସରେ ରହିବାର ସୁବିଧା ହେବାକୁ ବହିପତ୍ର ନଥିଲେ ମଧ୍ୟ ମଗାମଗିରେ ଚଳିଗଲା ।

ମୁଁ ସେତେବେଳେ ପୂର୍ବ ଛାତ୍ରାବାସର ୨ୟ ନମ୍ବର କୋଠରିରେ ରହୁଥିଲି । ଆମେ ସେ କୋଠରିରେ ଥିଲୁ ପାଞ୍ଚ ଜଣ । ୩ ଜଣ ୨ୟ ବାର୍ଷିକ ଛାତ୍ର ଓ ଦୁଇଜଣ ୪ର୍ଥ ବାର୍ଷିକ ଛାତ୍ର । ଯୁଦ୍ଧ ସମୟ ଯୋଗେ ରାତିରେ ଅନ୍ଧକାର କରିବା ପାଇଁ ( Black out) କମ୍ ଶକ୍ତିର ଗୋଟିଏ ବଲ୍ବ ଚାରିପଟେ କଳା ଲମ୍ବ ଟିଣ ନଳି ଲଗାଯାଇଥିଲା । ତେଣୁ ରାତିରେ ପଢ଼ିବା ପ୍ରାୟ ନଥିଲା କହିଲେ ଅତ୍ୟୁକ୍ତି ହେବନି । ମୋ ସହିତ ଥିବା ଅନ୍ୟ ଚାରି ଜଣଙ୍କ ମଧ୍ୟରୁ ୨ୟ ବାର୍ଷିକ ଛାତ୍ର ଢେଙ୍କାନାଳର ଶ୍ରୀବତ୍ସ ନାୟକ ବର୍ତ୍ତମାନ ଲବ୍ଧ ପ୍ରତିଷ୍ଠିତ ସାହିତ୍ୟିକ, ରାଜନୀତିଜ୍ଞ ଓ ପୂର୍ବତନ ଏମ୍.ଏଲ୍.ଏ. । ବଲାଙ୍ଗୀରର ପ୍ରେମରାଜ ମିଶ୍ର ଓକିଲ ଓ ଜଳେଶ୍ୱରର ବିଜୟ ଦାସ ଓକିଲ । ମୋର ସହପାଠୀ, ନୟାଗଡ଼ର ଗୋପାଳ ପଟ୍ଟନାୟକ ଶିକ୍ଷା ବିଭାଗ ଡାଇରେକ୍ଟର ପଦରୁ ଅବସର ନେଇଛନ୍ତି । ଏଠାରେ ପଢ଼ିଲାବେଳେ ଯେଉଁ ଅଳ୍ପ କେତେ ଜଣଙ୍କ ସହିତ ଆନ୍ତରିକତା ଥିଲା ସେମାନେ ପ୍ରାୟ ସମସ୍ତେ ପରବର୍ତ୍ତୀ ଜୀବନରେ ଲବ୍ଧ ପ୍ରତିଷ୍ଠ । ସର୍ବଶ୍ରୀ ବିମଳ ମିଶ୍ର

ଓଡ଼ିଶାର ଅତିରିକ୍ତ ମୁଖ୍ୟସଚିବ, ମହେଶ ପ୍ରସାଦ ରଥ ଯୁଗ୍ମ ସଚିବ, ନିହାର ରଞ୍ଜନ ପାଣିଗ୍ରାହୀ କୃଷି ନିର୍ଦ୍ଦେଶକ, ସତ୍ୟବାଦୀ ମିଶ୍ର କଲେଜ ପ୍ରିନିସ୍‌ପାଲ, ଉପେନ୍ଦ୍ର ପ୍ରସାଦ ଗୁରୁ ସଚିବ, କ୍ଷେତ୍ର ମୋହନ ମଙ୍ଗରାଜ ଯୁଗ୍ମ ସଚିବ, ଲକ୍ଷ୍ମୀକାନ୍ତ ମହାପାତ୍ର ଚକ୍ଷୁରୋଗ ଅଧ୍ୟାପକ, ପ୍ରଫୁଲ୍ଲ କୁମାର ସ୍ୱାଇଁ ଯୁଗ୍ମ ସଚିବ ଓ ସୁଦର୍ଶନ ସେନାପତି ଡି.ଆଇ.ଜି. ବର୍ତ୍ତମାନ ସମସ୍ତେ ଅବସର ପ୍ରାପ୍ତ। ଏମାନଙ୍କ ମଧ୍ୟରୁ ସତ୍ୟବାଦୀ ମିଶ୍ର ଓ ସୁଦର୍ଶନ ସେନାପତି ଥିଲେ ଅତି ଅନ୍ତରଙ୍ଗ।

ସତ୍ୟବାଦୀ ମିଶ୍ର ହେଉଛନ୍ତି ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସଙ୍କ ନାତି। ତାଙ୍କ ସାନଝିଅ କୀର୍ତ୍ତିମୟୀଙ୍କ ଜ୍ୟେଷ୍ଠ ପୁତ୍ର। ତାଙ୍କ ପିତାଙ୍କ ନାମ ନାରାୟଣ ମିଶ୍ର। ସତ୍ୟବାଦୀ କଲେଜରେ ପଢୁଥିବାବେଳେ ୧୯୪୨ ମସିହା ଭାରତଛାଡ଼ ଆନ୍ଦୋଳନରେ ଛାତ୍ରନେତା ଭାବେ ଅନ୍ୟ ନେତାମାନଙ୍କ ସହିତ କାରାବରଣ କରିଥିଲେ ଓ ଜେଲରୁ ଖଲାସ ହେବା ପରେ ୧୯୪୩ ମସିହାରେ ରେଭେନ୍‌ସା କଲେଜରେ ବି.ଏ. ପ୍ରଥମ ବର୍ଷରେ ନାମ ଲେଖାଇ ଥିଲେ। ମୁଁ ଖଲିକୋଟ କଲେଜରୁ ଆଇ.ଏ. ପାସ୍ କରି ସେହି ବର୍ଷ ରେଭେନ୍‌ସା କଲେଜରେ ବି.ଏ.ରେ ନାମ ଲେଖାଇଥିଲି। କ୍ଲାସରେ ତାଙ୍କର କେହି ପୂର୍ବ ସହପାଠୀ ନଥିଲେ ଓ ମୋର ମଧ୍ୟ ସେହି ଦଶା। ସେ କ୍ଲାସର ଶେଷ ବେଞ୍ଚରେ ବସନ୍ତି ଓ ମୁଁ ମଧ୍ୟ ଶେଷ ବେଞ୍ଚରେ। ସଂଯୋଗ କ୍ରମେ ଆମ ଦୁଇଜଣଙ୍କ ଆତ୍ମୀୟତା ବଢ଼ିଲା। ଉଭୟେ ଦର୍ଶନ ଶାସ୍ତ୍ରର ଛାତ୍ର। ଯେଉଁଆଡ଼େ ଯାଉ ଦୁହେଁ ସାଙ୍ଗ ହୋଇ। ସେତେବେଳେ ଭୁବନେଶ୍ୱର ରାଜଧାନୀ ତିଆରି ହୋଇନଥାଏ ଆମ କଲେଜ ହଲରେ ଓଡ଼ିଶା ଆସେମ୍ବ୍ଲି ଚାଲେ। ଯେତେବେଳେ କ୍ଲାସ୍ ନଥାଏ ସେତେବେଳେ ଆମେ ବିଧାନସଭା ଗ୍ୟାଲେରୀରେ ବସି ନେତାମାନଙ୍କ ଉତ୍ତର ପ୍ରତିଉତ୍ତର ଉପଭୋଗ କରୁ। ବିଶେଷକରି ମନ୍ତ୍ରୀ ପଣ୍ଡିତ ଗୋଦାବରୀଶ ମିଶ୍ର ଓ ବିରୋଧୀ ଦଳ ନେତା ସ୍ୱାମୀ ବିଚିତ୍ରା ନନ୍ଦ ଦାସଙ୍କ ଆଲୋଚନା ଅତି ଉଚ୍ଚକୋଟୀର ଓ ଶିକ୍ଷଣୀୟ ହୁଏ। ସଂଯୋଗ କ୍ରମେ ଏହି ସତ୍ୟବାଦୀ ମିଶ୍ର ପରେ ମୋର ବଡ଼ ଭଉଣୀର ଝିଅ ଲୀଳାବତୀଙ୍କୁ ବିବାହ କଲେ। ରେଭେନ୍‌ସା କଲେଜ ଅଧ୍ୟାପକରୁ ଚାକିରି ଆରମ୍ଭ କରି ପୁରୀ, ବାରିପଦା ଆଦି କଲେଜର ଅଧ୍ୟକ୍ଷ ଦାୟିତ୍ୱ ସୁଚାରୁ ରୂପେ ସଂପାଦନ କରି ଅବସର ନେବା ପରେ ସଂସ୍କୃତ ବିଶ୍ୱବିଦ୍ୟାଳୟର ରିସର୍ଚ୍ଚ ଡାଇରେକ୍ଟର ଭାବେ କିଛିଦିନ କାମ କରି ଅପ୍ରତ୍ୟାଶିତ ଭାବେ ଦେହତ୍ୟାଗ କଲେ। ତାଙ୍କ ବିୟୋଗ ମୋ ପାଇଁ ଏକ ଦାରୁଣ ଦୁଃଖ।

ମୁଁ ୧୯୪୩ ମସିହାରେ ରେଭେନ୍‌ସା କଲେଜରେ ଯୋଗ ଦେଲାବେଳକୁ କଲେଜର ପ୍ରିନିସ୍‌ପାଲ ଥିଲେ ସ୍ୱନାମଧନ୍ୟ ଡକ୍ଟର ପ୍ରାଣକୃଷ୍ଣ ପରିଜା। ତାହାଙ୍କ ବ୍ୟକ୍ତିତ୍ୱ ଅନନ୍ୟ ସାଧାରଣ। ପିଲାଦିନୁ ପିତୃମାତୃହରା ସାଧାରଣ ପରିବାରରୁ ନିଜର ଅଧ୍ୟବସାୟ ଓ ପ୍ରତିଭା ବଳରେ ବିଲାତରେ ଶିକ୍ଷା ଗ୍ରହଣ କରି ଉଦ୍ଭିଦ ବିଜ୍ଞାନରେ ପୃଥିବୀ ପ୍ରସିଦ୍ଧ ପ୍ରତିଷ୍ଠା ଅର୍ଜନ କରିଥିଲେ। ସେ ବୈଜ୍ଞାନିକ ବ୍ଲାକମାନଙ୍କ ସହିତ ଗବେଷଣା କରି ଏକ ନୂତନ ତଥ୍ୟ ଆବିଷ୍କାର

କରିଥିଲେ ଯାହା କି ପରିଜା ବ୍ଲାକମ୍ୟାନ ଥିଓରୀ (Parija Blackman Theory) ନାମେ ବିଦିତ।

୧୯୪୪ରେ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ହେବାରେ ସେ ଥିଲେ ପ୍ରଥମ କୁଳପତି (Vice chanceller) କିଛିଦିନ କୃଷିବିଭାଗ ଡାଇରେକ୍ଟର ଓ ଓଡ଼ିଶା ବିଧାନସଭା ସଦସ୍ୟ ମଧ୍ୟ ହୋଇଥିଲେ। ଦ୍ୱିତୀୟବାର କୁଳପତି ହୋଇ ଭୁବନେଶ୍ୱରସ୍ଥିତ ଉତ୍କଳ ବିଶ୍ୱବିଦ୍ୟାଳୟର ସବୁକିଛି ଉନ୍ନତି ସେ କରିଯାଇଛନ୍ତି। ଭାରତ ସରକାର ତାଙ୍କୁ ପଦ୍ମଶ୍ରୀ ଉପାଧିରେ ଭୂଷିତ କରିଥିଲେ।

ପ୍ରଫେସର ଆର୍ତ୍ତବଲ୍ଲଭ ମହାନ୍ତି, ରତ୍ନାକର ପତି, କରୁଣା କର, ବଂଶୀଧର ସାମନ୍ତରାୟ, ବଳଭଦ୍ର ପ୍ରସାଦ, ପି.ଏସ. ସୁନ୍ଦରମ୍, ଭି.ଭି. ଜନ୍, ଜୟକୃଷ୍ଣ ମିଶ୍ର, ପ୍ରହ୍ଲାଦ ପ୍ରଧାନ, ଦାମୋଦର ମିଶ୍ର, ସଦାଶିବ ମିଶ୍ର ଆଦି ଅତି ଉଚ୍ଚକୋଟୀର ଅଧ୍ୟାପକମାନେ ସେତେବେଳେ କଲେଜର ଶିକ୍ଷାଦାନ କ୍ଷେତ୍ରରେ ନିଯୁକ୍ତି ଥିଲେ। ସେମାନେ ସମସ୍ତେ ଲବ୍ଧ ପ୍ରତିଷ୍ଠ ଅବିସ୍ମରଣୀୟ।

ସେହି ସମୟଟି ନିଶ୍ଚିତ ଭାବରେ ରେଭେନ୍ସା କଲେଜ ପାଇଁ ସର୍ବୋତ୍କୃଷ୍ଟ ସମୟ ଥିଲା।



---

***ଆତ୍ମଗାଥା***, ସ୍ୱ-ପ୍ରକାଶନୀ, ଢେଙ୍କାନାଳ, ୨୦୦୧

# ରେଭେନ୍ସା କଲେଜ

## ହୃଦାନନ୍ଦ ରାୟ୍

ମୋତେ ଲାଗିଲା ସଦିଚ୍ଛାରେ ଥିଲେ ରଣରେ ମଧ୍ୟ ଜୟ୍ କରାଯାଇପାରେ । କିନ୍ତୁ ସେ ସଦିଚ୍ଛାର ସ୍ୱରୂପ କ'ଣ ? କେଉଁ ରଣରେ ସଦିଚ୍ଛା କାମ କରୁଛି ଓ ବିଜୟ୍ ଆଣିଛି ? ମୋତେ ଲାଗିଲା ରାଧାନାଥଙ୍କ 'ଉଷା' କାବ୍ୟରେ ଉଷା ଓ ଜୟନ୍ତଙ୍କ ଦୌଡ଼ରେ ଜୟନ୍ତ ଜିଣିଗଲେ ଉଷାଙ୍କ ସଦିଚ୍ଛାରୁ, ନୋହିଲେ ତାଙ୍କ ମୁଣ୍ଡକାଟ ହୋଇଥାନ୍ତା । ଏ ମୁଣ୍ଡକାଟରୁ ସେ ବର୍ତ୍ତିଲେ କିପରି ? ଏଥିରେ ତ ଜୟନ୍ତଙ୍କର ଦୌଡ଼ିବା ସାମର୍ଥ୍ୟ କାମ କରିନାହିଁ । ଯାହା କାମ କରିଛି ତାହାକୁ କ'ଣ ବ୍ୟାପକ ଭାବରେ ଜୀବନର ସବୁ କ୍ଷେତ୍ରରେ ପ୍ରୟୋଗ କରିହେବ ନାହିଁ ? ସଂଗ୍ରାମ ଓ ବିଦ୍ୱେଷ ବିନା ମଣିଷ ଜାତି କ'ଣ ସର୍ବଜନଗ୍ରାହ୍ୟ ମୀମାଂସା ଗ୍ରହଣ କରିପାରିବ ନାହିଁ ? ଏ ଚିନ୍ତା ମୋତେ ଅସ୍ଥିର କରୁଥାଏ । Kingship knows no kinship. ରାଜପଦରେ ବନ୍ଧୁତ୍ୱ ଓ ଆତ୍ମୀୟତାର ସ୍ଥାନ ନାହିଁ । ମୁଁ ଭାବିଲି ବରଂ ବନ୍ଧୁତ୍ୱ ଓ ଆତ୍ମୀୟତା ରହୁ, ରାଜପଦ ଗଲେ ଯାଉ । କେତେକ ଭାବୁଥିଲେ ଓ ଏବେ ମଧ୍ୟ ଭାବୁଛନ୍ତି ବରଂ ବନ୍ଧୁତ୍ୱ ଓ ଆତ୍ମୀୟତା ଯାଉ, ରାଜପଦ ଥାଉ । ମୁଁ ନିର୍ବାଚନ ଜିଣିଲି ବୋଲି ଲୋକେ କହିଲେ । ସାର୍ ମଧ୍ୟ କହିଲେ । ମୁଁ କିନ୍ତୁ 'ଜିଣିଲି' ଶବ୍ଦରେ ସୁଖୀ ହୋଇପାରିଲା ନାହିଁ । ଛାତ୍ରମାନଙ୍କ ମଧ୍ୟରେ ଯେ ମୋର ଗୋଟିଏ ପ୍ରକାର ଆତ୍ମୀୟ୍ ପ୍ରତିପତ୍ତି ଅଛି ତାହା ବୋଧକଲି ଓ ସେମାନେ ଯେ ବୋଧକରିଛନ୍ତି ତାହାର ଦୃଷ୍ଟାନ୍ତ ସବୁ ମୋତେ ମିଳିଲା । ଅନେକଙ୍କ ମନରେ ଆଶାର ସଞ୍ଚାର ହେଲା ଯେ ମୁଁ ରାଜନୀତିରେ ସକ୍ରିୟ୍ ଅଂଶ ଗ୍ରହଣ କରିବି ଓ ବୋଧହୁଏ କେହି ମୋହର ପ୍ରତିରୋଧ କରିପାରିବେ ନାହିଁ ।

୧୯୪୬ ମସିହା ଡିସେମ୍ବର ମାସରେ ରେଭେନ୍ସା କଲେଜ ପଡ଼ିଆରେ କ୍ରୀଡ଼ା ଉତ୍ସବ ଆରମ୍ଭ ହୋଇଥାଏ । କ୍ରୀଡ଼ା ଉତ୍ସବର ଶେଷ ପରେ ବଡ଼ଦିନ ଛୁଟି ଆରମ୍ଭ ହୋଇଯିବା ବିଧାନ ପ୍ରଚଳିତ ଥିଲା । ସେହିବର୍ଷ କ୍ରୀଡ଼ାଉତ୍ସବର ଶେଷ ଦିବସରେ ପ୍ରତାପୀ ରାଜ୍ୟପାଳ ଚନ୍ଦୁଲାଲ୍ ତ୍ରିବେଦୀ ଅତିଥି ହୋଇ ଆସିବାର ଭବ୍ୟ ବନ୍ଦୋବସ୍ତ ଚାଲିଥାଏ । ପୁରସ୍କାର ବିତରଣ ପାଇଁ ରାଜ୍ୟପାଳ ଆସୁଥାନ୍ତି । ବ୍ରିଟିଶ୍ ରାଜ ସମୟ୍ । ସ୍ୱାଧୀନତା ପାଇବାକୁ ଆଉ ଆଠ ମାସ ବାକି

ଅଛି । ସ୍ୱାଧୀନତାର ସିନ୍ଦୂରା ଫାଟୁଛି କହିଲେ ଠିକ୍ ହେବ । ଶାସକ ଓ ଶାସିତ ମଧ୍ୟରେ ବିଜୟୀ ଓ ପରାଜିତ ସମ୍ପର୍କ ଅଛି ବୋଲି ଶାସକମାନଙ୍କର ଦୃଢ଼ ଧାରଣା ଥାଏ । ସଶସ୍ତ୍ର ରଣରେ ବ୍ରିଟିଶମାନେ ଭାରତ ଜୟ କରିଗଲେ । ଏଥିରେ କ'ଣ ଭାରତର ଜନସାଧାରଣଙ୍କର ପରାଜୟ ହେଲା ନାହିଁ କି ? ଜୟ-ପରାଜୟକୁ ମୂଳସୂତ୍ର କରି ଚାକିରିରେ ମଧ୍ୟ ସେହି ଦୃଷ୍ଟିକୋଣ ପ୍ରବର୍ତ୍ତିତ ହୋଇଥିଲା । ଉଚ୍ଚ ପଦବୀଧାରୀ ଅଫିସରମାନେ ତଳିଆ କର୍ମଚାରୀମାନଙ୍କୁ ପରାଜିତ ବ୍ୟକ୍ତି ବୋଲି ଭାବୁଥିଲେ । ଯିଏ ଉଚ୍ଚ ପଦରେ ବସିଛି ସେ ବିଜୟୀ । ଯାହାର ପ୍ରତିପତ୍ତି ଓ ସାମାଜିକ ସମ୍ମାନ ଯେତେ ସେ ବିଜୟୀ । ସ୍ୱାଧୀନତାର ପୂର୍ବ ମୁହୂର୍ତ୍ତ ପର୍ଯ୍ୟନ୍ତ ଏହି ଭ୍ରମ ଧାରଣା ଜନମାନସକୁ ଆଚ୍ଛନ୍ନ କରି ରଖିଥିଲା । ତେଣୁ ରାଜ୍ୟପାଳ ଚନ୍ଦୁଲାଲ୍ ତ୍ରିବେଦୀଙ୍କ ଆଗମନ ଲାଗି ଯେଉଁ ବ୍ୟବସ୍ଥା ହୋଇଥିଲା ତହିଁରେ ରେଭେନ୍‌ସା କଲେଜର ଅଧ୍ୟକ୍ଷ ଓ ବିଦ୍ୟାନିପୁଣ ଅଧ୍ୟାପକମାନଙ୍କ ଅବଚେତନ ମନରେ ପରାଜିତ ଭାବର ରାହୁଛାୟା ପଡ଼ିଥିଲା । କିନ୍ତୁ ସ୍ୱାଧୀନତାର ଆସ୍ୱାଦନର ବେଳ ଆସିଯାଇଥିଲା । ସ୍ୱାଧୀନତା ଲାଭ ପରେ ବିଜୟୀ-ପରାଜୟୀ ଭାବ ବଦଳିଛି କି ନାହିଁ କହିବା କଠିନ । କିନ୍ତୁ ଏତିକି ବୋଧ ହୋଇ ଆସୁଥିଲା ଯେ, ସର୍ବନିମ୍ନ ସ୍ଥାନରେ ବ୍ୟକ୍ତି ସର୍ବୋଚ୍ଚ ସ୍ଥାନକୁ ଯିବାରେ କିଛ ଅସୁବିଧା ନାହିଁ । ଆଜି ଯିଏ ପିଅନ ଅଛି କାଲି ସେ ମନ୍ତ୍ରୀ ହୋଇପାରେ । ହେଉ କି ନ ହେଉ 'ହୋଇପାରିବା' ସମ୍ଭାବନାକୁ ତ କେହି ମନା କରିପାରିବେ ନାହିଁ । କବି ଶ୍ରୀ ମନମୋହନ ମିଶ୍ର ଜଣେ ଜନପ୍ରିୟ ଛାତ୍ରନେତା ଥିଲେ । ୧୯୪୨ ଆନ୍ଦୋଳନରେ ଜେଲ୍ ଯାଇ ୧୯୪୫କୁ ସେ ଫେରିଥାନ୍ତି । 'ଲ' କଲେଜରେ ସେ ଛାତ୍ର ଥିଲେ ଓ ଆଇନର ଦ୍ୱିତୀୟ ଭାଗରେ ଅଧ୍ୟୟନ କରୁଥିଲେ । ରହୁଥିଲେ ଛତ୍ରବଜାରରେ ଠିକ୍ ରେଭେନ୍‌ସା କଲେଜର ପାଚେରି ଆରପଟେ । ସେ କ୍ୟାବିନେଟ୍ ମିଶନ୍' ବୋଲି ଗୋଟିଏ ନୃତ୍ୟନାଟିକା ରଚନା କରିଥାନ୍ତି ଓ ତାହାର ପୂର୍ବାଭିନୟ କରିବା ପାଇଁ ସେ ତାଙ୍କ ଭଡ଼ାଘରେ ବନ୍ଧୁମାନଙ୍କର ପ୍ରତୀକ୍ଷା କରୁଥାନ୍ତି । ସେ ଲେଖିଥାନ୍ତି ଯେ, ପ୍ରଥମେ ତିନିଜଣ ବଣିକ ହୋଇ ଆସିଲେ । ତା'ପରେ ସୈନିକ ହୋଇ ଆସିଲେ ତିନିଜଣ ଓ ତା'ପରେ ତିନିଜଣ ସାମ୍ରାଜ୍ୟବାଦୀ ଆସିଲେ । ଏବେ କ୍ୟାବିନେଟ୍ ମିଶନ୍‌ରେ ସେହି ତିନିଜଣ ଆସିଛନ୍ତି । ଜାଲିଆନାୱାଲାବାଗ ହତ୍ୟାକାଣ୍ଡ ପରେ କ୍ୟାବିନେଟ ମିଶନ୍ ଭାରତ ସହିତ ଆପୋଷ ମିଳାମିଶା କରିବାକୁ ଆସିଥାଏ । ସେଥିରୁ ଅନୁମାନ ହେଉଥାଏ ଯେ, ରାଜଶକ୍ତି ନିଜକୁ ବିଜୟୀ ବୋଲି ନ ମଣି ସହଯୋଗୀ ବୋଲି ମଣିବାକୁ ଆରମ୍ଭ କରୁଛି । ସ୍ୱାଧୀନତା ପରେ ରାଜଶକ୍ତିକୁ ସଂଗଠିତ କରିବେ ସ୍ୱଇଚ୍ଛାରେ ଜନସାଧାରଣ । ଯଥାର୍ଥ ଅର୍ଥରେ ବିଜୟୀ ହେବେ ଜନସାଧାରଣ ଓ ତାଙ୍କ ନିର୍ଦ୍ଦେଶରେ ରାଜଶକ୍ତି ସଂଗଠିତ ହେବ । କିନ୍ତୁ ସେ ବେଳ ଆସିବାକୁ ଆହୁରି ଡେରି ଥିଲା । ମନମୋହନ ମିଶ୍ରଙ୍କ ପାଖକୁ ବସନ୍ତ ମିଶ୍ର ଯାଇ କହିଲେ- "ଦେଖ ! ରେଭେନ୍‌ସା କଲେଜ ଖେଳ ପଡ଼ିଆରେ ଗୋଟାଏ କି ପତାକା ଉଡ଼ୁଛି ।" ସକାଳ

ଦଶଟାରୁ ସେ ପତାକା ଉଡ଼ୁଛି ଓ ଆସି ଅପରାହ୍ନ ତିନିଟା ବାଜିଲାଣି । କି ପତାକା ଉଡ଼ୁଛି ବୋଲି ଦେଖିବା ପାଇଁ ମନମୋହନ ମିଶ୍ର ଦିନ ତିନିଟା ବେଳେ ଖେଳ ପଡ଼ିଆକୁ ଆସି ଦେଖିଲେ ବ୍ରିଟିଶ୍ ସରକାରଙ୍କ ୟୁନିୟନ୍ ଜ୍ୟାକ୍ ପଡ଼ିଆ ଛାତିରେ ସଦର୍ପରେ ଉଡ଼ୁଛି ଓ ତା' ପାଖରେ ପଦାରବିନ୍ଦ ମହାପାତ୍ର ଖଣ୍ଡେ ବାଉଁଶକଣିରେ ତ୍ରିରଙ୍ଗ ପତାକାଟିଏ ଖଞ୍ଜି ହାତରେ ଧରି ବୁଲୁଛନ୍ତି । କଲେଜର ଅଧ୍ୟକ୍ଷ ଏସ୍.ରାୟ୍ ରାଜ୍ୟପାଳଙ୍କ ଆଗମନକୁ ଉତ୍କଣ୍ଠାର ସହିତ ଅପେକ୍ଷା କରୁଛନ୍ତି । ମନମୋହନବାବୁ ଅଧ୍ୟକ୍ଷଙ୍କୁ କହିଲେ ଯେ, ୟୁନିୟନ୍ ଜ୍ୟାକ୍ ଉଡ଼ିବାର କାରଣ କ'ଣ ? ଅଧ୍ୟକ୍ଷ କହିଲେ- ଉଡ଼ୁଛି ବୋଲି ମୁଁ ଜାଣିନାହିଁ । ମନମୋହନବାବୁ କହିଲେ- ଯଦି ଉଡ଼ୁଛି ବୋଲି ଆପଣ ଜାଣିନାହାନ୍ତି, ତେବେ ତାକୁ ବାହାର କରିଦେଲେ କ୍ଷତି କ'ଣ ? ପଡ଼ିଆ ଭିତରେ ତମ୍ବୁ ପାଖକୁ ଆସି ମନମୋହନବାବୁ ଦେଖିଲେ ଯେ, ମଧ୍ୟବିତ୍ତ ସରକାରଙ୍କ ଆସେମ୍ବ୍ଲି ସ୍ପିକର ଲାଲ୍‌ମୋହନ ପଟ୍ଟନାୟକ ସେଠାରେ ବସିଛନ୍ତି । ତାଙ୍କ ପାଖରେ ଅଛନ୍ତି ବରିଷ୍ଠ ଦର୍ଶନ ଅଧ୍ୟାପକ ବିପିନ ବିହାରୀ ରାୟ୍ ଏବଂ ଇଂରାଜୀ ସାହିତ୍ୟର ପ୍ରଖ୍ୟାତ ଅଧ୍ୟାପକ ପି.ଏସ୍. ସୁନ୍ଦରମ୍ । ଲାଲ୍‌ମୋହନ ପଟ୍ଟନାୟକଙ୍କୁ ମନମୋହନବାବୁ ପଚାରିଲେ- ଏଇ ୟୁନିୟନ୍ ଜ୍ୟାକକୁ କାଢ଼ିଦେଲେ କ୍ଷତି କଣ ? ଲାଲ୍‌ମୋହନବାବୁ କହିଲେ- ମୁଁ ହେଉଛି ସରକାରଙ୍କ ଅଂଶବିଶେଷ । ମୁଁ କିପରି ସେକଥା କହିବି ? ବିପିନ ବିହାରି ରାୟ୍ କହିଲେ- ମନମୋହନ ! ତୁମେ ଜୀବନରେ ଯାହାସବୁ କରିଛ, ମୋତେ କ'ଣ ପଚାରିକରି କରିଛ ? କେବଳ କରିସାରିଲା ପରେ ମୁଁ ତୁମକୁ ଆଶୀର୍ବାଦ ଦେଇଛି । ଏବେ ଯାହା କରିବ ତୁମ ମନକୁ ପଚାରି କର । କରିସାରିଲା ପରେ ମୋର ଆଶୀର୍ବାଦ ଅଛି । ଏହି ସମୟରେ ବରିଷ୍ଠ ସାହିତ୍ୟିକ ଆର୍ତ୍ତବଲ୍ଲଭ ମହାନ୍ତି ଆସି ପହଞ୍ଚିଲେ ଓ ତାଙ୍କ କଥାରୁ ଜଣାପଡ଼ୁଥିଲା ଯେ, ସେ ମଧ୍ୟ ସମର୍ଥନ ଜଣାଉଛନ୍ତି । ସେ କହିଲେ- ତୁମେ ଯହିଁ ପାଇଁ ଲସର ପସର ଆମେ ସେ କଥାଟି ଜାଣି । ସେତେବେଳକୁ ଅଧ୍ୟକ୍ଷ କହିଦେଇଥା'ନ୍ତି ଯେ, ଜାତୀୟ ତ୍ରିରଙ୍ଗା ପତାକା ମଧ୍ୟ ଉଡ଼ୁ ଓ ଖଣ୍ଡିଏ ବାଉଁଶ ଅଗରେ ଜାତୀୟ ପତାକା ଯେପରି ଭାବରେ ଉଡ଼ୁଥାଏ, ତାହା ମନମୋହନବାବୁ ସହ୍ୟ କରିପାରିଲେ ନାହିଁ । କାହିଁ ୟୁନିୟନ୍ ଜ୍ୟାକର ଦର୍ପିଷ୍ଠ ଲହର ଓ ଉଚ୍ଚ ଅବସ୍ଥିତି ଓ କାହିଁ ଦୟନୀୟ ଭାବରେ ଜାତୀୟ ତ୍ରିରଙ୍ଗ ପତାକାର ଅବସ୍ଥାନ ! ମନମୋହନବାବୁ ୟୁନିୟନ୍ ଜ୍ୟାକର ପତାକାସ୍ତମ୍ଭ ଛୁଇଁବାମାତ୍ରେ ତାହା ଟଳିପଡ଼ିଲା, କାରଣ ତାହା ବାଲି ଉପରେ ଥିଲା ଓ ବିଶେଷ ସୁଦୃଢ଼ ନଥିଲା । ଆଖାପାଖରେ ପ୍ରାୟ ଚାରି ହଜାର ଛାତ୍ର ଓ ଜନତା ଥିଲେ । ସେମାନେ ଧାଇଁଆସି ୟୁନିୟନ୍ ଜ୍ୟାକ୍‌କୁ ଚିରିଦେଲେ । ସତେ ଯେପରି କୌଣସି କାରଣରୁ ବାଘ ତଳେ ପଡ଼ିଗଲେ ଅଦୂରରେ ଅପେକ୍ଷା କରି ରହିଥିବା ଅନ୍ୟାନ୍ୟ ଜୀବମାନେ ତା' ଉପରେ ପ୍ରତିହିଂସା ସାଧିବାକୁ ସୁଯୋଗ ପାଇଯାଆନ୍ତି । ବ୍ରିଟିଶ୍‌ରାଜର ପ୍ରଭାବଶାଳୀ ରାଜ୍ୟପାଳଙ୍କ ଠିକ୍ ଆସିବାର ଅବ୍ୟବହିତ ପୂର୍ବରୁ ଏଇ ଅଘଟଣ ଘଟିଗଲା । କିନ୍ତୁ

ଏ ଅଘଟଣକୁ ସମସ୍ତେ ହୃଦୟରେ ସ୍ୱାଗତ କରୁଥିଲେ । ମନମୋହନବାବୁଙ୍କୁ କୋଡ଼ିଏ ଟଙ୍କା ଓ ତାଙ୍କ ଅନ୍ୟ ଦୁଇ ବନ୍ଧୁଙ୍କୁ ଦଶଟଙ୍କା କରି ଜୋରିମାନା କରାଗଲା । ମନମୋହନବାବୁ ନିଜେ ସ୍ୱୀକାର କରିଛନ୍ତି ୟୁନିୟନ୍ ଜ୍ୟାକ୍ ଅପମାନିତ ହେଉ ତାହା ତାଙ୍କର ଇଛା ନଥିଲା , କିନ୍ତୁ ଅଦୃଢ଼ ଭିତ୍ତିରୁ ୟୁନିୟନ୍ ଜ୍ୟାକ୍ ସ୍ତମ୍ଭ ଟଳିପଡ଼ିଲା । ତେଣିକି ଯାହା ଘଟିଗଲା ସେଥିରେ ମନମୋହନ ମିଶ୍ରଙ୍କର ହାତ ନଥିଲା । ଜନ-ଉନ୍ମାଦନା କ୍ଷେତ୍ରରେ ଏମିତି ଘଟଣାବଳୀ ହାତଛଡ଼ା ଓ ଖାପଛଡ଼ା ହୋଇଯାଏ । ସେକଥା ମନମୋହନବାବୁ ଅନୁଭବ କରିଥିବେ । କିନ୍ତୁ ସେ ନିଜ ପାଇଁ କୌଣସି କ୍ଷମାଭିକ୍ଷା କଲେ ନାହିଁ । ମନମୋହନବାବୁ ଓ ତାଙ୍କ ବନ୍ଧୁମାନେ କାରାବରଣ କଲେ । ବିକ୍ଷୁବ୍ଧ ଛାତ୍ର ସମାଜ ଏହା ବିରୋଧରେ ପ୍ରତିବାଦ ଆରମ୍ଭ କଲେ । ପ୍ରାୟ ପନ୍ଦର ଦିନ ଧରି ବିଭିନ୍ନ ମହାବିଦ୍ୟାଳମାନଙ୍କରେ ପ୍ରତାପୀ ବ୍ରିଟିଶ୍ ରାଜ ବିରୋଧରେ ଅଗ୍ନି ଉଦ୍‌ଗାର କଲେ ଛାତ୍ରମାନେ । ଦଳକୁ ଦଳ ଜେଲ୍ ଗଲେ । ସେତିକିବେଳେ ବିନାୟକ ଚୌଧୁରୀ ମଧ୍ୟ ଜେଲକୁ ଗଲେ । ଡକ୍‌ଟର ହରେକୃଷ୍ଣ ମହତାବ ଥିଲେ ପ୍ରଧାନମନ୍ତ୍ରୀ ଓ ଶିକ୍ଷାମନ୍ତ୍ରୀ ଥିଲେ ପଣ୍ଡିତ ଶ୍ରୀ ଲିଙ୍ଗରାଜ ମିଶ୍ର । ନବକୃଷ୍ଣ ଚୌଧୁରୀ ଉପପ୍ରଧାନମନ୍ତ୍ରୀ ଥିଲେ । ଯେଉଁଦିନ ବିନାୟକଙ୍କୁ ବନ୍ଦୀ କରାଗଲା ଓ ଟ୍ରକ୍‌ରେ ଜେଲକୁ ନିଆଗଲା , ସେଦିନ ମୁଁ ତାଙ୍କ ପଛେ ପଛେ ସାଇକେଲରେ କଟକ ଜେଲର ପାଚେରି ଦୁଆର ଟପିଗଲି । ସମ୍ମୁଖରେ ବଳିଷ୍ଠ ଲୁହା ରେଲିଂ । ଯେତେବେଳେ କବାଟ ବନ୍ଦ ହେଲା ମୁଁ ବଡ଼ପାଟିରେ ହୁଙ୍କାର ଦେଇ କହିଲି, ଏ ଆନ୍ଦୋଳନ କେବେହେଲେ ବନ୍ଦ ହେବନାହିଁ; ବିନାୟକ ନିଶ୍ଚିନ୍ତ ରୁହ , ଆମେ ଏ ଆନ୍ଦୋଳନ ଚଳାଇବୁ । ଆମ ଭିତରୁ କୃଷ୍ଣମୋହନ ଦାସ ବୋଲି ଜଣେ ଛାତ୍ର ଆଗରୁ ଜେଲରେ ଥିଲେ । ସେ ପାଖରେ ଥିବା ଅଶ୍ୱତ୍‌ଥ ଗଛ ଉପରକୁ ଉଠିଯାଇ ଚିତ୍କାର କଲେ ମୁଁ ଜେଲ୍ ଭିତରେ ଅଛି ସତ , କିନ୍ତୁ ଦେଖ ମୁଁ ଶୂନ୍ୟରେ ଉଡ଼ୁଛି । ମୋତେ କିଏ ବନ୍ଦୀ କରିପାରିବ ? ଜେଲ ଭିତରେ ଥିବା ଅଶ୍ୱତ୍‌ଥ ବୃକ୍ଷର ଶାଖା ରାସ୍ତାକୁ ଛାୟା କରୁଥିଲା । ମୋତେ ଦୁଇଜଣ କନେଷ୍ଟବଳ ଗୋଡ଼ାଇଲେ । ମୁଁ ସାଇକେଲରେ ଜନସ୍ରୋତ ମଧ୍ୟରେ ଅଦୃଶ୍ୟ ହୋଇଗଲି । ଆନ୍ଦୋଳନ ଚଳାଇବାକୁ ହେଲେ ଏଭଳି ଖୋଲାଖୋଲି ମୁକାବିଲା କରିବା ଉଚିତ ନୁହେଁ ବୋଲି ଅନୁଭବ କଲି । ଆନ୍ଦୋଳନ ଚାଲୁ ରହିଲା ।

•

---

***ଜାଣେ ଅନୁଭବୀ ଅନୁଭବରେ,***

ଓଡ଼ିଶା ବୁକ୍‌ଷ୍ଟୋର, କଟକ, ୨୦୦୨

# ରେଭେନ୍‌ସାରେ ଶିକ୍ଷା

## ବାଙ୍କବିହାରୀ ଦାସ

ରେଭେନ୍‌ସା କଲେଜରେ ବି.ଏ.ରେ ନାମ ଲେଖାଇଲି । ଅର୍ଥଶାସ୍ତ୍ର ପ୍ରତି ପ୍ରବଳ ଆଗ୍ରହ, ଅଙ୍କ ମଧ୍ୟ ଛାଡ଼ିବାକୁ ଚାହେଁନା । ସେତେବେଳେ ବିଭିନ୍ନ ବିଷୟରେ ଯେଉଁ ପାଠ୍ୟକ୍ରମ ଥିଲା, ସେଥରେ ଅଙ୍କ, ଅର୍ଥନୀତି ଓ ଅର୍ଥନୀତି ଅନର୍ସ, ଏପରି ନଥିଲା । ସେହିପରି ଏକ ସଂକଟରେ ପଡ଼ିଥିଲି ଆଇ.ଏ. ପଢ଼ିଲାବେଳେ । ଅଙ୍କ, ଅର୍ଥନୀତି ଓ ସଂସ୍କୃତ ଏପରି ବିଷୟରେ ସମଷ୍ଟି ପାଠ୍ୟକ୍ରମରେ ନଥିଲା । ସ୍ୱର୍ଗତଃ ପ୍ରାଣକୃଷ୍ଣ ପରିଜା ରେଭେନ୍‌ସା କଲେଜର ପ୍ରିନିସ୍‌ପାଲ ଥିଲେ । ଭାରି କଡ଼ା ଲୋକ, ତାଙ୍କ ଆଗକୁ ଛାତ୍ରମାନେ କଣ, ଅଧ୍ୟାପକ ମାନେ ଯିବାକୁ ଡରନ୍ତି । କିନ୍ତୁ ଅତ୍ୟନ୍ତ ଛାତ୍ରବତ୍ସଳ । ଆଇ.ଏ. ପଢ଼ିବାବେଳେ ମୋ ଇଚ୍ଛାକୁ ଚାହିଁ ପାଠ୍ୟକ୍ରମ କରିଦେଲେ । ବି.ଏ. ପଢ଼ିବାବେଳେ ସେହି ସାହସରେ ତାଙ୍କୁ ଭେଟିଲି ଏବଂ ଅର୍ଥନୀତି ସହିତ ଅଙ୍କ ବିଷୟ ଯୋଡ଼ିବାପାଇଁ ନିବେଦନ କଲି । ପ୍ରଥମେ ଏପରି ପାଠ୍ୟକ୍ରମ ପାଇଁ ରାଜି ହେଲେ ନାହିଁ କାରଣ ମୁଁ ଏକମାତ୍ର ଏହି ଗ୍ରୁପ୍‌ର ଛାତ୍ର ହେବି । ମୁଁ ଅତ୍ୟନ୍ତ ମନ ଦୁଃଖରେ ଫେରିଆସିବାରୁ ସେ ମୋତେ ଡାକି ମୋର ଇଚ୍ଛା ଅନୁସାରେ ସେପରି ବିଷୟ ସମଷ୍ଟିରେ ପାଠ୍ୟକ୍ରମ ପ୍ରବର୍ତ୍ତନ କଲେ ।

ବି.ଏ. ଶ୍ରେଣୀରେ ପଢ଼ିଲାବେଳେ ରାଜନୀତି ପ୍ରତି ଆକର୍ଷଣ ଅଧିକରୁ ଅଧିକତର ହେଲା । ରେଭେନ୍‌ସା କଲେଜ ହଲରେ ସେତେବେଳେ ଓଡ଼ିଶା ବିଧାନସଭା ବସୁଥିଲା । ସେଥିପାଇଁ ସମୟେ ସମୟେ ବିଧାନସଭା ବୈଠକ ଦେଖିବାପାଇଁ ଯାଉଥିଲି । ନବକୃଷ୍ଣ ଚୌଧୁରୀଙ୍କ ବକ୍ତୃତା ମୋତେ ସବୁଠାରୁ ଭଲ ଲାଗୁଥିଲା କାରଣ ତାଙ୍କର ଚିନ୍ତାଧାରା ଲୋକାଭିମୁଖୀ ଥିଲା ।

ଏହି ସମୟରେ ଜୟପ୍ରକାଶ ନାରାୟଣ ଓଡ଼ିଶା ଗସ୍ତରେ ଆସିଥିଲେ । ରେଭେନ୍‌ସା କଲେଜରେ ରାସାୟନିକ ବିଭାଗର ବିଶିଷ୍ଟ ଅଧ୍ୟାପକ ବି.ପ୍ରସାଦ ତାଙ୍କର ଅନ୍ତରଙ୍ଗ ବନ୍ଧୁ ଥିବାରୁ ସେ କଟକ ଆସିଲେ ତାଙ୍କର ଅତିଥି ହୁଅନ୍ତି । ରେଭେନ୍‌ସା କଲେଜରେ ସେ ସାଧାରଣତଃ ଦେଶର ରାଜନୀତି ଓ କଂଗ୍ରେସ ସୋସାଲିଷ୍ଟ ମାନଙ୍କର କାର୍ଯ୍ୟକ୍ରମ ବିଷୟରେ ଛାତ୍ରମାନଙ୍କୁ ଉଦ୍‌ବୋଧନ ଦେଉଥିଲେ । ତେଣୁ ଜାତୀୟତାବାଦୀ ଛାତ୍ରମାନଙ୍କର କଂଗ୍ରେସ ସମାଜବାଦୀମାନଙ୍କ ପ୍ରତି ଆକର୍ଷଣ ବୃଦ୍ଧି ପାଉଥିଲା ।

ଓଡ଼ିଶାରେ ଆମମାନଙ୍କର ନବକୃଷ୍ଣ ଚୌଧୁରୀ ଓ ତାଙ୍କ ସହଯୋଗୀ ସୋସାଲିଷ୍ଟ ମାନଙ୍କ ପ୍ରତି ଆକର୍ଷଣ ଥିଲା । ମୁଁ ଓ ମୋର ଦୁଇ ଘନିଷ୍ଠ ସାଙ୍ଗ ଭୁବନାନନ୍ଦ ରାୟ ଓ ବିଷ୍ଣୁ ରାୟ ପ୍ରାୟ ପ୍ରତିଦିନ ତେଲେଙ୍ଗୀବଜାରରେ ଥିବା ୟୁ.ପି.ଆଇ. ନାମକ ସଂବାଦ ସରବରାହ ଏଜେନ୍‌ସି ଅଫିସକୁ ବିଭିନ୍ନ ସମ୍ବାଦପତ୍ର ପଢ଼ିବାକୁ ଯାଉଁ । ଏହି ସଂସ୍ଥାର ଓଡ଼ିଶା ଦାୟିତ୍ୱରେ ଥାଆନ୍ତି ସୁରେନ୍ଦ୍ର ନାଥ ଦ୍ୱିବେଦୀ, ସେ ନବକୃଷ୍ଣ ଚୌଧୁରୀଙ୍କ ସହଯୋଗୀ ଥିଲେ ଓ କଂଗ୍ରେସ ସୋସାଲିଷ୍ଟ ପାର୍ଟିର ଜଣେ ମୁଖ୍ୟ ସଭ୍ୟଥିଲେ, ସେହି ଅଫିସରେ ତାଙ୍କ ସହିତ ସଂପର୍କ ହୁଏ । ସେତେବେଳେ ସେମାନଙ୍କର ମୁଖପତ୍ର କୃଷକ ପତ୍ରିକା ପ୍ରତି ସପ୍ତାହରେ ପ୍ରକାଶିତ ହୋଇଥାଏ । ଜାତୀୟ ଆନ୍ଦୋଳନ ଛଡ଼ା ଗଡ଼ଜାତ ଆନ୍ଦୋଳନ ଓ କୃଷକ ଆନ୍ଦୋଳନରେ ଏହା ପ୍ରଧାନବାହକ ଥାଏ । ତେଣୁ କଲେଜ ଜୀବନରେ ରାଜନୀତି ପ୍ରତି ବୌଦ୍ଧିକ ଆକର୍ଷଣ ଥିଲେ ମଧ୍ୟ ବାମପନ୍ଥୀ ଚିନ୍ତାଧାରା ପ୍ରତି ଆସକ୍ତି ବୃଦ୍ଧି ପାଉଥାଏ ।

୧୯୩୯ ସାଲରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହେଲା । ଏହା ସାମ୍ରାଜ୍ୟବାଦୀ ଯୁଦ୍ଧ ହିସାବରେ ଆମର କୌଣସି ପକ୍ଷ ପ୍ରତି ସହାନୁଭୂତି ନଥାଏ । ଜର୍ମାନୀ ଯେତେବେଳେ ହିଟଲରଙ୍କ ନେତୃତ୍ୱରେ ସୋଭିଏତ୍ ରୁଷ ଉପରେ ଆକ୍ରମଣ କଲା, ସେତେବେଳେ ଭାରତୀୟ କମ୍ୟୁନିଷ୍ଟ ପାର୍ଟି ସେହି ଯୁଦ୍ଧକୁ ଜନଯୁଦ୍ଧ ବୋଲି ଆଖ୍ୟା ଦେଇ ଇଂଲଣ୍ଡ, ଆମେରିକା ଓ ରୁଷ ସପକ୍ଷରେ ଫାସିଜିମ ବିରୋଧରେ ପ୍ରଚାର ଆରମ୍ଭ କଲେ । ଆମେ ଜାତୀୟବାଦୀ ଛାତ୍ରମାନେ ଏପରି ପ୍ରଚାରରେ ପ୍ରଭାବିତ ହେଲୁନାହିଁ । ଭାରତ ସ୍ୱାଧୀନତା ନ ପାଇଲା ପର୍ଯ୍ୟନ୍ତ ଏହି ଯୁଦ୍ଧରେ କୌଣସି ଗୁଣାତ୍ମକ ପରିବର୍ତ୍ତନ ହୋଇ ନାହିଁ ବୋଲି ଆମେ ପ୍ରଚାର କରୁଥିଲୁ । ଏହି ଅବସ୍ଥାରେ ୧୯୪୨ରେ କଲେଜ ୟୁନିୟନ ନିର୍ବାଚନ ହେଲା । ଏକ ପକ୍ଷରେ ଜାତୀୟତାବାଦୀ ଛାତ୍ର ଗୋଷ୍ଠୀ, ଅନ୍ୟ ଦିଗରେ କମ୍ୟୁନିଷ୍ଟ ସମର୍ଥିତ ଛାତ୍ରଗୋଷ୍ଠୀ । ଶେଷରେ ଜାତୀୟତାବାଦୀ ଗୋଷ୍ଠୀଙ୍କର ବିଜୟ ହେଲା ଏବଂ ଆମର ସଭାପତି ପଦ ପ୍ରାର୍ଥୀ ପ୍ରଦୀପ୍ତ କିଶୋର ଦାସ ଜିତିଲେ । ଯଦିଓ ବୌଦ୍ଧିକ ଦୃଷ୍ଟିରୁ ରାଜନୀତିରେ ଅଂଶଗ୍ରହଣ କରୁଥିଲି, ଏହି ଛାତ୍ର ୟୁନିୟନ ନିର୍ବାଚନରେ ମୁଁ ପ୍ରତ୍ୟକ୍ଷ ଭାଗ ନେଇଥିଲି ।

ଏହା ସତ୍ତ୍ୱେ ବି ମୁଁ ଯେ ରାଜନୀତିରେ ପ୍ରତ୍ୟକ୍ଷ ଅଂଶ ଗ୍ରହଣ କରିବି ଏହା କଳ୍ପନାର ବାହାରେ ଥିଲା । କିନ୍ତୁ ଗଣତାନ୍ତ୍ରିକ ସମାଜବାଦ ପ୍ରତି ଅନୁରକ୍ତି ଓ ଜୀବନର ମୂଲ୍ୟବୋଧ ପ୍ରତି ଅଟଳ ବିଶ୍ୱାସ-ଏହି ଦୁଇଟି ଚାରିତ୍ରିକ ଗୁଣ ସଂଗ୍ରହ କରିପାରିଥିଲି ।

## ଦେଶବ୍ୟାପୀ ବିଦ୍ରୋହ

କଂଗ୍ରେସ ନେତୃବୃନ୍ଦଙ୍କ ଗିରଫଦର ସମ୍ବାଦ ଅଗଷ୍ଟ ୯ ତାରିଖ ଦିନ ପ୍ରଚାରିତ ହେବା ସଙ୍ଗେ ସଙ୍ଗେ ବମ୍ବେ ସହରବାସୀ ଏକମନରେ ପ୍ରତିବାଦର ସ୍ୱର ଉତ୍ତୋଳନ କଲେ । ସଭା, ଶୋଭାଯାତ୍ରା ଓ ବିକ୍ଷୋଭ ଆରମ୍ଭ ହୋଇଗଲା । ପୋଲିସ ତରଫରୁ ମଧ୍ୟ ଅକଥନୀୟ ଦମନ,

ଲୁହବୁହା ଗ୍ୟାସ, ଲାଠି, ଗୁଳିର ସୁଅ ଛୁଟିଲା। ସ୍କୁଲ, କଲେଜ, କଳକାରଖାନା, ଯାନବାହାନ ଚଳାଚଳ ବନ୍ଦ ହୋଇଗଲା। ସେହିଦିନ ଏହି ଆନ୍ଦୋଳନ ଭାରତର ବିଭିନ୍ନ ଛୋଟ ବଡ଼ ସହରକୁ ବ୍ୟାପିଗଲା। ଏହା ଏକ ସ୍ୱୟଂସ୍ଫୂର୍ତ୍ତ ଆନ୍ଦୋଳନ ଥିଲା ଏବଂ ଯୁବକ ଓ ଛାତ୍ରମାନେ ମୁଖ୍ୟତଃ ସର୍ବତ୍ର ଆନ୍ଦୋଳନ ପୁରୋଭାଗରେ ଥିଲେ ଓ ପୋଲିସର ଅତ୍ୟାଚାର ଓ ଗୁଳିର ଶିକାର ହେଲେ। ଆସ୍ତେ ଆସ୍ତେ ସହରର ଗାଁ ଗହଳକୁ ଏହି ଆନ୍ଦୋଳନ ବ୍ୟାପିଗଲା। ସରକାରୀ କଳକୁ ଅଚଳ କରିବାକୁ ଯାତାୟାତ ପଥ, ଥାନା, ସରକାରୀ ଅଫିସ ଘେରାଉ ଓ ଆକ୍ରମଣ ଆରମ୍ଭ ହେଲା। ଏକ ନେତୃତ୍ୱବିହୀନ ଜନସାଧାରଣ ବିଦ୍ରୋହ କରି ଉଠିଲା ବେଳକୁ କାଁ ଭାଁ ହିଂସା ଆଚରଣ କରୁଥିଲେ। କିନ୍ତୁ ଏହାର ଜବାବ ପୋଲିସ ଓ ସୈନ୍ୟବାହିନୀଙ୍କଠାରୁ ମିଳୁଥିଲା ଲାଠି, ଗୁଳି ଓ ଜଘନ୍ୟ ଅତ୍ୟାଚାରରେ। ସାମାନ୍ୟ ସରକାରୀ ଧନ ନଷ୍ଟ ହେଉଥିଲେ ହେଁ ଗାଁକୁ ଗାଁ ପିଟୁଣି ଟିକସ ବସି ଅର୍ଥ ଆଦାୟ କରାଯାଉଥିଲା। ଏ ସବୁ ଅକଥନୀୟ ଦମନଲୀଳା ସତ୍ତ୍ୱେ ହଜାର ହଜାର ଲୋକ ପ୍ରାଣବଳିଦେଲେ ଓ ଅନ୍ତିମ ସଂଗ୍ରାମରେ ଦରିଦ୍ରଠାରୁ ଆରମ୍ଭକରି ସମସ୍ତେ ଭାଗନେଲେ, ପ୍ରତ୍ୟକ୍ଷ ଭାବରେ ନହେଲେ ପରୋକ୍ଷ ଭାବରେ।

ଏହି ଆନ୍ଦୋଳନର ପ୍ରଭାବ ଭାରତର ପ୍ରତ୍ୟେକ ଜାତୀୟବାଦୀ ଛାତ୍ରକୁ ଅସ୍ଥିର କରିଦେଲା। ମୁଁ ସେତେବେଳେ ରେଭେନ୍‌ସା କଲେଜର ଚତୁର୍ଥ ବର୍ଷର ଛାତ୍ର। ଓଡ଼ିଶାରେ ଏକମାତ୍ର କଲେଜ, ଯେଉଁଠିକି ବି.ଏ. ଶେଷ ପର୍ଯ୍ୟନ୍ତ ପଢ଼ା ହେଉଥାଏ। ତେଣୁ ସାରା ଓଡ଼ିଶାର ଛାତ୍ରମାନେ ଉଚ୍ଚଶିକ୍ଷା ପାଇଁ ଏହି କଲେଜକୁ ଆସନ୍ତି। ଉଚ୍ଚଶିକ୍ଷା ପ୍ରସାର ସୀମିତ ଥଲେ ହେଁ ଏହା ଏକ ବୃହତ୍ ସରକାରୀ କଲେଜ ଥିଲା ଏବଂ ପାଟଣା ବିଶ୍ୱବିଦ୍ୟାଳୟ ଅଧୀନରେ ଖ୍ୟାତି ଅର୍ଜନ କରିଥିଲା। ମୋଟ ଛାତ୍ର ସଂଖ୍ୟା ସେତେବେଳେ ଥିଲା ବାରଶହରୁ ଅଧିକ। ତେଣୁ ଓଡ଼ିଶାର ଏକମାତ୍ର ଉଚ୍ଚଶିକ୍ଷାକେନ୍ଦ୍ର ନିଷ୍ଚଳ ହୋଇ କିପରି ରୁହନ୍ତା ? କିନ୍ତୁ କଣ କରାଯିବ, ତାହା ଜାତୀୟବାଦୀ ଛାତ୍ରମାନେ ମଧ୍ୟ ସ୍ଥିର କରିପାରୁ ନଥିଲେ। ଓଡ଼ିଶା କଂଗ୍ରେସରେ ଯେଉଁମାନେ ଜଣାଶୁଣା ଥିଲେ, ସେମାନେ ବମ୍ବେଠାରେ ବା ଓଡ଼ିଶା ଭିତରେ ଗିରଫ ହୋଇଯାଇଥାଆନ୍ତି।

ତେଣୁ ଆମ୍ଭେମାନେ ସ୍ଥିରକଲୁ ଯେ କଲେଜକୁ ଧର୍ମଘଟ କରି ବନ୍ଦ କରିଦେବା, କିନ୍ତୁ ସେପରି ସଙ୍ଗଠିତ ଶକ୍ତି ନଥାଏ ଧର୍ମଘଟକୁ ସଫଳ କରିବାକୁ। ଏକେତ ସରକାରୀ କଲେଜ, ଦ୍ୱିତୀୟତଃ ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ କମ୍ୟୁନିଷ୍ଟମାନେ ତାଙ୍କର ନୀତିପରିବର୍ତ୍ତନ କରି ସେହି ଯୁଦ୍ଧକୁ ଜନଯୁଦ୍ଧ ଆଖ୍ୟାଦେଇ ବ୍ରିଟିଶ ସରକାର ସହିତ ସହଯୋଗ କରୁଥାଆନ୍ତି। ତେଣୁ କମ୍ୟୁନିଷ୍ଟ ସମର୍ଥକ ଛାତ୍ରମାନେ ଏପରି ଏକ ଧର୍ମଘଟକୁ ବିଫଳ କରାଇବାକୁ ପ୍ରାଣପାତ ଉଦ୍ୟମ କରିବେ, ଏହା ଆମେ ଜାଣିନେଇଥାଉ। ସେଥିପାଇଁ ପ୍ରଥମେ ସ୍ଥିର ହେଲା ଯେ ପ୍ରତିଦିନ ସନ୍ଧ୍ୟାରେ କଲେଜ ସାମ୍ନାରେ ଛାତ୍ରମାନଙ୍କ ତରଫରୁ ସାଧାରଣସଭା ହେବ ଏବଂ ଜଣେ ଜଣେ

ବକ୍ତୃତାଦେଇ ସରକାରୀ କଳକୁ ଅଚଳ କରିବା, କଲେଜ, ସ୍କୁଲ ବନ୍ଦ କରିବା ପ୍ରଭୃତି କାର୍ଯ୍ୟକ୍ରମନେଇ ଲୋକମାନଙ୍କୁ ଉତ୍ତେଜିତ କରାଇବେ । ଏହିପରି ଭାବରେ ପ୍ରତ୍ୟେକଦିନ ଜଣେ ଜଣେ ବକ୍ତୃତା ଦେଇ ଗିରଫ ହେଲେ । ସେହି କାର୍ଯ୍ୟକ୍ରମ ଚାଲିଲା ଏବଂ ଆସ୍ତେ ଆସ୍ତେ କଲେଜ ଓ ସ୍କୁଲ ଛାତ୍ରମାନଙ୍କ ମଧ୍ୟରେ ଉତ୍ତେଜନା ବୃଦ୍ଧି ପାଇଲା । ଏହିପରି ବକ୍ତୃତା ଦେଇ ଦିନେ ଜୟପାଲଜୀ, ଆଉଦିନେ ଦେବେନ୍ଦ୍ର ମହାନ୍ତି ପ୍ରମୁଖ ଗିରଫ ହେଲେ । ଜୟପାଲଜୀ ବହୁଦିନ ଜେଲରେ ରହିଲେ ଓ ପରେ ମୁକ୍ତିଲଭି ଉଚ୍ଚଶିକ୍ଷା ଲାଭକଲେ । ପରବର୍ତ୍ତୀ ଜୀବନରେ ଓଡ଼ିଶା ବିଧାନସଭାର ଅଫିସରେ ଯୋଗଦେଇ ଡେପୁଟି ସେକ୍ରେଟେରୀ ହୋଇ ଅବସର ଗ୍ରହଣ କଲେ । ସେ ଜଣେ ସଙ୍ଗୀତଜ୍ଞ ଥିଲେ ଓ ସୁଲଳିତ କଣ୍ଠରେ ଗୀତଗାଇ ଜେଲବାସୀଙ୍କୁ ମୁଗ୍ଧ କରୁଥିଲେ । ଚାକିରିରୁ ଅବସର ଗ୍ରହଣ କରିବା ପୂର୍ବରୁ ତୁଳସୀ ଦାସ ରାମାୟଣକୁ ଇଂରାଜୀଭାଷାରେ କବିତାରେ ଆକ୍ଷରିକ ଅନୁବାଦ କରିଛନ୍ତି ଏବଂ ଏହା ଅତି ଉଚ୍ଚକୋଟୀର ହୋଇଛି । ବୋଧହୁଏ କବିତାରେ ଇଂରାଜୀ ଅନୁବାଦ ଭାରତବର୍ଷରେ ତାଙ୍କର ହିଁ ପ୍ରଥମ । ଶ୍ରୀ ଦେବେନ୍ଦ୍ର ମହାନ୍ତି ଜେଲ ମୁକ୍ତହୋଇ ବହୁଦିନ ପର୍ଯ୍ୟନ୍ତ ସାମ୍ବାଦିକ ଜୀବନ ଯାପନ କଲେ ଓ ପ୍ରଜାତନ୍ତ୍ର ସହିତ ବିଶେଷଭାବରେ ସଂପୃକ୍ତ ଥିଲେ । ସେ ଏତେ ଦେଶଭକ୍ତ ଥିଲେ ଯେ ଅନେକ ସମୟରେ ବ୍ରିଟିଶ ସରକାର ବିରୋଧୀ ହୋଇ ହିଟଲର ପ୍ରଶଂସକ ହୋଇ ପଡୁଥିଲେ । ଜେଲରେ ଥିବାବେଳେ ଦ୍ୱିତୀୟ ମହାଯୁଦ୍ଧ ଚାଲିଥାଏ । ତେଣୁ ଜର୍ମାନୀ ଓ ଜାପାନ ଯେତେବେଳେ ଇଂରେଜ ଏବଂ ମିତ୍ରଶକ୍ତିମାନଙ୍କୁ ପରାଭୂତ କରୁଥିଲା, ସେତେବେଳେ ସେ ଉଲ୍ଲସିତ ହେଉଥିଲେ । ଏହାପଛରେ ତାଙ୍କ ଦେଶପ୍ରୀତିର ତୀବ୍ରତା ହିଁ ଥିଲା, ଅନ୍ୟ କିଛି ନୁହେଁ ।

ଅଗଷ୍ଟ ଆନ୍ଦୋଳନ ଆରମ୍ଭ ହେବାପରେ ସୁରେନ୍ଦ୍ର ନାଥ ଦ୍ୱିବେଦୀ ମାଳତୀ ଚୌଧୁରୀ ବମ୍ବେଠାରେ ଗିରଫ ନ ହୋଇ ଲୁଚିଲୁଚି ଓଡ଼ିଶା ଚାଲି ଆସିଲେ । ବାଟରୁ ଦ୍ୱିବେଦୀ ଏକ ପୋଷ୍ଟକାର୍ଡରେ ମୋତେ ଚିଠିଟିଏ ଦେଇ ଲେଖିଥାଆନ୍ତି କେବଳ ଗାନ୍ଧିଜୀଙ୍କର "କର ବା ମର" ଶେଷବାର୍ତ୍ତାଟି ଲେଖି । ମୋର କ'ଣ କରିବା ଉଚିତ ବା ନାହିଁ, ସେଥିରେ କିଛି ପରାମର୍ଶ ନ ଥାଏ । ଏ ଚିଠି ମୋତେ ବୋଧହୁଏ ଅଗଷ୍ଟ ଏଗାର ବା ତେର ତାରିଖରେ ମିଳିଲା । ମୁଖ୍ୟ ଲୋକମାନଙ୍କର ଚିଠି ଯାଞ୍ଚ ହେଉଥାଏ, କିନ୍ତୁ ମୁଁ ମୁଖିଆ ଛାତ୍ରନେତା ବି ନଥାଏ ଯଦିଓ ରାଜନୀତିରେ ଭାଗ ନେଉଥାଏ । ତେଣୁ ସେ ଚିଠି ଯାଞ୍ଚକାରୀ ଅଫିସରଙ୍କ ଦୃଷ୍ଟି ଆକର୍ଷଣ କରିନଥିବ ନିଶ୍ଚୟ । ଚିଠି ସିନା ମିଳିଲା, କିନ୍ତୁ କରିବୁ କ'ଣ, କିଏ ପରାମର୍ଶ ଦେବ । ତେଣୁ କଲେଜରେ ଆମେ ଯେତିକି ପ୍ରୋଗ୍ରାମ କରିଥିଲୁ, ସେଥିରେ ହିଁ ଭାଗନେବା ମୋର ଏକମାତ୍ର କାର୍ଯ୍ୟ ଥାଏ ।

କଲେଜକୁ ବନ୍ଦ କରିବାକୁ ହେଲେ ଆହୁରି କଠୋର କାର୍ଯ୍ୟକ୍ରମ ହାତକୁ ନେବାକୁ ହେବ । ଏହି କାମରେ ଶ୍ରୀ ପ୍ରଦୀପ୍ତ କିଶୋର ଦାସ ପ୍ରମୁଖ କେତେକଣ ଛାତ୍ର ଆଗୁଆ ଥାଆନ୍ତି । ମୁଁ

ସେମାନଙ୍କ ସହଯୋଗୀ ଥାଏ । ଏକ ଶ୍ରେଣୀରେ ମୁଁ ସହପାଠୀ ଥିଲି ରେଭେନ୍‌ସା କଲେଜିଏଟ୍ ସ୍କୁଲର ଅଷ୍ଟମ ଶ୍ରେଣୀରୁ । ପ୍ରଦୀପ୍ତବାବୁ କଲେଜ ହଷ୍ଟେଲରେ ଥାଆନ୍ତି, ମୁଁ ମାଣିକଘୋଷ ବଜାରର କଲ୍ୟାଣପୁର ମେସ୍‌ରେ । ପରେ ପ୍ରଦୀପ୍ତବାବୁ ଉଚ୍ଚଶିକ୍ଷା ସମାପ୍ତ କରି ଓଡ଼ିଶା ଛାତ୍ର କଂଗ୍ରେସର ସଭାପତି ହେଲେ, ଆମ ସହିତ କଂଗ୍ରେସ ତ୍ୟାଗକରି ସୋସାଲିଷ୍ଟ ଆନ୍ଦୋଳନର ନେତା ହେଲେ ଓ ଓଡ଼ିଶା ବିଧାନସଭାର ସଭ୍ୟ ହିସାବରେ ପ୍ରତିଷ୍ଠା ଅର୍ଜନ କରିଥିଲେ । ପରେ ଜନତାପାର୍ଟି ସରକାର ଅମଳରେ ୧୯୭୭ ମସିହାରେ ଶିକ୍ଷାମନ୍ତ୍ରୀ ହେଲେ ।

ଦିନେ ମସୁଧା କରାଗଲା ଯେ କଲେଜ ଅଫିସକୁ ଘେରାଉ କରାଯିବ ଏବଂ ଅଧ୍ୟକ୍ଷଙ୍କଠାରୁ ଆରମ୍ଭକରି କଲେଜ ଅଧ୍ୟାପକମାନଙ୍କୁ ଇସ୍ତଫା ଦେବାକୁ ନିବେଦନ କରାଯିବ । ଏହି କାର୍ଯ୍ୟକ୍ରମ ସବୁ ଛାତ୍ରମାନଙ୍କ ମଧ୍ୟରେ ପ୍ରଚାର କରାଗଲା ଓ ସମସ୍ତଙ୍କ ସମର୍ଥନ ଜଣାଗଲା । କିନ୍ତୁ ଭିତରେ ଉଦ୍ଦେଶ୍ୟ ରହିଲା ଯେ ଯେତେବେଳେ ଶହଶହ ଛାତ୍ର ରେଭନ୍‌ସା କଲେଜ ଅଫିସ ଘେରାଉକରି ପ୍ରବେଶ କରିବେ, ସେତେବେଳେ ପ୍ରଥମେ ଟେଲିଫୋନ୍ ଲାଇନ କାଟିଦିଆଯିବ, ଯାହା ଫଳରେ କି କଲେଜର ଅଧ୍ୟକ୍ଷ ପୋଲିସକୁ ଖବର ଦେଇପାରିବେ ନାହିଁ । ଦଳେ ଛାତ୍ର ଅଧ୍ୟାପକମାନଙ୍କୁ ବ୍ରିଟିଶ ଶାସନ ଅଧୀନରେ ଆଉ ଗୋଲାମି ନ କରିବାକୁ ନିବେଦନ କଲାବେଳକୁ ଅନ୍ୟମାନେ ଅଫିସର ଆସବାବପତ୍ର ଓ କାଗଜପତ୍ରରେ ନିଆଁ ଲଗାଇଦେବେ । ସେହି ଅନୁସାରେ ଠିକ ଭାବରେ କାର୍ଯ୍ୟ ଚାଲିଲା ଓ ପୋଲିସ ଆସିଲାବେଳକୁ ଛାତ୍ରମାନେ ସେଠାରୁ କାମ ସାରି ଚାଲି ଯାଇଥିଲେ ।

ସେତେବେଳେ ରେଭେନ୍‌ସା କଲେଜର ଅଧ୍ୟକ୍ଷ ଥିଲେ ଓଡ଼ିଶାର ପ୍ରତିଷ୍ଠିତ ସୁପୁରୁଷ ପ୍ରାଣକୃଷ୍ଣ ପରିଜା । ଏହି ଘଟଣାପରେ ସେ ସରକାରଙ୍କୁ କହି ଅନିର୍ଦ୍ଦିଷ୍ଟକାଳ ପର୍ଯ୍ୟନ୍ତ ରେଭେନ୍‌ସା କଲେଜକୁ ବନ୍ଦ କରାଇଦେଲେ । ଆମର ଉଦ୍ଦେଶ୍ୟ ସଫଳ ହେଲା । ଯେଣୁ ନିବେଦନ କରି କଲେଜ ବନ୍ଦ କରିପାରିବାରେ ସମର୍ଥ ହେବା ଆଶା ନଥିଲା, ଏହି କାର୍ଯ୍ୟକ୍ରମ ଜରିଆରେ ସଫଳ ହେଲୁ । ଏହି ଘଟଣା ପରେ ପ୍ରଦୀପ୍ତବାବୁ ଓ ସୁରେନ୍ଦ୍ର ମହାନ୍ତି (ଛାତ୍ର ଜୀବନପରେ କଟକ ବେତାର କେନ୍ଦ୍ରରେ ଯୋଗଦେଇ ଉଚ୍ଚପାହ୍ୟା ଅଫିସର ପର୍ଯ୍ୟନ୍ତ ହୋଇଥିଲେ ଏବଂ ବିଶିଷ୍ଟ ନାଟ୍ୟକାର ହିସାବରେ ସୁନାମ ଅର୍ଜନ କରିଥିଲେ । ତାଙ୍କର ଅକାଳ ବିୟୋଗ ହୋଇଥିଲା) କଟକ ଛାଡ଼ି ଚାଲିଗଲେ । ତେଣୁ ତାଙ୍କୁ ଆଉ ଗିରଫ ହେବାକୁ ପଡ଼ି ନଥିଲା ।

•

---

***ସଂଗ୍ରାମର ଶେଷ ନାହିଁ***, ପ୍ରକାଶକ-ପ୍ରଫେସର ରମେଶଚନ୍ଦ୍ର ସ୍ୱାଇଁ, ଭୁବନେଶ୍ୱର-୬, ୧୯୯୮

# କଲେଜ ଜୀବନ

## ମନୋରଂଜନ ଦାସ

କଲେଜରେ ମୁଁ ନାଁ ଲେଖାଇଲା ବେଳକୁ କଲେଜର କେଉଁ କେଉଁ ବିଷୟରେ ପଢ଼ିବାକୁ ପଡ଼ିବ ସେ ସବୁ କିଛି ଜାଣି ନଥିଲି । ଝଙ୍କଡ଼ ଶାରଳା ଠାକୁରାଣୀ ମନ୍ଦିର ନିକଟ କଣ୍ଟପଡ଼ା ଗାଁର ଅଦ୍ୱୈତ ଚରଣ ଦାସ ମୋ ଉପର କ୍ଲାସରେ ପଢୁଥିଲେ । ସେ ଥିଲେ ମୋର ପରମ ବନ୍ଧୁ । ସେ ମୋର ଏକ ବର୍ଷ ଆଗରୁ କଲେଜରେ ନାମ ଲେଖାଇ ସାରିଥିଲେ । ସେ ଯେଉଁ ଯେଉଁ ବିଷୟଗୁଡ଼ିକ କଳାଶ୍ରେଣୀରେ ନେବାକୁ କହିଥିଲେ ମୁଁ ତାହାହିଁ କରିଥିଲି । କୁଜଙ୍ଗର ସାଙ୍ଗ ବିପିନ ଯୋଗ ଦେଲା ବିଜ୍ଞାନ ଶ୍ରେଣୀରେ । ଅଦ୍ୱୈତବାବୁ ପରବର୍ତ୍ତୀ ସମୟରେ ପୁରୀର ଡାକ୍ତର କେ. ଚୌଧୁରୀଙ୍କ ପରେ ଓଡ଼ିଶାର ସର୍ବଶ୍ରେଷ୍ଠ ହୋମିଓପ୍ୟାଥି ଚିକିତ୍ସକ ଭାବେ ଖ୍ୟାତି ଅର୍ଜନ କରିଥିଲେ ।

ମୁଁ କଲେଜରେ ଯୋଗ ଦେବା ବେଳକୁ ପରବର୍ତ୍ତୀ କାଳରେ ଯେଉଁମାନେ ଓଡ଼ିଶାର ରାଜନୀତି, ସାହିତ୍ୟ, କଳା, ସଂସ୍କୃତି କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ଅଂଶ ଗ୍ରହଣ କରିଥିଲେ ସେମାନଙ୍କ ଭିତରେ ଥିଲେ ବୀରେନ୍ ମିତ୍ର, ମନମୋହନ ମିଶ୍ର, ବାଙ୍କବିହାରୀ ଦାସ, ପ୍ରଦୀପ୍ତ କିଶୋର ଦାସ, ସୁରେନ୍ ମହାନ୍ତି, ନୟନ କିଶୋର ମହାନ୍ତି ଓ ଉପେନ୍ଦ୍ର ସାମଲ । ଶ୍ରୀ ସାମଲ ଥିଲେ 'ଆରତୀ' ପତ୍ରିକାର ପ୍ରତିଷ୍ଠାତା । ଏହି ପତ୍ରିକାର ସମ୍ପାଦକ ଥିଲେ ମାୟାଧର ମାନସିଂ ପ୍ରଭୃତି କୃତବିଦ୍ ବ୍ୟକ୍ତିମାନେ ।

କଲେଜରେ ବୀରେନ୍‌ଦା ଅନ୍ୟମାନଙ୍କଠାରୁ ବାରି ହୋଇ ପଡୁଥିଲେ । ସେଇ ଲମ୍ବା ମୂର୍ତ୍ତି କଲେଜ କରିଡରରେ କାହା କାହା କାନ୍ଧରେ ହାତ ପକାଇ ଚାଲୁଥିଲେ ପାଦ ଘୋଷାରି ଘୋଷାରି । ତାଙ୍କୁ ଆଡ଼ ହୋଇ କଟେଇ ଚାଲିଗଲେ ଡାକୁଥିଲେ : "ଏ ମନୁ ଏଠିକି ଆ । କେମିତି ଅଛୁ ? କେଉଁଠି ରହୁଛୁ ? ଓ ବୁଢ଼ୀଠାକୁରାଣୀଙ୍କ ପାଖରେ ନା କ'ଣ ?" ଉପର କ୍ଲାସ୍‌ରେ ଇଂରାଜୀରେ ବୋଧେ ଏମ୍.ଏ. ପଢୁଥିଲେ ମନମୋହନ ମିଶ୍ର । ତାଙ୍କ ଭାଷଣ ରକ୍ତରେ ନିଆଁ ଲଗାଇ ଦେଉଥିଲା । ତାଙ୍କର ଓଜସ୍ୱିନୀ ଭାଷା, ସ୍ପଷ୍ଟ ଉଚ୍ଚାରଣ, କବିତାର ଛନ୍ଦ ପରି ଭାଷଣର ପ୍ରବହମାନ ଲାଳିତ୍ୟ, ଆଉ ଶାଣିତ ଶବ୍ଦ ପ୍ରୟୋଗ ଶ୍ରୋତାକୁ ଅଭିଭୂତ କରୁଥିଲା । ତାଳିମାଡ଼ରେ ସଭା ପ୍ରକମ୍ପିତ ହେଉଥିଲା । ଥରେ ପ୍ରତିଯୋଗିତା ଚାଲିଥିଲା କଲେଜ ଇଉନିୟନ୍‌ର ସଭାପତି ପଦ ପାଇଁ ମନମୋହନବାବୁ ଓ ପ୍ରଦୀପ୍ତବାବୁଙ୍କ ଭିତରେ । ଉଭୟଙ୍କର ନିର୍ବାଚନୀ ଭାଷଣ

ଶୁଣିବାକୁ ଫିଜିକ୍ସ୍ ଲେକଚ଼ର୍ ଥିଏଟର୍ ଭରପୂର ହୋଇଗଲା ଛାତ୍ରମାନଙ୍କ ଦ୍ୱାରା । କଲେଜ ପକ୍ଷରୁ ସଭା ପରିଚ଼ାଳନା କରୁଥିଲେ ଅଧ୍ୟାପକ ବଳଭଦ୍ର ପ୍ରସାଦ । କମ୍ୟୁନିଷ୍ଟ ଚିନ୍ତାଧାରା ଅନୁଗାମୀ ମନମୋହନବାବୁ ବିଭିନ୍ନ ଯୁକ୍ତି ଅବତାରଣା କରି କହି ଚାଲିଥିଲେ ତାଙ୍କୁ କାହିଁକି ନିର୍ବାଚ଼ିତ କରିବା ଉଚ଼ିତ । ଭାଷଣ କ୍ରମେ ମୁହାଁଇଲା କଲେଜ କର୍ତ୍ତୃପକ୍ଷଙ୍କୁ ଆକ୍ରମଣ କରି... କଲେଜ କର୍ତ୍ତୃପକ୍ଷ, ଅଧ୍ୟକ୍ଷ, ଅଧ୍ୟାପକମାନଙ୍କୁ ଲକ୍ଷ୍ୟ କରି । ସଭାର ପରିଚ଼ାଳକ ଅଧ୍ୟାପକ ପ୍ରସାଦଙ୍କ ଆଡ଼କୁ ସେ ଅଙ୍ଗୁଳି ନିର୍ଦ୍ଦେଶ କରି କହିଲେ : "ଏଇମାନେ ସରକାରର ସ୍ପାଇଜ୍ (Spies) ।" ସ୍ପାଇଜ୍ ଅର୍ଥାତ୍ ଗୁପ୍ତଚ଼ର ବୋଲି ତାଙ୍କର ଅଭିଯୋଗରେ ଅଧ୍ୟାପକ ପ୍ରସାଦ କ୍ଷିପ୍ତ ହୋଇ ପଡ଼ିଲେ । ସ୍ପାଇଜ୍ ଶବ୍ଦ ପ୍ରତ୍ୟାହାର କରିବାକୁ ତାଙ୍କୁ ନିର୍ଦ୍ଦେଶ ଦେଲେ । ମନମୋହନବାବୁ ରାଜି ହେଲେନି । ଉଭୟଙ୍କ ଭିତରେ ବହୁ କଥା କଟାକଟି ହେଲା । ଯଦିଚ଼ ଶ୍ରୋତାମାନେ ଗୁପ୍ତଚ଼ର ଅର୍ଥରେ ସ୍ପାଇଜ୍ ଶବ୍ଦଟିକୁ ଗ୍ରହଣ କରିଥିଲେ, ମନମୋହନବାବୁ ଯୁକ୍ତି ବାଢ଼ିଲେ ଯେ ସ୍ପାଇଜ୍ ଶବ୍ଦର ଭୁଲ ପ୍ରୟୋଗ ସେ କରିନାହାନ୍ତି । ଡେରୋଗେଟରୀ (Derogatory) ଅର୍ଥରେ ନୁହେଁ ବରଂ ସମ୍ମାନଜନକ ଅର୍ଥରେ ସେ ଏହାକୁ ବ୍ୟବହାର କରିଥିଲେ ବୋଲି ହସହସ ମୁହଁରେ କହି ସେ ସେକ୍ସପିଅରଙ୍କୁ ଟାଣି ଆଣିଥିଲେ ତାଙ୍କର ଆତ୍ମରକ୍ଷା ପାଇଁ । ବିଶ୍ୱବିଖ୍ୟାତ ନାଟ୍ୟକାର ତାଙ୍କ 'As you like it' ନାଟକରେ ଲେଖକମାନଙ୍କ ଉଦ୍ଦେଶ୍ୟରେ Spies ଶବ୍ଦ ପ୍ରୟୋଗ କରି ସେମାନଙ୍କୁ 'Natures Gods own Spies' ବୋଲି କହିଥିଲେ । ତେଣୁ କଲେଜର ଅଧ୍ୟକ୍ଷ ଓ ଅଧ୍ୟାପକମାନଙ୍କୁ Spies କହି ଭୁଲ କରିନଥିଲେ ବୋଲି ଯୁକ୍ତି ବାଢ଼ିଥିଲେ । ତା'ପରେ ଶ୍ରୋତାଙ୍କ ଆନନ୍ଦ ଆଉ ଦେଖେ କିଏ ବାଜିଲା ତାଳି ପରେ ତାଳି । ସ୍ପାଇଜ୍ ପ୍ରସଙ୍ଗ ସେତିକିରେ ଶେଷ ହୋଇଗଲା । ନିର୍ବାଚ଼ନରେ ସେଥର କିନ୍ତୁ ମନମୋହନବାବୁ ହାରିଗଲେ । କାରଣ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ପରେ ଭାରତୀୟ କମ୍ୟୁନିଷ୍ଟ ପାର୍ଟି ଯେଉଁ ଭୂମିକା ଗ୍ରହଣ କରିଥିଲା, ସେଇ ଭୂମିକା ଛାତ୍ର ସମାଜକୁ ସନ୍ତୁଷ୍ଟ କରି ପାରିନଥିଲା । ତା'ର ପ୍ରତିକ୍ରିୟା ପ୍ରକାଶ ପାଇଥିଲା ମନମୋହନବାବୁଙ୍କ ପରାଜୟରେ । ନୂତନ ସୋସାଲିଷ୍ଟ ଚିନ୍ତାଧାରାର ସମର୍ଥକ ପ୍ରଦୀପ୍ତ କିଶୋର ଦାସ ଜୟଯୁକ୍ତ ହେଲେ । ଶାନ୍ତ ପ୍ରଦୀପବାବୁ ଓ ସ୍ନେହଶୀଳ ବାଙ୍କଭାଇ ଛାତ୍ରମାନଙ୍କର ଖୁବ୍ ପ୍ରିୟପାତ୍ର ହୋଇ ପାରିଥିଲେ । କୁନି ଭଇନା(ବିଭୁଧେନ୍ଦ୍ର ମିଶ୍ର)ଙ୍କର ଚକ୍‌ଚକ୍ ଉଜ୍ଜ୍ୱଳ ସୌମ୍ୟ ଚେହେରା ବୁଦ୍ଧିଦୀପ୍ତ ଭାଷଣର କୌଶଳ ଛାତ୍ରମାନଙ୍କ ପାଇଁ ବେଶ୍ ଆକର୍ଷଣୀୟ ଥିଲା । ସେତେବେଳର ଅଣରାଜନୈତିକ ଯେଉଁ ଉପର ଶ୍ରେଣୀର ଛାତ୍ରଙ୍କର ମୁଁ ନିକଟତର ହୋଇପାରିଥିଲି, ସେମାନଙ୍କ ଭିତରେ ଅନ୍ୟତମ ଥିଲେ ବିନୋଦବାବୁ (କବି ବିନୋଦ ନାୟକ) । ତାଙ୍କର କ୍ଲିନ୍ ସେଭ୍‌ଡ ମୁହଁ, ଇସ୍ତିକରା ଟିପ୍‌ଟପ୍ ପୋଷାକ, ମିଠା ମିଠା ଭାଷା ଅନ୍ୟମାନଙ୍କଠାରୁ ତାଙ୍କୁ ଭିନ୍ନ କରି ଦେଉଥିଲା । ଗୋଟିଏ ସମୟରେ ସୁରେନ୍ଦ୍ର ମହାନ୍ତି ଓ ବିନୋଦବାବୁ ତାଳଦଣ୍ଡା

କେନାଲ କୂଳର ଗୋଟିଏ ମେସ୍‌ରେ ରହୁଥିଲେ । ସେଇ ସୂତ୍ରରେ ତାଙ୍କ ସଙ୍ଗେ ମୋର ଅନେକ ସମୟରେ ଦେଖା ହେଉଥିଲା ।

ମୁଁ କଟକ ରେଭେନ୍‌ସା କଲେଜକୁ ଆସିଲା ବେଳକୁ ବି.ଏ. କ୍ଲାସ୍‌ରେ ପଢୁଥିଲେ ସୁରଭାଇ । ଅର୍ଥାତ୍ ସୁରେନ୍ଦ୍ର ନାଥ ପଟ୍ଟନାୟକ । ସେ ଥିଲେ ମୋ ବଡ଼ବାପାଙ୍କ ଝିଅ ଗୁନି ଦେଈର ଦିଅର ଓ କବି ବାଳକୃଷ୍ଣ ପଟ୍ଟନାୟକଙ୍କ ପୁଅ । ସେତେବେଳେ ସୁରଭାଇ କଲେଜ 'ଇଉନିଅନ୍'ର ସମ୍ପାଦକ ଥିଲେ । କ୍ଲାସ୍ ନଥିଲେ ମୁଁ ତାଙ୍କ ପାଖରେ କମନ୍ ରୁମ୍‌ରେ ଯାଇ ବସୁଥିଲି । ତାଙ୍କର ଘନିଷ୍ଠ ବନ୍ଧୁ ଥିଲେ ନନ୍ଦବାବୁ (ନନ୍ଦ କୃଷ୍ଣ ଦାସ) । ସ୍ପୋର୍ଟସ୍‌ମ୍ୟାନ୍ ନନ୍ଦବାବୁ ପରବର୍ତ୍ତୀ ସମୟରେ ଓଡ଼ିଶା ପାଇଁ ସ୍ପୋର୍ଟସ୍ କ୍ଷେତ୍ରରେ ଆଣିଥିଲେ ବିଶେଷ ଗୌରବ ଜିକାଥେଲିନ୍ ଚାମ୍ପିୟନ ଭାବରେ । ମୋତେ ଭଲ ଲାଗୁଥିଲା କଲେଜ ପଡ଼ିଆରେ ଯାଇ ଦେଖିବାକୁ ତାଙ୍କର ଜାଭେଲିନ୍ ଥ୍ରୋ... ତାଙ୍କର ହଡ଼ଲ୍‌ସ ରେସ୍ ଓ ପୋଲ ଭଲ୍ଟ । କିନ୍ତୁ ଏସବୁ ଠାରୁ ଆହୁରି ଅଧିକ ଭଲ ଲାଗୁଥିଲା ଦେଖିବାକୁ ତାଙ୍କର ସୁନ୍ଦର ସୁନ୍ଦର ଅକ୍ଷରଗୁଡ଼ିକ । କମନ ରୁମ୍‌ରେ ସୁରଭାଇଙ୍କ ପାଖରେ ଗପ କମାଉଥିବାବେଳେ ଅନେକଥର କିଛି ନା କିଛି ଆଳରେ ତାଙ୍କ ନୋଟ୍ ଖାତା ନେଇ ମୁଁ ଦେଖୁଥିଲି । ତାଙ୍କ ସୌମ୍ୟ ଚେହେରାର ସମତୁଲ ଗଠନର ସମକକ୍ଷ ଥିଲା ତାଙ୍କ ଅକ୍ଷରଗୁଡ଼ିକ ।

କଲେଜକୁ ସେତେବେଳେ ଅଧିକାଂଶ ଛାତ୍ର ଲୁଗାପିନ୍ଧି ଆସୁଥିଲେ । ଅଳ୍ପ କେତେକ ଫୁଲପ୍ୟାଣ୍ଟ୍, ହାପ୍‌ପ୍ୟାଣ୍ଟ୍ ପିନ୍ଧି ଯେ ନ ଆସୁଥିଲେ ତା' ନୁହେଁ । କେତେକ ବି ଆସୁଥିଲେ ଲୁଜ୍ ପ୍ୟାଣ୍ଟ୍ ଆଉ ଲମ୍ବା ପଞ୍ଜାବି ପିନ୍ଧି । ସେତେବେଳର ଏହା ଥିଲା ଏକ ଫେସନ୍ । ବିଶ୍ୱଯୁଦ୍ଧ ଶେଷବେଳକୁ ମାର୍କିନ୍ ବାହିନୀ ଆଧୁନିକ ସଭ୍ୟତାକୁ ଦୁଇଟି ସ୍ମରଣୀୟ ଦାନ ଦେଇଥିଲା । ପ୍ରଥମଟି ଥିଲା ଜିପ୍‌ଗାଡ଼ି ଓ ଅନ୍ୟଟି ହାୱାଇ ସାର୍ଟ । ତେଣୁ ସେତେବେଳେ ଛାତ୍ରମାନଙ୍କ ମଧ୍ୟରେ ହାୱାଇ ସାର୍ଟ ପିନ୍ଧା ପ୍ରଚଳନ ହୋଇ ନଥିଲା । ସେମାନେ ପିନ୍ଧୁଥିଲେ 'ଗ୍ଲାଡ୍ କୋଲାର' (Glad collar) ସାର୍ଟ । କେହି କେହି ପୂରାହାତର ଡବଲ କଫ୍ ସାର୍ଟ ମଧ୍ୟ ପିନ୍ଧୁଥିଲେ । ଅଧ୍ୟାପକମାନେ କିନ୍ତୁ ଟାଇ ଭିଡ଼ି ସୁଟ୍ ପିନ୍ଧି ଆସୁଥିଲେ । ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି, ଅଧ୍ୟାପକ କରୁଣାକର କର, ଅଧ୍ୟାପକ ଗିରିଜା ଶଙ୍କର ରାୟ ପ୍ରମୁଖ ଅଳ୍ପ କେତେକ ଏହାର ଥିଲେ ବ୍ୟତିକ୍ରମ । ସେମାନେ ଦୁଇ ତିନିଜଣ ମିଶି ଘୋଡ଼ାଗାଡ଼ିରେ ଆସୁଥିଲେ । କେହି କେହି ଆସୁଥିଲେ ହାତଟଣା ରିକ୍ସାରେ । ଜଣେ ଅଧେ କେହି କଲେଜକୁ ଫୋର୍ଡ଼ ବା ଅଷ୍ଟିନ୍ ମାର୍କା ମଟର ଗାଡ଼ିରେ ଆସୁଥିଲେ । କଟକର ରାସ୍ତାଘାଟରେ ଏତେ ଗହଳି ନଥିଲା । କିନ୍ତୁ ରାସ୍ତାର ଏଣେତେଣେ ପଡ଼ୁଥିବା ଘୋଡ଼ା ଗୋବର ଖାଲି ପାଦର କ୍ଷତ ସ୍ଥାନରେ ଲାଗିଗଲେ 'ଟିଟାନସ୍' ରୋଗ ଯେ ଜୀବନ ନେବ ସେ ଆଶଙ୍କା ଅନେକଙ୍କ ଭିତରେ ପ୍ରବେଶ କରିଥିଲା । ଅଳ୍ପ

କେତେକଙ୍କୁ ଛାଡ଼ିଦେଲେ ଅଧିକାଂଶ ଛାତ୍ର ଚଟି ବା ଜୋତା... ଏପରିକି ଲୁଗା ସାଙ୍ଗରେ ପୂରା ଜୋତା ପିନ୍ଧୁଥିଲେ।

ଇମ୍ପୋର୍ଟେଡ୍ ଗ୍ରୀନ୍ ମଡ୍ରେଲ 'ରାଲେ' ସାଇକଲରେ କଲେଜ ଆସିବା କିମ୍ବା କଲେଜର କରିଡ଼ରରେ ଲୁଜ୍ ପ୍ୟାଣ୍ଟ୍ ଓ ଲମ୍ବା ପଞ୍ଜାବି ପିନ୍ଧି କଳା ଭେଲଭେଟ୍ ଲଗା 'ନାଏଗ୍ରା' ଚଟି ଘୋଷାରି ଘୋଷାରି ଆଡ୍ଡା ମାରିବାର ପ୍ରାଥମିକ ମୋହ କଟିଯିବା ପରେ ଧୀରେ ଧୀରେ ଅନୁଭବ କରିଥିଲି କଟକ ବାୟୁମଣ୍ଡଳରେ ରହିଥିବା ଏକ ନୂତନ ଉଷ୍ମତା। ସେତେବେଳେ କଟକ କେବଳ ନଥିଲା ଓଡ଼ିଶାର ମୁଖ୍ୟ ବ୍ୟବସାୟ କେନ୍ଦ୍ର। ତାହା ଥିଲା ଓଡ଼ିଶାର ସାଂସ୍କୃତିକ ଓ ରାଜନୈତିକ ଜୀବନର ପ୍ରାଣକେନ୍ଦ୍ର ମଧ୍ୟ। ସେତେବେଳେ ଦେଶର ସ୍ୱାଧୀନତା ସଂଗ୍ରାମ ଯେପରି ତୀବ୍ର ହୋଇ ଆସୁଥିଲା, ତାହା ସହିତ ପାଦ ପକାଇ ଆଗେଇ ଯିବାରେ କଟକ ପଛାଇ ନଥିଲା। କଟକ ଜୀବନର ସେଇ ନବଜାଗରଣର ସ୍ପନ୍ଦନ ମୋତେ ମଧ୍ୟ ଚଞ୍ଚଳ କରିଥିଲା।

୧୯୪୦ରୁ ସ୍ୱାଧୀନତା ପ୍ରାପ୍ତ ୧୯୪୭ ମସିହା ପର୍ଯ୍ୟନ୍ତ କଟକରେ ଘଟିଥିବା ବହୁ ଘଟଣାର ମୁଁ ଥିଲି ଏକ ତରୁଣ ଦ୍ରଷ୍ଟା। ଏଠି ଯାହା ସବୁ ଘଟୁଥିଲା ସେ ସବୁରେ ପ୍ରତ୍ୟକ୍ଷଭାବେ ମୁଁ ସମ୍ପର୍କ ସ୍ଥାପନ କରି ନ ଥିଲେ ମଧ୍ୟ ସେ ସବୁ ମୋ ଚେତନାକୁ ଗଭୀର ଭାବରେ ପ୍ରଭାବିତ କରିଥିଲା। ସେଇଥିପଇଁ ସମ୍ଭବତଃ ମୋ ପ୍ରଥମ ଲେଖାଗୁଡ଼ିକରେ ଦେଶାତ୍ମବୋଧକ ଚେତନା ତୀବ୍ର ଭାବରେ ପ୍ରତିଫଳିତ ହେଲା। ସେଇଥିପାଇଁ ସମ୍ଭବତଃ 'ଭାରତ ଛାଡ଼' ଆନ୍ଦୋଳନରେ ନାଲି ପଗଡ଼ିଆ କନେଷ୍ଟବଳଠାରୁ ଗୋଟାଏ ଦୁଇଟା ଠେଙ୍ଗୁଣି ପାହାର ଖାଇଲା ପରେ ମୁଁ ଆରମ୍ଭ କରିଥିଲି ଅଗଷ୍ଟ ନ' ନାଟକର ପ୍ରଥମ ଚିଠା। ସେତେବେଳେ ରହୁଥିବା ରାଣୀହାଟର 'ଛାତ୍ରବନ୍ଧୁ' ମେସ୍‌ର ଇମ୍ପ୍ରେସନ୍ ଉପରେ ଭିତ୍ତିକରି ରଚିତ ହୋଇଥିଲା ଏ ନାଟକ। ସମ୍ଭବତଃ ସେଇଥିପାଇଁ ୧୯୪୪ରେ ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚରେ ଅଭିନୀତ ହୋଇଥିବା ମୋର ନାଟକ 'ଯୌବନ'ର ଅନ୍ତଃସ୍ୱରରେ ରହିଥିଲା ଯୁବକମାନଙ୍କ ପ୍ରତି ଆହ୍ୱାନ "ନବ ଜାଗରଣର ଉଦ୍‌ବୋଧନ"।

"ଜାଗ ଯୁବକ ଆସିଛି ଆଜି
ମୁକ୍ତିର ଆହ୍ୱାନ
ଯଉବନ ତୋର ସାର୍ଥକ କର
ରଖ ଜାତିର ମାନ।"

ସେଥିପାଇଁ ସମ୍ଭବତଃ ଭାରତ ସ୍ୱାଧୀନତା ଲାଭର ଠିକ୍ ପରେ ପରେ ମୁଁ ଲେଖିଥିବା ନାଟକ 'ବିଦ୍ରୋହୀ ଜଗବନ୍ଧୁ'(ବକ୍ସି ଜଗବନ୍ଧୁ)ରେ ବ୍ରିଟିଶ ଆଇନ ବିରୋଧରେ ହୋଇଥିବା ଭାରତର ମୁକ୍ତି ସଂଗ୍ରାମ... ପାଇକ ବିଦ୍ରୋହ (୧୯୦୩-୧୭)ର ତୂର୍ଯ୍ୟନାଦ ଧ୍ୱନିତ ହୋଇଥିଲା।

•

***ସ୍ମୃତି ସଂଳାପ***, ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ, ୧୯୯୯

# ରେଭେନ୍‌ସା କଲେଜରେ ପ୍ରଥମ ବର୍ଷ

## ବୈଦ୍ୟନାଥ ମିଶ୍ର

ମାଟ୍ରିକ ପରୀକ୍ଷା ପରେ ମୁଁ କିଛିଦିନ ବାଲେଶ୍ୱର ଜିଲ୍ଲାରେ ମହତାବବାବୁଙ୍କ ସାଙ୍ଗରେ ବୁଲିବାକୁ ସୁଯୋଗ ପାଇଥିଲି । ମହତାବବାବୁ ଯେଉଁଠିକି ଯାଉଥିଲେ, ସେଠି ବହୁତ ଲୋକ ରୁଣ୍ଡ ହେଉଥିଲେ । ଅନେକ କାଗାକୁ ଚାଲି ଚାଲି ଯାଉଥିଲେ । ଯେଉଁଠି ସଭା ହେଉଥିଲା, ସେଠାରେ ଲୋକମାନଙ୍କ ଭିତରେ ପ୍ରବଳ ଉତ୍ସାହ ଦେଖାଯାଉଥିଲା । ୧୯୪୨ ମସିହାରେ ସାରା ଦେଶରେ ବିରାଟ ଉତ୍ତେଜନା ସୃଷ୍ଟି ହୋଇଥିଲା । ଏ ହେଉଛି ଏପ୍ରିଲ ଓ ମେ ମାସ- ସମସ୍ତେ ଗାନ୍ଧିଜୀଙ୍କୁ ଚାହିଁଥାନ୍ତି । ଗାନ୍ଧିଜୀ କି ଡାକରା ଦେବେ, ତାହାହିଁ ବିଶେଷ ଭାବରେ ଦେଶରେ ଆଲୋଚନା ହେଉଥାଏ । ସେତେବେଳକୁ ମୁଁ ରାଜନୀତି ପ୍ରତି ବହୁତ ଆକୃଷ୍ଟ ହୋଇସାରିଥାଏ । ଆଗରପଡ଼ା ହାଇସ୍କୁଲରେ ମୁଁ ଅନେକ ରାଜନୀତିକ ବହି ପଢ଼ିଥିଲି । ଖାଲି ପଢ଼ି ନ ଥିଲି, ଭିନ୍ନ ଭିନ୍ନ ସ୍କୁଲରେ ମଧ୍ୟ ରାଜନୀତିକ ସମସ୍ୟା ଉପରେ ଭାଷଣ ଦେଇ କିଛି ସୁନାମ ଅର୍ଜନ କରିଥିଲି । ପ୍ରତ୍ୟେକ ଯୁବକ ପରି ମୋ ମନରେ ମଧ୍ୟ ବିଦ୍ରୋହର ଶିଖା ଜଳି ଉଠିଥିଲା । ଗାନ୍ଧିଜୀ କାହିଁକି ବିଦ୍ରୋହର ଡାକରା ଦେଉନାହାନ୍ତି ବୋଲି ମୁଁ ବ୍ୟତିବ୍ୟସ୍ତ ହେଉଥିଲି ।

ସେ ଯାହାହେଉ, ମାଟ୍ରିକ ପରୀକ୍ଷା ପରେ ବାଲେଶ୍ୱର ଜିଲ୍ଲାରେ ମାସେ ଖଣ୍ଡେ ବୁଲିଲା ପରେ ପ୍ରଥମ ଥର ପାଇଁ ଚାରିବର୍ଷ ପରେ ନିଜ ଗାଁକୁ ଫେରିଲି । ଘରର ଅବସ୍ଥା ସେତେବେଳେ ଅତି ଶୋଚନୀୟ । ପରୀକ୍ଷାଫଳ ସେତେବେଳକୁ ପ୍ରକାଶ ପାଇ ନଥାଏ । ତେବେ ମୁଁ ପରୀକ୍ଷାରେ ପାସ୍ କରିବି ବୋଲି ସମସ୍ତେ ଧରିନେଇଥାନ୍ତି । ତେଣୁ ଚାରିଆଡ଼ୁ ମୋ ଉପରେ ଚାପ ପଡ଼ୁଥାଏ ଯେ, କୌଣସି ଗୋଟିଏ ଚାକିରି କରି ଘରକଥା ସମ୍ଭାଳିବା ପାଇଁ । ବୋଉ ମଧ୍ୟ ମତେ ବିବାହ କରିଦେବାକୁ ଜୋରରେ ଲାଗିଥାଏ । ତା'ର ଉଦ୍ଦେଶ୍ୟ ଥାଏ ଯେ, ମୁଁ ବିବାହ ହୋଇଗଲେ ଘର ଛାଡ଼ି ଆଉ କୁଆଡ଼େ ଯିବି ନାହିଁ ଏବଂ ଯେ କୌଣସି ମତେ ଗୋଟିଏ ଚାକିରି କରି ଘର କଥା ବୁଝିବି । ଏପରିକି ମତେ ମଧ୍ୟ ପେଡ଼ିଲୁଗା ପିନ୍ଧେଇ ଗୋଟିଏ ଯୋଡ଼ିଏ ଜାଗାକୁ କନ୍ୟା ଦେଖେଇନେବାର ମୋର ମନେ ପଡ଼ୁଛି । ଚାକିରିର ସେତେବେଳେ ବେଶି ଅଭାବ ବୋଧହୁଏ

ନଥାଏ । ଗୋଟିଏ ନିମ୍ନ ପ୍ରାଇମେରୀ ବା ପ୍ରାଇମେରୀ ସ୍କୁଲର ମାଷ୍ଟ୍ର ଚାକିରିଟିଏ ନିଶ୍ଚୟ ମିଳିଯିବ ବୋଲି ସମସ୍ତେ କହୁଥାନ୍ତି । କାରଣ ସେ ସମୟରେ ଖୁବ୍ କମ୍ ମାଟ୍ରିକ ପାସ୍ ବାଲା ନିମ୍ନ ପ୍ରାଇମେରୀ ବା ପ୍ରାଇମେରୀ ସ୍କୁଲରେ ଥାନ୍ତି । ମୋ ମନରେ କିନ୍ତୁ ସେତେବେଳେ ବିରାଟ ସଂଘର୍ଷ ଚାଲିଥାଏ - ଗୋଟିଏ ପଟେ ରାଜନୀତି ଓ ଅନ୍ୟପଟେ କଲେଜ ପଢ଼ା । ଘର ସଂସାର କି ଚାକିରି ମୋ ମନକୁ ସ୍ପର୍ଶ କରୁନଥାଏ । ହାଇସ୍କୁଲରେ ରାଜନୀତି ପ୍ରତି ଯେଉଁ ନିଶା ସୃଷ୍ଟି ହୋଇଥାଏ, ସେଥିରେ ଇଚ୍ଛା ହେଉଥାଏ ଯେ, ସିଧାସଳଖ ଯାଇଁ ରାଜନୀତିରେ ଯୋଗ ଦେବି । ଭାରତରେ ପୁଣି ସେତେବେଳେ ଯେଉଁ ରାଜନୀତିକ ଉତ୍ତେଜନା ସୃଷ୍ଟି ହୋଇଥାଏ, ସେଥିରେ ଜଣେ ସଚେତନ ନାଗରିକ ତୁନି ହୋଇ ରହିବା ସମ୍ଭବ ନୁହେଁ । କିନ୍ତୁ ଅନ୍ୟପଟେ ମନରେ ପ୍ରଶ୍ନ ଉଠୁଥାଏ ଯେ, ଆଜିଠାରୁ ଯଦି ରାଜନୀତିରେ ଯୋଗ ଦେବି, ତେବେ ଜୀବନ ସାରା ନେତାମାନଙ୍କର ଚେଲା ହୋଇ ରହିବି । ରାଜନୀତିରେ ସଫଳତା ହାସଲ କରିବା ପାଇଁ କିଛି ଯୋଗ୍ୟତା ଦରକାର- ଅଧିକ ପାଠ ନ ପଢ଼ିଲେ ସେ ଯୋଗ୍ୟତା ହାସଲ ହୋଇପାରିବ ନାହିଁ । ଅବଶ୍ୟ ଏବେ ଯେଉଁ ରାଜନୀତି ଚାଲିଛି, ସେଥିରେ ପାଠ ଅପେକ୍ଷା ଶାଠ ବେଶି ଦରକାର । କିନ୍ତୁ ସେତେବେଳେ ତ ସେ ଅବସ୍ଥା ନଥିଲା । ତେବେ ପଢ଼ିବି କିପରି, ସେହି ଚିନ୍ତା ମୁଣ୍ଡକୁ ଘାରିବାକୁ ଲାଗିଥିଲା ।

ଏଇ ସମୟରେ ମୋର ପରୀକ୍ଷା ଫଳ ବାହାରିଲା । ଆଗରପଡ଼ା ହାଇସ୍କୁଲରୁ ପ୍ରଥମ କରି ଚତୁର୍ଥ ବ୍ୟାଚରେ ମୁଁ ପ୍ରଥମ ଡିଭିଜନରେ ପାସ୍ କଲି ଓ କିଛି ଦିନ ପରେ ଜାଣିବାକୁ ପାଇଲି ଯେ, ମୁଁ ଗୋଟିଏ ଜିଲ୍ଲା ବୃତ୍ତି ପାଇବାକୁ ଯୋଗ୍ୟ ବିବେଚିତ ହୋଇଛି । ଏହି ବୃତ୍ତି ବା ସ୍କଲାରସିପ୍ ମୋ ଜୀବନର ଧାରା ବଦଳେଇବାରେ ଅନେକ ସାହାଯ୍ୟ କଲା । ବୃତ୍ତି ନ ମିଳିଥିଲେ ହୁଏତ ମୁଁ ରାଜନୀତି କରିବାକୁ ବାଧ୍ୟ ହୋଇଥାନ୍ତି । ପରୀକ୍ଷା ଫଳ ପ୍ରକାଶ ପାଇଲା ପରେ ଆମ ଗାଁ ପାଖ ମାଣିକାଗୋଡ଼ାର ହମିଦ୍‌ବାବୁଙ୍କୁ ଦେଖା କରିବାକୁ ଗଲି । ସେ ସେତେବେଳକୁ କଲିଜିଏଟ୍ ସ୍କୁଲର ଭୂଗୋଳ ଶିକ୍ଷକ ହିସାବରେ ବେଶ୍ ସୁନାମ ଅର୍ଜନ କରିଥାନ୍ତି । ମୋର ଖବର ସେ ରଖୁଥାନ୍ତି । ତାଙ୍କୁ ଦେଖା କରିବାରେ ସେ ଭାରି ଖୁସି ହେଲେ ଏବଂ ଯେଉଁ କେତୋଟି ପରାମର୍ଶ ଦେଲେ, ସେଥିରେ ମୋର କଲେଜରେ ପଢ଼ିବା ପାଇଁ ଅନେକ ସୁବିଧା ହୋଇଗଲା । ସେ ମତେ କଟକ ପବ୍ଲିଶିଂ ହାଉସର ୰ ଉମାଚରଣ ମହାନ୍ତିଙ୍କୁ ଦେଖା କରିବାକୁ କହିଲେ । ଉମାବାବୁ ତାଙ୍କ ପବ୍ଲିଶିଂ ହାଉସ ତରଫରୁ ଭଲ ଛାତ୍ରଙ୍କୁ କଲେଜରେ ପଢ଼ିବା ପାଇଁ କିଛି ସ୍କଲାରସିପ୍‌ର ବ୍ୟବସ୍ଥା କରିଥାନ୍ତି । ତାଙ୍କ ପରାମର୍ଶ ଅନୁସାରେ ମୁଁ ଉମାବାବୁଙ୍କୁ ଦେଖାକଲି ଏବଂ ସେ ମାସକୁ ୭ଟଙ୍କାର ଗୋଟିଏ ସ୍କଲାରସିପ ଦେବେ ବୋଲି ବିନା ଦ୍ୱିଧାରେ ରାଜି ହେଲେ । ସେଥିପାଇଁ ମତେ ୨/୩ ମିନିଟ୍‌ରୁ ଅଧିକ ସମୟ ଅପେକ୍ଷା କରିବାକୁ ପଡ଼ିନାହିଁ । ମୋର ପରୀକ୍ଷା ଫଳ ଶୁଣିବା ମାତ୍ରକେ ସେ ତାଙ୍କ ଖାତାରେ ମୋ ' ନାମ ଲେଖିଦେଲେ ଏବଂ କହିଲେ ନାମଲେଖା ପରେ ପ୍ରତ୍ୟେକ ମାସ

ପହିଲା ତାରିଖରେ ଆସି ତମର ଟଙ୍କା ନେଇଯିବ । ମୁଁ ଦୁଇବର୍ଷ ଏହି ସାହାଯ୍ୟ କଟକ ପବ୍ଲିଶିଂ ହାଉସରୁ ପାଇଛି-ମୋର ଆଇ.ଏ. ପଢ଼ିବାତକ । ଯେତେବେଳେ ତାଙ୍କ ଦୋକାନକୁ ଯାଇଛି, ସେତେବେଳେ ଉମାବାବୁ ଥା'ନ୍ତୁ ବା ନଥାନ୍ତୁ; ତାଙ୍କ ଦୋକାନରୁ ଦସ୍ତଖତ କରି ୭ଟଙ୍କା ଆଣିଛି । ମୁହୂର୍ତ୍ତେ ମଧ୍ୟ ଅପେକ୍ଷା କରିବା ଦରକାର ପଡ଼ିନାହିଁ । ସରକାରୀ ଟଙ୍କା ବି ଏତେ ସହଜରେ ମିଳିବି ନାହିଁ ।

ହମିଦ୍‌ବାବୁ ପୁଣି ମତେ କହିଥିଲେ ଅଧ୍ୟାପକ ବିପିନ ବିହାରୀ ରାୟଙ୍କୁ ଦେଖାକରିବା ପାଇଁ । ସେ ଅନେକ ଦରିଦ୍ର ଓ ମେଧାବୀ ପିଲାଙ୍କୁ ସାହାଯ୍ୟ କରନ୍ତି ବୋଲି ସେ ଶୁଣିଥିଲେ । ମୁଁ ତ କଟକ ଯାଇ ସ୍ୱରାଜ ଆଶ୍ରମରେ ରହୁଥାଏ । ସେତେବେଳେ ମହତାବବାବୁ ଏହି ସ୍ୱରାଜ ଆଶ୍ରମରେ ରହୁଥାନ୍ତି । ମହତାବବାବୁଙ୍କ ସ୍କୁଲରେ ପଢ଼ିଥିବା ଯୋଗୁଁ ସ୍ୱରାଜ ଆଶ୍ରମରେ ମୋର ରହଣିକୁ କେହି ଆପତ୍ତି କରୁନଥାନ୍ତି । ଦିନେ ଉପରଓଳି ଚାରିଟାବେଳେ ବିପିନବାବୁଙ୍କୁ ଦେଖା କରିବାକୁ ଗଲି । ସେ ବାଖରାବାଦ ସନସାଇନ ପଡ଼ିଆ ପାଖରେ ନିଜ ଘରେ ରହୁଥାନ୍ତି । ମୁଁ ତାଙ୍କ ଘରକୁ ଯାଇ ତାଙ୍କୁ ସାକ୍ଷାତ୍ କରିବା ପାଇଁ ଖବର ପଠାଇଲି । ସେ ଉପର ମହଲାରେ ଥା'ନ୍ତି । ଖବର ପାଇଲା ମାତ୍ରେ ମତେ ସେ ଡାକିଲେ । ଉପରକୁ ଯାଇ ଦେଖିଲି ଯେ, ସେ ଗୋଟିଏ ଆରାମଚେଆରରେ ବସି ବିଡ଼ି ଟାଣୁଛନ୍ତି । ଏତେ ଶୀଘ୍ର ତାଙ୍କ ସହିତ ଦେଖା ହୋଇପାରିବ ବୋଲି ମୁଁ ମଧ୍ୟ ବିଶ୍ୱାସ କରିନଥିଲି । ସେତେବେଳକୁ ସେ ରେଭେନ୍‌ସା କଲେଜର ଦର୍ଶନଶାସ୍ତ୍ରର ଅଧ୍ୟାପକ ଥା'ନ୍ତି ଏବଂ ଯାହା ଶୁଣିଛି ସେ ଜଣେ ଖାଲି ଦର୍ଶନଶାସ୍ତ୍ରର ଅଧ୍ୟାପକ ନଥିଲେ, ଜଣେ ବିଶିଷ୍ଟ ଦାର୍ଶନିକ ମଧ୍ୟ ଥିଲେ । ମୋର ସୌଭାଗ୍ୟକୁ ମୁଁ ତାଙ୍କ ସହିତ କଥାବାର୍ତ୍ତା ହେଉଥିଲା ବେଳେ ଭୀଷଣ ବର୍ଷା ଆରମ୍ଭ ହୋଇଗଲା । ସେ ବର୍ଷା ପ୍ରାୟ ଘଣ୍ଟେ ଦେଢ଼ଘଣ୍ଟା ଲାଗି ରହିଲା । ତେଣୁ ବହୁ ସମୟ ଧରି ତାଙ୍କ ସହିତ କଥାବାର୍ତ୍ତା କରିବାକୁ ସୁଯୋଗ ପାଇଲି । ସେ କେବଳ ଦର୍ଶନ ଚର୍ଚ୍ଚା କରୁନଥିଲେ, ରାଜନୀତି ପ୍ରତି ମଧ୍ୟ ତାଙ୍କର ଅନେକ ଆକର୍ଷଣ ଥିଲା । ତେଣୁ ସେ ଆଗରପଡ଼ା ହାଇସ୍କୁଲ ଓ ମହତାବଙ୍କ ବିଷୟରେ ଅନେକ କଥା ଜାଣିବାକୁ ଚାହିଁଲେ । ସେ କଂଗ୍ରେସ ରାଜନୀତିକୁ ସମର୍ଥନ କରୁନଥିଲେ । ନୀଳକଣ୍ଠ ଦାସ ଓ ଗୋଦାବରୀଶ ମିଶ୍ରଙ୍କର ନ୍ୟାସନାଲ ଫ୍ରଣ୍ଟର ଜଣେ ବଡ଼ ପ୍ରବକ୍ତା ଥିଲେ । ଏଥିପାଇଁ କିପରି ମୁଁ ହଇରାଣ ହୋଇଛି, ସେ କଥା ପରେ ଲେଖିବି । ତେବେ ସେଦିନ କଥାବାର୍ତ୍ତା ପରେ ସେ ମତେ ତାଙ୍କ ଘରେ ରହି ତାଙ୍କ ପିଲାଙ୍କୁ ପଢ଼େଇବାକୁ କହିଥିଲେ । ସେତେବେଳେ ତାଙ୍କର ଏହି ସାହାଯ୍ୟ ଓ ସହାନୁଭୂତି ଯୋଗୁଁ ରେଭେନ୍‌ସା କଲେଜରେ ପଢ଼ିବାର ଅନେକ ସୁବିଧା ହୋଇଗଲା । ମୁଁ ଆଇ.ଏ.ର ପ୍ରଥମ ବର୍ଷ ତାଙ୍କ ଘରେ ରହି ତାଙ୍କ ପିଲାଙ୍କୁ ରାତିରେ ପଢ଼େଇଲି ଓ ସକାଳେ ମୋର କଲେଜ ପଢ଼ାପଢ଼ି କଲି । ବାଖରାବାଦରୁ ରେଭେନ୍‌ସା କଲେଜ ସାଢ଼େ ୩ ମାଇଲ କି ୪ ମାଇଲ ହେବ । କାଙ୍ଗାଳି

ପତି (ପରେ ଯେ ପ୍ରପତି ହେଲେ) ସେତେବେଳେ ସେ ପୁରୀଘାଟ ପାଖର ଏକ ମଠରେ ରହୁଥିଲେ । ଆମେ ଦୁଇକଣଯାକ ସାଥୀ ହୋଇ ଚାଲି ଚାଲି କଲେଜ ଯାଉଥିଲୁ ଓ ଚାଲି ଚାଲି କଲେଜରୁ ଫେରୁଥିଲୁ । ଏଠାରେ ପ୍ରଥମ ବର୍ଷର ତିନୋଟି ସ୍ମରଣୀୟ ଘଟଣା ଉଲ୍ଲେଖ କଲେ ଅପ୍ରାସଙ୍ଗିକ ହେବନାହିଁ ।

ପ୍ରଥମ ଘଟଣାଟି ଘଟିଥିଲା ସ୍ୱରାଜ ଆଶ୍ରମରେ । ସେତେବେଳକୁ କଲେଜ ଖୋଲିନାହିଁ । ମୁଁ ସ୍ୱରାଜ ଆଶ୍ରମରେ ରହିଛି । ରାଜନୀତିଜ୍ଞମାନଙ୍କ ଭିତରେ ସେତେବେଳେ ଖୁବ୍ ଜୋରରେ ଆଲୋଚନା ଚାଲିଛି-କ'ଣ କରିବାକୁ ହେବ- ଇଂରେଜମାନଙ୍କୁ ଯୁଦ୍ଧରେ ସମର୍ଥନ କରିବାକୁ ହେବ ନା ଇଂରେଜମାନଙ୍କ ବିରୁଦ୍ଧରେ ସ୍ୱାଧୀନତା ପାଇଁ ଲଢ଼େଇ କରିବାକୁ ହେବ । ଗୋଟିଏପଟେ ସୁଭାଷ ବୋଷଙ୍କ ମତ-ଜର୍ମାନୀ ଓ ଜାପାନର ସାହାଯ୍ୟ ନେଇ ଇଂରେଜଙ୍କ ବିରୁଦ୍ଧରେ ଲଢ଼େଇ ଆରମ୍ଭ କରିବା ଓ ଅନ୍ୟପଟେ ପଣ୍ଡିତ ଜବାହାରଲାଲଙ୍କ ମତ-ଫାସିଷ୍ଟ ଶକ୍ତି ସହ ମିତ୍ରତା କରି ଇଂରେଜଙ୍କ ବିରୁଦ୍ଧରେ ଲଢ଼େଇ କଲେ ଭାରତ ଫାସିଷ୍ଟ କବଳରେ ପଡ଼ିଯିବ । ତେଣୁ ସେ ଚାହୁଁଥିଲେ ଯେ, ଇଂରେଜମାନେ ଯଦି ଭାରତକୁ ସ୍ୱାଧୀନତା ଦେବେ ବୋଲି ଘୋଷଣା କରିବେ, ତାହାହେଲେ ଭାରତ ଇଂରେଜଙ୍କ ସହିତ ମିଶି ଜର୍ମାନୀ ଓ ଜାପାନଙ୍କ ବିରୁଦ୍ଧରେ ଲଢ଼େଇ କରିବ, ନଚେତ୍ ଯୁଦ୍ଧରେ ନିରପେକ୍ଷ ରହିବ-ଇଂରେଜକୁ ଯୁଦ୍ଧରେ ସାହାଯ୍ୟ କରିବ ନାହିଁ । ସେ ସମୟରେ ପଣ୍ଡିତ ଜବାହାରଲାଲ ନେହେରୁ ଏସବୁ ବିଷୟରେ ଅନେକ ପ୍ରବନ୍ଧ ଲେଖୁଥା'ନ୍ତି । ଗୋଟିଏ ପ୍ରବନ୍ଧ ତାଙ୍କର "ଫରଓ୍ୱାଡ଼୍" ନାମକ ଏକ ପତ୍ରିକାରେ ପ୍ରକାଶ ପାଇଥାଏ । ଓଡ଼ିଶାର ମୁଖ୍ୟ ନେତାମାନେ ସ୍ୱରାଜ ଆଶ୍ରମରେ ସେହି ଲେଖାଟି ପଢ଼ି ସେ ବିଷୟରେ ଆଲୋଚନା କରୁଥାନ୍ତି । ଆମେ କେତେଜଣ ଯୁବକ ପାଖ ଘରେ ବସି ସେହି ଆଲୋଚନା ଶୁଣୁଥାଉ । ସେହି ଆଲୋଚନାରେ ଅନେକ ବିଶିଷ୍ଟ କଂଗ୍ରେସ ନେତା ଯୋଗ ଦେଇଥାନ୍ତି-ମହତାବବାବୁ, ନବବାବୁ, ନିତ୍ୟାନନ୍ଦବାବୁ, ଭାଗୀରଥିବାବୁ ଇତ୍ୟାଦି । ଏଇ ଆଲୋଚନା ଭିତରେ ଗୋଟିଏ ପ୍ରଶ୍ନ ଉଠିଲା ଯେ, ଓଡ଼ିଶାର ଚାରିଆଡ଼େ ଖାଦ୍ୟ ସଙ୍କଟ ସୃଷ୍ଟି ହୋଇଛି । ଏଇ ସଙ୍କଟ ସମୟରେ କଂଗ୍ରେସ ଲୋକମାନେ ଖାଦ୍ୟ ସଙ୍କଟ ଦୂର କରିବା ପାଇଁ ଜନସାଧାରଣଙ୍କୁ କିପରି ସାହାଯ୍ୟ କରିବେ । ଏହି ଆଲୋଚନା ଚାଲିଥିବାବେଳେ ହଠାତ୍ ଜଣେ କଂଗ୍ରେସ ନେତା କହିଲେ, "ଆମେ କ'ଣ କରୁଛେ, ସେଇଟା ବଡ଼ କଥା ନୁହେଁ, ଲୋକମାନେ ଜାଣିବା ଦରକାର ଯେ, ଆମେ ସେମାନଙ୍କ ପାଇଁ କିଛି କରୁଛେ ।" ଏତକ ଶୁଣିଲା ପରେ ରାଜନୀତିଜ୍ଞମାନଙ୍କ ପ୍ରତି ଯେଉଁ ସମ୍ମାନ ଥିଲା, ସେ ସମ୍ମାନ ଆଉ ରହିଲା ନାହିଁ । ସେ ପର୍ଯ୍ୟନ୍ତ ରାଜନୀତିକ ଛଳନା ବିଷୟରେ ମୁଁ ବିଶେଷ କିଛି ଜ୍ଞାନ ସଂଗ୍ରହ କରିପାରିନଥିଲି । ମୁଁ କାହିଁକି, ମୋର ଯୁବକ ବନ୍ଧୁମାନେ ମଧ୍ୟ ଏହି ଛଳନା ବିଷୟରେ ବେଶି କିଛି ଜାଣିବାକୁ ସୁଯୋଗ ପାଇ ନଥିଲେ । ତେଣୁ ସମସ୍ତେ ଏକଥା ଶୁଣି ଆବାକାବା

ହୋଇଗଲେ । ଦିନେ ଦୁଇଦିନ ଆମର ଏ ବିଷୟରେ ଚର୍ଚ୍ଚା ଲାଗିଲା । ନିଜକୁ ଯେତେ ବୁଝେଇଲେ ମଧ୍ୟ ମନରୁ ସେ ଦୁଃଖ ଦୂର ହେଲାନାହିଁ । ଏବେ ଭାବୁଛି, ସତେ ଆମେ ସେତେବେଳେ କେଡ଼େ ନିର୍ବୋଧ ଥିଲୁ ।

ଦ୍ୱିତୀୟ ଘଟଣାଟି ଖୁବ୍ ଯନ୍ତ୍ରଣାଦାୟକ । ଓଡ଼ିଶାରେ ସେତେବେଳେ ନ୍ୟାସନାଲ ଫ୍ରଣ୍ଟର ସରକାର ଥାଏ । ସେମାନେ ଇଂରେଜଙ୍କୁ ଯୁଦ୍ଧରେ ସାହାଯ୍ୟ କରିବାକୁ ସମସ୍ତ ପ୍ରତିଶ୍ରୁତି ଦେଇଥାନ୍ତି ଏବଂ କିଛି କିଛି ସାହାଯ୍ୟ ମଧ୍ୟ କରୁଥା'ନ୍ତି । ଏହି ନ୍ୟାସନାଲ ଫ୍ରଣ୍ଟର ଜଣେ ବଡ଼ ସମର୍ଥକ ଥିଲେ ଯଦୁମଣି ମଙ୍ଗରାଜ । ଜଣେ ବକ୍ତା ହିସାବରେ ମଙ୍ଗରାଜେ ଓଡ଼ିଶାରେ ଖୁବ୍ ଖ୍ୟାତି ଅର୍ଜନ କରିଥାନ୍ତି । ମୁଁ ଯେତେବେଳେ ବିପିନବାବୁଙ୍କ ଘରେ ଥାଏ, ସେତେବେଳେ ଦିନେ ଟାଉନହଲରେ ନ୍ୟାସନାଲ ଫ୍ରଣ୍ଟ ସରକାରର କାର୍ଯ୍ୟକଳାପ ବିଚାର କରିବା ପାଇଁ ଗୋଟିଏ ସଭା ଡକାଯାଇଥାଏ । ସେହି ସଭା ଦେଖିବାକୁ ମୁଁ ମଧ୍ୟ ଯାଇଥାଏ । ଯଦୁମଣିବାବୁ ଖୁବ୍ ଏକ ଓଜସ୍ୱିନୀ ଭାଷଣ ଦେଇ ନ୍ୟାସନାଲ ଫ୍ରଣ୍ଟ ସରକାରର ଦୋଷ ବର୍ଣ୍ଣନା କରିବାକୁ ଲାଗିଲେ । ମୁଁ ଅତ୍ୟନ୍ତ ଖୁସି ହୋଇ ଲଜ୍ଜାଜନକ, ଲଜ୍ଜାଜନକ (shame, shame) ବୋଲି କହିବାକୁ ଲାଗିଲି । ମୋ କଥାରେ ଅନେକ ଲୋକ ମଧ୍ୟ ପାଳି ଧରିଲେ । ମୁଁ ଅତି ଆନନ୍ଦରେ ସଭା ଶେଷରେ ବିପିନ ବାବୁଙ୍କ ଘରକୁ ଫେରିଲି । ମୁଁ ଠିକ୍ ଆସି ବିପିନବାବୁଙ୍କ ଦୁଆର ମୁହଁରେ ପହଞ୍ଚିଲା ବେଳକୁ ଜଣେ ବିଶିଷ୍ଟ ନେତୃସ୍ଥାନୀୟ ଲୋକ ମୋର ଆଚରଣ ବିରୁଦ୍ଧରେ ବିପିନବାବୁଙ୍କୁ କହିବାକୁ ଲାଗିଥାନ୍ତି । ମୁଁ ତାଙ୍କ କଥା ଟିକିଏ ଶୁଣି ଭିତରକୁ ପ୍ରବେଶ କରିବା ବେଳେ ବିପିନବାବୁ ମତେ ଅନେକ ଭର୍ତ୍ସନା କରିବାକୁ ଲାଗିଲେ । ମୁଁ ଯଦିଓ ତାଙ୍କୁ ବହୁତ ସମ୍ମାନ କରୁଥିଲି, କିନ୍ତୁ ତୁନି ହୋଇ ରହିପାରିଲି ନାହିଁ । ମୁଁ କହିବାକୁ ବାଧ୍ୟ ହେଲି ଯେ, ଆପଣ ମୋର ବହୁତ ଉପକାର କରିଛନ୍ତି, ସେଥିପାଇଁ ମୁଁ ଆପଣଙ୍କ ପାଖରେ କୃତଜ୍ଞ; କିନ୍ତୁ ଆପଣ ଜବରଦସ୍ତି ମୋ ଉପରେ ଆପଣଙ୍କ ରାଜନୀତିକ ଚିନ୍ତା ଲଦି ଦେବାକୁ ଚେଷ୍ଟା କରନ୍ତୁ ନାହିଁ । ମୁଁ ସେହି ଚିନ୍ତା ସହିତ ଏକମତ ହୋଇପାରିବି ନାହିଁ । ସେଥିରେ ତାଙ୍କ ରାଗ ଆଉ ଟିକିଏ ବଢ଼ିଗଲା । ତାଙ୍କ କଥାରୁ ଯାହା ବୁଝିଲି, ଦରିଦ୍ର ହୋଇ ସ୍ୱାଧୀନ ମତ ଗ୍ରହଣ କରିବାର ମୋର କୌଣସି ଅଧିକାର ନାହିଁ । ଏଥିରେ ମୋ ମନରେ ଏତେ ଦୁଃଖ ହେଲା ଯେ, ମୁଁ ସେଇଦିନ କିଛି ନ ଖାଇ ବିପିନ ବାବୁ ଉପର ମହଲାକୁ ଗଲା ପରେ, ମୋର ଭଙ୍ଗା ଦଦରା ଯାହା କିଛି ଜିନିଷ ଥିଲା, ତାକୁ ଧରି ରାତି ପ୍ରାୟ ୧୧ଟା ବେଳେ ବାଙ୍କାବଜାର ଧର୍ମଶାଳାକୁ ଆସିଲି । ସେଠି ସେତେବେଳେ ମୋର ଜଣେ ଘନିଷ୍ଠ ବନ୍ଧୁ ଭଗବାନ ରାମ ରହି କଲେଜରେ ପଢୁଥିଲେ । ସେଦିନ ରାତିରେ ତାଙ୍କ ପାଖରେ ଆଶ୍ରୟ ନେଲି ଏବଂ ଦିନେ ଦୁଇଦିନ ଭିତରେ ଅନ୍ୟ କେଉଁଠି ବସା ଠିକଣା କରିବି ବୋଲି ମନସ୍ଥ କଲି । କିନ୍ତୁ ତା'ପରଦିନ ପୁଣି ସେହି ନେତୃସ୍ଥାନୀୟ ବ୍ୟକ୍ତିଙ୍କୁ ବିପିନବାବୁ ମୋ ପାଖକୁ ପଠେଇ ମତେ ଫେରିଯିବାକୁ ଅନୁରୋଧ

କଲେ । ମୁଁ ତାଙ୍କ କଥା ଭାଙ୍ଗି ପାରିଲି ନାହିଁ । କିନ୍ତୁ ତାପରେ ସେ ମୋ ରାଜନୀତିକ ମତ ଉପରେ କେବେ କୌଣସି କମେଣ୍ଟ କଲେନାହିଁ ।

ତୃତୀୟ ଘଟଣାଟି ରାଜନୀତିକ । ସେତେବେଳକୁ ମୁଁ ଯଦିଓ ଷ୍ଟୁଡେଣ୍ଟସ୍ ଫେଡ଼େରେସନ ଓ କମ୍ୟୁନିଷ୍ଟ ପାର୍ଟି ସହିତ ପ୍ରାୟ ସମସ୍ତ ସମ୍ପର୍କ ତୁଟେଇ ଦେଇଥାଏ, ତଥାପି ସମୟେ ସମୟେ ଚାନ୍ଦିନୀଚୌକରେ ଅବସ୍ଥିତ କମ୍ୟୁନିଷ୍ଟ ପାର୍ଟି ଅଫିସକୁ ଯାଉଥାଏ । ଦିନେ ଏହିପରି ସେଠି ଅନ୍ୟାନ୍ୟ ବନ୍ଧୁମାନଙ୍କ ସହିତ ବସିଛି, ହଠାତ୍ ପୋଲିସ ଆସି ପାର୍ଟି ଅଫିସ ରେଡ୍ କଲେ । କମ୍ୟୁନିଷ୍ଟମାନେ ସେ ପର୍ଯ୍ୟନ୍ତ ପିପୁଲସ ଓ୍ୟାର ବାହାନାରେ ଜର୍ମାନୀଙ୍କୁ ସମର୍ଥନ କରୁଥା'ନ୍ତି । ରୁଷିଆ ସହିତ ଜର୍ମାନୀର ମେଣ୍ଟ ସରି ନଥାଏ । ଜର୍ମାନୀ ରୁଷିଆକୁ ଯାଇ ଆକ୍ରମଣ କଲାପରେ ପିପୁଲସ ଓ୍ୟାର ସାମ୍ରାଜ୍ୟବାଦ ଯୁଦ୍ଧରେ ପରିଣତ ହେଲା । ମୋର ଏଇ ବିଷୟରେ କମ୍ୟୁନିଷ୍ଟ ବନ୍ଧୁମାନଙ୍କ ସହିତ ଯୁକ୍ତିତର୍କ ଚାଲିଥାଏ । ସେମାନେ ତ ମୋ ସହିତ ଏକମତ ହେବା କଥା ନୁହେଁ, ମତେ ସେମାନେ ବୁଝାଇବାକୁ ଚେଷ୍ଟା କରୁଥା'ନ୍ତି । ତେବେ ଯେତେବେଳେ ପୋଲିସ ଆସି କମ୍ୟୁନିଷ୍ଟ ପାର୍ଟି ଅଫିସ ରେଡ୍ କଲେ, ଯେତେ କମ୍ୟୁନିଷ୍ଟ ବନ୍ଧୁ ସେଠି ଥିଲେ ସମସ୍ତେ ପାଚେରି ଡେଇଁ ହଠାତ୍ କେଉଁଆଡ଼େ ଅନ୍ତର୍ଦ୍ଧାନ ହୋଇଗଲେ । ମୁଁ ପାଚେରୀ ଡେଇଁ ପାରିଥାନ୍ତି କି ନାହିଁ ଜାଣିନାହିଁ, କାରଣ ଡିଆଁଡେଇଁର କୌଶଳ ମତେ କିଛି ଜଣା ନଥିଲା, ତେଣୁ ଡେଇଁବାକୁ ଚେଷ୍ଟା ମଧ୍ୟ କଲିନାହିଁ । ପୋଲିସବାଲା ମତେ ଧରି ନେଇ ବୋଧହୁଏ ୪/୫ ଘଣ୍ଟା ଥାନାରେ ଅଟକେଇ ଛାଡ଼ିଦେଲେ । ଭାବିଲେ ମୋ ପରି ଗୋଟିଏ ନିରୀହ ଲୋକ କୌଣସି ଗୋଳମାଳ କି ଷଡ଼ଯନ୍ତ୍ର କରିପାରିବ ନାହିଁ । ଯେ ଗୋଟିଏ ପାଚେରି ଡେଇଁ ପାରୁନାହିଁ, ସେ ବ୍ରିଟିଶ ସରକାର ବିରୁଦ୍ଧରେ ଷଡ଼ଯନ୍ତ୍ର କରିବ କ'ଣ !

ଏହି ତିନୋଟି ଘଟଣା ବ୍ୟତୀତ ଅନ୍ୟ କିଛି ବିଶେଷ ଘଟଣା ମୋର ମନେ ନାହିଁ । ରେଭେନ୍ସା କଲେଜ ଅନୁଭୂତି ପରେ ଲେଖିବି । ସାରା ପ୍ରଥମ ବର୍ଷଟି ଜାଙ୍ଗାଳୀବାବୁ ଓ ମୁଁ ରେଭେନ୍ସା କଲେଜକୁ ଚାଲିକରି ଯାଉଥିଲୁ । ଜାଙ୍ଗାଳୀବାବୁ ଜଣେ ଭାବପ୍ରବଣ ଲୋକ । ପ୍ରଥମ ବର୍ଷରେ ମୁଁ ତାଙ୍କର ଭାବପ୍ରବଣତା ଲକ୍ଷ୍ୟ କରିଛି । ଏମ୍.ଏ. ମଧ୍ୟ ଆମେ ଦୁଇଜଣ ଆହ୍ଲାବାଦରେ ପଢ଼ିଥିଲୁ ଓ ପରସ୍ପର ଘନିଷ୍ଠ ସମ୍ପର୍କରେ ଆସିଥିଲୁ । ଅବଶ୍ୟ ତାଙ୍କର ବିଷୟ ଓ ମୋର ବିଷୟ ଅଲଗା ଥିଲା । ସେ ଏମ୍.ଏ.ରେ ଦର୍ଶନଶାସ୍ତ୍ର ନେଇଥିବା ଯୋଗୁଁ ତାଙ୍କର ଭାବପ୍ରବଣତା ଆଉ ଟିକିଏ ଅଧିକ ବଢ଼ିଥିଲା । ମୁଁ ତ ଅର୍ଥନୀତି ପଢୁଥିଲି । ଅର୍ଥନୀତି ପାଖରେ ଭାବପ୍ରବଣତା ସହଜରେ ପଶିପାରେ ନାହିଁ । ପ୍ରଥମ ବର୍ଷରେ ମଧ୍ୟ ଆମ ଦୁଇଜଣଙ୍କର କଥାବାର୍ତ୍ତାରେ ଅନେକ ମତଭେଦ ହୁଏ । କିନ୍ତୁ ସେଥିରେ ରାଗ କି ଦ୍ୱେଷ ନଥାଏ । ଏହି ମତଭେଦ ଓ ଯୁକ୍ତିତର୍କ ଯୋଗୁଁ ଚାଲିବା କଷ୍ଟ ଜଣାପଡ଼େ ନାହିଁ । ସେ ସମୟରେ ରାଣୀହାଟଠାରୁ କାଠଯୋଡ଼ି କୂଳ ପର୍ଯ୍ୟନ୍ତ

ବେଶିକିଛି ଘରଦ୍ୱାର ନଥାଏ । ବଜ୍ରକବାଟି ପାଖରେ ଗୋଟିଏ ବଡ଼ ମଦଖଟି ଥାଏ । ତେଣୁ କଲେଜରେ ଯେଉଁଦିନ ଟିକିଏ କାମ ପଡ଼େ ଏବଂ ଫେରିବାର ସମୟ ସନ୍ଧ୍ୟା କି ରାତି ହୋଇଯାଏ, ଆମେ ଆଉ ସେବାଟେ ନ ଫେରି ବକାର ରାସ୍ତାରେ ବୁଲିବୁଲି ବସାକୁ ଆସୁ । ଥରେ ମୁଁ ଏକୁଟିଆ ଫେରିବାବେଳେ ତିନିପତିଆ ତାସ୍‌ବାଲାଙ୍କ ହାବୁଡ଼ରେ ପଡ଼ି ଟଙ୍କାଟିଏ ହରେଇଥିଲି । ପାଖରେ ଅଧିକ ଟଙ୍କା ଥିଲେ ବୋଧହୁଏ ସେମାନେ ଜବରଦସ୍ତି ମୋ'ଠାରୁ ସେତେକ ସଂଗ୍ରହ କରିଥା'ନ୍ତେ । କିନ୍ତୁ ସେମାନଙ୍କ ଦୁର୍ଭାଗ୍ୟକୁ ଗରାଖ ଚିହ୍ନିବାରେ ସେମାନଙ୍କର ଅନେକ ଭୁଲ ହୋଇଗଲା ।

ଟିଉସନ ଓ ମୋ' ପଢ଼ାକଥା ଟିକିଏ ଲେଖି ରେଭେନ୍‌ସା କଲେଜର ପ୍ରଥମ ବର୍ଷର ସ୍ମୃତି ଶେଷ କରିବି । ମୁଁ ପ୍ରତିଦିନ ସନ୍ଧ୍ୟାରେ ବିପିନବାବୁଙ୍କର ପିଲାମାନଙ୍କୁ ପ୍ରାୟ ୨/୩ ଘଣ୍ଟା ପଢ଼ାଏ । ସେଥିପାଇଁ ରାତିରେ ମୁଁ ବେଶିକିଛି ପଢ଼ିପାରେ ନାହିଁ । ପ୍ରତିଦିନ ୭/୮ ମାଇଲ ଚାଲିବା ଯୋଗୁଁ ଏତେ ହାଲିଆ ହୋଇଯାଇଥାଏ ଯେ, ୯.୩୦ କି ୧୦ଟାରେ ଶୋଇବାକୁ ବାଧ୍ୟ ହୁଏ । କିନ୍ତୁ ବଡ଼ି ସକାଳୁ ଉଠି ବିପିନବାବୁଙ୍କ ଘରର ଷ୍ଟେଆରକେଶ ରୁମରେ ଯାଇ ପଢ଼ିବାକୁ ଚେଷ୍ଟା କରେ । ଦିନେ ଦିନେ ବିପିନବାବୁ ତୁନି ତୁନି ଯାଇ ମୁଁ ପଢୁଛି କି ନାହିଁ ପରୀକ୍ଷା କରନ୍ତି । କିନ୍ତୁ ଏଥିରେ ମୁଁ କେବେ ଫେଲ ହେବାର-ଜାଣିନାହିଁ । ବର୍ଷାଦିନେ ଦିନେ ଦିନେ ଷ୍ଟେଆରକେଶ ରୁମରେ ମୋ ଉପରେ ବର୍ଷା ଛିଟିକା ମଧ୍ୟ ପଡ଼େ । କିନ୍ତୁ ତାହା କେବେ ମୋ ପଢ଼ାରେ ପ୍ରତିବନ୍ଧକ ସୃଷ୍ଟି କରିବାର ମନେ ହେଉନାହିଁ । ଏହିପରି ଗୋଟିଏ ବର୍ଷ କଟିଲା ପରେ ମୁଁ ବିପିନବାବୁଙ୍କ ଘର ଛାଡ଼ି କଲେଜ ପାଖକୁ ଆସି ଗୋଟିଏ ମେସ୍‌ରେ ରହିଲି । ସେ କଥା ଆର ଥରକୁ ।

●

---

*ସ୍ମୃତିତୀର୍ଥ*, ପ୍ରଜାତନ୍ତ୍ର ପ୍ରଚାର ସମିତି, କଟକ, ୧୯୯୫

# ରେଭେନ୍‌ସା କଲେଜରେ ଅଧ୍ୟୟନ

## ମନ୍ମଥ ନାଥ ଦାସ

### ସେ ବେଳର ସ୍ମୃତି (ଭର୍ତ୍ତି ସମୟ, ଜୁଲାଇ ୧୯୪୨)

ହାଇସ୍କୁଲରେ ପଢ଼ିଲାବେଳେ ଥରେ କେତେଜଣ ସାଙ୍ଗ ମିଶି କଟକ ବୁଲିବାକୁ ଆସିଥିଲୁଁ। ଦ୍ରଷ୍ଟବ୍ୟ ସ୍ଥାନ ତାଲିକାରେ ପ୍ରଥମ ନାମ ଥାଏ ରେଭେନ୍‌ସା କଲେଜ। ସେଠାରେ ଯେଉଁ ବ୍ୟକ୍ତିଙ୍କୁ ପ୍ରଥମେ ଦେଖିବା ଲାଗି ଠିକ୍ କରିଥିଲୁଁ, ସେ ଥିଲେ କଲେଜର ଅଧ୍ୟକ୍ଷ, ପରିଜା ସାହେବ। ମାଇନର ପଢ଼ିବା ସମୟରୁ ତାଙ୍କ ନାମ ଶୁଣିଥିଲି। ମୋ ବଡ଼ମାମୁ କାଳୀକିଙ୍କର ସାମଲ ଥିଲେ ତାଙ୍କର ଛାତ୍ର। କାହାଣୀ ଆକାରରେ ତାଙ୍କ ମୁହଁରୁ ଶୁଣିଥାଏ ପରିଜା ଉପାଖ୍ୟାନ-ଦରିଦ୍ର ଘରେ ଜନ୍ମ, ପର ଘରେ କାମ କରି ମା ପାଠ ପଢ଼ାଇଥାନ୍ତି, ପ୍ରତିଭା ବଳରେ ଯାଇଥିଲେ ଉଚ୍ଚଶିକ୍ଷା ଲାଗି ଇଂଲଣ୍ଡ, ଅଧ୍ୟାପକ ଚାକିରି ପାଇଲାବେଳେ ତାଙ୍କ ମାମୁଙ୍କ ଖେଦୋକ୍ତି, ଯଥା: "ପ୍ରାଣକୃଷ୍ଣ, ଏତେ ପାଠ ପଢ଼ି ଶେଷରେ ମାଷ୍ଟରଟିଏ ହେଲୁ, ଥାନା ଦାରୋଗା ହୋଇଥିଲେ କେଡ଼େ ଖୁସି ହୋଇଥାନ୍ତି"- ଇତ୍ୟାଦି। ହାଇସ୍କୁଲ ଧରିଲାବେଳକୁ ପରିଜା ସାହେବ ଥିଲେ ଶିକ୍ଷାଜଗତରେ ଜଣେ ପ୍ରବାଦପୁରୁଷ।

ରେଭେନ୍‌ସା କଲେଜ, ପରିଜା ସାହେବ ଓ କେତେଜଣ ଅଧ୍ୟାପକଙ୍କୁ ଦେଖିଲାପରେ କଲେଜରେ ପଢ଼ିବା ଲାଗି ମନରେ ଆଶା ଆସିଯାଇଥିଲା।

ମେଟ୍ରିକ ପରେ ରେଭେନ୍‌ସାରେ ଭର୍ତ୍ତି ହେବାକୁ ଆସିଲି। କେଉଁ ବିଷୟଗୁଡ଼ିକ ନେଇ ପାଠ ପଢ଼ିବି ବୋଲି ଶଶିକାନ୍ତ ଭଞ୍ଜ ନାମକ ଉପର କ୍ଲାସର ଜଣେ ଛାତ୍ରଙ୍କୁ ପଚାରିଲି। ସେ କହିଥିଲେ, "ରେଭେନ୍‌ସାରେ ଯଦି ପଢ଼ିବ ଓ କଳା ବିଷୟ ନେଇ ଆଇ.ଏ.ରେ ଭର୍ତ୍ତି ହେବ, ତେବେ ଅର୍ଥନୀତି ବିଷୟଟି ନିଶ୍ଚୟ ରଖ, କାରଣ ସଦାଶିବ ମିଶ୍ରଙ୍କ ଛାତ୍ର ରୂପେ ମନ୍ତ୍ରମୁଗ୍ଧ ହେଲାପରି ତାଙ୍କ ଲେକ୍‌ଚାର ଶୁଣିବ। ଅର୍ଥନୀତି ସାଙ୍ଗକୁ ଇତିହାସ ମଧ୍ୟ ରଖିଥାଅ।" ୧୯୪୨ ଜୁଲାଇ ମାସ ଦ୍ୱିତୀୟ ସପ୍ତାହରେ କଲେଜରେ ନାମ ଲେଖାଇଲି ଓ ପଶ୍ଚିମ ଛାତ୍ରାବାସରେ ରହିଲି।

## ୧୯୪୨ 'ଅଗଷ୍ଟ ବିପ୍ଳବ'

ଭର୍ତ୍ତି ହେବାର କେତୋଟି ସପ୍ତାହ ମଧ୍ୟରେ ଆରମ୍ଭ ହେଲା 'ଭାରତଛାଡ଼' ଆନ୍ଦୋଳନ ବା ଅଗଷ୍ଟ ବିପ୍ଳବ। ସର୍ବଭାରତୀୟ ସେହି ମହାନ ବିପ୍ଳବ ଦ୍ୱାରା ସାରା ଦେଶ ପ୍ରକମ୍ପିତ ହେଲା। ରେଭେନ୍‌ସା କଲେଜର ଛାତ୍ରମାନେ ସେଥିରେ ଝାସ ଦେଲେ।

ଦିନେ ବେଳ ଓଳି ପଶ୍ଚିମ ଛାତ୍ରାବାସର ଉପର ମହଲାରେ ମୋ ରୁମ୍‌ରେ ଶୋଇଥାଏଁ। ସକାଳବେଳା କଲେଜର ଡାକ୍ତର କେଶବଚନ୍ଦ୍ର ସାହୁ ଜ୍ୱର ପାଇଁ ଇଞ୍ଜେକସନ୍ ଦେଇଥିଲେ। ପତଳା ଅଧୋବସ୍ତ୍ର ବା ଆଣ୍ଡାରଉଏଆରଟି ପିନ୍ଧି ଖାଲି ଦେହରେ ବିଛଣାରେ ପଡ଼ିଥିଲି। ଛାତ୍ରାବାସର ତଳ ତାଲାକୁ ଲାଗିଥାଏ କଲେକର ମୁଖ୍ୟ ଅଫିସ କକ୍ଷ। ଦିନ ପ୍ରାୟ ୨ଟା ବେଳେ ସେଠାରେ ପ୍ରବଳ କୋଳାହଳ ଶୁଭିଲା। କ'ଣ ହେଉଛି ଦେଖିବା ଲାଗି ତଳକୁ ଚାଲିଆସିଲି। ଅଫିସଘର ଚାରିପଟେ ଧୂଆଁ ଦେଖି ସେ ଆଡ଼କୁ ଦୌଡ଼ିଲି। ଛାତ୍ରମାନେ ଏଣେ ତେଣେ ପଳାଉଥାନ୍ତି। ଅଫିସ ଭିତରେ ନିଆଁ ଜଳୁଥାଏ। କିଛି ନ ଭାବି ପଶିଗଲି। କିନ୍ତୁ କିରାଣିମାନଙ୍କୁ ପଳାଉଥିବା ଦେଖି ଶୀଘ୍ର ବାହାରି ଆସିଲି।

ଅଫିସ-ଭିତରୁ ବାହାରି ବାରଣ୍ଡା ବାଟରେ ହଷ୍ଟେଲ ଆଡ଼କୁ ଦୌଡ଼ିଲାବେଳେ ହଠାତ୍ ଓ୍ୱାର୍ଡେନ ବଳଭଦ୍ର ପ୍ରସାଦଙ୍କ ହାବୁଡ଼ରେ ପଡ଼ିଗଲି। ମୋ ହାତଟି ଧରିପକାଇ ପଚାରିଦେଲେ, ତୁମର ନାମ କଣ ? ରୁମ୍ ନମ୍ବର କେତେ ? ମୁଁ ଉତ୍ତର ଦେଲି ଓ ଖଣ୍ଡିଏ କାଗଜରେ ସେ ଟିପିପକାଇଲେ। ତାଙ୍କର ଆଖି ଦୁଇଟି ନିବଦ୍ଧ ଥାଏ ମୋର ପୋଷାକବିହୀନ ଦେହ ଉପରେ। ଅନୁମାନ କରିପାରିଲି, ନିଶ୍ଚୟ ସେ ମୋତେ ଅଗ୍ନିସଂଯୋଗକାରୀ ଦଳରେ ସାମିଲ କରିବେ।

ଧରପଗଡ଼ ଚାଲିଲା। ପ୍ରଥମ ଦଫାରେ କେତେଜଣ ଛାତ୍ରନେତା ଏରେଷ୍ଟ ହେଲେ। ଦ୍ୱିତୀୟ ଦଫାରେ ସନ୍ଦେହ ଘେରରେ ଥିବା ଛାତ୍ରମାନଙ୍କୁ ଜେରା ପାଇଁ ଧରି ନିଆଗଲା। ସେମାନଙ୍କ ମଧ୍ୟରେ ମୁଁ ଥାଏ। ପୋଲିସ ଇନ୍‌ସପେକ୍‌ଟର କାଶୀନାଥ ମିଶ୍ର ତଦନ୍ତ କରୁଥିଲେ। ତାଙ୍କ ପାଖରେ ବସିଥାନ୍ତି ଅଧ୍ୟାପକ ବଳଭଦ୍ର ପ୍ରସାଦ। ସେ କହିଲେ, ଏହି ପିଲାକୁ ଖାଲି ଦେହରେ ଅଫିସ ଭିତରୁ ବାହାରି ଆସିବା ମୁଁ ନିଜେ ଦେଖିଛି। ଇନ୍‌ସପେକ୍‌ଟର ସାହେବ ମୋର ନାମ, ବାପାଙ୍କ ନାମ, ଗାଁ ଓ ଥାନାର ନାମ ଇତ୍ୟାଦି ପଚାରି ତାଙ୍କ ଡାଏରୀରେ ଲେଖିବାକୁ ଲାଗିଲେ।

ମୋର ମନେପଡ଼ିଗଲା, କାଶୀନାଥ ମିଶ୍ରଙ୍କୁ ପିଲାବେଳେ ଆମ ଗାଁରେ ଦେଖିଛି। ସେତେବେଳେ ସେ ଥିଲେ ଭୋଗରାଇ ଥାନାର ଦାରୋଗା। ଗୋଟିଏ ଡକାୟତି ଘଟଣାର ଅନୁସନ୍ଧାନ ପାଇଁ ଆମ ଗାଁକୁ ଯାଇଥିଲେ। ମୋ ବାପା ଥିଲେ ଅଞ୍ଚଳ ପ୍ରେସିଡେଣ୍ଟ୍। ସେତେବେଳେ ବାପାଙ୍କ ନାମ ଓ ଗାଁ ନାମ ଇତ୍ୟାଦି ଶୁଣିଲେ, ମୋ ଆଡ଼କୁ ତୀକ୍ଷ୍ଣ ଦୃଷ୍ଟିରେ ଚାହିଁରହି ମନ୍ତବ୍ୟ

ଦେଲେ, ଏତେ ଅଳ୍ପ ବୟସର ପିଲା ଅଫିସ ପୋଡ଼ିବାକୁ ସାହସ କରିବା ସମ୍ଭବ ନୁହେଁ। ଦ୍ୱିତୀୟରେ, ମାତ୍ର ଏକମାସ ପୂର୍ବେ କଲେଜରେ ଭର୍ତ୍ତି ହୋଇଛି। ମୁଁ ନିର୍ଦ୍ଦୋଷ ସାବ୍ୟସ୍ତ ହୋଇ ବାହାରି ଆସିଲି। ବାପାଙ୍କ ନାମଟି ଯୋଗୁଁ ବିପଦରୁ ରକ୍ଷା ପାଇଗଲି। ଓ୍ୱାର୍ଡେନ ପ୍ରତିବାଦ ନକରି ଗମ୍ଭୀର ଭାବରେ ବସିରହିଥିଲେ। ଅପରପକ୍ଷରେ, ସହକାରୀ ସୁପରିନ୍‌ଟେଣ୍ଡେଣ୍ଟ ଜଗଦାନନ୍ଦ ମହାନ୍ତି ଆନନ୍ଦିତ ହେବା ଦେଖିଲି। ସେ ଥିଲେ ମୋର ଇତିହାସ ଅଧ୍ୟାପକ।

ଅଫିସ ପୋଡ଼ିର କିଛିଦିନ ପରେ ରେଭେନ୍‌ସା କଲେଜରୁ ବାହାରିଲା ଛାତ୍ର ପଟୁଆର। ସେଥିରେ ଯୋଗ ଦେଲି। ଛାତ୍ରନେତାମାନେ ପ୍ରତ୍ୟେକ ଧାଡ଼ିରେ ଚାରିଜଣ ଲେଖାଏଁ ଛାତ୍ରଙ୍କୁ ଛିଡ଼ା କରାଇ ଶୋଭାଯାତ୍ରାର ରୂପ ନିର୍ଣ୍ଣୟ କଲେ। ଆଗଧାଡ଼ି ଗୁଡ଼ିକରେ ରହିଲେ ବଡ଼ ବଡ଼ ପିଲାମାନେ। ମୁଁ ଥିଲି ଦଶମ ଧାଡ଼ିରେ। ମୋ ଦୁଇ ପାଖରେ ଥିଲେ ଛାତ୍ରାବାସର ଦୁଇଜଣ ଅନ୍ତେବାସୀ, ପୁରୀର ଚନ୍ଦ୍ରଶେଖର ନାୟକ ଓ ବବି ଡାକନାମର ଜଣେ ପିଲା। ଆମ ପଛରେ ଥାଏ ଅନେକଗୁଡ଼ିଏ ଧାଡ଼ି। 'ଭାରତ ମାତା କି ଜୟ', 'ମହାତ୍ମା ଗାନ୍ଧି କୀ ଜୟ', 'ବ୍ରିଟିଶ ସରକାର ଭାରତ ଛାଡ଼', 'ଇନ୍‌କିଲାବ୍ ଜିନ୍ଦାବାଦ' ଇତ୍ୟାଦି ଧ୍ୱନି ଦେଇ ଛାତ୍ରମାନେ ଆକାଶମଣ୍ଡଳ ପ୍ରକମ୍ପିତ କଲେ।

ପଟୁଆର କଲେଜ ଗେଟ୍‌ରୁ ବାହାରି ରାଣୀହାଟ ରାସ୍ତାରେ ମେଡ଼ିକାଲ କଲେଜ ହତା ଦିଗକୁ ଅଗ୍ରସର ହେଲା। ଅସଂଖ୍ୟ ନରନାରୀ ରାସ୍ତାର ଉଭୟ ପାଖରେ ଛିଡ଼ା ରହିଥାନ୍ତି। ମେଡ଼ିକାଲ ହତା ମଧ୍ୟରେ ମେଡ଼ିକାଲ ଛାତ୍ରମାନେ ପଟୁଆରରେ ଯୋଗ ଦେଲେ। ହତାର ପଶ୍ଚିମ ଗେଟ୍ ପାଖରେ ପହଞ୍ଚିଲାବେଳକୁ ସେଠାରେ ଅପେକ୍ଷା କରିଥାନ୍ତି ଲାଠି ଓ ବନ୍ଧୁକଧାରୀ ପୋଲିସ ଫୌଜ ସହିତ ସ୍ୱୟଂ ଇଂରେଜ ପୋଲିସସାହେବ ହାର୍‌ଗ୍ରିଭସ୍।

ସେହି ମୁହୂର୍ତ୍ତର ଦୃଶ୍ୟ ପ୍ରାଞ୍ଜଳ ଭାବରେ ମନେ ରହିଛି। ଆଗଧାଡ଼ି ଗୁଡ଼ିକରେ ଥିବା ଉପର କ୍ଲାସର ନେତୃସ୍ଥାନୀୟ ଛାତ୍ରମାନେ ପୋଲିସସାହେବଙ୍କ ବଜ୍ରଗମ୍ଭୀର ସ୍ୱରରେ ଉଚ୍ଚାରିତ ହେଉଥିବା ଆଦେଶମାନ ଶୁଣିପାରୁଥିଲେ। କିନ୍ତୁ ଆମ କାନକୁ ଶୁଭୁଥାଏ ବାରମ୍ବାର ହୁଇସିଲ ଧ୍ୱନି। ଯେଉଁମାନେ ସତର୍କବାଣୀ ଶୁଣିପାରିଲେ, ସେମାନେ ଅବିଳମ୍ବେ ପଛକୁ ଆସି "ଆଗେଇ ଚାଲ", "ଆଗେଇ ଚାଲ" କହି ଆମକୁ ଉତ୍ସାହିତ କରିବାକୁ ଲାଗିପଡ଼ିଲେ। ଆମେ ଗଳା ଫଟାଇ ସ୍ଲୋଗାନ ଦେଇ ଆଗେଇଚାଲିଲୁଁ। ହଠାତ୍ ହାର୍‌ଗ୍ରିଭସ୍ ସାହେବଙ୍କ ଗର୍ଜନ ଶୁଭିଲା- "Charge" । ଆରମ୍ଭ ହୋଇଗଲା ଲାଠିମାଡ଼। ମୋ ଦୁଇପାଖରେ ଚନ୍ଦ୍ରଶେଖର ଓ ବବି ଉଚ୍ଚତାରେ ମୋ ଠାରୁ ଲମ୍ବ ଥାନ୍ତି। ବସିଗଲା ସେମାନଙ୍କ ମୁଣ୍ଡରେ ଶକ୍ତ ପ୍ରହାର। ମୁହୂର୍ତ୍ତ ମଧ୍ୟରେ ଆର୍ତ୍ତନାଦ ସହ ରକ୍ତାକ୍ତ ଅବସ୍ଥାରେ ସେମାନେ କଚାଡ଼ି ପଡ଼ିଲେ। ଦୁହିଁଙ୍କ ମଧ୍ୟରେ ଥାଇ ମୁଁ ମଧ୍ୟ ଧରାଶାୟୀ ହେଲି। ସେତେବେଳେ ଅନ୍ୟତ୍ର ଲାଠିଚାର୍ଜ ଚାଲିଥାଏ। କୋଳାହଳ ଓ ଚିତ୍କାର

ମଧ୍ୟରେ ସମସ୍ତେ ଏଣେ ତେଣେ ଛତ୍ରଭଙ୍ଗ ଦେଉଥାନ୍ତି । ଗୋଡ଼ାଇ ଗୋଡ଼ାଇ ପୋଲିସ ମାଡ଼ ଦେଉଥାଏ । ତେଣେ ଆସିଯାଉଥାଏ ସନ୍ଧ୍ୟା । ମାଟି ଉପରୁ ଉଠି ଚାହିଁଲା ବେଳକୁ ଗେଟ୍ ପାଖରେ ହ୍ୱାରଗ୍ରିଭସ୍ ସାହେବ ଆଉ ନଥିଲେ । କିନ୍ତୁ ଚାରିଆଡ଼େ ଥିଲେ ଲାଠିଧାରୀ ପୋଲିସ ଫୋର୍ସ ।

କିଛି ସମୟ ପରେ ମେଡ଼ିକାଲ ଛାତ୍ରମାନେ ଆହତ ଦୁଇବନ୍ଧୁଙ୍କୁ ମୋ ପାଖରୁ ଟେକିନେବା ଦେଖି ଗୋଡ଼ରୁ ଜୋତା କାଢ଼ିପକାଇ ମୁଁ ପ୍ରାଣମୂର୍ଚ୍ଛା ଦୌଡ଼ିଲି । ମେଡ଼ିକାଲ ହତାର ଶେଷ ସୀମାରେ ଥିବା ଡ୍ରେନ୍ ଭିତରେ ଖସିପଡ଼ି ସେଥିରୁ ଉଠିଲାବେଳକୁ ବାଁ ଗୋଡ଼ରୁ ରକ୍ତ ଝରୁଥାଏ । ପଶିଯାଇଥିବା ଭଙ୍ଗା କାଚଟି ଟାଣିପକାଇ ଦୌଡ଼ି ଦୌଡ଼ି ପହଞ୍ଚିଲି କଲେଜ ପାଖ କସ୍‌ମୋପୋଲିଟାନ୍ ମେସ୍‌ରେ । ସେଠାରେ ମୋ ସାନ ଭିଣେଇ ରାଧାବିନୋଦବାବୁ ଗୋଡ଼ରେ ବ୍ୟାଣ୍ଡେଜ୍ ବାନ୍ଧିଲେ ଓ ଧରି ଧରି ହଷ୍ଟେଲରେ ନେଇ ଛାଡ଼ିଲେ ।

ରାତି ପାହିଲାବେଳକୁ ହଷ୍ଟେଲ ଛାଡ଼ିବା ଲାଗି ନୋଟିସ୍ ବାହାରିଗଲା । ଚନ୍ଦ୍ରଶେଖରର ମା' ପୁରୀରୁ ଆସି ବିକଳ ଭାବରେ କାନ୍ଦୁଥିବାର ଦେଖିଲି । ମୁଣ୍ଡରେ ମୋଟା ବ୍ୟାଣ୍ଡେଜ ବାନ୍ଧି ପାଖରେ ବସିଥାନ୍ତି ଚନ୍ଦ୍ରଶେଖର । ମା ଓ ପୁଅଙ୍କ ମଧ୍ୟରେ ସେବେଳର ବାକ୍ୟାଳାପ ମନେ ରହିଛି । ମା କହିଲେ, "ଘରକୁ ନେବାକୁ ଆସିଛି । ମୋ ଦୁଃଖ କଥା ଟିକିଏ ଭାବିଥା ।" ପୁଅ ଉତ୍ତର ଦେଲେ, "ନିଜ ମା କଥା ଭାବିବି ନା ଭାରତମାତାଙ୍କ କଥା ଭାବିବି କହିଲୁ ? ନା, ଘରକୁ ଯିବି ନାହିଁ । ଦେଶ ପାଇଁ ଜେଲ୍ ଯିବି ।" ଏବେ ଚନ୍ଦ୍ରଶେଖର ସହିତ ଦେଖା ହେଲେ ତାଙ୍କର ସେହି ବାକ୍ୟଗୁଡ଼ିକ ସୂଚାଇ ଦେଇଥାଏଁ । ଆହତ ବବିକୁ ବ୍ୟାଣ୍ଡେଜ୍ ବନ୍ଧା ଅବସ୍ଥାରେ ସେଦିନ ଦେଖିଥିଲି । କିନ୍ତୁ ଭବିଷ୍ୟତରେ ଆଉ କେବେ ତାଙ୍କୁ ଦେଖିନାହିଁ ।



***ଜୀବନର ପଥପ୍ରାନ୍ତେ ଦିଗନ୍ତର ଦୃଶ୍ୟ,***
ବିଦ୍ୟାପୁରୀ, କଟକ, ୧୯୯୬

# ରେଭେନ୍‌ସା ବାଳିକା ବିଦ୍ୟାଳୟରୁ ରେଭେନ୍‌ସା କଲେଜ

## ନିରୂପମା ରଥ

ରେଭେନ୍‌ସା ବାଳିକା ବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ହୋଇ ଯାଏ ରେଭେନ୍‌ସା କଲେଜକୁ । ଆଇ.ଏସ୍‌ସି.ରେ ଜୁଲାଇ ୧୯୪୨ରେ ନାମ ଲେଖାଇଲି । ଡାକ୍ତର ହେବାର ଅଭିଳାଷ । ତା' ଛଡ଼ା କୌଣସି ମହିଳା ମହାବିଦ୍ୟାଳୟକୁ ଯିବା ପାଇଁ ମୋର ବିତୃଷ୍ଣା ଥିଲା । ଯେହେତୁ ସେତେବେଳେ ସେ ସବୁ ମହିଳା ମହାବିଦ୍ୟାଳୟରେ ମୁକ୍ତ ବାତାବରଣ ନ ଥିଲା । ଶେଷ ସ୍ୱାଧୀନତା ସଂଗ୍ରାମର ଆହ୍ୱାନର ଗଗନ ପବନ ପ୍ରକମ୍ପିତ ହେଉଥିଲେ ମଧ୍ୟ ମହିଳାମାନଙ୍କର ଜୀବନ ଏତେ ଉନ୍ନତ ଏବଂ ବିକଶିତ ହୋଇ ନଥିଲା । ସେମାନେ ନାନାଦି ବନ୍ଧନ କୁସଂସ୍କାର ମଧ୍ୟରେ ଶୃଙ୍ଖଳିତ ହୋଇ ରହିବାକୁ ବାଧ୍ୟ ହେଉଥିଲେ । ଯଦିଓ ମନ ଭିତରେ କିଛି କିଛି ବିଦ୍ରୋହ ଭାବ ଆସୁଥିଲା ତଥାପି ସେମାନେ ମହିଳା କଲେଜରେ ବାହାର ଜଗତରୁ ସଂପୂର୍ଣ୍ଣ ବିଚ୍ଛିନ୍ନ ହୋଇ ରହୁଥିଲେ । ବନ୍ଧନ ମଧ୍ୟରେ ଆବଦ୍ଧ ହୋଇ କୂପ ମଣ୍ଡୁକ ଜୀବନ ଯାପନ ମୋର ରୁଚି ଓ ଇଚ୍ଛାବିରୁଦ୍ଧ ଥିଲା । ମୋର ତୃଷ୍ଣା ଥିଲା- ମୁକ୍ତ ଜୀବନ । ପୃଥିବୀକୁ ଦେଖିବା । ବିଜ୍ଞାନ ବିଷୟରେ ଜ୍ଞାନ ଆହରଣ କରିବା, ଜାତୀୟ ଆନ୍ଦୋଳନରେ ଭାଗ ନେବା, ତାହାହିଁ ହୋଇଥିଲା ।

ରେଭେନ୍‌ସା କଲେଜକୁ ଆସିଲା ପରେ, ପାଇଲି 'ସଂପୂର୍ଣ୍ଣ ମୁକ୍ତ ଜୀବନ' ଯା'କି ମୁଁ ଚାହୁଁଥିଲି । ତେବେ ମୁକ୍ତ ଅର୍ଥ ନୁହଁ- ଉଚ୍ଛୃଙ୍ଖଳତା ବା ସ୍ୱାଧୀନତାର ଅପବ୍ୟବହାର । ମାତ୍ର ଶୃଙ୍ଖଳିତ ଶୋଭନୀୟ ଅବାଧ ଗତି । ଯେଉଁଥିରେକି ଭଲ ପଢ଼ିବା ସଙ୍ଗେ ସଙ୍ଗେ, ବିଜ୍ଞାନରେ ବେସିକ୍ ନଲେଜ୍ ହାସଲ କରିବି ତତ୍‌ସଙ୍ଗେ ଅନ୍ୟାନ୍ୟ କାର୍ଯ୍ୟ ସମାଜ ସେବା, ଦେଶ ଦଶ କାମରେ ମନୋନିବେଶ, ଜାତୀୟ ଆନ୍ଦୋଳନରେ ଭାଗନେବା ଓ ବିଭିନ୍ନ ଫଙ୍କସନରେ ମର୍ଯ୍ୟାଦା ସହକାରେ ଆଗୁଆ ରହିବା ପାଇଁ ମୋର ଇଚ୍ଛାନୁସାରେ ମନ ମୁତାବକ ସୁଯୋଗ ପାଇ ପାରିବି । ଅବାନ୍ତର ବାଧାବିଘ୍ନ ଓ ଅସମୀଚୀନ ପ୍ରଶ୍ନ ଆସିବ ନାହିଁ- ଆସିଲେ ମଧ୍ୟ ଅତିକ୍ରମ କରି ଯାଇପାରିବି । ତେଣୁ ମୁଁ ଖୋଜୁଥିଲି ବନ୍ଧନହୀନ ମୁକ୍ତଜୀବନ । ମୁକ୍ତ ବିହଙ୍ଗମ ପରି ବିଚରଣ କରିପାରିବି । କଥାରେ ଅଛି "ଯେ ପକ୍ଷୀ ଉଡ଼େ ଯେତେଦୂର ସେ ଜାଣେ ତା'ର ବେଭାର ।"

ନିଜକୁ ଉଚ୍ଚାଁ ରଖିବି, ପଛକୁ ଅନେଇବି ନାହିଁ । ଅନ୍ୟମାନଙ୍କ ସହ ସମାନ ହୋଇ ଆଗକୁ ଚାଲିବି- ଏହା ଥିଲା ମୋର ଚିନ୍ତା ଓ ଚେତନା, ତା 'ହେଲେ ମୋର ଅଭିଳାଷ ଆକାଙ୍କ୍ଷା ପୂରଣ ହୋଇପାରିବ ଏବଂ ସ୍ୱାଭିମାନ ଉପରେ ଆଞ୍ଚ ଆସିବ ନାହିଁ । ତା ଛଡ଼ା ଯଦି କିଛି ମୋର ଅନ୍ତର୍ନିହିତ ପ୍ରତିଭା ଥାଏ, ତାହେଲେ ତାର ବିକାଶ ଘଟିବ । ଆଉ ନିଜକୁ ଯଦି ଏହି କଲେଜ ଜୀବନରୁ ଗଢ଼ି ନେଇଥିବି, ନିଜର ଆଚରଣ, ଆଚାର ବ୍ୟବହାର ଓ ଶିକ୍ଷାଗତ ଯୋଗ୍ୟତା ହାସଲ କରିଥିବି ତା 'ହେଲେ ମେଡ଼ିକାଲ କଲେଜକୁ ଯାଇ ଭବିଷ୍ୟତରେ ସଂସ୍କୃତି ସଂପନ୍ନ ସୁଦକ୍ଷ ଡାକ୍ତର ହେବି । ସେଥିପାଇଁ ମୁକ୍ତ ପରିବେଶ ଥିଲା ମୋର କାମନା । ଏହି ରେଭେନ୍‌ସା କଲେଜରେ ହିଁ ମୋର ଉଚ୍ଚଶିକ୍ଷା ଚିକିତ୍ସକ ହେବାର ଓ ଦୀର୍ଘ କର୍ମମୟ ଜୀବନର ଭିତ୍ତିପ୍ରସ୍ତର ପଡ଼ିଥିଲା ।

ଏହି ରେଭେନ୍‌ସା କଲେଜରେ ହିଁ ପଢ଼ିଲାବେଳେ ମୋର ମୁକ୍ତ ଭାବରେ ଖୋଲାଖୋଲି ସମାଜ ସେବା, ଦେଶସେବା ପାଇଁ, ତତ୍କାଳୀନ ସମାଜରେ କିଛି ପରିଚିତି ଓ ସ୍ୱୀକୃତି ପାଇଥିଲି । ରେଭେନ୍‌ସା କଲେଜରେ କଲେଜ ଜୀବନରେ ପ୍ରତ୍ୟେକ ଦିନ ଯେତେ ଆଖିଦୃଶିଆ ଘଟଣା ଘଟୁଥିଲା, ସ୍ୱାଧୀନତା ଆନ୍ଦୋଳନ ପାଇଁ ଷ୍ଟ୍ରାଇକ, କଲେଜ ଭିତରେ ଅନ୍ୟାନ୍ୟ ସ୍ଥାନୀୟ କାରଣରେ ଆନ୍ଦୋଳନ ଯେପରି ଛାତ୍ରାବାସର ସୁବିଧା ଅସୁବିଧା ପାଇଁ, ଛାତ୍ରୀ ମାନଙ୍କପାଇଁ ହଷ୍ଟେଲ ବ୍ୟବସ୍ଥା, କମନ୍ ରୁମ ଓ ଶୌଚାଳୟର ବ୍ୟବସ୍ଥା ଏବଂ କାମ୍ପସରେ ପରିବେଶ ଓ ଗଣ୍ଡଗୋଳ ବିରୋଧରେ ଯେତେ ଛାତ୍ର ଆନ୍ଦୋଳନ ହେଉଥିଲା ସେ ସବୁଥିରେ ମୁଁ ମୋର ଝିଅ ସହକର୍ମୀଙ୍କ ସହିତ ପୁରୋଭାଗରେ ରହିବାକୁ ପଛାଉନଥିଲି । ମୋର ପରମ ବନ୍ଧୁ ରମାରାଣୀ ରାୟ ଯେକି ପରବର୍ତ୍ତୀ କାଳରେ ସୁପରିଣ୍ଟେଣ୍ଡେଣ୍ଟ ଅଫ୍ ନର୍ସିଂ ସର୍ଭିସେସ ହୋଇଥିଲେ, ସେ ବହୁତ ସ୍ମାର୍ଟ ଥିଲେ । ତାଙ୍କର କାହାକୁ ଡରଭୟ ନଥିଲା, ସେ ମୋର ଉକ୍ତ ସମସ୍ତ କାର୍ଯ୍ୟରେ ଅଣ୍ଟା ଭିଡ଼ି ମିଶିଯାଉଥିଲେ ଏବଂ ଦୁହେଁ ମିଶି ଅନ୍ୟ ଛାତ୍ରୀମାନଙ୍କୁ ଉକ୍ତ ସବୁ ଆନ୍ଦୋଳନ ମଧ୍ୟକୁ ଟାଣି ଆଣୁଥିଲେ । ସେତେବେଳେ ହାତ ଗଣତି କେଇଜଣ ଛାତ୍ରୀ ଆମେ କଲେଜରେ ଥିଲୁ । ସେମାନେ ବି ଆଗେଇ ଆସିବେ- ତାହା ଥିଲା ଆମର ଦୃଷ୍ଟିକୋଣ ।

କଲେଜରେ ବକ୍ତୃତା ପ୍ରତିଯୋଗିତା ହେଉଥିଲା, ଏ.ଏନ୍. ତିୱାରୀ ପ୍ରମୁଖ ବହୁତ ବାଗ୍ମୀ ଥିଲେ । ଝିଅ କେଇଜଣ ମାତ୍ର ଥିଲୁ, ଭାଗନେବାକୁ ଡରନ୍ତି । ତେବେବି ପାରୁ ବା ନପାରୁ, ପ୍ରଥମ ବା ଦ୍ୱିତୀୟ ନହେଉ ପଛକେ ପ୍ରାଇଜ ମିଳୁ ବା ନମିଳୁ ମୁଁ ଓ ମୋର ବନ୍ଧୁ ରମା କଲେଜ ଡିବେଟ୍ ପ୍ରତିଯୋଗିତାରେ ନାମ ପଞ୍ଜୀକରଣ କରି ପଶିଯାଉ । ପୁଅପିଲାମାନେ ନାନାଦି ଟିଟ୍‌କାରୀ ମାରନ୍ତି । କିନ୍ତୁ ଆମେ ହଟିଯାଉନା ତଦ୍ୱାରା । କଲେଜର ସବୁ ଛାତ୍ର ଓ ଶିକ୍ଷକଙ୍କ ମଧ୍ୟରେ- ଆର୍ଟସ୍ ଠାରୁ ବିଜ୍ଞାନ ବିଭାଗ ପର୍ଯ୍ୟନ୍ତ ଓ ସମସ୍ତ ଉପର ଶ୍ରେଣୀଯାଏ ଆମକୁ କିଛି ପରିଚିତି ମିଳିଲା- ସାହସୀ ବାହାଦୁର ଝିଅ ବୋଲି । ଇଂରାଜୀ ଅଧ୍ୟାପକ ମିଷ୍ଟର ସୁବ୍ରମନିୟମ ଏଥିପାଇଁ

ଆମକୁ ବହୁତ ଉତ୍ସାହିତ କରୁଥିଲେ । ପ୍ରତିଯୋଗିତା ଶେଷରେ ତାଏସବୁ ଓହ୍ଲାଇଲା ପରେ ଅଭିନନ୍ଦନ ଜଣାଉଥିଲେ ଏବଂ ଅନ୍ୟ କେତେକ ପ୍ରଫେସର ମଧ୍ୟ ଯାହା କହୁପଛକ "ଭଲ କହିଲ" କହି ବାହ୍ୱାବା କରନ୍ତି । ଫଳରେ ଅଧିକରୁ ଅଧିକ କଲେଜର ବିଭିନ୍ନ କମ୍ପିଟିସନରେ ଯୋଗଦେବା ପାଇଁ ମୁଁ ଆଉ କେତେକଣ ଛାତ୍ରୀ ଆଗୁଆ ହୋଇ ବାହାରି ପଡ଼ିଲୁ । ତତ୍କାଳୀନ ସମାଜରେ ଝିଅମାନେ ପୁଣି ଇଣ୍ଟରମିଡ଼ିଏଟ୍ କ୍ଲାସରେ ଏତେ ଆଗେଇଯିବା ଆଶ୍ଚର୍ଯ୍ୟର ବିଷୟ ଥିଲା ଏବଂ ଆମର ଏହି ସାହାସ ଅନ୍ୟ ଝିଅ ମାନଙ୍କୁ ପରେ ଅନୁପ୍ରାଣିତ କରିଥିଲା । ଯେଉଁ ଛାତ୍ରମାନେ ଆମକୁ ପ୍ରଥମେ ପରିହାସ କରୁଥିଲେ ସେମାନେ ବି ଆସି ବଧେଇ କଣେଇଲେ । ଡେ-ସ୍କଲାର୍ସ ଆସୋସିଏସନର ବିଭିନ୍ନ ବୈଠକ ଓ କାର୍ଯ୍ୟାବଳୀରେ ଛାତ୍ରମାନଙ୍କ ସହିତ ସମସ୍କନ୍ଧ ଭାବେ କାର୍ଯ୍ୟ କରିଚାଲିଲୁ । ଏମିତି ହେଲା ଯେ ଦିବାଧ୍ୟାୟୀ ସଂଘର କାର୍ମକର୍ତ୍ତାମାନେ ମୁଁ ଓ ମୋର ଛାତ୍ରୀ ସାଥୀମାନେ ଡେ-ସ୍କଲାରସ ଆସୋସିଏସନର କୌଣସି କାର୍ଯ୍ୟ-ବୈଠକରୁ ବାଦ୍ ଯିବୁ ନାହିଁ, ସେଥିପାଇଁ ଯେଉଁଠି ଥିଲେ ମଧ୍ୟ ସେମାନେ ଆସି ଧରି ନେଉଥିଲେ କହି "ତମ ବିନା କାମ ସଂପନ୍ନ ହୋଇପାରିବ ନାହିଁ ।" ସେତେବେଳେ ଛାତ୍ରସଂଘ ଖୁବ୍ ଜଣାଶୁଣା ଥିଲା । ଛାତ୍ରୀ ସଂଘ ଗଠିତ ହୋଇ ନଥିଲା । ମୁଁ ମୋର ସହଧ୍ୟାୟିନୀ ମାନଙ୍କୁ ସଭ୍ୟା କରି ଛାତ୍ରସଂଘର କାର୍ଯ୍ୟ ଓ କିଛି ଶିକ୍ଷା ସମ୍ବନ୍ଧୀୟ ଆନ୍ଦୋଳନ କଲେଜ ମଧ୍ୟରେ କରିଥିଲୁ । ଏପରିକି କଲେଜ ପାର ହୋଇ- ମେନ ରାସ୍ତା ଟପି ମାଡ୍ରାସ ହୋଟେଲ ଗଳିରେ ଛାତ୍ରସଂଘର ଏକ ଅଫିସ ଥାଏ, ସେଠାକୁ ଟ୍ୟୁଟରିଆଲ କ୍ଲାସ ମାରାକରି ଦିନେ ଦିନେ ଆବଶ୍ୟକତା ଅନୁସାରେ ପୋଷ୍ଟର ଲେଖିବାକୁ ମୁଁ ଯାଇଥାଏ, ରାତିରେ କାନ୍ଥବାଡ଼ରେ ମରାହେବ । ଶ୍ୟାମ୍ ଏକ ବଙ୍ଗାଳୀ ଯୁବକ ଓ ଛାତ୍ର । ସେ ମଧ୍ୟ ଅଫିସରେ ଥାନ୍ତି । ଟ୍ୟୁଟରିଆଲ କ୍ଲାସର ଅଧ୍ୟାପକଙ୍କର ଦୃଷ୍ଟି ଏଡ଼େଇ ଯାଇ ପାରୁନଥିଲୁ । କେଇଜଣ ବା ଛାତ୍ରୀ ଥିଲୁ । ସେଥି ସକାଶେ ବହୁତ ଭର୍ତ୍ସନା ଶୁଣିବାକୁ ହୁଏ । ମାତ୍ର-ଶୁଣି ନଶୁଣିଲା ପରି, ସାରଙ୍କ କଥା ଏଡ଼େଇ ଦେଇ ଛାତ୍ରସଂଘ ଦେଇଥିବା କର୍ତ୍ତବ୍ୟ ସଂପାଦନ କରୁଥିଲୁ ନହେଲେ ରାତିରେ ଛାତ୍ରସଂଘର ପୋଷ୍ଟର ମରା ହୋଇପାରିବ ନାହିଁ । ଛାତ୍ରସଂଘର ଆକର୍ଷଣ ବହୁତ ଥିଲା ସେତେବେଳେ, ଛାତ୍ରସଂଘ ଥିଲା ମୋପାଇଁ ଏକ ମାତ୍ର ପ୍ରିୟ ଛାତ୍ର ଅନୁଷ୍ଠାନ । ୮/୧୦ ଦିନରେ ଥରେ କ୍ଲାସ ପଛକ ମିସ୍ କରିବି- ମାତ୍ର ଛାତ୍ରସଂଘର କାର୍ଯ୍ୟ ତୁଲେଇବି- ଏ ଦୃଢ଼ତା ମୋର ଥିଲା । ମୋର ଟ୍ୟୁଟରିଆଲ କ୍ଲାସର ସାର୍ ମାନେ ମଧ୍ୟ ଜାଣିପାରିଲେ । ମୁଁ ମଧ୍ୟ କହିଦେଲି । ସତକଥା କହିବାରୁ ସେମାନେ ସମ୍ବେଦନଶୀଳ ହୋଇ ଅନ୍ୟ ସମୟରେ ଆମେ ମିସ୍ କରିଥିବା ଟ୍ୟୁଟରିଆଲ କ୍ଲାସର ବିଷୟ, ତାଙ୍କ ନିଜ ରୁମ୍‌ରେ ଅଧିକ ସମୟ ଦେଇ ବୁଝେଇ ଦିଅନ୍ତି । ନିଷ୍ଠା ତ୍ୟାଗ ସତ୍ୟ ପଥରେ ରହିଲେ ସବୁ ସମ୍ଭବ ହୋଇପାରିବ- ଜାଣୁଥିଲି ।

ତେଣୁ ବିଭିନ୍ନ କାମ ଡାଇଭର୍ସନ ମଧ୍ୟରେ ପାଠ ମଧ୍ୟ ପଢୁଥିଲୁ । କଲେଜରେ ଦୈନନ୍ଦିନ ଜୀବନରେ ଅନେକ ସାହସ ଓ ବୀରତ୍ୱ ମଧ୍ୟ ଦେଖାଇଛୁ । କଲେଜ କ୍ୟାମ୍ପସରେ ଅନ୍ୟାୟ

ଅନ୍ୟାଚାର ଅସଦାଚରଣ କେବେ ନଜରରେ ପଡ଼ିଗଲେ ମୁଁ ଓ କେଇଜଣ ସହପାଠୀ ଝିଅ ସାଙ୍ଗ ହୋଇ ଅନ୍ୟ ପକ୍ଷର ବିରୋଧତା ସତ୍ତ୍ୱେ ତାର ପ୍ରତିକାର ଓ ପ୍ରତିରୋଧ କରିବାକୁ ନିର୍ଭୟରେ ଚାଲି ଯାଉଥିଲୁ ।

ଦିନକର ଘଟଣା - କଲେଜରେ ସ୍ପୋର୍ଟସ୍ ହେବ । ତେଣୁ ଚିତ୍ରିତ ଇଟାରେ ଖଞ୍ଜି ଏକ ବିସ୍ତୃତ ଅଞ୍ଚଳ ବନ୍ଧେଇ ହୋଇଥିଲା । ଦୁଇ ତିନିଜଣ ଗରିବପିଲା ଷ୍ଟ୍ରୀଟ ଚିଲଡ୍ରେନ ଛିଣ୍ଡା ବ୍ୟାଗରେ ଇଟା କେତେଖଣ୍ଡ ତାଡ଼ି ନେବାକୁ ଉଦ୍ୟମ କରୁଥାନ୍ତି । କଲେଜ ପିଲାଏ ଦେଖି ପାରି ଏଭଳି ନିସ୍ଠୁର ମାରିଲେ ଯେ ସହି ହେବ ନାହିଁ । ଆମେ ଦେଖି ବହୁତ ପାଟିତୁଣ୍ଡ କଲୁ ଶେଷରେ କ୍ଷାନ୍ତ ହେଲେ, ପିଲାଗୁଡ଼ିକ ଖଣ୍ଡିଆଖାବରା ହୋଇ ଯାଇଥିବାରୁ - କ୍ଷତିପୂରଣ ଦିଅ କହିଲୁ, ପାଞ୍ଚୋଟି ଟଙ୍କା ସେମାନଙ୍କୁ ଦେଲେ । ବଡ଼ ଘରର ପିଲାନା ତେଣୁ ଛୋଟ ଆଖି । ଏମିତି କିଛି କେତେବେଳେ ଅଘଟଣ ଦେଖିଲେ ଆମେ ବାହାରିଯାଉ, ଡରୁନା ଏହା ମୋର ପ୍ରକୃତିଗତ ଥିଲା । ସେମିତି ଆଉ ଗୋଟିଏ କଥା ନକହି ରହିପାରୁ ନାହିଁ । ଗପହେଲେବି ସତ ।

ଦିନେ ହଠାତ୍ ଦେଖିଲୁ ଗୋଟିଏ ତରୁଣୀ ଝିଅ ଫୁଲ ବିକିବାକୁ କାମ୍ପସ ଭିତରକୁ ଚାଲି ଆସିଥିଲା । ଆଗରୁ ଥରେ ଅଧେ ତାକୁ ଦେଖିଛୁ ଫୁଲବାଲୀ ବୋଲି ଡାକିଛୁ । ସେଇ ଝିଅଟିକୁ କେତେକ ଅସାମାଜିକ ବ୍ୟକ୍ତି ଟାଣି ନେଇ ଯାଉଛନ୍ତି ପଛୁଆ, ପାଣିଟାଙ୍କି ଆଡ଼େ ଓ ସେ ଚିତ୍କାର କରୁଛି । ଉଦ୍ଦେଶ୍ୟ ବୁଝିବାକୁ ବାକି ନ ଥିଲା । ମୁଁ ଓ କେଇଜଣ ଝିଅ ଚିତ୍କାର କରି ଦଉଡ଼ି ପାଟିତୁଣ୍ଡ କଲୁ ଓ ଝିଅଟିକୁ ଛଡ଼େଇ ଆଣିଲୁ । ସେଇ ଲୋକମାନେ ଡରିଗଲେ । ଗୋଡ଼ ତଳେ ପଡ଼ି କ୍ଷମା ମାଗିଲେ ।

ସେ ଫୁଲବାଲୀ ଝିଅକୁ ନେଇ ଝୋମ୍ପଡ଼ିରେ ତାର ବାପାମା'ଙ୍କ ପାଖରେ ସମ୍ପି ଦେଇ ଆସିଲୁ । ଏ ଘଟଣା ମଧ୍ୟ ଆସ୍ତେ ଆସ୍ତେ ପ୍ରସାରିତ ହେଲା । ଏମିତି କାଁ ଭାଁ ଘଟଣା ଘଟିବା ଅସ୍ୱାଭାବିକ ନୁହେଁ । ଆଜିକାଲିତ ନିତି ବିଚ୍ ବଜାରରେ ଘଟୁଛି ।

ଆମ ବେଳେ ରାଗିଙ୍ଗ୍ ବିରଳ ଥିଲା । ମାତ୍ର ପୁଅ ପିଲାମାନେ ଝିଅମାନଙ୍କୁ କ୍ୟାମ୍ପସ ମଧ୍ୟରେ ଟିଟ୍‌କାରୀ ମାରୁଥିଲେ । ଏହା ଏକ ସ୍ୱାଭାବିକ କଥା । ମାତ୍ର ଆମେ କିଛି ବନ୍ଧୁ ଅନ୍ୟ ଝିଅଙ୍କ ଭଳି ଅଧ୍ୟକ୍ଷଙ୍କ ନିକଟରେ ଆପତ୍ତି ନ ଉଠେଇ ମଧୁରେ ମଧୁରେ ଉତ୍ତମ ମଧ୍ୟମ ଶୁଣେଇ ସେମାନଙ୍କୁ ନୀରବ କରି ଦେଉଥିଲୁ। ମଧୁରେଣ ପ୍ରୀତି । ପରିଣତିରେ ସେମାନେ ସାଥୀ ସହୋଦର ହୋଇ ଯାଆନ୍ତି ଓ ଆମମାନଙ୍କୁ ସୁରକ୍ଷା ଦିଅନ୍ତି ।

ସନ୍ଧ୍ୟା ପରେ ଅନେକ ସମୟରେ ବାହାରୁ ବିଶିଷ୍ଟ ବ୍ୟକ୍ତିମାନେ ଗେଷ୍ଟ ହୋଇ ଆସନ୍ତି । ଯେଉଳି, ବିଶ୍ୱ ବିଖ୍ୟାତ ବୈଜ୍ଞାନିକ ସି.ଭି. ରମଣ ବିଜ୍ଞାନଭିତ୍ତିକ ଭାଷଣ ଦିଅନ୍ତି । ଶୁଣିବାକୁ ବହୁତ ଆଗ୍ରହ । ଘରକୁ ଫେରିଲା ବେଳକୁ ହାତଟଣା ରିକ୍ସାରେ ଅନେକ ରାତି ହୋଇଯାଏ ଡର

ମାନ୍ତେ । କିନ୍ତୁ ସେହି ପିଲାମାନେ ଆମକୁ ସୁରକ୍ଷା ଦିଅନ୍ତି । ତେଣୁ ନିଜେ ଇଚ୍ଛା କଲେ, ଭଲ ରହିଲେ ରାଗିଙ୍ଗ୍‌ର ଶିକାର ହେବ ନାହିଁ । କଲେଜ ଏବଂ ୟୁନିଭର୍ସିଟିରେ ସମସାମୟିକ ଛାତ୍ରଜୀବନ ସୁସ୍ଥ ଓ ସୁନ୍ଦର ରହିପାରିବ । ଏକଥା ସମସ୍ତେ ହୃଦୟଙ୍ଗମ କଲେ କୌଣସି ଅବସୋସ ରହିବନାହିଁ । ତେଣୁ ଆଜିକାଲିର ଝିଅମାନେ ନିଜର ମତିଗତିକୁ ନିୟନ୍ତ୍ରଣ କରିପାରୁ ନଥିବାରୁ ବିପଦରେ ପଡ଼ୁଛନ୍ତି । ପଶ୍ଚାତ୍ ସଭ୍ୟତା ଟି.ଭି. ସେମାନଙ୍କୁ ନିମ୍ନଗାମୀ କରିପକାଉଛି ।

୧୯୪୨ ମସିହା ଆନ୍ଦୋଳନ ସ୍ୱାଧୀନତା ପାଇଁ ଶେଷ ସଂଗ୍ରାମର ଆହ୍ୱାନ ଥିଲା । ଆମେ ସବୁ ଉନ୍ମାଦିତ ହୋଇ ଉଠିଥିଲୁ । ଗାନ୍ଧିଜୀଙ୍କର "କର ବା ମର" ଡାକରା ଭାରତ ବର୍ଷରୁ ବ୍ରିଟିଶ ମାନଙ୍କୁ ନିକାଲି ଦେବାପାଇଁ ହିମାଳୟଠାରୁ କୁମାରୀକା ଯାଏ ଗଣ ବିକ୍ଷୋଭର ଓ ଶେଷ ସଂଗ୍ରାମର ନିନାଦ ଗଗନେ ପବନେ ପ୍ରତିଧ୍ୱନିତ ହେଉଥିଲା ।

ସେତେବେଳେ ଉଷା ମେହେଟ୍ଟା ନାମ୍ନୀ ଜଣେ ଗାନ୍ଧିବାଦୀ ମହିଳା ଯେକି ଗାନ୍ଧିଜୀଙ୍କର ନିର୍ଦ୍ଦେଶନାମାକୁ ଅନୁସରଣ କରୁଥିଲେ, ଲୁକ୍କାୟିତ ଭାବେ 'କର ଅବା ମର' 'ଭାରତ ଛାଡ଼' ଗୁପ୍ତରେ ରେଡ଼ିଓ ବାର୍ତ୍ତା ଚାରିଆଡ଼େ ପଠାଉଥାନ୍ତି । ସେହି ବାର୍ତ୍ତାରେ ସ୍ଫୁଲିଙ୍ଗ ଥିଲା । ଜଣେ ବାଇଶି ବର୍ଷର ତରୁଣୀ ମହିଳା କିଭଳି ଗୋପନ ରେଡ଼ିଓ ବାର୍ତ୍ତା ସଞ୍ଚାରଣ କରି ଘରେ ଘରେ ସ୍ୱାଧୀନତା ପାଇଁ ଉଦ୍ଦୀପନା ସୃଷ୍ଟି କରିଥିଲେ, ତାହା ଆମ୍ଭମାନଙ୍କ ମଧ୍ୟରେ ଉଦ୍‌ବେଳନ ଆଣିଥିଲା । ସେହି ମହିଳାଙ୍କର ଜନ୍ମ ସୁରାଟରେ, ୧୯୨୦ ମସିହାରେ । ଇଂରେଜଙ୍କୁ ତଡ଼ିବା ପାଇଁ ଦୃଢ଼ପ୍ରତିଜ୍ଞ ଅଳ୍ପ ବୟସରୁ । ଯା'ଙ୍କର ଦେହାନ୍ତ ଘଟିଲା ଏବେ ଅଗଷ୍ଟ ୨୦୦୦ରେ । ମହିଳାଙ୍କ ମଧ୍ୟରେ ସ୍ୱାଧୀନତା ସଂଗ୍ରାମକୁ ବଳବନ୍ତ କରିବା ପାଇଁ ସେ ଯେଉଁ ଉନ୍ମେଷ ସୃଷ୍ଟି କରିଥିଲେ ତାର ପଟାନ୍ତର ନାହିଁ । ତାଙ୍କର ମନ୍ତ୍ରରେ ବହୁତ ନାରୀ ଦୀକ୍ଷିତ ହୋଇଥିଲେ ସ୍ୱାଧୀନତା ସଂଗ୍ରାମ ପାଇଁ ।

ମୁଁ ଓ ମୋର ସହାଧ୍ୟାୟୀ ତାଙ୍କ ବାର୍ତ୍ତାରେ କେବଳ ଦୀକ୍ଷିତ ହୋଇନଥିଲୁ ଆଗୁଆ ରହି ନାନାଦି ବ୍ରିଟିଶ ବିରୋଧୀ ଆନ୍ଦୋଳନାତ୍ମକ କାର୍ଯ୍ୟ ମଧ୍ୟ କରୁଥିଲୁ । ମାତ୍ର ଆମର ସେତେବେଳର ପ୍ରିନ୍‌ସିପାଲ ଇଂରେଜ ସରକାରଙ୍କର ବିଶ୍ୱସ୍ତ ଅଫିସର ଥିଲେ । ବିଶେଷତଃ ଆମକୁ ନାନାଦି ଧମକ୍ ଚମକ୍ ଦେଉଥିଲେ । ଆମେ ଶୋଭାଯାତ୍ରା କଲେ ପୋଲିସ ବାହିନୀଙ୍କୁ ଆମ ପଛରେ ଲଗାଇଦେବା ପାଇଁ କୁଣ୍ଠାବୋଧ କରୁନଥିଲେ । ତେବେ ଆମର ଅଦମ୍ୟ ଉତ୍ସାହକୁ ସତ୍‌ଚେଷ୍ଟା ସତ୍ତ୍ୱେ ଧୂଳିସାତ୍ କରିପାରିଲେ ନାହିଁ । ଆମେ ସ୍ୱାଧୀନତା ପ୍ରେମୀ ସମସାମୟିକ ଛାତ୍ର ଓ ଛାତ୍ରୀ ମାନଙ୍କ ସହ ସାମିଲ ହୋଇଥିଲୁ ।

କ୍ରାନ୍ତିକାରୀ ଅଗଷ୍ଟ ବିପ୍ଳବ ମୋ ଦେହରେ ଆଗ୍ନେୟ ଗିରିର ଉତ୍ତାପ ସୃଷ୍ଟି କରିଥିଲା ।

ଅଗଷ୍ଟ ବିପ୍ଳବ ୧୯୪୨ରେ, ଯେତେବେଳେକି ଗାନ୍ଧିଜୀ, ଅଗଷ୍ଟ ଆଠରେ ବମ୍ବେର କଂଗ୍ରେସ ଅଧିବେଶନରେ ବଜ୍ର ନିର୍ଘୋଷ ସ୍ୱରରେ ଇଂରେଜ ସରକାରଙ୍କୁ ଚାଲେଞ୍ଜ ଦେଲେ-

'ଭାରତଛାଡ଼- କୁଇଟ୍ ଇଣ୍ଡିଆ' ଓ ଭାରତବର୍ଷର ଅଗଣିତ ଜନତାକୁ ଆହ୍ୱାନ ଦେଲେ- 'କର ଅବା ମର - ଡୁ ଅର୍ ଡାଏ', ଏବଂ ହରିଜନ ପତ୍ରିକାରେ ଗୋଟିଏ ଲେଖାରେ ପ୍ରକାଶ କରିଥିଲେ- 'ବ୍ରିଟିଶ ସରକାରଙ୍କୁ ପରାଧୀନ ଭାରତର ଶେଷ ଆହ୍ୱାନ।' ସେହି ଲେଖାଟି ପଢ଼ି ବ୍ରିଟିଶ ସରକାରଙ୍କର ପିଳେହି ପାଣି ହୋଇଗଲା। ଭାରତର ଶେଷ ସ୍ୱାଧୀନତା ସଂଗ୍ରାମକୁ ଜୋରଦାର କରିବାକୁ ଆହ୍ୱାନ ଦେଲେ, ଏହି ସଂଗ୍ରାମରେ ଭାରତୀୟ ଜନତା ଝାସ ଦେଲେ। ଏହାର ମଧ୍ୟ ବହୁ ଆଗରୁ ପୂର୍ବ ସୂଚନା ମିଳିଥିଲା ଲାହୋର କଂଗ୍ରେସର ଅଧିବେଶନରେ, -ଗାନ୍ଧୀ ନେହେରୁ ପଟେଲ ପ୍ରମୁଖ ଶପଥ ନେଲେ ଭାରତ ମାଟିରୁ ଇଂରେଜଙ୍କୁ ହଟାଇବା, ଏହା ଆଜିର କଂଗ୍ରେସ ଅଧିବେଶନରେ ଆମର ସଂକଳ୍ପ।

୧୯୪୨ର ୮ ଅଗଷ୍ଟ ପ୍ରଭାତ କାଳରେ ବ୍ରିଟିଶ ସରକାର ଗାନ୍ଧିଜୀଙ୍କ ସମେତ ସମସ୍ତ ତୁଙ୍ଗ କଂଗ୍ରେସ ନେତାଙ୍କୁ ଗିରଫ କରିନେଲେ। ସେଇ ପ୍ରଭାତରୁ ଭାରତବର୍ଷରେ ବ୍ରିଟିଶ ରାଜ ବିରୋଧରେ ବିଦ୍ରୋହର ଦାବାନଳ ଜଳି ଉଠିଲା। ହିନ୍ଦୁ ମୁସଲମାନ ଶିଖ ଖ୍ରୀଷ୍ଟିୟାନ ସବୁ ଧର୍ମାବଲମ୍ବୀ ଲୋକେ, ପୁରୁଷ ମହିଳା, ପିଲା ସମସ୍ତେ-ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ ଯୋଗ ଦେଲେ। ଗାନ୍ଧିଜୀଙ୍କର 'କର ଅବା ମର' ଆହ୍ୱାନରେ ତାଙ୍କ ମଧ୍ୟରେ ଏଭଳି ଉନ୍ମାଦନା ସୃଷ୍ଟି ହୋଇଥିଲା ଯେ, ଜନସାଧାରଣ ବିପ୍ଳବର ଅଗ୍ନି ମଧ୍ୟକୁ ଡେଇଁ ପଡ଼ିଲେ। ବ୍ରିଟିଶ ସରକାରର ରକ୍ତମୁଖା ସେନା ବାହିନୀର ଆଖିବୁଜା ଗୁଳିଗୋଳା ବନ୍ଧୁକ ବାଓନେଟର ସାମନା କଲେ। ବିନା ଅସ୍ତ୍ରରେ ଅହିଂସା ମନ୍ତ୍ରରେ ମନ୍ତ୍ରିତ ହୋଇ ଦେଶ ମାତୃକାର ମୁକ୍ତି ପାଇଁ ପ୍ରାଣବଳି ଦେଲେ। ଅଭୂତପୂର୍ବ ବଳିଦାନର ପର୍ବ ଚାଲିଲା। ସେ ସବୁ ଆମେ ଛାତ୍ର ଥିଲେ ମଧ୍ୟ ଦେଖିଛୁ ଓ ଅଙ୍ଗେ ଲିଭେଇଚୁ।

ସେହି ଅଗଷ୍ଟ ମାସରେ ଯେତେବେଳେ ଆମେ ସମସ୍ତେ-ଭାରତବାସୀ ପ୍ରସ୍ତୁତ ଦେଶମାତୃକାର ପରାଧୀନତାର ଶୃଙ୍ଖଳ ଛିନ୍ନ କରି ଆତ୍ମବଳି ଦେବାକୁ ଦୃଢ଼ ପରିକର, ସେତେବେଳେ ସ୍ମରଣରେ ଆସିଥିଲା-ଗାନ୍ଧିଜୀ ୧୯୩୦ ମାର୍ଚ୍ଚ ୧୨ ତାରିଖ ସାବରମତୀ ଆଶ୍ରମରୁ ଲବଣ ସତ୍ୟାଗ୍ରହ ବା ଲୁଣମରା ଆଇନ ଭଙ୍ଗ କରିବାକୁ 'ଦାଣ୍ଡି ଯାତ୍ରା' କଲେ। ସେତିକିବେଳେ ଜନୈକ ଭାରତୀୟ ନେତା ଉଚ୍ଚ କଣ୍ଠରେ ଆହ୍ୱାନ ଦେଲେ "ଯଦି ଭାରତବର୍ଷର ଜନଗଣ-କୋଟି କୋଟି ଜନତା ଐକ୍ୟବଦ୍ଧ ହୋଇ ଏକାବେଳକେ ପଦଯାତ୍ରା କରିବେ-ତା' ହେଲେ ମେଦିନୀ କମ୍ପିବ। ଉଦ୍ଦେଶ୍ୟ ସାଧିତ ହେବ। ଭାରତ ସ୍ୱାଧୀନ ହେବ।"

ତାହାହିଁ ହେଲା- ୧୯୪୨ ମସିହାରେ ଭାରତର କୋଟି କୋଟି ଜନତା ଛୁଟିଲେ ଏକାଠି-ଏକ ସମୟରେ। ୧୯୪୨ ଅଗଷ୍ଟ ୯ ତାରିଖ ଭୋର ସମୟରେ ସ୍ୱାଧୀନତା ସଂଗ୍ରାମର ସାରଥୀ-ସେନାପତି ମହାତ୍ମା ଗାନ୍ଧି ଓ ଅନ୍ୟାନ୍ୟ ତୁଙ୍ଗ ନେତୃବର୍ଗ, ଯେଉଁମାନେକି ଭାରତର ମୁକ୍ତି

ସଂଗ୍ରାମକୁ ପରିଚାଳନା କରୁଥିଲେ, ସମସ୍ତେ ଗିରଫ ହୋଇଗଲେ। ଓଡ଼ିଶାରେ ବାଖରାବାଦରୁ ତେଜୋଦୀପ୍ତ ନବକୃଷ୍ଣ ଚୌଧୁରୀ, ତା'ଛଡ଼ା ରମାଦେବୀ, ଗୋପବନ୍ଧୁ ଚୌଧୁରୀ ପ୍ରମୁଖ। ହାହାକାର ପଡ଼ିଲା ଲୋକଙ୍କ ମଧ୍ୟରେ-ନେତାମାନଙ୍କର ଆବର୍ତ୍ତମାନରେ ମାତ୍ର ତାହା ଥିଲା ସାମୟିକ। କିନ୍ତୁ ନେତୃବର୍ଗ ଗିରଫ ହେଲା ବେଳେ ସଂଗ୍ରାମ ପରିଚାଳନାର ଦାୟିତ୍ୱ ଲୋକଙ୍କୁ-ହସ୍ତାନ୍ତର କରି ଯାଇଥିଲେ। ଗିରଫ ବେଳେ ନିର୍ଦ୍ଦେଶ ଦେଇ ଯାଇଥିଲେ "ଏଣିକି ଜନସାଧାରଣ ସଂଗ୍ରାମର ଅଧିନାୟକ ହେବେ ଏବଂ ସଂଗ୍ରାମର ପରିଚାଳନା କରିବେ।" ଏମିତି ହେଲା-ବାଳବୃଦ୍ଧ ବନିତା ସମସ୍ତେ ବାହାରକୁ ବାହାରି ପଡ଼ିଲେ ସଂଗ୍ରାମରେ ଝାସ ଦେଲେ। ବ୍ରିଟିଶ ସରକାରର ସଶସ୍ତ୍ର ପୋଲିସ ଓ ଫୌଜର ନିରସ୍ତ୍ର ମୁକାବିଲା କଲେ। ଗୋରା ସୈନ୍ୟଙ୍କର ଗୁଳିଗୋଳା କମାଣରେ, କେତେ ଯେ ଲୋକ ଟଳିପଡ଼ିଲେ ତାର ଇୟତ୍ତା ନାହିଁ।

ଅଗଷ୍ଟ ୮ ତାରିଖ ୧୯୪୨ରେ ବମ୍ବେର ଗୋଆଲିଅର ଟ୍ୟାଙ୍କ ମଇଦାନରେ, ଜାତୀୟ କଂଗ୍ରେସର ଖୋଲା ଅଧିବେଶନ ବସିଥିଲା। ତେଣୁ ୯ ଅଗଷ୍ଟ ପ୍ରଭାତରୁ ଗାନ୍ଧିଜୀଙ୍କ ସମେତ ସମସ୍ତ ନେତୃମଣ୍ଡଳୀଙ୍କୁ ଗିରଫ କରି ନିଆଗଲା। ସଂଗ୍ରାମ ପାଇଁ ଅଧିକ ପ୍ରେରଣା ଦେଇଥିଲେ ବିପ୍ଳବିନୀ ଅରୁଣା ଆସଫ ଅଲ୍ଲୀ। ଅରୁଣା ଆସଫ ଅଲ୍ଲୀ ୯ ଅଗଷ୍ଟ କ୍ରାନ୍ତି ମଇଦାନ ତଥା ସେଇ ଗୋଆଲିଅର ଟ୍ୟାଙ୍କ ମଇଦାନରେ ବାହାରି ପଡ଼ି ତ୍ରିରଙ୍ଗା ପତକା ଉଡ଼ାଇ ଉଦ୍‌ବୋଧନ ଦେଇଥିଲେ। ତାପରେ ଅଣ୍ଡରଗ୍ରାଉଣ୍ଡ ଚାଲିଗଲେ। ଯାହାଙ୍କ ମୁଣ୍ଡ ପାଇଁ ଇଂରେଜ ସରକାର ୫୦ହଜାର ଟଙ୍କା ଘୋଷଣା କଲେ। ତାଙ୍କର ଏପରି ଆବିର୍ଭାବ ଏବଂ ଯେଉଁ କ୍ଲାରିଅନ କଲ୍ ସେ ସଂଗ୍ରାମ ପାଇଁ ଦେଇଥିଲେ ଭାରତୀୟ ଜନତା ଅଧିକ ଉନ୍ମାଦିତ ହୋଇପଡ଼ିଲା। ମନେ ଅଛି ଆମେ ସବୁ ଛାତ୍ର ଥାଉଁ-ସଂଗ୍ରାମ ପଥରେ ଅଧିକ ଆଗେଇଗଲୁ। ସେହି ୧୯୪୨ର ଆନ୍ଦୋଳନରେ ମୁଁ ସାମିଲ ହୋଇ କଟକ ସହରରେ ଦୈନିକ ଯେଉଁ ସଭା ଶୋଭାଯାତ୍ରା ଚାଲିଥିଲା ସେଥିରେ ଯୋଗ ଦେଉଥିଲି। ପାଥେୟ କରି ଚାଲିଥିଲି ଗାନ୍ଧିଜୀଙ୍କ ଆହ୍ୱାନକୁ 'କର ଅବା ମର'।

ଅଗଷ୍ଟ ଆନ୍ଦୋଳନରେ ୧୯୪୨ ଭାରତଛାଡ଼ ଆନ୍ଦୋଳାନର ସ୍ମୃତି ମୋର ମାନସପଟରେ ଏବେବି ସଜଳ ରହିଛି। ପରିଣତିରେ ଏବେବି ସାମ୍ରାଜ୍ୟବାଦୀ ବିରୋଧୀ ଆନ୍ଦୋଳନ-ଆମେରିକାର ଏକଛତ୍ର ସାମ୍ରାଜ୍ୟବାଦ ଶାସନ ଓ ଯୁଦ୍ଧଖୋର ନୀତି ବିରୋଧରେ ମୋ ଦେହର ରକ୍ତ ତାତି ଉଠେ।



---

***ଅଲିଭା ସ୍ମୃତି ଅଭୁଲା ଅନୁଭୂତି***, ସ୍ପୁଟନିକ୍, କଟକ, ୨୦୦୪

# ରେଭେନ୍‌ସା କଲେଜ

## ଶାନ୍ତନୁ କୁମାର ଆଚାର୍ଯ୍ୟ

**ଓ୍ୱେଷ୍ଟ ହଷ୍ଟେଲ ରିପବ୍ଲିକ୍ ।(୧୯୪୬, ଜାନୁଆରୀ, ୨୬)**

ସକାଳୁ ସକାଳୁ ସେଦିନ ଆମ ହଷ୍ଟେଲରେ ଫୁସ୍‌ଫାସ୍ କଥାବାର୍ତ୍ତା ଆରମ୍ଭ ହେଇଯାଇଥାଏ ଯେ ଆଜି ସାରା କଟକର ସବୁ ସ୍କୁଲ୍ ଆଉ କଲେଜର ଛାତ୍ରସମାଜ ଏକଜୁଟ ହେଇ ଗୋଟାଏ ଅଭୂତପୂର୍ବ କାଣ୍ଡ କରିବେ । କାଣ୍ଡଟା ହେଲା- "ଓ୍ୱେଷ୍ଟ ହଷ୍ଟେଲ୍ ରିପବ୍ଲିକ୍ ଘୋଷଣା ।"

ଓ୍ୱେଷ୍ଟ ହଷ୍ଟେଲଟା କୋଉଠି ? ପୁଣି ରିପବ୍ଲିକ୍ ଜିନିଷଟା କଣ ? ଆମେ ସେ ବର୍ଷ ନୂଆ କରି ଅଷ୍ଟମ ଶ୍ରେଣୀରେ ନାଁ ଲେଖେଇଥିବା ବାର-ତେର-ବର୍ଷିଆ ପିଲାଗୁଡ଼ାକ କଣ ବା ବୁଝନ୍ତୁ ସେସବୁ ଇଂଲିସ୍ ଶବ୍ଦରୁ ? ତେଣୁ ସକାଳ ପହରଟା ବଡ଼ ଉଦ୍‌ବେଗ ଭିତରେ କଟିଲା । କିନ୍ତୁ ଏ ବିଷୟଟା କେତେ ବିପଜ୍ଜନକ ସେ କଥା ଆମକୁ ଅଳ୍ପ ସୂଚନା ମିଳିଥିଲା । ସେ ସମ୍ବନ୍ଧରେ ଖୋଲାଖୋଲି କାହା ସାଙ୍ଗେ କଥାବାର୍ତ୍ତା ନକରିବା ପାଇଁ ଜଣେ ଉପର କ୍ଲାସ ପିଲା ଆମକୁ ନିର୍ଦ୍ଦେଶ ଦେଇଥିଲେ । "ଯଦି ପୋଲିସର ଗୁପ୍ତଚର ଜାଣିବ ଯେ ତମେ ଆଜିର ଶୋଭାଯାତ୍ରାରେ ଯିବାକୁ ବିଚାର କରିଚ ତେବେ ଆଗତୁରା ପୋଲିସ ଗିରଫ କରିନେବ ! ତା'ପରେ ନାଲି କୋଠା..." ସେ କହିଯାଇଥିଲେ କାନରେ ମୋର ।

ପୋଲିସ ଦ୍ୱାରା ଗିରଫ ହବା କ'ଣ- ସେକଥା ଆମେ ପିଲାମାନେ କିଛିକିଛି ଜାଣିପାରିଥାଉ । କିନ୍ତୁ ନାଲି କୋଠା ଶବ୍ଦଟା ଆମ ପାଇଁ ସଂପୂର୍ଣ୍ଣ ନୂଆ । ନାଲି କୋଠା ! ସେ ଏକ ମାରାତ୍ମକ ଜଗତ୍ ଯୋଉଠିକି ହାତକଡ଼ା ପଡ଼ି, ଜେଲ ଭ୍ୟାନରେ ବସି, କଏଦୀମାନେ ଆସନ୍ତି କଚେରିଟିକୁ । ସେ କଚେରି ଗୁଡ଼ାକ ଅବଶ୍ୟ ଆମ ସ୍କୁଲ ହତାର ଠିକ୍ ଆରପଟେ ! ସେପାଖେ ଥାଏ କଟକ କଲେକ୍‌ଟରଙ୍କ ଅଫିସ୍, ରେଭେନ୍ୟୁ କମିଶନରଙ୍କ ଅଫିସ ଆଉ ଜଜ୍‌କୋର୍ଟ-ଅର୍ଥାତ୍ ନାଲିକୋଠା (ପରେ ସେଠି ହେଲା-ଓଡ଼ିଶା ହାଇକୋର୍ଟ) । ଓଡ଼ିଶାର ସମସ୍ତ ବଡ଼ବଡ଼ ମାଲିମକଦମାର ବିଚାର ହୁଏ ସେଇ ସବୁ କୋଠା ମାନଙ୍କରେ । ବିଶେଷତଃ ବଡ଼ବଡ଼ ଚୋରି ଡକାୟତି ମାମଲାର ବିଚାର ହୁଏ ପ୍ରତିଦିନ ସେଇ ସବୁ ହାକିମମାନଙ୍କ କୋର୍ଟ ବା

ଜଜ୍‌ସାହେବମାନଙ୍କ କଚେରିରେ । ଆମେ ପିଲାମାନେ ଖେଳଛୁଟି ବେଳେ ସ୍କୁଲ ପାଚେରି ଆର ପଟର ଜନଜୀବନର ଗତିବିଧିକୁ ଲକ୍ଷ୍ୟ କରିବାକୁ ହୁଡା ବାହାରକୁ ଚାଲିଯାଉ ।

ସେ ଏକ ଅଜବ ଦୁନିଆ ଯାହା ବିଷୟରେ ଆମ ଭଳି ଗାଁରୁ ଆସିଥିବା ପିଲାଙ୍କର କିଛି ହେଲେ କିଛି ଧାରଣା ନଥାଏ । ସେ ଦୁନିଆରେ ହର୍‌ଦମ୍ ଚାଲିଥାଏ ହଇଚଇ, ଗଣ୍ଡଗୋଳ, ହୋହଲ୍ଲା, ଧସ୍ତା-ଧସ୍ତି, ଠେଲାପେଲା । ସେ ଦୁନିଆର ଅଧିବାସୀ ହେଲେ ଧଳା ପ୍ୟାଣ୍ଟ ଓ କଳାକୋଟ ପିନ୍ଧା ପଞ୍ଝାପଞ୍ଝା ଓକିଲ ଆଉ ଗାଈ ପଛେ ପଛେ ବାଛୁରୀ ଗୋଡ଼ାଇଲା ଭଳି ତାଙ୍କ ପଛେପଛେ ଗୋଡ଼େଇଥିବା ନିପଟ ମଫସଲି ମଳିମୁଣ୍ଡିଆ ମହକିଲ ଗଣ । ପୁଣି ଧଳା ଓ୍ୱର୍ଦ୍ଦି ଆଉ ନାଲି ପଗଡ଼ି ଓ କାନ୍ଧରେ ଚକଚକିଆ ପିତ୍ତଳର ମୋହରବସା ହୁଦା ପକେଇଥିବା ଅର୍ଦ୍ଦିଳି ଅମୁକ ନାଁର ଲୋକ ହାଜର ହୋ ହାଜର ହୋ ହାଜର ହୋ-ତ୍ରିବାର ଡାକ ଆମକୁ ଶୁଣାଯାଏ କ୍ଲାସରୁମରେ ସୁଦ୍ଧା । ସେ ଡାକରା ଶୁଣିଲା ପରେ ଜଣ ଘଟେ ସେଠି ସେ ଘଟଣା ନିଜ ଆଖିରେ ଦେଖିବାକୁ ଆମେ ପିଲାମାନେ ବଡ଼ ଉତ୍ସୁକତା ପ୍ରକାଶ କରୁ । ଖେଳଛୁଟି ହେଲେ ଆମେ ଛୁଟିଯାଉ ସେଇ ଜାଗାକୁ ଯୋଉଠୁ ସେ ଡାକ ବାହାରୁଥାଏ । ସେ ଡାକ ମୋ କାନକୁ ବଡ଼ ଆତଙ୍କଦାୟକ ରଡ଼ି ଭଳି ଶୁଣାଯାଏ । ଯତେକି ଭେରେଣ୍ଡା (ଅଣ୍ଡିରା ବିଲୁଆ) ରଡ଼ି ଛାଡୁଚି କୋଉଠି ! ମନେପଡ଼େ ପିଲା ଦିନେ ରାତି ଅଧରେ ଗାଁରେ ଏଭଳି ଭେରେଣ୍ଡା ଡାକ ଶୁଣାଯିବା ବେଳେ ବୋଉ କେମିତି ଆମ ଶୋଇଲା ପିଲାମାନଙ୍କ ମୁଣ୍ଡକୁ ଉପରକୁ ଟେକିଦେଉଥିଲା-କାଳେ ଯମ ତା' ଶୋଇଲା ପିଲାଙ୍କୁ ଟେକିନେଇ ପଳେଇବ ସେଇ ଭୟ ଥିଲା ତା'ର ସେପରି ଅଦ୍ଭୁତ ବ୍ୟବହାରର କାରଣ ବୋଲି ଜାଣିଥିଲି ମୁଁ । କିନ୍ତୁ ଏଠି ଏ କଚେରିରେ ଯୋଉ ଭେରେଣ୍ଡା ଡାକ ପଡୁଥାଏ ସେଥିରେ କୋଉ ଶୋଇବା ମହକିଲର ପ୍ରାଣକୁ ଯମ ଦେବତା ଶୂନ୍ୟେଶୂନ୍ୟେ ବାଜ୍ୟାପ୍ତ କରିଦେବେ-ସେଇ ଘଟଣା ସ୍ୱଚକ୍ଷୁରେ ଦେଖିବା ପାଇଁ ମୁଁ ଦିନେଦିନେ କଚେରି ସାମନାରେ ଟହଲ ମାରେ ଆଉ ବେଳେବେଳେ ପଶିଯାଏ ବି ବିଚାରଳୟ ଭିତରକୁ ।

ସେଇ ସବୁ ସମୟରେ ମୋ' ଆଖିରେ ପଡ଼େ ଅନେକ ଅନେକ ଅଦ୍ଭୁତ ଦୃଶ୍ୟ । ଗୋଟାଏ କଳା ରଙ୍ଗର ଜେଲ ଭ୍ୟାନରୁ ଯେତେବେଳେ ବାହାର କରାଯାଉଥାଏ କଏଦୀମାନଙ୍କୁ । ସେମାନଙ୍କ ହାତରେ ପଡ଼ିଥାଏ ହାତକଡ଼ି । ଅଣ୍ଟାରେ ବନ୍ଧାଯାଇଥାଏ ମୋଟା ମୋଟା ଦଉଡ଼ି । ଏଇ ହାତକଡ଼ି ପିନ୍ଧା କଏଦୀମାନେ ହେଲେ ଅପରାଧୀ ଯୋଉମାନଙ୍କୁ କୁହାଯାଏ ଚୋର ଡକାୟତ ବା ଖୁନୀ ଆସାମୀ । ସେମାନଙ୍କ ଭ୍ୟାନରୁ ବାହାରକରି ବନ୍ଧୁକଧାରୀ ପୋଲିସ ମେଣ୍ଢା ଅଡ଼େଇଲା ପରି ଅଡ଼େଇ ନେଇଯାଏ ଗୋଟାଏ ଖୁଆଡ଼ ଭଳି ଅପରିଷ୍କାର ଅନ୍ଧାରୁଆ ଘର ଭିତରକୁ । ସେ ଘରେ ଝରକା ନଥାଏ । କବାଟରେ ମୋଟାମୋଟା ଲୁହା ରେଲିଂମାନ ଖଞ୍ଜାଯାଇଥାଏ । ସେଇଟା ଉଭୟ କବାଟ ଓ ଝରକାର କାମ ଦିଏ । କଏଦୀମାନଙ୍କୁ ପଛଆଡ଼ୁ

ଗୋଟାଏ ଗୋଟାଏ ତଣ୍ଟିଆ କି ବୁଟ୍ ପିନ୍ଧା ଗୋଡ଼ର ଗୋଇଠା ମାରି ପୋଲିସ କଗୁଆଳ ଠେଲିଦିଏ ସେଇ ଅନ୍ଧାର ଘର ଭିତରକୁ । ତା 'ରି ନାଁ ପୋଲିସ ହାଜତ !

ଥରେ କୌତୂହଳବଶତଃ ସେ ହାଜତ ଘର ଭିତରକୁ ଅନେଇ ଦେଖିଥିଲି ମୁଁ ତା ' ଭିତରର ଅବସ୍ଥା । ରେଲିଂ ସନ୍ଧିରେ ନାକ ଗଳେଇବା ମାତ୍ରେ ମତେ ଅଇ ଉଠେଇଲା । ଇସ୍ ! କି ଦୁର୍ଗନ୍ଧ ! ବିଚରା ବନ୍ଦୀ ଲୋକମାନେ ସେଇ ଘରେ ଚଟାଣରେ ନିଶ୍ଚୟ ହଗିମୂତି ପକେଇଥାନ୍ତି ! ତାକୁ ପରିଷ୍କାର କରିବାକୁ ବେଳ ନଥାଏ କାହାରି । ତା 'ରି ନାଁ ଥିଲା-ହାଜର ଘର । ଗିରଫ ହଉଥିବା ଲୋକମାନେ କଚେରିକୁ ସେମାନଙ୍କ ମକଦମା ବିଚାର ପାଇଁ ଆସିଲେ ପୋଲିସ ସେମାନଙ୍କୁ ହାକିମ ଆଗରେ ହାଜର କରାଇବା ଆଗରୁ ପ୍ରଥମେ ଏଇ ନରକ ଭଳି ହାଜତରେ କବତ୍ କରି ରଖନ୍ତି ।

କିନ୍ତୁ ଅନେକ ଥର ଜେଲ ଭ୍ୟାନରୁ ମଧ୍ୟ ଓହ୍ଲାନ୍ତି ଗୁଡ଼ିଏ ଖଦଡ଼ ପିନ୍ଧା କଂଗ୍ରେସୀ ଭଦ୍ରଲୋକ । ସେମାନଙ୍କର ହାତକଡ଼ି ପଡ଼ିନଥାଏ; କିନ୍ତୁ ସେମାନେ ଯେ ଜେଲଖାନାର କଏଦୀ ତା 'ର ପ୍ରମାଣ ମିଳୁଥାଏ ସେମାନଙ୍କୁ ଯେତେବେଳେ ହାଜତରେ ଠୁଙ୍କନ୍ତି ପୋଲିସବାଲାଏ । ଥରେ ଥରେ ମଧ୍ୟ ସେମାନଙ୍କ ଭିତରୁ ଜଣଜଣଙ୍କର ହାତରେ ହାତକଡ଼ି ଆଉ ଅଣ୍ଟାରେ ଦଉଡ଼ି ବନ୍ଧା ହବା ଦୃଶ୍ୟ ଦେଖିଥିଲି ମୁଁ । ସେଇ ଅବସ୍ଥାରେ କିନ୍ତୁ ସେମାନେ ଛାତି ଫୁଲେଇ ବଡ଼ପାଟିରେ "ମହାତ୍ମା ଗାନ୍ଧିଜୀ ଜୟ" ପହଳି ଦଉଥାନ୍ତି । ସେମାନଙ୍କୁ ସେଇ କାରଣରୁ କୁହାଯାଉଥିଲା-କଂଗ୍ରେସୀ ସତ୍ୟାଗ୍ରହୀ । ଏମାନେ ସାଧାରଣ ଚୋର ତସ୍କର ନୁହନ୍ତି, ଏମାନେ ବ୍ରିଟିଶ୍ ଶାସନର ଆଇନ୍ ଅମାନ୍ୟକାରୀ ସତ୍ୟାଗ୍ରହୀ-ଏକଥା ବୁଝିଲା ପରେ ମନରେ ସେମାନଙ୍କ ପ୍ରତି ଖୁବ୍ ସମ୍ମାନବୋଧ ଜନ୍ମି ସାରିଥାଏ ମୋର ।

ତେଣୁ ସେଦିନ ଯେତେବେଳେ ଶୁଣାଗଲା ଯେ ଆଜି ଗୋଟାଏ ମସ୍ତବଡ଼ ଶୋଭାଯାତ୍ରା ବାହାରିବ ଆମ ସ୍କୁଲ ହତା ଭିତରୁ, ଆଉ ସେ ଶୋଭାଯାତ୍ରା କଟକ ସହରର ମେନ୍ ରାସ୍ତାରେ ଚାଲିଚାଲି ଯିବ ସିଧା ରେଭେନ୍ସା କଲେଜ ହତା ଭିତରକୁ ଯୋଉଠି ଓ୍ୱେଷ୍ଟ ହଷ୍ଟେଲ ନାମକ ଏକ ଛାତ୍ରାବାସକୁ ଦୀର୍ଘ ଅଠଚାଳିଶ ଘଣ୍ଟା ଧରି ଅବରୁଦ୍ଧ କରି ରଖିଥିବା କେତେକ ଛାତ୍ରନେତାଙ୍କ ବୀରତ୍ୱପୂର୍ଣ୍ଣ କାର୍ଯ୍ୟର ମୁଣ୍ଡି ମରିବ-ସେ ଛାତ୍ରାବାସ ଉପରେ ଭାରତର ଜାତୀୟ ପତାକା ଅର୍ଥାତ୍ ମହାତ୍ମା ଗାନ୍ଧିଙ୍କ ଅରଟ ଚିହ୍ନିତ ତ୍ରିରଙ୍ଗା ପତାକାର ଉତ୍ତୋଳନ ମାଧ୍ୟମରେ, ସେତେବେଳେ ମୁଁ ଆଉ ନିଜର ଭାବାବେଗକୁ ନିୟନ୍ତ୍ରିତ କରିପାରିଲି ନାହିଁ । ସେଦିନ ସ୍କୁଲ ଫାଟକ ଆଗରେ "ମହାତ୍ମା ଗାନ୍ଧିଜୀ ଜୟ ! ଇନ କିଲାପ ଜିନ୍ଦାବାଦ ।" ଶବ୍ଦ ଶୁଣାଯିବା ମାତ୍ରେ ମୁଁ ଢ଼ୁସ୍କିନା ମୋ ' ବେଞ୍ଚରୁ ଉଠି ଠିଆହେଇପଡ଼ିଲି । ଶ୍ରେଣୀ ଶିକ୍ଷକ ମତେ ପଚାରିଲେ, "କଅଣ ହେଲା-ଠିଆ ହେଲ କାହିଁକି ? ବସି ପଡ଼ । ବସି ପଡ଼ ! କ 'ଣ ତମେ ପ୍ରସେସନରେ ଯିବାକୁ ବାହାରିଚ କି ?"

ମୁଁ କିଛି ଉତ୍ତର ଦେଲି ନାହିଁ । ବହିପତ୍ର ସବୁ ବ୍ୟାଗରେ ଭର୍ତ୍ତି କରିସାରିଥାଏ ।

"ଦେଖ ! ତୁମକୁ ପୋଲିସ ବାନ୍ଧି ନବ ଯଦି ପ୍ରସେସନରେ ଯାଅ ! ପୁଣି ତମ ନାଁରେ ମକଦମା ହବ ! ତମକୁ ଗିରଫ କରି ପୋଲିସ ଜେଲ ଭ୍ୟାନରେ ଆଣି ହାଜର କରିବ ଏଇ ପାଟେରି ଆରପଟ ମାଜିଷ୍ଟ୍ରେଟଙ୍କ କୋର୍ଟରେ । ତମ ନାଁ ଡାକରା ପଡ଼ିବ-ମୁଦାଲା ଶାନ୍ତନୁ କୁମାର ଆଚାର୍ଯ୍ୟ ହାଜର ହାୟ୍ ! ହାଜର ହାୟ୍ ! ହାଜର ହାୟ୍ !-ତିନିଥର ! ସେଥିପାଇଁ ପ୍ରସ୍ତୁତ ?"

ମୁଁ ମୁଣ୍ଡ ତଳକୁ କରି ଠିଆହେଇ ରହିଲି । ସେ ଭିତରେ ଆହୁରି କେତେଜଣ ବି ମୋ' ଭଳି ଠିଆହେଇ ପଡ଼ିଥାନ୍ତି । କ୍ଲାସ୍ ଶିକ୍ଷକ କିନ୍ତୁ ତାଙ୍କ ଦାୟିତ୍ୱ ତୁଲାଇବାରେ ହେଳା କରୁନଥାନ୍ତି । ତାଙ୍କ ଦାୟିତ୍ୱ ଥିଲା-ଆମମାନଙ୍କୁ ପୋଲିସ କାର୍ଯ୍ୟାନୁଷ୍ଠାନ ସଂପର୍କରେ ଚେତେଇଦେବା । ସେ ପଚାରିଲେ, "ତମ ବାପାମାନଙ୍କର ଅନୁମତି ଅଛି ? ସେ ସବୁ ବାଜେ କାମରେ ମାତନା । ତମ ବାପାମାନେ ତମମାନଙ୍କୁ ଏ ସ୍କୁଲକୁ ପଠେଇଛନ୍ତି ପାଠ ପଢ଼ି କଲେଜ ଶିକ୍ଷା ପାଇଁ ପ୍ରସ୍ତୁତ ହେବାକୁ । ତା'ପରେ ତମେମାନେ ନିଜର ଭବିଷ୍ୟତ ଗଢ଼ିବାକୁ ଉପଯୁକ୍ତ ମାର୍ଗ ଖୋଜିନେବ । କିଏ ଡେପୁଟି ମାଜିଷ୍ଟ୍ରେଟ ହବ ତ କିଏ ଓକିଲାତି କରିବ । କିଏ ଡାକ୍ତରି ପଢ଼ିବ ତ କିଏ ଇଞ୍ଜିନିୟରିଂ । କିନ୍ତୁ ତମେମାନେ ଯଦି ସରକାରୀ ଚାକିରିରେ ପଶିବାକୁ ଚାହୁଁଥାଅ- ବଡ଼ହଉ କି ଛୋଟହଉ- ସେତେବେଳେ ତମ ବିରୁଦ୍ଧରେ କି କି ମାଲିମକଦମା ସବୁ ଅତୀତରେ ହେଇଥିଲା ତା'ର ତର୍ଜମା ନିଷ୍ପତ୍ତି କରାଯିବ । ପୋଲିସଠୁ ତମ ସଂପର୍କରେ ମଗାଯିବ ଗୁପ୍ତ ରିପୋର୍ଟ । ଯଦି ତମ ବିରୁଦ୍ଧରେ କିଛି ମନ୍ଦ ରିପୋର୍ଟ ମିଳିବ ପୋଲିସଠୁ ତେବେ ତମେ ଯେତେ ଉଚ୍ଚ ଡିଗ୍ରୀପ୍ରାପ୍ତ ମେଧାବୀ ଛାତ୍ର ହେଲେ ବି ସରକାରୀ ଚାକିରିରୁ ବଞ୍ଚିତ ହେବ ଶାନ୍ତନୁ ! ତେଣୁ ଖବରଦାର ! ସେଥିରେ ମାତନା ଆଦୌ ! ସେ ପ୍ରସେସନ୍ ଫ୍ରସେସନରେ ମିଶି ନିଜର ଭବିଷ୍ୟତକୁ ଅନ୍ଧକାର ଭିତରକୁ ଠେଲିଦେବା ଆଦୌ ବୁଦ୍ଧିମାନର କାମ ନୁହେଁ-ପିଲାମାନେ ! ଚୁପ୍‌ଚାପ୍ ବସିପଡ଼ । ପାଠରେ ମନ ଦିଅ ।"

ସେତେବେଳକୁ ମୁଁ କ୍ଲାସରୁ ବାହାରିଯାଇଥାଏ । ଏକାଢ଼ିଆଁକେ ଯାଇ ହାଜର ହେଇସାରିଥାଏ ସ୍କୁଲ୍ ଫାଟକ ସାମ୍‌ନାରେ ଅଳ୍ପ ଅଳ୍ପ ଜମୁଥିବା ପିଲାଙ୍କ ମେଳରେ । ସେଇଠୁ ଆରମ୍ଭ ହେଲା ଡାକରା, ମହାତ୍ମା ଗାନ୍ଧିଜୀ ଜୟ୍ ! ଇନ୍‌କିଲାପ ଜିନ୍ଦାବାଦ ! ୱେଷ୍ଟ ହଷ୍ଟେଲ ରିପବ୍ଲିକ୍ ଜିନ୍ଦାବାଦ୍ । କିଏ ପ୍ରଥମେ ଆରମ୍ଭ କଲା ସେ ପହଲି ସବୁ କେଜାଣି । କିନ୍ତୁ ସେ ଡାକର କିଛି ଅଦ୍ଭୁତ ଆକର୍ଷଣ ଶକ୍ତି ଥିଲା ନିଶ୍ଚୟ । ପଦ୍ମତୋଳା ଶୁଣିଲେ ସାପ ଯେମିତି ଗାତରେ ରହିପାରେନ ଆଦୌ, ବାହାରି ଆସେ ସିଧା କେଳା ହାବୁଡ଼କୁ, ସେମିତି ମୁହୂର୍ତ୍ତକ ଭିତରେ ଶହଶହ ପିଲା କୋଉଠୁ କେଜାଣି ଅଜାଡ଼ି ହେଇ ପଡ଼ିଲେ ରାସ୍ତା ଉପରେ । ଜଣକର କଣ୍ଠସ୍ୱର ପରିଣତ ହେଇଗଲା- ସହସ୍ର କଣ୍ଠସ୍ୱରରେ ।

ଚାହୁଁଚାହୁଁ ଏକ ବିରାଟ ଶୋଭାଯାତ୍ରା ଆପଣାଛାଏଁ ଗଢ଼ିଉଠିଲା । ସେ ଶୋଭାଯାତ୍ରାର ଆକାର ଲମ୍ବରେ ବଢ଼ିବାକୁ ଲାଗିଲା ମଧ୍ୟ । ସେ ଲମ୍ବା ଶୋଭାଯାତ୍ରା ସେଦିନ କଲିଜିଏଟ୍ ସ୍କୁଲରୁ ବାହାରିଲା ବେଳକୁ ତା'ର ମୁଣ୍ଡ ଯେତିକି ଯେତିକି ଆଗକୁ ଆଗକୁ ବଢୁଥାଏ ତା'ର ଲାଞ୍ଜଟା ବି ସେତିକି ସେତିକି ପଛକୁ ପଛକୁ ଲମ୍ବି ଲମ୍ବି ଗଲାପରି ମନେହେଉଥାଏ ।

ମୁଁ ସେ ଶୋଭାଯାତ୍ରାର ମଝାମଝି ଠାଏ ରହିଥାଏ । ଆମେ କଲିଜିଏଟ୍ ସ୍କୁଲରୁ ବାହାରି ନିମ୍‌ଚଉଡ଼ି ନୟାସଡ଼କ ଦେଇ ଚୌଧୁରୀ ବଜାର ହେଇ ପାଖାପାକି ହେଲା ବେଳକୁ ପ୍ରାୟ ଦି'ଘଣ୍ଟା ସମୟ ବିତିଯାଇଥାଏ । ସୂର୍ଯ୍ୟ ଉଠିସାରିଥାନ୍ତି ମୁଣ୍ଡ ଉପରକୁ । କିନ୍ତୁ ଶୋଭାଯାତ୍ରା ଆଉ ଆଗେଉ ନଥାଏ । ତା'ର ଗତି ମନ୍ଥର ହେବାର କାରଣ- ମଝିରେ ମଝିରେ ସେଥିରେ ଯୋଗଦେଉଥାନ୍ତି କଟକର ଅନ୍ୟାନ୍ୟ ହାଇସ୍କୁଲର ପିଲାମାନେ । ସେମାନଙ୍କୁ ଉଦ୍‌ବୋଧନ ଦେବା ପାଇଁ ନେତାମାନେ ମଧ୍ୟ ମଝିରେ ମଝିରେ ଡାକବାଜି ଦ୍ୱାରା ଶୁଣାଉଥାନ୍ତି ସେମାନଙ୍କର ଲମ୍ବା ଲମ୍ବା ଭାଷଣ । କଟକର ରାସ୍ତାଗୁଡ଼ାକ ସେତେବେଳେ ତୁଚ୍ଛା ନାଲି ମାଟି । ଭୀଷଣ ଧୂଳି ଉଡ଼ୁଥାଏ । ସୂର୍ଯ୍ୟ ମୁଣ୍ଡ ଉପରେ ଥିବାରୁ ଟାଣ ଖରା ସହିନପାରି ଅନେକ ପିଲା ମୂର୍ଚ୍ଛା ହେଇ ଟଳିପଡ଼ୁଥାନ୍ତି । ସେମାନଙ୍କୁ ରାସ୍ତା କଡ଼କୁ ଟେକି ନେଇ ଯାଉଥାନ୍ତି ଦଳଦଳ ସ୍ୱେଚ୍ଛାସେବୀ । କିଏ ସେମାନେ କେଜାଣି ? ମୁଁ ମୋ' ବହିବ୍ୟାଗଟାକୁ କାନ୍ଧରେ ବୋହି ଚାଲୁଥାଏ । ଭୀଷଣ ଶୋଷ । ଖରା ଧାସରେ ମୋ' ଦେହ ମୁହଁ ପୋଡ଼ୁଥାଏ । କିନ୍ତୁ ସବୁଠୁଁ ବେଶି କଷ୍ଟକର ମନେହେଉଥାଏ- ଶୋଭାଯାତ୍ରାର କଚ୍ଛପୀୟ ଗତି । ସେତେବେଳକୁ ସେ ଗତି ବି ପୂରା ବନ୍ଦ । ସେପରି ସ୍ଥାଣୁ ଅବସ୍ଥାରେ କେତେବେଳେ ଠିଆହେଇ ରହିଲୁ କେଜାଣି । ପରେ ସାମ୍‌ନା ଆଡ଼ୁ ହଠାତ୍ ଶୁଣାଗଲା- "ସିଟ୍ ଡାଉନ୍ ! ଆଣ୍ଠେଇପଡ଼ ! ସାଙ୍ଗେ ସାଙ୍ଗେ ଆଣ୍ଠେଇ ପଡ଼ !" ସେ ଅର୍ଡର ଯାହାଠୁ ଆସୁଥାଉ ପଛେ ତାକୁ ପ୍ରତିଧ୍ୱନିତ କରୁଥାନ୍ତି ଶୋଭଯାତ୍ରାର ପରିଚାଳକ କେତେକଣ ଯୁବକ ଯୋଉମାନେ ଆମ ଧାଡ଼ିର କଡ଼େ କଡ଼େ ଆମକୁ ଜଗିଲା ଭଳି ବରାବର ଉପସ୍ଥିତ ରହିଥାନ୍ତି ।

କିନ୍ତୁ ସିଟ୍ ଡାଉନ୍ କହିଁକି ? ରାସ୍ତା ମଝିରେ ଆମେ ଆଣ୍ଠେଇବୁ କାହିଁକି ? କିଛି ବୁଝି ହଉ ନଥାଏ । ତଥାପି ଅର୍ଡର ମାନି ଆମେ ସାଙ୍ଗେ ସାଙ୍ଗେ ଆଣ୍ଠୁମାଡ଼ି ବସିପଡ଼ିଲୁ କଟକର ସେଇ ଅପରିଷ୍କାର ଧୂଳିଆ ନାଲି ସଡ଼କ ଉପରେ । ସେତେବେଳକୁ ସହରର ସେଇ ସରୁଆ ରାସ୍ତାଟାରେ ଯାନବାହନ ପୂରା ବନ୍ଦ । ତଥାପି ଯେତେଦୂର ସମ୍ଭବ ରାସ୍ତା କଡ଼କୁ ଜାକିଜୁକି ହେଇ ବସି ଆମେ ଯାନବାହନ ପାଇଁ କିଛିଟା ଫର୍ଚ୍ଚା ଜାଗା କରିଦେଇଥାଉ । ସାରା ସହରରେ ସେତେବେଳେ କାଁଭାଁ କାହା ପାଖରେ ମଟର କାର୍ ଖଣ୍ଡେଅଧେ ଥାଏ । କେବଳ ଭଲ ଆଖିଦୃଷ୍ଟିଆ ମଟରକାରଟାଏ ଥାଏ-ସେତେବେଳର ଓଡ଼ିଶାର ଲାଟସାହେବ ବା ଗଭର୍ଣ୍ଣର ସାର୍ ଜନ୍ ଅଷ୍ଟେନ୍ ହବାକ୍‌ଙ୍କର ।

ଲାଟ୍ ସାହେବ ରହୁଥାନ୍ତି କଟକ ଲାଲ୍‌ବାଗର ଲାଟ୍ ଭବନରେ । ସେ ଭବନଟା ଆମ ରେଭେନ୍‌ସା କଲିଜିଏଟ୍ ସ୍କୁଲ ପାଖରେ । ପ୍ରତିଦିନ ଲାଟ ନିଜ ଭବନରୁ ବିଜେ ହେବା ବେଳକୁ ଆଗ ବିଗୁଲ୍ ବାଜିବା ଶୁଣାଯାଏ । ତଦ୍ୱାରା ଲୋକେ ସାବଧାନ ହୋଇଯାନ୍ତି ରାସ୍ତାଘାଟରେ । ସେମାନେ ପାଖେଇ ଯାଆନ୍ତି-ଲାଟସାହେବଙ୍କ ମଟର ଗାଡ଼ିକୁ ବାଟ ଛାଡ଼ି ଦବାକୁ । ପୁଣି ଲାଟଙ୍କ କାର ବାହାରିବା ଆଗରୁ ରାସ୍ତା ଉପରେ ପାଣି ଛିଞ୍ଚିବାକୁ ଗୋଟାଏ ପାଣି ଟ୍ୟାଙ୍କର ଆଗେଆଗେ ପାଣି ଛିଞ୍ଚିଛିଞ୍ଚି ଯାଏ । ସେଦିନ ବୋଧହୁଏ ଲାଟସାହେବଙ୍କ କୁଆଡ଼େ ଯିବାର ନଥାଏ-ନହେଲେ ରାସ୍ତାଟା ଅନ୍ତତଃ ଏତେ ଧୂଳିଆ ହେଇ ନଥାନ୍ତା । କ୍ରୁଲ୍ କ୍ରୁଲ୍ କ୍ରୁଲ୍ ! ହଠାତ୍ ପୁଣି ଶୁଣାଗଲା ଆଉ ଏକ ପ୍ରକାର ଅଦ୍ଭୁତ ଅର୍ଡର ସାମନାରୁ । ଡାକ ପଡ଼ିଲା ଆମକୁ ଏଥର ପେଟେଇ ପଡ଼ ! ସମସ୍ତେ ପେଟେଇ ପଡ଼ ରାସ୍ତା ଉପରେ । ପୋଲିସ ଫାୟାରିଂ ପାଇଁ ପ୍ରସ୍ତୁତ ହଉଚି । ସମସ୍ତେ ଶୋଇପଡ଼ ରାସ୍ତା ଉପରେ । ଏଥର ପ୍ରକୃତ ସମୟ ଆସିଲା ବୋଧହୁଏ-ପୋଲିସ ସହିତ ମୁହାଁମୁହିଁ ହବାର ! ଆମେ ସମସ୍ତେ ମୁହଁମାଡ଼ି ସିଧା ଶୋଇପଡ଼ିଲୁ ରାସ୍ତା ଉପରେ ।

"ଦେଖ । ସାମ୍‌ନାରେ ବନ୍ଧୁକଧାରୀ ପୋଲିସ ଠିଆହେଇଛି ଡମର ।" ଦେଖିପାରୁଚ ଟି ? ଖବରଟା ମୁହଁରୁ ମୁହଁ ହେଇ ଲହରେଇ ଗଲା ମାଇଲ ମାଇଲ ଲମ୍ବା ସେଇ ଧାଡ଼ି ଗୁଡ଼ାକର ଆଗ ଆଡ଼ୁ ପଛ ପର୍ଯ୍ୟନ୍ତ । ତମେମାନେ ଯଦି ଠିଆ ହେଇ ରହିବ ତେବେ ପୋଲିସ ଫାୟାର୍ କରିବ ସିଧା ତମ ଉପରକୁ । ଯଦି ଗୁରୁଣ୍ଡି ଗୁରୁଣ୍ଡି ବା ପେଟେଇ ପେଟେଇ ଆଗେଇବ ତେବେ ପୋଲିସ ତମ ଉପରକୁ ଗୁଳି ଚଳେଇପାରିବ ନାଇଁ । ଜାଣିଥାଅ ସେପରି କରିବା ଆଇନ୍‌ବିରୁଦ୍ଧ । ପୋଲିସ ମାନୁଆଲରେ ଲେଖା ଅଛି ଯେକୌଣସି ପ୍ରସେସନରେ ଯାଉଥିବା ସତ୍ୟାଗ୍ରହୀମାନଙ୍କ ଉପରକୁ ପୋଲିସ ଗୁଳି ଚଳାଇବ ନାଇଁ ଅଣ୍ଟାତଳକୁ । ଏଥର ବୁଝ କାରଣ, କାହିଁ କୁହାଯାଉଛି ତମମାନଙ୍କୁ ଗୁରୁଣ୍ଡି ଗୁରୁଣ୍ଡି ଆଗେଇବା ପାଇଁ । ଭାଇ ଭଉଣୀମାନେ ! ଦୟା କରି ସମସ୍ତେ ଭୂଇଁ ଉପରେ ଲେପେଟେଇ ପଡ଼ନ୍ତୁ । ପେଟେଇ ପେଟଇ ମାଡ଼ିଯାଅ ଭାଇ ଭଉଣୀମାନେ ଆଗକୁ ! ଜୟ ମହାତ୍ମା ଗାନ୍ଧୀଜୀ..."

ବର୍ତ୍ତମାନ ଆମେ ଆଉ କ'ଣ ବା କରିଥାନ୍ତୁ ? ସମସ୍ତେ ପେଟେଇ ପଡ଼ିଲୁ ବିଚ୍ ରାସ୍ତା ଉପରେ । ଘୁଷୁରି ଘୁଷୁରି ସାପ ପରି ଗତି କଲୁ ଜିଛି ବାଟ ଆଗକୁ । ସେତିକିବେଳେ ମୋ' ମନରେ ଏଇ ପ୍ରଶ୍ନ ଉଠିଲା- ତା' ହେଲେ କ'ଣ ଏମିତି ପେଟେଇ ପେଟେଇ ଏଇଠୁ ଏଣିକି ରେଭେନ୍‌ସା କଲେଜ ପର୍ଯ୍ୟନ୍ତ ଯିବାକୁ ହେବ ଆମକୁ ? ବର୍ତ୍ତାମନ ତ ଆମେ ଅଛୁ ମୋଟେ ଦରଘାବଜାରର ଜେଲ ପାଚେରି ପାଖରେ । ଆଗରେ କ୍ୟାପିଟାଲ ସିନେମା । ତା'ପରେ ପ୍ରଭାତ ସିନେମା । ତାକୁ ପାରିହେଲେ ବକ୍ସିବଜାର । ସେଇଠୁ ମଙ୍ଗଳାବାଗ । ତା' ସେପଟକୁ ରାଣୀହାଟ । ସେଠୁ ଯାଇ ଆସିବ କଲେଜଛକ ଏରିଆ । ତା'ପରେ ସିନା ପଶିବୁ ରେଭେନ୍‌ସା କଲେଜ ହତାରେ । ସେ ତ

କାହିଁ କେତେ ବାଟରେ । ଏବେଠୁ ଯଦି ପେଟେଇବା ଦରକାର ପଡ଼ିଲାଣି ତେବେ ତ ରେଭେନ୍‌ସା କଲେଜରେ ଆମେ ପଢ଼ୁଥିଲା ବେଳକୁ ଆମେ ସତକୁ ସତ ଗୋଟାଏ ଲେଖାଏଁ ସାପ ପାଲଟି ସାରିଥିବୁ ! ସାପମାନଙ୍କର କି ଦରକାର ଗୋଟାଏ ଓ୍ୱେଷ୍ଟ ହଷ୍ଟେଲ ରିପବ୍ଲିକ୍‌ର ? ଲବଣ ସତ୍ୟାଗ୍ରହ ପାଇଁ ମହାତ୍ମା ଗାନ୍ଧି ଯେତେବେଳେ ଦାଣ୍ଡିଯାତ୍ରା କରୁଥିଲେ କଣ ଗୁରୁଣ୍ଡୁଥିଲେ ନା ପେଟେଇ ପେଟେଇ ସାବରମତି ଆଶ୍ରମରୁ ଦାଣ୍ଡିଯାକେ ଦି' ଶହ ମାଇଲ ଯାଇଥିଲେ ସାପପରି ? ନା ନା- ଆମେ ପେଟେଇବୁ ନାଇଁ । ଆମେ ମାର୍ଚ୍ଚ କରିବୁ ଦୁଇ ଗୋଡ଼ରେ ମଣିଷ ପରି । ଆମେ ସତ୍ୟାଗ୍ରହୀ । ରାସ୍ତା ଉପରେ ପେଟେଇବା ମତେ ଘୋର ଅପମାନଜନକ ମନେହେଲା ।

ମୁଁ ମୋ' ପାଖ ପିଲାକୁ କହିଲି, "ଉଠିପଡ଼ ସମସ୍ତେ । ଗୁଳି ଚାଲିବ ତ ଚାଲୁ । ଏମିତି କାପୁରୁଷ ଭଳି ମରିବା କାହିଁକି ?" ମୁଁ ଉଠିପଡ଼ିବା ମାତ୍ରେ ମୋ' ପାଖର କେତେଜଣ ମଧ୍ୟ ଉଠି ଠିଆହୋଇ ପଡ଼ିଲେ । ଆମେ ପଞ୍ଚାଏ ଠିଆ ହୋଇ ପଡ଼ିବା ଦେଖି ଆୟୋଜକମାନଙ୍କ ପକ୍ଷରୁ କିଏ ସବୁ ଚିଲେଇ ଉଠିଲେ, "ହେ ! ସେଠି କିଏ ଠିଆହେଇଚ ? ଖବରଦାର- ପୋଲିସ ଛକି ବସିଚି ପ୍ରସେସନ୍ ସାମନାରେ ! ବାଟ ରୋକା ହେଇଚି । ତମେମାନେ ଆଉ ଚାଲିଚାଲି ଆଗକୁ ଯାଇ ପାରିବ ନାହିଁ । ଏକମାତ୍ର ଉପାୟ କ୍ରଲିଂ । କାଳ ବିଳମ୍ବ ନକରି ଲେପେଟେଇ ପଡ଼ ।"

...ଡୁଃ ! ସାମ୍‌ନାରୁ ଆସିଲା ସେ ଶବ୍ଦଟା । କ'ଣ ଫାୟାରି ଆରମ୍ଭ ହେଇଗଲା କି । ନାଃ ସେ ଥିଲା ଟିୟର୍ ଗ୍ୟାସ୍ ଫାୟାରିଂ ।

ଟିଅର୍ ଗ୍ୟାସ୍ କିନିଷଟା କ'ଣ ମୋର କିଛି ଧାରଣା ନଥାଏ । ତେଣୁ ପାଖ ପିଲାକୁ ପଚାରିଲି ତା' ମାନେ । ସେ ବି ସେଯାକେ ଟିଅର୍ ଗ୍ୟାସ୍ ସଂପର୍କରେ ଅନଭିଜ୍ଞ । ତେଣୁ ପୋଲିସ୍ ଆମ ଉପରକୁ ଟିଅର୍ ଗ୍ୟାସ୍ ଛାଡ଼ିଲେ ଆମେ କ'ଣ କରିବୁ ?

ସେତିକିବେଳେ କିଏ ଜଣେ ବଡ଼ ନେତା ଭଳି ମଣିଷ ଆମ କଡ଼ ପାଖେ ଆସି ଠିଆହେଲେ । ହାତରେ ତାଙ୍କର ବାଲ୍‌ଟିଏ ପାଣି । ସେ କହିଲେ "ଶୀଘ୍ର ବାହାରକର ରୁମାଲ୍ ତମମାନଙ୍କ ପକେଟରୁ । ଯଦି ରୁମାଲ୍ ନାହିଁ ତେବେ ସାର୍ଟ ଉତାରି ପକାଅ । ତାକୁ ଓଦା କରି ପ୍ରସ୍ତୁତ ହୋଇ ରହ । ଯେତେବେଳେ ଟିଅର୍ ଗ୍ୟାସ୍ ବାଜିବ ନାକରେ ନାକ ତମର ଭାରି ପୋଡ଼ିବ । ସବୁଠୁ ବେଶି ପୋଡ଼ିବ ଆଖି । ଅନର୍ଗଳ ବୋହିବ ଲୁହ ଆଖିରୁ । ତେବେ ଡରିବାର କିଛି ନାହିଁ ପିଲାମାନେ । ଆମେ ବ୍ରିଟିଶ ବିରୁଦ୍ଧରେ ଯୁଦ୍ଧ କରିବାକୁ ସଂକଳ୍ପ ନେଇ ବାହାରିଚୁ । ଆମେ ସତ୍ୟାଗ୍ରହୀ ସିପାହୀ । ଆମେ ତ ଅହିଂସାରେ ଅଛୁ । ଯଦି ଆମର ଅହିଂସା କାହାକୁ ଭଲ ନଲାଗୁଚି ତ ସେ ହିଂସା କରିବ ଯଦି କରୁ । ଆମେ ସେଥିରେ ଡରିଯିବା ନାଇଁ । ଟିଅର୍ ଗ୍ୟାସ୍ ପଡୁ କି ଗୁଳି ଚାଲୁ ଆମ ଉପରକୁ- ଆମେ କିନ୍ତୁ ଆମ ସଂକଳ୍ପରେ ଅଟଳ ରହିବା ବନ୍ଧୁମାନେ । ତେବେ ପାଣି କନା ଧରି ପ୍ରସ୍ତୁତ ରହିଥାଅ । ଯଦି ଟିଅର୍ ଗ୍ୟାସ୍ ସେଲ୍ ଫାୟାର୍ କରିବ ତମ ଉପରକୁ ପୋଲିସ ତେବେ ସାଙ୍ଗେ ସାଙ୍ଗେ ଓଦାକନାରେ ଆଖି ନାକ ଘୋଡ଼େଇ ପକେଇବ । ତା'ହେଲେ ଟିଅର୍ ଗ୍ୟାସ୍ ତମର କିଛି

କ୍ଷତି କରିପାରିବ ନାହିଁ... ଏଇ ନିଅ ପାଣି... ଶୀଘ୍ର ଓଦା କରି ପକାଅ ରୁମାଲ୍ କି ଯାହା କିଛି କନା ପାଉଚ ହାତପାହାନ୍ତାରେ...।''

ଆମେ ତତ୍‌କ୍ଷଣାତ୍ ପକେଟରୁ ରୁମାଲ୍ ବାହାର କରି ଭିଜେଇଲୁ। ଖୁବ୍ ତରବରରେ ବଡ଼ ପାଟିରେ ସେ ଆମକୁ ଏ ସବୁ ତଥ୍ୟ ଦେଇ ସାରି ପାଣି ବାଲ୍‌ଟି ସହିତ ଆମ ପଛ ଧାଡ଼ିର ପିଲାଙ୍କ ପାଖକୁ ଚାଲିଗଲେ।

ଟିଅର୍ ଗ୍ୟାସର ବିଷାକ୍ତ ପ୍ରଭାବ ସଂପର୍କରେ ସେଦିନ ଗୋଟିଏ ପ୍ରତ୍ୟକ୍ଷ ଶିକ୍ଷା ମିଳିଗଲା ଆମକୁ। ଅନେକ ସେ ଗ୍ୟାସର କଟୁ ପ୍ରଭାବକୁ ସମ୍ଭାଳି ନପାରି ପ୍ରସେସନରୁ ବାହାରି ପଳେଇଲେ ଦୂରକୁ। କିନ୍ତୁ ମୁଁ ଜାଗା ଛାଡ଼ିଲି ନାହିଁ। ସେତେବେଳକୁ ଅବଶ୍ୟ ମୁଁ ଓ ମୋ ଆଖପାଖର ସାଙ୍ଗମାନେ ମୁହଁରେ ଓଦା କନା ଘୋଡ଼େଇ ହେଇ ରାସ୍ତା ମଝିରେ ବସି ପଡ଼ିଥାଉ। କିଛି ସମୟ ପରେ ଟିଅର୍ ଗ୍ୟାସର ପ୍ରଭାବ କମିଗଲା। ଅର୍ଡର ମିଳିଲା-ଆଗେଇ ଚାଲ ! ଆମେ ଆଗେଇଲୁ। ଇଞ୍ଚ ଇଞ୍ଚ କରି ଆମେ ଆଗୋଉ ଥାଉ।

ପ୍ରାୟ ଦିନ ଦୁଇଟା ସୁଦ୍ଧା ଆମେ ପ୍ରବେଶ କଲୁ ରେଭେନ୍‌ସା କଲେଜ ହତାରେ। ଆଖି ଖୋଷି ହେଇ ପଡ଼ିଲା ଯେତେବେଳେ ସେଇ ଐତିହାସିକ ଲାଲକିଲ୍ଲା ଭଳି ଲାଲ୍ ରଙ୍ଗର ସୌଧାବଳୀ ପ୍ରଥମ ଥର ପାଇଁ ପଡ଼ିଲା ମୋ' ଆଖିରେ। ଛାତି ଭିତର ପୂରି ଉଠିଲା। ଏଇ କ'ଣ ତେବେ ସେଇ ମହାନ୍ ରେଭେନ୍‌ସା କଲେଜ ଯାହା ବିଷୟରେ କୁହାଯାଏ ନଅଙ୍କ ଦୁର୍ଭିକ୍ଷ ନପଡ଼େ କି ରେଭେନ୍‌ସା କଲେଜ ନହୁଏ ! ରେଭେନ୍‌ସା କଲେଜ ନହୁଏ କି ରେଭେନ୍‌ସା ରେଭେନ୍‌ସା ନହୁଏ।

ଟିଅର୍ ଗ୍ୟାସର ପ୍ରଭାବରେ ଜର୍ଜରିତ ଆଖିରୁ ଏଥର ସତରେ ବୋହିବାକୁ ଲାଗିଲା ଲୁହ ଯାହା ଏଯାଏ ସଞ୍ଚିତ ହୋଇରହିଥିଲା ଜୀବନର ସେଇ ପ୍ରଥମ ବାସ୍ତବ ଐତିହାସିକ ଅନୁଭବର ପବିତ୍ର ମୁହୂର୍ତ୍ତଟି ପାଇଁ। ରେଭେନ୍‌ସା କଲେଜ ସହିତ ମୋର ପ୍ରଥମ ପରିଚୟ ସେଇଭଳି ଅବସ୍ଥାରେ ଘଟିଯାଇଥିଲା ମୋ' ଜୀବନରେ। (ବୋଧହୁଏ ସେଇ ସବୁ ପବିତ୍ର ମୁହୂର୍ତ୍ତର ଉଚ୍ଚାଟନକାରୀ ପ୍ରଭାବ ମୋ ଅବଚେତନରେ ସଞ୍ଚିତ ହେଇଥିଲା ଯାହାର କାବ୍ୟିକ ଅଭିବ୍ୟକ୍ତି ପ୍ରକାଶ ପାଇଥିଲା ମୋର ଉପନ୍ୟାସ 'ଶତାବ୍ଦୀର ନଚିକେତା (୧୯୬୫)' ଆଉ 'ଧରିତ୍ରୀର କାନ୍ଦ (୧୯୯୪)'ରେ।

ସେତେବେଳକୁ ରେଭେନ୍‌ସା କଲେଜ ହତାରେ ହଜାର ହଜାର ଛାତ୍ରଛାତ୍ରୀଙ୍କ ସମାବେଶ। ସେମାନେ ସହରର ବିଭିନ୍ନ ସ୍କୁଲ କଲେଜରୁ ଆସିଥାନ୍ତି ଆମରି ଭଳି ସେଟେଇ ସେଟେଇ ଗୁରୁଣ୍ଡି ଗୁରୁଣ୍ଡି। ପଙ୍କ କାଦୁଅ ନାଲିମାଟି ବୋଳି ହେଇ ସମସ୍ତେ ଦିଶୁଥାନ୍ତି-ଅଦ୍ଭୁତ ! ସତେକି କୁମ୍ଭୀପାଟୁଆ ବାବାଜୀ ଦଳେ ଦଳେ ! ସେଇ ବାବାଜୀମାନେ ଶେଷରେ ଏକଜୁଟ

ହେଲେ- ଗୋଟାଏ ନାଲିରଙ୍ଗର ଦୋ ମହଲା କୋଠା ସାମନାରେ। ସେ କୋଠା ଉପରେ ଥାଏ ଗୋଟାଏ ମସ୍ତ ଉଚ୍ଚ ପତାକା ସ୍ତମ୍ଭ। ସେଇ ପତାକା ସ୍ତମ୍ଭ ପାଖରେ କେତେକଣ ଯୁବକ ଠିଆହେଇଥାନ୍ତି- ଆଉ ହାତ ହଲାଇ ତଳେ ଏକଜୁଟ ହେଉଥିବା ବିଭିନ୍ନ ଦିଗରୁ ଆସୁଥିବା ଶୋଭାଯାତ୍ରାକାରୀଙ୍କୁ ସଂଖୋଳିବାରେ ଲାଗିଥାନ୍ତି।

"ଏଇ ଦେଖ ଦେଖ",- କିଏ ଜଣେ ପାଟି କରି କହୁଥାଏ, "ସେଠି ଯୋଉ ପତଳା ଡେଙ୍ଗା ପିଲାଟି ଠିଆ ହୋଇଚି ସେ କିଏ ଜାଣ ? ତା ନାଁ ଜାନକୀ ପଟ୍ଟନାୟକ ! ଆଉ ତା' ପାଖ ପିଲାଟା କିଏ କହନି ? ତା ନାଁ ନୀଳମଣି, ତା ସେପାଖେ ସେ ଯୋଉ ପତଳା କଳା ପିଲାଟା- ସେ ହେଲା ବୈଦ୍ୟନାଥ ମିଶ୍ର। ତା ଆରପାଖେ ସେ ସୁନ୍ଦରିଆ ଟୋକା ଅବୋଧ ନାରାୟଣ ତିୱାରୀ ! ଏଇ କେତେକଣ ସାହସୀ ପିଲା ଏ କାଣ୍ଡ କରିଚନ୍ତି- ଏ ୱେଷ୍ଟ ହଷ୍ଟେଲ ବିଲ୍‌ଡିଂଟାକୁ ଗୋଟାଏ ଦୁର୍ଗ ପରି ଅବରୁଦ୍ଧ କରି ୟାକୁ ଏକ ସାର୍ବଭୌମ ଦେଶର ନାଁ ଦେଇ ଘୋଷଣା କରିଚନ୍ତି- ୱେଷ୍ଟ ହଷ୍ଟେଲ ରିପବ୍ଲିକ୍ ! ଆଃ ଧନ୍ୟ କହିବ ଏ ପିଲାମାନଙ୍କ ସତ୍‌ସାହାସକୁ।

ପରେ ପରେ ୱେଷ୍ଟ ହଷ୍ଟେଲ ଉପରୁ ତ୍ରିରଙ୍ଗା ପତାକା ସତରେ ଉଡ଼ିଲା। ପତାକାଟା ଫର୍‌ଫର୍ ହେଇ ଉଡ଼ିବା ମାତ୍ରେ ଗୁଡ଼ାଏ ଫୁଲ ଶୂନ୍ୟରୁ ତଳକୁ ବୃଷ୍ଟି ହେବାକୁ ଲାଗିଲା। ତତ୍‌କ୍ଷଣାତ୍ ଉପରୁ ଶୁଣାଗଲା ସଙ୍ଗୀତ-ବନ୍ଦେ ମାତରଂ ! ତା'ର ପ୍ରତିଧ୍ୱନି ଶୁଣାଗଲା ତଳେ- ହଜାର ହଜାର ହାତର ସମ୍ମିଳିତ ତାଳି ସହିତ ଉଠିଲା ଲହରେଇ ଲହରେଇ କୁହାଟ- ଭାରତ ମାତାକୀ ଜୟ ! ମହାତ୍ମା ଗାନ୍ଧିକୀ ଜୟ !

ସ୍ୱାଧୀନତାର ବାସ୍ନା ସେଇଦିନ ପ୍ରଥମ କରି ବାଜିଥିଲା ମୋ' ନାକରେ। ସ୍ୱାଧୀନତାର ଡାକ ସେଇଦିନ ଶୁଣିଥିଲା ମୋ' କାନ ପ୍ରଥମ କରି ସେଇ ୱେଷ୍ଟ ହଷ୍ଟେଲ ରିପବ୍ଲିକ୍ ଡାକରାରେ। ଜୀବନରେ ସେଇ ଥିଲା ମୋର ପ୍ରଥମ ଅଭିଜ୍ଞତା କୌଣସି ରାଜନୈତିକ ପଟୁଆରରେ ସାମିଲ ହେଇ ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ହାସଲ ଉଦ୍ଦେଶ୍ୟରେ। ଏହାପରେ ଅନେକ ଥର ମୁଁ ଏପରି ରାଜନୈତିକ ପଟୁଆରରେ ସାମିଲ ହେଇଥିଲି- ସ୍ୱାଧୀନତା ପୂର୍ବରୁ ଆଉ ପରେ ବି। କିନ୍ତୁ ରାଜନୀତି ପାଇଁ ମୋର ସାମାନ୍ୟତମ ଆଗ୍ରହ ଜାତ ହୋଇପାରିନଥିଲା। ମୁଁ ଥିଲି ରାଜନେତାଙ୍କ ଠାରୁ ଢେର୍ ଦୂରରେ।



---

*ମୋ ଜୀବନ : ଅନ୍ୟ ଏକ ଉପନ୍ୟାସ,*
ଗ୍ରନ୍ଥମନ୍ଦିର, କଟକ, ୨୦୧୩

# କଟକ ରେଭେନ୍‌ସା କଲେଜ

## ସନାତନ ପତି

ରେଭେନ୍‌ସାରେ ପଢ଼ିବା ପାଇଁ ମୁଁ ଅଗଷ୍ଟମାସରେ ଖଣ୍ଡିଏ ବାକ୍ସ ଓ ବିଛଣା ପତ୍ର ଧରି କଟକକୁ ଏକଲା ଆସିଥିଲି। ସେ ସମୟରେ ପାଞ୍ଚନମ୍ବର ଜାତୀୟ ରାଜପଥ ତିଆରି ହୋଇନଥିଲା। ଆମ ଗାଁରୁ କଟକ ଆସିବାକୁ ହେଲେ ଖରସ୍ରୋତା ପାର ହୋଇ ବିଞ୍ଝାରପୁର ପର୍ଯ୍ୟନ୍ତ ପାଦରେ ଆସିବାକୁ ପଡ଼ୁଥିଲା। ସେଠାରୁ ବସ୍‌ରେ ଯାଜପୁର ଦେଇ ଯାଜପୁରରୋଡ୍ ଷ୍ଟେସନ ପର୍ଯ୍ୟନ୍ତ ଆସିବାକୁ ପଡ଼ୁଥିଲା। ତା'ପରେ ରେଲ୍‌ଯୋଗେ କଟକ ଆସୁଥିଲୁ। ନଚେତ୍ ଆମ ଗାଁର ଦକ୍ଷିଣରେ ଥିବା କାଣୀ ନଈ ଓ ବ୍ରାହ୍ମଣୀ ନଈ ଅତିକ୍ରମ କରି ପାଦରେ ପଟ୍ଟାମୁଣ୍ଡାଇ ଆସୁଥିଲୁ ଓ ସେଠାରୁ ବସ୍‌ରେ କେନ୍ଦ୍ରାପଡ଼ା ଦେଇ କେନ୍ଦ୍ରାପଡ଼ାରୋଡ୍ (ଜଗତପୁର) ଷ୍ଟେସନ ଆସୁଥିଲୁ। ସନ୍ଧ୍ୟାବେଳକୁ ତାଳଚେର ଟ୍ରେନରେ ମହାନଦୀ ପାର ହୋଇ କଟକ ଆସୁଥିଲୁ। ବର୍ଷା ଋତୁ ପରେ ମହାନଦୀରେ ଅସ୍ଥାୟୀ ପୋଲ ହେଲେ ତାଳଚେର ଟ୍ରେନକୁ ଅପେକ୍ଷା କରିବାକୁ ପଡ଼ୁନଥିଲା। ଆଜିକାଲି ଆମ ଗାଁ ପାଖରେ ଖରସ୍ରୋତା ନଈରେ ସ୍ଥାୟୀ ପୋଲଟିଏ ହୋଇଥିବାରୁ ଯେକୌଣସି ସମୟରେ ଓ ସହଜରେ ଯାଜପୁର ଦେଇ କଟକକୁ ଯାତାୟାତ କରିହେଉଛି। ତା'ଛଡ଼ା କାଣୀନଦୀ ଓ ବ୍ରାହ୍ମଣୀ ନଦୀରେ ପୋଲ ହେବାରୁ କେନ୍ଦ୍ରାପଡ଼ା ବାଟେ କଟକ-ଭୁବନେଶ୍ୱରକୁ ମଧ୍ୟ ଯାଇ ହେଉଛି।

କଟକକୁ ଆସି ମୁଁ ବୀଣାପାଣି ମେସ୍‌ରେ ରହିଲି। ସେଠି ଆମ ଗାଁର ଲକ୍ଷ୍ମୀଧର ମଲ୍ଲିକ ରହୁଥିଲେ। ବୟସରେ ସେ ମୋଠାରୁ ଚାରିବର୍ଷ ବଡ଼। ରାଣୀହାଟ ପୋଲପାଖ ହିନ୍ଦ୍ ସିନେମା ହଲଠାରୁ ଅଳ୍ପ ଦୂରରେ ମେଡ଼ିକାଲ ଛକ ପାଖରେ ମେସ୍‌ଟି ହୋଇଥିଲା। ସେ ଜାଗାରେ ଆଜିକାଲି ମେଡ଼ିକାଲ କଲେଜ ଅଧ୍ୟାପକମାନଙ୍କ ବାସଭବନ ହୋଇଯାଇଛି।

ରେଭେନ୍‌ସାରେ ସେ ବର୍ଷ ପ୍ରଥମ ବାର୍ଷିକ ବିଜ୍ଞାନରେ ଦ୍ୱିତୀୟ ମାଟ୍ରିକ ପରୀକ୍ଷାରେ ପାସ୍ କରିଥିବା ଛାତ୍ରଙ୍କ ପାଇଁ ୬୪ଟି ସିଟ୍ ବଢ଼ିଥାଏ। ମୋର ସହଜରେ ନାମଲେଖା ହୋଇଗଲା କିନ୍ତୁ ମୁଁ ଜୀବବିଜ୍ଞାନ (biology)ରେ ସ୍ଥାନ ପାଇଲି ନାହିଁ। ସେଥିପାଇଁ ମନ ବହୁତ ଖରାପ ହେଲା।

କଟକରେ ସେ ବର୍ଷ ଆଉ ଦୁଇଟି କଲେଜ ଖୋଲିଥାଏ । ଷ୍ଟୁଆର୍ଟ ବିଜ୍ଞାନ କଲେଜରେ ଜୀବନ ବିଜ୍ଞାନ ପାଠ୍ୟକ୍ରମ ନ ଥିଲା । ସେଠି କେବଳ ପଦାର୍ଥ ବିଦ୍ୟା, ରସାୟନ ବିଦ୍ୟା ଓ ଗଣିତ ପଢ଼ାଯାଉଥିଲା । ଖ୍ରୀଷ୍ଟ କଲେଜରେ କେବଳ କଳାବିଦ୍ୟା (Arts) ଶିକ୍ଷା ଦିଆଯାଉଥିଲା ।

ସେତେବେଳେ ରେଭେନ୍‌ସା କଲେଜରେ ବିଶିଷ୍ଟ ଉଦ୍ଭିଦ ବିଜ୍ଞାନବିତ୍ ଡକ୍‌ଟର ପ୍ରାଣକୃଷ୍ଣ ପରିଜା ଅଧ୍ୟକ୍ଷ ଥିଲେ। କଲେଜରେ ଶାନ୍ତିଶୃଙ୍ଖଳା ଅତ୍ୟନ୍ତ ଉଚ୍ଚକୋଟୀର ଥିଲା। ପୁଅଝିଅମାନଙ୍କ ଭିତରେ କଲେଜରେ ଅବାଧ ମିଳାମିଶା ପାଇଁ କଟକଣା ଥିଲା । ଝିଅମାନଙ୍କ କମନ୍ ରୁମ ପାଖକୁ ଆତ୍ମୀୟସ୍ୱଜନ ବ୍ୟତୀତ ଅନ୍ୟମାନଙ୍କୁ ଯିବାପାଇଁ ମନା ଥିଲା ।

ରେଭେନ୍‌ସାରେ ସେତେବେଳେ ପୁଅମାନଙ୍କ ପାଇଁ କେବଳ ଦୁଇଟି ଛାତ୍ରାବାସ ଥିଲା- ପୂର୍ବ ଛାତ୍ରାବାସ ଓ ପଶ୍ଚିମ ଛାତ୍ରାବାସ । ଝିଅମାନଙ୍କ ପାଇଁ କେନାଲ ସେପଟେ ଜଣେ ଅଧ୍ୟାପକଙ୍କ ତତ୍ତ୍ୱାବଧାନରେ ଗୋଟିଏ ମେସ୍ ଥିଲା । ଆମେ ଦ୍ୱିତୀୟ ମାଟ୍ରିକ୍ୟୁଲେସନ୍ ପରୀକ୍ଷାରେ ପାସ୍ କରିଥିବା ପିଲା କଲେଜରେ ଭର୍ତ୍ତି ହେବାବେଳକୁ ଛାତ୍ରାବାସରେ ଆଉ ସ୍ଥାନ ନ ଥିଲା । ତେଣୁ ବୀଣାପାଣି ମେସ୍‌ରେ ବାଧ୍ୟ ହୋଇ ରହିଲି। କଲେଜ ଯାଉଥିଲି ସତ, କିନ୍ତୁ ପ୍ରାଣୀବିଜ୍ଞାନ ପଢ଼ିପାରି ନଥିବାରୁ ମନ ଆଦୌ ଲାଗୁନଥିଲା ।

ବଡ଼ଦିନଛୁଟି ବେଳକୁ ମୋତେ କାମଳ ରୋଗ (jaundice) ହେଲା । ତେଣୁ ଗାଁକୁ ପଳେଇ ଯାଇଥିଲି। ଆମ ଗାଁ ପାଖ ଗୋବିନ୍ଦପୁର କବିରାଜଖାନାର କବିରାଜ ଭ୍ରମରବର ମହାପାତ୍ରଙ୍କ ଚିକିତ୍ସାରେ ମାସକ ଭିତରେ ଭଲ ହୋଇଯାଇଥିଲି । ସେ ମୋତେ ଲୌହ ଭସ୍ମକୁ ମିଶ୍ରିଗୁଣ୍ଡ ଓ ଲହୁଣୀରେ ମିଶାଇ ଖାଇବାକୁ ଉପଦେଶ ଦେଇଥିଲେ । ଭଲ ହେଲି ସତ କିନ୍ତୁ ଦୁର୍ବଳତା ବହୁଦିନ ଧରି ରହିଲା । ଆଉ କଟକ ଯିବାପାଇଁ ଇଚ୍ଛା ହେଲା ନାହିଁ । ତେଣୁ ଯେଉଁ ବର୍ଷଟିଏ ମାଟ୍ରିକ ପଢ଼ିଲା ବେଳେ ରହିଥିଲା ସେ ବର୍ଷଟି ଭରଣା ହୋଇଗଲା ।

ପରବର୍ଷ ୧୯୪୫ ଜୁଲାଇରେ ପୁଣି ପ୍ରଥମ ବର୍ଷ ବିଜ୍ଞାନରେ ନାମ ଲେଖାଇଲି ଓ ଭାଗ୍ୟକୁ ଜୀବବିଜ୍ଞାନ ପଢ଼ିବାର ସୁଯୋଗ ମିଳିଲା । ତାପରେ ମନଦେଇ ପଢ଼ିଲି । ଆଉ ମେସ୍‌ରେ ନ ରହି 'ପାରାଡ଼ାଇଜ୍ ହଲ୍' ରେ ରହିଲି । ସେଠି ଅନେକ କଲେଜ ପିଲା ରହୁଥିଲେ । ରହିବା ଛଡ଼ା ଖାଇବାର ସୁବନ୍ଦୋବସ୍ତ ଥିଲା । ପରିଚାଳକ ଥିଲେ ସୁରେନ୍ କାନୁନ୍‌ଗୋ ଓ ତାଙ୍କ ଘର ଜଗତପୁର ପାଖ ଶାଳଗାଁ । ସେ ଜଣେ ସମାଜସେବୀ ଥିଲେ । ସେତେବେଳେ ଆଇ.ଏସ୍‌ସି ପାଠ ପାଇଁ ଦୁଇବର୍ଷ ଓ ବି.ଏସ୍‌ସି ଡିଗ୍ରୀ ପାଇଁ ଆଉ ଦୁଇବର୍ଷ ଲାଗୁଥିଲା । ଚାରିବର୍ଷଯାକ ମୁଁ ପାରାଡ଼ାଇଜ୍ ହଲ୍‌ରେ କଟାଇଦେଇଥିଲି। ସେ କୋଠା ଆଉ ନାହିଁ। ସେଠି ଆଉ ଗୋଟିଏ ଅଟ୍ଟାଳିକା ଦଣ୍ଡାୟମାନ ହୋଇଛି ଓ ତଳତାଲା ସାମ୍ନାପଟ କଟକ ସୁଇଟ୍‌ଷ୍ଟଲ୍ ହୋଇଛି ।

ପରିଜା ସାହେବଙ୍କ ପରେ ଶ୍ରୀଯୁକ୍ତ ମହେଶ ପ୍ରଧାନ ରେଭେନ୍‌ସା କଲେଜର ଅଧ୍ୟକ୍ଷ ହୋଇଥିଲେ । ଆମ ଆଇ.ଏସ୍‌ସି. ପାଠ୍ୟକ୍ରମରେ ଇଂରାଜୀ, ପଦାର୍ଥ ବିଦ୍ୟା, ରସାୟନ ବିଦ୍ୟା,

ଗଣିତ ଓ ଜୀବ ବିଜ୍ଞାନ ପଢ଼ାଯାଉଥିଲା । ଗଣିତ କିମ୍ବା ଜୀବବିଜ୍ଞାନକୁ ଛାତ୍ରମାନେ ଇଚ୍ଛାଧୀନ ବିଷୟ ରଖିପାରୁଥିଲେ । ଆମକୁ ପ୍ରଫେସର ପି.ଏସ୍.ସୁନ୍ଦରମ୍, ଜନାଥନ୍ ମହାନ୍ତି, ବିଧୁଭୂଷଣ ମହାନ୍ତି ଓ ପ୍ରଫୁଲ୍ଲ ପତି ଇଂରାଜୀ ପଢ଼ାଉଥିଲେ । ପଦାର୍ଥ ବିଦ୍ୟା ପ୍ରଫେସର ନାରାୟଣ ମିଶ୍ର, ରାଧାକୃଷ୍ଣ ମହାନ୍ତି ଓ ଅକୟ ଚନ୍ଦ୍ର ବୀର୍ ପଢ଼ାଉଥିଲେ । ରସାୟନ ଅଧ୍ୟାପକ ଥିଲେ ଡକ୍ଟର ବଳଭଦ୍ର ପ୍ରସାଦ । ତାଙ୍କ ବ୍ୟତୀତ ଆମକୁ ମହେନ୍ଦ୍ର କୁମାର ରାଉତ, ପ୍ରସନ୍ନ କୁମାର ଦାସ ଓ ଗୋକୁଳାନନ୍ଦ ମହାପାତ୍ର ରସାୟନ ବିଦ୍ୟା ପଢ଼ାଉଥିଲେ । ଉଦ୍ଭିଦ ବିଦ୍ୟା ବିଭାଗରେ ପ୍ରଫେସର ଥିଲେ ଡକ୍ଟର ପର୍ଶୁରାମ ମିଶ୍ର । ଡକ୍ଟର ବଂଶୀଧର ସାମନ୍ତରାୟ, ଗଦାଧର ମିଶ୍ର ଓ ହରିହର ପଟ୍ଟନାୟକ ତାଙ୍କର ସହକର୍ମୀ ଥିଲେ । ଡକ୍ଟର ପି.ଏନ୍.ଚାଟାର୍ଜୀ ଆମକୁ ପ୍ରଥମେ ପ୍ରାଣୀ ବିଦ୍ୟା ପଢ଼ାଉଥିଲେ ଓ ବି.ଏସ୍‌ସି. ପଢ଼ିଲା ବେଳକୁ ଡକ୍ଟର ଏଚ୍.ଏସ୍. ଚୌଧୁରୀ, ଏମ୍.ଏ.କହନ୍ ଓ ଏସ୍.ଆର ଉପାଧ୍ୟାୟ ପ୍ରାଣୀ ବିଦ୍ୟା ବିଭାଗରେ ଯୋଗ ଦେଇଥିଲେ । ସେ ସମୟରେ ଅଧ୍ୟାପକମାନେ ଅତ୍ୟନ୍ତ ସ୍ନେହୀ ଓ ଛାତ୍ରବତ୍ସଳ ଥିଲେ । ସେମାନେ ଭଲ ପଢ଼ାଉଥିଲେ । ସମୟ ନିର୍ଘଣ୍ଟ କଡ଼ାକଡ଼ି ଭାବେ ପାଳନ କରାଯାଉଥିଲା । ସେ କାଳରେ ଅଧ୍ୟାପକ ଓ ଛାତ୍ରମାନଙ୍କ ମଧ୍ୟରେ ଘନିଷ୍ଠ ସମ୍ପର୍କ ରହୁଥିଲା । କଲେଜରେ ବାର୍ଷିକ ନାଟକୋତ୍ସବ ଓ କ୍ରୀଡ଼ା ଉତ୍ସବ ଯଥାରୀତି ହେଉଥିଲା । କଲେଜ ୟୁନିଅନର କର୍ମକର୍ତ୍ତା ନିର୍ବାଚନ ଅତ୍ୟନ୍ତ ଶାନ୍ତିଶୃଙ୍ଖଳା ସହିତ ସମ୍ପୂର୍ଣ୍ଣ ହେଉଥିଲା । ୧୯୪୭ ମସିହା ମାର୍ଚ୍ଚମାସରେ ଆମର ଆଇ.ଏସ୍‌ସି. ପରୀକ୍ଷା ହୋଇଥିଲା । ପରୀକ୍ଷାପରେ ମୁଁ ଗାଁକୁ ଚାଲିଯାଇଥିଲି ।

•

---

***ମୋ ଜୀବନର ଅଭୁଲା ସ୍ମୃତି,***

ପ୍ରକାଶିକା-ଅଂଜୁବାଳା ଦାସ, କଟକ, ୨୦୦୯

ଉଠରେ ଉଠରେ ଉଠିଲା ସମ୍ରାଟ ଉଡ଼ିଆ ...

# The Oriya.

Vol 2 } Cuttack, Wednesday, March 5, 1919 { No. 12

( Sporting News )

## Ravenshaw College Athletic Sports.

The Orissa Athletic Association having failed to hold their annual sports this year the College Athletic Club committee decided to hold their own sports. The law students who were recognised as College students in Football had to pay the Athletic and common room fees so as to be eligible for competition in these sports. The entries in all the items being meagre, no heats were run and the final came off on Friday last.

At the conclusion of the sports Mr. Grunning gave away the prizes to the successful competitors.

**Results:**

1 100 yds flat race : M. Gupta ; H. Chatterji 2
2 220 yds " M. Gupta 1; H. Chatterji 2
3 ½ mile " H. Chatterji 1; B. Palit 2
4 ½ ,, (open) Baisnab 1; Bhupen 2
5 220 yds visitor's race : Baisnab 1; Bhupen 2
6 120 yds Hurdles : M. Gupta 1; H. Chatterji 2
7 Throwing the Cricket Ball : C. Patnaik 1; B. Misra 2
8 Putting the shot : B. Palit 1; H. Chatterji 2
9 Long jump: J Misra 1; M Guha 2
10 High jump: A Mukherji 1; M Guha 2
11 2 miles Cycle race: P Sen 1; H Chatterji 2
12 Firealarm or Mathca race: H Chatterji 1; B Palit 2
13 Sack race: S Das Gupta 1; H Chatterji
14 Tug of war: 2nd year class
15 Consolation: A Das

M. Gupta won the Bestman's medal for obtaining highest number of points.

——o——

# REPORT

ON

# Ravenshaw College, Cuttack, for 1916-17 and 1915-16.

*(Inspected on the 19th April, 1917.)*

The College is affiliated to the B.A. standard in English (Pass and Honours) Vernacular Composition, Sanskrit (Pass & Honours), Persian (Pass & Honours), Mathematics (Pass), Philosophy (Pass & Honours), Political Economy & Political Philosophy (Pass), History (Pass), Physics (Pass), and Chemistry (Pass); to the I.A. standard in English, Vernacular Composition, Sanskrit, Persian, History, Logic, Mathematics, Physics, Chemistry and Botany; to the B.Sc. standard in Physics (Pass), Chemistry (Pass), Mathematics (Pass); to the I.Sc. standard in English, Vernacular Composition, Mathematics, Physics, Chemistry and Botany.

## Governing Body.

The Governing Body, consisting of the Divisional Commissioner as President, the Principal as Vice-President and Secretary, Raja of Kanika as Non-official Member and two Professors as Members, held six meetings during the session 1915-16.

The College Council had five meetings during the session 1915-16.

## Teaching Staff.

(1) The names and qualifications of the present members of the Teaching Staff are given in the following Table with the changes since the last inspection:—

| No. | Name. | Degrees with names of Universities, Classes, Honours &c. with dates. | Present Post. | Date of appointment to Present Post. | Pay or Status. |
|---|---|---|---|---|---|
| 1 | 2 | 3 | 4 | 5 | 6 |
| | | | | | Rs. |
| 1 | H. Lambert, Esq. ... | M.A. (Cantab.) | Principal ... | 15-7-1915 | 900 |
| 2 | P. O. Whitlock, Esq. ... | B.A. (Cantab.) | Prof. of English ... | 23-12-1914 | 550 |
| 3 | R. P. Khosla, Esq. ... | B.A. (Oxon.) M.A. (Punjab) | Prof. of History ... | 26-7-1916 | 500 |
| 4 | Rai Bahadur Jogeschandra Ray ... | M.A. with Hon. in Botany 1883 | Prof. of Botany ... | 5-7-1889 | 600 |
| 5 | Babu Gopalchandra Ganguli ... | M.A. Class II English 1891 | Prof. of English ... | 8-8-1904 | 350 |
| 6 | " Baradakanta Chatterjee ... | M.A. Class II " 1903 | Do. ... | 7-7-1913 | 250 |
| 7 | " Krittibas Samantaray ... | M.A. Class II " 1913 | Do. ... | 22-3-1915 | 200 |
| 8 | " Bireswar Chatterjee ... | M.A. Class II " 1913 | Lecturer in English | 27-7-1915 | 125 |
| 9 | " Mohinimohan Senapati ... | M.A. Class II Philosophy 1908 | Prof. of Philosophy | 6-9-1911 | 250 |
| 10 | " Bipinbihari Ray ... | M.A. Class II " 1910 | Do. ... | 1-8-1914 | 200 |
| 11 | " Jibankrishna Sarkar ... | M.A. Class II " 1914 | Lect. in Philosophy | 16-11-1914 | 125 |
| 12 | " Kasinath Das ... | M.A. Class II Sanskrit 1906 | Prof. of Sanskrit ... | 26-8-1907 | 250 |
| 13 | " Artaballav Mahanti ... | M.A. Class III " 1914 | Lecturer in Sanskrit | 22-10-1914 | 125 |
| 14 | " Adityanath Upadhyay ... | Sanskrit Title Examination | Do. | 13-11-1912 | 100 |
| 15 | " Saradakanta Ganguli ... | M.A. Class II Mathematics 1901 | Prof. of Mathematics | 17-7-1911 | 300 |
| 16 | " Harekrishna Das ... | M.A. Class II " 1914 | Lect. in Mathematics | 8-7-1915 | 125 |
| 17 | " Nisikanta Sanyal ... | M.A. Class II History 1907 | Prof. of History ... | 26-9-1910 | 200 |
| 18 | " Nirmalchandra Banerjee ... | M.A. Class II " 1914 | Lecturer in History | 16-11-1914 | 125 |
| 19 | " Saratchandra Majumdar ... | M.A. Class II Physics 1893 | Prof. of Physics ... | 5-8-1914 | 250 |
| 20 | " Narayan Misra ... | M.Sc. Class II " 1914 | Demon. of Physics... | 24-8-1914 | 125 |
| 21 | " Atulchandra Ganguli ... | B.A. Hon. in Phy. & Chem. 1892 | Prof. of Chemistry... | 1-11-1910 | 250 |
| 22 | " Rajanikanta Basu ... | M.A. Class II in Chem. 1908 | Demons. in Chem. ... | 4-7-1910 | 200 |
| 23 | " Sureschandra Bardhan ... | M.A. Class III in Eco. 1912 | Prof. of Economics | 1-7-1912 | 250 |
| 24 | " Durgacharan Das ... | M.A. Class II " 1914 | Do. | 1-9-15 | 200 |
| 25 | Maulvi Abdul Qadir ... | M.A. Class I in Persian (Allahabad) | Prof. of Persian ... | 20-7-1916 | 200 |
| 26 | Maulvi Abdul Munif Md. Latif ... | Calcutta Madrassa | Lecturer in Persian | 17-12-1910 | 125 |

Docket No.
Action.

MEMO. No. 4271
22-2-19.

# BIHAR AND ORISSA.

Education DEPARTMENT.

BRANCH.

Patna, Dated the 25th April, 1919.

The undermentioned document is forwarded to the Principal, Ravenshaw College, for information and guidance, with reference to his letter No.327, dated the 27th of March, 1919.

for Director of Public Instruction,
Bihar and Orissa.

A copy of letter No. 216 E, dated the 19th of April, 1919, from the Government of Bihar and Orissa.

-------------------

"In reply to your letter No. 187 G, dated the 9th April, 1919, I am directed to say that the Lieutenant Governor in Council is pleased to grant to Rai Bahadur Jogesh Chandra Ray, Professor of Botany in the Ravenshaw College at Cuttack, a further extension of service from the 1st May to the 31st October, 1919, or until the arrival of Babu Pran Krishan Pariya from England, whichever is earlier, on the usual condition that he will be called upon to retire from the service of Government in the event of any intermediate failure of capacity of work."

------------

G. J. P. (Bd. Gr.) P. O. No. 2—27,000—30-8-15.

P.M.P. 25/4.

ଅସହଯୋଗ ଆନ୍ଦୋଳନ ସଂପର୍କରେ ରେଭେନ୍‌ସା କଲେଜ ଅଧ୍ୟକ୍ଷଙ୍କୁ ଡି.ପି.ଆଇ.ଙ୍କ ଚିଠି (୧୯୨୧)

B

No. 403

/AC/60-20.

Recd. on 18-1-21
File No. 1
Coll. No.
Docket No. 39
Action.

From

G. E. Fawcus, Esqr., M. A.,
Offg: Director of Public Instruction,
Bihar and Orissa,

To

The Principal of the Ravenshaw College.

Patna, the 14th January, 1921.

Sir,

I have the honour to invite a reference to my letter No. 8469, dated the 4th of November, 1920, and to request you to be so good as to discontinue the fortnightly report called for therein. You should however report to me at once any important incidents connected with the non-co-operation movement that may come to your notice.

I have the honour to be,
Sir,
Your most obedient servant,

for Director of Public Instruction,
Bihar and Orissa.

H. Ahmad, 14/1.

ଅସହଯୋଗ ଆନ୍ଦୋଳନ ସମ୍ପର୍କରେ ବିହାର ଏବଂ ଓଡ଼ିଶାର ମୁଖ୍ୟ ଶାସନ ସଚିବଙ୍କ ଚିଠି (୧୯୨୧)

No. 158-C.

GOVERNMENT OF BIHAR AND ORISSA.

POLITICAL DEPARTMENT.

POLITICAL BRANCH.

FROM

G. RAINY, ESQ., C.S.I., C.I.E., I.C.S.,
CHIEF SECRETARY TO THE GOVERNMENT,
BIHAR AND ORISSA,

To

THE DISTRICT OFFICER.

*Patna, the 31st January* 1921.

SIR,

I AM directed to address you regarding the situation created in this Province by the non-co-operation movement, and to explain to you the views of Government and the measures which they desire to be taken.

2. The Governor in Council has reason to believe that the attitude of the Government of India and His Majesty's Government towards the movement, which was explained in a Resolution of the Government of India in the Home Department, No. 4484-Political, dated the 6th November 1920, has been misapprehended not only by the public, but also by many Government officers. In that resolution, the Government of India explained the reasons why they had refrained from instituting criminal proceedings or taking other action against those of its promoters, whose advocacy of non-co-operation has been qualified by advice to abstain from violence. His Excellency in Council believes that this attitude has often been interpreted as implying either a reluctance to deal with the movement due to fear, or else indifference to the dangers which such a movement must carry with it. It is important, therefore, that every officer should realize that Government view the movement with utter disapproval as tending to lawlessness and ultimately to anarchy, and that they will not hesitate to employ all lawful and reasonable means to combat it.

3. It has been reported to Government that at least in one district Government officers have attended meetings held in support of non-co-operation; or have otherwise acted in a way which could be interpreted as showing some sympathy with the movement. It must be distinctly understood that conduct of this kind will not be tolerated, and should it come to the knowledge of any officer that his subordinates are acting in this way, he should at once call upon them to explain their conduct and, if the explanation is unsatisfactory, bring the facts to the notice of Government through the usual channel. These instructions of course do not apply when a Government officer (e.g., a police officer) has to attend a non-co-operation meeting in the ordinary course of his duties.

4. Not only, however, must Government officers refrain from lending the smallest support or sympathy to a movement, which has for its object the subversion of the whole system of Government, but it is their duty also to use every means in their power to combat the agitation. Every Government officer should, as opportunity offers, do his best to point out to those who are in danger of being drawn into the movement the disastrous consequences which would result from its success and should, at the same time, explain the opportunities which are now afforded to Indians, not only of influencing the policy of Government on all matters, but of directing the policy of Government in relation to those subjects which have been transferred to the administration of the Ministers. No opportunity should be lost of impressing on the local leaders of the agitation that, if it should result in disorder, they will be held responsible, while at the same time men of property should be reminded that they will be the first to suffer if the bounds of law and order are broken. During the next two months you and your subdivisional officers should do as much touring as possible even if other work must for the moment be put aside. If it can be arranged, other members of the district staff can also do useful work on tour.

5. His Excellency in Council fully realizes that all that Government officers can do by way of propaganda is not adequate for the needs of the situation. The active support of all responsible persons who are loyal to the existing system of Government and especially the landed classes, must be enlisted in a resolute campaign to combat the misrepresentations which have characterized the non-co-operation movement from the start. His Excellency proposes to initiate active measures to combat it at a very early date.

I have the honour to be,

SIR,

Your most obedient Servant,

G. RAINY,

*Chief Secretary to Government of Bihar and Orissa.*

---

Memo. No. 159-C., dated the 31st January 1921.

Copy forwarded for information and guidance to Commissioners of Divisions and the Inspector-General of Police.

By order, etc.

G. RAINY,

*Chief Secretary.*

---

Memo. No. 160-C., dated the 31st January 1921.

Copy forwarded to ............................ Department with the request that copies may be supplied to the Heads of Departments subordinate to them for communication to their subordinates.

By order of the Governor in Council,

G. RAINY,

*Chief Secretary.*

B. & O. G. P. (P. & A.) No. 107—250+36—31-1-1921—R.B.

# ଅସହଯୋଗ ଆନ୍ଦୋଳନ ସମ୍ପର୍କରେ ଡି.ପି.ଆଇ.ଙ୍କ ପତ୍ର (୧୯୨୧)



No 33-C

From

G. E. Fawcus Esq., M.A.,

Offg. Director of Public Instruction,

Bihar and Orissa.

To

The Principal,

Ravenshaw College, Cuttack

Dated Patna, the 2nd of March, 1921.

Sir,

I have the honour to request you to report, if necessary by telegram, so that I may receive the information not later than March the 5th the total number of non-cooperating students who have left your college and have not rejoined hitherto. Similar figures were supplied at the beginning of last month but revised figures have been asked for by the Government of India.

No: 251.
9.4.3.1921.

Sir,
With reference to your letter No 33-C, d/ 2/3/21, regarding non-co-operating students, I [illegible]

I have the honour to be,

Sir,

Your most obedient servant,

G. Fawcus

Offg. Director of Public Instruction,

Bihar and Orissa.

No. 750
dt 21-7-1921.

To

The D. P. I. B&O

Sir,

With reference to your letter No $\frac{5308}{5m-142-21}$ dt 5/7/21, I have the honour to state below the number of students in the four years of this College on the 20/7/21

1st year — 80
2nd year — 139
3rd — — 35
4th — — 70

The attendance in the 4th year class is normal but in the others it is decreased. I do not consider the decrease is due mainly as a result of the non-cooperation movement but it is due to the large number of failures in the University Examinations. ~~The opinion of the [illegible]~~ [illegible] of the new College & Science and the [illegible] distance from the town. It is expected a few more students will join the College before the end of the month.

[illegible]
Principal.

# କଲେଜ ପରିଚାଳନା କମିଟି ସଦସ୍ୟମାନଙ୍କ ନାମ (୧୯୨୨)

OFFICE OF THE DIRECTOR OF PUBLIC INSTRUCTION,

BIHAR AND ORISSA.

MEMO. NO. 5048

4C/37-22.

Patna, the 18th July, 1922.

The undermentioned document is forwarded to the Principal of the Ravenshaw -- College, for information, with reference to his letter No. 680, dated the 1st of May, 1922.

M. Dune

for Director of Public Instruction.

An extract from Government Notification No. 238-E.R., dated the 6th of July, 1922.

------

"The Government of Bihar and Orissa in the Ministry of Education are pleased to appoint the following persons to constitute the governing bodies of the undermentioned Arts Colleges in the Province of Bihar and Orissa for the academic year 1922-23:-

Ravenshaw College.

| | |
|---|---|
| 1. The Commissioner of the Orissa Division, President. | Ex-officio. |
| 2. The Principal of Ravenshaw College, Vice-President and Secretary. | Ex-officio. |
| 3. Raja Rajendra Narayan Bhanj Deo, O.B.E. of Kanika. | Members. |
| 4. Babu Bishvanath Kar, M.L.C. | Members. |
| 5. Mr. P.O. Whitlock, Professor, Ravenshaw College. | Members. |
| 6. Mr. Jadu Nath Sarkar, Professor, Ravenshaw College. " | Members. |

XX XX XX XX

## ଘରୋଇ ଟିଉସନ ପାଇଁ ଅନୁମତି (୧୯୨୧)

The Director of Public Instruction,

Bihar and Orissa,

To

The Principal,

Ravenshaw College,

Patna, the 19th November, 1921.

Sir,

With reference to your letter No.1205, dated the 9th of November, 1921, I have the honour to permit, under Article 74 (C) of the Civil Service Regulations, Babu Bipin Bihari Roy, M.A., Professor of Philosophy in your college, to undertake private tuition as proposed on Rs.50/- a month for three months.

I have the honour to be,

Sir,

Your most obedient servant,

for Director of Public Instruction,
Bihar and Orissa.

FROM

A. C. Armstrong, Esquire, C.B.E.,
District Superintendent of Police,
N a g p u r, C.P.

To

THE Principal,
Ravenshaw College,
C u t t a c k.

Dated Nagpur, the 2d December 1920.

SIR,

With reference to your No. 1349 T.M. 36, dated the 6th instant, to the address of the Deputy Commissioner, I have the honour to forward herewith two copies of two printed appeals addressed to students by the conveners of the All India Students Conference. Lala Lajpat Rai has been elected to preside at this Conference and the main subject will possibly be, whether or not, students are to withdraw from their respective Colleges in pursuance of the Congress Mandali regarding Non-Co-operation.

I have the honour to be,
Sir,
Your most obedient servant,

For District Superintendent of Police,
Nagpur.

# All India College Students Conference.

I Nagpur Session.

---

## An Appeal
To
## All College Students

*Brothers:*—

In view of the recent developments in the Indian political Situation in so far as they affect the Student Community, it has become extremely necessary that the College Students of India should meet together and deliberate upon the problems that stare us in the face. It is now high time that we should assert our corporate existence and decide together the line of action that may be desirable in the best interests of the Country. Unless we do so, no concerted action is possible. Let us strengthen the feeling of brotherhood by conferring together on the topics that affect us in common and finding out solution for our common grievances. It is only by mutual consent, help and sympathy that we shall be able to face and surmount the odds and difficulties that may beset us—"United we stand and divided we fall" is so eternally true maxim which we can ill afford to ignore. Let us therefore combine our forces and take stock of the difficulties that lie ahead so that there may be as little chance as possible of our falling into pitfalls. Solitary and individual attempts, though desirable in themselves, cannot further our progress in any large measure. The Bombay students and the Behar students have got their own annual federations and conferences and so also is the case with some of the other provinces. But the necessity of an 'All India college students Conference' is keenly felt, in view of the seriousness of the situation in so far as it relates to us. We have, therefore decided to hold the first session of an 'All India College Students Conference here at Nagpur during the Christmas Holidays.

We, therefore, fervently hope that every College in India will not fail to give a whole-hearted response — o sincere call by sending delegates to the Conference and co-operating with us to make the conference a great success.

*We beg to remain,*
*yours very sincerely.*

**R. J. Gokhale, B. A.**
*President,*
*Working Committee.*

**L. G. Telang, B. A.**
*Gen. Secretary,*
*Working Committee,*
*The All India College Students Conference*

Dy.—Office of the Working Committee,
All India College Students Conference,
Wallibhoy buildings, Walker Road,
Nagpur City, 7th November 1920.

ଲେଖେନ୍ଦ୍ରା ଭଲେକ/ ୫୨୩

File No. 7
Coll. No. I-A
Docket No. 243
Action.

MEMO. No. 2821

4-52-19.

BIHAR AND ORISSA

I.A.

Education DEPARTMENT.

BRANCH.

Dated Ranchi, 3rd April, 1919.

The undermentioned document is forwarded to Babu Jadu Nath Sarkar, Professor in the Hindu University at Benares, for information in continuation of memo. no.1309, dated the 14th of February, 1919.

Sd. F. R. Blair,
for Director of Public Instruction,
Bihar and Orissa.

A copy of Government Notification No.474 E.P., dated the 15th of March, 1919.

---

"Babu Jadu Nath Sarkar, Professor of History in the Patna College, on deputation to Foreign Service, who has been appointed to the Indian Educational Service with effect from the 7th November 1918, is appointed to be Professor of History in the Ravenshaw College at Cuttack, with effect from that date, but will continue on foreign service until further orders."

---

## ପାଟଣା ବିଶ୍ୱବିଦ୍ୟାଳୟକୁ ଓଡ଼ିଶାରୁ ନିର୍ବାଚିତ ଫେଲୋ (୧୯୧୯)

PATNA UNIVERSITY.

The following gentlemen have been elected Fellows of Patna University from Orissa:-

Registered College Teachers.

1. Mr. Kashi Nath Das, M.A.
2. Mr. Suresh Chandra Bardhan, M.A.
3. Mr. Narayan Misra M.Sc.
4. Mr. Krutibas Samantrai, M.A.

Registered Graduates.

1. Mr. Kumar Shanti Shekhareswar Ray, M.A.
2. The Hon'ble Mr. Braja Sundar Das, B.A.,
3. Mr. Godavaris Misra, M.A., B.T.

Patna,
The 8th September, 1919.

R. Shaw.
Registrar.

Memo No. [illegible]
Patna University Office,
Dated Patna the 8th September 1919.

Copy forwarded to the Principal, Ravenshaw College, Cuttack, for information.

R Shaw
Registrar.

True copy.

I have read the Song of victory by Babu Aditkanda panda, zamindar. It expresses his loyalty and heart felt devotion to the throne. His "Binayak stuti" is a promising poetical attempt.

Satyabadi
March 7. 1909

Gopabandhu Das
A member of Legislative Council, Bihar and Orissa.

True copy.

I have read Babu Aditkanda panda's oriya poem the victory of the British flag with pleasure. The poem is perhaps intended to create a sense of loyalty in our children, and it will serve the purpose if properly taught. Babu Aditkanda panda is to be congratulated for his attempt at writing poetry, which as a fine art – should mostly be cultivated only by those whose genius is naturally adopted to it. It is a fine art & is calculated to go all wrong when made into a life's calling for ends other than self-satisfaction. Aditkanda Babu being a well to do man I hope does not try his hand at writing poetry for any other end in view.

Satyabadi;
11th, March, 1909

Nilkantha Das, M.A.
of the Satyabadi School

